# ଆଧୁନିକ ନଗର କଟକ

ସଙ୍କଳକ : ଡଃ ବ୍ରଜମୋହନ ମହାନ୍ତି
ସହ-ସଙ୍କଳକ : ଶ୍ରୀ ସୁଭାଷ ଚନ୍ଦ୍ର ମହାନ୍ତି

ଉତ୍କଳ ପାଠକ ସଂସଦ ଆନୁକୂଲ୍ୟରେ



ଓଡ଼ିଶା ବୁକ୍ ଷ୍ଟୋର

# ଆଧୁନିକ ନଗର କଟକ

ସଙ୍କଳକ : **ଡଃ ବ୍ରଜମୋହନ ମହାନ୍ତି**
ସହ-ସଙ୍କଳକ : **ଶ୍ରୀ ସୁଭାଷ ଚନ୍ଦ୍ର ମହାନ୍ତି**

ପ୍ରକାଶକ :
**ଉତ୍କଳ ପାଠକ ସଂସଦ ଆନୁକୂଲ୍ୟରେ**
ଶ୍ରୀ ବିଜୟ ଶଙ୍କର ପାତ୍ର
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ-୭୫୩ ୦୦୨

ପ୍ରକାଶ କାଳ : ୧୯୯୪

ପ୍ରଚ୍ଛଦ :
**ଅସିତ୍ ମୁଖାର୍ଜୀ**

ମୁଦ୍ରଣ :
**ରେଖା ପ୍ରେସ**
ବାଙ୍କି ସାହି, କଟକ-୭୫୩ ୦୦୯

ମୂଲ୍ୟ : ଦେଡ଼ଶହ ଟଙ୍କା ମାତ୍ର

ISBN 81-7400-023-2

**ADHUNIKA NAGAR CUTTACK**

Compiled by
**Dr. Brajamohan Mohanty**
Assisted by
**Subhas Ch. Mohanty**

Published on behalf of :
UTKAL PATHAK SAMSAD
by
**Sri Bijoy Shankar Patra**
**ORISSA BOOK STORE**
Binod Bebari, Cuttack-753 002

1st Published : 1994

Printed at :
**Rekha Press**
Cuttack-9

Price : Rs 150/-

## ସମ୍ପାଦନା :

ଶ୍ରୀ ପଠାଣି ପଟ୍ଟନାୟକ
ଶ୍ରୀ ପ୍ରସନ୍ନ କୁମାର ଦାଶ
ଡକ୍ଟର ବୈଷ୍ଣବ ଚରଣ ସାମଲ
ଡକ୍ଟର ସଚ୍ଚିଦାନନ୍ଦ ମହାନ୍ତି
ଶ୍ରୀ ଅର୍ଜ୍ଜୁନ ଦାଶ
ଶ୍ରୀ ବସନ୍ତ କୁମାର ସାହୁ
ଶ୍ରୀ ମହେଶ୍ୱର ମୁଳିଆ

## ସହ-ସମ୍ପାଦନା

ଶ୍ରୀ ସୁହାସ ରାୟ
ଶ୍ରୀ ଚନ୍ଦ୍ରଶେଖର ପ୍ରଧାନ
ଶ୍ରୀ ଗୋବିନ୍ଦ ଚରଣ ପାଣ୍ଡ
ଶ୍ରୀ ବରଦା ପ୍ରସନ୍ନ ପଟ୍ଟନାୟକ
ଶ୍ରୀ ଶୁଭନାରାୟଣ ସ୍ୱାଇଁ
ଶ୍ରୀ ସୁବ୍ରତପ୍ରିୟବ୍ରତ ମହାନ୍ତି
ଶ୍ରୀ ବସନ୍ତ କୁମାର ମହାନ୍ତି
ଶ୍ରୀ ବୀର କିଶୋର ସାହୁ

# ସଙ୍କଳନ ସମ୍ପର୍କରେ

ଇତିମଧ୍ୟରେ କଟକ ନଗରର ହଜାରେ ବର୍ଷ ପୂର୍ତ୍ତି ଉପଲକ୍ଷେ ତିନୋଟି ସଙ୍କଳନ ପ୍ରକାଶ ପାଇଲାଣି । ପ୍ରଥମ ଭାଗରେ ମୁଖ୍ୟତଃ ଆଦିମ କଟକର ଇତିହାସ, ଦ୍ୱିତୀୟ ଭାଗରେ ମଧ୍ୟଯୁଗୀୟ କଟକ ଓ ପଞ୍ଚକଟକ ସହିତ ଆଧୁନିକ କଟକ ଏବଂ ଶେଷ ଭାଗରେ ସଂପୂର୍ଣ୍ଣ ଆଧୁନିକ କଟକ ପାଠକଙ୍କ ନିକଟରେ ଉନ୍ମୋଚିତ ହୋଇଛି । ଏଥିପାଇଁ ବହୁ ଗବେଷକ, ଲେଖକ, ଐତିହାସିକ ଏବଂ ଅନୁଷ୍ଠାନ ନିକଟକୁ ଦୌଡ଼ିବାକୁ ପଡ଼ିଛି, ତଥାପି ଯାହା ଏହି ସଙ୍କଳନଗୁଡ଼ିକରେ ସ୍ଥାନ ପାଇଛି ତାହା ମାତ୍ର ମୂଳଦୁଆ ବା ପ୍ରାଥମିକ କାର୍ଯ୍ୟ । ସେହି ବିଷୟଗୁଡ଼ିକରେ ସନ୍ନିବେଶିତ ତଥ୍ୟଗୁଡ଼ିକ ଯେ ସଂପୂର୍ଣ୍ଣ ଭାବେ ଠିକ୍ ତାହା କହିହେବ ନାହିଁ । ମନେହୁଏ—କିଛି ଭୁଲ ତଥ୍ୟ ମଧ୍ୟ ସଙ୍କଳନରେ ରହିଯାଇଛି । ଅବଶ୍ୟ ଏ ଭୁଲ ସ୍ୱେଚ୍ଛାକୃତ ଭୁଲ ନୁହେଁ, କାରଣ ଯେଉଁମାନେ ଗବେଷକ ନୁହଁନ୍ତି ସେମାନେ ଗବେଷଣାତ୍ମକ ନିବନ୍ଧ ରଚନା କଲେ ଯେଉଁ ଭ୍ରମ ରହିଯିବା କଥା ତାହାହିଁ ସ୍ୱାଭାବିକ୍ ଭାବେ ରହିଯାଇଛି ସଙ୍କଳନଗୁଡ଼ିକରେ । କିନ୍ତୁ ଏହି ଅନିଚ୍ଛାକୃତ ଭ୍ରମ ସତ୍ତ୍ୱେ ସଙ୍କଳନଗୁଡ଼ିକ ଯେ ବାସ୍ତବ କଟକ ଦର୍ଶନରେ ସହାୟକ ହେବ ଏଥିରେ ସନ୍ଦେହ ନାହିଁ ।

ଅଧିକନ୍ତୁ କଟକ ସମ୍ପର୍କିତ ତିନୋଟି ସଙ୍କଳନ ପ୍ରକାଶିତ ହୋଇଥିଲେ ମଧ୍ୟ ନଗର କଟକର ଆହୁରି ଅନେକ ବିଷୟ ବାଦ୍ ପଡ଼ିଯାଉଛି । ଯେଉଁଗୁଡ଼ିକୁ ସ୍ପର୍ଶକରି ହେଲା ନାହିଁ । ସେହିସବୁ ବିଷୟ ମଧ୍ୟରେ—ଶହୀଦଭବନ, ଟାଉନ୍‌ହଲ୍, ହାତୀପୋଖରୀ, ରାଣୀହାଟ, ଚୌଧୁରୀ ବଜାର, ମାଛୁଆ ବଜାର, ତେଲେଙ୍ଗା ବଜାର, ଓଡ଼ିଆ ବଜାର, କଟକର ମଠ, କେତେକ ଶ୍ରେଷ୍ଠବଡ଼ ଶିକ୍ଷାନୁଷ୍ଠାନ, ନେହେରୁ ଷ୍ଟାଡ଼ିୟମ୍, ବାରବାଟୀ ଷ୍ଟାଡ଼ିୟମ୍, କଟକର ରାସ୍ତାଘାଟ, ଜଳଯୋଗାଣ, ମହାନଦୀ ବିହାର, ମର୍କତ ନଗର, ସଣ୍ଟଗୁମ୍ଫା ଇତ୍ୟାଦି ପ୍ରଧାନ । ଏହାଛଡ଼ା ଏପରି ଅନେକ ବିଷୟ ରହିଛି ଯେଉଁଗୁଡ଼ିକ ଉପରେ ସ୍ୱତନ୍ତ୍ର ଭାବେ ଗବେଷଣାତ୍ମକ ନିବନ୍ଧ ରଚନା କରାଯାଇ ପାରିବ ।

ତଥାପି ଏ ସଙ୍କଳନ ଅପୂର୍ଣ୍ଣ ରହିଲେ ମଧ୍ୟ ଆଉ କଟକ ନଗର ଉପରେ ଚତୁର୍ଥ ଖଣ୍ଡ ପ୍ରକାଶ ପାଇବାର ସମ୍ଭାବନା ନାହିଁ । ଭବିଷ୍ୟତରେ ଏହାର ନୂତନ ସଂସ୍କରଣ ପ୍ରକାଶିତ ହେଲେ ବାଦ୍ ରହିଯାଇଥିବା ବିଷୟ ପ୍ରତି ଦୃଷ୍ଟି ଦିଆଯିବ ।

କିନ୍ତୁ ପୂର୍ବରୁ ପ୍ରକାଶିତ ଶ୍ରୀକ୍ଷେତ୍ର : ଶ୍ରୀଜଗନ୍ନାଥ, ଏକାମ୍ର କ୍ଷେତ୍ର, ନଗର କଟକ, ନଗର କଟକ ଓ ପଞ୍ଚକଟକ ସଙ୍କଳନଗୁଡ଼ିକରେ ସ୍ଥାନିତ ବିଷୟମାନ ଉତ୍କଳର ଇତିହାସ, ପରମ୍ପରା, କଳା ଓ ସ୍ଥାପତ୍ୟର ଗୁଣ କୀର୍ତ୍ତନ କରେ । ଏହି ବଡ଼ାନାସୀ କଟକ ବା କଟକ ଶହ ଶହ ବର୍ଷଧରି କଳିଙ୍ଗ, ଉତ୍କଳ ଓ ଓଡ଼ିଶାର ପ୍ରାଣକେନ୍ଦ୍ର ରୂପେ କାର୍ଯ୍ୟ କରିଛି, ତେଣୁ ତା'ର ଇତିହାସ ସହିତ ଓଡ଼ିଶାର ଇତିହାସ ଓ ଜୀବନଧାରା ଓତଃପ୍ରୋତ ରୂପେ ଜଡ଼ିତ ହେବା କଥା । ସେହି ଦୃଷ୍ଟିରୁ କଟକର ଇତିହାସ ଓ ଏ ସମ୍ପର୍କୀୟ ସଙ୍କଳନ ଯେପରି ଗୁରୁତ୍ୱପୂର୍ଣ୍ଣ ସେହିପରି ଆବଶ୍ୟକୀୟ ।

ଏଭଳି ସଙ୍କଳନ ପ୍ରକାଶ କରିବା କିମ୍ବା ସମ୍ପୃକ୍ତ ବ୍ୟକ୍ତିମାନଙ୍କ ଜୀବନୀ ଉପରେ ଆଧାରିତ ଜୀବନୀ ପୁସ୍ତକ ପ୍ରକାଶ କରିବା ଏକ ଆନନ୍ଦର କଥା । କିନ୍ତୁ ସେ ଆନନ୍ଦ ଆପେ ଆପେ ନିରାନନ୍ଦରେ ପରିଣତ ହୋଇଯାଉଛି । ଅକ୍ଳାନ୍ତ ପରିଶ୍ରମ କରି ଏଭଳି ସଙ୍କଳନ ପ୍ରକାଶ କରିବାର ଆଗ୍ରହ ଧୀରେ ଧୀରେ ଚୂର୍ଣ୍ଣ ହୋଇଯାଉଛି । ତାହାର କାରଣ ସମସ୍ତେ ଅନୁମାନ କରିପାରୁଥିବେ । କଥାରେ କହନ୍ତି—

"ଶ୍ରୋତା ବକତା କେହି ନାହିଁ
ବେଦନ କରୁ କାହିଁ ପାଇଁ ।"

ସେହି ସ୍ତରରେ ପାଠକ ନାହାନ୍ତି କି କ୍ରେତା ନାହାନ୍ତି । ଆମେ ପ୍ରାଣପଣେ ଉଦ୍ୟମ କରି ଏଭଳି ମୂଲ୍ୟବାନ ସଙ୍କଳନ ପ୍ରକାଶ କରିବାର ଆବଶ୍ୟକତା କଅଣ ? ବ୍ୟକ୍ତିଗତ ପାଠକମାନେ ଓଡ଼ିଶାର ସାଧୁସନ୍ଥ, ଓଡ଼ିଶାର ସାଂସ୍କୃତିକ ପରମ୍ପରା, ନଗର କଟକ, ନଗର କଟକ ଓ ପଞ୍ଚକଟକ କିମ୍ବା ଏକାମ୍ର କ୍ଷେତ୍ର ପ୍ରଭୃତି ପୁସ୍ତକ ଆପେ ଆପେ ଆଗ୍ରହର ସହିତ କ୍ରୟ କରିବାର ଦେଖାଯାଉ ନାହିଁ । ଏଣେ ସ୍କୁଲ, କଲେଜ ଜରିଆରେ ଯେଉଁ ପୁସ୍ତକ କ୍ରୟ କରାଯାଏ ଓ ରାଜା ରାମମୋହନ ଫାଉଣ୍ଡେସନ୍ ଜରିଆରେ ଯେଉଁ ପୁସ୍ତକ କ୍ରୟ କରାଯାଏ ସେଭଳି କ୍ରୟ ବିଗତ ପ୍ରାୟ ୮ ବର୍ଷ ଭିତରେ ଉତ୍କଳ ପାଠକ ସଂସଦ ଦ୍ୱାରା ପ୍ରକାଶିତ ପୁସ୍ତକରୁ ଖଣ୍ଡିଏ ନହେଲ ହୋଇ ନାହିଁ । ଏହା ସଙ୍କଳକ ତଥା ପ୍ରକାଶକଙ୍କୁ କିପରି ଆଘାତ ଦେଉଥିବ ତାହା ସହଜରେ ଅନୁମେୟ ।

କେହି କେହି କହୁଛନ୍ତି ଅମୁକ କାରଣ ଯୋଗୁଁ କିମ୍ବା ସମୁକ କାରଣ ଯୋଗୁଁ ପୁସ୍ତକ କ୍ରୟ ହେଉ ନାହିଁ । ଏପରି ଯେକୌଣସି କାରଣ ହେଉନା କାହିଁକି ପରିଣତିରେ ପୁସ୍ତକଗୁଡ଼ିକ ବିକ୍ରୀ ହୋଇ ପାରୁନାହିଁ, କେବଳ ଗ୍ରନ୍ଥସଂଗ୍ରହୀଙ୍କ ବିଭିନ୍ନ ପ୍ରତିଯୋଗିତାରେ ସେଗୁଡ଼ିକୁ ପୁରସ୍କାର ଆକାରରେ ଦେବା ବ୍ୟତୀତ ଆଉ ଅନ୍ୟ ପନ୍ଥା ନାହିଁ ।

ତାହାହେଲେ ବିଜ୍ଞ ପାଠକେ କୁହନ୍ତୁ ଆମେ କ'ଣ କରିବୁ ? ଅବଶ୍ୟ ଏକଥା ଠିକ୍ ଯେ ପୁସ୍ତକ ପ୍ରକାଶ ପାଇଁ କେହି ଆମକୁ ବାଧ୍ୟ କରୁନାହିଁ କିମ୍ବା ଆମେ ଏଭଳି

'ପୁସ୍ତକ ପ୍ରକାଶ ନ କଲେ ଓଡ଼ିଶା ରସାତଳଗାମୀ ହୋଇଯିବ ନାହିଁ । କିନ୍ତୁ ଓଡ଼ିଆ ଜାତିର ମଙ୍ଗଳ ପାଇଁ ଓ ଓଡ଼ିଆ ଭାଷା ତଥା ସଂସ୍କୃତିର ଉନ୍ନତି ପାଇଁ ଯେ ଏଭଳି ପୁସ୍ତକର ଆବଶ୍ୟକତା ଅଛି ଏଥିରେ ସନ୍ଦେହ ନାହିଁ ।

ସବୁଠାରୁ ଦୁଃଖ ହେଉଛି ଯେ ଜୀବନୀ ସମ୍ବଳିତ ଯେଉଁ କ୍ଷୁଦ୍ର କ୍ଷୁଦ୍ର ପୁସ୍ତକ ପ୍ରକାଶିତ ହେଉଛି ସେଗୁଡ଼ିକ ମଧ୍ୟ ବିକ୍ରୀ ହେଉ ନାହିଁ । ଏହି ପୁସ୍ତକଗୁଡ଼ିକରେ ଯେଉଁ କଳାକାର, ଲେଖକ, ଶିଳ୍ପୀ, ଅଭିନେତା, ସାମ୍ବାଦିକ, ଜନସେବୀ, ଗବେଷକ, ନୃତ୍ୟ ଶିଳ୍ପୀ ପ୍ରଭୃତି ମହାନ୍ ବ୍ୟକ୍ତିଙ୍କ ଜୀବନୀ ପ୍ରକାଶିତ ହେଉଛି ତାହା ଏକ ଦୁର୍ଲଭ କାର୍ଯ୍ୟ ବୋଲି ଅନେକ ବିଜ୍ଞ ବ୍ୟକ୍ତି ମୁକ୍ତକଣ୍ଠରେ ସ୍ୱୀକାର କରୁଛନ୍ତି । କିନ୍ତୁ ଏହି ସ୍ୱୀକାରୋକ୍ତିର କୌଣସି ଫଳ ମିଳୁନାହିଁ ।

ତେବେ ଯେ ଯାହାହେଉ, ରୌପ୍ୟ ଜୟନ୍ତୀ ଅବସରରେ ହତାଶ ହେବା ଏକ ଶୁଭ ଲକ୍ଷଣ ନୁହେଁ । ଆଉ କିଛିଦିନ ଏଭଳି ଉଦ୍ୟମ ଜାରି ରଖିବା ପାଇଁ ଆମେ ଯାରୁପର୍ଯ୍ୟନ୍ତ ଚେଷ୍ଟା କରିବୁ, ସେଥିପାଇଁ ଭବିଷ୍ୟତର ଯୋଜନା ହେଲା— ନାଭିଗୟା କ୍ଷେତ୍ର, ତୁଳସୀ କ୍ଷେତ୍ର ଏବଂ ଅର୍କକ୍ଷେତ୍ରର ବିଷୟଗୁଡ଼ିକୁ ଏକତ୍ର କରି ଗୋଟିଏ ବିଶେଷ ସଙ୍କଳନରେ ପ୍ରକାଶ କରିବୁ । ଏହି ସଙ୍କଳନରେ ମୁଖ୍ୟତଃ ମା' ବିରଜା, ବିରଜନାଥ, ବୈତରଣୀ, ସନ୍ଥମାଧବ, ସିଦ୍ଧେଶ୍ୱର, ଶୁଭସ୍ତମ୍ଭ, ତ୍ରିଲୋଚନେଶ୍ୱର, ନାଭିଗୟା, ଦଶାଶ୍ୱମେଧ ଘାଟ, ବାରୁଣୀ ମେଳା, ସପ୍ତମାତୃକା, ବଳଦେବଜୀଉ, ଚନ୍ଦ୍ରଭାଗା, କୋଣାର୍କ ଏବଂ ସେହିଭଳି ଅନ୍ୟାନ୍ୟ ଅନେକ ବିଷୟରେ ଆଲୋଚିତ ହେବ । ବିଜ୍ଞ ଲେଖକମାନେ ଆଜଠାରୁ ପ୍ରସ୍ତୁତ ହେଲେ ଆଗାମୀ ବର୍ଷ ଏହି କାର୍ଯ୍ୟଟି ସୁରୁଖୁରୁରେ ସମାହିତ ହୋଇପାରିବ ।

ବିଶେଷତଃ ରୌପ୍ୟ ଜୟନ୍ତୀର ବର୍ଷବ୍ୟାପୀ କାର୍ଯ୍ୟକ୍ରମର ଶେଷ ଉତ୍ସବରେ ଏହି ସଙ୍କଳନଟି ପ୍ରକାଶିତ ହେବ ବୋଲି ଆମେ ସ୍ଥିର କରିଛୁ ।

ଏଠାରେ ଆଉ ପଦେ କଥା କହିବାକୁ କୁଣ୍ଠାନାହିଁ । ଏହି "ଆଧୁନିକ ନଗର କଟକ" ସଙ୍କଳନ ପାଇଁ ଆହୁରି ଅନେକ ଲେଖା ଆମର ହସ୍ତଗତ ହୋଇଥିଲା, କିନ୍ତୁ ସଙ୍କଳନର କଳେବର ଦୃଷ୍ଟିରୁ ସେ ସମସ୍ତ ଲେଖାକୁ ସଙ୍କଳନରେ ସ୍ଥାନ ଦିଆଯାଇ ପାରିଲା ନାହିଁ । ଏଥିପାଇଁ ଲେଖକ ବନ୍ଧୁମାନେ ଆମକୁ କ୍ଷମା କରିବେ । ଆମେ ଛପା ନ ଯାଇ ପାରୁଥିବା ସେହି ଲେଖାଗୁଡ଼ିକୁ ଲେଖକମାନଙ୍କ ନିକଟକୁ ପଠାଇ ଦେବାର ବ୍ୟବସ୍ଥା କରିବୁ, ଏଥିପାଇଁ ପୁଣି ଥରେ କ୍ଷମା ମାଗି ନେଉଛୁ । ଦୋଷ ନେବେ ନାହିଁ ।

। ଇତି ।

**ବ୍ରଜମୋହନ ମହାନ୍ତି**

# ସୂଚୀପତ୍ର

# ସ୍ୱାଧୀନତା ଆନ୍ଦୋଳନର ଇତିହାସ ପୃଷ୍ଠାରେ କଟକ ନଗରୀ

ଡକ୍ଟର ଜଗନ୍ନାଥ ପଟ୍ଟନାୟକ

କଟକ ନଗରୀର ପ୍ରତିଷ୍ଠାଠାରୁ ୧୯୪୭ର ସ୍ୱାଧୀନତା ପ୍ରାପ୍ତି ପର୍ଯ୍ୟନ୍ତ କଟକ ଏକ ଗୌରବ ଗାରିମାମୟ ଐତିହ୍ୟ ଓ ପରମ୍ପରାର ସ୍ୱାକ୍ଷର ବହନ କରି ଯୁଗ ଯୁଗେ ଓଡ଼ିଶା ଇତିହାସକୁ ପରିପୁଷ୍ଟ କରି ଆସିଥିଲା । ବିଶେଷତଃ ଐତିହାସିକ ସ୍ୱାଧୀନତା ଆନ୍ଦୋଳନରେ କଟକ ନଗରୀର ଭୂମିକା ଥିଲା ତାତ୍ପର୍ଯ୍ୟପୂର୍ଣ୍ଣ । ସଂକ୍ଷିପ୍ତ ଧାରାବାହିକ ଇତିହାସ ନିମ୍ନରେ ପ୍ରଦତ୍ତ ହେଲା ।

## ଯୁଗାନ୍ତକାରୀ ୧୮୫୭ର ମହାନ ବିଦ୍ରୋହରେ କଟକ ନଗରୀ :

ସ୍ୱାଧୀନତା ଆନ୍ଦୋଳନ ନାଟକର ପ୍ରଥମ ଦୃଶ୍ୟ ଉନ୍ମୋଚିତ ହୁଏ ୧୮୫୭ ମସିହାରେ । ସେହିବର୍ଷ ଇଂରେଜ ବିରୁଦ୍ଧରେ ସଂଘଟିତ ମହାନ ବିଦ୍ରୋହକୁ ଇଂରେଜ ଐତିହାସିକଗଣ ସିପାହୀ ବିଦ୍ରୋହ ଆଖ୍ୟା ଦେଇଥିଲେ ମଧ୍ୟ ଏହା ଯେ ଥିଲା ପ୍ରଥମ ଭାରତୀୟ ସ୍ୱାଧୀନତା ସଂଗ୍ରାମ, ଏଥିରେ ସନ୍ଦେହ ନାହିଁ । ତା'ର ବଳିଷ୍ଠ ପ୍ରମାଣ ଏସ୍.ଏନ୍. ସେନ ଙ୍କ ଦ୍ୱାରା ଲିଖିତ ଏଇଟିନ୍ ଫିଫ୍ଟି ସେଭେନ୍ (Eighteen fifty Seven) ପୁସ୍ତକରେ ସନ୍ନିବେଶିତ । ସେ ଯାହାହେଉ ଭାରତବର୍ଷର ଅନ୍ୟାନ୍ୟ ଅଞ୍ଚଳ ପରି ଏହି ୧୮୫୭ର ସଂଗ୍ରାମରେ ଓଡ଼ିଶାର ଭୂମିକା ଥିଲା ଉଲ୍ଲେଖନୀୟ । ସେପରି ସ୍ଥଳେ କଟକ ନଗରୀ ବା ସେଥିରୁ ବହିର୍ଭୂତ ହୋଇ ଆସନ୍ତା କିପରି ?

୧୮୫୭ ମସିହା ମେ ୧୦ ତାରିଖ ଦିନ ମିରଟଠାରେ ସିପାହୀ (ଇଂରେଜ ସେନାବାହିନୀରେ ନିଯୁକ୍ତ ଭାରତୀୟ ସୈନ୍ୟ)ମାନେ ବିଦ୍ରୋହ ଉନ୍ମୋଚନ କରିବା ପରେ ପରେ କଟକରେ ଅବସ୍ଥାପିତ ତତ୍କାଳୀନ ଇଂରେଜ କମିଶନର ଜି. ଏଫ୍. କକବର୍ଣ୍ଣଙ୍କୁ ବଙ୍ଗଳାର ଲେଫ୍ଟନାଣ୍ଟ ଗଭର୍ଣ୍ଣର କଲିକତାକୁ ଡକାଇ ନେଇ ଓଡ଼ିଶାରେ ବିଶେଷତଃ କଟକ, ପୁରୀ ଓ ବାଲେଶ୍ୱରରେ ବିଭିନ୍ନ ସତର୍କତାମୂଳକ ପଦକ୍ଷେପ ଗ୍ରହଣ କରିବା ଦିଗରେ ପରାମର୍ଶ ଦେଇଥିଲେ । ସେଠାରୁ ଫେରି କମିଶନର ପ୍ରଥମେ କଟକରେ

ଅବସ୍ଥାପିତ ମାଜିଷ୍ଟ୍ରେଟଙ୍କୁ ଏ ବିଷୟରେ ଅବଗତ କରାଇଥିଲେ । ସେତେବେଳେ ବିଦ୍ରୋହୀମାନେ ବିଭିନ୍ନ ଜେଲ ଭାଙ୍ଗି କଏଦୀମାନଙ୍କୁ ମୁକ୍ତ କରାଉ ଥିବାର ପଦକ୍ଷେପ ଗ୍ରହଣ କରୁଥିବାରୁ କଟକର ମାଜିଷ୍ଟ୍ରେଟ ୧୮୫୭ ମସିହା ମେ ୩୦ ତାରିଖ ଦିନ କଟକ ନଗରର ଅଫିସର କମାଣ୍ଡିଂଙ୍କୁ ଏକ ପତ୍ର ଦ୍ୱାରା ଅନୁରୋଧ କରିଥିଲେ ଯେ କଟକ ଜେଲକୁ ଜଗିବା ପାଇଁ ସେ କିଛି ଗାର୍ଡ ବା ଜମୁଆଲୀଙ୍କୁ ଅବସ୍ଥାପିତ କରାଇବେ । ତାହା ମଧ୍ୟ କରାଯାଇଥିଲା ।

ଇତିମଧ୍ୟରେ କଟକ କମିଶନରଙ୍କ ନିକଟରେ ସନ୍ଦେଶ ମିଳିଥିଲା ଯେ ଉତ୍ତର ଭାରତରୁ ପ୍ରାୟ ୫୦ ଜଣ ବିତାଡ଼ିତ ସିପାହୀ ଓଡ଼ିଶାକୁ ଆସିଛନ୍ତି ବିଦ୍ରୋହ ପରିଚାଳନା କରିବା ପାଇଁ । ସେମାନେ ପୁରୀରେ ପହଞ୍ଚି ଥିବାର ସନ୍ଦେହ କରାଯାଇ ସେଠାକାର ମାଜିଷ୍ଟ୍ରେଟଙ୍କୁ ସତର୍କତାମୂଳକ ପଦକ୍ଷେପ ଗ୍ରହଣ କରିବା ପାଇଁ କଟକସ୍ଥିତ କମିଶନର ଚିଠିଟିଏ ଲେଖିଥିଲେ । ବାହାରୁ କେହି ଆସିଥିବାର ସନ୍ଦେହ କରାଗଲେ ତାଙ୍କୁ ଅଟକ ରଖି ସେମାନଙ୍କ ବିଷୟରେ ତଥ୍ୟ ସଂଗ୍ରହ କରିବା ପାଇଁ ମଧ୍ୟ ଚିଠିରେ ନିର୍ଦ୍ଦେଶ ଥିଲା । ଅନୁରୂପ ଚିଠିଟିଏ ମଧ୍ୟ କଟକସ୍ଥିତ ମାଜିଷ୍ଟ୍ରେଟଙ୍କୁ ଲେଖାଯାଇଥିଲା । ଏପରିକି କୌଣସି ସନ୍ନ୍ୟାସୀ, ଫକୀର, ବୈରାଗୀଙ୍କୁ ଦେଖିଲେ ତାଙ୍କ ପ୍ରତି ଏହି ନିୟମ ଲାଗୁ କରାଯିବାର ନିର୍ଦ୍ଦେଶ ରହିଥିଲା ।

ଦିନେ କଟକସ୍ଥିତ କେଣ୍ଟୋନମେଣ୍ଟ ଭିତରେ ତିନିଜଣ ଯୋଗୀ ଓ ବୈରାଗୀ ଭିକ୍ଷା ମାଗୁଥିବାର ଦେଖି ସେମାନଙ୍କୁ ଧରି ନିଆଯାଇଥିଲା । ସେମାନେ ଥିଲେ ଅଙ୍କୁରନାଥ, ହୀରାନାଥ ଓ ଦୁର୍ଗାନାଥ । ସେମାନଙ୍କର ପ୍ରକୃତ ପରିଚୟ ଜାଣିବା ଉଦ୍ଦେଶ୍ୟରେ ସେମାନଙ୍କୁ ଅଟକ ରଖାଯାଇ ବହୁ ଧମକ ଚମକ ଦିଆଯାଇଥିଲା । ମାତ୍ର ପ୍ରକୃତରେ ସେମାନେ ଭିକ୍ଷାବୃତ୍ତି ଅବଲମ୍ବନ କରୁଥିବା ତିନି ଜଣ ବୈରାଗୀ ଥିବାର ଜଣାପଡ଼ିବାରୁ ତାଙ୍କୁ ମୁକ୍ତ କରି ଦିଆଯାଇଥିଲା । ୧୮୫୭ ବିଦ୍ରୋହରେ କଟକର ଭୂମିକା ସେତିକିରେ ପରିସମାପ୍ତି ଘଟି ନଥିଲା । ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ବିଦ୍ରୋହ ଆଚରଣ କରିଥିବା ବ୍ୟକ୍ତିଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଥିଲା ଏହି କଟକରୁ ।

ବାଲିଆର ଲବ୍ଧପ୍ରତିଷ୍ଠ ଜମିଦାର ରାମକୃଷ୍ଣ ସାମନ୍ତ ସିଂହାର ଉକ୍ତ ଅଞ୍ଚଳର ଖଣ୍ଡାୟତମାନଙ୍କୁ ଏକତ୍ରିତ କରାଇ ସେହି ୧୮୫୭ରେ ଏକ ବିଦ୍ରୋହ ଘୋଷଣା କରିଥିଲେ । ଇଂରେଜମାନଙ୍କୁ କର ନ ଦେବା ସମେତ ବହୁ ପ୍ରକାର ଇଂରେଜ ବିରୋଧୀ ପଦକ୍ଷେପ ଗ୍ରହଣ କରିଥିବାର ଖବର ପାଇ କଟକର ମାଜିଷ୍ଟ୍ରେଟ ଏ ବିଷୟରେ ଅନୁସନ୍ଧାନ କରିବା ପାଇଁ କଟକରୁ ଜଣେ ଦାରୋଗାଙ୍କୁ ବାଲିଆକୁ ପ୍ରେରଣ କରିଥିଲେ । ଅନୁସନ୍ଧାନ ପରେ ରାମକୃଷ୍ଣଙ୍କର ଆକ୍ରମଣାତ୍ମକ ମନୋଭାବର ପରିଚୟ ମିଳିଥିଲା । ତେଣୁ କଟକର ମାଜିଷ୍ଟ୍ରେଟଙ୍କ ପରାମର୍ଶ କ୍ରମେ ରାମକୃଷ୍ଣ ଓ ତାଙ୍କର ଦୁଇଜଣ ସହ-ଯୋଗୀଙ୍କୁ ଗିରଫ କରାଯାଇ କଟକ ନିଆଯାଇଥିଲା । ସହଯୋଗୀ ଦୁଇଜଣ ଥିଲେ

ଧାନବନ୍ଧୁ ମହାପାତ୍ର ଓ ଉପେନ୍ଦ୍ର ଜେନା । ସେମାନଙ୍କୁ କଟକ ଜେଲରେ ଅଟକ କରି ରଖାଯାଇଥିଲା । କମିଶନରଙ୍କ ଆଦେଶ କ୍ରମେ ପରେ ପରେ ସେମାନଙ୍କୁ କଟକର ଦୌରାଜଜ୍ ଜେ. ଜେ ଓ୍ୱାର୍ଡ ବିଚାର କରିଥିଲେ । ଇଷ୍ଟଇଣ୍ଡିଆ କମ୍ପାନୀ ବିରୋଧରେ ଯୁଦ୍ଧ ପାଇଁ ଏକ ଷଡ଼ଯନ୍ତ୍ରର ରଚନା ଥିଲା ସେମାନଙ୍କର ଅପରାଧ । ତେଣୁ ୧୮୫୭ ମସିହା ଅଗଷ୍ଟ ୩୧ ତାରିଖ ଦିନ ସେମାନଙ୍କର ଐତିହାସିକ ବିଚାର ଆରମ୍ଭ ହୋଇଥିଲା । ବିଚାରରେ ରାମକୃଷ୍ଣ ସାମନ୍ତସିଂହାର ଓ ଧାନବନ୍ଧୁ ମହାପାତ୍ରଙ୍କୁ ଦୋଷୀ ସାବ୍ୟସ୍ତ କରାଯାଇ ପ୍ରତ୍ୟେକଙ୍କୁ ପାଞ୍ଚ ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ଦିଆଯାଇଥିଲା । ମାତ୍ର ଉପେନ୍ଦ୍ର ଜେନାଙ୍କୁ ଖଲାସ କରି ଦିଆଯାଇଥିଲା ।

ପାଞ୍ଚ ବର୍ଷ କାରାଦଣ୍ଡ ଆଦେଶ ହୋଇଥିଲେ ମଧ୍ୟ ରାମକୃଷ୍ଣ ଓ ଧାନବନ୍ଧୁ କଟକ ଜେଲରେ ମାତ୍ର ଏକବର୍ଷ ରହିଥିଲେ । କାରଣ ୧୮୫୭ର ବିଦ୍ରୋହ ଦମନ ପରେ ୧୮୫୮ ମସିହାରେ ଇଂରେଜ ସରକାର ଭାରତର ସମସ୍ତ ବନ୍ଦୀଙ୍କୁ ଖଲାସ କରିଦେବାର ନିଷ୍ପତ୍ତି କାର୍ଯ୍ୟକାରୀ ହେବା ଫଳରେ ସେମାନଙ୍କୁ ମୁକ୍ତ କରି ଦିଆଯାଇଥିଲା । କେବଳ ସେତିକି ନୁହେଁ, ସେହି ୧୮୫୭ର ମହାନ୍ ବିଦ୍ରୋହ ସମୟରେ ସମ୍ବଲପୁରର ପ୍ରଖ୍ୟାତ ନେତା ସୁରେନ୍ଦ୍ର ସାଏଙ୍କୁ ଦମନ କରିବାର ବିଭିନ୍ନ ପଦକ୍ଷେପ ମଧ୍ୟରୁ କେତେକ ପଦକ୍ଷେପ କଟକରୁ ଗ୍ରହଣ କରାଯାଇଥିଲା ।

ସମ୍ବଲପୁରରେ ବିଦ୍ରୋହ ଦମନ କରିବା ପାଇଁ ଆଦେଶପ୍ରାପ୍ତ ହୋଇ କମିଶନର ଜି. ଏଫ୍. କକବର୍ଣ୍ଣ ୧୮୫୭ ମସିହା ଅକ୍ଟୋବର ୧୦ ତାରିଖ ଦିନ କଟକରେ ଅବସ୍ଥାପିତ କେତୋଟି ଇଂରେଜ ସେନା କମ୍ପାନୀ ମଧ୍ୟରୁ ୩ଟି (40th MNI) କମ୍ପାନୀ ସମ୍ବଲପୁରକୁ ପ୍ରେରଣ କରିଥିଲେ । ଏତଦ୍‌ବ୍ୟତୀତ ପାଇକ କମ୍ପାନୀରୁ ୫୧ ଜଣ ବ୍ୟକ୍ତିଙ୍କୁ କଟକରୁ ସମ୍ବଲପୁରକୁ ପ୍ରେରଣ କରାଯାଇଥିଲା । ସେତେବେଳେ ଇଂରେଜମାନେ ଓଡ଼ିଶାର ପାଇକମାନଙ୍କୁ ନେଇ ଏକ ସେନା କମ୍ପାନୀ ଗଠନ କରିଥିଲେ । ଏଥିରେ ଜଣେ ଅଧିନାୟକ (Commander), ଜଣେ ସର୍ଜେଣ୍ଟ ମେଜର, ୮ ଜଣ ସୁବାଦାର, ୫ ଜଣ ଜମାଦାର, ୨୫ ଜଣ ହାଭିଲଦାର, ୨୫ ଜଣ ନାଏବ, ୫ ଜଣ ବିଗୁଲ ବାଦକ, ଜଣେ ସ୍ଥାନୀୟ ଡାକ୍ତର ଏବଂ ୪୦୦ ଜଣ ସିପାହୀ ରହିଥିଲେ ଏବଂ ଏହା କଟକରେ ହିଁ ଅବସ୍ଥାପିତ ହୋଇଥିଲା । ସେତେବେଳେ ଏହାର ଅଧିନାୟକ (Officer Commanding) ଥିଲେ ଲେଫ୍‌ଟେନାଣ୍ଟ ବ୍ଲାଣ୍ଟ । ମାତ୍ର ସମ୍ବଲପୁରକୁ ପ୍ରେରିତ ହୋଇଥିବା ୫୧ ଜଣ ସିପାହୀଙ୍କର ଅଧିନାୟକ ଥିଲେ କ୍ୟାପଟେନ୍ ନକର୍ । ଅବଶ୍ୟ ସେହି ୫୧ ଜଣଙ୍କୁ ଯୁଦ୍ଧ କରିବା ପାଇଁ ଯେ ପଠାଯାଇଥିଲା, ତା' ନୁହେଁ, ସମ୍ବଲପୁରରେ ଅବସ୍ଥାପିତ ଇଂରେଜ ସେନାବାହିନୀର ଅନ୍ୟାନ୍ୟ ଘରୋଇ କାର୍ଯ୍ୟ ସମ୍ପାଦନ କରିବା ଦିଗରେ ସେମାନଙ୍କୁ ନିଯୁକ୍ତ କରାଯାଇଥିଲା । ସମ୍ଭବତଃ ସେମାନେ ଓଡ଼ିଶାର ଅଧିବାସୀ ହୋଇଥିବାରୁ ଇଂରେଜ କର୍ମକର୍ତ୍ତା ପାଇକମାନଙ୍କ ଉପରେ ସମ୍ପୂର୍ଣ୍ଣ ରୂପେ ଆସ୍ଥା ସ୍ଥାପନ କରିପାରି ନଥିଲେ ।

ଯେ ମାହାତ୍ମେଉ, ପରେ ପରେ କମିଶନର କକବର୍ଣ୍ଣଙ୍କ ଆଦେଶ କ୍ରମେ କଟକର ଅଧିନାୟକ (Officer Commanding) ମେଜର ବେଟ୍ସ ସମ୍ବଲପୁରକୁ କଟକର ଅନ୍ୟ ଦୁଇଜଣ ସାମରିକ ଅଫିସରଙ୍କୁ ପ୍ରେରଣ କରିଥିଲେ । ସେମାନେ ଥିଲେ କ୍ୟାପଟେନ୍ ଉଡ଼ବ୍ରିଜ୍ ଓ ଲେଫ୍ଟେନାଣ୍ଟ ହାଲନ୍ସ । ସମ୍ବଲପୁରର ଇଂରେଜମାନଙ୍କର ଅବସ୍ଥା ଶୋଚନୀୟ ହୋଇ ପଡ଼ିବାରୁ ଶେଷରେ କଟକସ୍ଥିତ ସେନାଧିନାୟକ ମେଜର ବେଟ୍ସ ୧୮୫୭ ମସିହା ଡିସେମ୍ବର ୭ ତାରିଖ ଦିନ ଅନ୍ୟ ଦୁଇଟି କମ୍ପାନୀ ଧରି ସମ୍ବଲପୁରରେ ପହଞ୍ଚିଥିଲେ । ଏହା ସତ୍ତ୍ୱେ ସୁରେନ୍ଦ୍ର ସାଏଙ୍କୁ କବଳିତ କରିବା ସହଜସାଧ୍ୟ ହୋଇପାରି ନ ଥିଲା । ଇତିମଧ୍ୟରେ ଇଂରେଜ କର୍ତ୍ତୃପକ୍ଷ ଉପଲବ୍ଧି କରିଥିଲେ ଯେ ଛୋଟନାଗପୁରଠାରୁ ସମ୍ବଲପୁରରେ ଅବସ୍ଥାପିତ ଇଂରେଜ ସେନାବାହିନୀଙ୍କୁ ନିୟନ୍ତ୍ରଣ କରିବା କଷ୍ଟସାଧ୍ୟ ହୋଇପଡ଼ୁଛି । ସେତେବେଳେ ସମ୍ବଲପୁର, ମଧ୍ୟପ୍ରଦେଶ ଅନ୍ତର୍ଗତ ଛୋଟନାଗପୁର କମିଶନରଙ୍କର ଶାସନାଧୀନ ହୋଇ ରହିଥିଲା । ତେଣୁ ଅସ୍ଥାୟୀ ଭାବରେ ସମ୍ବଲପୁରକୁ କଟକ କମିଶନରଙ୍କ ଅଧୀନରେ ଅବସ୍ଥାପିତ କରାଯାଇଥିଲା । ଏହିପରି ଭାବେ ସମ୍ବଲପୁରର ଶାସନକାର୍ଯ୍ୟ କଟକରୁ ନିୟନ୍ତ୍ରିତ କରାଯାଇଥିଲା ।

ସମ୍ବଲପୁରର ଶାସନ କ୍ଷମତାରେ କଟକର କମିଶନର ଜି ଏଫ୍. କକବର୍ଣ୍ଣ ସର୍ବେସର୍ବା ହୋଇଥିଲେ । ଏପରି ସ୍ଥଳେ ସୁରେନ୍ଦ୍ର ସାଏଙ୍କର କାର୍ଯ୍ୟକଳାପକୁ ଆୟତ୍ତାଧୀନ କରିବା ପାଇଁ ଜି ଏଫ୍ କକବର୍ଣ୍ଣ ନିଜେ କଟକରୁ ବାହାରି ୧୮୫୮ ମସିହା ଜାନୁୟାରୀ ୨୦ ତାରିଖ ଦିନ ସମ୍ବଲପୁରରେ ପହଞ୍ଚିଥିଲେ । ତାଙ୍କର ଉପସ୍ଥିତି ଓ ଦକ୍ଷ ନିୟନ୍ତ୍ରଣ ଫଳରେ ଅବସ୍ଥାର ଦ୍ରୁତ ପରିବର୍ତ୍ତନ ଘଟିଥିଲା । ସୁରେନ୍ଦ୍ର ସାଏ ଓ ତାଙ୍କର ଅନୁଗାମୀମାନେ ପରାଜୟର ସମ୍ମୁଖୀନ ହୋଇଥିଲେ । ଇଂରେଜମାନଙ୍କର ଅବସ୍ଥା ଉନ୍ନତ ହେବାରୁ ଜି. ଏଫ୍ କକବର୍ଣ୍ଣ କଟକ ଫେରିଆସିଥିଲେ । ପରେ ପରେ ବିଦ୍ରୋହୀମାନଙ୍କୁ ବନ୍ଦୀକରି ସମ୍ବଲପୁର ଜେଲରେ ରଖାଯାଇଥିଲା । ସେମାନଙ୍କର ସଂଖ୍ୟା ଥିଲା ୩୦୦ । କିନ୍ତୁ ସମ୍ବଲପୁର ଜେଲରେ ମାତ୍ର ୮୦ ଜଣଙ୍କ ପାଇଁ ସ୍ଥାନ ଥିବାରୁ ସେମାନଙ୍କ ମଧ୍ୟରୁ ୧୦୦ ଜଣଙ୍କୁ କଟକ ଜେଲକୁ ସ୍ଥାନାନ୍ତରିତ କରାଯାଇ ଥିଲା । ସେମାନଙ୍କ ମଧ୍ୟରୁ ୪୦ ଜଣଙ୍କୁ କଟକ ଜେଲରେ ୫୦ କରି ବେତ ପ୍ରହାର କରାଯିବାର ଦଣ୍ଡବିଧାନ କରାଯାଇଥିଲା । ଏହି ଦଣ୍ଡବିଧାନ କରିଥିଲେ ଜି: ଏଫ୍: କକବର୍ଣ୍ଣ କଟକକୁ ଫେରିବା ପରେ ତାଙ୍କ ସ୍ଥାନରେ ସମ୍ବଲପୁରରେ ନବ ନିଯୁକ୍ତ କମିଶନର କର୍ଣ୍ଣେଲ ଫରଷ୍ଟର ।

ବେତ ପ୍ରହାର କରିବାର ଦଣ୍ଡ ଅମାନୁଷିକ ବୋଲି କହି କଟକର ମାଜିଷ୍ଟ୍ରେଟ ଏହାର ବିରୋଧ କରିବା ସଙ୍ଗେ ସଙ୍ଗେ କଟକର କମିଶନର ଜି: ଏଫ୍: କକବର୍ଣ୍ଣଙ୍କୁ ଏ ବିଷୟରେ ପ୍ରଭାବିତ କରିଥିଲେ । ଫଳରେ ସେ ୧୮୫୮ ମସିହା ଜୁନ ୧୩ ତାରିଖ ଦିନ କର୍ଣ୍ଣେଲ ଫରଷ୍ଟରଙ୍କୁ ଚିଠି ଲେଖି ଜଣାଇଥିଲେ ଯେ ବେତ ପ୍ରହାର ଏକ ଗୁରୁତର

ଓ ଅମାନୁଷିକ ଦଣ୍ଡ । ତେଣୁ ଏହାକୁ କେବେ ହେଲେ କାର୍ଯ୍ୟକାରୀ କରାଯିବ ନାହିଁ । ଏ ପ୍ରକାର କଠୋର ଶବ୍ଦ ପ୍ରୟୋଗ କରାଯାଇଥିବା ଚିଠି ପଢ଼ି କଣ୍ଟ୍ରୋଲ ସରଷ୍ଟର ଉକ୍ତ ଦଣ୍ଡବିଧାନ ଆଦେଶ ପ୍ରତ୍ୟାହାର କରି ନେଇଥିଲେ । ତା' ପରେ ସମ୍ବଲପୁରକୁ କଟକ କମିଶନରଙ୍କ ଅଧୀନରୁ ବାହାର କରି ନିଆଯାଇ ଗ୍ରେଟ ନାଗପୁର କମିଶନରଙ୍କ ଅଧୀନରେ ରଖା ଯାଇଥିଲା ।

ଏହା ଥିଲା ୧୮୫୭ ମସିହାର ପ୍ରଥମ ସ୍ୱାଧୀନତା ସଂଗ୍ରାମରେ କଟକନଗରୀର ଭୂମିକା । ଅବଶ୍ୟ ବହୁ କ୍ଷେତ୍ରରେ କଟକ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରି ନ ଥିଲା । ତଥାପି ଏ ସମ୍ପର୍କୀୟ ବହୁ ଘଟଣାର ନୀରବଦ୍ରଷ୍ଟା ହୋଇଥିଲା କଟକନଗରୀ ।

## ଓଡ଼ିଶାରେ ଜାତୀୟତାବାଦ ସୃଷ୍ଟି କରିବା ଦିଗରେ କଟକନଗରୀର ଭୂମିକା :

ପ୍ରଥମ ସ୍ୱାଧୀନତା ସଂଗ୍ରାମ ପରେ ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ପର୍ଯ୍ୟନ୍ତ ଅତିବାହିତ ହୋଇଥିବା ସମୟ ଥିଲା ଭାରତର ସ୍ୱାଧୀନତା ଆନ୍ଦୋଳନରେ ଅପେକ୍ଷାକୃତ ଶାନ୍ତିର ସମୟ । ଏହି ସମୟ ମଧ୍ୟରେ ଭାରତୀୟଙ୍କ ହୃଦୟରେ ଜାତୀୟତାବାଦ ସୃଷ୍ଟି କରିବା ପାଇଁ ଭାରତର ବିଭିନ୍ନ ଅଞ୍ଚଳରେ ବହୁ ପଦକ୍ଷେପ ଗ୍ରହଣ କରାଯାଇଥିଲା । ସେଥିରୁ ଓଡ଼ିଶା ମଧ୍ୟ ବହିର୍ଭୂତ ହୋଇ ନ ଥିଲା ଏବଂ ଏ ଦିଗରେ କଟକନଗରୀ ହୋଇଥିଲା କେନ୍ଦ୍ରବିନ୍ଦୁ ଓ ପ୍ରଧାନ ପୀଠସ୍ଥଳୀ ।

ଦୀର୍ଘ ଏକଶତ ବର୍ଷ ଧରି ଭାରତୀୟମାନେ ଇଂରେଜ ଶାସନାଧୀନ ହୋଇ ରହିବା ଫଳରେ ଜାତୀୟ ଚେତନା ବିକଶିତ ହୋଇପାରି ନ ଥିଲା । ମାତ୍ର ସବୁଦିନ ସବୁ କଥା ସମାନ ଭାବରେ ଗତି କରି ନ ଥାଏ । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଭାରତର ଘଟଣା ପ୍ରବାହରେ ଏକପ୍ରକାର ପରିବର୍ତ୍ତନ ସଂଘଟିତ ହୋଇଥିଲା । ଫଳରେ ଭାରତୀୟଙ୍କ ହୃଦୟରେ ସ୍ୱଦେଶ ପ୍ରୀତି, ନିଜ ସଂସ୍କୃତି ପ୍ରତି ଶ୍ରଦ୍ଧା ଓ ଇଂରେଜ ଶାସନ କବଳରୁ ମୁକ୍ତ ହେବାର ଆକାଂକ୍ଷା ସ୍ଥାନ ପାଇଥିଲା । ସେସବୁ ହେଉଛି ଜାତୀୟ ଜାଗରଣ ବା ଜାତୀୟତାବୋଧର ପ୍ରଧାନ ଅବଲମ୍ବନ । ତେଣୁ ସେହି ସମୟରେ ଭାରତରେ ଜାତୀୟ ଜାଗରଣ ଦେଖା ଦେଇଥିଲା । ଏହି ଜାତୀୟ ଚେତନା ବା ଜାତୀୟ ଜାଗରଣର ଅଭ୍ୟୁଦୟ ମୂଳରେ କେତୋଟି ଉପାଦାନ ରହିଥିଲା । ତନ୍ମଧ୍ୟରୁ ଭାରତୀୟ ସମ୍ବାଦପତ୍ର ଏବଂ ସାମାଜିକ ଓ ରାଜନୈତିକ ସଙ୍ଗଠନର ପ୍ରତିଷ୍ଠା ଥିଲା ଅନ୍ୟତମ । ସେ ଦିଗରେ କଟକ ନଗରୀର ଅବଦାନ ଥିଲା ଉଲ୍ଲେଖଯୋଗ୍ୟ । ତା'ର ଏକ ବର୍ଣ୍ଣନା ନିମ୍ନରେ ପ୍ରଦତ୍ତ ହେଲା ।

ଏହା ଥିଲା ୧୮୬୬ ମସିହାର କଥା । ବିଭିନ୍ନ ଦାବୀ ଉପସ୍ଥାପିତ କରିବା ସଙ୍ଗେ ସଙ୍ଗେ ଓଡ଼ିଆବାସୀଙ୍କର ହୃଦୟକନ୍ଦରରେ ଜାତୀୟତା ଭାବର ବୀଜବପନ କରିବା ପାଇଁ ସେହି ବର୍ଷ ଓଡ଼ିଶାର ଜନୈକ ବରପୁତ୍ର କଟକରୁ ନିଜ ସମ୍ପାଦନାରେ

ଏକ ସମ୍ବାଦପତ୍ର ପ୍ରକାଶ କରିଥିଲେ । ସେଥିଲେ ଗୌରୀଶଙ୍କର ରାୟ ଓ ତାଙ୍କ ସମ୍ବାଦପତ୍ରର ନାମ ରଖିଥିଲେ 'ଉତ୍କଳ ଦୀପିକା' । ଏହା ପ୍ରଥମେ ଏକ ସାପ୍ତାହିକ ପତ୍ରିକା ଭାବରେ କଟକସ୍ଥିତ 'କଟକ ପ୍ରିଣ୍ଟିଂ କମ୍ପାନୀ' ନାମକ ଯୌଥ ଅନୁଷ୍ଠାନ ଦ୍ୱାରା ପ୍ରକାଶିତ ହୋଇଥିଲା ।

ଏହି ପତ୍ରିକା ମାଧ୍ୟମରେ ମୁଖ୍ୟତଃ ଓଡ଼ିଆବାସୀଙ୍କର ପୁଞ୍ଜିଭୂତ ଅସନ୍ତୋଷ, ଦୁଃଖ, ଦୈନ୍ୟ, ସରକାରୀ କର୍ମଚାରୀଙ୍କର ଅତ୍ୟାଚାର, ବନ୍ୟା, ଦୁର୍ଭିକ୍ଷ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷା ଓ ସାହିତ୍ୟକୁ ରକ୍ଷା କରିବା ଥିଲା ଗୌରୀଶଙ୍କରଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଏହା ଥିଲା ଓଡ଼ିଶାର ପ୍ରଥମ ଓଡ଼ିଆ ସମ୍ବାଦପତ୍ର । ଅବଶ୍ୟ ତା ପୂର୍ବରୁ ୧୮୪୯ ମସିହାରେ ରେଭେରେଣ୍ଡ ଲେସି 'ଜ୍ଞାନାରୁଣ' ନାମକ ଏକ ପତ୍ରିକା ପ୍ରକାଶ କରିଥିଲେ । ଏହା କଟକରେ ୧୮୩୮ରେ ପ୍ରତିଷ୍ଠିତ ମିଶନ ପ୍ରେସରେ ମୁଦ୍ରିତ ହୋଇଥିଲା । ଏହା ହେଉଛି ଓଡ଼ିଶାର ପ୍ରଥମ ଛାପାଖାନା ଓ ଜ୍ଞାନାରୁଣ ହେଉଛି ପ୍ରଥମ ଓଡ଼ିଆ ପତ୍ରିକା । ପରେ ପରେ ଏହି କଟକରେ ଖ୍ରୀଷ୍ଟିୟାନ ପାଦ୍ରୀମାନେ ୧୮୫୬ରେ 'ପ୍ରବୋଧ ଚନ୍ଦ୍ରିକା' ଓ ୧୮୬୧ରେ 'ଅରୁଣୋଦୟ' ନାମକ ଅନ୍ୟ ଦୁଇଟି ପତ୍ରିକା ପ୍ରକାଶ କରିଥିଲେ । ମାତ୍ର ସେଗୁଡ଼ିକ ଓଡ଼ିଶାରେ ଖ୍ରୀଷ୍ଟିୟାନ ଧର୍ମ ଜନପ୍ରିୟ କରିବା ପାଇଁ ଉଦ୍ଦିଷ୍ଟ ଥିଲା । ମାତ୍ର ଗୌରୀଶଙ୍କର ରାୟ ଥିଲେ ଯଥାର୍ଥରେ ଓଡ଼ିଶାର ରାଜନୈତିକ ସାମ୍ବାଦିକତାର ଭଗୀରଥ ।

କଟକରୁ ତାଙ୍କର ସେହି ପତ୍ରିକା ଉତ୍କଳ ଦୀପିକା ପ୍ରାୟ ୭୦ ବର୍ଷ ଧରି ନିୟମିତ ଭାବେ ପ୍ରକାଶ ଲାଭ କରିଥିଲା । ପରେ ପରେ କଟକରୁ ଅନ୍ୟ କେତୋଟି ସମ୍ବାଦପତ୍ର ପ୍ରକାଶ ପାଇଥିଲା । ତନ୍ମଧ୍ୟରୁ ୧୮୬୯ରେ କଟକରେ ପ୍ରଥମ ଇଂରାଜୀ ପତ୍ରିକା କଟକ ଆର୍ଗ୍ୟୁ (Cuttack Argue) ଥିଲା ଅନ୍ୟତମ । ସେହି ବର୍ଷ କାଳିପଦ ବାନାର୍ଜିଙ୍କ ସମ୍ପାଦନାରେ 'ଉତ୍କଳ ହିତୈଷିଣୀ' ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶିତ ହୋଇଥିଲା । ସେହି ସମୟରେ ମଧ୍ୟ କଟକ ଷ୍ଟାର (Cuttack Star) ନାମରେ ଏକ ଇଂରାଜୀ ସାପ୍ତାହିକ ଓ କଟକ ଷ୍ଟାଣ୍ଡାର୍ଡ (Cuttack Standard) ନାମରେ ଅନ୍ୟ ଏକ ଇଂରାଜୀ ପତ୍ରିକା ପ୍ରକାଶ ପାଇଥିଲା । ସେହିପରି ୧୮୭୧ରେ କଟକ କ୍ରନିକଲ (Cuttack Chronicle) ନାମରେ ଅନ୍ୟ ଏକ ପତ୍ରିକା ଜନ୍ମ ନେଇଥିଲା । ଅବଶ୍ୟ ତିନି ମାସ ପରେ ତାହା ବନ୍ଦ ହୋଇ ଯାଇଥିଲା । ସେ ଯାହାହେଉ ଓଡ଼ିଶାରେ ଜାତୀୟ ଜାଗରଣ ସୃଷ୍ଟି କରିବା ଦିଗରେ କେବଳ ମାତ୍ର ସମ୍ବାଦପତ୍ର ପ୍ରକାଶ କରି କେହି କ୍ଷାନ୍ତ ହୋଇ ନଥିଲ, ଏ ଦିଗରେ କଟକରେ ପ୍ରତିଷ୍ଠିତ କେତୋଟି ରାଜନୈତିକ ସଙ୍ଗଠନର ଭୂମିକା ଥିଲା ଅନବଦ୍ୟ । ଅବଶ୍ୟ ଏପରି ସଙ୍ଗଠନ ଜନ୍ମ ନେବାର ପୃଷ୍ଠଭୂମିରେ କେତୋଟି ଘଟଣା କାର୍ଯ୍ୟ କରିଥିଲା ।

ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଓଡ଼ିଶାର କେତୋଟି ଅଞ୍ଚଳରେ ଓଡ଼ିଆ ଭାଷା ପରିବର୍ତ୍ତେ ହିନ୍ଦୀ ଓ ବଙ୍ଗାଳୀ ଭାଷା ପ୍ରବର୍ତ୍ତନ କରିବା ପାଇଁ ଏକ ହୀନ ଚକ୍ରାନ୍ତର

ସୂତ୍ରପାତ ହୋଇଥିଲା । ଏଥି ସହିତ ଓଡ଼ିଆ ସାହିତ୍ୟର ବିକାଶ ସାଧନ ପାଇଁ ଚିନ୍ତାନାୟକମାନେ ଉଦ୍ୟମ କରିଥିଲେ । ଏହାର ପ୍ରଧାନ ସୂତ୍ରଧର ଥିଲେ ଉଦୀୟମାନ ପ୍ରଶାସକ ଓ ଅଣପ୍ରଶାସକ ଗୋଷ୍ଠୀ । ଏପରି ଏକ ସନ୍ଧିକ୍ଷଣରେ କଟକର କେତେଜଣ ବୁଦ୍ଧିଜୀବୀ ୧୮୭୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଏସୋସିଏସନ୍ ବା ଉତ୍କଳ ସଭା ନାମରେ ଏକ ସଙ୍ଘ ପ୍ରତିଷ୍ଠା କରିଥିଲେ ଓ ଗୋପାଳଚନ୍ଦ୍ର ଦତ୍ତ ନାମଧେୟ କଟକରେ ବାସ କରୁଥିବା ଜନୈକ ବଙ୍ଗାଳୀ ଭଦ୍ରଲୋକ ଥିଲେ ଏହାର ସମ୍ପାଦକ । ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତିବିଧାନ ଥିଲା ଏହାର ପ୍ରଧାନ ଆଭିମୁଖ୍ୟ ।

ଉକ୍ତ ସଙ୍ଘ ପ୍ରତିଷ୍ଠା କରିବାର ବର୍ଷକ ପୂର୍ବରୁ ଅର୍ଥାତ୍ ୧୮୭୭ ମସିହାରେ କଟକ ନଗରୀର ଏକ ରାଜକୀୟ ଦରବାରର ସାରବତ୍ତ୍ୱ ଦ୍ରଷ୍ଟା ହୋଇଥିଲା । ସେହିବର୍ଷ ଜାନୁୟାରୀ ୧ ତାରିଖ ଦିନ ମହାରାଣୀ ଭିକ୍ଟୋରିଆଙ୍କ ଘୋଷଣାପତ୍ର ପାଠ କରିବା ପାଇଁ କଟକଠାରେ ଏକ ଦରବାରର ଆୟୋଜନ କରାଯାଇଥିଲା ।

ପରେ ପରେ କଟକ ନଗରୀରେ ଘଟଣାଗୁଡ଼ିକ କ୍ଷିପ୍ର ଗତିରେ ଗଡ଼ିଚାଲିଥିଲା । ୧୮୭୮ରେ ପ୍ରତିଷ୍ଠିତ ଉତ୍କଳ ସଭାକୁ ଏକ ରାଜନୈତିକ ସଙ୍ଗଠନର ରୂପ ଦିଆଯାଇଥିଲା । ଏହାର ସମ୍ପାଦକ ରୂପେ କାର୍ଯ୍ୟ କରିଥିଲେ ଗୌରୀଶଙ୍କର ରାୟ । ତାଙ୍କର ଦକ୍ଷତା ଓ କର୍ମତତ୍ପରତା ପାଇଁ ସେ ଏହି ପଦବୀରେ ଏକାଦିକ୍ରମେ ୨୩ ବର୍ଷ କାର୍ଯ୍ୟକରି ୧୯୦୫ ମସିହାରେ ଏଥିରୁ ଅବ୍ୟାହତି ନେଇଥିଲେ ।

ସମ୍ପାଦକ ଶ୍ରୀଯୁକ୍ତ ରାୟଙ୍କ ଆହ୍ୱାନ କ୍ରମେ ଉତ୍କଳ ସଭାର ପ୍ରଥମ ବୈଠକ ୧୮୮୨ ମସିହା ଜୁଲାଇ ୨୧ ତାରିଖ ଦିନ କଟକଠାରେ ବସିଥିଲା । ଲର୍ଡ ରିପନ୍‌ଙ୍କର ସ୍ୱାୟତ୍ତ ଶାସନ ଓଡ଼ିଶାରେ କପରି ପ୍ରବର୍ତ୍ତନ କରାଯିବ ସେହା ଥିଲା ବୈଠକର କର୍ମସୂଚୀ । ମାତ୍ର ଠିକ୍ ସେହି ସମୟରେ କଟକଠାରେ ଜଗନ୍ନାଥ ବାନାର୍ଜୀଙ୍କର ଅଧ୍ୟକ୍ଷତାରେ ଓଡ଼ିଶା ପିପୁଲ୍ସ ଏସୋସିଏସନ୍ (Orissa Peoples Association) ନାମକ ଏକ ସମାନ୍ତରାଳ ସଙ୍ଘ ଗଠନ କରାଯିବାରୁ ଉତ୍କଳ ସଭା ଆନୁକୂଲ୍ୟରେ ଆହୂତ ନିର୍ଦ୍ଧାରିତ ବୈଠକର କାର୍ଯ୍ୟରେ ବାଧାପ୍ରାପ୍ତ ହୋଇଥିଲା । କିନ୍ତୁ ଏ ପ୍ରକାର ସଙ୍ଘର ପୃଷ୍ଠଭୂମିରେ ଜନମତ ନ ଥିବାରୁ ଏହା ମାତ୍ର କେତେଦିନ ପରେ ସମାଧିସ୍ଥ ହୋଇଥିଲା । ତେଣୁ ନିର୍ଦ୍ଧାରିତ ଉତ୍କଳ ସଭାର ବୈଠକଟି ସେହି ବର୍ଷ ଅଗଷ୍ଟ ୧୬ ତାରିଖ ଦିନ କଟକଠାରେ ବସିଥିଲା । ଏଥିରେ ଲର୍ଡ ରିପନ୍‌ଙ୍କର ସ୍ୱାୟତ୍ତ ଶାସନ ପ୍ରବର୍ତ୍ତନ ଓ କଟକ ଜିଲ୍ଲାର ଉନ୍ନତିମୂଳକ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ପ୍ରସ୍ତାବମାନ ଗ୍ରହଣ କରାଯାଇ-ଥିଲା । ଉକ୍ତ ବୈଠକରେ ପୌରହିତ୍ୟ କରିଥିଲେ କାଶୀନାଥ ଦାସ । ପୁନଶ୍ଚ ଗୌରୀଶଙ୍କର ସେହି ୧୮୮୨ ମସିହା ଅଗଷ୍ଟ ୨୧ ଓ ସେପ୍ଟେମ୍ବର ୧ ତାରିଖ ଦିନ କଟକଠାରେ ଉତ୍କଳ ସଭାର ଅନ୍ୟ ଦୁଇଟି ବୈଠକ ଡକାଇଥିଲେ । ଏଥିରେ ବିଭିନ୍ନ ସାମ୍ବିଧାନିକ ଓ ରାଜନୈତିକ ସମସ୍ୟା ଉପରେ ବିସ୍ତୃତ ବିମର୍ଷ କରାଯାଇଥିଲା । ପୁନଶ୍ଚ ୧୮୮୩ ମସିହା ମେ ୨୬ ତାରିଖ ଦିନ କଟକଠାରେ ଉତ୍କଳ ସଭାର ଅନ୍ୟ ଏକ

ବୈଠକରେ ବିବଦମାନ ଇଲବର୍ଟ ବିଲ ଉପରେ ଆଲୋଚନା କରାଯାଇ ଭାରତୀୟ ବିଚାରପତିମାନେ ୟୁରୋପୀୟ ଆସାମୀଙ୍କୁ ବିଚାର କରିବା ପାଇଁ କ୍ଷମତାପ୍ରାପ୍ତ ହେବା ଉଚିତ୍ ବୋଲି ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ।

## ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ପର୍ଯ୍ୟାୟରେ କଟକ ନଗରୀର ଭୂମିକା :

ଇତିମଧ୍ୟରେ ୧୮୮୫ ମସିହାରେ ଭାରତୀୟ ଜାତୀୟ କଂଗ୍ରେସ ଜନ୍ମ ନେଇଥିଲା । କଲିକତାର ପ୍ରଖ୍ୟାତ ବାରିଷ୍ଟର ଉମେଶ ଚନ୍ଦ୍ର ବାନାର୍ଜୀଙ୍କର ସଭାପତିତ୍ୱରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ଅଧିବେଶନ ୧୮୮୫ ମସିହା ଡିସେମ୍ବର ୨୮ ତାରିଖ ଦିନ ବମ୍ବେର ଗୋକୁଲ ଦାସ ତେଜପାଲ ସଂସ୍କୃତ ମହାବିଦ୍ୟାଳୟର ଏକ ପ୍ରକୋଷ୍ଠ ମଧ୍ୟରେ ଅନୁଷ୍ଠିତ ହୋଇଥିଲା । ଉକ୍ତ ଅଧିବେଶନରେ ଓଡ଼ିଶାରୁ କେହି ପ୍ରତିନିଧିତ୍ୱ କରିଥିବାର ଜଣାଯାଏ ନାହିଁ । ମାତ୍ର ଏପରି ଏକ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇ ଥିବାର ସମ୍ବାଦ କଟକ ସମେତ ଓଡ଼ିଶାର ବୁଦ୍ଧିଜୀବୀଙ୍କ ମହଲରେ ଏକ ଅଦ୍ଭୁତ ଉଦ୍ଦୀପନା ସୃଷ୍ଟି କରିଥିଲା । ଫଳରେ ୧୮୮୬ ମସିହା ମାର୍ଚ୍ଚ ୩ ତାରିଖ ଦିନ କଟକସ୍ଥିତ ପ୍ରିଣ୍ଟିଂ କମ୍ପାନୀର ଗୃହରେ ଏକ ସଭାର ଆୟୋଜନ କରାଯାଇଥିଲା । ଏଥିରେ ସମାଜର ସବୁ ସ୍ତରର ଲୋକ ଯୋଗ ଦେଇଥିଲେ । ଉକ୍ତ ସଭାରେ ଭାରତୀୟ ଜାତୀୟ କଂଗ୍ରେସର ପ୍ରତ୍ୟେକ ଅଧିବେଶନକୁ ଓଡ଼ିଶାରୁ ପ୍ରତିନିଧି ପଠାଇବା ସଙ୍ଗେ ସଙ୍ଗେ କଂଗ୍ରେସ ଦ୍ୱାରା ପ୍ରବର୍ତ୍ତିତ ସମସ୍ତ କାର୍ଯ୍ୟକୁ ସମାନ୍ତରାଳରେ କାର୍ଯ୍ୟକାରୀ କରାଇବାର ଏକ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ସେହି ସଭାରେ ମଧ୍ୟ ସ୍ଥିରୀକୃତ ହୋଇଥିଲା ଯେ ବାଲେଶ୍ୱରଠାରେ ପ୍ରତିଷ୍ଠିତ ଜାତୀୟ ସଭା (National Association) ଓ କଟକଠାରେ ପ୍ରତିଷ୍ଠିତ ଉତ୍କଳ ସଭାରୁ ମନୋନୀତ ହୋଇ ପ୍ରତିନିଧିମାନେ କଂଗ୍ରେସର ପ୍ରତ୍ୟେକ ଅଧିବେଶନରେ ଯୋଗ ଦେବେ ।

ତଦନୁଯାୟୀ ୧୮୮୬ ମସିହାରେ କଲିକତାଠାରେ ଆହୂତ ଭାରତୀୟ ଜାତୀୟ କଂଗ୍ରେସର ଦ୍ୱିତୀୟ ଅଧିବେଶନକୁ କଟକରୁ ଉତ୍କଳ ସଭାର ଆନୁକୂଲ୍ୟରେ ମନୋନୀତ ମଧୁସୂଦନ ଦାସ, ଗୋଲକ ଚନ୍ଦ୍ର ଘୋଷ, କାଳୀପଦ ବାନାର୍ଜୀ ଓ ହରିବଲ୍ଲଭ ଘୋଷ ଯୋଗ ଦେଇଥିଲେ । ସେହି ୧୮୮୬ ମସିହା ଡିସେମ୍ବର ମାସ ୧୯ ତାରିଖ ଦିନ କାଳୀପଦ ବାନାର୍ଜୀଙ୍କ ଅଧ୍ୟକ୍ଷତାରେ ଉତ୍କଳ ସଭାର ଅନ୍ୟ ଏକ ବୈଠକ କଟକଠାରେ ବସିଥିଲା । ଉକ୍ତ ବୈଠକରେ ବ୍ୟବସ୍ଥାପକ ସଭାର ପୁନର୍ଗଠନ ଓ ଭୋଟ ପ୍ରଥା ପ୍ରଚଳନ ପାଇଁ ସରକାରଙ୍କୁ ଆବେଦନ କରିବା ନିମନ୍ତେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ।

ମାନ୍ଦ୍ରାଜରେ ୧୮୮୭ ମସିହାରେ ଭାରତୀୟ ଜାତୀୟ କଂଗ୍ରେସର ତୃତୀୟ ଅଧିବେଶନକୁ କଟକରୁ ଉତ୍କଳ ସଭାଦ୍ୱାରା ମନୋନୀତ ହୋଇ ମଧୁସୂଦନ ଦାସ ଓ ଗୌରୀଶଙ୍କର ରାୟ ଯୋଗ ଦେଇଥିଲେ । ସେଠାରୁ ଫେରି ସେମାନେ ସେହି କଟକ

ପ୍ରିଣ୍ଟିଂ କମ୍ପାନୀର ଘରେ ୧୮୮୮ ମସିହା ଜାନୁୟାରୀ ୨୯ ତାରିଖ ଦିନ ଏକ ବୈଠକ ଆହ୍ୱାନପୂର୍ବକ ମାନ୍ଦ୍ରାଜ ଅଧିବେଶନରେ ଗୃହୀତ ପ୍ରସ୍ତାବ ଉପରେ ଏକ ବିବରଣୀ ପ୍ରଦାନ କରି ଭାରତୀୟ ଜାତୀୟ କଂଗ୍ରେସର ହାତମୁଠାକୁ ଟାଣ କରିବା ପାଇଁ କର୍ମୀଙ୍କୁ ଅନୁରୋଧ କରିଥିଲେ । ସେହିଦିନ ସେହି ସ୍ଥାନରେ କେବଳ ଉତ୍କଳ ସଭାର ସଦସ୍ୟ-ମାନଙ୍କର ଏକ ବୈଠକରେ ଜାତୀୟ କଂଗ୍ରେସରେ ଯେପରି ଅଧିକରୁ ଅଧିକ ଓଡ଼ିଶାବାସୀ ଯୋଗ ଦିଅନ୍ତି, ସେ ଦିଗରେ ଉଦ୍ୟମ କରାଯିବ ବୋଲି ଏକ ପ୍ରସ୍ତାବ ଗ୍ରହଣ କରା-ଯାଇଥିଲା ।

ଉତ୍କଳ ସଭାର ପରବର୍ତ୍ତୀ ବୈଠକ ୧୮୮୮ ମସିହା ଫେବ୍ରୁୟାରୀ ମାସ ପ୍ରଥମ ସପ୍ତାହରେ ଆହ୍ୱାନ କରାଯାଇ ଇଂରେଜ ସରକାରଙ୍କ ଦ୍ୱାରା ପ୍ରବର୍ତ୍ତିତ ଲବଣ ଆଇନ ବିରୁଦ୍ଧରେ ପ୍ରତିବାଦ କରିବା ପାଇଁ ଏକ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ତା'ର କିଛିଦିନ ପରେ ଫେବ୍ରୁୟାରୀ ୧୮ ତାରିଖ ଦିନ କଟକର ମ୍ୟୁନିସିପାଲିଟି ମାର୍କେଟରେ ଏକ ସର୍ବସାଧାରଣ ସଭାର ଆୟୋଜନ କରାଯାଇଥିଲା । ସେଦିନ ସଭାରେ ମଧୁସୂଦନ ଦାସ, ରଘୁ ସାହୁ, ଏକରାମ ଅଲ୍ଲୀ ଓ ଜଗମୋହନ ରାୟ ଭାଷଣ ଦେଇ ଜାତୀୟ ଆନ୍ଦୋଳନର ସ୍ରୋତରେ ଝାସଦେବା ପାଇଁ ଉପସ୍ଥିତ ଜନତାଙ୍କୁ ନିବେଦନ କରିଥିଲେ । ଉକ୍ତ ସଭାଟି ବେଶ୍ ଫଳପ୍ରଦ ହୋଇଥିଲା । ସେଠାରେ ଗୃହୀତ ପ୍ରସ୍ତାବ ଅନୁଯାୟୀ ମଧୁସୂଦନ ଦାସଙ୍କୁ କେନ୍ଦ୍ରାପଡ଼ା ପଠାଯାଇଥିଲା କଂଗ୍ରେସରେ ଯୋଗ ଦେବା ନିମନ୍ତେ ଲୋକମାନଙ୍କୁ ପ୍ରଭାବିତ କରିବା ପାଇଁ । ଏହା ପରେ କଟକର ମଧୁସୂଦନ ଦାସ, ଜଗମୋହନ ରାୟ, ଜାନକୀନାଥ ବୋଷ ଓ ଲାଲବିହାରୀ ଘୋଷ ଉତ୍କଳସଭା ଦ୍ୱାରା ମନୋନୀତ ହୋଇ ଜାତୀୟ କଂଗ୍ରେସର ବଙ୍ଗଳା ଶାଖାକୁ ସଭ୍ୟ ରୂପେ ମନୋନୀତ ହୋଇଥିଲେ ।

୧୮୮୯ ମସିହାର ଆହ୍ଲାବାଦଠାରେ ଆହୂତ ଜାତୀୟ କଂଗ୍ରେସର ଚତୁର୍ଥ ଅଧିବେଶନକୁ ଉତ୍କଳସଭା ଦ୍ୱାରା କଟକରୁ ବିହାରିଲାଲ ପଣ୍ଡିତ, ଜଗମୋହନ ରାୟ, ମଧୁସୂଦନ ଦାସ, ସାମସନ ରାଉତ, ମୁନସି ସୁଲତାନ ଅହମ୍ମଦ ଓ ମୁନସି ମହମ୍ମଦ ଅତାହାର ମନୋନୀତ ହୋଇଥିଲେହେଁ କେବଳ ମାତ୍ର ସାମସନ ରାଉତ ଓ ମହମ୍ମଦ ଅତାହାର ଯୋଗ ଦେଇଥିଲେ । ସେଠାରୁ ଫେରି ୧୮୮୯ ମସିହା ଫେବ୍ରୁୟାରୀ ୭ ତାରିଖ ଦିନ ମଧୁସୂଦନ ଦାସଙ୍କ ଅଧ୍ୟକ୍ଷତାରେ କଟକଠାରେ ଉତ୍କଳସଭାର ଏକ ଅଧିବେଶନ ଆହ୍ୱାନ କରିଥିଲେ । ସେଠାରେ ସେମାନେ ଆହ୍ଲାବାଦ କଂଗ୍ରେସ ଦ୍ୱାରା ଗୃହୀତ ପ୍ରସ୍ତାବ ଉପରେ ଆଲୋକପାତ କରିଥିଲେ ।

୧୮୯୦ ମସିହାର ଜାତୀୟ କଂଗ୍ରେସ ଅଧିବେଶନକୁ କେବଳ ମାତ୍ର ଉତ୍କଳସଭା ଦ୍ୱାରା ମନୋନୀତ ହୋଇ କଟକରୁ ନିମାଇଁ ଚରଣ ମିତ୍ର, ଲାଲବିହାରୀ ଘୋଷ, ମଧୁସୂଦନ ଦାସ, ଜାନକୀନାଥ ବୋଷ, ରାଧାବିନୋଦ ବସୁ ଓ ବିପିନ ବିହାରୀ ମିତ୍ର

ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ ପ୍ରଥମ ଗୁରୁଜଣ ମଧ୍ୟ ବଙ୍ଗଳା କଂଗ୍ରେସ କମିଟିକୁ ଓଡ଼ିଶାର ପ୍ରତିନିଧି ଭାବେ ମନୋନୀତ ହୋଇଥିଲେ । କାରଣ ସେତେବେଳେ ଓଡ଼ିଶା ପାଇଁ ସ୍ୱତନ୍ତ୍ର କଂଗ୍ରେସ କମିଟି ଗଠିତ ହୋଇ ନ ଥିଲା ।

ପରେ ପରେ ୧୮୯୫ର ଭାରତୀୟ ଜାତୀୟ କଂଗ୍ରେସର ପୁନା ଅଧିବେଶନ ଓ ୧୮୯୬ର କଲିକତା ଅଧିବେଶନକୁ କଟକରୁ ଉତ୍କଳସଭା ଦ୍ୱାରା ମନୋନୀତ ହୋଇ ମଧୁସୂଦନ ଦାସ, ଯଜ୍ଞେଶ୍ୱର ଚନ୍ଦ୍ର, ଗୌରୀଶଙ୍କର ରାୟ ଓ ଗୋକୁଳାନନ୍ଦ ଚୌଧୁରୀ ଯୋଗଦେଇଥିଲେ । ଏହି ଉତ୍କଳସଭା ଦ୍ୱାରା ମନୋନୀତ ହୋଇ କଟକରୁ ୧୯୦୭ ପର୍ଯ୍ୟନ୍ତ ଜାତୀୟ କଂଗ୍ରେସର ବିଭିନ୍ନ ଅଧିବେଶନରେ ଅନ୍ୟ ଯେଉଁମାନେ ଯୋଗ ଦେଇଥିଲେ, ସେମାନଙ୍କ ମଧ୍ୟରୁ ନନ୍ଦକୁମାର ବଳ, ଗୋପାଳଚନ୍ଦ୍ର ପ୍ରହରାଜ, ବିଶ୍ୱନାଥ ରାଓ ଓ ମଧୁସୂଦନ ରାଓଙ୍କ ନାମ ଉଲ୍ଲେଖଯୋଗ୍ୟ । ସେମାନେ ଜାତୀୟ କଂଗ୍ରେସର ବିଭିନ୍ନ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

ଏହିପରି ଭାବେ କଟକ ନଗରୀ ଜାତୀୟ କଂଗ୍ରେସର ବିଭିନ୍ନ ଅଧିବେଶନକୁ ପ୍ରତିନିଧି ପ୍ରେରଣ କରି ସ୍ୱାଧୀନତା ଆନ୍ଦୋଳନର ଇତିହାସକୁ ସମୃଦ୍ଧିମନ୍ତ କରିଥିଲା । କେବଳ ସେତିକି ନୁହେଁ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦିଗରେ କଟକ ନଗରୀର ଭୂମିକା ଥିଲା ମହତ୍ତ୍ୱପୂର୍ଣ୍ଣ । ଏହି ପରିପ୍ରେକ୍ଷୀରେ ଇଂରେଜ ଶାସନ ସମୟରେ ଓଡ଼ିଶାର ରାଜନୈତିକ ମାନଚିତ୍ର ଉପରେ କିଞ୍ଚିତ ଆଲୋକପାତ କରିବା ଆବଶ୍ୟକ ।

ଦୁର୍ଭାଗ୍ୟକୁ ଇଂରେଜ ଶାସନ ସମୟରେ ଓଡ଼ିଶା ଏକ କାଟଦେଂଷ୍ଟ ପୁଷ୍ପର ରୂପ ନେଇଥିଲା । ନିଜର ରାଜନୈତିକ ସ୍ୱାର୍ଥ ସାଧନ କରିବା ଉଦ୍ଦେଶ୍ୟରେ ଇଂରେଜ ପ୍ରଶାସକମାନେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମଧ୍ୟରୁ କେତେକକୁ ବିଭିନ୍ନ ପ୍ରାଦେଶିକ ଶାସନକର୍ତ୍ତାଙ୍କ ଅଧୀନରେ ରଖିଥିଲେ । କାରଣ ସେମାନେ ଥିଲେ ସମ୍ପୂର୍ଣ୍ଣ ରୂପେ ଏକ ବୈଦେଶିକ ଶକ୍ତି । ନିଜର ସ୍ଥିତିକୁ ସୁଦୃଢ଼ କରି ରଖିବା ପାଇଁ ସେମାନେ ଓଡ଼ିଶାର ପ୍ରଶାସନିକ ବିକେନ୍ଦ୍ରୀକରଣ ପନ୍ଥା ଅବଲମ୍ବନ କରିଥିଲେ । ଓଡ଼ିଶା କାହିଁକି, ଭାରତର ଅନ୍ୟ ଅଞ୍ଚଳରେ ମଧ୍ୟ ଇଂରେଜମାନେ ଅନୁରୂପ ପନ୍ଥା ଅବଲମ୍ବନ କରିଥିଲେ ।

ସେ ଯାହାହେଉ, ଓଡ଼ିଶାରେ ଗଞ୍ଜାମ ସମେତ ଦକ୍ଷିଣ ଓଡ଼ିଶାର ବହୁ ଅଞ୍ଚଳକୁ ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅଧୀନରେ ଅବସ୍ଥାପିତ କରାଇ ଉକ୍ତ ଅଞ୍ଚଳର ଶାସନକାର୍ଯ୍ୟ ମାନ୍ଦ୍ରାଜସ୍ଥିତ ଫୋର୍ଟ ସେଣ୍ଟ ଜର୍ଜଠାରୁ ନିୟନ୍ତ୍ରିତ କରାଯାଇଥିଲା । ସେହିପରି ମହାନଦୀର ପଶ୍ଚିମପାର୍ଶ୍ୱରେ ଅବସ୍ଥିତ ସମ୍ବଲପୁର ସମେତ ବିରାଟ ଅଞ୍ଚଳର ଶାସନକାର୍ଯ୍ୟ ତତ୍କାଳୀନ ସେଣ୍ଟ୍ରାଲ ପ୍ରଭିନ୍‌ସର କମିଶନରଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇଥିଲା । ଉତ୍ତରରେ ସୁବର୍ଣ୍ଣରେଖା ନଦୀର ଅପରପାର୍ଶ୍ୱରେ ଅବସ୍ଥିତ ମିଦନାପୁର ସମେତ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳକୁ ବେଙ୍ଗଲ ପ୍ରେସିଡେନ୍‌ସି ଅଧୀନରେ ଅବସ୍ଥାପିତ କରାଇ ଏହାର ଶାସନକାର୍ଯ୍ୟ କଲିକତାସ୍ଥିତ ଫୋର୍ଟ ଉଇଲିୟମଠାରୁ ନିୟନ୍ତ୍ରିତ ହୋଇଥିଲା ।

ଓଡ଼ିଶାର ଉତ୍ତର ପଶ୍ଚିମାଂଶରେ ପାର୍ବତ୍ୟ ଅଞ୍ଚଳରେ ଅବସ୍ଥିତ ୨୬ଟି ଗଡ଼ଜାତ ବା କରଦ ରାଜ୍ୟ ନିଜ ନିଜର ରାଜାଙ୍କ ଦ୍ୱାରା ଶାସିତ ହେଉଥିଲେ । ମୋଗଲବନ୍ଦୀ ନାମରେ କଥିତ ଅବଶିଷ୍ଟାଂଶ ପୁରୀ, କଟକ ଓ ବାଲେଶ୍ୱର ଜିଲ୍ଲାର ଶାସନ କାର୍ଯ୍ୟ କଟକରେ ଅବସ୍ଥାପିତ ଜନୈକ ବ୍ରିଟିଶ କମିଶନରଙ୍କ ଦ୍ୱାରା ପରିଚାଳିତ ହୋଇଥିଲା । ସେ ମଧ୍ୟ କଲିକତାସ୍ଥିତ ଇଂରେଜ କର୍ତ୍ତୃପକ୍ଷଙ୍କର ପ୍ରତ୍ୟକ୍ଷ ନିୟନ୍ତ୍ରଣାଧୀନ ହୋଇ ରହିଥିଲେ । ଏହିପରି ଭାବେ ଅଜ୍ଞାତରେ ଓଡ଼ିଶାର ବିଶାଳ ସାମ୍ରାଜ୍ୟ ଖଣ୍ଡ-ବିଖଣ୍ଡିତ ହୋଇଥିଲା । ଓଡ଼ିଶାର ଶାସନକାର୍ଯ୍ୟ ନିୟନ୍ତ୍ରିତ ହେଉଥିଲା ଓଡ଼ିଶା ବାହାରୁ ।

ଉପରୋକ୍ତ ପରିସ୍ଥିତିରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରିବା ପାଇଁ ଓଡ଼ିଶାର କତିପୟ ବୁଦ୍ଧିଜୀବୀ କେତେକ ପଦକ୍ଷେପ ଗ୍ରହଣ କରିଥିଲେ । ତନ୍ମଧ୍ୟରୁ ଗୋଟିଏ ଥିଲା ୧୮୮୨ ଖ୍ରୀଷ୍ଟାବ୍ଦରେ କଟକରେ ଉତ୍କଳସଭାର ପ୍ରତିଷ୍ଠା । ସେ ବିଷୟରେ ପୂର୍ବରୁ ସୂଚନା ଦିଆଯାଇଛି । କେବଳ ସେତିକି ନୁହେଁ, ପରେ ପରେ ମଧୁସୂଦନ ଦାସ କଲିକତାରୁ କଟକ ଆସି ଆଇନ ବ୍ୟବସାୟ ଆରମ୍ଭ କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଅନ୍ୟ କେତେଜଣ ନେତା ଓ ରାଜନ୍ୟବର୍ଗଙ୍କ ସହାୟତାରେ ୧୯୦୩ ଖ୍ରୀଷ୍ଟାବ୍ଦରେ କଟକଠାରେ ଉତ୍କଳ ସମ୍ମିଳନୀ (Utkal Union Conference) ନାମକ ଅନ୍ୟ ଏକ ଅନୁଷ୍ଠାନ ଗଠନ କରିଥିଲେ । ଭିନ୍ନ ଭିନ୍ନ ପ୍ରଦେଶରେ ଅନ୍ତର୍ଭୁକ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଓଡ଼ିଶା ସହିତ ମିଶାଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ ।

ଏହାର ଆଭିମୁଖ୍ୟ ବିଷୟରେ ଉତ୍କଳ ସମ୍ମିଳନୀର ସମ୍ବିଧାନରେ ଲେଖାଯାଇଥିଲା, "ଏଥିରେ ସମସ୍ତ ଉତ୍କଳଭାଷୀ ଅଞ୍ଚଳର ମଙ୍ଗଳଜନକ ପ୍ରସ୍ତାବମାନ ପ୍ରସ୍ତାବିତ ହୋଇ କାର୍ଯ୍ୟରେ ପରିଣତ ହେବ...ବର୍ତ୍ତମାନ ଉତ୍କଳୀୟମାନଙ୍କର ମଙ୍ଗଳ-ସାଧନ ଅଭିପ୍ରାୟରେ ସ୍ଥାପିତ ହୋଇଛି ।" ଏହାର କାର୍ଯ୍ୟନିର୍ବାହିକା କମିଟିର ପ୍ରଥମ ଅଧିବେଶନ କଟକଠାରେ ୧୯୦୩ ମସିହା ଅକ୍ଟୋବର ୨୫ ତାରିଖ ଦିନ ଆହୂତ କରାଯାଇଥିଲା । ଉକ୍ତ ଅଧିବେଶନରେ ୬୨ ଜଣ ସଭ୍ୟଙ୍କୁ ନେଇ ଏକ ସ୍ଥାୟୀ ସମିତି ଗଠନ କରାଯାଇଥିଲା । ସେମାନଙ୍କ ମଧ୍ୟରୁ ୧୦ ଜଣଙ୍କୁ ସମ୍ପାଦକ ଭାବେ ନିର୍ବାଚନ କରାଯାଇଥିଲା । ଏହାର ପୂର୍ଣ୍ଣାଙ୍ଗ ଅଧିବେଶନ କଟକଠାରେ ୧୯୦୩ ମସିହା ଡିସେମ୍ବର ୩୦ ତାରିଖ ଦିନ ବସିଥିଲା । ପରେ ପରେ କଟକଠାରେ ଅବସ୍ଥାପିତ ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନ ଓଡ଼ିଶାର ଭିନ୍ନ ଭିନ୍ନ ସ୍ଥାନରେ ଡକାଯାଇଥିଲା ।

ଏହି ଉତ୍କଳ ସମ୍ମିଳନୀର ଆନ୍ତରିକ ପ୍ରଚେଷ୍ଟା ଦ୍ୱାରା ୧୯୧୨ ମସିହା ଅଗଷ୍ଟ ୮ ତାରିଖ ଦିନ ବିହାର ଓ ଓଡ଼ିଶା ନାମ ଦେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଜନ୍ମଲାଭ କରିଥିଲା । ସେତିକିରେ ଉତ୍କଳ ସମ୍ମିଳନୀର ସଭ୍ୟମାନେ ସନ୍ତୁଷ୍ଟ ହୋଇ ରହି ନଥିଲେ । କାରଣ ଏହା ଓଡ଼ିଶା ପାଇଁ କୌଣସି ଆଶୀର୍ବାଦ ଆଣି ନ ଥିଲା । ଏ ବିଷୟରେ ଲର୍ଡ଼

କର୍ଜନ ଭାରତରୁ ଫେରି ଇଂଲଣ୍ଡସ୍ଥିତ ହାଉସ ଅଫ୍ ଲର୍ଡ଼ସ୍‌ରେ ମତବ୍ୟକ୍ତ କରି କହିଥିଲେ ଯେ, ଏହା ଇଂରେଜ ସରକାରଙ୍କର ଏକ ଗୁରୁତର ତ୍ରୁଟି ଓ ଏହା ସ୍ଥାୟୀ ହୋଇ ରହିପାରିବ ନାହିଁ । ସେହି ସମୟରେ ମଧ୍ୟ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଏପରି ଏକ ପଦକ୍ଷେପ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରାଯାଇଥିଲା ଓ ଏହାର ନେତୃତ୍ୱ ଦିଆଯାଇଥିଲା କଟକ ନଗରୀରୁ । ସେହି ଉତ୍କଳ ସମ୍ମିଳନୀର କ୍ରମାଗତ ପ୍ରଚେଷ୍ଟା ଫଳରେ ଭାରତ ସରକାର ପରିଶେଷରେ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାର ନିଷ୍ପତ୍ତି ନେଇଥିଲେ ଓ ତଦନୁଯାୟୀ ୧୯୩୬ ମସିହା ଏପ୍ରିଲ ପହିଲା ଦିନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଜନ୍ମ ନେଇଥିଲା । ଏହା ମୂଳରେ କଟକ ନଗରୀର ଅବଦାନ ଥିଲା ଉଲ୍ଲେଖଯୋଗ୍ୟ । କଟକ ନଗରୀ ମଧ୍ୟ ଏହି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ରାଜଧାନୀ ହୋଇଥିଲା ।

ଏବେ ଆଲୋଚନା କରିବା ସ୍ୱାଧୀନତା ଆନ୍ଦୋଳନରେ କଟକ ନଗରୀର ଅନ୍ୟାନ୍ୟ ଭୂମିକା । ପୂର୍ବରୁ ୧୯୦୭ ମସିହା ପର୍ଯ୍ୟନ୍ତ ଉକ୍ତ ଆନ୍ଦୋଳନରେ କଟକର ଭୂମିକା ଉପରେ ଆଲୋକପାତ କରାଯାଇଛି । ତାହା ଥିଲା ଭାରତୀୟ ଜାତୀୟ କଂଗ୍ରେସର ପ୍ରଥମ ପର୍ଯ୍ୟାୟ ବା ଉଦାରପନ୍ଥୀ ଯୁଗ (୧୮୮୫-୧୯୦୭) । ସେହି ସମୟରେ ବ୍ରିଟିଶ ସରକାରଙ୍କ ନିକଟରେ ଦାବିପତ୍ର ଦାଖଲ କରି ଭାରତୀୟମାନଙ୍କ ପାଇଁ କିଛି ସାମ୍ବିଧାନିକ ଅଧିକାର ହାସଲ କରିବା ଥିଲା ନେତାମାନଙ୍କର ଲକ୍ଷ୍ୟ । ସେଥିପାଇଁ ବହୁ ସମୟରେ ନେତାମାନେ ଗୋଟିଏ ସ୍ଥାନରେ ମିଳିତ ହେବାର ଆବଶ୍ୟକତା ରହିଥିଲା । ଏଥିପାଇଁ କଟକରେ ଏକ ସଭାକକ୍ଷ ନ ଥିବାର ଆବଶ୍ୟକତା ଉପଲବ୍ଧି କରି ଗୌରୀଶଙ୍କର ରାୟ କଟକରେ ୧୯୦୯ ଖ୍ରୀଷ୍ଟାବ୍ଦରେ ଟାଉନ୍‌ହଲଟିଏ ପ୍ରତିଷ୍ଠା କରିଥିଲେ । ତାହା ଏବେ ମଧ୍ୟ ଦଣ୍ଡାୟମାନ । ପୁନଶ୍ଚ ବାହାରୁ ଆସୁଥିବା ପ୍ରତିନିଧିଙ୍କର ରହିବା ପାଇଁ ସେ ମହାଶୟ ମଧ୍ୟ କାଠଗଡ଼ାସାହିରେ କାୟସ୍ଥ ବୋର୍ଡିଂ ନିର୍ମାଣ କରିଥିଲେ ।

## ସ୍ୱାଧୀନତା ଆନ୍ଦୋଳନର ଦ୍ୱିତୀୟ ପର୍ଯ୍ୟାୟରେ କଟକ ନଗରୀର ଭୂମିକା :

୧୯୦୭ ପରେ ସ୍ୱାଧୀନତା ଆନ୍ଦୋଳନର ଘଟଣାଗୁଡ଼ିକ କ୍ଷିପ୍ରଗତିରେ ଗଡ଼ି ଚାଲିଥିଲା । ମାତ୍ର ଓଡ଼ିଶାରେ ତା'ର ପ୍ରଭାବ ବିଶେଷ ଭାବରେ ପରିଲକ୍ଷିତ ହୋଇପାରି ନ ଥିଲା । ସମ୍ଭବତଃ ଓଡ଼ିଶାର ତତ୍କାଳୀନ ନେତାମାନେ ସଂଯୁକ୍ତ ଓଡ଼ିଶା ପ୍ରଦେଶ ଗଠନ ଦିଗରେ ମନୋନିବେଶ କରିଥିବାରୁ ଏ ଦିଗରେ ବିଶେଷ ଯତ୍ନବାନ ହୋଇପାରି ନ ଥିଲେ । ତଥାପି ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ଓଡ଼ିଶାରୁ ସଭ୍ୟମାନେ ନିୟମିତ ଭାବେ ଯୋଗ ଦେଉଥିଲେ ।

୧୯୧୧ ମସିହା କଲିକତା ଅଧିବେଶନକୁ ଉତ୍କଳସଭାରୁ ମନୋନୀତ ହୋଇ କଟକରୁ ୯ ଜଣ ସଭ୍ୟ ଯୋଗ ଦେଇଥିଲେ । ସେମାନେ ଥିଲେ ଶେଖ୍ ମହମ୍ମଦ

ବକ୍ସ, ଅନନ୍ତ କୁମାର ଦାସଗୁପ୍ତ, ବନବିହାରୀ ପାଲିତ, ବିଶ୍ୱନାଥ କର, ଗୌରୀ-ଶଙ୍କର ରାୟ, ମିହିର୍‌ଲାଲ ଯାଚକ, ପ୍ରିୟନାଥ ବାନାର୍ଜୀ, ଦୁର୍ଗାପ୍ରସାଦ ଦାସଗୁପ୍ତ, ଓ ରାଧାପ୍ରସାଦ ଭଗତ । ମାତ୍ର ପରେ ଉତ୍କଳସଭା ଜାତୀୟ କଂଗ୍ରେସରେ ମିଳିଯାଇ-ଥିଲା । ସେହି ସମୟରେ ଅର୍ଥାତ୍ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିରେ ମଧୁସୂଦନ ଦାସ ଜାତୀୟ କଂଗ୍ରେସ କାର୍ଯ୍ୟରେ ବିଶେଷ ରୂପେ ନିଜକୁ ସାମିଲ ନ କରି ଓଡ଼ିଶାର ଅର୍ଥନୈତିକ ପ୍ରଗତି ନିମନ୍ତେ କଟକରେ କେତୋଟି ପଦକ୍ଷେପ ଗ୍ରହଣ କରିଥିଲେ । ତାଙ୍କ ସମୟରେ ସେ ଥିଲେ ଓଡ଼ିଶାର ଅଦ୍ୱିତୀୟ ନେତା । ରାଜନୈତିକ କ୍ଷେତ୍ରରେ ତାଙ୍କର ସ୍ଥାନ ପୂରଣ କରିଥିଲେ ଗୋପବନ୍ଧୁ ଦାସ ।

୧୯୦୭ ପରେ ସର୍ବଭାରତୀୟ ସ୍ତରରେ ସ୍ୱାଧୀନତା ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲେ ଉଗ୍ରପନ୍ଥୀମାନେ । ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ପରିବର୍ତ୍ତେ ହିଂସାତ୍ମକ କାର୍ଯ୍ୟକଳାପ, ଏପରିକି ଆବଶ୍ୟକ ପଡ଼ିଲେ ମୃତ୍ୟୁବରଣ କରିବାର ପନ୍ଥା ଉପରେ ସେମାନେ ବିଶ୍ୱାସ କରୁଥିଲେ । ସେମାନଙ୍କ ମଧ୍ୟରୁ ଅନ୍ୟ ଏକ ଗୋଷ୍ଠୀ ମୁଣ୍ଡ ଟେକି ଉଠିଥିଲେ । ସେମାନେ ଥିଲେ ଚରମପନ୍ଥୀ । ଭାରତରୁ ଇଂରେଜ ସରକାରର ବିତାଡ଼ନ ବ୍ୟତୀତ ସେମାନେ ଅନ୍ୟ କେଉଁଥିରେ ବିଶ୍ୱାସ କରୁ ନ ଥିଲେ । ଏଥିପାଇଁ ବୋମା, ପିସ୍ତଲ ଆଦି ଅସ୍ତ୍ର ସାହାଯ୍ୟରେ ଇଂରେଜ କର୍ମଚାରୀଙ୍କୁ ନିହତ କରି ସନ୍ତ୍ରାସ ସୃଷ୍ଟି କରିବା ଥିଲା ସେମାନଙ୍କର ପନ୍ଥା । ସେମାନେ ମଧ୍ୟ ଡକାୟତି କରି ସନ୍ତ୍ରାସ ସୃଷ୍ଟି କରିବା ପାଇଁ ଚେଷ୍ଟାକରୁଥିଲେ । ତେଣୁ ସେମାନେ ସନ୍ତ୍ରାସବାଦୀ ନାମରେ କଥିତ ହୋଇଥିଲେ । କଲିକତା ଥିଲା ସେମାନଙ୍କର ପ୍ରଥମ ଓ ପ୍ରଧାନ କର୍ମଭୂମି । କଲିକତାରେ ବାସ କରୁଥିବା କଟକର ଜନୈକ ଅଧିବାସୀ କଲିକତାରେ ସନ୍ତ୍ରାସବାଦୀ ଆନ୍ଦୋଳନ ଉନ୍ମୋଚନ କରିବାର ଗୌରବ ଅର୍ଜନ କରିପାରିଥିଲେ । ତାଙ୍କର ନାମ ଥିଲା ହେମେନ୍ଦ୍ର ନାଥ କାନୁନଗୋ ।

୧୯୧୪ ମସିହା ସେପ୍‌ଟେମ୍ବର ୧୪ ତାରିଖ ଦିନ କଲିକତାର କେତେକ ସନ୍ତ୍ରାସବାଦୀ ଓଡ଼ିଶାର କେତେଜଣ ସନ୍ତ୍ରାସବାଦୀଙ୍କ ସହ ମିଶି ଯାଜପୁର ସହରର ଉପକଣ୍ଠରେ ଅବସ୍ଥିତ ବଇନପୁର ଗ୍ରାମର ସହଦେଇ ସାହୁଙ୍କ ଘରେ ଡକାୟତି କରି ଛ’ ହଜାର ଟଙ୍କାର ସୁନାରୁପା ନେଇଯାଇଥିଲେ । ସେମାନଙ୍କୁ ସହାୟତା ଦେଇଥିଲେ କଟକର ଦୁଇଜଣ ପ୍ରଖ୍ୟାତ ସନ୍ତ୍ରାସବାଦୀ । ସେମାନେ ଥିଲେ ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ ଓ ଶଶାଙ୍କ ଶେଖର ବାନାର୍ଜୀ । ପରେ ପରେ ସ୍ୱଦେଶୀ ଆନ୍ଦୋଳନ ଦ୍ୱାରା ପ୍ରଭାବିତ ହୋଇ ଓଡ଼ିଶାବାସୀଙ୍କର ଉନ୍ନତିକଳ୍ପେ ମଧୁସୂଦନ ଦାସ କଟକର ସୁପ୍ରସିଦ୍ଧ ସୁନାରୂପା ଓ ତାରକସି କାମର କାରଖାନା ପ୍ରତିଷ୍ଠା କରିଥିଲେ । ଏଥିସହିତ ସେ ମଧ୍ୟ କଟକରେ ଏକ ଅଭିନବ ଜୋତା କାରଖାନା ପ୍ରତିଷ୍ଠା କରିଥିଲେ । ଅବଶ୍ୟ କିଛିବର୍ଷ ପରେ ଏହା ବନ୍ଦ ହୋଇଯାଇଥିଲା । ମଧୁସୂଦନ ଦାସ ମଧ୍ୟ କଟକ ସମେତ ଓଡ଼ିଶାରେ ସ୍ୱଦେଶୀ ବସ୍ତ୍ର ପ୍ରତି ଆଦର ସୃଷ୍ଟି କରାଇଥିଲେ । ସେତେବେଳେ ଲୋକେ ଯେକୌଣସି ତନ୍ତବୁଣା ଲୁଗାକୁ ‘ମଧୁବାବୁ ଲୁଗା’ କହୁଥିଲେ ।

୧୯୧୯ ମସିହାରେ କଟକରେ ସଂଘଟିତ ଗୋଟିଏ ଘଟଣା ସ୍ୱାଧୀନତା ଆନ୍ଦୋଳନର ଇତିହାସକୁ ସମୃଦ୍ଧିମନ୍ତ କରିଥିଲା । ତାହା ଥିଲା ଭାରତୀ ମନ୍ଦିର ନାମକ ଏକ ଅନୁଷ୍ଠାନ ଗଠନ । ଗୋପବନ୍ଧୁ ଚୌଧୁରୀଙ୍କ ପ୍ରୋତ୍ସାହନ ଏବଂ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଭୃତି କେତେଜଣ ଛାତ୍ର ଓ ଯୁବ ଉତ୍କଳ ଭଗୀରଥି ମହାପାତ୍ରଙ୍କ ସହାୟତାରେ କଟକସ୍ଥିତ ବାଖରାବାଦରେ 'ଭାରତୀ ମନ୍ଦିର' ନାମକ ଏକ ଅନୁଷ୍ଠାନ ଗଠନ କରାଯାଇଥିଲା । ସେଥିରେ ବହୁ ସମ୍ବାଦପତ୍ର ଓ ପୁସ୍ତକ ରଖାଯାଇଥିଲା । ପ୍ରତ୍ୟହ ସନ୍ଧ୍ୟାରେ କଟକର ଛାତ୍ର, ଉତ୍କଳ ଓ ବୁଦ୍ଧିଜୀବୀ ସେଠାରେ ମିଳିତ ହୋଇ ରାଜନୈତିକ ଘଟଣା ଉପରେ ଆଲୋଚନା କରୁଥିଲେ ।

## ସ୍ୱାଧୀନତା ଆନ୍ଦୋଳନର ଶେଷ ପର୍ଯ୍ୟାୟରେ କଟକ ନଗରୀର ଭୂମିକା (ଅସହଯୋଗ ଆନ୍ଦୋଳନରେ କଟକ ନଗରୀ) :

ଇତିମଧ୍ୟରେ ୧୯୨୦ ମସିହା ଡିସେମ୍ବର ମାସରେ ନାଗପୁରଠାରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ଐତିହାସିକ ଅଧିବେଶନରେ ଅସହଯୋଗ ଆନ୍ଦୋଳନର କାର୍ଯ୍ୟକ୍ରମ ସ୍ଥିର କରାଯାଇଥିଲା । ଓଡ଼ିଶା ପାଇଁ ଏକ ସ୍ୱତନ୍ତ୍ର କଂଗ୍ରେସ କମିଟି ଗଠନ କରିବାର ନିଷ୍ପତ୍ତି ସେଇଠାରେ ହିଁ ଗ୍ରହଣ କରାଯାଇଥିଲା । ସେ ପର୍ଯ୍ୟନ୍ତ ବଙ୍ଗଳାପ୍ରଦେଶ କଂଗ୍ରେସ କମିଟିକୁ ଓଡ଼ିଶାର କେତେଜଣ ସଭ୍ୟ ମନୋନୀତ ହୋଇ ଯାଉଥିଲେ । ସେମାନଙ୍କର ନାମ ମଧ୍ୟ ପୂର୍ବରୁ ଉଲ୍ଲେଖ କରାଯାଇଛି । ସେହି ନାଗପୁର ଅଧିବେଶନରେ ଓଡ଼ିଶାରୁ ଗୋପବନ୍ଧୁ ଦାସ, ଠାକୁର ହରେକୃଷ୍ଣ ମହତାବ, ଯଦୁମଣି ମଙ୍ଗରାଜ, ନିରଞ୍ଜନ ପଟ୍ଟନାୟକ, ଭଗୀରଥି ମହାପାତ୍ର, ଜଗବନ୍ଧୁ ସିଂ ଓ ମୁକୁନ୍ଦ ପ୍ରସାଦ ଦାସ ଯୋଗ ଦେଇଥିଲେ । ସେମାନେ ସମସ୍ତେ ଏକତ୍ରିତ ହୋଇ ଏହି କଟକରୁ ବାହାରିଥିଲେ ।

ନାଗପୁର ଅଧିବେଶନରୁ ଗୋପବନ୍ଧୁ ଦାସ ଫେରି ୧୯୨୧ ମସିହା ଜାନୁୟାରୀ ୨୪ ତାରିଖ ଦିନ କାଠଯୋଡ଼ି କୂଳରେ ଏକ ବିରାଟ ସାଧାରଣ ସଭାରେ ନାଗପୁର ଅଧିବେଶନର ଗୃହୀତ ପ୍ରସ୍ତାବ ଉପରେ ଏକ ବିବରଣୀ ଉପସ୍ଥାପନ କରି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ପାଇଁ ଲୋକମାନଙ୍କୁ ଉତ୍ସାହିତ କରିଥିଲେ । ତାଙ୍କର ଉଦ୍ଦୀପନାମୂଳକ ଭାଷଣ ସମଗ୍ର ଓଡ଼ିଶାବାସୀଙ୍କୁ ଅନୁପ୍ରାଣିତ କରିଥିଲା ।

୧୯୨୦ ମସିହାରେ ଓଡ଼ିଶାରେ ଏକ ନାହିଁ ନଥିବା ଦୁର୍ଭିକ୍ଷ ପଡ଼ିଥିଲା । କଟକ ନଗରୀ ସେଥିରୁ ବହିର୍ଭୂତ ନ ଥିଲା । ଏହି କରାଳ ଦୁର୍ଭିକ୍ଷ ଗାନ୍ଧିଜୀଙ୍କୁ ଓଡ଼ିଶା ପ୍ରତି ଆକୃଷ୍ଟ କରାଇଥିଲା । ଫଳରେ ଗାନ୍ଧିଜୀ ଓଡ଼ିଶାକୁ ପୁରୀ ଏକ୍ସପ୍ରେସ ଯୋଗେ ଆସି କଟକରେ ପହଞ୍ଚିଥିଲେ, ୧୯୨୧ ମସିହା ମାର୍ଚ୍ଚ ୨୩ ତାରିଖ ଦିନ । ସେଦିନ ଥିଲା ଦୋଳପୂର୍ଣ୍ଣିମୀ । କଟକ ରେଳ ଷ୍ଟେସନରେ ପ୍ରାୟ ଦଶ ହଜାର ଲୋକ ବିରାଟ

ଶୋଭାଯାତ୍ରାରେ କୀର୍ତ୍ତନ କରି ଗାନ୍ଧିଜୀଙ୍କୁ ସ୍ୱରାଜ ଆଶ୍ରମକୁ ନେଇ ଆସିଥିଲେ ଏକ ସୁ-ସଜ୍ଜିତ ମୋଟର କାର୍‌ରେ । 'ମହାତ୍ମା ଗାନ୍ଧି କି ଜୟ' ଧ୍ୱନିରେ କଟକ ସହରର ଗଗନ ପବନ ମୁଖରିତ ହୋଇ ଉଠିଥିଲା ।

ପ୍ରଥମେ ରେଭେନ୍‌ସା କଲେଜର ପ୍ରଫେସର ରାୟବାହାଦୁର ଯୋଗେଶ ଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ବାସଗୃହରୁ କେତେଜଣ ଛାତ୍ର ଭଡ଼ା ନେଇ ଗୋଟିଏ ମେସ୍ କରିଥିଲେ । ପରେ ସେଠାରେ ଗୋପବନ୍ଧୁ ଦାସ ସ୍ୱରାଜ ଆଶ୍ରମ ନାମ ଦେଇ ତାକୁ କଂଗ୍ରେସ କର୍ମୀମାନଙ୍କର ଆବାସିକ ଗୃହ ରୂପେ ବ୍ୟବହାର କରିଥିଲେ । ସେ ଯାହା-ହେଉ ସେହି ମାର୍ଚ୍ଚ ମାସ ୨୩ ତାରିଖ ସନ୍ଧ୍ୟାରେ କଟକର କାଠଯୋଡ଼ି ବାଲିରେ ଏକ ବିରାଟ ସାଧାରଣ ସଭାରେ ଗାନ୍ଧିଜୀ ଉଦବୋଧନ ଦେଇଥିଲେ । ଉକ୍ତ ସଭାରେ ପଚିଶ ହଜାର ଲୋକ ଉପସ୍ଥିତ ଥିବାର ବର୍ଣ୍ଣନା ପ୍ରତ୍ୟକ୍ଷଦର୍ଶୀ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର "ଗାନ୍ଧିଜୀ ଓ ଓଡ଼ିଶା" ପୁସ୍ତକରେ ଲିପିବଦ୍ଧ କରିଅଛନ୍ତି ।

ଉକ୍ତ ସଭା ପରେ ଗାନ୍ଧିଜୀ ବିନୋଦବିହାରୀ ମନ୍ଦିର ପରିସର ମଧ୍ୟରେ ମାରୁଆଡ଼ି ଓ ଗୁଜୁରାଟି ବ୍ୟବସାୟୀମାନଙ୍କ ସହ ବିଦେଶୀ ବସ୍ତ୍ର ବର୍ଜନ ବିଷୟରେ ଆଲୋଚନା କରିଥିଲେ । ସେହିପରି ମାର୍ଚ୍ଚ ୨୪ ତାରିଖ ସକାଳ ୮ଟାରେ କଦମରସୁଲଠାରେ ମହାତ୍ମାଗାନ୍ଧି ମୁସଲମାନମାନଙ୍କର, ଦିନ ୨ଟା ବେଳେ ନାରୀମାନଙ୍କର ଓ ସନ୍ଧ୍ୟା ୫ଟା ସମୟରେ ଛାତ୍ର ଓ ଓକିଲମାନଙ୍କର ସଭାରେ ଉଦ୍‌ବୋଧନ ଦେଇଥିଲେ । ଏହିସବୁ ସଭାରେ ସେ ମୁଖ୍ୟତଃ ବିଦେଶୀ ବସ୍ତ୍ର ସମେତ ଅନ୍ୟାନ୍ୟ ଦ୍ରବ୍ୟ ବର୍ଜନ, ସ୍କୁଲ୍, କଲେଜ ଓ ସରକାରୀ ଚାକିରି ଆଦି ବର୍ଜନ କରି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବା ପାଇଁ କଟକବାସୀଙ୍କୁ ଆହ୍ୱାନ କରିଥିଲେ । ତାଙ୍କ ଭାଷଣରେ ଉଦ୍‌ବୁଦ୍ଧ ହୋଇ ରେଭେନ୍‌ସା କଲେଜରୁ ଡକ୍ଟର ହରେକୃଷ୍ଣ ମହତାବ, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ ପ୍ରମୁଖ ଛାତ୍ରମାନେ ଶ୍ରେଣୀ ବର୍ଜନ କରି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେହିପରି ଗୋପବନ୍ଧୁ ଚୌଧୁରୀ ଡେପୁଟି କଲେକ୍ଟର ଚାକିରି ଓ ଗୋପବନ୍ଧୁ ଦାସ ଓକିଲାତି ବ୍ୟବସାୟ ପରିହାର କରି ଓଡ଼ିଶାବାସୀଙ୍କ ଆଗରେ ଏକ ମହନୀୟ ଆଦର୍ଶ ଉପସ୍ଥାପନ କରିଥିଲେ ।

ଏହି ସମୟରେ କଟକର ଲୁଗା ବ୍ୟବସାୟୀମାନେ ଏକ ସଙ୍ଗଠନ ପ୍ରତିଷ୍ଠା କରି ବିଦେଶୀ ବସ୍ତ୍ର ବର୍ଜନ ପାଇଁ ପଦକ୍ଷେପ ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ଅନ୍ୟ ସ୍ୱେଚ୍ଛାସେବୀଙ୍କ ସହ ମିଶି ପ୍ରତ୍ୟହ କଟକ ରେଲ୍‌ଷ୍ଟେସନରେ ବିକ୍ଷୋଭ ପ୍ରଦର୍ଶନପୂର୍ବକ ରେଳରେ ଅଣାଯାଉଥିବା ବିଦେଶୀ ବସ୍ତ୍ରକୁ ସହର ମଧ୍ୟକୁ ଛାଡ଼ି ନ ଥିଲେ । ସେହି ୧୯୨୧ ମସିହା ମାର୍ଚ୍ଚ ମାସରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଗଠନ କରାଯାଇଥିଲା । ଏହାର ମୁଖ୍ୟ କାର୍ଯ୍ୟାଳୟ ସ୍ଥାପିତ ହୋଇଥିଲା କଟକ-ନଗରରେ । ଏହାର ସଭାପତି ଥିଲେ ଗୋପବନ୍ଧୁ ଦାସ, ଉପସଭାପତି ଭାବେ ଡକ୍ଟର ଏକରାମ ରସୁଲ୍, ସମ୍ପାଦକ ଭାବେ ଭାଗୀରଥି ମହାପାତ୍ର ଏବଂ ଯୁଗ୍ମ ସମ୍ପାଦକ ଭାବେ

ବ୍ରଜବନ୍ଧୁ ଦାସ ନିର୍ବାଚିତ ହୋଇଥିଲେ । ଏହି ପ୍ରଦେଶ କଂଗ୍ରେସ କମିଟିର ୧୨ ଜଣ ସଦସ୍ୟ ନିଖିଳ ଭାରତ କଂଗ୍ରେସ କମିଟିରେ ପ୍ରତିନିଧି ରୂପେ ଯୋଗଦେବା ପାଇଁ ନିର୍ବାଚିତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ଗୋପବନ୍ଧୁ ଦାସ, ଜଗବନ୍ଧୁ ସିଂ, ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ, ନୀଳକଣ୍ଠ ଦାସ, ଭଗୀରଥି ମହାପାତ୍ର, ବ୍ରଜମୋହନ ପଣ୍ଡା ଏବଂ ଅଟଳ ବିହାରୀ ଆଚାର୍ଯ୍ୟଙ୍କ ନାମ ଉଲ୍ଲେଖଯୋଗ୍ୟ । ସେତିକରେ କଟକ ସହରରେ ଅସହଯୋଗ ଆନ୍ଦୋଳନର ପରିସମାପ୍ତି ହୋଇ ନ ଥିଲା ।

ମହାତ୍ମାଗାନ୍ଧି ମାର୍ଚ୍ଚ ୨୪ ତାରିଖ ଦିନ କଟକ ଛାଡ଼ି ଭଦ୍ରକ ଚାଲିଯାଇଥିଲେ । ସେ ଯିବା ପରେ ମଧ୍ୟ କଟକ ସହରରେ ଅସହଯୋଗ ଆନ୍ଦୋଳନ ବେଶ୍ ସାଫଲ୍ୟ-ମଣ୍ଡିତ ହୋଇ ଚାଲିଥିଲା । ପ୍ରତ୍ୟହ କଟକ ନଗରୀର ବିଭିନ୍ନ ସ୍ଥାନରେ ସାଧାରଣ ସଭାର ଆୟୋଜନ କରାଯାଇ ସେଥିରେ ଜାତୀୟ ବିଦ୍ୟାଳୟ ସ୍ଥାପନ, ସୂତାକଟା, ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ବର୍ଜନ, କୋର୍ଟ କଚେରୀ ବର୍ଜନ ଏବଂ ପଞ୍ଚାୟତ କୋର୍ଟ ଗଠନ ବିଷୟରେ ଭାଷଣମାନ ଦିଆଯାଉଥିଲା । ମଦ୍ୟପାନରୁ ନିବୃତ୍ତ ହେବା ପାଇଁ ମଧ୍ୟ ନେତାମାନେ ଲୋକମାନଙ୍କୁ ଉଦ୍‌ବୋଧନ ଦେଉଥିଲେ । କଟକରେ ଆହୂତ ଏହି ସଭାମାନଙ୍କରେ ଗୋପବନ୍ଧୁ ଦାସ, ଜୀତେନ୍ଦ୍ର ପ୍ରସାଦ ଦାସ, ନିରଞ୍ଜନ ପଟ୍ଟନାୟକ, ବ୍ରଜସୁନ୍ଦର ଦାସ ପ୍ରଭୃତି ନେତୃବୃନ୍ଦ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

ଇତିମଧ୍ୟରେ ସର୍ବଭାରତୀୟ ସ୍ତରରେ ଖିଲାପତ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ତେଣୁ ୧୯୧୯ ମସିହାରେ କଟକର ମୁସଲମାନମାନେ ଏକ ଖିଲାପତ କମିଟି ଗଠନ କରିଥିଲେ ଓ ତା'ର ସଭାପତି ଥିଲେ ଡାକ୍ତର ଏକରାମ ରସୁଲ । ତା'ର ମୁଖ୍ୟ କାର୍ଯ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା କଟକସ୍ଥିତ କଦମରସୁଲଠାରେ । ଏହି ସମୟରେ କଟକରେ ଡାକ୍ତର ହରେକୃଷ୍ଣ ମହତାବ କେତେଜଣ ସ୍ୱେଚ୍ଛାସେବୀଙ୍କୁ ଧରି ବିଦେଶୀ ବସ୍ତ୍ର ନେଇ ଯାଉଥିବା ଚଳନ୍ତି ଗାଡ଼ି ଆଗରେ ଠିଆହୋଇ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ଏଥିପାଇଁ ସେ ଓ ତାଙ୍କ ସହିତ ପାଞ୍ଚଜଣ ସ୍ୱେଚ୍ଛାସେବୀ ୧୫ ଦିନ ଜେଲଦଣ୍ଡ ଭୋଗିଥିଲେ ।

କଟକର ମେଡ଼ିକାଲ କଲେଜର ଛାତ୍ର ମଧ୍ୟ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେମାନଙ୍କ ସମେତ ଅନ୍ୟାନ୍ୟ ଛାତ୍ରମାନେ ମଧ୍ୟ କଟକଠାରେ 'ସ୍ୱରାଜ ସେବକ ସଙ୍ଘ' ନାମରେ ଏକ ଅନୁଷ୍ଠାନ ଗଠନ କରିଥିଲେ । ଏହାର ସମ୍ପାଦକ ଥିଲେ ବ୍ରଜବନ୍ଧୁ ଦାସ । ନବକୃଷ୍ଣ ଚୌଧୁରୀ, ରାମପ୍ରସାଦ ସିଂ, ରଘୁ ରାଉତ, ରାଜକିଶୋର ଦାସ ପ୍ରମୁଖ ବ୍ୟକ୍ତିମାନେ ଏଥିରେ ଅଂଶଗ୍ରହଣ କରିଥିଲେ । ଏହି ଅସହଯୋଗ ଆନ୍ଦୋଳନ ସମୟରେ କଟକରୁ ରାଜକୃଷ୍ଣ ବୋଷ, ଅଟଳବିହାରୀ ଆଚାର୍ଯ୍ୟ, ଯଦୁମଣି ମଙ୍ଗରାଜ, ଡାକ୍ତର ଏକରାମ ରସୁଲ ପ୍ରମୁଖ ନେତାମାନଙ୍କୁ ଗିରଫ କରି ହଜାରିବାଗ ଜେଲକୁ ପଠାଯାଇଥିଲା । ଗୁରୁତର ଅପରାଧୀଙ୍କ ପରି ଅଣ୍ଟାରେ ଦଉଡ଼ି ବାନ୍ଧି ସେମାନଙ୍କୁ କଟକ ସହରର ରାସ୍ତାରେ ଚଲାଇ ଚଲାଇ ନେଇଥିବାର

ଜଣାଯାଏ । କେବଳ ସେତିକି ନୁହେଁ, କଟକ ସହରର ନୂଆବଜାରଠାରେ ଏକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ଏହାର ପ୍ରତିଷ୍ଠାତା ଥିଲେ ମଧୁସୂଦନ ବିଶ୍ୱାଳ, ଦାମୋଦର ମହାନ୍ତି ଓ ଅଟଳବିହାରୀ ଆଚାର୍ଯ୍ୟ । ଏହି ସମୟରେ ମଧ୍ୟ ରାଜାଗୋପାଳାଚାରୀ, ମୋତିଲାଲ ନେହେରୁ, ଡକ୍ଟର ଆନ୍‌ସାରୀ ଏବଂ ଭି. ଜେ ପଟେଲ । କଟକରେ ୧୯୨୨ ମସିହା ଅଗଷ୍ଟ ୩ ତାରିଖ ଦିନ ପହଞ୍ଚି ଭବିଷ୍ୟତର ଆଇନ ଅମାନ୍ୟ ଆନ୍ଦୋଳନ ସାଫଲ୍ୟମଣ୍ଡିତ ହୋଇ ପାରିବ କି ନାହିଁ ସେ ବିଷୟରେ ନେତାମାନଙ୍କ ସହିତ ପରାମର୍ଶ କରିଥିଲେ । ସେହି ନେତାମାନଙ୍କ ମଧ୍ୟରୁ ଗୋପବନ୍ଧୁ ଚୌଧୁରୀ, ନୀଳକଣ୍ଠ ଦାସ ଏବଂ ଗୋଦାବରୀଶ ମିଶ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ ।

ସେହି ୧୯୨୨ ମସିହା ଅଗଷ୍ଟ ତୃତୀୟ ସପ୍ତାହରେ କଟକରେ ସୁଭାଷ ଚନ୍ଦ୍ର ବୋଷ ପଦାର୍ପଣ କରି ଓଡ଼ିଶାରେ ଜାତୀୟ ଆନ୍ଦୋଳନକୁ ପରିପୁଷ୍ଟ କରିଥିଲେ । ୧୯୨୩ ମସିହାରେ କଟକଠାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଏବଂ ଏଥିରେ ପୌରୋହିତ୍ୟ କରିଥିଲେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ । କଟକରେ ମଧ୍ୟ ଚିତ୍ତରଞ୍ଜନ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍ୱରାଜ ପାର୍ଟିର ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା ।

ମଧୁସୂଦନ ଦାସଙ୍କ ଆମନ୍ତ୍ରଣ କ୍ରମେ ଦ୍ୱିତୀୟଥର ପାଇଁ ମହାତ୍ମା ଗାନ୍ଧି ୧୯୨୫ ମସିହା ଅଗଷ୍ଟ ୧୯ ତାରିଖ ଦିନ କଟକ ଆସି ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ଟେନେରୀ ପରିଦର୍ଶନ କରିଥିଲେ । ସେହିଦିନ ମଧ୍ୟ ସେ ମ୍ୟୁନିସିପାଲିଟି ଦ୍ୱାରା ଏକ ସାଧାରଣ ସଭାରେ ଭାଷଣ ଦେବା ସଙ୍ଗେ ସଙ୍ଗେ କଟକ କୁଷ୍ଠାଶ୍ରମ ପରିଦର୍ଶନ କରିଥିଲେ । ଏହା ଥିଲା ଅସହଯୋଗ ଆନ୍ଦୋଳନରେ କଟକ ନଗରୀର ଭୂମିକା ।

## ଆଇନ୍ ଅମାନ୍ୟ ଆନ୍ଦୋଳନରେ କଟକ ନଗରୀର ଭୂମିକା :

କଟକ ନଗରୀରେ ଆଇନ ଅମାନ୍ୟ ଆନ୍ଦୋଳନ ଏକ ଗୁରୁତର ରୂପ ଧାରଣ କରିଥିବାର ଜାଣି ବ୍ରିଟିଶ କର୍ତ୍ତୃପକ୍ଷ କଂଗ୍ରେସ କାର୍ଯ୍ୟକ୍ରମକୁ ବେଆଇନ ଘୋଷଣା କରିବା ସଙ୍ଗେ ସଙ୍ଗେ ୧୯୩୦ ମସିହା ଡିସେମ୍ବର ୧୩ ତାରିଖ ଦିନ କଟକସ୍ଥିତ କଂଗ୍ରେସ ଅଫିସରେ ତାଲା ପକାଇ ଦେଇଥିଲେ । ତେଣୁ ତା' ପରଦିନ ସାରା କଟକ ନଗରୀରେ ପୂର୍ଣ୍ଣ ହରତାଳ ପାଳନ କରାଯାଇଥିଲା । ଅବଶ୍ୟ ତା' ପୂର୍ବରୁ ଶ୍ରୀମତୀ ମାଳତୀ ଚୌଧୁରୀ ଓ ଲିଙ୍ଗରାଜ ମିଶ୍ର ପ୍ରମୁଖ ନେତାଙ୍କୁ ଗିରଫ କରାଯାଇଥିଲା । କଂଗ୍ରେସର ଲାହୋର ଅଧିବେଶନରେ ୧୯୨୯ ମସିହା ଡିସେମ୍ବର ୩୧ ତାରିଖ ଦିନ ଜବାହର-ଲାଲଙ୍କ ଘୋଷଣା ଅନୁଯାୟୀ କଟକରେ ୧୯୩୧ ମସିହା ଜାନୁୟାରୀ ୩୧ ତାରିଖ ଦିନ ସ୍ୱାଧୀନତା ଦିବସ ପାଳନ କରାଯାଇଥିଲା । କେବଳ ସେତିକିରେ କଟକ ନଗରୀ ଭୂମିକାର ପରିସମାପ୍ତି ଘଟି ନଥିଲା ।

ବ୍ରଜବନ୍ଧୁ ଦାସ ନିର୍ବାଚିତ ହୋଇଥିଲେ । ଏହି ପ୍ରଦେଶ କଂଗ୍ରେସ କମିଟିର ୧୨ ଜଣ ସଦସ୍ୟ ନିଖିଳ ଭାରତ କଂଗ୍ରେସ କମିଟିରେ ପ୍ରତିନିଧି ରୂପେ ଯୋଗଦେବା ପାଇଁ ନିର୍ବାଚିତ ହୋଇଥିଲେ । ସେମାନଙ୍କ ମଧ୍ୟରୁ ଗୋପବନ୍ଧୁ ଦାସ, ଜଗବନ୍ଧୁ ସିଂ, ଗୋପବନ୍ଧୁ ଚୌଧୁରୀ, ହରେକୃଷ୍ଣ ମହତାବ, ନୀଳକଣ୍ଠ ଦାସ, ଭାଗୀରଥି ମହାପାତ୍ର, ବ୍ରଜମୋହନ ପଣ୍ଡା ଏବଂ ଅଟଳ ବିହାରୀ ଆଚାର୍ଯ୍ୟଙ୍କ ନାମ ଉଲ୍ଲେଖଯୋଗ୍ୟ । ସେତିକିବେଳେ କଟକ ସହରରେ ଅସହଯୋଗ ଆନ୍ଦୋଳନର ପରିସମାପ୍ତି ହୋଇ ନ ଥିଲା ।

ମହାତ୍ମାଗାନ୍ଧି ମାର୍ଚ୍ଚ ୨୪ ତାରିଖ ଦିନ କଟକ ଛାଡ଼ି ଭଦ୍ରକ ଚାଲିଯାଇଥିଲେ । ସେ ଯିବା ପରେ ମଧ୍ୟ କଟକ ସହରରେ ଅସହଯୋଗ ଆନ୍ଦୋଳନ ବେଶ୍ ସାଫଲ୍ୟ-ମଣ୍ଡିତ ହୋଇ ଚାଲିଥିଲା । ପ୍ରତ୍ୟହ କଟକ ନଗରୀର ବିଭିନ୍ନ ସ୍ଥାନରେ ସାଧାରଣ ସଭାର ଆୟୋଜନ କରାଯାଇ ସେଥିରେ ଜାତୀୟ ବିଦ୍ୟାଳୟ ସ୍ଥାପନ, ସୂତାକଟା, ବିଦ୍ୟାଳୟ ଏବଂ ମହାବିଦ୍ୟାଳୟ ବର୍ଜନ, କୋର୍ଟ କଚେରୀ ବର୍ଜନ ଏବଂ ପଞ୍ଚାୟତ କୋର୍ଟ ଗଠନ ବିଷୟରେ ଭାଷଣମାନ ଦିଆଯାଉଥିଲା । ମଦ୍ୟପାନରୁ ନିବୃତ୍ତ ହେବା ପାଇଁ ମଧ୍ୟ ନେତାମାନେ ଲୋକମାନଙ୍କୁ ଉଦ୍‌ବୋଧନ ଦେଉଥିଲେ । କଟକରେ ଆହୂତ ଏହି ସଭାମାନଙ୍କରେ ଗୋପବନ୍ଧୁ ଦାସ, ଉପେନ୍ଦ୍ର ପ୍ରସାଦ ଦାସ, ନିରଞ୍ଜନ ପଟ୍ଟନାୟକ, ବ୍ରଜସୁନ୍ଦର ଦାସ ପ୍ରଭୃତି ନେତୃବୃନ୍ଦ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

ଇତିମଧ୍ୟରେ ସର୍ବଭାରତୀୟ ସ୍ତରରେ ଖିଲାପତ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ତେଣୁ ୧୯୧୯ ମସିହାରେ କଟକର ମୁସଲମାନମାନେ ଏକ ଖିଲାପତ କମିଟି ଗଠନ କରିଥିଲେ ଓ ତା'ର ସଭାପତି ଥିଲେ ଡକ୍ଟର ଏକରାମ ରସୁଲ । ତା'ର ମୁଖ୍ୟ କାର୍ଯ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା କଟକସ୍ଥିତ କଦମରସୁଲଠାରେ । ଏହି ସମୟରେ କଟକରେ ଡକ୍ଟର ହରେକୃଷ୍ଣ ମହତାବ କେତେଜଣ ସ୍ୱେଚ୍ଛାସେବୀଙ୍କୁ ଧରି ବିଦେଶୀ ବସ୍ତ୍ର ନେଇ ଯାଉଥିବା ଚଳନ୍ତି ଗାଡ଼ି ଆଗରେ ଠିଆହୋଇ ବିକ୍ଷୋଭ ପ୍ରଦର୍ଶନ କରିଥିଲେ । ଏଥିପାଇଁ ସେ ଓ ତାଙ୍କ ସହିତ ପାଞ୍ଚଜଣ ସ୍ୱେଚ୍ଛାସେବୀ ୧୫ ଦିନ ଜେଲଦଣ୍ଡ ଭୋଗିଥିଲେ ।

କଟକର ମେଡ଼ିକାଲ କଲେଜର ଛାତ୍ର ମଧ୍ୟ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେମାନଙ୍କ ସମେତ ଅନ୍ୟାନ୍ୟ ଛାତ୍ରମାନେ ମଧ୍ୟ କଟକଠାରେ 'ସ୍ୱରାଜ ସେବକ ସଙ୍ଘ' ନାମରେ ଏକ ଅନୁଷ୍ଠାନ ଗଠନ କରିଥିଲେ । ଏହାର ସମ୍ପାଦକ ଥିଲେ ବ୍ରଜବନ୍ଧୁ ଦାସ । ନବକୃଷ୍ଣ ଚୌଧୁରୀ, ରାମପ୍ରସାଦ ସିଂ, ରଘୁ ରାଉତ, ରାଜକିଶୋର ଦାସ ପ୍ରମୁଖ ବ୍ୟକ୍ତିମାନେ ଏଥିରେ ଅଂଶଗ୍ରହଣ କରିଥିଲେ । ଏହି ଅସହଯୋଗ ଆନ୍ଦୋଳନ ସମୟରେ କଟକରୁ ରାଜକୃଷ୍ଣ ବୋଷ, ଅଟଳବିହାରୀ ଆଚାର୍ଯ୍ୟ, ଯଦୁମଣି ମଙ୍ଗରାଜ, ଡକ୍ଟର ଏକରାମ ରସୁଲ ପ୍ରମୁଖ ନେତାମାନଙ୍କୁ ଗିରଫ କରି ହଜାରିବାଗ ଜେଲକୁ ପଠାଯାଇଥିଲା । ଗୁରୁତର ଅପରାଧୀଙ୍କ ପରି ଅଣ୍ଟାରେ ଦଉଡ଼ି ବାନ୍ଧି ସେମାନଙ୍କୁ କଟକ ସହରର ରାସ୍ତାରେ ଚଲାଇ ଚଲାଇ ନେଇଥିବାର

ଜଣାଯାଏ । କେବଳ ସେତିକ ନୁହେଁ, କଟକ ସହରର ନୂଆବଜାରଠାରେ ଏକ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ଏହାର ପ୍ରତିଷ୍ଠାତା ଥିଲେ ମଧୁସୂଦନ ବିଶ୍ୱାଳ, ଦାମୋଦର ମହାନ୍ତି ଓ ଅଟଳବିହାରୀ ଆଚାର୍ଯ୍ୟ । ଏହି ସମୟରେ ମଧ୍ୟ ରାଜାଗୋପାଳାଚାରୀ, ମୋତିଲାଲ ନେହେରୁ, ଡାକ୍ତର ଆନ୍‌ସାରୀ ଏବଂ ଭି. ଜେ ପଟେଲ । କଟକରେ ୧୯୨୨ ମସିହା ଅଗଷ୍ଟ ୩ ତାରିଖ ଦିନ ପହଞ୍ଚି ଭବିଷ୍ୟତର ଆଇନ ଅମାନ୍ୟ ଆନ୍ଦୋଳନ ସାଫଲ୍ୟମଣ୍ଡିତ ହୋଇ ପାରିବ କି ନାହିଁ ସେ ବିଷୟରେ ନେତାମାନଙ୍କ ସହିତ ପରାମର୍ଶ କରିଥିଲେ । ସେହି ନେତାମାନଙ୍କ ମଧ୍ୟରୁ ଗୋପବନ୍ଧୁ ଚୌଧୁରୀ, ନୀଳକଣ୍ଠ ଦାସ ଏବଂ ଗୋଦାବରୀଶ ମିଶ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ ।

ସେହି ୧୯୨୨ ମସିହା ଅଗଷ୍ଟ ତୃତୀୟ ସପ୍ତାହରେ କଟକରେ ସୁଭାଷ ଚନ୍ଦ୍ର ବୋଷ ପଦାର୍ପଣ କରି ଓଡ଼ିଶାରେ ଜାତୀୟ ଆନ୍ଦୋଳନକୁ ପରିପୁଷ୍ଟ କରିଥିଲେ । ୧୯୨୩ ମସିହାରେ କଟକଠାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା ଏବଂ ଏଥିରେ ପୌରୋହିତ୍ୟ କରିଥିଲେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ । କଟକରେ ମଧ୍ୟ ଚିତ୍ତରଞ୍ଜନ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍ୱରାଜ ପାର୍ଟିର ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା ।

ମଧୁସୂଦନ ଦାସଙ୍କ ଆମନ୍ତ୍ରଣ କ୍ରମେ ଦ୍ୱିତୀୟଥର ପାଇଁ ମହାତ୍ମା ଗାନ୍ଧି ୧୯୨୫ ମସିହା ଅଗଷ୍ଟ ୧୯ ତାରିଖ ଦିନ କଟକ ଆସି ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କଳ ଟେନେରୀ ପରିଦର୍ଶନ କରିଥିଲେ । ସେହିଦିନ ମଧ୍ୟ ସେ ମ୍ୟୁନିସପାଲିଟି ହତାର ଏକ ସାଧାରଣ ସଭାରେ ଭାଷଣ ଦେବା ସଙ୍ଗେ ସଙ୍ଗେ କଟକ କୁଷ୍ଠାଶ୍ରମ ପରିଦର୍ଶନ କରିଥିଲେ । ଏହା ଥିଲା ଅସହଯୋଗ ଆନ୍ଦୋଳନରେ କଟକ ନଗରୀର ଭୂମିକା ।

## ଆଇନ୍ ଅମାନ୍ୟ ଆନ୍ଦୋଳନରେ କଟକ ନଗରୀର ଭୂମିକା :

କଟକ ନଗରୀରେ ଆଇନ ଅମାନ୍ୟ ଆନ୍ଦୋଳନ ଏକ ଗୁରୁତର ରୂପ ଧାରଣ କରିଥିବାରୁ ଜାଣି ବ୍ରିଟିଶ କର୍ତ୍ତୃପକ୍ଷ କଂଗ୍ରେସ କାର୍ଯ୍ୟକ୍ରମକୁ ବେଆଇନ ଘୋଷଣା କରିବା ସଙ୍ଗେ ସଙ୍ଗେ ୧୯୩୦ ମସିହା ଡିସେମ୍ବର ୧୩ ତାରିଖ ଦିନ କଟକସ୍ଥିତ କଂଗ୍ରେସ ଅଫିସରେ ତାଲା ପକାଇ ଦେଇଥିଲେ । ତେଣୁ ତା' ପରଦିନ ସାରା କଟକ ନଗରୀରେ ପୂର୍ଣ୍ଣ ହରତାଳ ପାଳନ କରାଯାଇଥିଲା । ଅବଶ୍ୟ ତା' ପୂର୍ବରୁ ଶ୍ରୀମତୀ ମାଳତୀ ଚୌଧୁରୀ ଓ ଲିଙ୍ଗରାଜ ମିଶ୍ର ପ୍ରମୁଖ ନେତାଙ୍କୁ ଗିରଫ କରାଯାଇଥିଲା । କଂଗ୍ରେସର ଲାହୋର ଅଧିବେଶନରେ ୧୯୨୯ ମସିହା ଡିସେମ୍ବର ୩୧ ତାରିଖ ଦିନ ଜବାହରଲାଲଙ୍କ ଘୋଷଣା ଅନୁଯାୟୀ କଟକରେ ୧୯୩୧ ମସିହା ଜାନୁୟାରୀ ୩୧ ତାରିଖ ଦିନ ସ୍ୱାଧୀନତା ଦିବସ ପାଳନ କରାଯାଇଥିଲା । କେବଳ ଏତିକରେ କଟକ ନଗରୀ ଭୂମିକାର ପରିସମାପ୍ତି ଘଟି ନଥିଲା ।

ଗାନ୍ଧିଜୀଙ୍କ ଆହ୍ୱାନ କ୍ରମେ ସର୍ବଭାରତୀୟ ସ୍ତରରେ ହରିଜନ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଏହାର କାର୍ଯ୍ୟକ୍ରମ ୧୯୩୩ ମସିହାରେ ପ୍ରତିଷ୍ଠିତ ହୋଇଥିବା ହରିଜନ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହି ଆନ୍ଦୋଳନ କଟକ ନଗରୀରେ ରମାଦେବୀଙ୍କ ନେତୃତ୍ୱରେ ଏପରି ସାଫଲ୍ୟମଣ୍ଡିତ ହୋଇଥିଲା ଯେ, ୧୯୩୩ ମସିହା ମାର୍ଚ୍ଚ ୨୫ ତାରିଖର 'ହରିଜନ' ସଂଖ୍ୟାରେ ରମାଦେବୀ ପଠାଇଥିବା ବିବରଣୀ ଗାନ୍ଧିଜୀଙ୍କ ନିର୍ଦ୍ଦେଶରେ ପ୍ରକାଶିତ ହୋଇଥିଲା । ତା'ର ଏକ ଉଦ୍ଧୃତାଂଶ ଥିଲା ନିମ୍ନ ପ୍ରକାରର "ଗତ ଅକ୍ଟୋବରଠାରୁ ଅନ୍ୟ ସାତଜଣ ଭଉଣୀଙ୍କ ସହ ମୁଁ ହରିଜନମାନଙ୍କ ମଧ୍ୟରେ କାର୍ଯ୍ୟ କରୁଛି । କଟକ ସହର ମଧ୍ୟରେ ଆମର କାର୍ଯ୍ୟ ସୀମାବଦ୍ଧ । ଅସ୍ପୃଶ୍ୟତା ନିବାରଣ କମିଟି ନିର୍ଦ୍ଦେଶରେ ଆମ୍ଭେମାନେ ସ୍ୱେଚ୍ଛାସେବିକା ଭାବେ କାର୍ଯ୍ୟ କରୁଛୁ ।"

ଇତିମଧ୍ୟରେ ୧୯୩୪ ମସିହାରେ ଗାନ୍ଧିଜୀ ୪ର୍ଥ ଥର ପାଇଁ ଓଡ଼ିଶା ଆସିଥିଲେ । ଏଥର ଜାମସେଦପୁରରୁ ଝାରସୁଗୁଡ଼ା ବାଟେ ଆସି କଟକରେ ପହଞ୍ଚିଥିଲେ । ତାଙ୍କ ଆଗମନ ଉପଲକ୍ଷେ ୧୯୩୪ ମସିହା ମେ' ୧୬ ତାରିଖ ସନ୍ଧ୍ୟାରେ କଟକର କାଠଯୋଡ଼ି ବାଲିରେ ଏକ ବିରାଟ ସାଧାରଣ ସଭାର ଆୟୋଜନ କରାଯାଇଥିଲା । ଉକ୍ତ ସଭାରେ ଏକ ଚମକପ୍ରଦ ଘଟଣା ସଂଘଟିତ ହୋଇଥିବାର ଜଣାଯାଏ । ସଭାକାର୍ଯ୍ୟ ଆରମ୍ଭ ପୂର୍ବରୁ କେତେଜଣ ସନାତନୀ ପଣ୍ଡିତ ତାଙ୍କ ସମର୍ଥକଙ୍କ ସହ ଆସି ଗାନ୍ଧିଜୀଙ୍କୁ କଳାପତାକା ପ୍ରଦର୍ଶନ କରିଥିଲେ । ମାତ୍ର ଏଥିରେ ଗାନ୍ଧିଜୀ ତିଳେମାତ୍ର ବିଚଳିତ ନ ହୋଇ ସେମାନଙ୍କୁ ସଭାରେ ପ୍ରଥମେ କହିବାକୁ ସୁଯୋଗ ଦିଆଯାଉ ବୋଲି ନିର୍ଦ୍ଦେଶ ଦେଇଥିଲେ । ତେଣୁ ସେମାନଙ୍କୁ ସଭାମଣ୍ଡପକୁ ନିଆଯାଇଥିଲା ।

ଗାନ୍ଧିଜୀ ଅସ୍ପୃଶ୍ୟତା ଆନ୍ଦୋଳନର କର୍ଣ୍ଣଧାର ଥିବାରୁ ସନାତନୀ ପଣ୍ଡିତ ଏପରି କାର୍ଯ୍ୟ କରିଥିବାର ଜଣାଯାଏ । ସେମାନଙ୍କ ବକ୍ତବ୍ୟ ପରେ ଗାନ୍ଧିଜୀ ତାଙ୍କ ବକ୍ତୃତାରେ ଏପରି ଏକ ଆନ୍ଦୋଳନର ଉପାଦେୟତା ଉପରେ ଏକ ଉଦ୍ଦୀପନାମୂଳକ ଭାଷଣ ଦେଇ ସେମାନଙ୍କର ମତ ପରିବର୍ତ୍ତନ କରାଇ ପାରିଥିଲେ । କଟକରେ ଗାନ୍ଧିଜୀଙ୍କ ପଦଯାତ୍ରା ସମୟରେ ମହିଳାମାନେ ୭୮ ଟଙ୍କା ଆଠଅଣା ସଂଗ୍ରହ କରି ଗାନ୍ଧିଜୀଙ୍କୁ ଦାନ କରିଥିଲେ । ଗାନ୍ଧିଜୀ ମଧ୍ୟ ମହିଳାମାନଙ୍କ ଦ୍ୱାରା ଆୟୋଜିତ ଏକ ସଭାରେ ଯୋଗ ଦେଇଥିଲେ । ଗାନ୍ଧିଜୀଙ୍କ ଆଗମନ ଉପଲକ୍ଷେ କଟକରେ ସର୍ବମୋଟ ୮୨୨ ଟଙ୍କା ଆଠଅଣା ସଂଗ୍ରହ କରାଯାଇ ତାହା ଗାନ୍ଧିଜୀଙ୍କୁ ଦିଆଯାଇଥିଲା । ଗାନ୍ଧିଜୀ କଟକରୁ ଟ୍ରେନ ଯୋଗେ ପାଟନା ଯାତ୍ରା କରିଥିଲେ ।

ସେହି ସମୟରେ ରମାଦେବୀ କଟକରେ ଏକ ଆଶ୍ରମ ପରିଚାଳନା କରୁଥିଆନ୍ତି । ଗାନ୍ଧିଜୀ ଉକ୍ତ ଆଶ୍ରମ ପରିଦର୍ଶନ କରିବା ପରେ ରମାଦେବୀଙ୍କୁ ଭୂୟସୀ ପ୍ରଶଂସା କରି କହିଥିଲେ—"ରମାଦେବୀ ଓ ତାଙ୍କର ଶ୍ରେଷ୍ଠ ଦଳଟି ଯେପରି ସ୍ୱାଭାବିକ

ଓ ସୁନ୍ଦର ଭାବେ କାର୍ଯ୍ୟ କରୁଛନ୍ତି, ଯେପରି ମୁଁ ଅନ୍ୟତ୍ର ଦେଖିନାହିଁ । ସେମାନେ ନିଜ ପାଇଁ କୌଣସି ବିଶେଷ ସୁବିଧା ଦରକାର କରିନାହାନ୍ତି ବା ଦାବି କରିନାହାନ୍ତି ।"

ଇତିମଧ୍ୟରେ ସ୍ୱାଧୀନତା ଆନ୍ଦୋଳନର ଘଟଣାଗୁଡ଼ିକ କ୍ଷିପ୍ର ଗତିରେ ଗଡ଼ି-ଚାଲିଥିଲା । କଂଗ୍ରେସ ମଧ୍ୟରେ ପରିବର୍ତ୍ତନ ପନ୍ଥୀ ଓ ଅପରିବର୍ତ୍ତନ ପନ୍ଥୀ ନାମରେ ଦୁଇଟି ଗୋଷ୍ଠୀ ସୃଷ୍ଟି ହୋଇଥିଲା । ଅପରିବର୍ତ୍ତନ ପନ୍ଥୀମାନେ ଗାନ୍ଧିଜୀଙ୍କ ନୀତିକୁ ଅକ୍ଷୁଣ୍ଣ ରଖିବା ପାଇଁ ଗାନ୍ଧୀ ସେବା ସଂଘ ନାମରେ ଏକ ଅନୁଷ୍ଠାନ ଗଠନ କରିଥିଲେ । ଓଡ଼ିଶାରେ ଆଚାର୍ଯ୍ୟ ହରିହର ଦାସ ଓ ଗୋପବନ୍ଧୁ ଚୌଧୁରୀ ପ୍ରମୁଖ ନେତାମାନେ ନିର୍ବାଚନ ରାଜନୀତିରୁ ଅଲଗା ରହି ଗାନ୍ଧୀ ସେବାସଂଘ ପରିଚାଳନା କରିଥିଲେ । କଟକରେ ସେମାନଙ୍କର ମୁଖ୍ୟ କାର୍ଯ୍ୟାଳୟ ସ୍ଥାପିତ ହୋଇଥିଲା । ଇତିମଧ୍ୟରେ ୧୯୩୭ ମସିହା ସାଧାରଣ ନିର୍ବାଚନରେ କଂଗ୍ରେସ ପୂର୍ଣ୍ଣପ୍ରାଣରେ ଯୋଗ ଦେଇ ଅଧିକାଂଶ ପ୍ରଦେଶରେ ସଂଖ୍ୟାଗରିଷ୍ଠତା ହାସଲ କରିଥିଲା । ତନ୍ମଧ୍ୟରୁ ଓଡ଼ିଶା ଥିଲା ଅନ୍ୟତମ । ଓଡ଼ିଶାରେ କଂଗ୍ରେସ ଦଳ ମନ୍ତ୍ରିମଣ୍ଡଳ ଗଠନ କରିଥିଲା ଓ ବିଶ୍ୱନାଥ ଦାସ ହୋଇଥିଲେ ମୁଖ୍ୟମନ୍ତ୍ରୀ । କଟକରେ ତାଙ୍କର କାର୍ଯ୍ୟାଳୟ ଅବସ୍ଥାପିତ ହୋଇଥିଲା ।

୧୯୩୮ ମସିହା ଥିଲା ଓଡ଼ିଶା ପାଇଁ ଏକ ଗୌରବୋଜ୍ଜ୍ୱଳ ବର୍ଷ । ସେହିବର୍ଷ ମାର୍ଚ୍ଚ ୨୫ରୁ ୩୧ ତାରିଖ ପର୍ଯ୍ୟନ୍ତ ପୁରୀ ଜିଲ୍ଲାର ଡେଲାଙ୍ଗଠାରେ ଗାନ୍ଧୀ ସେବା ସଂଘର ଚତୁର୍ଥ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଉକ୍ତ ଅଧିବେଶନ ସହିତ କଟକନଗରୀ ପ୍ରତ୍ୟକ୍ଷଭାବେ ଅଂଶଗ୍ରହଣ କରି ନଥିଲେ ମଧ୍ୟ ଏଠାକାର ବହୁ ନେତା ଉକ୍ତ ଅଧିବେଶନର ପରିଚାଳନା ଦାୟିତ୍ୱରେ ରହିଥିଲେ । ଅଧିବେଶନ ନିମନ୍ତେ ଗଠିତ ଅଭ୍ୟର୍ଥନା ସମିତିର ସଭାପତି ଥିଲେ ଗୋପବନ୍ଧୁ ଚୌଧୁରୀ । ମାର୍ଚ୍ଚ ୨୭ ତାରିଖ ଦିନ କଟକ ମ୍ୟୁନିସିପାଲିଟିର ତତ୍କାଳୀନ ସଭାପତି ସତ୍ୟନାରାୟଣ ସେନଗୁପ୍ତ ଉକ୍ତ ଅଧିବେଶନରେ କଟକ ସହରର ଜଳ ନିଷ୍କାସନ ଉପରେ ଆଲୋଚନା କରିଥିଲେ ।

## କଟକନଗରୀରେ ଯୁଦ୍ଧ ବିରୋଧୀ ଓ ବ୍ୟକ୍ତିଗତ ସତ୍ୟାଗ୍ରହ ଆନ୍ଦୋଳନ :

ତା'ପରେ ଆସିଥିଲା ୧୯୩୯ ମସିହା—ସମଗ୍ର ବିଶ୍ୱ ପାଇଁ ଏହା ଥିଲା ଏକ ଅଭିଶପ୍ତ ବର୍ଷ । ସେହିବର୍ଷ ସେପ୍ଟେମ୍ବର ୩ ତାରିଖ ଦିନ ସୂତ୍ରପାତ ହୋଇଥିଲା ବିଧ୍ୱଂସକାରୀ ଦ୍ୱିତୀୟ ବିଶ୍ୱଯୁଦ୍ଧ । ଭାରତୀୟ ନେତାଙ୍କର ମତ ନ ନେଇ ତତ୍କାଳୀନ ଭାଇସ୍‌ରୟ ଲର୍ଡ଼ ଲିନ୍‌ଲିଥଗୋ ଭାରତକୁ ଏକ ପକ୍ଷ କରିବାରୁ ସର୍ବତ୍ର ଅସନ୍ତୋଷ ଦେଖା ଦେଇଥିଲା ।

୧୯୩୯ ମସିହା ସେପ୍ଟେମ୍ବର ୧୪ ତାରିଖ ଦିନ ଭାରତୀୟ ଜାତୀୟ କଂଗ୍ରେସ ଏକ ନିଷ୍ପତ୍ତି ନେଇଥିଲା ଯେ ଯୁଦ୍ଧ ପରେ ଭାରତୀୟଙ୍କୁ ତାଙ୍କ ସମ୍ବିଧାନ ପ୍ରଣୟନ

କରିବା ନିମନ୍ତେ ପୂର୍ଣ୍ଣ ସ୍ୱାଧୀନତା ଦେବାପାଇଁ ଘୋଷଣା ନ କରିବା ପର୍ଯ୍ୟନ୍ତ ଏହିପରି ଇଂଲଣ୍ଡ ସମେତ ମିତ୍ରଶକ୍ତିଙ୍କୁ ସହାୟତା ଦେବନାହିଁ । ଫଳରେ ସମଗ୍ର ଭାରତବର୍ଷରେ ଯୁଦ୍ଧବିରୋଧୀ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଏଥିସହିତ ଓଡ଼ିଶା ମଧ୍ୟ ତାହା ଦେଇ ଗତିକରିଥିଲା । ଏହାର ନେତୃତ୍ୱ ନେଇଥିଲେ ଉଭୟ କଂଗ୍ରେସ ଓ ସମାଜବାଦୀ ଦଳ ଓ କଟକ ହୋଇଥିଲା ସେମାନଙ୍କର ମୁଖ୍ୟ କର୍ମଭୂମି । ଏହାରି ପ୍ରଥମ ପଦକ୍ଷେପ ସ୍ୱରୂପ ଓଡ଼ିଶାରେ ଗଠିତ କଂଗ୍ରେସ ମନ୍ତ୍ରିମଣ୍ଡଳ ୧୯୩୯ ମସିହା ନଭେମ୍ବର ୪ ତାରିଖ ଦିନ ଇସ୍ତଫା ଦେଇଥିଲା । ପରେ ପରେ ଯୁଦ୍ଧବିରୋଧୀ ଆନ୍ଦୋଳନକୁ ତ୍ୱରାନ୍ୱିତ କରିବାପାଇଁ ଛାତ୍ର ଓ ସ୍ୱେଚ୍ଛାସେବୀମାନଙ୍କୁ ପ୍ରୋତ୍ସାହିତ କରାଯାଇଥିଲା ।

ଇତି ମଧ୍ୟରେ ବ୍ରିଟିଶ କର୍ତ୍ତୃପକ୍ଷଙ୍କ ଦ୍ୱାରା ପ୍ରଭାବିତ ହୋଇଥିବା ମୁସଲିମ ଲିଗ, କଂଗ୍ରେସର 'ଯୁଦ୍ଧବିରୋଧୀ କାର୍ଯ୍ୟକ୍ରମକୁ ଗ୍ରହଣ କରି ନ ଥିଲା । ଫଳରେ ଏକ ମୁସଲିମ୍ ଲିଗ ବିରୋଧୀ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଓଡ଼ିଶାରେ ମଧ୍ୟ କେତେ-ଜଣ ମୁସଲମାନ ମୁସଲିମ୍ ଲିଗର ଏତାଦୃଶ କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କରିଥିଲେ । ତେଣୁ ମୁସଲିମ୍ ଲିଗର ବିରୋଧୀ ହୋଇ କଂଗ୍ରେସ ସହାୟତାରେ ସେମାନେ କଟକରେ ଜାନୁୟାରୀ ୭ ତାରିଖରୁ ୧୩ ତାରିଖ ପର୍ଯ୍ୟନ୍ତ କେତୋଟି ସଭାର ଆୟୋଜନ କରିଥିଲେ । ସେଠାରେ ଏ ସମ୍ପର୍କରେ କଂଗ୍ରେସର କାର୍ଯ୍ୟକ୍ରମ ଉପରେ ଆଲୋକପାତ କରାଯାଇଥିଲା ।

ସେହି ସମୟରେ ମଧ୍ୟ କଟକ ଜିଲ୍ଲାର ଅନ୍ୟ କେତୋଟି ସ୍ଥାନରେ ଏପରି କେତୋଟି ସଭା ଆୟୋଜିତ ହୋଇଥିବାର ଜଣାଯାଏ । ମାତ୍ର ଓଡ଼ିଶାସ୍ଥିତ ମୁସଲିମ୍ ଲିଗର ଅନ୍ୟ ଗୋଟିଏ ଶାଖା ମୁସଲିମ୍ ଲିଗ ବିରୋଧୀ କାର୍ଯ୍ୟକ୍ରମକୁ ବର୍ଜନ କରିବା ସଙ୍ଗେ ସଙ୍ଗେ ସର୍ବଭାରତୀୟ ସ୍ତରରେ ଗଠିତ ମୁସଲିମ୍ ଲିଗର କାର୍ଯ୍ୟକ୍ରମକୁ ସର୍ବାନ୍ତଃକରଣରେ ଗ୍ରହଣ କରିବାର ନିଷ୍ପତ୍ତି ନେଇଥିଲେ । ଉକ୍ତ ନିଷ୍ପତ୍ତି ଅନୁଯାୟୀ ୧୯୪୦ ମସିହା ଏପ୍ରିଲ ୧୯ ତାରିଖ ଦିନ କଟକରେ ପାକିସ୍ତାନ ଦିବସ ପାଳିତ ହୋଇଥିଲା ।

ଇତ୍ୟବସରରେ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ମିତ୍ରଶକ୍ତିଙ୍କର ଅବସ୍ଥା ଅତ୍ୟନ୍ତ ବିପଦସଙ୍କୁଳ ହୋଇପଡ଼ିଥିଲା । ୧୯୪୦ରେ ଇଂଲଣ୍ଡ ଯେ କେବଳ ଆସନ୍ନ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା ତା' ନୁହେଁ, ଏହାର ପୂର୍ଣ୍ଣ ପରାଜୟ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ଏପରି ଶୋଚନୀୟ ଅବସ୍ଥାରେ 'ଦୟାର୍ଦ୍ର' ଗାନ୍ଧିଜୀଙ୍କ ହୃଦୟ ବ୍ରିଟିଶଙ୍କ ପ୍ରତି ସହାନୁଭୂତିରେ ବିଗଳିତ ହୋଇ ଯାଇଥିଲା ।

୧୯୪୦ ଜୁନ୍ ୧ ତାରିଖ ଦିନ ସେ ଘୋଷଣା କରି କହିଥିଲେ, ବ୍ରିଟିଶର ବିପର୍ଯ୍ୟୟ ବଦଳରେ ଆମ୍ଭେମାନେ ସ୍ୱାଧୀନତା ଚାହୁଁନା । ଯୁଦ୍ଧକାଳୀନ ପରିସ୍ଥିତିରେ ଗଣ ଆଇନ ଅମାନ୍ୟ ଆନ୍ଦୋଳନ ପ୍ରବର୍ତ୍ତନ ନ କରି ଏକ ଅଭିନବ ଆନ୍ଦୋଳନାତ୍ମକ ପନ୍ଥା ଅବଲମ୍ବନ କରିବା ପାଇଁ ଗାନ୍ଧିଜୀ ଆଗ୍ରହୀ ହୋଇଥିଲେ । ତାହା ବ୍ୟକ୍ତିଗତ

ଆଇନ ଅମାନ୍ୟ ଆନ୍ଦୋଳନ । ୧୯୪୦ ନଭେମ୍ବର ମାସ ଉକ୍ତ ଆନ୍ଦୋଳନ ଉଦ୍‌ଘାଟିତ ହୋଇଥିଲା । ଏହା ମଧ୍ୟ ଓଡ଼ିଶାରେ ଅନୁଷ୍ଠିତ ହୋଇଥିଲା ଓ କଟକନଗରୀ ଏଥିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା ।

ଓଡ଼ିଶାରେ ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ ଉଦ୍‌ଘାଟିତ ହୋଇଥିଲା ୧୯୪୦ ମସିହା ଡିସେମ୍ବର ୧ ତାରିଖ ଦିନ । ଉକ୍ତ ଆନ୍ଦୋଳନର ପରିଚାଳନା ପାଇଁ ପ୍ରାଣକୃଷ୍ଣ ପଡ଼ିହାରୀ ପ୍ରାଦେଶିକ ନିର୍ଦ୍ଦେଶକ ଭାବେ ନିଯୁକ୍ତ ପାଇଥିଲେ । ପ୍ରଥମ ଦଫାରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ୧୦ ଜଣ ସତ୍ୟାଗ୍ରହୀ ଯୋଗ ଦେଇଥିଲେ । ସେମାନଙ୍କୁ ମଧ୍ୟ ଗିରଫ କରାଯାଇଥିଲା । ତନ୍ମଧ୍ୟରୁ ବିଶ୍ୱନାଥ ଦାସଙ୍କୁ କଟକରୁ ଗିରଫ କରାଯାଇଥିଲା । ଏହାର କିଛି ଦିନ ପୂର୍ବରୁ କଟକରେ ଭାରତୀୟ ସେବକ ସମାଜର ଏକ ସମ୍ମିଳନୀ ନଭେମ୍ବର ୨୪ ତାରିଖରୁ ନଭେମ୍ବର ୨୮ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ଏଥିରେ ସର୍ବଭାରତୀୟ ନେତା ପୁରୁଷୋତ୍ତମ ଦାସ ଟଣ୍ଡନ, ହରିନାଥ ଶାସ୍ତ୍ରୀ ଓ ବଳବନ୍ତ ରାୟ ମେହେଟ୍ଟା ଯୋଗ ଦେଇଥିଲେ । ପରେ ପରେ ୧୯୪୧ ମସିହା ଜାନୁୟାରୀ ୨୭ ତାରିଖ ଦିନ ଏମ୍. ଏନ୍. ରାୟ କଟକରେ ପହଞ୍ଚିଲେ ଓ ତାଙ୍କ ଆଗମନ ଉପଲକ୍ଷେ ଏକ ସଭାର ଆୟୋଜନ କରାଯାଇଥିଲା । ଉକ୍ତ ସଭାରେ ପୌରୋହିତ୍ୟ କରିଥିଲେ ପଣ୍ଡିତ ନୀଳକଣ୍ଠ ଦାସ ।

୧୯୪୧ ମସିହା ଡିସେମ୍ବର ମାସରେ ବ୍ୟକ୍ତିଗତ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖାଯାଇଥିଲା । ଏହି ୧୯୪୧ ମସିହାରେ କଟକରୁ 'ରଚନା' ନାମରେ ଏକ ପତ୍ରିକା ପ୍ରକାଶିତ ହୋଇଥିଲା ଓ ଏହାର ସମ୍ପାଦକ ଥିଲେ ଠାକୁର ହରେକୃଷ୍ଣ ମହତାବ । ଏଥିରେ 'ହରିଜନ' ପତ୍ରିକାରେ ପ୍ରକାଶିତ ଲେଖାମାନ ସ୍ଥାନ ପାଉଥିଲା । ଏଥିପାଇଁ ହରିଜନ ପତ୍ରିକାର ସମ୍ପାଦକଙ୍କ ସହିତ ବୁଝାମଣା ହୋଇଥିଲା । ଯୁଦ୍ଧ-କାଳୀନ ପରିସ୍ଥିତିରେ ଜନସାଧାରଣ ଓ ନେତାଙ୍କୁ ଧୀର ଓ ନିର୍ଭୀକ କରିବା ଥିଲା ଉକ୍ତ ପତ୍ରିକାର ଆଭିମୁଖ୍ୟ ।

୧୯୪୨ ମସିହାରେ କଟକନଗରୀରେ ପଦାର୍ପଣ କରିଥିଲେ ଅନ୍ୟତମ ପ୍ରଖ୍ୟାତ ନାରୀନେତ୍ରୀ । ତାଙ୍କ ନାମ ଥିଲା ମୀରାବେନ । ସେ ଥିଲେ ଜଣେ ଇଂରାଜୀ ମହିଳା, ଇଂରେଜ ନୌବାହିନୀ ସେନାପତିଙ୍କର କନ୍ୟା । ମୂଳ ନାମ ଥିଲା ମିସ୍ ସ୍ଲେଡ୍ । ମାତ୍ର ମହାତ୍ମାଗାନ୍ଧିଙ୍କର ଆଦର୍ଶ, ଆଭିମୁଖ୍ୟ ଓ ଗଠନମୂଳକ କାର୍ଯ୍ୟକ୍ରମ ଦ୍ୱାରା ପ୍ରଭାବିତ ହୋଇ ତାଙ୍କ ସହିତ କାର୍ଯ୍ୟ କରିବା ପାଇଁ ନିଷ୍ପତ୍ତି ନେବା ସଙ୍ଗେ ସଙ୍ଗେ ଏ ଦିଗରେ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ସେ ଓଡ଼ିଶାକୁ ଆସିବା ପାଇଁ ଆଗ୍ରହୀ ହେବାରୁ ମହାତ୍ମାଗାନ୍ଧି ତାଙ୍କୁ ପ୍ରେରଣ କରିଥିଲେ । ତାଙ୍କ ଆଗମନ ବିଷୟରେ ଗାନ୍ଧିଜୀ ଡାକ୍ତର ହରେକୃଷ୍ଣ ମହତାବଙ୍କୁ ତରଦ୍ୱାରା ଜଣାଇ ଥିଲେ । ତେଣୁ ଡାକ୍ତର ମହତାବ କଟକ ଷ୍ଟେସନରେ ମୀରାବେନଙ୍କୁ ଭେଟି କଟକସ୍ଥିତ କଂଗ୍ରେସ ଅଫିସକୁ ନେଇଯାଇଥିଲେ ।

ଏହା ଥିଲା ୧୯୪୨ ମସିହା ମେ ମାସର ଘଟଣା । କଟକରେ ଡକ୍ଟର ମହତାବଙ୍କ ଦ୍ୱାରା ଆୟୋଜିତ ସଭାରେ ସେ ଗାନ୍ଧିଜୀଙ୍କର ମତ ବୁଝାଇବା ସଙ୍ଗେ ସଙ୍ଗେ ଜାପାନୀମାନେ ଯଦି ଭାରତ ଆକ୍ରମଣ କରନ୍ତି, ତାକୁ ପ୍ରତିହତ କରିବା ପାଇଁ ପ୍ରସ୍ତୁତ ହୋଇ ରହିବା ପାଇଁ ଉପସ୍ଥିତ ଜନତାଙ୍କୁ ଉଦ୍‌ବୋଧନ ଦେଇଥିଲେ । ମୀରାବେନ କଟକରୁ ଚାଲିଯାଇଥିଲେ ଓ ତାଙ୍କ ସହିତ ଥିଲେ ଡକ୍ଟର ମହତାବ ।

ଇତିମଧ୍ୟରେ ଉତ୍କଳ କଂଗ୍ରେସ ସମାଜବାଦୀ ଦଳ ପ୍ରତିଷ୍ଠା ହୋଇସାରିଥିଲା ଓ ତା'ର ସଭାପତି ଥିଲେ ସୁରେନ୍ଦ୍ର ନାଥ ଦ୍ୱିବେଦୀ । ସର୍ବଭାରତୀୟ କଂଗ୍ରେସ ସମାଜବାଦୀ ଦଳର କାର୍ଯ୍ୟକାରୀ ସମ୍ପାଦକ ରାମନନ୍ଦନ ମିଶ୍ର ୧୯୪୨ ମସିହା ଜୁଲାଇ ୨୨ ତାରିଖ ଦିନ କଟକ ଆସିଥିଲେ । ସ୍ଥାନୀୟ ରାଜନୈତିକ ଅବସ୍ଥା ବିଷୟରେ ତଥ୍ୟ ସଂଗ୍ରହ କରିବା ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ । ତାଙ୍କ ଆଗମନ ଉପଲକ୍ଷେ କଟକରେ ସେଦିନ ଏକ ବିରାଟ ସାଧାରଣ ସଭାର ଆୟୋଜନ କରାଯାଇଥିଲା । ସେଠାରେ ସେ ତାଙ୍କ ଦଳର ଆଭିମୁଖ୍ୟ ଉପରେ ଆଲୋକପାତ କରି କହିଥିଲେ ଯେ ଭାରତର ଜନସାଧାରଣଙ୍କୁ ଇଂରେଜ ପ୍ରଶାସକ, ପୁଞ୍ଜିବାଦୀ ଓ ଜମିଦାରଙ୍କର ଶୋଷଣରୁ ମୁକ୍ତ କରିବା ହେଉଛି ତାଙ୍କର ପ୍ରଧାନ ଲକ୍ଷ୍ୟ । ଉକ୍ତ ସଭାରେ ତାଙ୍କର ଉଦ୍‌ବୋଧନ ଜନସାଧାରଣଙ୍କୁ ବହୁ ଭାବରେ ପ୍ରଭାବିତ କରିଥିଲା । ସେହି ସମୟରେ ମଧ୍ୟ ଉତ୍କଳ ପ୍ରାଦେଶିକ କିଷାନ ସଭା ଗଠିତ ହୋଇଥିଲା ।

## ଭାରତଛାଡ଼ ଆନ୍ଦୋଳନ ଓ ତା'ର ପରବର୍ତ୍ତୀ ଘଟଣାରେ କଟକନଗରୀର ଭୂମିକା :

୧୯୪୨ ମସିହା ଥିଲା ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଏକ ଗୌରବୋଜ୍ଜ୍ୱଳ ବର୍ଷ । ସେହିବର୍ଷ ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଏକ ଉଲ୍ଲେଖଯୋଗ୍ୟ ପଦକ୍ଷେପ ନିଆଯାଇଥିଲା । ଏହା ଥିଲା 'ଭାରତଛାଡ଼' ପ୍ରସ୍ତାବ ଗ୍ରହଣ ଓ ପରେ ପରେ ଅନୁସୃତ ଏକ ଦେଶବ୍ୟାପୀ ଅଭୂତପୂର୍ବ ଆନ୍ଦୋଳନ ।

ଭାରତୀୟ ଜାତୀୟ କଂଗ୍ରେସର କାର୍ଯ୍ୟକାରୀ କମିଟି ୧୯୪୨ ମସିହା ଏପ୍ରିଲ ୧୪ ତାରିଖ ଦିନ ଓ୍ୱାର୍ଦ୍ଧାଠାରେ ଭାରତଛାଡ଼ ପ୍ରସ୍ତାବ ଗ୍ରହଣ କରି ଏହା ସାଧାରଣ ଅଧିବେଶନରେ ଗୃହୀତ ହେବାପାଇଁ ନିଷ୍ପତ୍ତି ନିଆଯାଇଥିଲା । ତଦନୁଯାୟୀ ଅଗଷ୍ଟ ୮ ତାରିଖ ଦିନ ବମ୍ବେସ୍ଥିତ ଗୋଆଲିୟା ପୋଖରୀ ପଡ଼ିଆରେ ଏକ ସାଧାରଣ ଅଧିବେଶନ ଆହୂତ ହୋଇଥିଲା । ଏଥିରେ କଟକରୁ ଡକ୍ଟର ହରେକୃଷ୍ଣ ମହତାବ, ଶ୍ରୀମତୀ ମାଳତୀ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ପ୍ରହ୍ଲାଦ ରାୟ ଲାଠ ଯୋଗ ଦେଇଥିଲେ । ଏହା ପୂର୍ବରୁ କଟକରେ ଗୋଟିଏ ଚମକପ୍ରଦ ଘଟଣା ଘଟିଥିବାର ଜଣାଯାଏ । ତାହା ଥିଲା ଇଂରେଜ ସରକାରଙ୍କର ଏକ ଗୋପନୀୟ ଚିଠି ପ୍ରାପ୍ତି ।

ଭାରତୀୟ ସରକାରଙ୍କର ଏକ ଗୋପନୀୟ ନିର୍ଦ୍ଦେଶ କଟକର ଆଡ଼ଭୋକେଟ ଶ୍ରୀ ଭୁବନ ଘୋଷ ଗୋପନରେ ସଂଗ୍ରହ କରି ଡକ୍ଟର ମହତାବଙ୍କୁ ଦେଇଥିଲେ । ଏହା ଭାରତ ସରକାରଙ୍କର ସେକ୍ରେଟେରୀ ମାନେ ଫେଡ଼େରାଲ ପତ୍ର ଲେଖିଥିଲେ ସବୁ ପ୍ରାଦେଶିକ ସରକାରଙ୍କଠାକୁ । ଏହାର ଗୋଟିଏ ନକଲ ତତ୍କାଳୀନ ଡେପୁଟି ସେକ୍ରେଟେରୀ ଦୁର୍ଗାଚରଣ ଦାସ ସମସ୍ତ ଜିଲ୍ଲା ମାଜିଷ୍ଟ୍ରେଟ ଓ ଏସ୍.ଡି.ଓ ଙ୍କୁ ପଠାଇଥିଲେ । ପ୍ରସ୍ତାବିତ ଭାରତଛାଡ଼ ଆନ୍ଦୋଳନ ବିରୁଦ୍ଧରେ ଜନମତ ସୃଷ୍ଟି କରିବା ପାଇଁ ଏଥିରେ ନିର୍ଦ୍ଦେଶ ରହିଥିଲା । ଉକ୍ତ ଗୋପନୀୟ ନିର୍ଦ୍ଦେଶର ଏକ ନକଲ ଡକ୍ଟର ମହତାବ ୱାର୍ଦ୍ଧାରେ ଗାନ୍ଧିଜୀଙ୍କୁ ଦେଇ କହିଥିଲେ ଯେ, ଏହା ତାଙ୍କଠାରୁ ପାଇଛନ୍ତି ବୋଲି କେଉଁଠି ପ୍ରକାଶିତ ନ ହୁଏ । କାରଣ ପାଇବାର ସେହି ସୂତ୍ରଟି ନଷ୍ଟ ହୋଇ ଯାଇପାରେ । ଗାନ୍ଧିଜୀ ଏହାକୁ ନିଜ ଦାୟିତ୍ୱରେ ପ୍ରକାଶ କରିବେ ବୋଲି କହିଥିଲେ ।

ବମ୍ବେଠାରେ ଭାରତଛାଡ଼ ପ୍ରସ୍ତାବ ଗୃହୀତ ହେବାପରେ ଅଗଷ୍ଟ ୯ ତାରିଖ ସକାଳେ ଗାନ୍ଧିଜୀଙ୍କ ସମେତ କଂଗ୍ରେସ କାର୍ଯ୍ୟକାରୀ କମିଟିର ଅନ୍ୟାନ୍ୟ ସଦସ୍ୟଙ୍କୁ ଗିରଫ କରାଯାଇ ଜେଲ୍‌କୁ ନିଆଯାଇଥିଲା । ଡକ୍ଟର ହରେକୃଷ୍ଣ ମହତାବଙ୍କୁ ମଧ୍ୟ ଗିରଫ କରାଯାଇ ଅହମ୍ମଦ ନଗର ଫୋର୍ଟକୁ ନିଆଯାଇଥିଲା । ସେହିଦିନ କଟକରେ ଦିନ ୧୨ଟା ସମୟରେ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ରମା ଦେବୀ, ଭାଗୀରଥି ମହାପାତ୍ର, ବିଶ୍ୱନାଥ ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ରାଜକୃଷ୍ଣ ବୋଷ, ସୁରେନ୍ଦ୍ର ନାଥ ପଟ୍ଟନାୟକ, ପ୍ରାଣକୃଷ୍ଣ ପଡ଼ିଆରୀ, ସଦାଶିବ ତ୍ରିପାଠୀ, ମନମୋହନ ଚୌଧୁରୀ, ରାଧାନାଥ ରଥ, ଆଚାର୍ଯ୍ୟ ହରିହର ଦାସ ପ୍ରମୁଖ ନେତାଙ୍କୁ ଗିରଫ କରାଯାଇଥିଲା ।

ଇତିମଧ୍ୟରେ ୧୯୪୨ ମସିହା ଅଗଷ୍ଟ ୧୧ ତାରିଖ ଦିନ ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ତା' ପରଦିନ ମାଲତୀ ଚୌଧୁରୀ ବମ୍ବେରୁ ଆସି କଟକରେ ପହଞ୍ଚିଥିଲେ । ସେମାନଙ୍କର ଆଗମନ ପରେ କଟକର ରାଜନୈତିକ ପରିବେଶ ସରଗରମ ହୋଇଥିଲା । ସୁରେନ୍ଦ୍ରନାଥ ଦ୍ୱିବେଦୀ କଟକର ଅଲିଶାବଜାରସ୍ଥିତ ନନ୍ଦ ସାହୁଙ୍କର ଘରେ ନିଜର ଅଫିସ କରିଥିଲେ । କାରଣ ସେତେବେଳକୁ ସବୁ କଂଗ୍ରେସ ଅଫିସକୁ ସରକାରଙ୍କର ନିର୍ଦ୍ଦେଶକ୍ରମେ ବନ୍ଦ କରି ଦିଆଯାଇଥିଲା । ସେହି ସମୟରେ ସବୁ ତୁଙ୍ଗ ରାଜନୈତିକ ନେତା ଗିରଫ ହୋଇଥିବାରୁ ଶ୍ରୀଯୁକ୍ତ ଦ୍ୱିବେଦୀ ଗୋପନୀୟ ଭାବେ ଭାରତଛାଡ଼ ଆନ୍ଦୋଳନକୁ ନେତୃତ୍ୱ ଦେଇଥିଲେ । ଏ ଦିଗରେ ନନ୍ଦ ସାହୁଙ୍କର ପୁଅ ମଥୁରାନନ୍ଦ ସାହୁ ତାଙ୍କୁ ସହାୟତା ଦେଇଥିବାର ଜଣାଯାଏ । ଶ୍ରୀଯୁକ୍ତ ଦ୍ୱିବେଦୀ ମଧ୍ୟ କଂଗ୍ରେସ ବାର୍ତ୍ତା ଓ 'ସତ୍ୟ ସମ୍ବାଦ' ନାମକ ଦୁଇଟି ପତ୍ରିକା କଟକରୁ ଗୋପନୀୟ ଭାବେ ପ୍ରକାଶ କରୁଥିଲେ । ଅନ୍ୟ ଶାଖାକୁ ଚିଠିରେ ସେ ନିଜ ନାମ ନ ଲେଖି ସି: ଓ: ବୋଲି ଲେଖୁଥିଲେ ।

ଗୋଟିଏ ଅର୍ଥରେ କହିବାକୁ ଗଲେ ଓଡ଼ିଶାରେ ଭାରତଛାଡ଼ ଆନ୍ଦୋଳନ ଆରମ୍ଭ ହୋଇଥିଲା କଟକସ୍ଥିତ ରେଭେନ୍ସା କଲେଜରୁ । ୧୯୪୨ ମସିହା ଅଗଷ୍ଟ ୧୫ ତାରିଖ ଦିନ ୨୦୦ ଜଣ କଲେଜ ଛାତ୍ର ରେଭେନ୍ସା କଲେଜ ଅଫିସରେ ଅଗ୍ନି ସଂଯୋଗ କରିବା ସଙ୍ଗେ ସଙ୍ଗେ ଆସବାବପତ୍ର ନଷ୍ଟ କରିଦେଇଥିଲେ । ତନ୍ମଧ୍ୟରୁ ପୁରୋଭାଗରେ ଥିଲେ ବନମାଳୀ ପଟ୍ଟନାୟକ, ଅଶୋକ ଦାସ, ବୀରେନ ମିତ୍ର, ସୁରଜମଲ୍ଲ ସାହା ଓ ବାଞ୍ଛାନିଧି ମିଶ୍ର । ଅନୁସନ୍ଧାନ ପରେ ବାଞ୍ଛାନିଧି ମିଶ୍ର ଓ ସୁରଜ ମଲ୍ଲ ସାହାଙ୍କୁ ଗିରଫ କରାଯାଇ ବ୍ରହ୍ମପୁର ଜେଲକୁ ପଠାଯାଇଥିଲା । ସେହି ଛାତ୍ରମାନେ ମଧ୍ୟ ଅନ୍ୟ କଂଗ୍ରେସ ନେତାଙ୍କ ସହ ମିଶି ସରକାରୀ କର୍ମଚାରୀଙ୍କୁ ଚାକିରି ବର୍ଜ୍ଜନ କରିବା ପାଇଁ ଆବେଦନ କରିବା ସଙ୍ଗେ ସଙ୍ଗେ ଟିକସ ନ ଦେବା, ରେଳ ଓ ଟେଲିଗ୍ରାଫ ଲାଇନ ଧ୍ୱଂସ କରିବା ପାଇଁ ଲୋକମାନଙ୍କୁ ଆବେଦନ କରିଥିଲେ । ରେଭେନ୍ସା କଲେଜରେ ମଧ୍ୟ ହରତାଳ ପାଳନ କରାଯାଇଥିଲା । ପରେ ପରେ କଟକସ୍ଥିତ ସମସ୍ତ ଶିକ୍ଷାନୁଷ୍ଠାନରେ ହରତାଳ ପାଳିତ ହୋଇଥିଲା ।

୧୯୪୨ ଆନ୍ଦୋଳନ ସମୟରେ କଟକରୁ ପ୍ରକାଶିତ 'ସମାଜ' ଓ 'ନବ ଓଡ଼ିଶା'ର ସମ୍ପାଦକ ମହାତ୍ମାଗାନ୍ଧିଙ୍କର ମୁକ୍ତି ପାଇଁ ଆବେଦନ କରି ତତ୍କାଳୀନ ଭାଇସ୍ ରାୟଙ୍କୁ ପତ୍ର ଲେଖିବା ସଙ୍ଗେ ସଙ୍ଗେ ନିଜ ନିଜର ସମ୍ବାଦପତ୍ରରେ ତାହା ପ୍ରକାଶ କରିଥିଲେ । ୧୯୪୪ ମସିହା ମେ ମାସରେ ଗାନ୍ଧିଜୀଙ୍କୁ ଜେଲରୁ ଖଲାସ କରାଯିବା ପରେ କଟକରେ ଏକ ବିରାଟ ସଭାରେ ତାହା ସ୍ୱାଗତ କରାଯାଇଥିଲା ।

୧୯୪୫ ମସିହାରେ କଲିକତାରୁ ଗାନ୍ଧିଜୀ ମାନ୍ଦ୍ରାଜ ଫେରିବା ବାଟରେ କଟକରେ ଓହ୍ଲାଇବାର ଥିଲା—ମାତ୍ର କଟକରେ ଟ୍ରେନ୍ ମଧ୍ୟରାତ୍ରିରେ ପହଞ୍ଚିବା ପରେ ଆନନ୍ଦ ଉଚ୍ଛ୍ୱାସରେ ଉଦ୍ବେଳିତ ହୋଇ ଲୋକମାନଙ୍କ ମଧ୍ୟରେ ବିଶୃଙ୍ଖଳା ଓ ପାଟିତୁଣ୍ଡ ହୋଇଥିଲା । ଗାନ୍ଧିଜୀ ବାହାରକୁ ଆସି ତିରସ୍କାର କରି କହିଥିଲେ, "ଓଡ଼ିଶାକୁ ମୁଁ ଏତେ ଭଲ ପାଏଁ । ଏହି କ'ଣ ଅହିଂସା, ଏହି କ'ଣ ଶୃଙ୍ଖଳା, ଯାହାକୁ ନେଇ ଆମେ ପରମାଣୁ ବୋମାର ସମ୍ମୁଖୀନ ହେବା, ମୁଁ ତୁମ୍ଭର ଆନନ୍ଦ ଧ୍ୱନି ଚାହେଁ ନାହିଁ କିମ୍ବା ତୁମ୍ଭର ଅର୍ଥ ଚାହେଁନାହିଁ, ମୁଁ ଚାହେଁ ତୁମର ଆତ୍ମାରୁ କଳୁଷ ଚାଲିଯାଉ । ସେଥିରେ ମୋର ଆନନ୍ଦ ହେବ ।" ଗାନ୍ଧିଜୀ ନ ଓହ୍ଲାଇ ମାନ୍ଦ୍ରାଜ ଚାଲିଯାଇଥିଲେ । ଭାରତ ବିଭାଜନ ପ୍ରସ୍ତାବଟି ମଧ୍ୟ ଓଡ଼ିଶାରେ ନିନ୍ଦା କରାଯାଇଥିଲା । ଏଥିନିମନ୍ତେ ୧୯୪୬ରେ କଟକରେ ଏକ ସାଧାରଣ ସଭାରେ ପଣ୍ଡିତ ନୀଳକଣ୍ଠ ଦାସ, ହରେକୃଷ୍ଣ ମହତାବ, ଭାରତ ସେବକ ସମାଜର ଲକ୍ଷ୍ମୀନାରାୟଣ ସାହୁ ଓ ପାରଳାର ମହାରାଜା ଉକ୍ତ ପ୍ରସ୍ତାବ ବିରୁଦ୍ଧରେ ଉଦ୍‌ବୋଧନ ଦେଇଥିଲେ ।

ଏପ୍ରିଲ ୧୯୪୬ରେ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ଓ ଉତ୍କଳର ହରେକୃଷ୍ଣ ମହତାବ ପ୍ରଧାନମନ୍ତ୍ରୀ ହୋଇଥିଲେ । ସେ କଟକରୁ ଏଇ

ନିର୍ଦ୍ଦେଶନାମା ଜାରି କରି ସବୁ ରାଜନୈତିକ ବନ୍ଦୀଙ୍କୁ ମୁକ୍ତ କରି ଦେଇଥିଲେ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ସ୍ୱାଧୀନତା ଦିବସ କଟକରେ ମହାସମାରୋହରେ ପାଳିତ ହୋଇଥିଲା । ଗଡ଼ଜାତ ମିଶ୍ରଣ ପାଇଁ ମହାତ୍ମାଗାନ୍ଧି ଡକ୍ଟର ମହତାବଙ୍କୁ କହିଥିଲେ, "ତୁମେ ଯଦି ଅନ୍ତତଃ ଦୁଇଜଣ ରାଜାଙ୍କର ସ୍ୱୀକୃତି ମୋତେ ଦେଇପାରିବ ମୁଁ ପଟେଲଙ୍କୁ ଏ କଥା କହିବି ।" ଡକ୍ଟର ମହତାବ ହିନ୍ଦୋଳ ରାଜା ଓ ରଣପୁର ରାଜମାତାଙ୍କଠାରୁ ସ୍ୱୀକୃତିପତ୍ର କଟକରୁ ନେଇ ମହାତ୍ମାଗାନ୍ଧିଙ୍କୁ ଦେଇଥିଲେ । ୧୯୪୨ ମସିହାର ଶେଷଭାଗରେ କଟକସ୍ଥିତ ରାଜଭବନରେ ଗଡ଼ଜାତ ମିଶ୍ରଣର ଚୁକ୍ତିପତ୍ର ସ୍ୱାକ୍ଷରିତ ହୋଇଥିଲା । ପ୍ରଥମେ ସ୍ୱାକ୍ଷର କରିଥିଲେ ପାଟଣାର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ।

ଏହିପରି ଭାବେ ୧୮୫୭ରୁ ୧୯୪୭ ମସିହା ପର୍ଯ୍ୟନ୍ତ ସ୍ୱାଧୀନତା ଆନ୍ଦୋଳନର ସବୁ ପର୍ଯ୍ୟାୟରେ କଟକନଗରୀ ଏକ ଗୌରବମୟ ଭୂମିକାର ସ୍ୱାକ୍ଷର ବହନ କରି ଓଡ଼ିଶା ଇତିହାସକୁ ସମୃଦ୍ଧିମନ୍ତ କରିଛି ।



# ଜନ୍ ବୀମସ୍‌ଙ୍କ ଦୃଷ୍ଟିରେ କଟକ

ଡଃ ହେମନ୍ତ କୁମାର ଦାସ

ବୀମସ୍ କଟକ ସହିତ ପରିଚିତ ହୁଅନ୍ତି ପ୍ରଥମେ ୧୮୬୯ ମସିହା ଡିସେମ୍ବର ମାସରେ । ସେତେବେଳେ ସେ ଥାଆନ୍ତି ବାଲେଶ୍ୱରର କଲେକ୍ଟର । ପ୍ରଥମ ଦର୍ଶନରେ ହିଁ ସେ କଟକକୁ ଭଲପାଇ ବସନ୍ତି । ଏହାର ଚଉଡ଼ା ଗୁଳ୍ମାଚ୍ଛନ୍ନ ରାସ୍ତା, ସବୁଜ ଘାସରେଢ଼ା ପଡ଼ିଆ, ଧବଳ କୋଠାବାଡ଼ି, ସୁନୀଳ ପର୍ବତଶ୍ରେଣୀ ଘେରା ଦୁଇ ନଦୀ, ସମଗ୍ର ଭାରତବର୍ଷରେ ଏହାକୁ ଅନନ୍ୟ ରୂପସୀ ରୂପେ ପ୍ରତିଷ୍ଠା ଦେଇଥିଲା । ଅତି-ସକାଳୁ କଟକରେ ଘୋଡ଼ା ଦୌଡ଼ ହେଉଥିଲା । ବିଜୟ ନଗରର ମହାରାଜା ଏଠାକୁ ତାଙ୍କର ଭଲ ଭଲ ଘୋଡ଼ା ପଠାଉଥିଲେ । ସେତେବେଳେ କଟକ ଥିଲା ଏକ କର୍ମଚଞ୍ଚଳ, ବ୍ୟସ୍ତ ସହର । ପାଖ ଆଖର ଛୋଟ ଛୋଟ ଅଞ୍ଚଳର ଏହା ଥିଲା ଏକ ମିଳନ କ୍ଷେତ୍ର । ଏହାର ଆନନ୍ଦମୁଖର, ସ୍ୱାସ୍ଥ୍ୟପ୍ରଦ ସୌନ୍ଦର୍ଯ୍ୟ ବୀମ୍‌ସଙ୍କୁ ଏତେଦୂର ପ୍ରଭାବିତ କରିଥିଲା ଯେ, ୧୮୬୯ ରୁ ୧୮୭୮ ମସିହା ଭିତରେ ଭାରତରେ ସେ ଏଭଳି ସ୍ଥାନ ଦ୍ୱିତୀୟ ଦେଖି ନାହାନ୍ତି ବୋଲି କହିଥିଲେ । ଏହାପରେ ୧୮୭୩ ମସିହା ଅଗଷ୍ଟ ମାସରେ ସେତେବେଳର କମିସନର୍ ରେଭେନ୍‌ସା ସାହେବ ତିନିମାସ ଛୁଟିନେଇ ଚାଲିଯିବାରୁ ବୀମସ୍ ଓଡ଼ିଶାର ଅସ୍ଥାୟୀ କମିସନର୍ ପଦରେ ନିଯୁକ୍ତ ହୋଇ କଟକରେ ରହିବାକୁ ଆସିଲେ । ଏହି ସହରରେ ତାଙ୍କୁ ରହିବାକୁ ପଡ଼ିଲା ୧୮୭୮ ମସିହା ପର୍ଯ୍ୟନ୍ତ । ତାଙ୍କ ଆତ୍ମଜୀବନୀରେ ସେ ଏହି ସହର, ଏହାର ଜନତା, ସାମାଜିକ ଜୀବନ, ସରକାରୀ କର୍ମଚାରୀ, ଆଇନ୍ କାନୁନ୍, ହାଟବଜାର ପ୍ରଭୃତିର ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି ।

ବାର ତାରିଖ ଅଗଷ୍ଟ ୧୮୭୩ ମସିହାରେ ବୀମସ୍ କଟକପୁଷ୍ଟ ବାଲେଶ୍ୱରର କମିସନରୀ ଭାବେ ଦାୟିତ୍ୱ ଗ୍ରହଣ କଲେ । ଏହାଛଡ଼ା ସେ ସତରଟି ଗଡ଼ଜାତ ମହାଲର ସୁପରିଣ୍ଟେଣ୍ଡେଣ୍ଟ ମଧ୍ୟ ଥିଲେ । ରେଭେନ୍‌ସାଙ୍କୁ ବିଦାୟ ଦେଇ ଆସିବା ପରେ କଟକରେ ସେତେବେଳର କଲେକ୍ଟର ଆଇରଭିନ୍ ମୃତ୍ୟୁବରଣ କରିଥିବାର ସମ୍ବାଦ ମିଳିଲା । ଅତିରିକ୍ତ କାମର ଚାପ ତାଙ୍କର ଏହି ମୃତ୍ୟୁର କାରଣ ହୋଇଥିଲା । ସେତେ-

ବେଲର ଜଏଣ୍ଟ ମାଜିଷ୍ଟ୍ରେଟ ଷ୍ଟିଭେନ୍‌ସଙ୍କୁ କଲେକ୍ଟରର ଦାୟିତ୍ୱ ଦେଇ ବିମ୍‌ସ୍ ସ୍ତୂପୀକୃତ କର୍ମ ଭାରକୁ ହାଲୁକା କରିବା ନିମନ୍ତେ ଲାଗି ପଡ଼ିଲେ ।

ସେତେବେଳର କର୍ମଚାରୀମାନେ ଥିଲେ ଅସାଧୁ ଏବଂ ଅଳସୁଆ । ବିଭିନ୍ନ ବିଭିନ୍ନ ବିଭାଗର ବୟସ୍କ କର୍ମଚାରୀମାନେ ଦୀର୍ଘଦିନ ଧରି ଗୋଟିଏ ସ୍ଥାନରେ ରହିଯିବା ଫଳରେ ପୁରୁଣା ରୀତିରେ ସେମାନେ କାମ କରୁଥିଲେ, ଏବଂ ବିଭିନ୍ନ ବିଭାଗରେ ସେଇମାନଙ୍କର ବନ୍ଧୁ ବାନ୍ଧବମାନଙ୍କର ନିରଙ୍କୁଶ ରାଜତ୍ୱ ଚାଲିଥିଲା । ଏହାକୁ ବନ୍ଦ କରିବା ନିମନ୍ତେ ବିମ୍‌ସ୍ କେତେକଙ୍କୁ ଚାକିରିରୁ ବାହାର କରିଦେଲେ, କାହିଁକୁ ଅବସର ନେବାକୁ ବାଧ୍ୟ କଲେ ଏବଂ ସେମାନଙ୍କ ସ୍ଥାନରେ କାହିଁ କାମିକା ଲୋକଙ୍କୁ ନିଯୁକ୍ତ ଦେଲେ । ବାଲେଶ୍ୱରରୁ ମଧ୍ୟ ଏଥିପାଇଁ କିଛି ଲୋକ ଆଣାଗଲେ । ତାହାପରେ ଅଫିସ କାମ ସୁରୁଖୁରୁରେ ଚାଲିଲା ।

ବିମ୍‌ସ୍ ସେତେବେଳେ ରହୁଥିଲେ, କଚେରୀଠାରୁ ପ୍ରାୟ ତିନିମାଇଲ୍ ଦୂରରେ ସହର ଉପକଣ୍ଠରେ ଥିବା ଚାଉଳିଆଗଞ୍ଜ ଇଲାକାର ଏକ ସୁନ୍ଦର ଘରେ । ସେତେବେଳର ଚାଉଳିଆଗଞ୍ଜ ଥିଲା, ଖୋଲା, ପ୍ରଶସ୍ତ, ନଗରର ନିକଟବର୍ତ୍ତୀ ଏକ ସ୍ଥାନ । ନିକଟରେ ଥିଲା ଘୋଡ଼ା ଦୌଡ଼ ପଡ଼ିଆ (ଏବର ରେଭେନ୍‌ସା କଲେଜ ପରିସର) ଏବଂ କେନାଲ୍ । ସେଠାରେ ଧାଡ଼ି ଧାଡ଼ି ଚମତ୍କାର ଘର ସବୁ ଥିଲା, ଯାହାର ପରିସର ବେଶ୍ ବିସ୍ତୃତ ଥିଲା । ଜଙ୍ଗଲରେ ଏହାଥିଲା ସବୁଠୁ ଭଲ ସ୍ୱାସ୍ଥ୍ୟକର ଇଲାକା । ଯଦିଓ ଏହା ସହର ଏବଂ କଚେରୀ ଅଫିସ୍ ଠାରୁ ଟିକିଏ ଦୂରରେ ଥିଲା । ତଥାପି ବିମ୍‌ସ୍ ଏହି ଅଞ୍ଚଳକୁ ବେଶ୍ ଭଲ ପାଇ ଯାଇଥିଲେ । ଏହି ଅଞ୍ଚଳରେ ସେ ଚାରିବର୍ଷ ରହିଥିଲେ । ଭାରତ ବର୍ଷରେ ତାଙ୍କର ରହଣି କାଳ ମଧ୍ୟରେ ଏହି ସମୟଟି ହିଁ ତାଙ୍କ ପାଇଁ ଅଧିକ ସ୍ମରଣୀୟ ବୋଲି ସେ ଲେଖିଛନ୍ତି ।

ସେତେବେଳେ ମାଡ୍ରାସ୍ ପଦାତିକ ବାହିନୀର ଗୋଟିଏ ଦଳ କଟକରେ ରହୁଥାଆନ୍ତି । ସେମାନଙ୍କର ଛ' ସାତଜଣ ଅଫିସର୍ ଥିଲେ, ବାଣିଜ୍ ମିସ୍ତ୍ରୀ ବିଭାଗର ବାର ଚୌଦଜଣ ଇଞ୍ଜିନିୟର୍ ଥିଲେ, ପ୍ରଶାସନିକ ବିଭାଗର ଛ'ସାତଜଣ ଅଫିସର୍ ଥିଲେ । ଏହାଛଡ଼ା ଥିଲେ କିଛି ମିସନାରୀ ବ୍ୟବସାୟୀ ଗୋଷ୍ଠୀ ଏବଂ ଅନ୍ୟ ବିଭାଗରେ କାମ କରୁଥିବା କିଛି କର୍ମଚାରୀ । ଏ ସବୁକୁ ବାଦଦେଲେ ଶହ ଶହ ୟୁରୋପୀୟ-ବିଭିନ୍ନ କର୍ମ ଉପଲକ୍ଷେ, କେହି ବା ଖାଲି ବୁଲିବାକୁ ନିୟମିତ ଭାବେ କଟକ ଆସୁଥିବାରୁ— ବିମ୍‌ସ୍‌ଙ୍କ ସମୟ ସ୍ୱଜାତୀୟଙ୍କ ଗହଣରେ ବେଶ୍ ଭଲରେ କଟି ଯାଉଥିଲା । ସେତେ-ବେଳେ, ଗମନା ଗମନରେ ବିଶେଷ ସୁବିଧା ସୁଯୋଗ ନ ଥିବାରୁ କଟକ ପ୍ରାୟ ବାହାର ଦୁନିଆଁଠାରୁ ବିଚ୍ଛିନ୍ନ ହୋଇ ରହୁଥିଲା । ସାର୍ ୱିଲିୟମ୍ ଗ୍ରେ, ଲେଫ୍‌ଟେନାଣ୍ଟ ଗଭର୍ଣ୍ଣର ଥରେ କଥା ପ୍ରସଙ୍ଗରେ ବିମ୍‌ସ୍‌ଙ୍କୁ କହିଥିଲେ ଯେ, କଟକ ଯିବା ପାଇଁ କୌଣସି ଅଫିସର୍ ସହଜରେ ରାଜି ହୁଅନ୍ତି ନାହିଁ । ମାତ୍ର ଥରେ ସେମାନେ ସେଠି

ପହଞ୍ଚିଗଲେ, ଆଉ ସହଜରେ ଫେରୁ ଆସିବାକୁ ମଧ୍ୟ ଚାହାନ୍ତି ନାହିଁ । କଟକର ତୀବ୍ର ଆକର୍ଷଣ ସେମାନଙ୍କୁ ଏଠାରେ ବାନ୍ଧି ରଖେ ।

କଟକ ଥିଲା ସେତେବେଳର ଓଡ଼ିଶାର ରାଜଧାନୀ । ସେଠାରେ ବହୁ ବିଚିତ୍ର ଚରିତ୍ରର, ଭିନ୍ନ ଭାଷାଭାଷୀ, ବିଭିନ୍ନ ରୁଚିର ବହୁ ଲୋକେ ପାଖାପାଖି ରହୁଥିଲେ । କେହି କାହାରିକୁ ବୁଝୁ ନ ଥିଲେ କାହାରି ପ୍ରତି କାହାର ଶ୍ରଦ୍ଧା ନ ଥିଲା । ତଥାପି ବ୍ରିଟିଶ୍ ଶାସନର କଡ଼ା ବ୍ୟବସ୍ଥା ମଧ୍ୟରେ ସେମାନେ ଶାନ୍ତିରେ ରହିଥିଲେ । କଟକର ଅବସ୍ଥିତି ଥିଲା ଗୋଟିଏ ଦୃଷ୍ଟିରୁ ବିଚିତ୍ର ଏବଂ ଅତ୍ୟନ୍ତ ଅସୁବିଧାଜନକ । ଏହାର ଗୋଟିଏ ପଟ ଦେଇ ବହିଯାଉଥିଲା ମହାନଦୀ—ଏହା ସ୍ଥାନେ ସ୍ଥାନେ ଦୁଇମାଇଲରୁ ମଧ୍ୟ ଅଧିକ ଚଉଡ଼ା ଥିଲା । କଟକର ଅଦୂରରେ ଏହି ନଦୀ ଦୁଇଭାଗରେ ବିଭକ୍ତ ହୋଇ ସହରର ଦୁଇପଟରେ ବହୁଥିଲା ଏବଂ ପରେ ଏହି ଦୁଇ ନଦୀରୁ ବାହାରିଥିଲେ ବହୁ ଛୋଟ ଛୋଟ ନଦୀ । ଫଳରେ ଏହି ଅଂଶଟି ଥିଲା ମହାନଦୀର ତ୍ରିକୋଣ ଭୂମି । ଏହି ତ୍ରିକୋଣଭୂମିର ପଶ୍ଚିମକୁ ସହରଟି ଅବସ୍ଥିତ ଥିଲା । ହୁଏତ ରାଜନୈତିକ ଏବଂ ସାମରିକ ସୁରକ୍ଷା ବିଷୟ ଚିନ୍ତାକରି ଓଡ଼ିଶାର ଗଜପତି ଷୋଡ଼ଶ ଶତକରେ ମୁସଲମାନ-ମାନଙ୍କ ଆକ୍ରମଣ କାଳରେ ଏହି ସହର ବସାଇଥିଲେ । ସେତେବେଳେ ସେ ନିଜର ପୂର୍ବ ରାଜଧାନୀ ଚୌଦ୍ୱାର ତ୍ୟାଗକରି (ଯାହାର ଧ୍ୱଂସାବଶେଷ ଏବେ ମଧ୍ୟ ନଦୀର ଉତ୍ତରପଟେ ରହିଛି) । ଦୁଇ ନଦୀର ମଧ୍ୟସ୍ଥଳରେ ଏହି ଭୂଖଣ୍ଡରେ ଛାଉଣି ବା କଟକ ସ୍ଥାପନ କଲେ । ଏହିଠାରେ ସେ ବିଶାଳ ବାରବାଟୀ ଦୁର୍ଗ ନିର୍ମାଣ କଲେ, ଏହାର ଧ୍ୱଂସାବଶେଷ ଏବେ ମଧ୍ୟ ରହିଛି । କ୍ରମେ କଟକ ସହର ଗଢ଼ି ଉଠିଲା ।

ଦୁଇ ନଦୀ କୂଳେ କୂଳେ ମରହଟ୍ଟାମାନେ ବିଶାଳ ଆକୃତିର ପଥରବନ୍ଧମାନ ଗଢ଼ିଲେ । କାଠଯୋଡ଼ି ନଦୀରେ ଏତେବେଳକୁ ନରାଜଠାରେ ଆନିକଟ୍ ନିର୍ମିତ ହୋଇ ସାରିଥିଲା । ଫଳରେ ଏହାର ଗୋଟିଏ ପଟେ ବିରାଟ ଜଳଭଣ୍ଡାର ସୃଷ୍ଟି ହୋଇଥିଲା ଏବଂ ଏପଟର ନଦୀ ଶଯ୍ୟା ପ୍ରାୟ ଶୁଖିଲା ପଡ଼ିଥିଲା । ବର୍ଷା କାଳରେ ପ୍ରଚଣ୍ଡ ବନ୍ୟା ଏହି ଆନିକଟ ଉପରେ ଦେଇ ବହିଯାଉଥିଲା । ବେଳେ ବେଳେ ବନ୍ୟା ଅଧିକ ହେଲେ ଜଳ ପଥର ବନ୍ଧ ଡେଇଁ ଯାଉଥିଲା ଏବଂ ସେତେବେଳେ ଇଞ୍ଜିନିୟରମାନେ ବହୁ ଯତ୍ନ ଓ ପରିଶ୍ରମ ଫଳରେ ହିଁ କଟକକୁ ବଞ୍ଚାଇ ପାରୁଥିଲେ । କାଠଯୋଡ଼ି ନଦୀରେ ସେତେ-ବେଳେ ଉପର ମୁଣ୍ଡରୁ ବଡ଼ ବଡ଼ ଗଛ ସବୁ ଭସି ଆସୁଥିଲା । କିଛି ଲୋକ ଏହାକୁ ଧରି ଜାଳେଣି କାଠ ରୂପେ ବିକ୍ରୟକରି ବେଶ୍ ଦୁଇପଇସା ରୋଜଗାର କରୁଥିଲେ । ଏଥିପାଇଁ ସେମାନେ ଦୁଇଖଣ୍ଡ କାଠର ଏକ ଛୋଟ ଆଙ୍କୁଶୀ ତିଆରି କରୁଥିଲେ ଏବଂ ସରୁ ଟାଣୁଆ ଦଉଡ଼ିରେ ତାକୁ ବାନ୍ଧି କୂଳରେ ଠିଆ ହୋଇ ଭାସିଯାଉଥିବା ଗଛ ଆଡ଼କୁ ଫୋପାଡ଼ି ଦେଉଥିଲେ । ଗଛ ଡାଳରେ ଆଙ୍କୁଶୀଟି ଲାଗିଗଲେ, ଦୁଇ ତିନିଜଣ ଲୋକ ଦଉଡ଼ିକୁ ଟାଣି ଗଛଟିକୁ କୂଳକୁ ନେଇ ଆସୁଥିଲେ ।

ପଥର ବନ୍ଧର ଶେଷ ଭାଗରେ କମିସନରଙ୍କ ଆବାସ 'ଲାଲବାଗ୍' ପ୍ରାସାଦ ଅବସ୍ଥିତ ଥିଲା । ଆକାରରେ ମଧ୍ୟମାମସ୍ୟ ବିସ୍ତୃତ ପରିସର ବିଶିଷ୍ଟ ଏହି ପ୍ରାସାଦର ଚତୁର୍ଦ୍ଦିଗରେ ଥିଲା ଏକ ଚମତ୍କାର ଉପବନ, ଯେଉଁଥିରେ ଦଳ ଦଳ ହରିଣ ଘୂରି ବୁଲୁଥିଲେ । ବଡ଼ ବଡ଼ ଗଛର ଶୀତଳ ବୃକ୍ଷାଚ୍ଛନ୍ନ ଏକ ମାର୍ଗ ଦେଇ, ଏହାର ପ୍ରଧାନ ଫାଟକ ପାଖରେ ପହଞ୍ଚିବାକୁ ହେଉଥିଲା । ସହର ଥିଲା ଏହା ବାହାରେ ।

ଆଉ ଟିକିଏ ତଳକୁ ସେଇ ପଥର ବନ୍ଧ ଉପରେ ଜିଲା କଲେକ୍ଟରଙ୍କ କଚେରୀ । ଏ ଅଞ୍ଚଳ ବେଶ୍ ବିସ୍ତୃତ ଥିଲା, ଗଛ ଲତା ମଧ୍ୟ ସ୍ଥାନଟିକୁ ଏକ ସ୍ୱତନ୍ତ୍ର ରୂପ ଦେଇଥିଲା । ଏଠାରେ ଅନ୍ୟାନ୍ୟ ସରକାରୀ ଅଫିସ ସହିତ, ଓଡ଼ିଶାର ଏକମାତ୍ର କଲେଜ ଅବସ୍ଥିତ ଥିଲା । ସହରରେ ସେମିତି କୌଣସି ଉଲ୍ଲେଖଯୋଗ୍ୟ ପୁରୁଣା କୋଠାବାଡ଼ି ନ ଥିଲା । ତେବେ ସହରଟି ଥିଲା କର୍ମଚଞ୍ଚଳ । ବହୁ ଦୋକାନ ବଜାର ଥିଲା । ବେଶ୍ କେତୋଟି ଚମତ୍କାର ରାସ୍ତା ଥିଲା, ଗୋଟିଏ ବଡ଼ ବଜାର ଥିଲା ଏବଂ ଥିଲା କେତୋଟି ମନ୍ଦିର । ଉତ୍ତରରେ ମାଡ୍ରାସ ସେନାବାହିନୀର ଏକ ଶାଖା ଥିଲେ । ସେମାନଙ୍କର ପରେଡ଼ ପାଇଁ ଗୋଟିଏ ବଡ଼ ପଡ଼ିଆ ଥିଲା । ଚଉଡ଼ା ରାସ୍ତା, ଦୁଇପଟେ ୟୁରୋପୀୟମାନଙ୍କର ପ୍ରଶସ୍ତ ଆବାସସ୍ଥଳୀ ଥିଲା । ଗୋଟିଏ ଗୀର୍ଜା ଘର ଛଡ଼ା ଏଠାରେ ଥିଲା ବିରାଟ ବାରବାଟୀ ଦୁର୍ଗ ଯାହାର ପରିସରରେ ୟୁରୋପୀୟ ବ୍ଲକ ଏବଂ କେତେକ ସରକାରୀ ଘର ଥିଲା । ଦୁଇ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ପାଞ୍ଚମାଇଲ ଲମ୍ବ ଏବଂ ଦୁଇ ମାଇଲ ଓସାର ଥିଲା । ମହାନଦୀ କୂଳରେ ସହରର ଦକ୍ଷିଣ ପୂର୍ବ ଅଞ୍ଚଳରେ ଥିଲା ଯୋବ୍ରା—ଏହାର କାରଖାନା ବୁଢ଼ାଆଗଞ୍ଜ—ଏହାର ଘୋଡ଼ାଦୌଡ଼ ପଡ଼ିଆ ଏବଂ ଅନ୍ୟାନ୍ୟ ଘରବାଡ଼ି ।

ସହର ଉପକଣ୍ଠରେ ଯୋବ୍ରା—ମହାନଦୀ କୂଳର ଗଛପତ୍ର ଘେରା ଗୋଟିଏ ଛୋଟ୍ଟ ଗ୍ରାମ ଥିଲା । ଏଠାରେ ଥିଲା ଗୋଟିଏ ଆନିକଟ । ଏବଂ ଏହିଠାରେ ଗୋଟିଏ କାରଖାନା ମଧ୍ୟ ଥିଲା, ଯାହାର ଦାୟିତ୍ୱରେ ଥିଲେ ଜର୍ଜ ଫକ୍‌ନର । ଫକ୍‌ନର ଥିଲେ ଜଣେ ବିଚିତ୍ର ମଣିଷ । ଶାସନର ମାତ୍ରା ନିୟମର ସେ ଥିଲେ ବହୁ ଊର୍ଦ୍ଧ୍ୱରେ ଏବଂ ନିଜର କାମ ସେ ଭଲ ବୁଝୁଥିବାରୁ ବ୍ରିଟିଶ ଶାସନ ତାଙ୍କୁ ସହ୍ୟ କରୁଥିଲା । ସେ କଟକ ପୂର୍ବରୁ ଗୋଦାବରୀ ଅଞ୍ଚଳରେ ଥିଲେ ଏବଂ ସେଠାରୁ ଦଳେ ତେଲଗୁ କର୍ମୀଙ୍କୁ ସାଙ୍ଗରେ ଧରି ଆସିଥିଲେ । ଦଳରେ ସ୍ତ୍ରୀ ପୁରୁଷ ଉଭୟ ଥିଲେ । ଫଳରେ ଏମାନଙ୍କର ପାରିବାରିକ ଜୀବନ ଅଶାନ୍ତ ହୋଇ ଉଠିଲା । ଫକ୍‌ନର୍ ଦିନେ ସେମାନଙ୍କୁ ଏକତ୍ର କରି ଗୋଟିଏ କ୍ଷୁଦ୍ର ଭାଷଣରେ ଜଣାଇ ଦେଲେ ଯେ, ନିଜ ଅଞ୍ଚଳରେ ସେ କୌଣସି ଅନୈତିକତାକୁ ବରଦାସ୍ତ କରିବେ ନାହିଁ । ଉପସ୍ଥିତ ଜନତାଙ୍କୁ ସେ ପ୍ରତ୍ୟେକେ ଜଣେ ଲେଖା ସ୍ତ୍ରୀ ନିଜପାଇଁ ବାଛିନେବାକୁ ଆଦେଶ ଦେଲେ । ଗୋଟିଏ ଟଙ୍କାର ବିନିମୟରେ ସେ ଏକ ଖାତାରେ ପ୍ରତ୍ୟେକଙ୍କର ନାମ ଲିପିବଦ୍ଧ କରି ସେମାନଙ୍କୁ ବିବାହିତ ଘୋଷଣା କରିଦେଲେ । ପରେ ଯେଉଁମାନେ ନୂଆ ଆସୁଥିଲେ, ସେମାନଙ୍କୁ ମଧ୍ୟ ଏଇ ଉପାୟରେ ବିବାହ କରି ଦିଆଯାଉଥିଲା । ଯେ ଗୃହତ୍ୟାଗ କରୁଥିଲା, ଖାତାରୁ ତା'ର ନାମ କାଟି ଦିଆ

ଯାଉଥିଲା ଏବଂ ସ୍ତ୍ରୀ ଥିଲେ ତାଙ୍କୁ ଅନ୍ୟ ଜଣଙ୍କ ସହିତ ବିବାହ କରାଇ ଦିଆଯାଉଥିଲା । ଫଳରେ ଏହି ଅଞ୍ଚଳର ଶାନ୍ତି ଫେରି ଆସିଥିଲା । ଏଠାରେ ପିଲମାନଙ୍କ ପଢ଼ିବା ପାଇଁ ଫକିରର ଗୋଟିଏ ସ୍କୁଲ ମଧ୍ୟ ବନାଇଥିଲେ ଏବଂ ବଡ଼ ହୋଇଗଲା ପରେ ସେମାନଙ୍କୁ କାରଖାନାରେ କାମ ଯୋଗାଇ ଦିଆ ଯାଉଥିଲା ।

କଟକରେ ଥିଲାବେଳେ ବୀମସ୍ ନିୟମିତ ଭାବରେ ଘୋଡ଼ାରେ ଚଢ଼ି ସାରା ସହର ବୁଲି ଏହାର ବିଭିନ୍ନ ସୁବିଧା ଅସୁବିଧା ଲକ୍ଷ୍ୟ କରୁଥିଲେ । 'ଉତ୍କଳ ଦୀପିକା' ତାଙ୍କର ଏହି କାର୍ଯ୍ୟକୁ ପ୍ରଶଂସା କରି ଲେଖିଥିଲେ ଯେ ସହରର ଉନ୍ନତି ଆଉ ମଙ୍ଗଳ ନିମନ୍ତେ ବୀମସ୍ ସାହେବ ଯେମିତି ଲାଗିପଡ଼ିଛନ୍ତି, ଅନ୍ୟ କୌଣସି ମାଜିଷ୍ଟ୍ରେଟ୍ ସେପରି କରି ନ ଥିଲେ । ତାଙ୍କଠାରେ କେହି ସାମାନ୍ୟତମ ଦୋଷ ଦେଖାଇ ପାରିବ ନାହିଁ । (୨୦ । ୬ । ୧୮୭୪) ବୀମସ୍ ସେହି ସମୟରେ କଟକର ରାସ୍ତାଘାଟର ସଂସ୍କାର ସାଧନ ନିମନ୍ତେ ଉଦ୍ୟମ ଆରମ୍ଭ କରିଥିଲେ । ବର୍ଷାଦିନେ ପ୍ରଧାନ ରାସ୍ତାର ଦୁଇକଡ଼େ ପାଣି ଜମି ଅସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି କରୁଥିବାରୁ ଦୀପିକା ବୀମସ୍ଙ୍କ ଦୃଷ୍ଟି ସେଇଆଡ଼େ ଆକର୍ଷଣ କରିଥିଲେ । ଏହି ସମୟରେ ବୀମସ୍ କଟକଠାରେ ଗୋଟିଏ ଡାକ୍ତରଖାନା ଖୋଲିବା ନିମନ୍ତେ ମଧ୍ୟ ଉଦ୍ୟମ କରିଥିଲେ । 'ଉତ୍କଳ ଦୀପିକା'ରେ ଏହି ସମ୍ବାଦ ପରିବେଷଣ କରାଯାଇ କୁହାଯାଇଥିଲା ଯେ, ବଡ଼ ଖୁସିର କଥା ଯେ କର୍ତ୍ତୃପକ୍ଷ କଟକରେ ଏକ ହାସପାତାଳ ଖୋଲିବା ପାଇଁ ଯତ୍ନ କରୁଅଛନ୍ତି । ଦୁର୍ଭିକ୍ଷ ପାଇଁ ବସାଯାଇଥିବା ରିଲିଫ କମିଟି ନିକଟରେ ଏହି ପ୍ରସ୍ତାବଟି ରଖାଯାଇଥିଲା ଏବଂ ବୀମସ୍ ଏଥିପାଇଁ ଚାନ୍ଦା ସଂଗ୍ରହ କରୁଥିଲେ ।

ଏଥିରେ ସନ୍ଦେହ ନାହିଁ ଯେ, ଦୋଷଗୁଣରେ ମିଶ୍ରିତ କଟକ ସହର ବୀମସ୍ଙ୍କ ମନରେ ଏକ ସ୍ଥାୟୀ ଆସନ ମାଡ଼ିବସିଥିଲା । ତେଣୁ ଏଠାରେ ସ୍ଥାନାନ୍ତରିତ ହୋଇ ସେ ଏ ବିଷୟ ଜଣାଇଥିଲେ । ଲେଫ୍ଟେନାଣ୍ଟ ଗଭର୍ଣ୍ଣର ସାର୍ ଆସ୍ଲି ଇଡେନ୍ଙ୍କୁ କେହି ଜଣାଇ ଦେଇଥିଲେ ଯେ ବୀମସ୍ ଓଡ଼ିଶାରେ ଆଦୌ ଲୋକପ୍ରିୟ ନୁହନ୍ତି । ତେଣୁ ସେ ଆଉ ଓଡ଼ିଶା ଫେରିପାରିଲେ ନାହିଁ । ଚିଟାଗଙ୍ଗର ଅସ୍ୱାସ୍ଥ୍ୟକର କୁଟିଳ ଏବଂ ମାଲମକଦ୍ଦମାପୂର୍ଣ୍ଣ ପରିବେଶ ତାଙ୍କୁ ଆଦୌ ଭଲ ଲାଗୁ ନଥିଲା । ଜୀବନରେ ସେ ଏଭଳି ଖରାପ ଜାଗା ଆଦୌ ଦେଖି ନାହାନ୍ତି ବୋଲି ତାଙ୍କର ମନେ ହୋଇଥିଲା ଏବଂ ସେତେବେଳେ କଟକହିଁ ପ୍ରତ୍ୟେକ ମୁହୂର୍ତ୍ତରେ ତାଙ୍କର ମନେ ପଡ଼ୁଥିଲା ।

ସରକାରୀ କାମ କେମିତି ଚାଲେ, ତାହାର ଏକ ଚମତ୍କାର ନମୁନା ବୀମସ୍ ଏହାଠାରେ ଦେଇଛନ୍ତି । ୧୮୭୫ ମସିହାରେ ବଙ୍ଗ ଦେଶରେ ଭୀଷଣ ଦୁର୍ଭିକ୍ଷ ହେଲା । ଦେଶର ଚାରିଆଡ଼ୁ ଏହି ଅଞ୍ଚଳକୁ ଧାନ ପଠାଇବା ଦରକାର ହେଲା । ବର୍ଗୀୟମାନେ ସେ ସମୟରେ ବର୍ମାରୁ ଆସୁଥିବା ଚାଉଳ ବ୍ୟବହାର କରିବାକୁ ରାଜି ନ ଥିଲେ । ତେଣୁ ଓଡ଼ିଶାରୁ ଅପେକ୍ଷାକୃତ କମ୍ ମୂଲ୍ୟରେ ପ୍ରଚୁର ଚାଉଳ ସଂଗୃହୀତ ହୋଇ ବେପାରୀ-

ମାନଙ୍କ ଦ୍ୱାରା ବଙ୍ଗଳା ଚୋଟିବାର ଏକ ରାଜିନାମା ସ୍ୱାକ୍ଷରିତ ହେଲା । ଚାଉଳ ସଂଗୃହୀତ ହୋଇ ପଠାଗଲା ବେଳକୁ କଲିକତାରୁ ଖବର ଆସିଲା ଯେ, ସେଗୁଡ଼ିକ କେବଳ ସରକାରୀ ଷ୍ଟିମରରେ କଲିକତା ଅଣାଯିବ । ସରକାରଙ୍କ ପାଖରେ ଏତେ ଷ୍ଟିମର୍ ନ ଥିଲା । ତେଣୁ ସଂଗୃହୀତ ଧାନ ଜେଟିରେ ଗଦା ହୋଇ ଖରାବର୍ଷାରେ ଅଧିକାଂଶ ନଷ୍ଟ ହେଲା । ପରେ ଏହାର ପ୍ରକୃତ କାରଣ ଜଣାଗଲା । ବଙ୍ଗଳାରେ ଥିଲେ ଜଣେ ଆସିଷ୍ଟାଣ୍ଟ ସେକ୍ରେଟେରୀ । ସିଏ ବର୍ମାରୁ ଚାଉଳ ସଂଗ୍ରହ କରିବାର ଏକ ଗୋପନ ବ୍ୟବସାୟ ଆରମ୍ଭ କରିଥିଲେ । ଓଡ଼ିଶାର ଶସ୍ତା ଚାଉଳ ପହଞ୍ଚିଗଲେ ତାଙ୍କର ଲାଭଜନକ ବ୍ୟବସାୟଟି ମାଡ଼ ଖାଇଯିବାର ସମ୍ଭାବନା ଥିଲା । ଯେହେତୁ ସରକାରୀ କଳ ତାଙ୍କ ହାତରେ ଥିଲା, ତେଣୁ ସେ ଏହିଭଳି ଏକ ବିଚିତ୍ର ଆଦେଶ ବାହାର କରି, ନିଜ ବ୍ୟବସାୟରୁ ପ୍ରଚୁର ଆର୍ଥିକ ଲାଭ ଉଠାଇ ଥିଲେ । ଏହାର ପରିଣାମ ସ୍ୱରୂପ ସେ କାଳରେ ମାତ୍ର ଅଳ୍ପ କେଇଟା ଦିନରେ ପ୍ରାୟ ତିନିଲକ୍ଷ ସରକାରୀ ଟଙ୍କା ନଷ୍ଟ ହୋଇ ଯାଇଥିଲା ।

କଟକ ସହରର ଉନ୍ନତି ପାଇଁ ଓ ଏହାର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ଟାମସ୍ ଗୋଟିଏ ଉଲ୍ଲେଖଯୋଗ୍ୟ କାମ କରିଥିବାର ବର୍ଣ୍ଣନା କରିଛନ୍ତି । ସେତେବେଳେ କଟକର ବିକାକଣା ଅଞ୍ଚଳ ଥିଲା ଲାଲବାଗ୍ ଅଞ୍ଚଳ । ଘରଦ୍ୱାର ସବୁ ପୁରୁଣା, ଅର୍ଦ୍ଧଭଗ୍ନ ଅବସ୍ଥାରେ ଥିଲା । 'କୟାଲ'ମାନେ ଏହାକୁ ନିଜ ଅକ୍ତିଆରରେ ରଖି-ଥିଲେ । ସେମାନେ ଥିଲେ ଦଣ୍ଡିଦାର । ମାଲମତା ଯାହା ଆସୁଥିଲା, ତାକୁ ଓଜନ କରୁଥିଲେ । ଏଥିପାଇଁ ସେମାନେ ମଜୁରି ପାଉଥିଲେ । ମାତ୍ର ଓଜନରେ ହେରଫେର୍ କରି ସେମାନେ ବ୍ୟବସାୟୀଙ୍କଠାରୁ ମୋଟା ଟଙ୍କାର ମୁନାଫା ମାରି ନେଉଥିଲେ । ବିଚରା ବିକ୍ରେତାମାନେ ଏହା ଦ୍ୱାରା କ୍ଷତିଗ୍ରସ୍ତ ହେଉଥିଲେ । ମାର୍କେଟର ପୁନଃନିର୍ମାଣ ନିମନ୍ତେ ଯେତେବେଳେ ପ୍ରସ୍ତାବ ରଖାଗଲା, ଏହି କୟାଲମାନେ ସେଥିରେ ଘୋର ଆପତ୍ତି ଉଠାଇଲେ । ଟାମସ୍ ଏହାର ପୁରୁଣା କୋଠାବାଡ଼ି ମରାମତି କରାଇ ଏହାକୁ ନୂତନ ରୂପ ଦେବା ନିମନ୍ତେ ପ୍ରଥମେ ଭାବିଥିଲେ । ମାତ୍ର ଆପତ୍ତି ହେବାରୁ ସେ ଅତ୍ୟନ୍ତ ଏଥିପାଇଁ ଜାଗା ଅନ୍ୱେଷଣ କରିବାକୁ ଲଗିଲେ । ଜାଗା ମିଳିଲା ସହରର ପୂର୍ବା-ଞ୍ଚଳରେ । ଏଠାରେ ପୂର୍ବରୁ ମରହଟ୍ଟାମାନଙ୍କର ଅଦାଲତ ଥିଲା ଏବଂ ପରେ ଜଙ୍ଗଲ ହୋଇ ପଡ଼ିରହିଥିଲା । ଜଙ୍ଗଲ ସଫା ହୋଇ ମାଟି ଖୋଳିଲାରୁ ସେଠାରୁ ଛ' ସାତୋଟି ସୁନ୍ଦର କାରୁକାର୍ଯ୍ୟ ଖମ୍ବ ବାହାରିଲା । ଧୀରେ ଧୀରେ ସେଠାରୁ ପଥର ତିଆରି ଆହୁରି ବହୁତ ପଦାର୍ଥ ବାହାରିଲା, ଯାହା ହୁଏତ ଏକଦା କୋଠାବାଡ଼ିରେ ବ୍ୟବହୃତ ହୋଇଥିଲା । ଏହାର ସାହାଯ୍ୟରେ ନୂଆ ମାର୍କେଟ ଗୋଟିଏ ସୁନ୍ଦର ଘର ତିଆରି ହୋଇଗଲା । ଏଠାରେ ଧାନ ଚାଉଳ ଇତ୍ୟାଦି ରଖିବା ପାଇଁ ଗୋଟିଏ ଭଣ୍ଡାର, କିଣାବିକା କରିବାପାଇଁ ପ୍ରଶସ୍ତ ସ୍ଥାନ ତଥା ଗୋଟିଏ ଦର୍ଶନୀୟ ଫାଟକ ତିଆରି ହେଲା । ଏହାର ଗୋଟିଏ ପାଖରେ ଥିଲା ଗମ୍ଭୀର ପୋଖରୀଟିଏ । ଏହାର ଚାରିପଟ

ଚାରିବନ୍ଧା । ଏହାର ସ୍ଥାନେ ସ୍ଥାନେ ପଥରର ଚମତ୍କାର ମୂର୍ତ୍ତି ସବୁ ରହିଥିଲା । ପୋଖରୀଟିକୁ ସଫା କରି ଦିଆଗଲା । ଘାଟସବୁକୁ ନୂଆ କରି ବନ୍ଧାଇ ଦିଆଗଲା । ଜାଗାଟି ବେଶ୍ ସୁନ୍ଦର ମଧ୍ୟ ଦେଖାଗଲା । ଦିନେ ଏହି ମାର୍କେଟକୁ ଉଦ୍‌ଘାଟନ କରାଗଲା । ଏଠାରେ କପୁାଳମାନଙ୍କ ଉପଦ୍ରବ ନ ଥିବାରୁ ଅଳ୍ପ ଦିନରେ ଏହା ବେଶ୍ ଜମି ଗଲା । ସେଇଟି ହେଉଛି, ଚୌଧୁରୀ ବଜାରର ପୁରୁଣା ମାର୍କେଟ୍ ଅଞ୍ଚଳ ଏବଂ ପୋଖରୀଟି ହେଉଛି, ଏବର ମ୍ୟୁନିସପାଲିଟି ପୋଖରୀ ।

୧୮୭୫ ମସିହାର ଶେଷ ଭାଗକୁ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ରିଚାର୍ଡ଼ ଟେମ୍‌ପଲ୍ କଟକ ପରିଦର୍ଶନରେ ଆସିଥିଲେ ଏବଂ ତାଙ୍କର ଆଗମନ ଉପଲକ୍ଷେ ସମଗ୍ର କଟକ ସହର ଅପୂର୍ବ ସାଜସଜ୍ଜାରେ ସୁମଣ୍ଡିତ ହୋଇଥିଲା । ଯୋବ୍ରାଠାରୁ ଲାଲବାଗ ପର୍ଯ୍ୟନ୍ତ ରାସ୍ତା ପତ୍ରପୁଷ୍ପମଣ୍ଡିତ ତୋରଣ ଦ୍ୱାରା ସଜ୍ଜିତ ହୋଇଥିଲା । ରାତିରେ ଦୀପମାଳା ମଣ୍ଡିତ ଏହି ଅଞ୍ଚଳ ଏକ ପୌରାଣିକ ନଗରୀର ପ୍ରତ୍ୟୟ ସୃଷ୍ଟି କରୁଥିଲା । ଟେମ୍‌ପଲ୍‌ଙ୍କ ଆଗମନ ଉପଲକ୍ଷେ ଏହିଠାରେ ଏକ ବିରାଟ ଦରବାରର ଆୟୋଜନ କରାଯାଇଥିଲା ଏବଂ ଏଥିରେ ଗଡ଼ଜାତର ସମସ୍ତ ଶାସକ, ସେମାନଙ୍କର ସହାୟକ, କଟକର ଗଣ୍ୟମାନ୍ୟ ନାଗରିକ ଯୋଗ ଦେଇଥିଲେ । ସେତେବେଳେ କଟକ ସହର ଜନାକୀର୍ଣ୍ଣ ହୋଇ ପଡ଼ିଥିଲା ।

ସେ ସମୟରେ କଟକରେ ଅବସ୍ଥାପିତ ବିଦେଶୀ ଶାସକମାନଙ୍କର ସାମାଜିକ ଜୀବନ ସମ୍ପର୍କରେ ବିମସ ବିସ୍ତୃତ ବିବରଣୀ ଦେଇଛନ୍ତି । ବାରବାଟୀ ଦୁର୍ଗ ଭିତରେ ଥିଲା କଟକ କ୍ଲବ । ଯେଉଁଠି ଏମାନେ ପ୍ରତ୍ୟହ ଏ ସନ୍ଧ୍ୟାରେ ଏକତ୍ରିତ ହେଉଥିଲେ । ସେଠାରେ ନାନା ଧରଣର ଖେଳ ଇତ୍ୟାଦିର ବ୍ୟବସ୍ଥା ଥିଲା । ମଦ୍ୟପାନର ବ୍ୟବସ୍ଥା ତ ଅବଶ୍ୟ ରହିବାର କଥା । ଏଥିରେ ସାରା ସନ୍ଧ୍ୟା କଟାଇ ଶାସକମାନେ ନିଜ ନିଜ ଘରକୁ ଫେରି ଯାଉଥିଲେ । 'ଷ୍ଟାର୍ ଅଫ୍ ଓଡ଼ିଶା' ନାମରେ ଆଉ ଏକ କ୍ଲବ ଏହି ସମୟରେ ଗଢ଼ାଯାଇ ଥିଲା । ଗୋଟିଏ ଗ୍ରେଟ ସୁନ୍ଦର କୋଠାରେ ଏହା ଅବସ୍ଥିତ ଥିଲା । ବହୁ ୟୁରୋପୀୟ ଏହାର ସଭ୍ୟ ଥିଲେ । ବିମସ୍ ଏହି କ୍ଲବରେ ଯୋଗଦେଇ କିଛି କାଳପାଇଁ ଏହାର ପରିଚାଳକ ମଧ୍ୟ ହୋଇଥିଲେ । ଏଠାରେ ପ୍ରାୟ ନିୟମିତ ଭୋଜି ଭାତର ବ୍ୟବସ୍ଥା କରାଯାଉଥିଲା । ମଦ୍ୟପାନ ପରେ ସଙ୍ଗୀତର ବ୍ୟବସ୍ଥା କରାଯାଉଥିଲା । କ୍ରମେ ଏଥିରେ ଦେଶୀୟ ଲୋକେ ମଧ୍ୟ ଯୋଗ ଦେବାର ଅନୁମତି ପାଇଥିଲେ । ସେଠାରେ ସେମାନଙ୍କ ସହିତ ଯୋଗାଯୋଗ ଦ୍ୱାରା ଶାସନ କ୍ଷେତ୍ରରେ ବିମସ୍‌ଙ୍କ ପାଇଁ ବହୁ ଅସୁବିଧା ସୃଷ୍ଟି କରିଥିଲା । କାରଣ ଏହି ପରିଚୟ ଜୋରରେ ଏହି ଦେଶୀୟ ଲୋକେ ଶାସନଠାରୁ ନିଜ ପାଇଁ ବହୁ ସୁବିଧା ସୁଯୋଗ ହାସଲ କରିନେବା ପାଇଁ ବିମସ୍‌ଙ୍କ ଉପରେ ଚାପ ପକାଉଥିଲେ । ତେଣୁ ବିମସ୍ ବାଧ୍ୟ ହୋଇ ଏହା ସହିତ ସମସ୍ତ ପ୍ରକାର ସମ୍ପର୍କ ଛିନ୍ନ କରିଦେଲେ ।

୧୮୭୨-୭୬ ମସିହା ବେଳକୁ ଫଲସପଏଣ୍ଟ ପାଦର ବତୀଘର ନିର୍ମାଣର ସୂତ୍ରପାତ ହୋଇଥିଲା । ପରେ ୧୮୭୫-୭୬ ମସିହା ବେଳକୁ ଓଡ଼ିଶା ପାଇଁ ଏକ ବନ୍ଦର ସ୍ଥାପନର ଆବଶ୍ୟକତା ଅନୁଭବ କରାଯାଇଥିଲା । ରେଭେନ୍‌ସା (ସେତେବେଳର କମିଶନର) ଓ୍ୱାକର (ସେତେବେଳର ବାରଜ ମିସ୍ତ୍ରୀ ବିଭାଗର ସୁପରିଣ୍ଟେଣ୍ଡିଂ ଇଞ୍ଜିନିୟର) ଏବଂ ମାକ୍‌ଫରସନ୍ (କଲେକ୍ଟର) ଫଲସପଏଣ୍ଟ ପର୍ଯ୍ୟନ୍ତ ଯାଇଁ ଏଥିନିମନ୍ତେ ଗୋଟିଏ ଉପଯୁକ୍ତ ସ୍ଥାନ ନିର୍ବାଚନ କରିଥିଲେ । ଏହାର ଉପରେ ପରେ ବନ୍ଦର କର୍ମଚାରୀଙ୍କ କାର୍ଯ୍ୟାଳୟ ଗଢ଼ାଯାଇଥିଲା । ଏ ଜାଗାଟିରେ ପୂର୍ବରୁ କେହି ରହୁ ନଥିଲେ । ତେଣୁ ଏହାର କୌଣସି ନାମ ମଧ୍ୟ ନଥିଲା । ତେଣୁ ଏଥିପାଇଁ ଗୋଟିଏ ଉପଯୁକ୍ତ ନାମର ସନ୍ଧାନ କରାଗଲା । ମାକ୍‌ଫରସନ୍ କହିଲେ, ଆମର ଇଞ୍ଜିନିୟର ସାହେବଙ୍କ ନାମାନୁସାରେ ଏହି ସ୍ଥାନର ନାମ 'ହୁକିଟୋଲା' ରଖାଯାଉ । ପ୍ରସଙ୍ଗ କ୍ରମେ ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ, ଓ୍ୱାକରଙ୍କ ଡାକନାମ ଥିଲା 'ହୁକି ଓ୍ୱାକର' । ଯେଉଁ ନାମଟିକୁ ଗ୍ରହଣ କରି ନିଆଗଲା । ସ୍ଥାନୀୟ ଲୋକଙ୍କୁ ଏହି ନାମଟି ମନେ ରଖିବାକୁ ବେଶ୍ ସୁବିଧା ହେଲା ଏବଂ ପରବର୍ତ୍ତୀ କାଳରେ ହଣ୍ଟର ଏହାକୁ ଏକ ଦେଶୀୟ ଶବ୍ଦ ରୂପରେ ପରିଚୟ କରାଇ ଅଛନ୍ତି । ତାଙ୍କ ମତରେ 'ହୁକି' ଶବ୍ଦର ଅର୍ଥ ହେଉଛି 'ହୁଙ୍କା' ଏବଂ ତୋଲା ଅର୍ଥ ହେଉଛି 'ଓଜନ' । କଟକସ୍ଥ ବାରବାଟୀ ଦୁର୍ଗରୁ ପଥର ନିଆଯାଇ ଫଲସ୍‌ପଏଣ୍ଟର ବତୀଘର ନିର୍ମାଣ କରାଯାଇଥିଲା ବୋଲି ବିମସ୍ କହିଛନ୍ତି ।

କଟକୀ ଲୋକଙ୍କର ନିସ୍ପୃହତା ଓ ଉଦାସୀନତା ସମ୍ପର୍କରେ ବିମସ୍ ବଡ଼ କରୁଣ ମନ୍ତବ୍ୟମାନ ଦେଇଛନ୍ତି । ବିଶେଷତଃ, ତାଙ୍କ ଅଧୀନରେ କାମ କରୁଥିବା କର୍ମଚାରୀଙ୍କ ସମ୍ପର୍କରେ, ତାଙ୍କର ଆଦୌ ଭଲ ଧାରଣା ନଥିଲା । ସେମାନେ ଅଳସୁଆ, କର୍ମକୁଣ୍ଠ ଏବଂ ବୋଧଶକ୍ତିହୀନ ଥିଲେ ବୋଲି ତାଙ୍କର ଧାରଣା ହୋଇଥିଲା । ତେଣୁ ସେ ପ୍ରଥମେ କଟକ ଆସି, ଏମାନଙ୍କ ଭିତରୁ ଅନେକଙ୍କୁ ଛାଡ଼ି ସେମାନଙ୍କ ସ୍ଥାନରେ ବାଲେଶ୍ୱରରୁ ନୂଆ ଲୋକ ଆଣି ରଖାଇଥିଲେ । ପରେ ଅବଶ୍ୟ ସ୍ଥାନୀୟ କର୍ମଚାରୀମାନେ ବିମସ୍‌ଙ୍କ ଦସ୍ତୁର ସହିତ ପରିଚିତ ହୋଇଗଲା ପରେ, ଆଉ କୌଣସି ଅସୁବିଧା ହୋଇ ନଥିଲା । ରେଭେନ୍‌ସାଙ୍କୁ ଯେ ଓଡ଼ିଆମାନେ ଏତେ ଭଲ ପାଉଥିଲେ, ତାହାର ଗୋଟିଏ ବିଚିତ୍ର କାରଣ ବିମସ୍ ଖୋଜି ବାହାର କରିଥିଲେ । ତାଙ୍କ ମତରେ ଓଡ଼ିଆମାନେ ହେଉଛନ୍ତି ସ୍ୱଭାବତଃ ନିଷ୍କ୍ରିୟ ଏବଂ ଅଳସୁଆ । ରେଭେନ୍‌ସାଙ୍କ ସ୍ୱଭାବରେ ମଧ୍ୟ ଏହି ଗୁଣଟି ଅତିମାତ୍ରାରେ ରହିଥିଲା । ତେଣୁ ଓଡ଼ିଆମାନେ ରେଭେନ୍‌ସାଙ୍କର ଅନୁରକ୍ତ ହୋଇ ପଡ଼ିଥିଲେ ।

ଥରକର ଘଟଣା । ୧୮୭୬ ମସିହାର କଥା । କେନ୍ଦ୍ରାପଡ଼ାର ସିଭିଲିଆନ୍ ଯୁବକ ଆଟ୍‌କିନସନ୍ କାର୍ଯ୍ୟୋପଲକ୍ଷେ କଟକ ଆସୁଥିଲେ ଘୋଡ଼ାରେ ଚଢ଼ି । ସେତେବେଳେ ଜଗତ୍‌ପୁରଠାରୁ ନଈ ବାଲିରେ ଚାଲି ଫେରିଘାଟରେ ଉଠିବାକୁ ହେଉଥିଲା । ଫେରିରେ ରହୁଥିଲେ ଆଟ୍‌କିନସନ୍‌ଙ୍କର ପ୍ରେମାସ୍ପଦା । ତାଙ୍କ ସହିତ

ଶୀଘ୍ର ମିଳନ ହେବାଲାଗି ଆଟ୍‌କିନସନ୍‌ଙ୍କର ବାଂଛା ଥିଲା । ପାଣି ଭିତରେ ପଶି ଯାଇଁ ଉଠିବା ଆଗରୁ, ସେ ନିଜ ଅଜାଣତରେ ଗର୍ତ୍ତ ଭିତରକୁ ପଶିଗଲେ । ଘୋଡ଼ା ତାଙ୍କୁ ସେଇଠି ଛାଡ଼ି କୂଳକୁ ଫେରାଇ ଆସିଲା ।

ଆଟ୍‌କିନ୍‌ସନ୍‌ଙ୍କର ପ୍ରେମର ସମାଧି ମହାନଦୀର ନୀଳ ଜଳ ମଧ୍ୟରେ ରଚିତ ହୋଇଗଲା । ଏଣେ ଶୂନ୍ୟ ଘୋଡ଼ାକୁ ଦେଖି ଆଟ୍‌କିନ୍‌ସନ୍‌ଙ୍କୁ ଖୋଜା ପଡ଼ିଲା । ନଦୀକୂଳ ଜନଶୂନ୍ୟ ନ ଥିଲା । ଦଳ ଦଳ ଲୋକ ଘାସ କାଟୁଥିଲେ । ଆଟ୍‌କିନ୍‌ସନ୍‌ଙ୍କର ସନ୍ଧାନ ସେମାନଙ୍କୁ ପଚରାଯିବାରୁ ସେମାନେ ସମସ୍ତେ ମହା ଆନନ୍ଦରେ ମୁଣ୍ଡ ହଲାଇ ଏକାଥରେ କହି ଉଠିଲେ—ହଁ ହଁ, ସାହେବ ଆସୁଥିଲେ ଘୋଡ଼ାରେ ଚଢ଼ି । ପାଣି ବାଟରେ ଆସୁ ଆସୁ ମୁଲ୍‌ରେ ଗର୍ତ୍ତ ଭିତରକୁ ଚାଲିଗଲେ, ବିଚରା ଘୋଡ଼ାରୁ ପଡ଼ିଗଲେ—ଆଉ ଘୋଡ଼ା ତା' ବାଟରେ ଛୁ । ସାହେବ କୋଉଠି ଥିବ ଆଉ ? ପାଣି ଭିତରେ ତ । ସେମାନେ କାହିଁ ତାକୁ ଡାକିକରି ଠିକ୍ ବାଟ ବତାଇ ଥାଆନ୍ତେ ? ସେମାନଙ୍କର କି ଯାଏ ? ସାହେବର କାଳ ପୂରିଲା, ସେ ଗଲା । ସେମାନଙ୍କ କପାଳରେ ଘାସ କଟା ଯୋଗ—ସେମାନେ ଘାସ କାଟୁଛନ୍ତି ?" ଏହାଛଡ଼ା ସେତେବେଳେ ଜଣେ—ସ୍ଥାନୀୟ କାନୁନଗୋଇ ତାଙ୍କର ଦଳେ ସେବକ ନେଇ କୁଆଡ଼େ ସେତେବେଳେ ସେଇ ରାସ୍ତାରେ ଯାଉଥିଲେ । ସମଗ୍ର ଘଟଣାଟି ତାଙ୍କର ଆଖିଆଗରେ ଘଟିଥିଲା । ସେ ଘଟଣା ସ୍ଥାନର ନିକଟବର୍ତ୍ତୀ ଥିଲେ ଏବଂ ସାହେବ ସେ ବିପଦ ମୁହଁକୁ ଟାଣି ହୋଇ ଯାଉଛନ୍ତି, ଏହା ତାଙ୍କୁ ଜଣା ଥିଲା । ସେ କିଛି କଲେ ନାହିଁ । କାରଣ—"ନିଜ ଦୁଃଖରେ ହାଡ଼ ବାଉଁଶ ନାହିଁ । ପର କଥାରେ ତାଙ୍କର କି ଯାଏ ?"

ବୀମ୍‌ସ୍ ଏହି ଅପରାଧ ନିମନ୍ତେ କାନୁନ୍‌ଗୋଙ୍କୁ ପଦଚ୍ୟୁତ କରିଥିଲେ ହେଁ, ସ୍ଥାନୀୟ ଲୋକ ଏହାର ଗୁରୁତ୍ୱ ଆଦୌ ବୁଝି ନପାରି ପ୍ରତିବାଦ ଜଣାଇଥିଲେ । ଗୋଟିଏ କଥାରେ କହିବାକୁ ଗଲେ, ସ୍ଥାନୀୟ ଲୋକଙ୍କର ହୃଦୟହୀନତା, ଅମାନବିକତା, ବୀମ୍‌ସଙ୍କୁ କ୍ଷୁବ୍ଧ କରିଥିଲା । ଆଜି ଏତେଦିନ ପରେ, ପ୍ରକୃତ ଘଟଣା କ'ଣ ଘଟିଥିଲା, ତାହା ଆଉ ଜାଣିବାର ଉପାୟ ନାହିଁ । କେବଳ ଅଭିଯୁକ୍ତମାନଙ୍କର ମ[illegible] କିଛି କହିବାର ଥାଇପାରେ । ବୀମ୍‌ସ୍—ତାଙ୍କର ସମସାମୟିକ ଉଚ୍ଚ କର୍ମଚାରୀ । ସହକର୍ମୀ ସମସ୍ତଙ୍କୁ ବ୍ୟଙ୍ଗ କରିଛନ୍ତି । ସେମାନଙ୍କର ଯୋଗ୍ୟତା ଏବଂ କର୍ମଠତା ସମ୍ପର୍କରେ ହାଲୁକା ମନ୍ତବ୍ୟମାନ ଦେଇଛନ୍ତି । ଲେଫ୍‌ଟେନାଣ୍ଟ ଗଭର୍ଣ୍ଣର, କମିଶନର, କଲେକ୍ଟର, ସେକ୍ରେଟାରୀଙ୍କଠାରୁ ଆରମ୍ଭକରି ଏ ଦେଶର ରାଜା ମହାରାଜା, ସାଧାରଣ ଜନତା, କର୍ମଚାରୀ ସମସ୍ତେ ତାଙ୍କର ସମାଲୋଚନାର ଦ୍ରବ୍ୟ ହୋଇଛନ୍ତି । ଐତିହାସିକ ହଣ୍ଟର ମଧ୍ୟ ଏଥିରୁ ନିସ୍ତୃତି ପାଇନାହାନ୍ତି । ତ୍ରୁଟି ଏତେ ଲୋକଙ୍କ ପାଖରେ ଥିଲା କିମ୍ବା ସ୍ୱୟଂ ବୀମ୍‌ସ୍‌ଙ୍କ ପାଖରେ ଥିଲା, ତାହା ଚିନ୍ତା କରିବାର କଥା ।

ବୀମ୍‌ସ୍ ସ୍ୱୟଂ ଲେଖିଛନ୍ତି, କଟକରେ ତାଙ୍କର ରହଣି କେବଳ ବନ୍ଧୁ, ଶୁଭକାମୀମାନଙ୍କର ସାହଚର୍ଯ୍ୟରେ ସୁଖପୂର୍ଣ୍ଣ ହୋଇ ଉଠିଥିଲା; ଏହା ନୁହେଁ । ମାନ

ବହୁ ବିଚାର, ଏବଂ ମର୍ମସ୍ପର୍ଶୀ ଘଟଣା ମଧ୍ୟ ପ୍ରାପ୍ତ ହୋଇଥିଲା, ଯାହା ତାଙ୍କର କର୍ମଶକ୍ତିକୁ ବହୁଗୁଣରେ ବଢ଼ାଇ ଦେଉଥିଲା ।

କଟକରେ ଥିଲାବେଳେ ବୀମ୍ସ୍ ଥରେ ଉଦୟଗିରି ଯାଇ ସେଠାକାର ଧ୍ୱଂସାବଶେଷ ମଧ୍ୟରୁ କ୍ଷୁଦ୍ର ବୃହତ୍ ବହୁ ବୁଦ୍ଧ ମୂର୍ତ୍ତିର ସନ୍ଧାନ ପାଇଥିଲେ । ଭଗ୍ନ ପ୍ରାୟ ଏହି ବୌଦ୍ଧ କୀର୍ତ୍ତି ଅତୀତରେ ଏକଦା ବୌଦ୍ଧଧର୍ମାବଲମ୍ବୀମାନଙ୍କ ଦ୍ୱାରା ଏକ ବୌଦ୍ଧ ମଠ ରୂପରେ ଗଢ଼ି ଉଠିଥିଲା । ସମସ୍ତ ମୂର୍ତ୍ତିର ନାକ ଭଙ୍ଗା ଯାଇଥିଲା । ବୀମ୍ସ୍ ଏହି ସ୍ୱୀକୃତି ଓଡ଼ିଶାର ଅନ୍ୟତ୍ର ମଧ୍ୟ ଲକ୍ଷ୍ୟ କରିଛନ୍ତି । ହିନ୍ଦୁ ମୂର୍ତ୍ତିମାନଙ୍କୁ ଏହିଭଳି ବିକୃତ ଏବଂ ଅପବିତ୍ର କରିବା ଥିଲା ମୁସଲମାନମାନଙ୍କର ଗୃହୀତ ନୀତି ବୋଲି ବୀମ୍ସ ମନେ କରନ୍ତି । ସ୍ଥାନୀୟ କିମ୍ବଦନ୍ତୀ ମତରେ କଳାପାହାଡ଼ର ବିଜୟ ଘୋଷ ଶୁଣିବା ମାତ୍ରକେ ଏହିସବୁ ମୂର୍ତ୍ତିର ନାକ ଆପେ ଆପେ ଖସି ପଡ଼ନ୍ତି । ବୀମ୍ସ୍ ଏହି ସବୁ ମୂର୍ତ୍ତିର ସୁରକ୍ଷା ବିଷୟରେ ଚିନ୍ତା କରିଛନ୍ତି ଏବଂ ତନ୍ମଧ୍ୟରୁ କେତୋଟି ତଥା ଏହାର ରମଣୀୟ ତୋରଣଟିକୁ ଡଙ୍ଗାରେ ଲଦି କଟକ ନେଇଆସିଥିଲେ । ଗୁଡ଼ୁକଆଗଞ୍ଜଠାରେ ନିଜ ବାସଗୃହର ଅଦୂରବର୍ତ୍ତୀ ସ୍ଥାନରେ ବୀମ୍ସ୍ ଇତିପୂର୍ବରୁ ଗୋଟିଏ ପାର୍କ ତିଆରି କରାଇ ଥିଲେ । ଏହିଠାରେ ସେ ପୂର୍ବୋକ୍ତ ମୂର୍ତ୍ତିଗୁଡ଼ିକୁ ରଖାଇଥିଲେ । ଏହିଠାରେ ସେ ସବୁର ଉପଯୁକ୍ତ ବିନିଯୋଗ ହୋଇପାରିବ ବୋଲି ତାଙ୍କର ବିଶ୍ୱାସ ଥିଲା । ଏ ଗୁଡ଼ିକ ଏବେ କେଉଁଠି, ତାହା କିଏ କହିବ ?

୧୮୭୭ ମସିହା ଜାନୁୟାରୀ ପହିଲାରେ ଲର୍ଡ଼ ଲିଟନ୍ (ତତ୍କାଳୀନ ଭାଇସରାୟ) ଦିଲ୍ଲୀଠାରେ ଏକ ସ୍ମରଣୀୟ ଦରବାରର ଆୟୋଜନ କରିଥିଲେ । ସମଗ୍ର ଦେଶର ରାଜା ମହାରାଜା ଗଣ୍ୟମାନ୍ୟ ଲୋକ ଏଥିରେ ଯୋଗ ଦେଇଲେ ଏବଂ ଏଥିରେ ରାଣୀ ଭିକ୍ଟୋରିଆଙ୍କୁ ଭାରତର ସାମ୍ରାଜ୍ଞୀରୂପେ ଘୋଷଣା କରାଗଲା । କଟକରେ ମଧ୍ୟ ଏଥି ନିମନ୍ତେ ଏକ ସ୍ୱତନ୍ତ୍ର ଉତ୍ସବର ଆୟୋଜନ କରା ଯାଇଥିଲା । ଏକ ବିରାଟ ତମ୍ବୁ ଖଟାଯାଇ ବହୁ ଲୋକଙ୍କୁ ନିମନ୍ତ୍ରଣ କରା ଯାଇଥିଲା । ବାରବାଟୀ ଦୁର୍ଗ ସମ୍ମୁଖସ୍ଥ ଖୋଲା ପଡ଼ିଆରେ ଏହା ପ୍ରସ୍ତୁତ କରାଯାଇ ପତ୍ର ପୁଷ୍ପ ତୋରଣ ମଣ୍ଡିତ ହୋଇଥିଲା । ମଞ୍ଚ ଉପରେ ସ୍ୱୟଂ ରେଭେନ୍ସା ଓ ବୀମ୍ସ୍ ବସିଥିଲେ । ରାଜା ମହାରାଜା ସାଥିରେ ଜନତା ଏବଂ କେତୋ ମହିଳା, ସମସ୍ତ ସରକାରୀ ୟୁରୋପୀୟ କର୍ମଚାରୀ ଏଥିରେ ଯୋଗ ଦେଇଥିଲେ । ରାଣୀଙ୍କର ଘୋଷଣାପତ୍ର ଇଂରାଜୀରେ ଏବଂ ଓଡ଼ିଆରେ ପଢ଼ା ଯାଇଥିଲା । ନିମନ୍ତ୍ରିତମାନେ ଜଣ ଜଣ କରି ରେଭେନ୍ସାଙ୍କୁ ସମ୍ମାନ ପ୍ରଦର୍ଶନ କଲାପରେ ଅତର ପୁଷ୍ପ ଓ ପାନ ସୁପାରି ବିତରଣ କରାଯାଇଥିଲା । ସନ୍ଧ୍ୟାବେଳେ ସେଇ ମଞ୍ଚରେ ଗୋଟିଏ ସାମାଜିକ ମିଳନର ବ୍ୟବସ୍ଥା କରାଯାଇଥିଲା । ସେଥିରେ ସ୍ଥାନୀୟ ରାଜା ମହାରାଜା ଜମିଦାରମାନଙ୍କ ସହିତ ଥିଲେ ୟୁରୋପୀୟ କର୍ମଚାରୀ ଏବଂ ସେମାନଙ୍କର ପତ୍ନୀମାନେ । ରାତ୍ର ଅଧ୍ୟାଏ ଏଠାରେ ନାଚ ଗୀତ, ମଦ୍ୟପାନ ଭୋଜନର କାର୍ଯ୍ୟ ଚାଲି ଶେଷରେ ସମାପ୍ତ ହୋଇଥିଲା ।

ଏହାପରେ ବାମ୍‌ସଙ୍କ ବିବରଣୀରେ କଟକ କଥା ଆଉ ସ୍ଥାନ ପାଇ ନାହିଁ। କାରଣ ଏହାର ଅଳ୍ପଦିନ ପରେ ରେଭେନ୍ୟୁ ବୋର୍ଡ଼ ଅଫ୍ ରେଭେନ୍ୟୁର ମେମ୍ବର ଭାବେ ନିଯୁକ୍ତ ହୋଇ କଟକ ଛାଡ଼ିବାରୁ ବାମ୍‌ସ୍ ତାଙ୍କ ସ୍ଥାନରେ ଓଡ଼ିଶା ମଣ୍ଡଳର କମିଶନର ଭାବେ ଅସ୍ଥାୟୀ ରୂପେ ନିଯୁକ୍ତ ହେଲେ। ଏଥର ତାଙ୍କର କାର୍ଯ୍ୟ ପରିସର ସେ କାଳରେ ସମଗ୍ର ଓଡ଼ିଶାକୁ ବିସ୍ତୃତ ହୋଇଗଲା ଏବଂ କଟକ ସହର ସହିତ ତାଙ୍କର ଯୋଗାଯୋଗ ଆଉ ପ୍ରାୟ ରହିଲା ନାହିଁ।

ଗଡ଼ଜାତ ମହାଲର ସୁପରିଣ୍ଟେଣ୍ଡେଣ୍ଟ ଭାବରେ ତାଙ୍କୁ ପ୍ରାୟ ଗସ୍ତ କରିବାକୁ ପଡ଼ୁଥିଲା ଏବଂ ଗଡ଼ଜାତର ସମସ୍ୟା ସମାଧାନ ନିମନ୍ତେ ବ୍ୟବସ୍ଥା ଗ୍ରହଣ କରିବାକୁ ପଡ଼ୁଥିଲା। ଦଶପଲ୍ଲା, ଢେଙ୍କାନାଳ ଏବଂ ପୁରୀ ପ୍ରଭୃତି ସ୍ଥାନରେ ଏହି ସମୟରେ ଯେଉଁ ପ୍ରଶାସନିକ ଅବ୍ୟବସ୍ଥାମାନ ଦେଖା ଦେଇଥିଲା, କେଉଁ ଉପାୟରେ ସେ ତାହାର ସମାଧାନ କରିଥିଲେ, ତାହାର ବିସ୍ତୃତ ବିବରଣୀ ଦେଇଛନ୍ତି। ବିଶେଷକରି ସେହି ସମୟରେ ଗୋବିନ୍ଦ ଦ୍ୱାଦଶୀ ଯୋଗ ହେତୁ ପୁରୀ ମନ୍ଦିରରେ ଅଭାବିତ ଜନସମାଗମ ହେତୁରୁ ମନ୍ଦିରଠାରେ ଯେଉଁ ମୃତ୍ୟୁ କାଣ୍ଡ ହୋଇଥିଲା, ତତ୍କାଳୀନ ଗଜପତି ଦିବ୍ୟସିଂହ ଦେବଙ୍କୁ ହିଁ ଏଥି ନିମନ୍ତେ ଦୋଷୀ କରାଯାଇଥିଲା। ପରେ ପରେ ଗଜପତି ଏକ ସନ୍ନ୍ୟାସୀ ହତ୍ୟାକାଣ୍ଡ ମାମଲାରେ ଦୋଷୀ ସାବ୍ୟସ୍ତ ହୋଇ ଦ୍ୱୀପାନ୍ତର ଦଣ୍ଡ ପାଇଥିଲେ। ବାମ୍‌ସ୍ ଏହାର ବିବରଣୀ ମଧ୍ୟ ତାଙ୍କର ଆତ୍ମଜୀବନୀରେ ଦେଇଛନ୍ତି। ୧୮୭୮ ମସିହା ଫେବୃୟାରୀ ୧୪ ତାରିଖରେ ଦୀର୍ଘ ନଅ ବର୍ଷରେ ଓଡ଼ିଶା ରହଣି ପରେ ବାମ୍‌ସ୍ ଚଟ୍ଟଗ୍ରାମର ଜଜ୍ ଏବଂ କମିସନର୍ ପଦରେ ନିଯୁକ୍ତ ହୋଇ ଓଡ଼ିଶା ଛାଡ଼ିଲେ।

କଟକ ସମ୍ପର୍କରେ ବିବରଣୀ ଦେବାକୁ ଯାଇ ବାମ୍‌ସ୍ ଦୁଇଟି ସ୍ଥାନରେ କିଛି ତ୍ରୁଟିପୂର୍ଣ୍ଣ କଥା କହିଛନ୍ତି। ତନ୍ମଧ୍ୟରୁ ପ୍ରଥମଟି ହେଉଛି ଷୋଡ଼ଶ ଶତକରେ ଓଡ଼ିଶାର ଗଜପତି କଟକରୁ ନିଜର ରାଜଧାନୀ ସ୍ଥାନାନ୍ତରିତ କରିବା। ଆଫଗାନ୍‌ମାନେ ବାରମ୍ବାର ଏହି ସମୟରେ ଓଡ଼ିଶା ଆକ୍ରମଣ କରିଥିବା ବିବରଣୀ ଇତିହାସରୁ ମିଳୁଛି।

ବାରବାଟୀ ଦୁର୍ଗ ନିର୍ମାଣର ସଠିକ୍ ଇତିହାସ ଏବେ ମଧ୍ୟ ନିର୍ଣ୍ଣୟ କରାଯାଇ ପାରି ନାହିଁ। ମୁକୁନ୍ଦଦେବ ଅବଶ୍ୟ ବାରବାଟୀର ନବତଳ ପ୍ରାସାଦ ନିର୍ମାଣ କରାଇ-ଥିବାର କିମ୍ବଦନ୍ତୀ ଏଠାରେ ପ୍ରଚଳିତ। ମାତ୍ର ତାଙ୍କର ବହୁ ପୂର୍ବରୁ କେଶରୀ ରାଜାଙ୍କ ଅମଳରେ ସୁଦ୍ଧା କଟକର ଗୁରୁତ୍ୱ ଇତିହାସ ସ୍ୱୀକୃତ। ନୃପକେଶରୀ କଟକ ନଗର ନିର୍ମାଣ କରାଇଥିଲେ ଏବଂ ମର୍କତକେଶରୀ ପଥର ବନ୍ଧ ନିର୍ମାଣ କରାଇଥିଲେ—ବୋଲି ଇତିହାସରୁ ଜଣାଯାଏ। ଏଭଳି କ୍ଷେତ୍ରରେ ମୁକୁନ୍ଦଦେବଙ୍କ କାଳରେ କଟକ ରାଜଧାନୀ ରୂପେ ପ୍ରତିଷ୍ଠା ପାଇବା କଥା ଇତିହାସ ଦୃଷ୍ଟିରୁ ସଂପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ ଏବଂ ବାମ୍‌ସ୍ ଏହାକୁ କେବଳ ଅନ୍ୟଠାରୁ ଶୁଣି ଲେଖିଥିବେ।

ସେହିପରି ମରହଟ୍ଟାମାନଙ୍କ ଦ୍ୱାରା ପଥର ବନ୍ଧର ନିର୍ମାଣ ସମ୍ପର୍କରେ ଉଲ୍ଲେଖ ମଧ୍ୟ ଅନ୍ୟ ଏକ ଐତିହାସିକ ତ୍ରୁଟି। ପଥର ବନ୍ଧ ନିର୍ମାଣ ସମ୍ପର୍କରେ ଏଠାକାର ଇତିହାସ ଅତ୍ୟନ୍ତ ସ୍ପଷ୍ଟ।

ବାମ୍ସ୍ କଟକରେ ରହିଥିଲେ ପାଖାପାଖି ସାଢ଼େ ଚାରିବର୍ଷ । ଏଥିଭିତରୁ ତାଙ୍କର ପ୍ରାୟ ଗୋଟିଏ ବର୍ଷ କମିସନର୍ ରୂପେ ତଥା ବାକି ସମସ୍ତ କଲେକ୍ଟରରୂପେ କଟିଛି । କଲେକ୍ଟର ଥିବା ସମୟରେ ସେ କଟକ ସହିତ ଘନିଷ୍ଠ ସମ୍ପର୍କରେ ଆସିଥିବାର ସୁଯୋଗ ପାଇଛନ୍ତି, ଏବଂ କଟକ ତାଙ୍କୁ ବେଶ୍ ଭଲ ଲାଗିଛି ବୋଲି ମଧ୍ୟ ଏକାଧିକଥର ଉଲ୍ଲେଖ କରିଛନ୍ତି । ଏଠାକାର ନିରୁପଦ୍ରବ ଶାନ୍ତ ଜୀବନଧାରା ତାଙ୍କର କର୍ମଜୀବନ ନିମନ୍ତେ ସେଭଳି କୌଣସି ସମସ୍ୟା ସୃଷ୍ଟି କରି ନାହିଁ । ସେ ଯାହା ଲେଖିଛନ୍ତି, ୟୁରୋପୀୟ ଜୀବନ-ଧାରାର ଚିତ୍ର ହିଁ ସେଥିରେ ବେଶି ଫୁଟି ଉଠିଛି । ଏଠାକାର ସମାଜ ଜୀବନ ବିଷୟରେ ସେ ପ୍ରାୟ ନୀରବ ହିଁ ରହିଛନ୍ତି । ଯେଉଁମାନେ ତାଙ୍କ ରଚନାରେ ସ୍ଥାନ ପାଇଛନ୍ତି, ସେମାନେ ସମସ୍ତେ ଇଂରେଜର ରାଜପୁରୁଷ । ସ୍ଥାନୀୟ ରାଜା ଜମିଦାର ଯେଉଁମାନଙ୍କ କଥା ସେ ଲେଖିଛନ୍ତି, ସେମାନଙ୍କର ନାମ ସୁଦ୍ଧା ଉଲ୍ଲେଖ କରିନାହାନ୍ତି । କଟକ ସହରର ଜଣେ ସୁଦ୍ଧା ଗଣ୍ୟମାନ୍ୟ ଲୋକ ତାଙ୍କ ରଚନା ଭିତରକୁ ଆସି ନାହାନ୍ତି । ଅଥଚ ସେତେବେଳର କଟକ ଜୀବନ ନବଜାଗରଣ ପ୍ରଭାବରେ ଯେଉଁଭଳି କର୍ମ ଚଞ୍ଚଳ ହୋଇ ଉଠିଥିଲା, ତାହାର ପରିଚୟ ଆମ୍ଭମାନଙ୍କୁ ଇତିହାସରୁ ମିଳୁଛି । ଗୌରୀଶଙ୍କର, ମଧୁସୂଦନ ପ୍ରମୁଖ ତ ଥିଲେ । ଫକୀରମୋହନଙ୍କ ନାମ ତାଙ୍କ ବିବରଣୀରେ ସ୍ଥାନ ପାଇବ ବୋଲି ଆଶା କରା ଯାଉଥିଲା । ମାତ୍ର ତାହା ହୋଇ ନାହିଁ ।

ବାମ୍ସ୍ ଜଣେ ଓଡ଼ିଆ ପ୍ରେମୀ ଥିଲେ । ତାଙ୍କର ରହଣି କାଳରେ ଓଡ଼ିଆ ଭାଷା ପାଇଁ ଯେଉଁ ସଙ୍କଟ ଦେଖା ଦେଇଥିଲା, ସେଥିରୁ ଓଡ଼ିଶାକୁ ଉଦ୍ଧାର କରିବାରେ ସେ ଯେ ଯେଉଁ ଐତିହାସିକ ଭୂମିକା ଗ୍ରହଣ କରିଥିଲେ, ଜଣେ ଭାଷାତତ୍ତ୍ୱବିତ୍ ରୂପରେ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ପ୍ରମାଣ କରିବାକୁ ସେ ଯେଉଁ ଭଳି ନିର୍ଦ୍ଧାରରେ ଆଗେଇ ଆସିଥିଲେ, ସେଥିପାଇଁ ଏ ଜାତି କଦାପି ନ କାଳେ ତାଙ୍କୁ ଭୁଲି ପାରିବ ନାହିଁ । ଓଡ଼ିଶା ପାଇଁ ଆଉ କିଛି ନ କରିଥିଲେ ମଧ୍ୟ ଏଇ ଗୋଟିକ କାର୍ଯ୍ୟ ତାଙ୍କୁ ଓଡ଼ିଶାବାସୀଙ୍କ ହୃଦୟରେ ଅମର କରି ରଖିବ ।

ବସ୍ତୁତଃ, ଜଣେ ଶାସକ ରୂପରେ ଶାସନ ବ୍ୟବସ୍ଥାର ସୁପରିଚାଳନା ଦେଖିବା ଥିଲା ତାଙ୍କର ମୁଖ୍ୟ ଦାୟିତ୍ୱ । ତାହା ସେ ଭଲ ଭାବରେ ତୁଲାଇଛନ୍ତି । ସେ ବିଷୟରେ ଲିପିବଦ୍ଧ କରିବାକୁ ଯାଇଁ ମଝିରେ ମଝିରେ କଟକ ସମ୍ପର୍କରେ ସେ ଯେଉଁ ବିବରଣୀ ଦେଇଛନ୍ତି, ତାହାର ମଧ୍ୟ କିଛି ଐତିହାସିକ ମୂଲ୍ୟ ରହିଛି । କଟକର ଭୌଗୋଳିକ ଅବସ୍ଥିତି, ଏଠାକାର ଜନଜୀବନ, ଶାସନ ବ୍ୟବସ୍ଥା, ଆନନ୍ଦ ଉତ୍ସବ ଏ ସମସ୍ତ ବିଷୟର ଉଲ୍ଲେଖ ତାଙ୍କର ଆତ୍ମଜୀବନୀରେ ରହିଛି । ଉଚ୍ଛ୍ୱସିତ ଭାଷାରେ ସେ କଟକକୁ ପ୍ରଶଂସା କରିଛନ୍ତି । ତେବେ ଗୋଟିଏ କଥା ଓଡ଼ିଆମାନଙ୍କ ଯୋଗ୍ୟତା ବିଷୟରେ ତାଙ୍କର ଉଚ୍ଚ ଧାରଣା ନ ଥିଲା । ଅନ୍ତତଃ ଏହାର କୌଣସି ପରିଚୟ ତାଙ୍କର ଲେଖାରୁ ମିଳୁନାହିଁ । ବରଂ ଏହାର ବିପରୀତ ହିଁ ଦେଖିବାକୁ ମିଳୁଛି ।

●

# ସଶସ୍ତ୍ର ସ୍ୱାଧୀନତା ସଂଗ୍ରାମରେ କଟକ ସହର

ଶ୍ରୀ ଶିଶିର ମହାପାତ୍ର

କଟକ ଓଡ଼ିଶାର ଏକ ପ୍ରାଚୀନ ଓ ଐତିହାସିକ ସହର । ଏହା ଓଡ଼ିଶାର ଜାତୀୟ ଏବଂ ସାଂସ୍କୃତିକ ଜୀବନର ପ୍ରାଣକେନ୍ଦ୍ର । ଏହା ହିନ୍ଦୁ, ମୋଗଲ, ମୁସଲମାନ ମରାଠା ଏବଂ ବ୍ରିଟିଶ ରାଜତ୍ୱ କାଳରେ ଓଡ଼ିଶାର ରାଜଧାନୀ ହୋଇ ଆସିଛି । ପୂର୍ବ-ଉପକୂଳରେ ବଙ୍ଗଳାଠାରୁ ଦାକ୍ଷିଣାତ୍ୟକୁ ସ୍ଥଳପଥରେ ସଡ଼କ ଓ ରେଳରାସ୍ତା ଏହା ମଧ୍ୟ ଦେଇ ଯାଇଅଛି । ଏକ ସମୟରେ ଏହା ମଧ୍ୟ ଦେଇ ପ୍ରବାହିତ ମହାନଦୀ ସାହାଯ୍ୟରେ ମଧ୍ୟ ଭାରତରୁ କଟକ ଏବଂ କଟକରୁ ବଙ୍ଗୋପସାଗରକୁ ଜଳପଥରେ ନୌକା ଯାତା ପାଇଁ ସଦା ସର୍ବଦା ସୁବିଧା ରହିଥିଲା ।

୧୮୦୩ ଖ୍ରୀ:ରେ ଇଂରେଜମାନେ ଓଡ଼ିଶା ଅଧିକାର କଲାପରେ କଟକ ହେଲା ଶାସନ କେନ୍ଦ୍ର ଓ ଏଠାରେ କମିଶନରଙ୍କ କାର୍ଯ୍ୟାଳୟ ସ୍ଥାପିତ ହେଲା । ଏହାପରେ ବିଭିନ୍ନ ସରକାରୀ କାର୍ଯ୍ୟାଳୟ, ଅଦାଲତ, ଭର୍ଣ୍ଣାକୁଲାର ସ୍କୁଲ, ରେଭେନ୍‌ସା କଲେଜ, ସାଧାରଣ ଶିକ୍ଷାଳୟ, ମେଡ଼ିକାଲ ସ୍କୁଲ, ମ୍ୟୁନିସିପାଲିଟି ଇତ୍ୟାଦି ପ୍ରତିଷ୍ଠା ଲାଭ କଲା । ବ୍ୟବସାୟ ବାଣିଜ୍ୟ, ପ୍ରିଣ୍ଟିଂ ପ୍ରେସ, ସମ୍ବାଦ ଓ ପତ୍ରପତ୍ରିକା ପ୍ରକାଶନ ହେତୁ କଟକ ସହରରେ ଏକ ନବ ଜାଗରଣର ସୂତ୍ରପାତ ହେଲା ।

ଊନବିଂଶ ଶତାବ୍ଦୀର ଶେଷଭାଗ ବେଳକୁ ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷା ଫଳରେ ଏକ ନୂତନ ଶିକ୍ଷିତ ଗୋଷ୍ଠୀଙ୍କର ଆବିର୍ଭାବ ଘଟିଲା । ସାରା ଭାରତବର୍ଷରେ ମଧ୍ୟ ଏହି ସମୟକୁ ନୂତନ ଶିକ୍ଷିତ ଗୋଷ୍ଠୀଙ୍କ ଚିନ୍ତା-ବୃତ୍ତିରେ ଜାତୀୟତାର ନୂତନ ଫଲ୍‌ଗୁ ପ୍ରବାହିତ ହେଉଥାଏ । ୧୮୮୫ ଖ୍ରୀ:ଅ:ରେ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠା ଏହି ଚେତନାର ସକ୍ରିୟ ନିଦର୍ଶନ । ଓଡ଼ିଶାରେ ଜାତୀୟ ନବଜାଗରଣ ମଧ୍ୟ ଏ ସମୟକୁ ପ୍ରକାଶ ପାଇଲା ।

ଏକ ପକ୍ଷରେ ଓଡ଼ିଶାର ବିଭିନ୍ନ ଅଂଶ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବିହାର ଏବଂ ବଙ୍ଗ ପ୍ରଦେଶରେ ମିଶି ରହିଥିବାରୁ, ସେ ସମସ୍ତଙ୍କୁ ଏକତ୍ର କରି ଯେ କୌଣସି ଏକ

ପ୍ରାଦେଶିକ ସରକାରଙ୍କ ଅଧୀନରେ ରହିବା ନିମନ୍ତେ ସର୍ବପ୍ରଥମେ ୧୮୭୪ ଖ୍ରୀ:ର ଶେଷ ଭାଗରେ ତତ୍କାଳୀନ ଗ୍ରେଟ ଲଟ ସାର୍ ଶଫ୍ରର୍ଡ ନର୍ଥକୋଟଙ୍କୁ ପ୍ରସ୍ତାବ ଦିଆ ଯାଇଥିଲା । କଟକରୁ ହିଁ ଏହି ପ୍ରସ୍ତାବ ଦିଆଯାଇଥିଲା ।

୧୮୬୬ ଖ୍ରୀ:ର ନ'ଙ୍କ ଦୁଃଭିକ୍ଷ ପରେ ପରେ କଟକ ଏବଂ ଓଡ଼ିଶାର ଉନ୍ନତି-କଳ୍ପେ ତତ୍କାଳୀନ କମିଶନର ରେଭେନ୍‌ସା ସାହେବଙ୍କର ଭୂମିକା ଅଗ୍ରଗଣ୍ୟ । ଓଡ଼ିଶାର ବାଲେଶ୍ୱର, କଟକ ଓ ପୁରୀର ମୋଗଲବନ୍ଦୀ ଅଞ୍ଚଳ ବ୍ୟତୀତ ୨୬ ଗୋଟି ଗଡ଼ଜାତର ଶିକ୍ଷା, ସଂସ୍କୃତି ଓ ଶାସନ ନିମନ୍ତେ କଟକ ହିଁ ଭାରତବର୍ଷର ମାନଚିତ୍ରରେ ସ୍ୱତନ୍ତ୍ର ଭାବରେ ସ୍ଥାନ ପାଇଲା । କଲିକତା ଭାରତବର୍ଷର ତତ୍କାଳୀନ ରାଜଧାନୀ ଭାବରେ ଏହାକୁ ନିୟନ୍ତ୍ରଣ କରିଲା । ଓଡ଼ିଶାର ଜାତୀୟ ଜୀବନକୁ ଏକତ୍ରିତ କରିବା ନିମନ୍ତେ କଟକରେ ଉତ୍କଳ ସମ୍ମିଳନୀ ନାମରେ ଏକ ସଙ୍ଗଠନର ପ୍ରଥମ ଅଧିବେଶନ ୧୯୦୩ରେ ବସିଲା ଏବଂ ଏହି ସଙ୍ଗଠନ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ନିମନ୍ତେ ଚିନ୍ତା କଲା । ଅନ୍ୟ ପକ୍ଷରେ ଓଡ଼ିଶା ବାସୀଙ୍କର ଏକ ମହାଭାରତୀୟ ଜାତୀୟ ଜୀବନର ଚିନ୍ତାଧାରାର ମଧ୍ୟ ସୂତ୍ରପାତ ହୋଇଥିଲା । ଏହି ଚିନ୍ତାଧାରା ଭାରତର ସ୍ୱାଧୀନତା ସଂଗ୍ରାମରେ ସାମିଲ ହୋଇଥିଲା ।

## ଏକଶହ ବର୍ଷର ପୂର୍ବ ଘଟଣାବଳୀ :

କଟକ ସହରରେ ଏହି ସନ୍ତ୍ରାସବାଦୀମାନଙ୍କର ଇଂରେଜ ବିରୋଧୀ ବୈପ୍ଳବିକ କାର୍ଯ୍ୟ କେବଳ ବିଂଶ ଶତାବ୍ଦୀର ୧ମ ଦଶକରେ ଯେ ଦେଖା ଦେଇଥିଲା ତାହା ନୁହେଁ; ଏହାର ଠିକ୍ ଏକଶହ ବର୍ଷ ତଳେ ଏହି ମାଟିରେ ଇଂରେଜ ବିରୋଧୀ ଓଡ଼ିଆମାନେ ବନ୍ଦୀର ଜୀବନ ନେଇ ଏଠାରେ ପାଦ ଦେଇଥିଲେ । କେତେକ ରାଜା ଏବଂ ଜମିଦାର ବ୍ରିଟିଶ ସରକାରଙ୍କ ମନମୁଖୀ ଅନ୍ୟାୟ ଶାସନକୁ ବିରୋଧ କରି ସଶସ୍ତ୍ର ସଂଗ୍ରାମ ବିଭିନ୍ନ ସମୟରେ ଚଳାଇ ରଖିଥିଲେ । ଖୋର୍ଦ୍ଧାର ରାଜା ଦ୍ୱିତୀୟ ମୁକୁନ୍ଦ ଦେବଙ୍କୁ ୧୮୦୫ ଜାନୁଆରୀ ୩ ତାରିଖରେ ବନ୍ଦୀ କରି ଆଣି ପ୍ରଥମେ ବାରବାଟୀ ଦୁର୍ଗରେ ରଖିଥିଲେ ଏବଂ ପରେ ମେଦିନୀପୁରକୁ ସ୍ଥାନାନ୍ତର କରିଥିଲେ । ତାଙ୍କର ମନ୍ତ୍ରୀ ଜୟୀ ରାଜଗୁରୁଙ୍କୁ ମଧ୍ୟ ରାଜାଙ୍କ ସହିତ ମେଦିନୀପୁରକୁ ପଠାହୋଇଥିଲା । ପ୍ରଥମେ ତାଙ୍କୁ କଟକ ଅଣା ଯାଇଥିଲା । ସେହି ବର୍ଷ କୁଜଙ୍ଗର ରାଜା ଚନ୍ଦ୍ରଧ୍ୱଜ ସେଣ୍ଢଙ୍କୁ ବାରବାଟୀ ଦୁର୍ଗରେ ବନ୍ଦୀ କରାଯାଇଥିଲା । ପୁଣି ସେହିବର୍ଷ କନିକା ବିଦ୍ରୋହ ନିମନ୍ତେ ରାଜା ବଳଭଦ୍ର ଭଞ୍ଜଙ୍କୁ କଟକ ଅଣା ନ ଯାଇ ବାଲେଶ୍ୱରକୁ ଏବଂ ପରେ ମେଦିନୀପୁରକୁ ଅଣା ଯାଇଥିଲା । ଏହାର ଏକ ବର୍ଷ ପରେ ତାଙ୍କୁ ମୁକ୍ତ କରାଯାଇଥିଲା ।

ଏହାପରେ ଖୋର୍ଦ୍ଧାର ପାଇକ ବିଦ୍ରୋହ ୧୮୧୭ ଖ୍ରୀ:ରେ ଘଟିଥିଲା । ଏହାର ମୁଖ୍ୟ ନେତା ବକ୍ସି ଜଗବନ୍ଧୁ ବିଦ୍ୟାଧର ଧରା ନ ପଡ଼ିବାରୁ ତାଙ୍କର ପରିବାର ବର୍ଗଙ୍କୁ ୧୮୧୯ ଅକ୍ଟୋବର ୧୯ ତାରିଖରେ ବାରବାଟୀ ଦୁର୍ଗରେ ବନ୍ଦୀ କରି ଏହାର

ଛରବର୍ଷ ନଭେମ୍ବର ମାସରେ ମୁକ୍ତ କରିଆଯାଇଥିଲା । ଏହାର ପାଞ୍ଚବର୍ଷ ପରେ ଅର୍ଥାତ୍ ୧୮୦୫ ମେ' ମାସ ୨୯ ତାରିଖରେ କଟକକୁ ଅଣାଯାଇ ଏକ ସ୍ୱତନ୍ତ୍ର ଭଡ଼ା ଘରେ ବକ୍ସି ଜଗବନ୍ଧୁଙ୍କୁ ରଖା ଯାଇଥିଲା । ଏଠାରେ ସେ ୧୮୨୯ ଜାନୁଆରୀ ୨୪ ତାରିଖରେ ପରଲୋକ ଗମନ କରିଥିଲେ । ପାଇକ ବିଦ୍ରୋହ ସମୟରେ ଆଉ କେତେକ ନେତାଙ୍କ ମଧ୍ୟରୁ ପଣ୍ଡିତ ବାସୁଦେବ ଅନ୍ୟତମ । ୧୭୬୮ ଖ୍ରୀ:ରେ ଜନ୍ମଗ୍ରହଣ କରିଥିବା ଖୋର୍ଦ୍ଧା ରାଜାଙ୍କର ଏହି ଦଳେଇଙ୍କ ଗୃହ ଭୁବନେଶ୍ୱର ଠାରୁ କିଛି ଦୂର ଦାରୁଠେଙ୍ଗ ଗ୍ରାମରେ । ଏହାଙ୍କୁ ବନ୍ଦୀକରି କଟକ ଜେଲରେ ରଖା ହୋଇଥିଲା । ମାତ୍ର ସେଠାରୁ ସେ ଖସି ପଳାଇ ଚୁଡ଼ଙ୍ଗଗଡ଼ ଜଙ୍ଗଲରେ ଯାଉଥିବା ସମୟରେ ସୈନ୍ୟମାନଙ୍କ ଗୁଳି ମାଡ଼ରେ ମୃତ୍ୟୁ ଲଭିଥିଲେ । ସେହିପରି ଖୋର୍ଦ୍ଧାଠାରୁ ଷୋହଳ କିଲୋମିଟର ଦୂରରେ ବାଣପୁରରେ ମଧ୍ୟ ୧୮୨୭ ଖ୍ରୀ:ରେ ଏକ ବିଦ୍ରୋହ ହୋଇଥିଲା ।

ଏହାପରେ ୧୮୪୮ ଖ୍ରୀ:ରେ ଅନୁଗୁଳର ରାଜା ସୋମନାଥ ସିଂହଙ୍କ ବିଦ୍ରୋହ ହେତୁ ତାଙ୍କୁ କଟକ ଅଣା ହୋଇଥିଲା ଏବଂ ଏଠାରେ ଥିବା ସମୟରେ ପୁଣି ଗୋପନ ଭାବରେ ଷଡ଼ଯନ୍ତ୍ର ହେତୁ ତାଙ୍କୁ ହଜାରିବାଗକୁ ପଠା ହୋଇଥିଲା । ତାଙ୍କର ରାଜ୍ୟକୁ ସରକାର ନେଇ ଯାଇଥିଲେ । ତାଙ୍କର ପରିବାରବର୍ଗଙ୍କୁ ମଧ୍ୟ କଟକ ଜେଲ ନିକଟରେ ଏକ ଭଡ଼ା ଘରେ ରଖା ଯାଇଥିଲା । ପୁଣି ୧୮୫୭ ଖ୍ରୀ:ରେ ଭାରତରେ ଯେଉଁ ସିପାହୀ ବିଦ୍ରୋହ ଦେଖା ଦେଇଥିଲା, ସେହି ବର୍ଷ ପୁରୀର ଚନ୍ଦନ ହଜୁରି (ଅନ୍ୟନାମ ବୃନ୍ଦ ଖୁଣ୍ଟିଆ) ଝାନ୍‌ସୀର ରାଣୀଙ୍କ ସହ ବିଦ୍ରୋହରେ ଯୋଗ ଦେଇଥିଲେ । ସମ୍ବଲପୁରର ବୀର ସୁରେନ୍ଦ୍ର ସାଏ ମଧ୍ୟ ଇଂରେଜ ସରକାରଙ୍କ ବିରୁଦ୍ଧାଚରଣ କରିଥିଲେ ଏବଂ ଜୀବନର ଶେଷଯାଏ ବହୁକାଳ ଜେଲ ଜୀବନ ଓଡ଼ିଶା ବାହାରେ କଟାଇଥିଲେ । ସେତେବେଳେ ଏହି ବୀରମାନଙ୍କ ବିଷୟରେ କଟକରୁ ପ୍ରକାଶ ପାଉଥିବା ପତ୍ର ପତ୍ରିକାରେ ସମ୍ବାଦମାନ ପ୍ରକାଶ ପାଉଥିଲା ।

କଟକରୁ ପ୍ରକାଶିତ ୧୮୫୭ ଖ୍ରୀ:ର 'ପ୍ରବୋଧ ଚନ୍ଦ୍ରିକା'ର ସେପ୍ଟେମ୍ବର ସଂଖ୍ୟାରୁ କଟକ ଜିଲ୍ଲାର ଯାଜପୁର ଅନ୍ତର୍ଗତ ବାଲିଆରେ ଜମିଦାର ରାମକୃଷ୍ଣ ସାମନ୍ତ ସିଂହାର କିପରି ଇଂରେଜ ସରକାରଙ୍କୁ ଖଜଣା ନ ଦେବା ପାଇଁ ସନ୍ତ୍ରାସବାଦୀ କାର୍ଯ୍ୟ କରିଥିଲେ, ତାହା ଜଣାପଡ଼େ । ସେମାନେ କେତେକ ଅସ୍ତ୍ରଶସ୍ତ୍ର ଏକ ଆଖଡ଼ା ଘରେ ରଖିଥିଲେ । ସେଥିରେ ପ୍ରକାଶ ପାଇଥିଲା—"× × × ଉକ୍ତ ଜିଲ୍ଲାର ଶ୍ରୀଯୁକ୍ତ ମାଜିଷ୍ଟ୍ରେଟ ସାହେବଙ୍କ ଗୋଚରରେ ଗୋଚର କରାଇ ଦିଆଯିବାରେ ପ୍ରଶଂସିତ ସାହେବଙ୍କ ବିବେଚନାରେ ରାମକୃଷ୍ଣ ସାମନ୍ତ ସିଂହାର ଓ ଜନବନ୍ଧୁ ମହାରଣା ('ମହାପାତ୍ର' ବୋଲି ଅନ୍ୟ ଲେଖକ କହନ୍ତି) ଏବଂ ଉପେନ୍ଦ୍ର ଜେନା ଏ ତିନିଜଣ ରାଜଦ୍ରୋହିତା ଦୋଷରେ ଦୋଷୀ ସ୍ଥିର ହେବା ଯୋଗୁଁ ଉପରେ ଲିଖିତ ଆସାମୀମାନେ ଦୌରା ସୋପର୍ଦ୍ଦ ହୋଇଥିଲେ, କିନ୍ତୁ ଗଲିତ ସନ ଅଗଷ୍ଟ ମାସ ୨୧ ତାରିଖରେ ଶ୍ରୀଯୁକ୍ତ ସେସନ ଜଜ୍ ସାହେବଙ୍କ ବିବେଚନାରେ ଉକ୍ତ ଆସାମୀମାନଙ୍କ ମଧ୍ୟରେ ଉପେନ୍ଦ୍ର ଜେନା ଉପରେ କୌଣସି ଦୋଷ ଆରୋପ ନୋହିବା ହେତୁରୁ ସେ ମୁକ୍ତ ହେଲା ଏବଂ

ରାମକୃଷ୍ଣ ସାମନ୍ତସିଂହାର ଓ ଯାନବନ୍ଧୁ ମହାରଣା ଦୁଇଜଣ ପ୍ରତ୍ୟେକରେ ସାଅବର୍ଷ ଲେଖାଏଁ କଏଦ ହେବେ ଅଥଚ ମେହନତ କରିବେ । ପୁନଶ୍ଚ ଅପରାଧି ମଜଦୁରମାନଙ୍କ ସର୍ବପ୍ରକାର ସକଳ ସମ୍ପତ୍ତି ଅର୍ଥାତ୍ ଚଳନ୍ତି ଅଚଳନ୍ତି ଜାଏଦାଦମାନ ସରକାରରେ ଜବ୍‌ଦ ଓ ନିଲାମ ହୋଇ ତହିଁର ଉତ୍ପନ୍ନ ଟଙ୍କା ସରକାର ତହବିଲରେ ଜମା ହେବ ।” ମାତ୍ର ୧୮୫୭ର ବିପ୍ଳବ ଘଟିବା ପରେ ଇଂରେଜ ସରକାର ସେମାନଙ୍କୁ ୧୮୫୮ ନଭେମ୍ବର ମାସରେ ଖଲାସ କରି ଦେଇଥିଲେ ଏବଂ ବ୍ୟାଜାପ୍ତ ସମ୍ପତ୍ତି ଫେରାଇ ଦେଇଥିଲେ ।

ସମ୍ବଲପୁରରେ ସୁରେନ୍ଦ୍ର ସାଏଙ୍କର କାର୍ଯ୍ୟ ନେଇ ‘ପ୍ରବୋଧ ଚନ୍ଦ୍ରିକା’ର ୧୮୫୭ ଅକ୍ଟୋବର ସଂଖ୍ୟାରେ ଲେଖା ହୋଇଥିଲା—“ସମ୍ବଲପୁର ଆସିଷ୍ଟାଣ୍ଟ କମିଶନର ଶ୍ରୀଯୁକ୍ତ କାପ୍ତାନ ଲି ସାହେବ ଲେଖିଅଛନ୍ତି କି ସମ୍ବଲପୁରର ରାଜବଂଶୀୟ ‘ସୁନ୍ଦର ସା’ ନାମକ ଜଣେ ବ୍ୟକ୍ତି ହଜାରିବାଗରେ କଏଦ ଥିଲା । ତାକୁ ବିଦ୍ରୋହୀ ସୈନ୍ୟମାନେ ମୁକ୍ତ କରି ଦେବାରୁ ସେ ସମ୍ବଲପୁରରେ ପହଞ୍ଚି ରାଜବିଦ୍ରୋହାଚରଣରେ ପ୍ରବୃତ୍ତ ହେବାର ସମ୍ଭାବନା ଅଛି । ଅତଏବ କଟକଠାରେ ତିନି କମ୍ପାନୀ ଓ ନାଗପୁରଠାରେ ତିନି କମ୍ପାନୀ ସୈନ୍ୟ ସମ୍ବଲପୁରଠାକୁ ଯିବାର ଆଜ୍ଞା ହୋଇଅଛି × × × ।”

୧୮୫୭ର ସିପାହୀ ବିଦ୍ରୋହ ବେଳେ ବିହାରର ରାମଗଡ଼ ସୈନ୍ୟ ଶ୍ରେଣୀର ସିପାହୀମାନେ ବିଦ୍ରୋହ ବେଳେ ସିଂହଭୂମ ଜିଲ୍ଲାରେ ଥିବା ପୋଡ଼ାହାଟ ରାଜ୍ୟର ଓଡ଼ିଆ ଜମିଦାର ରାଜା ଅର୍ଜୁନ ସିଂହ ସେମାନଙ୍କୁ ଆଶ୍ରୟ ଦେଲେ । ମୟୂରଭଞ୍ଜର ତତ୍କାଳୀନ ରାଜା ଯଦୁନାଥ ଭଞ୍ଜଙ୍କର ସେ ଥିଲେ ଜ୍ୱାଇଁ । ସେ ବିଦ୍ରୋହୀ ଭାବରେ ଜଙ୍ଗଲକୁ ପଳାଇ ଥିଲେ, ମାତ୍ର ଯଦୁନାଥ ଭଞ୍ଜଙ୍କର ପ୍ରରୋଚନାରେ ସେ ଇଂରେଜ ସରକାରଙ୍କ ପାଖରେ ଆତ୍ମସମର୍ପଣ କରିଥିଲେ । ଏହା ପରେ ତାଙ୍କ ରାଜ୍ୟକୁ ସରକାର ନେଇ ଯାଇଥିଲେ ।

୧୮୫୭ ଡିସେମ୍ବର ମାସରେ ଲେଫ୍‌ଟେନାଣ୍ଟ ବର୍ଚ୍ଚ ଦଳେ ଶିଖ ସୈନ୍ୟଙ୍କୁ ନେଇ ପୋଡ଼ାହାଟ ଆକ୍ରମଣ କରି ଦେଓ୍ୱାନ ଜଗୁଙ୍କୁ ହତ୍ୟାକରି ରାଜବାଟୀ ଆଗରେ ଝୁଲାଇ ଦେଲେ । ସେ ହେଉଛନ୍ତି ସିପାହୀ ବିଦ୍ରୋହର ପ୍ରଥମ ଓଡ଼ିଆ ଶହୀଦ । ଏହାର ଦଶବର୍ଷ ପରେ କେଉଁଝରରେ ଦାସୀପୁତ୍ର ଧନୁର୍ଜ୍ଜୟ ଭଞ୍ଜଙ୍କୁ ଇଂରେଜ ସରକାର ଲୋକମତ ବିରୋଧରେ ଯାଇ ଗାଦିରେ ବସାଇ ଥିବାରୁ ଏକ ଭୟଙ୍କର ପ୍ରଜାବିଦ୍ରୋହ ହୋଇଥିଲା । ଏଥିରୁ ରତନ ନାୟକ ଏବଂ ନନ୍ଦ ନାୟକଙ୍କ ସହିତ ଅନ୍ୟ ତିନିଜଣଙ୍କୁ ରାଜାଙ୍କ ଦେଓ୍ୱାନ ମହାପାତ୍ର ନନ୍ଦ ଧଳଙ୍କୁ ହତ୍ୟା ନିମନ୍ତେ କଟକ ଜେଲରେ ଫାଶୀ ଦେଇଥିଲେ । ୨୭ ଜଣଙ୍କୁ ଆଜୀବନ ଦେଶାନ୍ତର ଏବଂ ୧୮୧ ଜଣଙ୍କୁ ବିଭିନ୍ନ ଦଣ୍ଡ ଦିଆଯାଇଥିଲା । ଏହି ବିଦ୍ରୋହ ସମ୍ପର୍କରେ ସେତେବେଳେ କଟକରୁ ପ୍ରକାଶ ପାଉଥିବା ‘ଉତ୍କଳ ଦୀପିକା’ରେ ସମ୍ବାଦମାନ ପ୍ରକାଶ ପାଉଥିଲା ।

୧୮୬୮ରେ ଏହି ବିଦ୍ରୋହ ପରେ ପୁଣି କେଉଁଝରରେ ଧରଣୀଧର ନାୟକଙ୍କ ନେତୃତ୍ୱରେ ପ୍ରଜା ବିଦ୍ରୋହ ହୋଇଥିଲା । ଏଥିପାଇଁ ୧୮୯୧ ଖ୍ରୀ'ରେ ଧରଣୀଧରଙ୍କୁ କଟକରେ ସାତବର୍ଷ ସଶ୍ରମ କାରାଦଣ୍ଡ ଦିଆଗଲା । ପଣ୍ଡିତ ଗୋପବନ୍ଧୁ ଏବଂ ପଣ୍ଡିତ ନୀଳକଣ୍ଠ ଦାସ ଥରେ ଏହି ବିପ୍ଳବୀ ଧରଣୀଧରଙ୍କୁ ପୁରୀରେ ଦେଖା କରିବାକୁ ଯାଇଥିଲେ । ମୁଖମଣ୍ଡଳରେ ଥିବା ଦାଢ଼ି ପାଚି ନ ଥିଲା । ଧରଣୀଧର ସେମାନଙ୍କୁ ଦେଶପ୍ରେମୀ ହେବାକୁ ଉପଦେଶ ଦେଇଥିଲେ । କଟକ ସହର ପ୍ରାକୃତିକ ଏବଂ ରାଜନୈତିକ ଓଡ଼ିଶାର ଶାସନର କେନ୍ଦ୍ର ବିନ୍ଦୁ ହୋଇଥିବାରୁ ସମସ୍ତ ବିଦ୍ରୋହୀଙ୍କର ଲକ୍ଷ୍ୟସ୍ଥଳ ଥିଲା ଏହି କଟକ । ଭାରତର ରାଜନୈତିକ ସନ୍ତ୍ରାସ କାର୍ଯ୍ୟକଳାପ ସମ୍ବାଦପତ୍ର ମାଧ୍ୟମରେ ନବ ଶିକ୍ଷିତ ଓଡ଼ିଆ ଏବଂ ବଙ୍ଗୀୟ ବ୍ୟକ୍ତିମାନଙ୍କ ଜୀବନଧାରା ଉପରେ ପ୍ରଭୂତ ପ୍ରଭାବ ପକାଉଥିଲା । ତେଣୁ ଜାତୀୟ ଜୀବନ ନିମନ୍ତେ ଏକ ନବ ପ୍ରେରଣାର ଧାରା ଏଠାରେ ଲକ୍ଷ୍ୟ କରାଯାଇଥିଲା ।

ଇଂରେଜ ସରକାରଙ୍କ ବିରୋଧରେ ଏକ ସଶସ୍ତ୍ର ସଂଗ୍ରାମ କିପରି ହୋଇ ପାରିବ ସେହି ଚିନ୍ତାଧାରାର ଝଲକ କଟକରେ ଅଳ୍ପ କିଛିବର୍ଷ ପାଇଁ ଦେଖାଦେଇ ପୁଣି ଉଭେଇ ଯାଇଥିଲା । ମାତ୍ର ସେହି ଝଲକ ଉତ୍ତର ଜୀବନରେ ବହୁ ସ୍ୱାଧୀନତା ସଂଗ୍ରାମୀଙ୍କ ନିମନ୍ତେ ଥିଲା ପ୍ରେରଣାର ଉତ୍ସ । ମେଦିନୀପୁରର ହେମେନ୍ଦ୍ର ନାଥ ଦାସ କାନୁନ୍‌ଗୋ ଭାରତର ସନ୍ତ୍ରାସବାଦୀମାନଙ୍କ ମଧ୍ୟରେ ଥିଲେ ମୁଖ୍ୟ ବୋମା ନିର୍ମାତା । ଏହାକୁ ତିଆରି ଶିକ୍ଷା କରିବା ନିମନ୍ତେ ସେ ପ୍ୟାରିସକୁ ଯାଇଥିଲେ । ଖୁଦିରାମ କିଙ୍ଗ୍‌ସ-ଫୋର୍ଡ଼ଙ୍କୁ ବୋମାମାଡ଼ କରିଥିବା କେଶରେ 'ଯୁଗାନ୍ତର'ର ଅନ୍ୟ ସଦସ୍ୟଙ୍କ ସହ ଧରା ହୋଇ ବିଚାରରେ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ପାଇଥିଲେ । ସେ ଖୁଦିରାମଙ୍କୁ ବୋମା ବଢ଼ାଇ ଦେଇଥିଲେ ବୋଲି ମଧ୍ୟ କୁହାଯାଏ । ଏହା ପରେ ୧୯୧୫ ଖ୍ରୀ: ସେପ୍ଟେମ୍ବର ୧୦ ତାରିଖ ଦିନ ବାଘାଯତୀନଙ୍କର ବାଲେଶ୍ୱରଠାରେ ମୃତ୍ୟୁ ହେବା ପରେ ଅନ୍ୟ ଯେଉଁ ୩ ଜଣଙ୍କ ପାଇଁ ବିଚାର ସେଠାରେ ହେଲା, ସେଥିରେ ତିନି ଜଣିଆ ଟ୍ରିବୁନାଲରେ କଟକର ଆଡ଼ଭୋକେଟ୍ ରାୟସାହେବ ନିମାଇଁ ଚରଣ ମିତ୍ର ଥିଲେ ଅନ୍ୟତମ ସଭ୍ୟ ।

## ନେତାଜୀ ସୁଭାଷଚନ୍ଦ୍ର :

ନେତାଜୀ ସୁଭାଷ ଚନ୍ଦ୍ର ବୋଷ (୧୮୯୭-୧୯୪୫) କଟକର ଓଡ଼ିଆ ବଜାର ବାସିନ୍ଦା ତଥା ସରକାରୀ ଓକିଲ ଜାନକୀନାଥ ବୋଷଙ୍କର କନିଷ୍ଠ ପୁତ୍ର ଥିଲେ । କଟକର ଷ୍ଟୁଆର୍ଟ ସ୍କୁଲରେ ଓ ରେଭେନ୍ସା କଲେଜିଏଟ୍‌ରେ ସେ ବିଦ୍ୟାଶିକ୍ଷା କରିଥିଲେ । ମାଟ୍ରିକ ପରୀକ୍ଷାରେ ବୃତ୍ତି ପାଇ ସେ କଲିକତାର ପ୍ରେସିଡେନ୍‌ସି କଲେଜରେ ଶିକ୍ଷାଲାଭ କରିଥିଲେ । ଏହାପରେ ବିଲାତରେ ମଧ୍ୟ ପାଠ ପଢ଼ିଥିଲେ ଏବଂ ଆଇ.ସି.ଏସ ପରୀକ୍ଷାରେ କୃତିତ୍ୱ ଅର୍ଜନ କରିଥିଲେ । ଇଂରେଜ ସରକାରଙ୍କ ଅଧୀନରେ ଚାକିରି ନ କରି ସେ ଜାତୀୟ ଆନ୍ଦୋଳନରେ ଯୋଗ ଦେଲେ ଏବଂ ଭାରତୀୟ ରାଜନୀତିରେ

ଉଚ୍ଚକୋଟିର ନେତା ହେଲେ । ସେ କଂଗ୍ରେସର ଅହିଂସା ନୀତିକୁ ପସନ୍ଦ କରି ନ ଥିଲେ । ପ୍ରଥମ ବିଶ୍ୱଯୁଦ୍ଧରେ ବିଶ୍ୱବିଦ୍ୟାଳୟ ରକ୍ଷା-ବାହିନୀରେ ଯୋଗ ଦେଇ ସାମରିକ ଶିକ୍ଷା ପାଇଥିଲେ ।

୧୯୨୮ କଂଗ୍ରେସ ଅଧିବେଶନରେ କଂଗ୍ରେସ ସ୍ୱେଚ୍ଛାସେବକ ବାହିନୀର ସେନାପତି ହୋଇଥିଲେ । ସମସ୍ତ ସନ୍ତ୍ରାସବାଦୀ କର୍ମୀ ସୁଭାଷ ବୋଷଙ୍କର ଅତି ଅନୁରକ୍ତ ଥିଲେ । ଏହାଙ୍କ ସହକର୍ମୀ ହୋଇ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ଦେଶରେ ଜାତୀୟତାର ବହ୍ନି ସୃଷ୍ଟି କରିଥିଲେ । କଂଗ୍ରେସର ଦୁଇଥର ସଭାପତି ହୋଇ ମଧ୍ୟ ମହାତ୍ମାଗାନ୍ଧି ଏବଂ ଅନ୍ୟ କେତେକ ନେତୃବୃନ୍ଦଙ୍କ ସହ ମତଭେଦ ହେତୁ ଇସ୍ତଫା ଦେଇଥିଲେ । ବାମପନ୍ଥୀ ଦଳକୁ ନେଇ ସେ 'ଫରୱାର୍ଡ ବ୍ଲକ' ଗଠନ କରିଥିଲେ । ସଶସ୍ତ୍ର ସଂଗ୍ରାମରେ ଆସ୍ଥାବାନ ହୋଇ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ୧୯୪୧ ରେ କଲିକତାର ନିଜ ଗୃହରେ ନଜରବନ୍ଦୀ ଥିବା ସମୟରେ ନମ ଅଦ୍ଭୁତ ଉପାୟରେ କାବୁଲକୁ ପଳାଇଗଲେ । ସେଠାରୁ ସେ ଜର୍ମାନୀ ଯାଇ ହିଟଲରଙ୍କ ସାହାଯ୍ୟରେ ବୁଡ଼ା ଜାହାଜରେ ଜାପାନ ଗଲେ । ପୁଣି ଜାପାନରୁ ଇଣ୍ଡୋଚୀନ ଆସି ସେଠାରେ ଥିବା ବନ୍ଦୀ ଭାରତୀୟ ମାନଙ୍କୁ ନେଇ ଆଜାଦ୍‌ହିନ୍ଦ୍-ବାହିନୀ ଗଠନ କରିଥିଲେ । ସେମାନଙ୍କ ସାହାଯ୍ୟରେ ସେ ମଣିପୁର ଓ କୋହିମା ଆକ୍ରମଣ କରିଥିଲେ ।

୧୯୪୫ରେ ଦ୍ୱିତୀୟ ବିଶ୍ୱ ଯୁଦ୍ଧର ଅବସାନ ହେବା ପରେ ଜାତୀୟ ବାହିନୀ ବନ୍ଦୀ ହେଲେ ଏବଂ ସୁଭାଷ ବୋଷ ଏକ ଉଡ଼ାଜାହାଜରେ ଯାଉଥିବା ସମୟରେ ଦୁର୍ଘଟଣାରେ ମୃତ୍ୟୁ ଲଭିଲେ ବୋଲି କୁହାଯାଏ । ମାତ୍ର ତାହା ଏ ପର୍ଯ୍ୟନ୍ତ ସଂପୂର୍ଣ୍ଣ ସମର୍ଥିତ ହୋଇ ନାହିଁ । ଭାରତୀୟ ଜାତୀୟ-ବାହିନୀର ସେନାପତି ଭାବରେ କାର୍ଯ୍ୟ କରିଥିବାରୁ ତାଙ୍କୁ ନେତାଜୀ ବୋଲି ଆଖ୍ୟା ଦିଆଯାଇଛି । ଏହି ସାହସୀ ନେତା ଇଂରେଜ ଶାସକଙ୍କୁ ଯେପରି ଥରହର କରି ଦେଇଥିଲେ ସେଥିପାଇଁ ସେ ଭାରତବାସୀଙ୍କ ମଧ୍ୟରେ ଜନପ୍ରିୟ । ଦେଶବାସୀ ତାଙ୍କର ଦେଶ ଭକ୍ତି ପାଇଁ ସଦା ସର୍ବଦା ଗର୍ବିତ । ତାଙ୍କର 'ଜୟହିନ୍ଦ୍' ଧ୍ୱନି ଆଜି ସ୍ୱାଧୀନ ଭାରତର ସମସ୍ତଙ୍କ ମୁଖରେ ଜନପ୍ରିୟ । କଟକରେ ଜନ୍ମଲାଭ କରିଥିବା ଏହି ସନ୍ତାନଙ୍କର ଅଶ୍ୱ ପୃଷ୍ଠରେ ବସିଥିବା ଏକ ବିଶାଳ ମୂର୍ତ୍ତି ରେଭେନ୍‌ସା କଲେଜ ସମ୍ମୁଖରେ ଶୋଭା ପାଉଅଛି ଏବଂ ତାଙ୍କର ଓଡ଼ିଆ ବଜାରସ୍ଥ ଗୃହ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ ।

## ବିପ୍ଳବୀ ବିପିନଚନ୍ଦ୍ର :

ଭାରତବର୍ଷର ସ୍ୱାଧୀନତା ସଂଗ୍ରାମରେ ଲାଲ୍-ବାଲ୍-ପାଲ୍ ନାମରେ ଯେଉଁ ତିନିଜଣ ଜନନାୟକ ସୁ-ପ୍ରସିଦ୍ଧ, ସେମାନଙ୍କ ମଧ୍ୟରୁ ବିପିନ ଚନ୍ଦ୍ର ପାଲ୍ (୧୮୫୮-୧୯୩୨) ଅନ୍ୟତମ । ସିଲହଟଠାରେ ଜନ୍ମଗ୍ରହଣ କରିଥିବା ଏହି ବିପ୍ଳବୀ ବ୍ରାହ୍ମ ଧର୍ମ ଗ୍ରହଣ କରିବାରୁ ପିତା ରାମଚନ୍ଦ୍ର ତାଙ୍କୁ ତ୍ୟାଜ୍ୟପୁତ୍ର କରିଥିଲେ ଏବଂ ପରେ ସେମାନଙ୍କ

ମଧ୍ୟରେ ପୁଣି ସମ୍ପର୍କ ସ୍ଥାପନ ହୋଇଥିଲା । କଲିକତାର ପ୍ରେସିଡେନସି କଲେଜରେ ଆଇ:ଏ: ପଢ଼ୁଥିବା ସମୟରେ ଏଣ୍ଟ୍ରାନ୍ସ ପରୀକ୍ଷାରେ କୃତିତ୍ୱ ଅର୍ଜନ କରି ମାସିକ ଦଶଟଙ୍କା ବୃତ୍ତି ପାଉଥିଲେ । ମାତ୍ର ଅର୍ଥର ଅଭାବ ହେତୁ ପାଠ ପଢ଼ା ତାଙ୍କର ବନ୍ଦ ହୋଇଥିଲା । ତଥାପି ସେ ସାହିତ୍ୟ, ଦର୍ଶନ, ରାଜନୀତିରେ ସୁ-ପଣ୍ଡିତ ଥିଲେ ।

କଟକରେ ପ୍ୟାରୀମୋହନ ଆଚାର୍ଯ୍ୟ ଏକ ଜିଦ୍‌ରେ ଯେଉଁ ହାଇସ୍କୁଲଟି ଆରମ୍ଭ କରିଥିଲେ, ସେଥିରେ ସର୍ବପ୍ରଥମେ ବିପିନଚନ୍ଦ୍ର ପାଲ ପ୍ରଧାନ ଶିକ୍ଷକ ଭାବରେ ଯୋଗଦାନ କରିଥିଲେ । ସେ ଏଠାରେ ପ୍ରାୟ ଏକ ବର୍ଷ ଯାଏଁ ରହିଥିଲେ ଏବଂ ଏହି ସମୟ ମଧ୍ୟରେ ଦ୍ୱିଜେନ୍ଦ୍ର ନାଥ ଦତ୍ତ ମଧ୍ୟ ଏହି ପଦରେ ଥିଲେ (୧୮୮୨ ରୁ ୧୮୮୪) । ଏହି ଏକାଡେମୀ ୧୮୭୫ରୁ ଆରମ୍ଭ ହୋଇଥିଲା ।

କଟକର ଏହି ପ୍ୟାରୀମୋହନ ଏକାଡେମୀରେ ସେ ଯୋଗଦାନ କରି ସର୍ବ ପ୍ରଥମେ ଅର୍ଥ ରୋଜଗାର କରିଥିଲେ । ସେହି ସମୟରେ ସେ ଏଠାରେ ସୁନାମ ଅର୍ଜନ କରିଥିଲେ । ମାତ୍ର କୌଣସି କାରଣରୁ ସେ ଏଠାରୁ ଫେରି ଯାଇଥିଲେ । ଏହାପରେ ସେ ସ୍ୱଦେଶୀ ଆନ୍ଦୋଳନରେ ଯୋଗ ଦେଇ ନିଜର ଅସାଧାରଣ ବାଗ୍ମୀତାର ପରିଚୟ ଦେଇଥିଲେ । ସେ 'ଲାହୋର ଟ୍ରିବ୍ୟୁନ୍' ଓ 'ବେଙ୍ଗଲ ପବ୍ଲିକ ଓପିନିୟନ୍' ପତ୍ରିକାର ସହକାରୀ ସମ୍ପାଦକ ଭାବରେ କାର୍ଯ୍ୟ କରିଥିଲେ । ସେ 'ନିଉ ଇଣ୍ଡିଆ' ଓ 'ବନ୍ଦେ ମାତରମ୍' ପତ୍ରିକାରେ ଉଗ୍ର ଜାତୀୟତାବାଦ ଓ ବିଦେଶୀ ବର୍ଜନ ସମ୍ପର୍କରେ ପ୍ରଚାର କରିଥିଲେ ଏବଂ ଏହାର ସମ୍ପାଦନା କାର୍ଯ୍ୟ ମଧ୍ୟ କରିଥିଲେ । ୧୯୦୮ରେ ଲଣ୍ଡନରୁ 'ସ୍ୱରାଜ' ନାମକ ଇଂରାଜୀ ପତ୍ରିକା ପ୍ରକାଶ କରିଥିଲେ । ଇଂଲଣ୍ଡରେ ଭାରତୀୟ ଆସ୍ତିକ-ବାଦ ପ୍ରଚାର କରିଥିଲେ ଏବଂ ଆମେରିକା ମଧ୍ୟ ଯାଇଥିଲେ । ଅରବିନ୍ଦଙ୍କ ବିରୋଧରେ ସାକ୍ଷୀ ନ ଦେଇ ୬ ମାସ କାରାବରଣ କରିଥିଲେ ।

ସେ ଘଟଣାଟି ହେଉଛି—୧୯୦୭ ଜୁନ ୨୬ ତାରିଖରେ 'ବନ୍ଦେ ମାତରମ'ରେ ପ୍ରକାଶିତ 'ଏ ପଲିଟିକ୍‌ସ ଫର୍ ଇଣ୍ଡିଆନ' ଏବଂ ଜୁଲାଇ ୨୦ ତାରିଖରେ 'ଯୁଗାନ୍ତର'ରେ ଲିଖିତ ପ୍ରବନ୍ଧଟିର ଇଂରାଜୀ ଅନୁବାଦ ପ୍ରକାଶିତ ହେତୁ ରାଜଦ୍ରୋହ ମକଦ୍ଦମା ହୋଇଥିଲା । ଏଥିପାଇଁ ଅରବିନ୍ଦ ଘୋଷଙ୍କୁ ୧୯୦୭ ଅଗଷ୍ଟ ୧୬ ତାରିଖରେ ଗିରଫ କରାଗଲା । ସେ ଜାମିନରେ ମୁକ୍ତ ହେଲେ ଏବଂ କିଂସ୍‌ଫୋର୍ଡଙ୍କଠାରେ ଏହାର ବିଚାର ହେଲା । 'ବନ୍ଦେ ମାତରମ' ମାମଲା ପାଇଁ ଅଗଷ୍ଟ ୨୬ ତାରିଖରେ ବିପିନଚନ୍ଦ୍ର କିଂସଫୋର୍ଡଙ୍କଠାରେ ସାକ୍ଷୀ ନ ଦେବା ପାଇଁ ଘୋଷଣା କରିଥିଲେ । ଏଥିପାଇଁ ୧୯୦୭ ସେପ୍‌ଟେମ୍ବର ୬ ତାରିଖରେ ହାକିମ ରାମାନୁଗ୍ରହ ନାରାୟଣ ସିଂହ ବିପିନ ଚନ୍ଦ୍ରଙ୍କୁ ଛ'ମାସ ଅଶ୍ରମ କାରାଦଣ୍ଡରେ ଦଣ୍ଡିତ କରିଥିଲେ । ଅରବିନ୍ଦ 'ବନ୍ଦେମାତରମ'ର ସମ୍ପାଦକ ବୋଲି ପ୍ରମାଣିତ ହୋଇପାରିନଥିଲେ । ଏଣୁ କିଂସଫୋର୍ଡ ତାଙ୍କୁ ଖଲାସ କରିବାକୁ ବାଧ୍ୟ ହେଲେ । ଏହାପରେ ଲର୍ଡ ମିଣ୍ଟୋଙ୍କ ସମୟରେ ମଧ୍ୟ ସେ ଥରେ ନିର୍ବାସିତ ହୋଇଥିଲେ ।

## ଶହୀଦ ଖୁଦିରାମ :

ଭାରତବର୍ଷରେ ଯେଉଁ ସନ୍ତ୍ରାସବାଦ ବିଂଶ ଶତାବ୍ଦୀର ୧ମ ଦଶକରେ ଅତି ତୀବ୍ର ଭାବରେ ବଙ୍ଗ ପ୍ରଦେଶରୁ ଆରମ୍ଭ ହୋଇଥିଲା, ସେତେବେଳେ କେତେକ ଯୁବକ ନିଜ ଦେଶମାତୃକାର ସେବାପାଇଁ ପ୍ରାଣ ଦେଇଥିଲେ । ସେହି ଶହୀଦମାନଙ୍କ ମଧ୍ୟରୁ ଖୁଦିରାମ ବୋଷ ଅନ୍ୟତମ । ଏହି ଯୁବକଙ୍କୁ ଭାରତର ପ୍ରକୃତ ସ୍ୱାଧୀନତା ସଂଗ୍ରାମର ସର୍ବପ୍ରଥମ ଶହୀଦ ବୋଲିଯାଇପାରେ । ଏହି ବୀର ବାଳକ (୧୮୮୯-୧୯୦୮) ମେଦିନୀପୁର ଜିଲ୍ଲାରେ ଜନ୍ମ ଗ୍ରହଣ କରି କଲିକତାର ବିପ୍ଳବବାହିନୀ 'ଯୁଗାନ୍ତର' ଦଳ ସହିତ ସଂଶ୍ଳିଷ୍ଟ ହୋଇଥିଲେ । ୧୯୦୫ରେ ଲର୍ଡ଼ କର୍ଜନଙ୍କ ଦ୍ୱାରା ବଙ୍ଗ ଭଙ୍ଗ ଉଦ୍ଦେଶ୍ୟକୁ ପୂରଣ ନ କରିବା ପାଇଁ ସେହି ବର୍ଷ ଅଗଷ୍ଟ ୭ ତାରିଖରେ କଲିକତାର ଟାଉନ ହଲରେ ଏକ ବିରାଟ ପ୍ରତିବାଦ ସଭା ହୋଇଥିଲା ।

ଏହି ବଙ୍ଗ ଭଙ୍ଗ ଆନ୍ଦୋଳନ ଇଂରେଜ ସରକାରଙ୍କ ବିରୋଧରେ ଅତି ତୀବ୍ରତର ହୋଇଥିଲା । ଏହି ଆନ୍ଦୋଳନକୁ ଦବାଇ ରଖିବାପାଇଁ ଆନ୍ଦୋଳନକାରୀଙ୍କୁ ଅମାନୁଷିକ ଦଣ୍ଡ ଭୋଗ କରିବାକୁ ହେଉଥିବାରୁ ଗୁପ୍ତ ସନ୍ତ୍ରାସବାଦୀମାନେ ଏହି ଇଂରେଜ ଉଚ୍ଚ କର୍ମଚାରୀମାନଙ୍କୁ ମଧ୍ୟ ଦଣ୍ଡ ପ୍ରଦାନ କରିବା ପାଇଁ ଶପଥ ନେଉଥିଲେ । ଏହିପରି ଏକ ଦାୟିତ୍ୱ ଖୁଦିରାମ ଏବଂ ତାଙ୍କ ସହକର୍ମୀ ପ୍ରଫୁଲ୍ଲ ଚାକୀଙ୍କୁ ଦିଆଯାଇଥିଲା । କଲିକତାର ପ୍ରେସିଡେନ୍‌ସି ମାଜିଷ୍ଟ୍ରେଟ୍ କିଂସଫୋର୍ଡ଼ ଅତି ନିର୍ଦ୍ଦୟ ଥିବାରୁ ଏହି ଦୁଇ ଜଣଙ୍କୁ ତାହା କାର୍ଯ୍ୟକାରୀ କରିବାପାଇଁ ନିର୍ଦ୍ଦେଶ ପାଇଥିଲେ । ମାତ୍ର କିଂସଫୋର୍ଡ଼ଙ୍କୁ ଆକ୍ରମଣ ହେବାର ସନ୍ଦେହ କରି ତାଙ୍କୁ ସରକାର ସୁଦୂର ବିହାରର ମୁଜାଫରପୁରକୁ ଜିଲ୍ଲା ଜଜ ଭାବରେ ସ୍ଥାନାନ୍ତରିତ କରିଥିଲେ । ସେଠାକୁ ତାଙ୍କୁ ପଠାଯିବା ପୂର୍ବରୁ କଲିକତାରେ ତାଙ୍କୁ ହତ୍ୟା କରାଯିବା ପାଇଁ ଚେଷ୍ଟା କରାଯାଇଥିଲା । ବୋମା ବିଶେଷଜ୍ଞ ହେମଚନ୍ଦ୍ର ଦାସ କାନୁନ୍‌ଗୋ ଏକ ପୁସ୍ତକ ମଧ୍ୟରୁ କାଗଜ ପୃଷ୍ଠାଗୁଡ଼ିକୁ କାଟି ଏକ ବୋମା ଖଞ୍ଜି ଥିଲେ । ସେହି ପୁସ୍ତକଟି କିଂସଫୋର୍ଡ଼ଙ୍କ ଘରର ଟେବୁଲ ଉପରେ ଥୋଇଥିଲେ ମଧ୍ୟ ତାକୁ ସେ ଧରି ଅନ୍ୟ ସ୍ଥାନରେ ରଖି ଦେଇଥିଲେ, ମାତ୍ର ଖୋଲି ନଥିବାରୁ ବଞ୍ଚି ଯାଇଥିଲେ ।

ଏଣୁ ଖୁଦିରାମ ଏବଂ ପ୍ରଫୁଲ୍ଲ ଚାକୀଙ୍କୁ ମୁଜାଫରପୁର ଯିବାକୁ ହୋଇଥିଲା । ସେଠାରେ ସେମାନେ ନିଜର କାର୍ଯ୍ୟ କରିବାକୁ ସ୍ଥିର କରିଥିଲେ ଏବଂ ୧୯୦୮ ଏପ୍ରିଲ ମାସ ୩୦ ତାରିଖ ରାତି ପ୍ରାୟ ସାଢ଼େ ଆଠଟାରେ ବୋମା ଫିଙ୍ଗା କାର୍ଯ୍ୟ କରିଥିଲେ । ମାତ୍ର ଏହି ଘଟଣାରେ କିଂସଫୋର୍ଡ଼ ମରି ନଥିଲେ । ଠିକ୍ ସେ ଯିବା ପୂର୍ବରୁ ସେହି ରାସ୍ତାରେ ଏକାପରି ଏକ ଘୋଡ଼ାଗାଡ଼ିରେ ବାରିଷ୍ଟର କେନେଡ଼ିଙ୍କ ସ୍ତ୍ରୀ ଓ କନ୍ୟା ଯାଉଥିବାରୁ ସେମାନଙ୍କର ମୃତ୍ୟୁ ଘଟିଲା । ଏହି ବୋମା ପକାଇ ସେମାନେ ଦୁଇ ଦିଗରେ ପଳାଇ ଯାଇଥିଲେ । ମାତ୍ର ଦୁହିଁ ତା ପରଦିନ ପୋଲିସ ଦ୍ୱାରା ଧରା

ପଡ଼ିଲେ । ପ୍ରଫୁଲ୍ଲ ଚାକୀ ନିଜ ପାଖରେ ରଖିଥିବା ପିସ୍ତଲ ଫୁଟାଇ ଆତ୍ମହତ୍ୟା କରିଥିଲେ । ଏହି ଘଟଣାର ପ୍ରାୟ ଏକ ମାସ ପରେ ବିଚାରରେ କ୍ଷୁଦିରାମଙ୍କୁ ମୃତ୍ୟୁଦଣ୍ଡ ଆଦେଶ ହେଲା । ଏହି ଆଦେଶ ଫଳରେ ୧୯୦୮ ଅଗଷ୍ଟ ୧୧ ତାରିଖରେ ସେହି ମୋଜାଫରପୁର ଠାରେ ତାଙ୍କୁ ଫାଶିଦଣ୍ଡ ମିଳିଥିଲା । ଏହା ଫଳରେ ଏକ ୧୮ ବର୍ଷର ଯୁବକର ସ୍ୱାଧୀନତା ସଂଗ୍ରାମ ନିମନ୍ତେ ଜୀବନ ଉତ୍ସର୍ଗର ନିଷ୍ଠା ସମସ୍ତଙ୍କ ପ୍ରାଣରେ ଉଦ୍ଦୀପନା ସୃଷ୍ଟି କରିଥିଲା । ସେହି ଉଦ୍ଦୀପନାର ବାତାବରଣ କଟକ ସହରରେ ମଧ୍ୟ ଦେଖା ଦେଇଥିଲା ।

କଟକରେ ଏପରି ଆନ୍ଦୋଳନ ହେବାର ଏକ ମୁଖ୍ୟ କାରଣ ଥିଲା । କ୍ଷୁଦିରାମଙ୍କୁ ଫାଶି ଦଣ୍ଡ ହେବାର ପ୍ରାୟ ଏକ ବର୍ଷ ପୂର୍ବରୁ ସେ କଟକ ଆସିଥିଲେ । କଟକର ଯୁବକମାନଙ୍କୁ ଦେଶ ଓ ଜାତି ପ୍ରୀତିରେ ଅନୁପ୍ରାଣିତ ହେବାପାଇଁ ତାଙ୍କ ସହ ମେଦିନୀପୁରରୁ କେତେକ ଯୁବକ ଆସି ରେଭେନ୍‌ସା କଲେଜର ଯୁବକମାନଙ୍କ ସହ ସଦ୍‌ଭାବ ସ୍ଥାପନ କରି ପାରିଥିଲେ । କଲିକତାର 'ଯୁଗାନ୍ତ'ର ଓ 'ଅନୁଶୀଳନ' ପରି ଏକ ଆଖଡ଼ାଦଳ ଗଢ଼ି ଏହା ମାଧ୍ୟମରେ କୁସ୍ତି କସରତ ଓ ବାଡ଼ିଖେଳ ଶିଖାଇ ଇଂରେଜ ଶାସକମାନଙ୍କ ଅତ୍ୟାଚାରକୁ ସହ୍ୟ କରି ଏକ ସଶସ୍ତ୍ର ସଂଗ୍ରାମ ଦ୍ୱାରା ଦେଶକୁ ସ୍ୱାଧୀନ କରିବାର ପ୍ରୟାସ ନିମନ୍ତେ ଆହ୍ୱାନ ଦେଇଥିଲେ ।

କଟକରେ ରେଭେନ୍‌ସା କଲେଜ ସେତେବେଳେ ବର୍ତ୍ତମାନର କଲେଜିଏଟ ସଂଲଗ୍ନ ଥିଲା । ଏଣୁ ବୃନ୍ଦାବନ୍ତକ ଅଞ୍ଚଳ ହିଁ ଏକ ପ୍ରକାର ମୁଖ୍ୟ ଅଞ୍ଚଳ ଥିଲା । ଏହି ଯୁବକମାନଙ୍କ ପ୍ରେରଣାରେ କଟକର ଭାଷାକୋଷ ଲେନ୍‌ରେ ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ବ୍ରଜ ସୁନ୍ଦର ଦାସ, ପ୍ରଚାରକ ଅନନ୍ତ ମିଶ୍ର ପ୍ରମୁଖ ଏକ ସଙ୍ଗଠନ କରିଥିଲେ । ବାଡ଼ି ଓ ଛୁରି ଖେଳ ଶିଖାଇବା କାର୍ଯ୍ୟରେ କିଛି ଦିନ ପଣ୍ଡିତ ଗୋପବନ୍ଧୁ ଏମାନଙ୍କ ଠାରୁ ଶିକ୍ଷା କରି ଏହି ଗଳିରେ ଅନ୍ୟ ଯୁବକବନ୍ଧୁଙ୍କୁ ଶିଖାଉ-ଥିଲେ । ମାତ୍ର ମହାତ୍ମାଗାନ୍ଧିଙ୍କ ଆହ୍ୱାନରେ ସେ ନିଜର ଏହି ସନ୍ତ୍ରାସବାଦୀ ମନୋଭାବକୁ ପରେ ବଦଳାଇଥିଲେ । କ୍ଷୁଦିରାମଙ୍କର ଦେଶପ୍ରୀତି କିପରି ଥିଲା ତାହା ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଅଙ୍ଗେ ନିଭାଇଥିବା ଘଟଣାରୁ ଜଣାପଡ଼େ ।

ସେ ବର୍ଣ୍ଣନା କରିଛନ୍ତି—'୧୯୦୭ ମସିହା କଟକ ପକ୍ଷେ ନାଡ଼ି ସ୍ପନ୍ଦନର ପ୍ରଶସ୍ତ ସମୟ ହୋଇ ଉଠିଲା । ରେଭେନ୍‌ସା କଲେଜ ଛାତ୍ର ନୂତନ ଜାଗରଣରେ ଜୁହୁଳୁ ଥିଲେ । ମେଦିନୀପୁରର ଦଳେ ଯୁବକ ସେମାନଙ୍କ ମଧ୍ୟରେ ଆସି ପହଞ୍ଚିଲେ । × × × ସେ ଯୁବକମାନଙ୍କ ମଧ୍ୟରେ କ୍ଷୁଦିରାମ ଜଣେ ଅଳ୍ପ ବୟସର ଯୁବକ । ତା କଥା କହିବା ଢଙ୍ଗ, ମୁହଁ ଭଙ୍ଗୀ ହସର ପ୍ରକାର, ଆଖିର ଚାହାଣି ଓ ହାତର ଚପଳତାରୁ ମନେ ହେଉଥିଲା ଯେ ସେ ସାଧାରଣ ମନୁଷ୍ୟ ସମାଜରୁ ଅଲଗା । କେତେ ଦିନ ପାଇଁ, କଟକ ଛାତ୍ର ମହଲରେ, ସେ ହେଲା ସୂର୍ଯ୍ୟ, ଆମେମାନେ ଗ୍ରହ ଉପଗ୍ରହ ପରି ତା ଚାରିପାଖେ ବିଭିନ୍ନ ଦୂରତାରେ ପରିଭ୍ରମଣ କରିବାକୁ ଲାଗିଲୁ । ମୁଁ ମନେ

କରୁଛି, ମୋ ସ୍ଥାନ ହେଲା କୋଡ଼ିଏ ବର୍ଷ ତଳେ ଆବିଷ୍କୃତ ହୋଇଥିବା ନୂଆ ନକ୍ଷତ୍ର ପ୍ଲୁଟୋର କକ୍ଷ । ଶୁଭ ମଙ୍ଗଳ ବୃହସ୍ପତି ହେବାର ସୁଯୋଗ ଗ୍ରହାବାସରେ ଥିବା ପିଲଙ୍କ ଭାଗ୍ୟରେ ପଡ଼ିଲା ।"

ପୁଣି ପଣ୍ଡିତ ମିଶ୍ର ଲେଖିଛନ୍ତି—"ମେଦିନୀପୁରରୁ ଆଗତ ଯୁବକମାନେ ଅଳ୍ପଦିନ ରହି, କଟକରେ ଦିନେ ତରଙ୍ଗ ଖେଳାଇ ଚାଲିଗଲେ । କେତେକ ମାସପରେ, ବିହାର ମୁଜାଫରପୁରରେ କେନେଡ଼ି ସାହେବଙ୍କୁ ହତ୍ୟା କରିଥିବା ଅଭିଯୋଗରେ ଖୁଦିରାମ ବୋଷ ନାମକ ଜଣେ ଯୁବକ ଧରା ହେଲେ । ସୁଦୂର କଟକରେ ହୁଲୁସ୍ଥୁଲ ପଡ଼ିଗଲା । କେହି କେହି କହିଲେ ଯେ, ସେମାନେ ତାହା ଅନୁମାନ କରିଥିଲେ × × × ସେ କିଂସଫୋର୍ଡ ସାହେବଙ୍କୁ ଖୋଜୁଥିଲେ × × × ବିଚାରରେ ଖୁଦିରାମଙ୍କୁ ଫାଶୀ ହେଲା ସତ; କିନ୍ତୁ ଚାଳିଶ ବର୍ଷ ପରେ ଭାରତରୁ ଇଂରେଜ ଅଧିକାର ଲୋପ ପାଇବାର ମୂଳଦୁଆ ସେହିଥିରେ ପଡ଼ିଥିଲା । × × × କେତେକାଳ ପରେ କିଂସଫୋର୍ଡ ଘଟଣାଚକ୍ରରେ, କଟକକୁ ବଦଳି ହୋଇ ଆସିଲେ । 'ମାଡ଼ିଙ୍କୁ ମହାଦେବ ଡରନ୍ତି' ॥ କଟକରେ ହୁଏତ ଖୁଦିରାମଙ୍କ ଅମରଆତ୍ମା ଆସି ରହିଲା । କିଂସଫୋର୍ଡ କଠିନ ଶାସ୍ତି ଦେବା ଅଭ୍ୟାସ ଛାଡ଼ିଦେଲେ ।"

ଖୁଦିରାମଙ୍କୁ ଯେଉଁଦିନ ଫାଶି ହେବାର କଥା, ସେଦିନ ଜଣେ ସରକାରୀ କର୍ମଚାରୀ ସେଠାରେ ଠିଆ ହେବା ନିୟମ । ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସାନ ଭାଇ ଗୋପାଳ ବଲ୍ଲଭ ଦାସ (୧୮୬୦-୧୯୧୪) ସେତେବେଳେ ସେଠାରେ ସରକାରୀ ଚାକିରି କରୁଥାନ୍ତି । ସେଦିନ ସେ ଉପସ୍ଥିତ ହେବାର କଥା । ମାତ୍ର ଫାଶିଦିନ ନିକଟତର ହେବାରୁ ତାଙ୍କର ଦୁଇ କନ୍ୟା ସାରଳାଦେବୀ ଏବଂ ରମା ଦେବୀ ଅନୁରୋଧ କରିବାରୁ ତାଙ୍କ ବାପା ଫାଶିଦିନ ଜେଲକୁ ଯାଇ ନଥିଲେ । ରମାଦେବୀ ଲେଖିଛନ୍ତି— "ଆମେ ମୋଜାଫରପୁରରେ ଥାଉ । ରାତି ଆଠଟାରୁ ନଅଟା ଆମର ଖାଇବାର ବେଳ । ବାପା ଓ ଆମେ ଦୁଇ ଭଉଣୀ ଖାଉ ଥାଉ । ମା' ପାଖରେ ବସିଥାଏ । ଗୋଟିଏ ଭାରି ବଡ଼ ଶବ୍ଦ ଶୁଭିଲା । ଦୁଇ ଭଉଣୀ ଚମକି ପଡ଼ିଲୁ । କିଛି ଜାଣି ପାରିଲୁ ନାହିଁ । ବାପା କହିଲେ, "ଏ ତ ବୋମା ଫୁଟିବାର ଶବ୍ଦ ।" ଏତିକି କହି ସେ ଏପରି ଗମ୍ଭୀର ହୋଇଗଲେ ଯେ ସେ ଦୃଶ୍ୟ ଏବେ ବି ମନେ ପଡ଼ୁଛି । କିଛି ସମୟ ପରେ ଜଣେ ଚପରାସୀ ଆସି ଖଣ୍ଡିଏ ଚିଠି ଦେଲେ । ବାପା ସେ ଚିଠିକୁ ମନେ ମନେ ପଢ଼ି କହିଲେ, 'କିଂସଫୋର୍ଡ ସାହେବ ଚିଠି ଦେଇଛନ୍ତି ।" × × × ଆମ ଘର ପାଖରେ କେତେ ଘର ବଙ୍ଗାଳୀ ଥାଆନ୍ତି । ସେମାନେ ସରକାରୀ ଚାକିରିଆ ନୁହନ୍ତି । × × × । ସେମାନଙ୍କ ଘରର ପିଲାମାନେ ଦେଶ ବନ୍ଦନା ବୋଲନ୍ତି । × × × ଦେଶପାଇଁ କାମ କରିବାକୁ ହେଲେ ଜେଲ ଯିବାକୁ ହୁଏ, ଫାଶି ପାଇବାକୁ ହୁଏ, ସ୍ୱଦେଶୀ ଜିନିଷ ବ୍ୟବହାର କରିବାକୁ ହୁଏ—ଏ ଧାରଣା ମନରେ ବଦ୍ଧମୂଳ ହେଲା ।

ସେତେବେଳେ ଖୁଦିରାମ ଜେଲରେ ଥାଆନ୍ତି । ତାଙ୍କୁ ଫାଶି ହୁକୁମ ହେଲା । ଖୁଦିରାମଙ୍କୁ ମୁଁ ଜେଲରେ ଦେଖି ନାହିଁ । ଖୁଦିରାମଙ୍କ ମା' ଆସିଲେ ପୁଅକୁ ଦେଖିବା ପାଇଁ । ସମସ୍ତଙ୍କ ମୁହଁରେ ସେହି କଥା । ଖୁଦିରାମଙ୍କ ପ୍ରତି କମିତି ଗୋଟିଏ ମାୟା ଜନ୍ମି ଯାଇଥାଏ । ସେ ଫାଶି ପାଇବେ ଶୁଣି ମନେ ମନେ ଭାରି ଦୁଃଖୀ ହେଲି । ବାପାଙ୍କୁ ଅତି ଜିଦ୍ କରି କହିଲି, "ଆମେ ଖୁଦିରାମଙ୍କୁ ଦେଖିବେ ।" ବାପା ବାରଣ କରି କହିଲେ, "ନା...ନା, ତମକୁ ଦେଖିବା ପାଇଁ ଛାଡ଼ିବେ ନାହିଁ ।" କେହି ଲୋକ ଫାଶି ପାଇଲେ ବାପା ଫାଶି ସ୍ଥାନରେ ଉପସ୍ଥିତ ରହିବା ପାଇଁ ଯାଆନ୍ତି । × × × ଭୋର ଉନ୍ଟାରୁ ପୋଷାକ ପିନ୍ଧି ଜେଲଖାନାକୁ ବାହାରନ୍ତି । × × × ଯଥା ସମୟରେ ଖୁଦିରାମଙ୍କର ଫାଶି ହେଲା । ସକାଳ ହେବା ବେଳକୁ ଖବର ଚାରିଆଡ଼େ ବ୍ୟାପି ଯାଇଥିଲା । × × × ।"

## ବିପ୍ଳବୀ ଶଶିଭୂଷଣ :

ଖୁଦିରାମଙ୍କ ଏହି ସନ୍ତ୍ରାସବାଦୀ ଦଳ ସହ ଅନ୍ୟ ଜଣେ ବିପ୍ଳବୀ ଜଡ଼ିତ ଥିଲେ, ସେ ହେଉଛନ୍ତି ଶଶିଭୂଷଣ ଚୌଧୁରୀ । ସେ କଲିକତାର ସନ୍ତ୍ରାସବାଦୀ ଦଳର ମୁଖିଆ ବ୍ୟକ୍ତି ଏବଂ ଏହି ଦଳ ସହିତ ଜଡ଼ିତ ନରହି ପରୋକ୍ଷ ଭାବରେ ଅର୍ଥ ସାହାଯ୍ୟ କରୁଥିବା ସରକାରୀ ଉଚ୍ଚ କର୍ମଚାରୀଙ୍କ ସହ ଗୁପ୍ତ ସମ୍ପର୍କ ରକ୍ଷା କରୁଥିଲେ । ଏଣୁ ସେ ଗୋପନ ସନ୍ତ୍ରାସବାଦୀ କାର୍ଯ୍ୟ କଳାପକୁ ପରିଚାଳନା କରୁଥିଲେ । ତଥାପି ସେ ସାତଥର ଧରାପଡ଼ି ମୋଟରେ ଏଗାର ବର୍ଷ କାଳ ଜେଲରେ କଠୋର ଜୀବନ କଟାଇଥିଲେ ।

କଂଗ୍ରେସ ପରେ ଜେଲ ନୀତିର ସମାଲୋଚନା କରିବାରୁ ଏଥିରେ ପରିବର୍ତ୍ତନ ଆସିଥିଲା । ଏହି ଶଶିଭୂଷଣ ଅନେକ ସମୟରେ କଟକରେ ଆସି ରହୁଥିଲେ । ପ୍ରଥମେ ପୁରୀରେ କଚ୍ଛୁଦିନ ମଧ୍ୟ ରହି ଯୁବକମାନଙ୍କ ସହିତ ମିଶାମିଶି କରି ଦେଶର ଜାତୀୟତା ପ୍ରତି ସମସ୍ତଙ୍କୁ ବୁଝାଉଥିଲେ । କଟକରେ ଏଥିପାଇଁ 'ୟଙ୍ଗ ଉତ୍କଳ ଆସୋସିଏସନ୍'ଟିଏ ୧୯୦୭ ବେଳକୁ ଗଢ଼ି ଉଠିଲା । ଓଡ଼ିଆରେ ଏହାକୁ କୁହାଯାଉଥିଲା 'ତରୁଣ ଉତ୍କଳ ସଙ୍ଘ' ।

ରେଭେନ୍‌ସା କଲେଜର ଛାତ୍ରମାନଙ୍କର ତାହା ଥିଲା ଏକ ନୂତନ ଅନୁଷ୍ଠାନ । ଏହାର ସମ୍ପାଦକ ଥିଲେ ପଣ୍ଡିତ ଗୋଦାବରୀଶ ମିଶ୍ର । ପଣ୍ଡିତ ଗୋପବନ୍ଧୁ ଦାସ, ବ୍ରଜସୁନ୍ଦର ଦାସ ଏବଂ ବାଗ୍ମୀ ବିଶ୍ୱନାଥ କର ପ୍ରମୁଖ ଏହା ସହିତ ଜଡ଼ିତ ହେଲେ । ସେତେବେଳେ ବିଶ୍ୱନାଥ କରଙ୍କୁ ଅନେକେ ଚରମପନ୍ଥୀ ବୋଲି ସନ୍ଦେହ କରୁଥାନ୍ତି । ଗୁପ୍ତ ବୈଠକମାନ ବ୍ରଜ ସୁନ୍ଦର ଦାସଙ୍କ ବାସଗୃହରେ ବସୁଥିଲା । ଏହା ବ୍ୟତୀତ ଗୋପବନ୍ଧୁଙ୍କ ଉଦ୍ୟମରେ ଆଉ ଏକ ସଙ୍ଘ ମଧ୍ୟ ରହିଥିଲା । ସେଥିରେ ଅଳ୍ପ ସଂଖ୍ୟକ ସଦସ୍ୟ ଥିଲେ ମଧ୍ୟ ଶଶିଭୂଷଣ ରାୟ ଚୌଧୁରୀ ସେଥିରେ ଆସି ଯୋଗ ଦେଉଥିଲେ ।

ଏହାର ବୈଠକ କେବଳ ରାତିରେ ବସେ । ଛାତ୍ରାବାସର ଛାତ୍ରମାନେ ଶୋଇବାକୁ ଯିବା ପରେ ସେମାନଙ୍କ ମଧ୍ୟରୁ ଅଳ୍ପ କେତେଜଣ ନିର୍ଜନ କଲ୍ ପଡ଼ିଆ ମହାନଦୀ କୂଳ ବା କାଠଯୋଡ଼ି ବାଲିରେ ଆସି ବସୁଥିଲେ । ପଣ୍ଡିତ ନୀଳକଣ୍ଠ ଏହିସବୁ ମଧ୍ୟରାତ୍ରି ବୈଠକରେ ଯୋଗ ଦେଉଥିଲେ ।

୧୯୦୭ ରେ ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣରେଖା ଆଦି ନଦୀରେ ଭୀଷଣ ବନ୍ୟା ହୋଇଥିଲା । ଏ ସମସ୍ତ ଅଞ୍ଚଳକୁ ସ୍ୱେଚ୍ଛାସେବକ ଭାବରେ ଛାତ୍ରମାନେ ଯାଇ ବନ୍ୟା ପ୍ରପୀଡ଼ିତଙ୍କୁ ସାହାଯ୍ୟ କରୁଥିଲେ । ଗୋପବନ୍ଧୁ ଏବଂ ଅନ୍ୟ କେତେକ ଛାତ୍ର ଏହି ଶଶିଭୂଷଣଙ୍କ ନେତୃତ୍ୱରେ ଧାମରା ଅଞ୍ଚଳକୁ ଯାଉଥିଲେ । ଶଶିଭୂଷଣଙ୍କର ଏହି ନବ ଶିକ୍ଷିତ ଯୁବକମାନଙ୍କ ଉପରେ ଅନ୍ତ ଭରସା ଥିଲା । ଭବିଷ୍ୟତରେ ଉଚ୍ଚ ଆଦର୍ଶରେ ସେମାନେ କପରି ଗଢ଼ି ଉଠିବେ ଏବଂ ଦେଶ ସ୍ୱାଧୀନତା ନିମନ୍ତେ କାର୍ଯ୍ୟ କରିବେ ତାହାହିଁ ଥିଲା ତାଙ୍କ ଜୀବନର ମୂଳମନ୍ତ୍ର । ରାଜଦ୍ରୋହମୂଳକ କବିତା ଓଡ଼ିଆ ଏବଂ ବଙ୍ଗଳାରେ ଆବୃତ୍ତି କରିପିବାର ସେ ଅଭ୍ୟାସ କରାଉଥିଲେ । ଗୋପବନ୍ଧୁ ଏବଂ ଅନ୍ୟ କେତେକ ଛାତ୍ର ଗେରୁଆ ବସ୍ତ୍ର ପିନ୍ଧି ଗ୍ରାମମାନଙ୍କରେ ବାଡ଼ି ଓ ଛୁରି ଖେଳ ଶିଖାଉଥିଲେ । କଲିକତାର ଯୁଗାନ୍ତର ଓ ଅନୁଶୀଳନ ଦଳ ଯେଉଁ ସମୟରେ ଗଢ଼ି ଉଠିଥିଲା, ଠିକ୍ ସେହି ସମୟରେ କଟକରେ ମଧ୍ୟ ଏକ ସନ୍ତ୍ରାସବାଦୀ ଦଳର ସୂଚନା ମିଳିଥିଲା ।

କଟକରେ ସ୍ୱାଧୀନତା ସଂଗ୍ରାମ ନିମନ୍ତେ ବୈପ୍ଳବିକ କାର୍ଯ୍ୟ ବେଶୀଦିନ ତିଷ୍ଠି ପାରିନାହିଁ ସତ୍ୟ, ମାତ୍ର ଏହା ପରବର୍ତ୍ତୀ ସମୟରେ ମହାତ୍ମାଗାନ୍ଧି ଏବଂ ସୁଭାଷ ଚନ୍ଦ୍ର ବୋଷଙ୍କ ନେତୃତ୍ୱରେ ଯେଉଁ ଜାତୀୟ ଉନ୍ମାଦନା ଖେଳାଇଥିଲା ତାହା ଏହି କଟକ ତଥା ଓଡ଼ିଶା ମାଟିକୁ ନେତୃତ୍ୱ ଦେଇଥିଲା । ଏହି କଟକ ସହରରେ ଢେଙ୍କାନାଳ ପ୍ରଜା ଆନ୍ଦୋଳନର ଶହୀଦ ବାଜି ରାଉତକୁ ୧୯୩୮ ଅକ୍ଟୋବର ୧୨ ତାରିଖରେ ଅନ୍ୟ ଛଅଜଣଙ୍କ ସହିତ ଖାନ୍‌ନଗର ଶ୍ମଶାନରେ ଦାହ କରାଯାଇଥିଲା । କଟକର ଏକ ହଜାର ବର୍ଷର ସ୍ମୃତି ସ୍ମରଣ ସମୟରେ ଏହି ବିପ୍ଳବୀ ଏବଂ ଶହୀଦମାନେ ମଧ୍ୟ ସ୍ମରଣୀୟ ।



# ମହାନଦୀ ଓ କାଠଯୋଡ଼ି ନଦୀ : ଏକ ଦୃଷ୍ଟିପାତ

ଶ୍ରୀ ଭାସ୍କରଚନ୍ଦ୍ର ଖଣ୍ଟାଇ

କଟକ ସହର ଏକ ସାଧାରଣ ସହର ନୁହେଁ । ଓଡ଼ିଶାର ଏହା ହେଉଛି ଏକ ବୃହତ୍ତମ ସହର । ଓଡ଼ିଶାର ସାଂସ୍କୃତିକ, ରାଜନୈତିକ ଏବଂ ଅର୍ଥନୈତିକ ବିକାଶର ଏହା ହେଉଛି ଏକ ପ୍ରଧାନ ପ୍ରାଣକେନ୍ଦ୍ର । ଏହାର ଅତୀତ ସଂସ୍କୃତି, ଐକ୍ୟ ଏବଂ ସ୍ୱାତନ୍ତ୍ର୍ୟ ରହିଛି । ଦିନେ ଏହା ଅତୀତ ଉତ୍କଳର ବାଣିଜ୍ୟ କେନ୍ଦ୍ର ରୂପେ ପ୍ରସିଦ୍ଧି ଲାଭ କରିଥିଲା । କେବଳ ସେତିକି ନୁହେଁ ଏହା ୧୧୩୫ ଖ୍ରୀଷ୍ଟାବ୍ଦରୁ ୧୫୬୮ ଖ୍ରୀଷ୍ଟାବ୍ଦ ଓ ୧୭୫୧ ଠାରୁ ୧୯୪୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାର ରାଜଧାନୀ ହୋଇ ରହିଥିଲା । ଏଣୁ ଐତିହାସିକ କଟକ ନଗରୀର ଇତିହାସକୁ ଓଡ଼ିଶାର ଇତିହାସ ବୋଲି ଧରାଯାଇଥାଏ ।

ଏହାର କାଳ ନିର୍ଣ୍ଣୟ ସମ୍ପର୍କରେ ବିଭିନ୍ନ ସମାଲୋଚକ ଏବଂ ଐତିହାସିକଙ୍କ ମତଭେଦ ସତ୍ତ୍ୱେ ମହାସମାରୋହରେ ଏହି କଟକ ନଗରୀର ହଜାର ବର୍ଷର ଜନ୍ମତିଥି ପାଳନ କରାଯାଇଛି । ବେତାର କେନ୍ଦ୍ର ଏବଂ ଦୂରଦର୍ଶନ ମାଧ୍ୟମରେ ଏହାର ଯଥେଷ୍ଟ ପ୍ରଚାର ମଧ୍ୟ ହୋଇଛି । ଏ ସମ୍ବନ୍ଧରେ ଅନେକ ଲେଖାଲେଖି ହୋଇଛି ଏବଂ ହେଉଛି ମଧ୍ୟ । ହେଲେ ଏହାର ସ୍ଥିତି କେଉଁଠାରୁ ଏବଂ ଏହା କେଉଁ ଭୌଗୋଳିକ ପରିସ୍ଥିତି ଦେଇ ଆଜି ଆମ୍ଭମାନଙ୍କ ପାଖରେ ଏକ ସମୃଦ୍ଧ ସହର ରୂପେ ପ୍ରାୟ ଏକ ହଜାର ବର୍ଷ ଅତିବାହିତ କରି ସାରିଛି, ସେ ବିଷୟରେ ଆଲୋଚନା କରିବା ହେଉଛି ପ୍ରବନ୍ଧର ମୁଖ୍ୟଲକ୍ଷ୍ୟ ।

ପୁରୁଣା ତଥ୍ୟକୁ ଘାଣ୍ଟି ଚକଟି ବିଶ୍ୱର ଐତିହାସିକମାନେ ଏକମତ ହୋଇଛନ୍ତି ଯେ ପ୍ରାକ୍ ଐତିହାସିକ କାଳରେ ବିଭିନ୍ନ ନଦୀ ଉପତ୍ୟକାରେ ଗଢ଼ି ଉଠିଥିଲା ଗୋଟିଏ ଗୋଟିଏ ସମୃଦ୍ଧ ସହର । ଏହି ଐତିହାସିକ ପର୍ଯ୍ୟାଲୋଚନା ଯଦି ବାସ୍ତବରେ ପରିଣତ ହୋଇଥାଏ ତେବେ କଟକ ସହର ସ୍ଥାପନାର ମୂଳଭିତ୍ତି ହେଉଛି

'ମହାନଦୀ' ଓ 'କାଠଯୋଡ଼ି' । କାରଣ ଓଡ଼ିଶାର ବୃହତ୍ତମ ନଦୀ ମହାନଦୀର ତ୍ରିକୋଣ ଭୂମି ଅବବାହିକାରେ ଏହି କଟକ ସହର ଅବସ୍ଥିତ । ଉତ୍ତର ଦିଗରେ ମହାନଦୀଠାରୁ ଦକ୍ଷିଣରେ କାଠଯୋଡ଼ି ପର୍ଯ୍ୟନ୍ତ ଏହା ପରିବ୍ୟାପ୍ତ । ଏଣୁ ଏହି ନଦୀ ଦୁଇଟିର ଐତିହାସିକତା ନିର୍ଣ୍ଣୟ କରିବାକୁ ହେଲେ ଏହାର ପ୍ରାକୃତିକ ପରିବେଷ୍ଟନୀକୁ ବିଚାର କରିବାକୁ ହେବ ।

ମହାନଦୀ ଓଡ଼ିଶାର ବୃହତ୍ତମ ନଦୀ । ମଧ୍ୟପ୍ରଦେଶ ଅନ୍ତର୍ଗତ ରାୟପୁର, ବସ୍ତର ଏବଂ କାଙ୍କର ପାର୍ବତ୍ୟ ଅଞ୍ଚଳର କେତୋଟି କ୍ଷୁଦ୍ର କ୍ଷୁଦ୍ର ନଦୀର ମିଳନରେ ଏହାର ସୃଷ୍ଟି । ଏହି ନଦୀ ସମ୍ବଲପୁର ଜିଲ୍ଲାର ସରେଇପାଲି ଗ୍ରାମ ନିକଟରେ ଓଡ଼ିଶାରେ ପ୍ରବେଶ କରିଅଛି । ସମ୍ବଲପୁର, ସୋନପୁର, ବୌଦ, ଦଶପଲ୍ଲା, ଆଠମଲ୍ଲିକ, ନରସିଂହପୁର, ବଡ଼ାମ୍ବା, ଖଣ୍ଡପଡ଼ା ଓ ଆଠଗଡ଼ ବାଟେଦେଇ ପ୍ରବାହିତ ହୋଇ ଏହା କଟକ ଜିଲ୍ଲା ଦେଇ ଫଲ୍ସପଏଣ୍ଟଠାରେ ବଙ୍ଗୋପସାଗରରେ ପଡ଼ିଅଛି । ପୂର୍ବେ ମହାନଦୀର ନାମ ଚିତ୍ରୋତ୍ପଳା ଥିବାର କଥିତ । ସେଥିପାଇଁ କଥିତ ଅଛି—"କଳୌ ଚିତ୍ରୋତ୍ପଳା ଗଙ୍ଗା ।" ହସଦ୍ଦ୍, ତେଲ, କମାଇ, ରସ, ମେହରଣୀ, ଶାଲ୍କି, ବାଘନଦୀ, ଓ ସାପୁଆ ଆଦି ମହାନଦୀର ଉପନଦୀ । କାଠଯୋଡ଼ି, ବିରୂପା, ଚିତ୍ରୋତ୍ପଳା, ଲୁଣା ଓ ପାଇକା ଆଦି ଏହାର ଶାଖାନଦୀ ।

ଏହି ନଦୀ କୂଳରେ ସୋନପୁର, ସମ୍ବଲପୁର, ବୌଦ, ବାଙ୍କୀ ଓ କଟକ ସହର ଅବସ୍ଥିତ । ହୀରାକୁଦଠାରେ ମହାନଦୀ ଶଯ୍ୟାରେ ଏକ ବିରାଟବନ୍ଧ ନିର୍ମିତ ହୋଇ ହୀରାକୁଦ ବନ୍ଧ (**Hurakud dam**) ନାମରେ ପରିଚିତ ହୋଇଛି । ନରାଜ ଓ ଯୋବ୍ରା ଠାରେ ଇଂରେଜ ସରକାରଙ୍କ ଅମଳରେ ଦୁଇଟି ଆନିକଟ ତିଆରି ହୋଇଥିଲେ ମଧ୍ୟ ଯୋବ୍ରାଠାରେ ଓଡ଼ିଶା ସରକାରଙ୍କ ଦ୍ୱାରା ବହୁ ଅର୍ଥ ବିନିମୟରେ ଏବେ ସେହି ଆନିକଟର ପୁନଃ ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି ।

ଅଦ୍ୟାବଧି ମହାନଦୀ ବିରୂପା ବ୍ୟାରେଜ ନିର୍ମାଣ କାର୍ଯ୍ୟରେ ପ୍ରାୟ ୧୩୦କୋଟି ଟଙ୍କା ବ୍ୟୟ କରାଯାଇଥିବାର ଜଣାଯାଏ । ୧୮୬୭ ମସିହାର ନଅଙ୍କ ଦୁର୍ଭିକ୍ଷ ସମୟରେ ଇଷ୍ଟଇଣ୍ଡିଆ କମ୍ପାନୀ ପକ୍ଷରୁ ଜଳସେଚନ ପାଇଁ ନିର୍ମିତ ହୋଇଥିବା ବ୍ୟାରେଜ୍ କ୍ରମ ଦିନକୁ ଦିନ ଅଧିକ ଭାଙ୍ଗିରୁଜି ଯାଇଥିବାରୁ ଏହି ନୂତନ ବ୍ୟାରେଜ ନିର୍ମାଣ କାର୍ଯ୍ୟ ସଫଳ ହୋଇ ପାରିଛି । ଏଥିରେ କମ୍ପ୍ୟୁଟରାଇଜଡ୍ ରିମୋଟ କଣ୍ଟ୍ରୋଲ ପଦ୍ଧତିରେ ମହାନଦୀ ବ୍ୟାରେଜରେ ୪୫ଟି ଓ ବିରୂପାରେ ୧୫ଟି ଗେଟ୍ ଲଗିଛି । ଏଠାରୁ ତାଳଦଣ୍ଡା, କେନ୍ଦ୍ରାପଡ଼ା ଓ ହାଇଲେଭଲ କେନାଲମାନଙ୍କ ଦ୍ୱାରା ୧ଲକ୍ଷ ୬୭ହଜାର ହେକ୍ଟର ଜମିକୁ ଜଳ ଯୋଗାଇ ଦିଆଯାଇ ପାରିବ ଏବଂ କଟକରୁ ବ୍ୟାରେଜ ବାଟେ ଚୌଦ୍ୱାରର ଦୂରତ୍ୱ ୧୪ କିଲୋମିଟର କମିଯିବ ବୋଲି ଅଟକଳ କରାଯାଇଛି ।

ମହାନଦୀ ବ୍ୟାରେଜର ଲମ୍ବ ୧୧୭୨ ମିଟର ଏବଂ ବିରୂପା ବ୍ୟାରେଜର ଲମ୍ବ ୧୮୦ ମିଟର । ରାସ୍ତା ଖୋଲା ହେବା ପରେ ଗେଟ୍‌ରେ ଟୋଲର ବ୍ୟବସ୍ଥା ହୋଇ

ଥାଉଛି । ଏହା ବ୍ୟତୀତ ଓଡ଼ିଶା ସରକାରଙ୍କ ବିପୁଳ ଅର୍ଥ ବିନିମୟରେ ଯାନବାହନ ଚଳାଚଳର ସୁବିଧା ନିମିତ୍ତ ମହାନଦୀ ଉପରେ କାଳିଆବୋଦା ନିକଟରେ ଜଗତପୁର ପର୍ଯ୍ୟନ୍ତ ଏକ ବିରାଟ ପୋଲ ତିଆରି ହୋଇ ପାରିଛି । ମହାନଦୀ ଉପରେ କଟକ ନିକଟରେ ଗତ ୧୯୦୦ ମସିହାରେ ତିଆରି ହୋଇଥିବା ଦୀର୍ଘ ରେଲ ପୋଲର ଉଚ୍ଚତା ହେଉଛି ୬୯୧୨ ଫୁଟ ।

ପ୍ରକୃତି ଦେବୀଙ୍କ ବିଚିତ୍ର ଲୀଳା ଉପଭୋଗ ପାଇଁ ଓଡ଼ିଶାରେ ବହୁ ରମଣୀୟ ସ୍ଥାନ ରହିଅଛି । ପ୍ରକୃତିର ଭିନ୍ନ ଭିନ୍ନ ରୂପ ବିଭିନ୍ନ ସ୍ଥାନରେ ଅନୁଭୂତ ହୋଇଥାଏ । ଏହାର ଜ୍ୱଳନ୍ତ ଉଦାହରଣ ସମ୍ବଲପୁରଠାରୁ କଟକ ପର୍ଯ୍ୟନ୍ତ ମହାନଦୀରେ ନୌବିହାର ପ୍ରସଙ୍ଗ । ପ୍ରକୃତିର ଖିମକାନ୍ତ ରୂପ ଏହି ସମୟରେ ନୌଯାତ୍ରୀଙ୍କ ନୟନରେ ଅତ୍ୟନ୍ତ ବିସ୍ମୟ ସୃଷ୍ଟି କରିଥାଏ । ଶତ ଶତ ପ୍ରକାଣ୍ଡ ପ୍ରସ୍ତର ସ୍ତୂପରେ ମହାନଦୀର ଶଯ୍ୟା ପରିପୂର୍ଣ୍ଣ ହୋଇଥିବାରୁ ନୌଯାତ୍ରୀମାନେ ମହାନଦୀର ପ୍ରସ୍ତର ବହୁଳ ଶଯ୍ୟାଦେଖି ଅତ୍ୟନ୍ତ ଭୟଭୀତ ହୋଇ ପଡ଼ିଥାଆନ୍ତି ।

ମହାନଦୀର ପ୍ରବାହ ଅପରୂପ ବନ୍ଧଗତିରେ ପ୍ରବାହିତ ହେଉଥିବାରୁ ଏହି ପ୍ରସ୍ତର ରାଶିକୁ 'ବିଷମ' ବୋଲି କୁହାଯାଏ । ଶୈଳଖଣ୍ଡମୟ ସମୁଦ୍ରର ପଥ ନିର୍ଣ୍ଣୟ ପାଇଁ ଜାହାଜରେ ସୁଦକ୍ଷ ପାଇଲଟ (ପଥପ୍ରଦର୍ଶକ) ଥିଲା ଭଳି ମହାନଦୀରେ ପ୍ରତି ନୌକାକୁ ଏହି ବିଷମ ଅଂଶ ପାରି କରିଦେବାକୁ ଜଣେ ଲେଖାଏଁ ବିଶିଷ୍ଟ ବହୁଦର୍ଶୀ କର୍ଣ୍ଣଧାର ନିଯୁକ୍ତ ହୋଇଥାଆନ୍ତି, ଯେଉଁମାନେ କି 'କଡ଼ୁଆଳ' ନାମରେ ପରିଚିତ । ଏହି କଡ଼ୁଆଳମାନେ ଅଧିକାଂଶ ସମୟରେ ପ୍ରସ୍ତର ସ୍ତୂପ ମଧ୍ୟରୁ ନିର୍ଗତ ହୋଇ ବେଷ୍ଟିତ ହୋଇଥିବା ଅର୍ଦ୍ଧମଗ୍ନ ଘୋଡ଼ାଖାଟିଆ ନିକୁଞ୍ଜର ପ୍ରାକୃତିକ ଶୋଭା ସନ୍ଦର୍ଶନ କରିବାର ସୁଯୋଗ ଲାଭ କରି ଥାଆନ୍ତି ।

ସମ୍ବଲପୁରଠାରୁ ଆସିଲେ ୧୫ ମାଇଲ ଦୂର ଅତିକ୍ରାନ୍ତ ହେବାପରେ ମହାନଦୀର ତଟଦେଶରେ ବାମ ପାର୍ଶ୍ୱରେ 'ହୁମା' ନାମକ ଗୋଟିଏ କ୍ଷୁଦ୍ରତ ଗ୍ରାମ ଏବଂ ବିମଳେଶ୍ୱର ମହାଦେବଙ୍କର ପ୍ରାଚୀନ ମନ୍ଦିର ଦୃଷ୍ଟିଗୋଚର ହୁଏ । ଏହି ମନ୍ଦିରର ନିର୍ମାଣ କୌଶଳ ଏଭଳି ଚମତ୍କାର ଏବଂ ଆଶ୍ଚର୍ଯ୍ୟଜନକ ଯାହା ଫଳରେ ତାକୁ ଇଟାଲି ଦେଶର ପିସା (**Pisa**) ନଗରର ଅପରୂପ (**Loaning tower**) ଭଳିଥିବା ଦୁର୍ଗ ମନ୍ଦିର ତୁଳନା କରାଯାଏ ।

ଇଟାଲିର **Loaning tower** ଦ୍ୱାଦଶ ତଳ ବିଶିଷ୍ଟ ଉଚ୍ଚ ରହିଥିବା ପ୍ରାସାଦ ଏବଂ ଏହାର ମୁଦ୍ରିତ ଚିତ୍ର ଅନେକ ସ୍ଥାନରେ ମିଳୁଥିବାରୁ ତାକୁ ରହିଥିବା ବିମଳେଶ୍ୱର ମନ୍ଦିରକୁ ମଧ୍ୟ ଏହା ସହିତ ତୁଳନା କରାଯାଇଥାଏ । ପୃଥିବୀର ନାନା ଦେଶରୁ ବହୁ ସଂଖ୍ୟାରେ ପର୍ଯ୍ୟଟକମାନେ ଇଟାଲିର ଏହି **Loaning tower**କୁ ଦେଖିବାକୁ ଆସିଥିବାବେଳେ 'ହୁମା'ର ବିମଳେଶ୍ୱର ମନ୍ଦିର ବର୍ତ୍ତମାନ ସୁଦ୍ଧା ବିଶେଷ ଭାବ

ସମ୍ବଲପୁରର ସୀମିତ ପରିସର ମଧ୍ୟରେ ଆତ୍ମଗୋପନ କରିଥିବାରୁ କବିବର ରାଧାନାଥ ଅତ୍ୟନ୍ତ କ୍ଷୋଭ ପ୍ରକାଶ କରି ଦେବୀ ବୀଣାପାଣିଙ୍କୁ ଲକ୍ଷ୍ୟ କରି ଗାଇଛନ୍ତି—

"ତୋ କୃପା ବିହୁନେ ଉତ୍କଳ ମାତାର
ନାମ ଖ୍ୟାତି ଗ୍ରନ୍ଥେ ପଡ଼ିନାହିଁ ଗାର ।"

ଏହି ମନ୍ଦିର ସଂଲଗ୍ନ ମହାନଦୀ ଘାଟର ଗୋଟିଏ ପ୍ରସ୍ତର ଖୋଲ ମଧ୍ୟରେ ଅସଂଖ୍ୟ ପ୍ରକାଣ୍ଡକାୟ ମତ୍ସ୍ୟ ସମୂହର ସନ୍ତରଣ ଏବଂ ମଣିଷଙ୍କ ହାତରୁ ଚୂଡ଼ା ମୁଢ଼ି ଖାଇବା ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଏବଂ ଉପଭୋଗ୍ୟ । ମହାନଦୀର କିଛିଦୂର ତଳକୁ ଗଲେ ଡାହାଣ ପାଖରେ ବରଗଡ଼ର ପ୍ରଧାନ ନଦୀ 'ଜୀରା' ମହାନଦୀରେ ପଡ଼ିଥିବାର ଜଣାଯାଏ । ଏହାପରେ କିଛିବାଟ ଅତିକ୍ରାନ୍ତ କଲେ ସୋନପୁର ରାଜ୍ୟର ସୁପ୍ରସିଦ୍ଧ ବିନିକା ଗ୍ରାମ ଦେଖାଯାଏ, ଯାହାକୁ କି ଗୋଟିଏ କ୍ଷୁଦ୍ର ନଗର କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ଗ୍ରାମ ସମ୍ବଲପୁର ଅଞ୍ଚଳର କେନ୍ଦ୍ରସ୍ଥଳ ଏବଂ ମଠାଲୁଗା ଓ କଂସାବାସନ ପାଇଁ ପ୍ରସିଦ୍ଧ । ପୂର୍ବେ ଏଠାରେ ସୋନପୁର ରାଜ୍ୟର ରାଜଧାନୀ ଥିଲା ।

ଅସଂଖ୍ୟ ଚଣାଖିଆ ପକ୍ଷୀ ସମୂହର ଉତ୍ପତନ, ଯୁଦ୍ଧାର୍ଥ ସେନା ଦଳର ବ୍ୟୂହବଦ୍ଧ ପଦବିକ୍ଷେପ ଏବଂ ନିର୍ଦ୍ଦେଶପ୍ରାପ୍ତ ବିଚରଣ, ଅସଂଖ୍ୟ ଲମ୍ବ ଗ୍ରୀବ ପାଣିକୁଆ ପକ୍ଷୀଙ୍କ ଶ୍ରେଣୀବଦ୍ଧ ସନ୍ତରଣ ଏବଂ ଗାଡ଼ିଆଇ (ମତ୍ସ୍ୟରଙ୍କା) ପକ୍ଷୀଙ୍କର ପାଣି ମଧ୍ୟରୁ ମତ୍ସ୍ୟ ଶିକାର ଏ ସ୍ଥାନରେ ଅତ୍ୟନ୍ତ ଉପଭୋଗ୍ୟ । କେବଳ ସେତିକି ନୁହେଁ ମହାନଦୀ ତଟ ଦେଶର ଅସଂଖ୍ୟ କଣ୍ଟକିତ କ୍ଷୁଦ୍ର ଅରଣ୍ୟ, ଭଗ୍ନ ଦେବାଳୟ ସମୂହର ବିଶୃଙ୍ଖଳ ରୂପ ମାଧୁରୀ ଏବଂ ଶ୍ରେଣୀବଦ୍ଧ ଅସଂଖ୍ୟ ହଂସବଳାକା ପକ୍ଷୀଙ୍କର ଏକମାତ୍ର ସ୍ଥାନ ଦର୍ଶକଙ୍କୁ ବାରମ୍ବାର ଏ ସ୍ଥାନ ଉପଭୋଗ କରିବା ପାଇଁ ଅନୁରୋଧ କରିଥାଏ । ସୋନପୁର ରାଜଧାନୀ ଗୋଟିଏ କ୍ଷୁଦ୍ର ସହର ଭଳି ମହାନଦୀର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ । ପୂର୍ବର 'ସ୍ୱର୍ଣ୍ଣପୁର' ଅପଭ୍ରଷ୍ଟ ହୋଇ ବର୍ତ୍ତମାନ ସୋନପୁର ନାମରେ ପରିଚିତ ହୋଇଅଛି ।

ସୋନପୁର ରାଜଧାନୀର ଏକ ମାଇଲ ତଳକୁ ଦକ୍ଷିଣ ପାର୍ଶ୍ୱରେ ଥିବା ମହାନଦୀର ପ୍ରଧାନ ଉପନଦୀ ତେଲନଦୀ ମହାନଦୀରେ ମିଶିଛି । ଏହି ତେଲ ନଦୀ ସୋନପୁର ଓ ବଉଦ ରାଜ୍ୟର ସୀମା ନିର୍ଦ୍ଧାରଣ କରେ । ସୋନପୁରର ବିପରୀତ ତଟରେ ବଉଦ ରାଜ୍ୟର ପ୍ରସିଦ୍ଧ 'ମନମୁଣ୍ଡା' ଗ୍ରାମ ଅବସ୍ଥିତ ଯେଉଁଠାରେ କି ବଉଦ ରାଜାଙ୍କର ପୁଲିସ ଥାନା ଏବଂ ବିଦ୍ୟାଳୟ ଅଛି । ଏହାର କିଛି ତଳକୁ ନଦୀ ମଧ୍ୟସ୍ଥିତ ପ୍ରକାଣ୍ଡ ପ୍ରସ୍ତର ଉପରେ ବିଲ୍ଲେଶ୍ୱରୀ ଠାକୁରାଣୀଙ୍କର ବିଗ୍ରହ ଅତ୍ୟନ୍ତ ସୁଶୋଭିତ । ମହାନଦୀର ବାମ ପାର୍ଶ୍ୱରେ ସୋନପୁର, ରେଢ଼ାଖୋଲ ଏବଂ ଆଠମଲ୍ଲିକ ରାଜ୍ୟ ଅବସ୍ଥିତ । ଆଠମଲ୍ଲିକ ରାଜ୍ୟର ପ୍ରସିଦ୍ଧ କଣ୍ଟିଲୋ ଗ୍ରାମ ମହାନଦୀର ଦକ୍ଷିଣ ପାର୍ଶ୍ୱସ୍ଥିତ ବଉଦ ରାଜଧାନୀର ସମାନ୍ତରାଳ ଭାବରେ ଅବସ୍ଥିତ । ଏଠାରେ ଥିବା ବହୁ ପ୍ରାଚୀନ ମନ୍ଦିର ମଧ୍ୟରୁ 'ଚନ୍ଦ୍ରଚୂଡ଼' ନାମକ ଶିବ ମନ୍ଦିରରେ ପ୍ରସ୍ତର ଶିଳ୍ପର ପରାକାଷ୍ଠା ଦେଖାଯାଏ ।

ବଉଦ ରାଜପ୍ରାସାଦ ମହାନଦୀର ତଟ ଦେଶରେ ଅବସ୍ଥିତ । ଏଠାରେ ବୁଦ୍ଧଦେବଙ୍କର ଗୋଟିଏ ପ୍ରକାଣ୍ଡ ପ୍ରସ୍ତର ମୂର୍ତ୍ତିର ଭଗ୍ନାବଶେଷ ବର୍ତ୍ତମାନ । ମନମୁଣ୍ଡା ଏବଂ ବଉଦଗଡ଼ ମଧ୍ୟସ୍ଥିତ ରାଜ୍ୟାଂଶ ମଧ୍ୟରେ ମେହରାଣୀ ଏବଂ ବାଘନଦୀ ନାମକ ଦୁଇଟି ଉପନଦୀ ମହାନଦୀରେ ପଡ଼ିଅଛି । ତିନମାଇଲ ଦୀର୍ଘ ଓ ଅର୍ଦ୍ଧମାଇଲ ପ୍ରସ୍ଥବିଶିଷ୍ଟ 'ମର୍ଜାକୁଦ' ନାମକ ଦ୍ୱୀପ ବଉଦଗଡ଼ ତଳକୁ ମହାନଦୀରେ ଅବସ୍ଥିତ । ଏଠାରେ ତନ୍ତୁବାୟ—ଅଧ୍ୟୁଷିତ ଗୋଟିଏ ବଡ଼ ଗ୍ରାମ ଅଛି ଯେଉଁଠାରୁ କି ବିବିଧ ପ୍ରକାର ବହୁମୂଲ୍ୟ କାର୍ଯ୍ୟାସି ବସ୍ତ୍ର ମିଳେ । 'ମିର୍ଜାକୁଦ' ତଳ ଆଠମଲ୍ଲିକ ରାଜ୍ୟରେ 'କୁଆକୁଦ' ନାମକ ଅନ୍ୟ ଗୋଟିଏ କ୍ଷୁଦ୍ର ଦ୍ୱୀପ ମହାନଦୀ ମଧ୍ୟରେ ଅବସ୍ଥିତ । କୁଆକୁଦର କିଛି ତଳକୁ ଆଠମଲ୍ଲିକ ଗଡ଼ ଦେଖାଯାଏ ଯାହାର କି ଦୂରତ୍ୱ ମହାନଦୀଠାରୁ ପ୍ରାୟ ଦୁଇ ମାଇଲ । ବଉଦଗଡ଼ଠାରୁ ମହାନଦୀର ଦକ୍ଷିଣ ପାର୍ଶ୍ୱରେ ଗାଢ଼ ନୀଳ ବରାହ ଖଡ଼୍‌ଗାକୃତି ବିରାଟ ବାଇମୁଣ୍ଡି ପର୍ବତ ସ୍ପଷ୍ଟ ଦିଶେ ।

ବୌଦ୍ଧ ରାଜ୍ୟର ଧଳପୁର ଏବଂ ବାମପାର୍ଶ୍ୱରେ ଆଠମଲ୍ଲିକ ରାଜ୍ୟର ପୁଲେଶ୍ୱର ଗ୍ରାମ ଅତିକ୍ରମ କରି ନୌକା ପ୍ରଧାବିତ ହେଉଥିବେଳେ ଏହି ଅଂଶର ନଦୀ ବାଲିରେ ବସି ଚନ୍ଦ୍ର କିରଣର ଶୋଭା ଅତ୍ୟନ୍ତ ଉପଭୋଗ କରାଯାଏ । ପୁଲେଶ୍ୱର ଗ୍ରାମ ନିକଟରୁ ଆଠମଲ୍ଲିକ ରାଜଧାନୀର ଦୂରତ୍ୱ ଦୁଇ ମାଇଲ ମାତ୍ର । ଏହି ରାଜଧାନୀ 'କଇଁହାଗଡ଼' ନାମରେ ନାମିତ । ଏଠାରୁ ଦୁଇମାଇଲ ଦୂରରେ ଦେଉଳଝର ନାମକ ସ୍ଥାନରେ ଥିବା ଅନେକ ଉଷ୍ଣ ପ୍ରସ୍ରବଣର ଏକତ୍ରାବସ୍ଥାନ ଅତ୍ୟନ୍ତ ଦର୍ଶନଯୋଗ୍ୟ ।

ଧଳପୁର ଗ୍ରାମଠାରୁ ୧୦ ମାଇଲ ଦୂରବର୍ତ୍ତୀ ହରଭଙ୍ଗା ଗ୍ରାମ ପର୍ଯ୍ୟନ୍ତ ମହାନଦୀର ତଟଦେଶ ଘୋରାରଣ୍ୟ ଓ ଉତ୍ତୁଙ୍ଗ ଶୈଳଭୂଷିତ ହୋଇଥିବେଳେ ମହାନଦୀର ବାମପାର୍ଶ୍ୱସ୍ଥିତ ଆଠମଲ୍ଲିକ ରାଜ୍ୟର ମେରୁଦଣ୍ଡ ସଦୃଶ ପଞ୍ଚଧାର ପର୍ବତଶ୍ରେଣୀ ଶୋଭାପାଇଥାଏ । ଧଳପୁରଠାରୁ ମହାନଦୀର ଶୋଭା ଏବଂ ବାମପାର୍ଶ୍ୱରେ ଆଠମଲ୍ଲିକସ୍ଥ ଶ୍ୟାମଦର୍ଶନରୂପୀ ପଞ୍ଚଧାର ଗିରିଶ୍ରେଣୀର ଆକାଶସ୍ପର୍ଶୀ ମସ୍ତକୋତ୍ତଳନ ଅତ୍ୟନ୍ତ ହୃଦୟସ୍ପର୍ଶୀ । ଦକ୍ଷିଣ ପାର୍ଶ୍ୱରେ ବଉଦର ଧଳପୁର ଏବଂ ହରଭଙ୍ଗା ମଧ୍ୟବର୍ତ୍ତୀ ନିବିଡ଼ ବନଶୋଭିତ ପର୍ବତଶ୍ରେଣୀ ସୃଷ୍ଟି ଦିବସରୁ ଅହର୍ନିଶ କେବଳ ଭୟଙ୍କର ମୂର୍ତ୍ତି ଧାରଣ କରି ରହିଁ ରହିଛି । ସପ୍ତଶୋଣୀ ଗଣ୍ଡର ତୋରଣ ସ୍ୱରୂପ ବଉଦ ରାଜ୍ୟସ୍ଥିତ ଉମିରମା ଅଞ୍ଚଳର ବୃହତ୍ ପର୍ବତ ପ୍ରକୃତିଦେବୀଙ୍କ ବିଶାଳ ନାସିକା ସ୍ୱରୂପ ଚକ୍ଷୁ ସମକ୍ଷରେ ପ୍ରତିଭାତ । ଆଠମଲ୍ଲିକସ୍ଥ ପଞ୍ଚଧାର ଗିରିଶ୍ରେଣୀର ଶେଷାଂଶ ଏହି ନାସିକା ସହିତ ମିଶି ଗଳପତ୍ର ହୋଇଛି । ଏଠାରେ ପ୍ରକାଣ୍ଡ କୁମ୍ଭୀର ସବୁ ଶିଳା ଓ ବାଲି ଉପରେ ପଡ଼ି ରହିଥିବାର ଦେଖାଯାଆନ୍ତି ।

କବିବର ରାଧାନାଥ ପଞ୍ଚଧାର ଗିରିଶ୍ରେଣୀକୁ "ଜଳଧର କେଳିମଞ୍ଚରୂପୀ" ବୋଲି ବର୍ଣ୍ଣନା କରିଅଛନ୍ତି । ଶୀତଳପାଣି ଗ୍ରାମ ନିକଟରୁ 'ସପ୍ତଶୋଣୀ' ତୋରଣ ଦ୍ୱାରର ଦୃଶ୍ୟ ଅତୀବ ଭୟଙ୍କର । ବିନାକେଣ୍ଡ ଦେବୀ 'ସପ୍ତଶୋଣୀ ରୂପ' ସୃଷ୍ଟି

ସୌନ୍ଦର୍ଯ୍ୟ ଦେଖି ଦ୍ୱାରର ସମସ୍ତ ରକ୍ଷାକାରିଣୀ । ତାହାଙ୍କର ପୀଠ ସପ୍ତକୋଶୀ ନିର୍ଗମଣ ଦ୍ୱାରର ବାମ ପାର୍ଶ୍ୱସ୍ଥିତ ମହାନଦୀର ତଟଦେଶରେ ଅବସ୍ଥିତ । ନୌଚାଳନା ସମୟରେ ନାବିକମାନେ ନିରାପଦଗନ୍ତ କାମନା କରି ବନକେଣ୍ଡ ଦେବୀଙ୍କର ପୂଜା-ଅର୍ଚ୍ଚନା କରିଥାଆନ୍ତି ।

ସପ୍ତକୋଶୀର ପ୍ରବେଶ ଦ୍ୱାର ବନକେଣ୍ଡ ଦେବୀଙ୍କର ପୀଠସ୍ଥଳରୁ ଆରମ୍ଭ ହୋଇଛି । ପୂର୍ଣ୍ଣିମା ରାତିରେ ନିରନ୍ତ୍ର-ବନଭୂଷିତ-ବିଶାଳ ପର୍ବତ ସମୂହର ଗାମ୍ଭୀର୍ଯ୍ୟ ଏବଂ ଅଟ୍ଟହାସ୍ୟ ଅବର୍ଣ୍ଣନୀୟ ହୋଇଥିବାରୁ ଏ ସ୍ଥାନର ରାତିଯାପନ କେବଳ ଅନୁଭବୀ ଭାଗ୍ୟରେ ହିଁ ଘଟିଥାଏ । ସମ୍ବର, ମୃଗ, କୁକ୍କୁର ଏବଂ ଶୃଗାଳ ରବରେ ପ୍ରତ୍ୟେକ ଶୈଳ ଖୋଲରୁ ଅଗଣିତ ପ୍ରତିଧ୍ୱନି ଉଠୁଥିବା ବେଳେ ଟେଁଟେଁୟା ପକ୍ଷୀ ରବରୁ ବ୍ୟାଘ୍ର ଭଲ୍ଲୁକାଦିର ବିଚରଣ ସୂଚିତ ହେଉଥାଏ ।

ଆଠମଲ୍ଲିକ ରାଜ୍ୟ ଶେଷ ସୀମାଠାରୁ ସପ୍ତକୋଶୀର ଉଭୟ ପାର୍ଶ୍ୱର ଦୃଶ୍ୟ ପ୍ରଶାନ୍ତ ଓ ଗମ୍ଭୀର ଭଳି ମନେହୁଏ । ମହାନଦୀର ଦକ୍ଷିଣପାର୍ଶ୍ୱରେ ସୁନାକୋଣିଆ ପର୍ବତ ମୁଣ୍ଡଟେକି ଛିଡ଼ା ହୋଇଛି । ଉଭୟ ପାର୍ଶ୍ୱସ୍ଥିତ ପର୍ବତ ଶ୍ରେଣୀର ପ୍ରମତ୍ତ ଅହଙ୍କାର ନିକଟରେ ଉତ୍କଳ ଲକ୍ଷ୍ମୀଙ୍କର ସୁବର୍ଣ୍ଣମେଖଳା ମହାନଦୀ ନିଜର ପ୍ରାଧାନ୍ୟ ହରାଇ ସପ୍ତକୋଶୀ ମଧ୍ୟରେ ଗୋଟିଏ ବଡ଼ ଗିରି ନଦୀର ରୂପଧାରଣ କରିଛି । ଏହାର ଉଭୟ ପାର୍ଶ୍ୱରେ ଆକାଶଚୁମ୍ବୀ ଉତ୍ତୁଙ୍ଗ ପର୍ବତମାଳା ଘେରି ରହିଥିବାରୁ କବିବର ରାଧାନାଥ ସପ୍ତକୋଶୀର ବର୍ଣ୍ଣନା ପ୍ରସଙ୍ଗରେ କହିଛନ୍ତି—

"କୁହେଳୀରେ ନୀଳବର୍ଣ୍ଣ ଭୃଗୁମାନ ଗିରି
ଧାଡ଼ି ହୋଇ ବେନି ତୀରେ ଏକ ପରେ ଏକ
ଶିଖାରେ ଚାଳି କଳନ୍ତିକି ଗଗନର ସୀମା ?"

ବନ୍ୟା ସମୟରେ ସପ୍ତକୋଶୀର ଅବସ୍ଥା କହିଲେ ନସରେ । ଅନୁଗୋଳସ୍ଥିତ ଟିକରପଡ଼ାର ଗୋଟିଏ ବଙ୍ଗଳା ମହାନଦୀର ବାମପାର୍ଶ୍ୱରେ ଏକ କ୍ଷୁଦ୍ର ଶୈଳ ଉପରେ ଅବସ୍ଥିତ । ମହାନଦୀର ଦକ୍ଷିଣ ପାର୍ଶ୍ୱରେ ଦଶପଲ୍ଲାର କୋଇଡ଼ା ଗ୍ରାମ ନିକଟରେ ସପ୍ତକୋଶୀର ବିରାଟତ୍ୱ ସହଜେ ଅନୁମେୟ । ଠିକ୍ କୋଇଡ଼ା ଗ୍ରାମର ୫ ମାଇଲ ପୂର୍ବରେ ଏବଂ ୭ ମାଇଲ ପଶ୍ଚିମରେ ପୁଣ୍ୟସଲିଳା ମହାନଦୀ ଉଭୟ ତୀରରେ ଶ୍ୟାମ ଦର୍ଶନ ପର୍ବତମାଳା ଆଶ୍ରୟ କରି କ୍ଷୀଣ ଭାବରେ ଗୋଟିଏ ଭୀଷଣ ଗାମ୍ଭୀର୍ଯ୍ୟପୂର୍ଣ୍ଣ ସୌନ୍ଦର୍ଯ୍ୟ ପରିବେଷ୍ଟିତ ଲମ୍ବ ହ୍ରଦର ଆକାର ଧାରଣ କରିଛି, ଯାହାକି ଭାରତବର୍ଷର ଅନ୍ୟ କୌଣସି ପ୍ରଦେଶରେ ହୋଇଥିଲେ କିମ୍ବା ବିଲାତରେ ହୋଇଥିଲେ ଏହା ବହୁ ବିଖ୍ୟାତ ବୈଜ୍ଞାନିକ, ପ୍ରତ୍ନତତ୍ତ୍ୱବିତ୍, କବି, ଐତିହାସିକ ଏବଂ ଲେଖକମାନଙ୍କର ନିତ୍ୟବିହାର ଭୂମିରେ ପରିଣତ ହୋଇଥାଆନ୍ତା ।

କିନ୍ତୁ ଦୁଃଖର ବିଷୟ ବର୍ଣ୍ଣନାତୀତ ଭଗବାନଙ୍କ ବିରାଟ ସୃଷ୍ଟି ସପ୍ତକୋଶୀର ଏହି ମହାତୀର୍ଥ ଆଜି ଉତ୍କଳର ଭୂଗୋଳରେ ଅପରିଷ୍କୃତ ଭାବରେ ମୁଦ୍ରିତ ରହିଅଛି ।

ଏତଦ୍‌ଭିନ୍ନ ପ୍ରକୃତିଦେବୀର ଗୁହ୍ୟସ୍ୱରୂପ ସପ୍ତଟେଣୀର 'ଫୁଲଜର୍ଝରା' ସ୍ଥାନ ଏବଂ ସପ୍ତଟେଣୀର ପ୍ରବେଶ ଦ୍ୱାର 'ବଡ଼ମୂଳ ଘାଟୀ' ମଧ୍ୟ ନିଜ ନିଜର ପ୍ରାଧାନ୍ୟ ବିସ୍ତାର କରିଥାଆନ୍ତି । ମହାନଦୀର ଦକ୍ଷିଣ ପାର୍ଶ୍ୱସ୍ଥିତ ଦଶପଲ୍ଲାର 'ଗୋଆଲଦେଓ' ପର୍ବତ ଶ୍ରେଣୀ, ଚଦ୍‌ରୋଳାଘାଟୀ ଏବଂ ଦଶପଲ୍ଲାର ବାଇଗଣି ପର୍ବତ ଶ୍ରେଣୀ ନିକଟରେ ମହାନଦୀର ସ୍ଥିତି ଅତ୍ୟନ୍ତ ଗମ୍ଭୀର ହୋଇ ପଡ଼ିଛି । ମହାନଦୀର ଦକ୍ଷିଣପାର୍ଶ୍ୱରେ ଥିବା 'ବଡ଼ମୂଳ ଗ୍ରାମ' ତଳେ ଖରଖର ନାମକ ଗୋଟିଏ ତୀବ୍ର ଖରସ୍ରୋତା ଗିରିନଦୀ ମହାନଦୀରେ ପଡ଼ିଅଛି । ଦଶପଲ୍ଲାର ପ୍ରାକୃତିକ ଉତ୍ତୁଙ୍ଗ ପ୍ରାଚୀର କ୍ରମ ନିମ୍ନ ହୋଇ ଭୁମୁଣ୍ଡିଆ ଗ୍ରାମର ହିଙ୍ଗିର ଏବଂ ଅଭ୍ରଭେଦୀ ମଣିଭଦ୍ରା ପର୍ବତରେ ପରିଣତ ହୋଇଛି । ଦଶପଲ୍ଲାର ବିଶାଳ ବିଖ୍ୟାତ ଏହି ମଣିଭଦ୍ରା ପର୍ବତ ଭୟଙ୍କର ସର୍ପଙ୍କ ଆବାସସ୍ଥଳ ରୂପେ କଥିତ ଏବଂ ଏହି ପର୍ବତ ଦୂରରୁ ଗୋଟିଏ ବିରାଟ ସମଦ୍ୱିବାହୁ ତ୍ରିଭୁଜର ରୂପ ଧାରଣ କରେ । ମହାନଦୀସ୍ଥିତ ଦଶପଲ୍ଲାର କ୍ଷୁଦ୍ରଦ୍ୱୀପ 'ଚଢ଼େୟାକୁଦ', ମହାନଦୀର ବାମପାର୍ଶ୍ୱରେ ନରସିଂହପୁର ରାଜ୍ୟର ପ୍ରଧାନ ବାଣିଜ୍ୟସ୍ଥଳ ଚନ୍ଦଗଡ଼ ଗ୍ରାମ ନିଜ ନିଜର ବିଶେଷ ସ୍ଥିତି ବଜାୟ ରଖିଛନ୍ତି । ମହାନଦୀର ଦକ୍ଷିଣପାର୍ଶ୍ୱସ୍ଥିତ ଦଶପଲ୍ଲାର ବେଲପଡ଼ା ନାମକ ଗ୍ରାମ କଂସାବାସନ ପାଇଁ ଉତ୍କଳ ବିଖ୍ୟାତ । ଏହାର କିଛି ତଳକୁ ଦକ୍ଷିଣ ପାର୍ଶ୍ୱରେ ଦୁଇଶୃଙ୍ଗ ବିଶିଷ୍ଟ ସିଧାମୂଳା ପର୍ବତ ମହାନଦୀ ଯାତ୍ରୀଙ୍କର ଦୃଷ୍ଟି ଆକର୍ଷଣ କରିଥାଏ ଏବଂ ଏହିଠାରୁ ଖଣ୍ଡପଡ଼ା ରାଜ୍ୟର ଆରମ୍ଭ ।

ମହାନଦୀର ବାମ ପାର୍ଶ୍ୱରେ ନରସିଂହ ପୁରରୁ ଏକତାଳ ଗ୍ରାମର କିଛି ତଳକୁ ବାଣିଆକୁଦା ନାମକ ଏକ ଶୈଳବେଷ୍ଟିତ ଦ୍ୱୀପ ମହାନଦୀ ମଧ୍ୟରେ ଅବସ୍ଥିତ ସେଇଁଠାରେ କି ବାଣେଶ୍ୱର ଶିବଙ୍କର ମନ୍ଦିର ବିରାଜମାନ । ଖଣ୍ଡପଡ଼ା ରାଜ୍ୟର ପିତ୍ତଳ କଂସା ବାସନ ପ୍ରସିଦ୍ଧ କଣ୍ଟିଲୋ ଗ୍ରାମରେ ମହାନଦୀ କୂଳର ଗୋଟିଏ ପାହାଡ଼ ଉପରେ ସୂର୍ଯ୍ୟରଶ୍ମି ପ୍ରତିଫଳିତ ନୀଳମାଧବଙ୍କ ମନ୍ଦିର ଦୃଶ୍ୟ ବେଶ ଉପଭୋଗ୍ୟ । ମହାନଦୀର ଦକ୍ଷିଣ ପାର୍ଶ୍ୱରେ ନୟାଗଡ଼ର କୁସୁମୀ ନଦୀ, ଦଶପଲ୍ଲାର କୁଆଁରିଆ ନଦୀ, ଖଣ୍ଡପଡ଼ାର ହାରଗାଁ ନାମକ ଏକ ସ୍ଥାନରେ ଏକତ୍ରମିଶି ସେଠାରୁ 'କମେଇ' ନାମ ବହନ କରି ମହାନଦୀରେ ପଡ଼ିଅଛି । 'କମେଇ' ମୁହାଣର ତଳକୁ ଗୋଶୃଙ୍ଗ ପର୍ବତର ବିଶାଳ ନୀଳିମାରେ ଆଖି ଝଲସି ଉଠେ । ଏହା ନିକଟରେ ପ୍ରସାଦ-ମୁଣ୍ଡିଆ ନାମକ ପର୍ବତ ମହାନଦୀ କୂଳରେ ପ୍ରାୟ ୫ ମାଇଲ ପର୍ଯ୍ୟନ୍ତ ବ୍ୟାପିଛି ।

ମହାନଦୀର ବାମପାର୍ଶ୍ୱରେ ଗୋଟିଏ ଶିଖର ଉପରେ ବଡ଼ାମ୍ବା ରାଜ୍ୟର ପ୍ରସିଦ୍ଧ ଭଟ୍ଟାରିକା ଦେବୀଙ୍କର ପୀଠ ଅବସ୍ଥିତ । ଦୁର୍ଗାପୂଜା ସମୟରେ ଏଠାରେ ବହୁଲୋକଙ୍କର ସମାଗମ ହୋଇଥାଏ । ମହାନଦୀର ଖର ପ୍ରବାହରେ ଖଣ୍ଡପଡ଼ା ରାଜ୍ୟର ପଦ୍ମାବତୀ ଗ୍ରାମର ବିଶେଷ କ୍ଷତିହୋଇଛି । ଖଣ୍ଡପଡ଼ାର ୫ ମାଇଲ ତଳେ ବଡ଼ମ୍ବା ରାଜ୍ୟର ସିଂହନାଥ ଶୈଳ ମହାନଦୀ ମଧ୍ୟରେ ଏକ କୁମ୍ଭ ପ୍ରାୟ ଦୃଷ୍ଟିଗୋଚର ହୋଇଥାଏ । ମହାନଦୀ ମଧ୍ୟସ୍ଥିତ ଏହା ଏକ ଦ୍ୱୀପ ଶୈଳ । ଏଠାରେ ସିଂହନାଥ

ମହାଦେବଙ୍କର ଅପୂର୍ବ ସ୍ଥାପତ୍ୟ ମଣ୍ଡିତ ମନ୍ଦିର ଅବସ୍ଥିତ । ମହାନଦୀ କୂଳରେ ଗୋପୀନାଥପୁର ଗ୍ରାମରୁ ବଡ଼ମ୍ବାଗଡ଼ ୬ ମାଇଲ ।

ଖଣ୍ଡପଡ଼ାର କାଳଗିରନଦୀ ମହାନଦୀରେ ପଡ଼ନ୍ତି । ବାଙ୍କିର ବୈଦ୍ୟେଶ୍ୱର ଗ୍ରାମ ଉପକଣ୍ଠରେ ଥିବା ପର୍ବତଟି ଗୋଟିଏ ହାତୀ ଶୋଇଲପ୍ରାୟ ମନେହୁଏ । ପର୍ବତର ମୂଳରେ ବୈଦ୍ୟନାଥ ଶିବଙ୍କର ମନ୍ଦିର ବିଦ୍ୟମାନ । ଏହା ନିକଟରେ ମହାନଦୀ କୂଳର ଗୋଟିଏ ମୁଣ୍ଡିଆ ଉପରେ ଅବସ୍ଥିତ ସିଂହନାଥ ଦ୍ୱୀପ ଶୈଳଠାରୁ ବାଙ୍କିର ଚର୍ଚ୍ଚିକା ପର୍ଯ୍ୟନ୍ତ ପ୍ରାୟ ୧୦ ମାଇଲ ମହାନଦୀ ଉନ୍ମୁକ୍ତ । ଏହାର ଦୁଇକୋଶ ତଳକୁ ମହାନଦୀ ଅତ୍ୟନ୍ତ ପ୍ରଶସ୍ତ ଲାଭ କରନ୍ତି । ମହାନଦୀର ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ଏପରି ବିସ୍ତାର ମହାନଦୀର କୌଣସି ସ୍ଥାନରେ ଦେଖାଦେଇ ନାହିଁ । ବୈଦ୍ୟେଶ୍ୱରର ଭେଡ଼ା-ଘାଟଠାରୁ ଚର୍ଚ୍ଚିକାର ତଳପର୍ଯ୍ୟନ୍ତ ପ୍ରାୟ ୫ ମାଇଲ ମହାନଦୀ ୩/୪ ମାଇଲ ପ୍ରଶସ୍ତ ।

ବାଙ୍କିର ଚର୍ଚ୍ଚିକା ଦେବୀଙ୍କର ପୀଠ ଗୋଟିଏ ପାହାଡ଼ ଉପରେ ବିଦ୍ୟମାନ । ଚର୍ଚ୍ଚିକାଠାରେ ମହାନଦୀର ଉଭୟ ତୀରରେ ଦକ୍ଷିଣ ପାର୍ଶ୍ୱରେ ବାଙ୍କିର ମହାପର୍ବତ ଏବଂ ବାମ ପାର୍ଶ୍ୱରେ ବଡ଼ାମ୍ବାର କୁମାରଙ୍ଗ ପର୍ବତ ଦୃଷ୍ଟହୁଏ । ମହାନଦୀର ବାମ-ପାର୍ଶ୍ୱରେ ତିଗିରିଆ ରାଜ୍ୟ ଏବଂ ଏହାର ଏକ ମାଇଲ ଦୂରରେ ବାଙ୍କିର ରତାଗଡ଼, ସୁବର୍ଣ୍ଣପୁର ଏବଂ ଓସ୍ତିଆ ନାମକ ତିନୋଟି ବୃହତ୍ ଗ୍ରାମ ଅବସ୍ଥିତ । ରତାଗଡ଼ର ଗୋଟିଏ ଶୈଳ ଉପରେ ଶିବ ମନ୍ଦିର ଏବଂ ସୁବର୍ଣ୍ଣପୁର ଗ୍ରାମ ଉପକଣ୍ଠରେ 'ଅଂଶୁପା' ମଧୁର ଜଳର ବୃହତ୍ ହ୍ରଦ ଅତ୍ୟନ୍ତ ଦର୍ଶନୀୟ ବସ୍ତୁ । ମହାନଦୀର ଦକ୍ଷିଣ ପାର୍ଶ୍ୱରେ ଖୋରଧାର ରଣନଦୀ ଆସି ମହାନଦୀରେ ମିଶିଛି ।

ବାଙ୍କିର ଡୋମପଡ଼ା ରାଜ୍ୟ ଏହିଠାରୁ ଆରମ୍ଭ ହୋଇଛି । ଏଠାରେ ଘାସିପୁର ଏବଂ କାଉଡ ମୁଣ୍ଡିଆ ହସ୍ତରେ ବିସ୍ତୃତ ବାଉଁଶବଣ ଦେଖା ଦେଇଥାଏ । ଡୋମପଡ଼ାର କାଳିକାପ୍ରସାଦ ରାଜଭବନ ଅତିସୁନ୍ଦର ଶୋଭା ପାଇଲାବେଳେ ଆଠଗଡ଼ ରାଜ୍ୟର କନ୍ଦରପୁର ଏକ ବାଣିଜ୍ୟସ୍ଥଳୀ ରୂପେ ନଜର ପରିଚୟ ପ୍ରଦାନ କରେ । ନିକଟବର୍ତ୍ତୀ ରାଜତିରପୁର ଗ୍ରାମଟି ଗିରିଦୁର୍ଗ ରୂପେ ପରିଚିତ ଏବଂ ମହାନଦୀ ମଧ୍ୟସ୍ଥିତ ଅମଙ୍ଗାଇ କୁଦନାମକ ଗୋଟିଏ କ୍ଷୁଦ୍ର ଦ୍ୱୀପରେ ପ୍ରାଚୀନ ମନ୍ଦିରର ଭଗ୍ନାବଶେଷ ଦେଖାଯାଏ । ଡୋମପଡ଼ାର ପାଧିପୁର, ଗୁରୁଜଙ୍ଗିଆ ଏବଂ ଦେବୀଦ୍ୱାରଠାରେ ମହାନଦୀ ସଙ୍କୁଚିତ ହୋଇଛନ୍ତି । ମହାନଦୀ କୂଳରେ ଦେବୀଦ୍ୱାର ରାମଚଣ୍ଡୀ ଦେବୀଙ୍କର ମନ୍ଦିର ବିଦ୍ୟମାନ ।

ଆଠଗଡ଼ର ଦାସପୁର ଗ୍ରାମ ମଧୁର ଆମ୍ବ ପାଇଁ କଟକ ପ୍ରସିଦ୍ଧ । ଏହା ତଳକୁ ସାପୁଆ ନଦୀ ହିନ୍ଦୋଳ ରାଜ୍ୟରୁ ବାହାରି ଆଠଗଡ଼ ଦେଇ ପ୍ରବାହିତ ହୋଇ ମହାନଦୀରେ ମିଶିଛି । ସାପୁଆ ମୁହାଣ ନିକଟରେ ସର୍ପେଶ୍ୱର ମୁଣ୍ଡିଆ ପାଖରେ ସର୍ପେଶ୍ୱର ମହାଦେବଙ୍କର ମନ୍ଦିର ଅବସ୍ଥିତ ଏବଂ ଆଠଗଡ଼ର ଧବଳୁକାକ୍ରାନ୍ତ ଖଳଖଳା ଶୈଳ

ଏଠାରେ ମୁଣ୍ଡ ଟେକ ଛିଡ଼ା ହୋଇଛନ୍ତି । ପ୍ରକୃତି କବି ରାଧାନାଥ ଏହି ଦୃଶ୍ୟକୁ ଅବଲୋକନ କରି ଲେଖିଛନ୍ତି—

"ବିରାଜନ୍ତି ଯହିଁ ଦେବ ସର୍ବେଶ୍ୱର
ସର୍ବେଶ୍ୱରୀ ଯାଇ ଧୂଅଇ ପୟର ।"

ମହାନଦୀର ଦକ୍ଷିଣ ପାର୍ଶ୍ୱରେ କଟକ ଜିଲାର ପ୍ରସିଦ୍ଧ ନରାଜ ଗ୍ରାମରୁ କାଠଯୋଡ଼ି ନଦୀ ମହାନଦୀରୁ ସୃଷ୍ଟି ହୋଇଛି । ମହାନଦୀର ଆରମ୍ଭଠାରୁ ଅନେକ ଉପନଦୀ ମହାନଦୀକୁ ପାଣି ଯୋଗାଇ ମହାନଦୀ ପାଣିର ଆୟ କରି ଆସିଥିବା ସ୍ଥଳେ ନରାଜଠାରେ ମହାନଦୀର ପୁଞ୍ଜିକୃତ ଜଳରୁ ବ୍ୟୟର ଆରମ୍ଭ ହୋଇଛି । ବିରୂପା ନଦୀ ମହାନଦୀର କଟକ ନଗରୀର ବିପରୀତ ପାର୍ଶ୍ୱରୁ ସୃଷ୍ଟି ହୋଇ ମହାନଦୀ ଜଳଭଣ୍ଡାରରୁ ବ୍ୟୟର ଦ୍ୱିତୀୟ ହେଉଁ ଅଧିକାର କରିଛି ।

ନରାଜ ଗ୍ରାମ ତଳେ କାଠଯୋଡ଼ି ଏବଂ ମହାନଦୀର ସ୍କନ୍ଧ ଦେଶରେ ଓଡ଼ିଶା କେନାଲ କମ୍ପାନୀ ନାମକ ବ୍ୟବସାୟୀ ସଂଘ ଏକ ସୁଦୃଢ଼ ପ୍ରସ୍ତର ସେତୁ (Anicut) ନିର୍ମାଣ କରିଥିଲେ ଯାହାକି ବର୍ତ୍ତମାନ ସରକାରଙ୍କ ସମ୍ପତ୍ତି ହୋଇ ଯାଇଛି । ଏହି କେନାଲ କମ୍ପାନୀ ଦ୍ୱାରା ନରାଜ, ଜୋବ୍ରା ଓ ଚୌଦ୍ୱାରଠାରେ ସେତୁ ବନ୍ଧାଯାଇ ମହାନଦୀର ଜଳକୁ ଆବଦ୍ଧ କରାଯାଇ ଓଡ଼ିଶାର କୃତ୍ରିମ କୁଲ୍ୟା (କେନାଲ) ମାନଙ୍କୁ ଜଳ ଯୋଗାଉ ଅଛି । ନରାଜ ଗ୍ରାମ ଉପରକୁ ଏକ ମାଇଲ ଦୂରରେ ସିଦ୍ଧନାଥ ମୁଣ୍ଡିଆ ଶୈଳ ଉପରେ ସିଦ୍ଧନାଥ ମହାଦେବଙ୍କର ମନ୍ଦିର ଅବସ୍ଥିତ । ଠିକ୍ ଏହାର ତଳେ ଧାନ କ୍ଷେତ ମଧ୍ୟରେ ଗୋଟିଏ ପ୍ରସ୍ତରରେ ବହୁ ପୁରାତନ କାଳର ଶିଳାକ୍ଷର ଦେଖିବାକୁ ମିଳିଥାଏ— ଯାହାକି କଳାହାଣ୍ଡିର ଗୁଡ଼ହାଣ୍ଡି ପର୍ବତ ଏବଂ ସମ୍ବଲପୁରର ବିକ୍ରମ ଖୋଲ ନିକଟରେ ଦେଖା ଦେଇଥାଏ ।

ମହାନଦୀର ବାମ ପାର୍ଶ୍ୱରେ ବ୍ରହ୍ମପୁର ଗ୍ରାମ ନିକଟରେ ନଦୀ ତୀରବର୍ତ୍ତୀ ନାରାୟଣୀଙ୍କ ମନ୍ଦିର ଦିନକୁ ଦିନ ନଦୀ ଦ୍ୱାରା ଗ୍ରାସ ହେବାରେ ଲାଗିଛି । ମହାନଦୀ ବକ୍ଷରେ ଆଠଗଡ଼ର ଧବଳେଶ୍ୱର ଶିବ ମନ୍ଦିର ପ୍ରତିଷ୍ଠା କରାଯାଇ ଲକ୍ଷାଧିକ ଯାତ୍ରୀଙ୍କର ଦୃଷ୍ଟି ଆକର୍ଷଣ କରୁଥିବା ବେଳେ କଟକ ନଗରର ଉପକଣ୍ଠରେ ଥିବା ବିଡ଼ାନାସୀ ଗ୍ରାମ ବର୍ତ୍ତମାନ 'ବିଡ଼ାନାସୀ-ନୂତନ-କଟକ' ନାମରେ ଦିନକୁ ଦିନ ଉନ୍ନତି ପଥରେ ଆଗେଇ ବାରେ ଲାଗିଛି ।

ବିଧାତା ସୃଷ୍ଟି ମହାନ୍ ନଦୀ ମହାନଦୀ ଉତ୍କଳ ପ୍ରଦେଶର ଶୋଭାର ଭଣ୍ଡାର କହିଲେ ଅତ୍ୟୁକ୍ତି ହେବନି । ଏହାର ଯାଦୁକାରୀ ମନମୋହିନୀ ରୂପ ଲାବଣ୍ୟ କେବଳ ପ୍ରକୃତି କବି ରାଧାନାଥଙ୍କୁ ବିମୁଗ୍ଧ କରି ନଥିଲା ପ୍ରେମ ଓ ପ୍ରଣୟର ପୂଜାରୀ-କବି ମାୟାଧର ମାନସିଂହ ମଧ୍ୟ ଏହାର ପ୍ରାକୃତିକ ଶୋଭା—ସନ୍ଦର୍ଶନ କରି ଏହା ମଧ୍ୟରେ

ନିଜକୁ ହଜାଇ ଦେଇଥିଲେ । କବି ମାନସିଂହଙ୍କ "ମହାନଦୀରେ ଜ୍ୟୋତ୍ସ୍ନା ବିହାର" କବିତା ଏହାର ପ୍ରକୃଷ୍ଟ ପ୍ରମାଣ । ଏହି କବିତାରେ ଉତ୍କଳ ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନା ଓ ଦେଶପ୍ରୀତିର ମନୋହର ପ୍ରକାଶ ଚରମ ଊର୍ଦ୍ଧ୍ୱାଭିମୁଖୀ ହୋଇ ଏକ ଆଧ୍ୟାତ୍ମିକ ଉଚ୍ଛ୍ୱାସର ରୂପ ନେଇଛି । ଗୀତି କବିତାର ଆବେଗ, ପ୍ରବହମାନତା ଓ ଭାଷାର ଲାଳିତ୍ୟ କବିତାଟିକୁ ଅସାଧାରଣ ଶ୍ରୀମଣ୍ଡିତ କରିଛି ।

କୌଣସି ଏକ ଜ୍ୟୋତ୍ସ୍ନାବିଧୌତ ରଜନୀରେ କବି ମହାନଦୀରେ ନୌକା ବିହାରରେ ବାହାରି ଏହାର ପ୍ରାକୃତିକ ସୁଷମାରେ ଚମତ୍କୃତ ହୋଇ କବିତାର ପ୍ରଥମ ପର୍ଯ୍ୟାୟରେ ନିଜକୁ ଏକ ପ୍ରସ୍ତର ନିର୍ମିତ ଅନ୍ଧକାର ଶିଳାଗୃହବାସୀ ମନେ କରିଛନ୍ତି ।

ମହାନଦୀ କୂଳର ଅତୁଳ ପ୍ରାକୃତିକ ସମ୍ପଦ ଏବଂ ନୈସର୍ଗିକ ଶୋଭା ତାଙ୍କୁ ଏମିତି ବିସ୍ମୟ ବିଭୋର କରିପକାଇଛି ଯାହା ଫଳରେ ସେ ଉଚ୍ଛ୍ୱସିତ ହୋଇ ଗାଇ ଉଠିଛନ୍ତି—

"ଶିଳା ଗୃହ ଅନ୍ଧକାର ବାସୀ ମୁଁ ଜନନୀ
ଉତ୍କଳ, ନଥିଲି ଜାଣି, ଅଛୁଟି ତୋ'ପୁରେ ।
ଏମନ୍ତ ରୂପର ଲୀଳା, ନ ବାହୁ ତରଣୀ
ଆଜ ଏ ଜ୍ୟୋତ୍ସ୍ନାରେ ମିଳ ମହାନଦୀ ପୂରେ ॥
ଆହା କି ବିପୁଳ ଶୋଭା ଭାସେ ଆଖି ଆଗେ;
କେମନ୍ତେ ବର୍ଣ୍ଣିବି ମୋ'ର ମୁଗ୍ଧ ଅନୁଭବ !
ଚକ୍ଷୁ ମୋ'ର ଅନ୍ଧ ହୁଏ ଜ୍ୟୋଛନା ପରାଣେ,
ବାଣୀ ମୋ'ର ନାହିଁ ଫୁଟେ, ମାନ ପରାଭବ ।
× × ×
ଏ ବିରାଟ ଶବ ଗୃହେ ଅଛି ମୁଁ ପାନ
ମୁଗ୍ଧ ସମ ରହେ ଗୃହିଁ ମହା ମହିମାରେ,
ଭାବଇବା ହୋଇ ଏହି ଜ୍ୟୋତ୍ସ୍ନାରେ ପ୍ଳାନ
ଭୋଗନ୍ତି ଯେ ସୁଧା ଝରେ ଆଜ ଏତେ ଧାରେ ।"

କବି ଚନ୍ଦ୍ର ଚର୍ଚ୍ଚିତ ରଜନୀରେ ମହାନଦୀ ବକ୍ଷରେ ନୌକା ବିହାର ସମୟରେ ସାଂପ୍ରତିକ ଉତ୍କଳର ଦୁଃଖ ଦୁର୍ଦ୍ଦଶାରେ ଭାଙ୍ଗି ପଡ଼ି କହିଛନ୍ତି, ଉତ୍କଳର ପ୍ରାକୃତିକ ଶୋଭା ଅତ୍ୟନ୍ତ ମନୋରମ ଓ ଚିତ୍ତାକର୍ଷକ । ତା'ର ବଲି, ବଣ, ନଦୀ, ପର୍ବତ ଓ ଗିରି କନ୍ଦରରେ ଶୋଭାର ତରଙ୍ଗ ଖେଳୁଛି,'ଗଙ୍ଗାସମ ମହାନଦୀ ପ୍ରବାହିତ ହେଉଛି । ତଥାପି ଏ ଦେଶ ଆଜ ହତଶ୍ରୀ ହୋଇ ଚିର ଦାରିଦ୍ର୍ୟ ଭୋଗ କରୁଛି । ଉତ୍କଳୀୟମାନେ ଦାରିଦ୍ର୍ୟର କଷାଘାତରେ ବଡ଼ ଦୁଃଖରେ କପରି କାଳାତିପାତ କରୁଛନ୍ତି ସେ ବିଷୟରେ କବି କହି ଚାଲିଛନ୍ତି—

"ହାୟରେ ଉତ୍କଳ ଭୂମି, ପ୍ରକୃତି ସୁନ୍ଦର,
ମନ୍ଦାକିନୀ ସମ ନଦୀ, ଶିବ ସମ ଗିରି,
କାନନେ କେଦାରେ ଲକ୍ଷ ଶୋଭାର ବିହାର,
ଥାଉଁ ତୋ'ର, କହ କିମ୍ପା ଏତେ ହତଶିରି ?
ଏ ସ୍ୱର୍ଗ ସୁଷମା ଯା'ର, କରିବି ବିଶ୍ୱାସ
କେମନ୍ତ କହିଲେ ତା'ର ଅନ୍ତର ଅଭାବ ?"

ମହାନଦୀରେ ଜ୍ୟୋତ୍ସ୍ନା ବିହାର ସମୟରେ ଉତ୍କଳର ଅତୀତ ଗୌରବ ସାକ୍ଷୀ ବାରବାଟୀ ଦୁର୍ଗର ନବତଲ ପ୍ରାସାଦ କବିଙ୍କ ମାନସ ପଟରେ ଉଦ୍‌ଭାସିତ ହୋଇ ଉଠିଛି । ଏଣୁ କବି ଅତ୍ୟନ୍ତ ଆତ୍ମ ବିଭୋର ହୋଇ ଲୁପ୍ତ ଗୌରବ, ରାଜା, ରାଣୀ, ବୀର, ସୈନିକ, ବୋଇତ, ବଣିକ ମାନଙ୍କ କଥା ଚିନ୍ତାକରି କହୁଛନ୍ତି—

"ଚିରଦିନ ପାଇଁ ସେ କି ଯାଇଛନ୍ତି ଚାଲି
ନ ଫେରିବେ ରାଜାରାଣୀ ନ ଫେରିବେ ବୀରେ,
ବୋଇତ ବନ୍ଧାଣ ଲାଗି ଏ ତଟିନୀ ବାଲି
ନାଗରିକା ପଦପ୍ରାନ୍ତ ନ ଚୁମ୍ବିବ ଧୀରେ ?"

"ମହାନଦୀରେ ଜ୍ୟୋତ୍ସ୍ନା ବିହାର"—କବିତାର ଶେଷ ପର୍ଯ୍ୟାୟରେ କବିଙ୍କ ଜୀବନ-ଦର୍ଶନ ପ୍ରତିଫଳିତ ହୋଇଛି । ପୃଥିବୀ କ୍ଷଣ ଭଙ୍ଗୁର ଜାଣି ସେ ଜ୍ୟୋତ୍ସ୍ନା-ବିହାରରୁ ପ୍ରତ୍ୟାବର୍ତ୍ତନ ପାଇଁ କୁଣ୍ଠାବୋଧ କରିଛନ୍ତି । ତାଙ୍କ ଦୃଷ୍ଟିରେ ପ୍ରକୃତି କୋଳରେ ସେ ସତ୍ୟ, ଶିବ, ସୁନ୍ଦର ପରମାତ୍ମାଙ୍କର ସାନିଧ୍ୟ ଲାଭ କରିଛନ୍ତି । ଶେଷରେ କବି ବନ୍ଧୁଙ୍କୁ ସମ୍ବୋଧନ କରି ଡାକ ସେହି ଖୋଲା ଆକାଶ ତଳେ ମହାନଦୀ ଗର୍ଭସ୍ଥ ତରଣୀ ଉପରେ ବସି ଅତୀତର ମୂକସାକ୍ଷୀ ବାରବାଟୀକୁ ଅନୁଭବ କରିବାକୁ ଇଚ୍ଛା ପ୍ରକାଶ କରିଛନ୍ତି । ତାଙ୍କର ଆକାଙ୍‌କ୍ଷା ଥିଲା ସେହି ରଜନୀ ଦୀର୍ଘସ୍ଥାୟୀ ହେବାକୁ । ସେ ମୃତ୍ୟୁ ପର୍ଯ୍ୟନ୍ତ ମହାନଦୀ ବକ୍ଷର ତରଣୀ ଉପରେ ବସିରହି ମାୟା ମମତାର ଅନ୍ଧକାର ମଧ୍ୟକୁ ଫେରିବାକୁ ଇଚ୍ଛା ନ କରି ସତ୍ୟ-ଶିବ-ସୁନ୍ଦର ପରମେଶ୍ୱରଙ୍କୁ ଧ୍ୟାନ କରିବାକୁ ଇଚ୍ଛା କରି ଗାଇ ଉଠିଛନ୍ତି—

"ଫେରିବା କହୁଛ ବନ୍ଧୁ, ପୁଣି ଅନ୍ଧକାରେ ?
ଫେରିବାକୁ ହେବ ସତେ ! ହାୟ ଏ ଜୀବନ !
ଅବସର ନାହିଁ ମିଳେ କ୍ଷଣେ ଭୁଲିବାରେ
ଜୀବନର ହାହାକାର, ପ୍ରାଣର ଦହନ ।

× × ×

ସେ ଯେ ସତ୍ୟ, ଶିବ ସେହି, ଏକା ସେ ସୁନ୍ଦର,
ଭୂମା ସେ ରହିଛି ପୂରି ରେଣୁ ରେଣୁ ଭେଦି,

ଅନନ୍ତ ଲୀଳାର ହେତୁ, ଅସୀମ ସୁନ୍ଦର
କ୍ଷଣକେ ସୃଜେ ଯେ, ତା'ର ମହା-ପୂଜା ବେଗ
ବନ୍ଦ୍ୟ ହେ, ପାଇଛୁ ଆଜ ଏ ଆକାଶ ତଳେ,
ମୋ' ଜାତି ଅଜ୍ଞାତ-ସାକ୍ଷୀ ଏ ନଗ୍ନ ପୁଳିନେ
ଜ୍ୟୋତ୍ସ୍ନାର ଏ ମହାଭୋଜ୍ୟ, ଏ ତରଣୀ ପରେ
ଜାନୁପାତି ବନ୍ଧୁ, ତା'ରେ ଯେନ, ଏ ଜୀବନେ ।
ଇଚ୍ଛା ମୋ' ହୁଅନ୍ତା ଏହି ନିର୍ମଳା ରଜନୀ
ଅସର, ମୁଁ ଖୋଜୁଥା'ନ୍ତି ସତ୍ୟ ଶୁଭ୍ର ତା'ରେ
ଏ ସୁନ୍ଦର ଜ୍ୟୋତ୍ସ୍ନା ତଳେ, ବାହି ଏ ତରଣୀ
ମୃତ୍ୟୁ ଯାଏ, ନ ଫେରି ସେ ମହା-ଅନ୍ଧକାରେ ।"

ରୋମାଣ୍ଟିକ କବି ରାଧାନାଥଙ୍କ 'ନନ୍ଦିକେଶ୍ୱରୀ' କାବ୍ୟ ତାଙ୍କ ସୃଷ୍ଟି ସମ୍ଭାର ମଧ୍ୟରୁ ଅନ୍ୟତମ । ଉତ୍କଳର ପ୍ରକୃତି ଚିତ୍ରଣ, ବୀର ପୁରୁଷମାନଙ୍କର ଜାତୀୟ ଚେତନା, ମହାନଦୀ ଓ କାଠଯୋଡ଼ିର ପୁନଃ ପୁନଃ ବିଭବ ବର୍ଣ୍ଣନା ସହିତ କବି ରାଜନନ୍ଦିନୀ ନନ୍ଦିକାର ପ୍ରଣୟ ସ୍ନିଗ୍ଧ କରୁଣ କାହାଣୀ ଓ ମୃତ୍ୟୁ ନନ୍ଦିକେଶ୍ୱରୀ କାବ୍ୟର ପ୍ରଧାନ କଥାବସ୍ତୁ । କାବ୍ୟର ପ୍ରଥମ ସର୍ଗରେ ଗୌରଗଙ୍ଗଙ୍କୁ ଗଙ୍ଗା ଦର୍ଶନ ଦେବା ସମୟରେ ଯେପରି ଭାବରେ ପ୍ରାକୃତିକ ଦୃଶ୍ୟ ସୃଷ୍ଟିର କଳ୍ପନା କବିଙ୍କ ଲେଖନୀରେ ଆତ୍ମପ୍ରକାଶ କରିଛି ତାହା ଅନବଦ୍ୟ ଓ ଅଲୌକିକ । କବିଙ୍କର ସୌନ୍ଦର୍ଯ୍ୟ ପ୍ରିୟତା ଏଠାରେ ବିଶେଷ ଭାବରେ ପ୍ରକାଶ ପାଇଛି । ଗଙ୍ଗାଙ୍କ ମୁଖରେ କବି ମହାନଦୀ ଏବଂ ଉତ୍କଳର ଅନ୍ୟାନ୍ୟ ନଦନଦୀର ବର୍ଣ୍ଣନା ଯେପରି ଭାବରେ ସଂଯୋଜିତ କରିଅଛନ୍ତି ତହିଁରୁ ଉତ୍କଳର ପ୍ରାକୃତିକ ବିଭବ ସହଜେ ଅନୁମେୟ । କବିଙ୍କ ଦୃଷ୍ଟିରେ ଗଙ୍ଗା ଏବଂ ମହାନଦୀ କିପରି ଅଭିନ୍ନ, ସୁକାନ୍ତ ମହର୍ଷିଙ୍କ ସ୍ତବରେ ତୁଷ୍ଟି ହୋଇ ଗଙ୍ଗା କିପରି ମହାନଦୀ ସୃଷ୍ଟି କଲେ ଏବଂ ସବଶେଷରେ ସେହି ମହାନଦୀର ପଯ୍ୟର ବନ୍ଦନା କରିବାକୁ ଗଙ୍ଗା କିପରି ଗୌରଗଙ୍ଗଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ସେ ବିଷୟରେ କବି ବର୍ଣ୍ଣନା କରିଛନ୍ତି—

"ଭବେ ଏହାଙ୍କର ନାମ ମହାନଦୀ
ଉତ୍କଳ-ଭୁବନେ ଏହି ବିଖ୍ୟାତି ।
ନୀଳ ସାଗରର ଫେନିଳ ତରଙ୍ଗ
ଏହି ଶୈଳପଦେ ହେଉଥିଲା ଭଙ୍ଗ ।
ମହାନଦୀ ଲୀଳା ନିମନ୍ତେ ଜୀର୍ଥେଶ
ଛାଡ଼ି ଦେଇଛନ୍ତି ଏହି ପୂର୍ବ ଦେଶ ।
ଏହି ମହାନଦୀ ପ୍ରସାଦେ କେବଳ
ଜନ୍ମିଅଛି ଶସ୍ୟ-ଶ୍ୟାମଳ ଉତ୍କଳ ।

ମହେନ୍ଦ୍ରୁ ହେଉ ମହାଦେଶ-ଦେବ
ମିଳନ୍ତେ ଅହିଏ ସକଳ ସମ୍ପଦ ।
ତୁଷ୍ଟ ହୋଇ ମୁହିଁ ସୁକାନ୍ତଙ୍କ ସ୍ତବେ
ଦେଖିଲଇଁ ଏହି ଦର୍ଶୀକି ପୂରବେ ।
କେତେ ଏହାଙ୍କର ମହିମା ଅଦ୍ଭୁତ
ଶୁଣ ଏହାଙ୍କର ମର୍ଯ୍ୟରେ ଅମୃତ ।
ଯା'ଙ୍କର-ନିବାସ ମଣି ମହୋଦ୍ରବ
ବସନ୍ତ ଶଇଳେ ଶ୍ରୀ ମଳମାଧବ ।
ବସନ୍ତ ଉତ୍ତର ତଟେ ଭଟ୍ଟାରିକା
ଦକ୍ଷିଣେ ନାରଜ-ଅର୍ଚ୍ଚିତା ଚର୍ଚ୍ଚିକା ।
ସ୍ରୋତ ଶୈଳ ଶୃଙ୍ଗେ ଶଶାଙ୍କ-ଶେଖର
ସିଂହନାଥ ପୁଣି ଧବଳ ଈଶ୍ୱର ।
ଯେମନ୍ତ ଯେ କାଳେ ସିଂହୁ ଭିକ୍ଷାମତ
ଜ୍ୟୋତିର୍ମୟ ବର୍ଣ୍ଣେ କୁମାରୀ ବସନ୍ତି ।

× × ×

ନିରତେ କରିବୁ ଦେବୀଙ୍କର ଧ୍ୟାନ
ମୋଠାରୁ ଦେବୀଙ୍କୁ ନ ଜାଣିବୁ ଆନ ।
ବ୍ରାହ୍ମୀ, ବୈତରଣୀ, ସୁବର୍ଣ୍ଣ ଚଟିଣ
ବଲାଙ୍ଗୀ ଏ ସ୍ଥିର ଦେବୀଙ୍କ ଭଗିଣ ।
ନନ୍ଦତ ଯା ହୃଦେ ପୂର୍ଣ୍ଣ ଇନ୍ଦୁ-ପ୍ରଭା
ମହାଦେବୀ ଦେବ-ଯଜନ-ସମ୍ଭବା ।
ବସନ୍ତି ଯା'ଙ୍କରେ ବିରଜା ସୁନ୍ଦରୀ
ମୋର ସ୍ରୋତ-ସ୍କନ୍ଧେ ଯଥା ଝଙ୍କେଶ୍ୱରୀ !
ଗୋନାସିକା ଗିରି-ପୂତ ହୃଦୁ ଜାତ
ଯାର ସ୍ରୋତ, ମହା ବଇତୁ ଆଖ୍ୟାତ ।
ମହାବିଷ୍ଣୁ-ସ୍ନାନେ ପୁଣ୍ୟ ଯାର ନୀର
ପରଖା ଉତ୍କଳେ ଆଦ୍ୟ ନଗରୀର ।
ସେହି ବୈତରଣୀ ଅଗ୍ରତେ ଭୂମ୍ବର
ବନ ବସ୍ତ୍ର, ଛବେ ଦେବୀଙ୍କ ପମ୍ବୁର ।"

ସୁକାନ୍ତ ମହର୍ଷିଙ୍କ ତପ ଫଳରେ ମହାନଦୀର ସୃଷ୍ଟି । ଏହି ମହାନଦୀକୁ ଉତ୍କଳର ଗଙ୍ଗା ଆଖ୍ୟା ଦିଆ ଯାଇଥାଏ । ଏହାର ତଟ ଦେଶରେ ଭିନ୍ନ ଭିନ୍ନ ମନ୍ଦିର ମାଳମାଳ ଯହର ଶତାବ୍ଦୀ ବ୍ୟାପୀ ସଂସ୍କୃତିର ପ୍ରତିନିଧିତ୍ୱ କରୁଥାଏ । ମହାନଦୀ ମଧ୍ୟ ପ୍ରଦେଶରୁ

ଦୃଷ୍ଟି ହୋଇ ଉତ୍କଳ ମାଟିକୁ ଚିର ଶସ୍ୟ ଶ୍ୟାମଳା କରି ଶେଷରେ ବଙ୍ଗୋପ ସାଗରରେ ମିଶି ନିଜକୁ ଧନ୍ୟ ମନେ କରିଥିବାରୁ ଉତ୍କଳବାସୀ ଏ ମାଟିର ସନ୍ତାନ ହୋଇ ଅନୁରୂପ ନିଜର କର୍ମଦ୍ୱାରା ପ୍ରତ୍ୟେକଙ୍କୁ ହସେଇ ମଜେଇ ଶେଷରେ ସେହି ବିଶ୍ୱନିୟନ୍ତାଙ୍କ ଚରଣ ଦ୍ୱନ୍ଦ୍ୱରେ କପରି ମିଶିଯାଇ ନିଜ ଜୀବନର ସାର୍ଥକତାକୁ ପ୍ରତିପାଦନ କରି ପାରିବେ ସେଥିପାଇଁ ମହାନଦୀର ଆଶୀର୍ବାଦ ଭିକ୍ଷାକରି ସବୁଜଯୁଗର କବି ଶ୍ରୀ ଶରତ ଚନ୍ଦ୍ର ମୁଖାର୍ଜୀ ଲେଖିଛନ୍ତି—

"'ଉତ୍କଳ ଗଙ୍ଗା ମା' ତୁହି ମହାନଦି
ସର୍ବ ସୁଖ ପ୍ରଦାୟିନୀ,
ଉତ୍କଳର ପ୍ରାଣ ଉତ୍କଳର ଧନ
ଶସ୍ୟ ବର୍ଦ୍ଧନ କାରିଣୀ ।
କେତେ କେତେ ଉଚ୍ଚ ଦେବତା ଦେଉଳ
ବିରାଜେ ତୋର ତଟରେ,
କେତେ ଯେ ବିଷମ ସନ୍ତର ଗାମିନୀ
ଲୁକ୍‌କାୟିତ ତୋ ଗର୍ଭରେ ।
ସୁକାନ୍ତ ଋଷିଙ୍କ ତପ ପ୍ରଭାବରୁ
ଉତ୍କଳେ ତୋର ବସନ୍ତି,
ତୋ ଯୋଗୁଁ ଆଜ ମା ଉତ୍କଳ ସନ୍ତାନ
ଚିରସୁଖ ଭୁଞ୍ଜୁଛନ୍ତି ।
ତୋ ଯୋଗୁଁ ଉତ୍କଳ ସର୍ବସ୍ୱ ଛବିଳ
ନାନା ସୁଦୃଶ୍ୟ ରଞ୍ଜିତ,
ଆମ୍ଭ ଭାଗ୍ୟ ଫଳେ ପତିତ ପାବନି
ହୋଇଛୁ ତୋତେ ପ୍ରାପତ ।
ସର୍ବଦା ତଟିନୀ କଳ କଳ ରବେ
ହେଉ ଅଛୁ ଅଗ୍ରସର,
ଭେଟିବାରୁ ସେହି ସୁଦୂର ପ୍ରଦେଶ
ସ୍ଥିତି ନୀଳ ରତ୍ନାକର ।
ଶିଖାଅ ତୁହି ମା ଉତ୍କଳ ସନ୍ତାନେ
ହୋଇବାକୁ ତୋହ ସରି,
ତୁଅନୁ ଆଗୁଆ ପାଇବାକୁ ସେହି
ଶାଶ୍ୱତ ଚରଣ ତରୀ ।
କର ମା' ଉତ୍କଳେ ଆଶୀର୍ବାଦ ତୁହି
ହେଉ ଦୁଃଖିନୀ ଜନନୀ,
ଶ୍ୟାମଳ ଶସ୍ୟରେ ଚିର ବିଭୂଷିତ
ପୁଣି ବୀର ପ୍ରସବିନୀ ।"

ମହାନଦୀ ଓ କାଠଯୋଡ଼ି ନଦୀ ସମ୍ପର୍କରେ ଆଲୋଚନା କଲା ବେଳେ ପୁଣ୍ୟତୋୟା ପ୍ରାଚୀ ନଦୀକୁ ଉପେକ୍ଷା କରାଯାଇ ନପାରେ । ଡାକ୍ତର ରାଧାଚରଣ ପଣ୍ଡାଙ୍କ ମତରେ ଏହି ନଦୀ ପୁରୀ ଜିଲ୍ଲା ବାଲିଅନ୍ତା ନିକଟ ଖଡନପଡ଼ା ଗ୍ରାମର ଦୁଇ ମାଇଲ ଦୂରରେ କୁଆ ଖାଇର ଉତ୍ତର ପୂର୍ବରୁ ବାହାରି ଦକ୍ଷିଣ ପୂର୍ବ ଦିଗକୁ ପ୍ରବାହିତ ହୋଇ ପୁରୀ ଜିଲ୍ଲା କାକଟପୁର ଥାନାର କେଉଟ ଜଙ୍ଗା ନିକଟରେ ବଙ୍ଗୋପସାଗରରେ ପଡ଼ିଅଛି । ଏହାର ଦୈର୍ଘ୍ୟ ୩୦ ମାଇଲ ଓ ପ୍ରସ୍ଥ ୪୦/୫୦ ହାତ । ଏହା ତୀରରେ ପୁରାଣ ପ୍ରସିଦ୍ଧ ତୀର୍ଥସ୍ଥାନ ଓ ଦେବ ମନ୍ଦିରମାନ ରହିଅଛି ।

ରାମାୟଣ ବର୍ଣ୍ଣିତ ଦଣ୍ଡକାରଣ୍ୟ ଏହା କୂଳରୁ ଆରମ୍ଭ ହୋଇଥିବାର କଥିତ । ଏହା ତୀରସ୍ଥ ନିଆଳି ନିକଟରେ ପାଣ୍ଡବ ତୀର୍ଥରେ ପ୍ରତିବର୍ଷ ମକର ଶୁକ୍ଳ ଏକାଦଶୀ ଦିନ ଗୋଟିଏ ମେଳା ହୁଏ । ଏହା ତୀରସ୍ଥ ତୁଳସୀପୁର ଗ୍ରାମ ପାଖରେ ଚଉରାସୀ ବୋଲି ଗୋଟିଏ ଗ୍ରାମରେ ପ୍ରାଚୀନ ରାଜଧାନୀର ଭଗ୍ନାବଶେଷ ଦେଖାଯାଏ । ଏହା ପ୍ରାଚୀନ ଉତ୍କଳର ରାଜଧାନୀ ତୋଷାଳୀ ବୋଲି ଅନୁମାନ କରାଯାଏ । ପୂର୍ବେ ଏ ନଦୀ ସ୍ରୋତସ୍ୱତୀ ଥିଲା ଏବଂ ଏଥିରେ ନୌକାଦ୍ୱାରା କୋଣାର୍କ ମନ୍ଦିରର ପଥରମାନ ସୁଦୂର ଖୋରଧା ଓ ନୀଳ ଗିରିରୁ ଅଣା ଯାଇଥିଲା । କୋଣାର୍କ ମନ୍ଦିରରେ କାମ କରୁଥିବା ୧୨୦୦ ବଢ଼େଇ ଏହି ନଦୀ ତୀରସ୍ଥ ଭଇଁଚଗରଡ଼ ଗ୍ରାମରେ ରହି କାର୍ଯ୍ୟ କରୁଥିଲେ । ଅକ୍ଷୟତୃତୀୟା ଦିନ ଏହିଠାରେ ବଢ଼େଇମାନଙ୍କର ବାର୍ଷିକ ମେଳା ହୁଏ ।

ପ୍ରାଚୀ ନଦୀ ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ ଥିଲେ ମଧ୍ୟ କୌଣସି ଏକ ଲୋକ-ଗୀତର କେତୋଟି ପଂକ୍ତିରୁ ଜଣାପଡ଼େ । ବୈତରଣୀ, ଗଙ୍ଗା ଓ ଗୋଦାବରୀ ପ୍ରାଚୀପରି ପବିତ୍ର ଓ ସ୍ୱଚ୍ଛ ହୋଇ ନ ପାରିବାରୁ ରାଜକୁମାର ରୂପକ ସମୁଦ୍ର ପ୍ରାଚୀକୁ ପାଟରାଣୀ କରିଥିଲେ । ଅର୍ଥାତ୍ ପ୍ରାଚୀ ଭାଗ୍ୟରେ ସମୁଦ୍ର ମିଳନ ଘଟିଥିଲା । କିନ୍ତୁ ବୈତରଣୀ, ଗଙ୍ଗା ଓ ଗୋଦାବରୀ ପରେ ଦୁର୍ଗାଙ୍କୁ କଠୋର ତପସ୍ୟା କରି ସମୁଦ୍ର ରୂପକ ସ୍ୱାମୀର ସାନ୍ନିଧ ଲାଭ କରିଥିବାରୁ ସେ ସମ୍ବନ୍ଧରେ କୁହାଯାଇଛି—

"ପୁଣ୍ୟ ଗିରିରାଜ ଗୋନାସିକାସୁତା ସୁକୁମାରୀ ବୈତରଣୀ
ସଖୀ ଗୋଦାବରୀ ମନ୍ଦାକିନୀ ସାଥେ ହେଲେ ସାଗର ଗାମିନୀ ।
ରୂପ ବିଦ୍ୟା ଆଉ ବିଭବରେ ଜେମା ତିନହେଁ ତିନିକ ବଳି,
ଏତେ ତପକରି କ୍ଷୀଣ କଲେ ତନୁ ହେଲେ ନାହିଁ ପ୍ରାଚୀ ସରି ।
ପିତୃହୀନା ଦୀନା ପରାଚୀ ଲଭିଲା ସାଗର ପରିଏ ପତି,
ରାଜାର ଦୁଲଣୀ ହେଲେ ଅଭାଗିନୀ ସାହା ହୁଅ ଭଗବତୀ ।"

କଟକର ଭୌଗଳିକ ସ୍ଥିତି ସମ୍ବନ୍ଧରେ ଶତ୍ରାକରି ମହାନଦୀର ଆଲୋଚନା ପରେ କାଠଯୋଡ଼ି କଥା ସ୍ୱତଃ ପ୍ରବୃତ୍ତ ଭାବେ ମନମଧ୍ୟକୁ ଆସେ । ମହାନଦୀ ସମ୍ପର୍କରେ ଅନ୍ୟ ବହୁତେ ଆଲୋଚନା କରାଯାଇଥିଲେ ମଧ୍ୟ କାଠଯୋଡ଼ି ସମ୍ବନ୍ଧରେ ସେମିତି କିଛି

ଆଶାନୁରୂପକ ତଥ୍ୟ ଦୃଷ୍ଟି ଗୋଚରକୁ ଆସେନାହିଁ । କାଠଯୋଡ଼ି ହେଉଛି ମହାନଦୀର ମୁଖ୍ୟ ଶାଖା । କଟକର ପଶ୍ଚିମ ଦିଗ ନରାଜଠାରୁ କାଠଯୋଡ଼ି ଜନ୍ମ ନେଇ ଅଳ୍ପ ବାଟ ପରେ ନିଜ ଦକ୍ଷିଣାଭିମୁଖୀ କୁଆଖାଇ ଶାଖାକୁ ସୃଷ୍ଟି କରିଅଛି । କିନ୍ତୁ କୁଆଖାଇ ମୁଣ୍ଡରେ ବାଲିର ସ୍ୱଭାବିକ ବାଡ଼ଟିଏ ପଡ଼ିଥିବା କାରଣରୁ ବର୍ଷାଦିନ ଅପେକ୍ଷା ଅନ୍ୟ କୌଣସି ସମୟରେ କୁଆଖାଇ କାଠଯୋଡ଼ିର ଜଳ ବିଶେଷ ଭାବରେ ପାଏ ନାହିଁ । କୁଆଖାଇ ପୁରୀ ଜିଲ୍ଲାରେ ପଶି ଦୟା, କୁଶଭଦ୍ରା, ଭାର୍ଗବୀ ଆଦି ନଦୀକୁ ଜଳ ଯୋଗାଉ ଅଛି ।

ଏଣେ କାଠଯୋଡ଼ି କଟକ ଜିଲ୍ଲା ମଧ୍ୟଦେଇ ଯାଇଅଛି ଏବଂ କଟକର ଦକ୍ଷିଣକୁ ସିଡ଼ୁଆ ଶାଖା ନଦୀକୁ ସୃଷ୍ଟି କରିଛି । ଏହି ସିଡ଼ୁଆ ପୁଣି ଅଳ୍ପ ବାଟଦେଇ କାଠଯୋଡ଼ି ସହିତ ମିଳିତ ହୋଇଛି । ଏହାର କିଛି ତଳକୁ କାଠଯୋଡ଼ିରୁ ଦେବୀ ନଦୀ ସୃଷ୍ଟି ହୋଇଛି । ଏଠାରେ କାଠଯୋଡ଼ିର ସମସ୍ତ ଜଳ ଦେବୀ ନଦୀକୁ ଚାଲିଯାଏ । କାଠ-ଯୋଡ଼ିର ଶଯ୍ୟା ଉପରେ ଦେବୀ ନଦୀର ପଶ୍ଚିମ ବନ୍ଧ ବାନ୍ଧ ସୃଷ୍ଟି କରିବା ଫଳରେ କାଠଯୋଡ଼ି ଏହିଠାରୁ ବର୍ଷା ଦିନ ଛଡ଼ା ଅନ୍ୟ ସମୟରେ ଶୁଷ୍କ ହୋଇପଡ଼େ । ଦେବୀ ନଦୀ ଅନେକ ଶାଖାନଦୀ ସୃଷ୍ଟି କରିଛି । କିନ୍ତୁ ଏହି ଶାଖାମାନ ଅଳ୍ପବାଟ ନିଜର ସ୍ୱାତନ୍ତ୍ୟ ରକ୍ଷାକରି ପୁଣି ଦେବୀନଦୀ ସହିତ ମିଳିତ ହୋଇଛନ୍ତି ।

କାଠଯୋଡ଼ି ବା ଦେବୀ ନଦୀରୁ ଯେତେଗୁଡ଼ିଏ ଶାଖାନଦୀ ବାହାରିଛନ୍ତି, ସେ ସମସ୍ତ କେବଳହିଁ ମା'ର ଡାହାଣ ପାଖ ଅର୍ଥାତ୍ ଦକ୍ଷିଣ ଦିଗକୁହିଁ ମୁହିଁ କରି ବହି ଯାଇଛନ୍ତି । କେବଳ 'ଅଳକା' ପରି କେତେକ ଅନାମଧେୟ ନଦୀ କ୍ଷେତ୍ରରେ ଏହା ବ୍ୟତିକ୍ରମ ଦେଖା ଦେଇଛି । ଦେବୀନଦୀ ପୁରୀ ଜିଲ୍ଲାର ଉତ୍ତର-ପୂର୍ବ କୋଣରେ ଅସ୍ତରଙ୍ଗ ପାଖରେ ବଙ୍ଗୋପ ସାଗରରେ ପଡ଼ିଛି । କାଠଯୋଡ଼ିର ଶାଖାନଦୀର ନାମ କାହିଁକି ଦେବୀନଦୀ ହୋଇଛି ସେ ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ ଶୁଣାଯାଏ ।

ଦେବୀ ନଦୀର କିମ୍ବଦନ୍ତୀ ପରି କାଠଯୋଡ଼ିର କିମ୍ବଦନ୍ତୀ ମଧ୍ୟ ରହିଛି । କଟକ-ଠାରୁ ପ୍ରାୟ ୭ ମାଇଲ ଦୂର ନରାଜ ଓ ମୁଣ୍ଡିମାଳ ଗ୍ରାମ ସନ୍ଧିରୁ କାଠଯୋର ସମୟକ୍ରମେ ସମ୍ଭବତଃ କାଠଯୋଡ଼ିରେ ପରିଣତ ହୋଇଛି ଏବଂ ଏହି ମୁଣ୍ଡିମାଳ ଗ୍ରାମ ହିଁ ଏତ ବାଇଧର ମୁଣ୍ଡିର ଜନ୍ମସ୍ଥାନ ହୋଇପାରେ । କାଠଯୋଡ଼ି ପ୍ରଥମେ ଏକ କ୍ଷୁଦ୍ରାବୟବ ନଦୀ ଥିବାର ଅନୁମାନ କରାଯାଏ । କିନ୍ତୁ କାଠଯୋଡ଼ି କ୍ରମଶଃ ଆକାରରେ ବଢ଼ି ମହାନଦୀର ଅଧିକ ଜଳକୁ ଗ୍ରହଣ କଲା । ନରାଜଠାରେ ୧୮୬୦ରୁ ୧୮୬୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏକ ଆନିକଟ ନିର୍ମିତ ହେବା ଫଳରେ କାଠଯୋଡ଼ିକୁ ଆସିବା ଜଳର ପରିମାଣ ନିୟନ୍ତ୍ରଣ କରାଯାଉଛି । କାଠଯୋଡ଼ି କଟକ ସହରର ଦକ୍ଷିଣ ଦିଗରେ ବହି ଯାଉଥିବାରୁ ଏବଂ କଟକ ସହରର ଖାଲୁଆ ଅଂଶ ଅପେକ୍ଷା କାଠଯୋଡ଼ିର ଶଯ୍ୟା ଅନେକ ଉଚ୍ଚରେ ଥିବାରୁ କାଠଯୋଡ଼ିର ବନ୍ୟା ଦ୍ୱାରା କଟକ ସହର ଅଧିବାସୀଙ୍କର ବର୍ଷକୁ ବର୍ଷ ବହୁ କ୍ଷୟକ୍ଷତି ଘଟୁଥିଲା । କିନ୍ତୁ ଏ ଦୁଃଖ କେବଳ ବାଇମୁଣ୍ଡିଙ୍କ ଯୋଗୁଁ ହିଁ ଦୂର ହୋଇଥିଲା ।

ସେଇଥିପାଇଁ ସାଧାରଣରେ କୁହାଯାଇଥାଏ "କଟକ ଚନ୍ଦ୍ରା ବାଇମୁଣ୍ଡିକ" । ଗତ ଦଶମ ଶତାବ୍ଦୀରେ ଓଡ଼ିଶାର ମଉଡ଼ମଣି ମର୍କତ କେଶରୀ ରାଜୁତି କରୁଥିଲେ । ଥରେ ସେ ହସ୍ତୀ—ଉପରେ ଅତି ଆଡ଼ମ୍ବର ସହକାରେ ପଟୁଆର ସଜାଇ ନିଜର ସୈନ୍ୟ, ସାମନ୍ତ ପାତ୍ର, ମନ୍ତ୍ରୀମାନଙ୍କୁ ସଙ୍ଗରେ ଧରି ସହର ପରିକ୍ରମା କରୁଥିଲେ ।

ଓଡ଼ିଶାର ମଉଡ଼ମଣି ମର୍କତ କେଶରୀ ହସ୍ତୀ ପୃଷ୍ଠରେ ସ୍ୱୟଂ ବିଜେ ହୋଇଥିବାରୁ ଅସଂଖ୍ୟ ନରନାରୀଙ୍କ ଗହଳରେ ରାସ୍ତାଘାଟ ପୂରି ଉଠୁଥିଲା । ହେଲେ କଟକ ସହର ଦୁଃଖ ଦୁର୍ଦ୍ଦଶା ବିଷୟ ତାଙ୍କ ସମ୍ମୁଖରେ ଉପସ୍ଥାପିତ କରିବାକୁ କେହି ସାହସ କରି ନ ଥିଲେ । ଏହି ସମୟରେ ପକ୍ୱ କେଶ ବିଶିଷ୍ଟ ଜରାଜୀର୍ଣ୍ଣ ଅବସ୍ଥାରେ ଖୋଲା ଦେହରେ ବାଇଧର ମୁଣ୍ଡି ଅର୍ଥାତ୍ ବାଇମୁଣ୍ଡି ନାମକ ଜଣେ ବୃଦ୍ଧ ହଠାତ୍ ରାଜାଙ୍କ ପଟୁଆର ଆଗରେ ସାହସର ସହିତ ଛିଡ଼ାହୋଇ ଥରି ଥରି ହାତରେ ରାଜାଙ୍କୁ ପ୍ରଣାମ ଜଣାଇ କଟକ ସହରର ଦୁଃଖ ଦୁର୍ଦ୍ଦଶା ବର୍ଣ୍ଣନା କରିଥିଲେ ।

ସେ କହିଥିଲେ—କାଠଯୋଡ଼ି ନଦୀର ବନ୍ୟା ଦ୍ୱାରା କଟକ ସହରର ଯେଉଁ ଅପୂରଣୀୟ କ୍ଷତି ଘଟୁଛି ତାହାର ଯଦି ଉପଯୁକ୍ତ ପ୍ରତିକାର ଆପଣଙ୍କ ଦ୍ୱାରା ଆଜଠାରୁ ନ କରାଯାଏ ତାହାହେଲେ ଭବିଷ୍ୟତରେ ଇତିହାସ ପୃଷ୍ଠାରେ କଟକର ନାମ ମିଳିପାରେ କିନ୍ତୁ ଭୂଗୋଳରେ କେବେହେଲେ ତା'ର ନାମ ରହିବ ନାହିଁ ଅର୍ଥାତ୍ କଟକର ଭୌଗୋଳିକ ପରିସ୍ଥିତି ଯେ ସବୁଦିନ ପାଇଁ ମହାନଦୀ ଓ କାଠଯୋଡ଼ି ନଦୀ ଗର୍ଭରେ ନିଶ୍ଚିତ ଭାବେ ବିଲୀନ ହୋଇଯିବ ଏଥିରେ ସନ୍ଦେହର ଅବକାଶ ନାହିଁ । ବାଇମୁଣ୍ଡିର ଆକୁଳ ନିବେଦନ କ'ଣ ଥିଲା ଏବଂ ଏ ଆକୁଳ ନିବେଦନକୁ ରାଜା ମର୍କତକେଶରୀ ପ୍ରତ୍ୟାଖ୍ୟାନ କରିବା ପରିବର୍ତ୍ତେ ସେସବୁକୁ କପରି ହୃଦୟର ସହିତ ବିଚାର କରି ଶେଷରେ ବାଇମୁଣ୍ଡିକୁ ପ୍ରଶଂସା କରିବା ସହିତ କଟକ ସହରର ଦୁଃଖ ଦୁର୍ଦ୍ଦଶାକୁ ସବୁଦିନ ପାଇଁ ମୋଚନ କରିବାକୁ କପରି ବିଗତ ୧୦୦୬ ଖ୍ରୀଷ୍ଟାବ୍ଦରେ କଟକ ସହରର ଉତ୍ତର ପାଖରେ କାଠଯୋଡ଼ି ପଥର ବନ୍ଧ ନିର୍ମାଣ କରିଛନ୍ତି ସେ ବିଷୟରେ ଲେଖା ଯାଇଛି—

"ଉତ୍ତର ମୁଖେ ବହି କାଠଯୋଡ଼ି ମହାନଦୀ ସହି ମିଳି,
ରଖିବନି ଆଉ କଟକ—ଚିହ୍ନ ନିଶ୍ଚୟ ଦେବ ଗିଳି ।
ଦେଖି ଦେଖୁ ନାହିଁ କାଠଯୋଡ଼ି ତା'ର କୂଳ-ମୃତ୍ତିକା ଖାଏ,
କଟକ ନଗର ରହିବ ହେ ପ୍ରଭୁ ! ଆଉ କେତେଦିନ ଯାଏ ?
ଏହା କହି ଧୀରେ କାଢ଼ିଲା ବୃଦ୍ଧ ମୁଦ୍ରାର ଏକ ଥଳି,
ମର୍କତ ଆଗେ ଥୋଇ ସେ ବିନୟେ ଜଣାଇଲା ପୁଣି ଅଳି ।
ଖଟି ଖଟି ମୁହିଁ ଜୀବନଯାକ ମୋ' ଏତିକି କରିଛି ଜମା,
କଟକର ଲାଗି ନିବେଦିଲି ପ୍ରଭୁ ! ଦୋଷ ଥିଲେ କର କ୍ଷମା ।
ବାଇଆ ଭିତରେ ଗଣା ମୁଁ କଟକେ ବାଇମୁଣ୍ଡି ମୋ ନାମ,
ନାହିଁ ଏଥି ମୋର ପାଦେ ହେଲେ ଭୂଇଁ ମାତ୍ର ଓଡ଼ିଶା ମୋ ଧାମ ।

ମା ଗୁଣ୍ଡି ମୋହର ରଖିଛ ମହିମା ! ମୁଁ ଏକ ମୂଲିଆ ପୁଅ,
ନ ସରୁ ମୁଁ କଥା ମର୍କତ ମୁଖେ ବହିଲା ଅଶ୍ରୁଧାର ।
ଓହ୍ଲାଇ ଆସି ଗଜପୃଷ୍ଠରୁ ବୃଦ୍ଧର କର ଧରି,
ଗଦ୍‌ଗଦେ ଅତି କହିଲେ, "ନରେଶ ରଖିବ ତୁମର ଅଳି ।
କଏ କହେ ତୁମେ ପୁଅର ମୂଲିଆ ହେ ତୁମେତ ଲୋକରେ ସାର,
ତୁମ ଲାଗି ଆଜ କଟକ ବାସୀର ରହିବନା ହାହାକାର ।
ଗଢ଼ା ହେବ ଏଥି ପଥର ବନ୍ଧ ଯିବ କାଠଯୋଡ଼ି ଦାଉ,
କାଲ କାଲ ଲାଗି ତୁମରି କାହାଣୀ କୋଟିଜନ ମୁଖେ ଗାଉ ।"

(କବିତା—ତୁମେତ ଲୋକରେ ସାର—୫ମ ଶ୍ରେଣୀ ସାହିତ୍ୟ)

ବାଇମୁଣ୍ଡିର ତ୍ୟାଗପାଇଁ ଆଜ କାଠଯୋଡ଼ି ବନ୍ଧ "ବାଇମୁଣ୍ଡି ମାର୍ଗ" ନାମରେ ନାମିତ ହୋଇ ସାଧାରଣ ଜନତା ଆଗରେ ତା'ର ଅଜ୍ଞାତ କାହାଣୀ ଶୁଣାଉଛି ।

ସୁବର୍ଣ୍ଣ କେଶରୀ କାମ୍ବା ଗୈଙ୍ଗଗଙ୍ଗ ଦେବ ଆଜ ମରଣଶରୀରରେ ନଥିଲେ ମଧ୍ୟ ରାଜନନ୍ଦିନୀ 'ନନ୍ଦିକା'କୁ କେନ୍ଦ୍ରକରି କଟକ ସହରର ଗୁମ୍ଫ ଉପରେ ସେଦିନ ମହାନଦୀ ଓ କାଠଯୋଡ଼ିର ସୀମିତ ପରିସର ମଧ୍ୟରେ ଉଭୟଙ୍କ ମଧ୍ୟରେ କପରି ଶିବିର ପଡ଼ି ସେନା ଜୁଟିଣି ହୋଇଥିଲା ଏବଂ ଏହି ଯୁଦ୍ଧର ବଶକ୍ତିକା ଫଳରେ କପରି ସହସ୍ର ଉତ୍କଳୀୟ ବୀରଙ୍କର ରଣକ୍ଷେତ୍ରରେ ପ୍ରାଣହାନି ଘଟିଥିଲା ସେ ବିଷୟରେ କବି ରାଧାନାଥଙ୍କ ଲେଖନୀରେ ସୃଷ୍ଟି ଉଠିଛି—

"କାଠଯୋଡ଼ି ତୀରେ ଶୋଭଇ ଶିବିର,
କୋଳାହଳ ପୂର୍ଣ୍ଣ କାଠଯୋଡ଼ି ତୀର,
ଧାଡ଼ି ଧାଡ଼ି ହୋଇ ମହାନଦୀ ଯାଏ,
ଶୁଭ୍ର ତମ୍ବୁ ଶୋଭେ ଖଡ଼ି ଶୈଳ ପ୍ରାୟେ ।
× × ×
ବିପଣି ବସିଛି କାଠଯୋଡ଼ି ବନ୍ଧେ
ବିକା କଣା ଲାଗିଅଛି ନାନା ଛନ୍ଦେ,
ନଦୀ ଶଯ୍ୟା, ନଦୀ ବନ୍ଧ, ନଦୀ କୂଳ,
ସବୁଠାରେ ଲୋକେ ହୋଇଛନ୍ତି ଠୁଳ ।
କୁଶଭଦ୍ରା—ଦୟା—ପ୍ରମୁଖ ତଟିନୀ
କାଠଯୋଡ଼ିଠାରୁ ଯହିଁ ଜନ୍ମ ଲଭି,
ବହୁଛି ଦକ୍ଷିଣେ ଗୀପଶରେ ତା'ର,
ଗୈଙ୍ଗଗଙ୍ଗଙ୍କର ଶୋଭେ ସ୍କନ୍ଧାବାର,

ଶୂନ୍ୟ ଥିଲା ଆଜ ପ୍ରଭାତେ ଶିବର,
ଏବେ ବେଢ଼ି ଅଛି ମନୁଷ୍ୟ ପ୍ରାଣର ।
ବହୁ ବର୍ଷ ବ୍ୟାପି ଲଗିଛି ସଂଗ୍ରାମ,
ବହୁଅଛି ରକ୍ତ—ସ୍ରୋତ ଅବିଶ୍ରାମ,
ସମଗ୍ର ଉତ୍କଳୁଁ କେତେ ମହାବୀର,
ରଣାଙ୍ଗନେ ଆସି ଦେଲେ ନିଜ ଶିର ।"

କାଠଯୋଡ଼ି ନଦୀ ସାଧାରଣ ନଦୀ ହେଲେ ମଧ୍ୟ ତା'ର ପ୍ରାକୃତିକ ପରିବେଶ ଲେଖକ, ଭାବୁକ, ଦାର୍ଶନିକ ଓ କବି ହୃଦୟରେ ଅନେକ କିଛି ଶିକ୍ଷା ଓ ପ୍ରେରଣା ଆଣି ତାକୁ ଦେଇଥାଏ । ଆଧୁନିକ ଚିତ୍ରକଳ୍ପ ଓ ପ୍ରତୀକ ପ୍ରୟୋଗବାଦୀ କବି ଭାନୁଜୀ ରାଓ ଧିରେ କାଠଯୋଡ଼ିର ପ୍ରାକୃତିକ ବିଭବରେ ହଜିଯାଇ ନିଜର ଛୋଟ ଛୋଟ ପଂକ୍ତି ମାଧ୍ୟମରେ ନୂଆ ନୂଆ ଚିତ୍ରକଳ୍ପ କବିତାର 'ଶୀର୍ଷକକୁ କାଠଯୋଡ଼ି' ସମ୍ବୋଧନ କରି ନିଜର ଅନୁଭୂତିକୁ କିପରି ଅଧିକ ମାଧୁର୍ଯ୍ୟମଣ୍ଡିତ କରିଛନ୍ତି ସେ ବିଷୟରେ ତାଙ୍କ କବିତା କୁହେ—

"କାଶଫୁଲ ଧାସ
କୁମାରୀର ମୁହଁପରି
ମସୃଣ ଆକାଶ ।
ଧୋବଲା ବାଲିର ଚର
ପାଣି ମାଳ କରି,
ମୁଠା ମୁଠା ଖାଲି ବାଲି
ଶୋଇରହେ କାଠଯୋଡ଼ି ନଦୀ ।
× × ×
କାଠଯୋଡ଼ି ସ୍ୱପ୍ନ ଦେଖେ
କାଶଫୁଲ ଧୋବଲା ବାଲିରେ ।
ଅଗଣିତ ନକ୍ଷତ୍ରର ଛାଇ
ବସନ୍ତରେ ସବୁଜ ଚଢ଼ାଇ,
ସନ୍ଧ୍ୟା ଆସେ ।
କାଠଯୋଡ଼ି କଥା କହେ
ବାଲି ଆଉ ନକ୍ଷତ୍ରର କଥା,
ଛୁଆଁଇଛନ୍ତି ପୃଥିବୀର
ବ୍ୟସ୍ତ ଆଉ ବିବର୍ଣ୍ଣ ଉଦାସ୍ତ
ରେଳ ପୋଲ ପାରିହୋଇ
ଜହ୍ନ ଉଠେ କମଳା ରଙ୍ଗରେ ।"

ପୂର୍ବବର୍ଣ୍ଣିତ କାଠଯୋଡ଼, କାଠଯୋଡ଼ି ନଦୀ ଦେବୀପରେ ମହାନଦୀ ଓ କାଠଯୋଡ଼ି ସଙ୍ଗମସ୍ଥଳରୁ ସୃଷ୍ଟି ହେଲା ଏକ ସୁନ୍ଦର ସୁଠାମ ତ୍ରିକୋଣ ଭୂମି, ଯାହାକି ପରବର୍ତ୍ତୀ କାଳରେ କଟକନଗରୀ, ବାରାଣସୀ କଟକ, ଅମରାବତୀ କଟକ ଏବଂ ବିଡ଼ାନାସୀ-ନୂତନ-କଟକ ନାମରେ ନାମିତ ହେଲା । କଟକ ସହରର ଭିତ୍ତିସ୍ଥାପନ, ବାରବାଟୀ ଦୁର୍ଗ ଗଠନ, ସହରର ବିଭିନ୍ନ ଶିଳ୍ପକେନ୍ଦ୍ର, ଶିକ୍ଷାନୁଷ୍ଠାନ, ପ୍ରେକ୍ଷାଳୟ, ସରକାରୀ ଅଫିସ, ଅଦାଲତ, ମେଡ଼ିକାଲ କଲେଜ, ପଶୁ ଚିକିତ୍ସାଳୟ, ହସ୍ପିଟାଲ, କେନ୍ଦ୍ରୀୟ ଧାନଗବେଷଣା କେନ୍ଦ୍ର, ଦୂରଦର୍ଶନ କେନ୍ଦ୍ର ଓ ଆକାଶବାଣୀ ଇତ୍ୟାଦି ବିଭିନ୍ନ ଅନୁଷ୍ଠାନର ବୟସ ନିରୂପଣ ସମ୍ବନ୍ଧରେ ବିଭିନ୍ନ ଐତିହାସିକ ତଥା ସମାଲୋଚକଙ୍କ ଦୃଷ୍ଟିରେ ଯେତେ ପ୍ରକାର ମତଭେଦ ସୃଷ୍ଟି ହେଉନା କାହିଁକି ମହାନଦୀର ସୁଯୋଗ୍ୟା କନ୍ୟା କାଠଯୋଡ଼ିର ଯଦି ସୃଷ୍ଟି ହୋଇ ନଥାନ୍ତା ତାହାଲେ କଟକ ସହର ସ୍ଥାପନାର ଚିନ୍ତା ମଧ୍ୟ କରାଯାଇନଥାନ୍ତା ।

କାଠଯୋଡ଼ିର ଉପକୂଳ ଯେ ପ୍ରଚୁର ଉର୍ବର ମୃତ୍ତିକାରେ ଗଠିତ ଏହା ନିଃସନ୍ଦେହରେ କୁହାଯାଇ ପାରେ । ଏହି ଉର୍ବର ମାଟିରେ କୌଣସି ରାଜାଙ୍କ ଫଳ ଓ ଫୁଲ ବଗିଚା ଥିବାରୁ କାଠଯୋଡ଼ି · କୂଳର ଏକ ଅଂଶକୁ ରାଜାବଗିଚା ନାମକରଣ କରାଯାଇଥିବା ବେଳେ କଟକର ପୂର୍ବରେ ବାରବାଟୀ ନିକଟବର୍ତ୍ତୀ ଏକ ବୃହତ୍ତମ ବନକୁ ମଧ୍ୟ ସେହିଭଳି 'ରାଜହଂସ' ନାମରେ ନାମିତ କରାଯାଇଛି । ଲାଲବାଗର କୋଠି ମଧ୍ୟ ଏହି କାଠଯୋଡ଼ି କୂଳରେ ଅବସ୍ଥିତ ।

କେଉଁଖଣ୍ଡି କାଠକୁ ବାନ୍ଧି ବା ଯୋଡ଼ି ଯେଉଁ କାଠ ନାଳୀ ବା ଯୋରକୁ ଲୋକେ ସହଜରେ ଅତିକ୍ରମ କରୁଥିଲେ ତା'ର ବର୍ତ୍ତମାନର ଆକାର ସାଧାରଣ ମଣିଷ ମନରେ ସ୍ୱତଃ ସନ୍ଦେହ ସୃଷ୍ଟି କରିଥାଏ । ଏହି ପରିପ୍ରେକ୍ଷୀରେ କାଠଯୋର ବା କାଠଯୋଡ଼ିର ବୟସ ନିରୂପଣ କରିବାକୁ ହେଲେ ତା'ର ପାରିପାର୍ଶ୍ୱିକ ସଂସ୍କୃତି ହିଁ ଏକମାତ୍ର ପାଥେୟ । ବର୍ତ୍ତମାନ କାଠଯୋଡ଼ି ତୀରରେ ସେମିତି କିଛି ଅତି ପ୍ରାଚୀନ କଳା, ଭାସ୍କର୍ଯ୍ୟ ବା ସଂସ୍କୃତି ବିଶେଷ କରି ଦୃଷ୍ଟିଗୋଚର ହୁଏ ନାହିଁ ।

କାଠଯୋଡ଼ି ତୀରବର୍ତ୍ତୀ ଅଞ୍ଚଳର ସଂସ୍କୃତି ଆଦିମ ଅଧିବାସୀଙ୍କ ସଂସ୍କୃତି ସହିତ ଅନେକାଂଶରେ ସାମଞ୍ଜସ୍ୟ ଥିବାର ଅନୁମାନ କରାଯାଏ । ଆଦିବାସୀଙ୍କ ପର୍ବ ଯଥା—ମକର ସଂକ୍ରାନ୍ତି, ପଣା ସଂକ୍ରାନ୍ତି, ଚୈତ୍ରପୂର୍ଣ୍ଣିମା ଇତ୍ୟାଦିରେ ପଶୁବଳି, ବିଭିନ୍ନ ପଣା, ଫଳ, ଫୁଲ ଓ ଭୋଗ ଇତ୍ୟାଦି ସାମଗ୍ରୀର ବ୍ୟବହାର କରାଯାଇଥାଏ । ସେହିଭଳି ବର, ଓସ୍ତ (ଅଶ୍ୱତ୍ଥ), ନିମ୍ବ, ବେଲ ଓ ସାହାଡ଼ା ଗଛକୁ ମଧ୍ୟ ଅଦ୍ୟାବଧି ସିନ୍ଦୂର, ଧୂପ ଓ ଦୀପ ଦେଇ ପୂଜା ଅର୍ଚ୍ଚନା କରାଯାଇଥାଏ । ହଇଜା, ବସନ୍ତ ପରି ବିଭିନ୍ନ ସଂକ୍ରାମକ ରୋଗର ନିରାକରଣ ପାଇଁ ଦୁଇଟି ବାଉଁଶ ନଳିରେ ନାଲି ପତାକାବାନ୍ଧି ତାକୁ ଗାଁ ମୁଣ୍ଡରେ ପୋତି ସେଠାରେ ଧୂପ, ଦୀପ, ପଣା ଓ କୁକୁଡ଼ା ବଳିଦେବା

ପ୍ରଥା ଏବଂ କାଳେଲସୀ ଲଗିବା ପ୍ରଥା ଇତ୍ୟାଦି ଆଜି ପର୍ଯ୍ୟନ୍ତ ଲୋକମାନଙ୍କ ଦ୍ୱାରା ପ୍ରଚଳିତ ହୋଇ ଆସୁଛି । ଏସବୁ ସେହି ଆଦିବାସୀ ସଂସ୍କୃତିର ସ୍ମାରକୀ । ଦେବୀନଦୀ କୂଳରେ 'କୁତ୍ତମ ଚଣ୍ଡୀ' ପୀଠ କଟକ ମେଡ଼ିକାଲ କଲେଜ ହସପିଟାଲ ଠାରୁ ଅତି ବେଶୀରେ ୫୦ କିଲୋମିଟର ବାଟ ହେଲେ ମଧ୍ୟ ସ୍ଥାନୀୟ ଅଧିବାସୀ ଏ ପର୍ଯ୍ୟନ୍ତ ବିଭିନ୍ନ ଅସାଧ ରୋଗର ସମ୍ମୁଖୀନ ହୋଇ ତା'ର ପ୍ରତିକାର ପାଇଁ ବେଳେ ବେଳେ କଟକ ମେଡ଼ିକାଲକୁ ନ ଆସି ମା' 'କୁତ୍ତମ ଚଣ୍ଡୀ'ଙ୍କ ନିକଟରେ ଧାରଣା ବା ଅଧିଆ ପଡ଼ି ଥାଆନ୍ତି । ଏସବୁ ସେହି ଆଦିବାସୀ ସଂସ୍କୃତିର ସୂଚନା ନୁହେଁ କି ?

ଏଣୁ ନଦୀ ଉପତ୍ୟକାରେ ମାନବ ବସତିକୁ ଯଦି ମାପକାଠି ବୋଲି ଧରାଯାଏ ତାହାଲେ କେଉଁ ଆଦିମ କାଳରୁ କାଠନାଳୀ ବା ଯୋଉରୁ ଯେ ଏହି ବହି ଯାଉଥିବା କାଠଯୋଡ଼ର ବୟସ ନିରୂପଣ କରାଯିବ ତାହା ସହଜରେ ଅନୁମେୟ ହେବ କିମିତି ? କେଇଖଣ୍ଡି କାଠରେ ଅତିକ୍ରମ କରାଯାଉଥିବା 'ଚକ୍ରାଳୀନ ଯୋଉ' ମହାନଦୀରୁ ସୃଷ୍ଟି ହୋଇ ନଥିଲେ ଆଜିର କଟକ ସହର ଓଡ଼ିଶା ମାନଚିତ୍ରରେ ଦେଖିବାକୁ ମିଳିନଥାନ୍ତା ।

ଏଣୁ କାଠଯୋଡ଼ି ପାଇଁ ହିଁ ଆଜିର "କଟକ ସହରର ପ୍ରସିଦ୍ଧି"—ଏକଥା ଯେକେହି ମୁକ୍ତ କଣ୍ଠରେ ସ୍ୱୀକାର କରିବେ । ଜଣେ କଟକ ସହରର ସ୍ଥାୟୀ ବାସିନ୍ଦା ଭାବରେ ଶେଷରେ ମୁଁ 'ମା' ନଦୀ ମହାନଦୀ, ତା'ର ଅନ୍ୟାନ୍ୟ ଶାଖା ଓ ଉପନଦୀ, ପ୍ରାଚୀ ନଦୀ ଏବଂ କାଠଯୋଡ଼ି ନିକଟରେ ପ୍ରଣତି ନ ଜଣାଇ ରହିପାରୁନି ।



# ଊନବିଂଶ ଶତାବ୍ଦୀର କଟକ

ଶ୍ରୀ ରଘୁନାଥ ରଥ

ଯୁଗ ଯୁଗ କଟକ ଓଡ଼ିଶାର ପ୍ରାଣକେନ୍ଦ୍ର ଭାବରେ ସମ୍ମାନିତ ହୋଇ ଆସିଛି । ଗଙ୍ଗ ନରପତି ଚୋଡ଼ଗଙ୍ଗ ଦେବଙ୍କ ଦ୍ୱାରା ୧୧୧୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଅଧିକୃତ ହେଲା ପରେ କଳିଙ୍ଗ ନଗରରୁ ତାଙ୍କ ରାଜଧାନୀ ୧୧୩୫ ଖ୍ରୀଷ୍ଟାବ୍ଦରେ ବାରାଣାସୀ କଟକକୁ ସ୍ଥାନାନ୍ତରିତ ହୋଇବାଠାରୁ ଅଦ୍ୟାବଧି କଟକ ଓଡ଼ିଶାର ହୃତ୍‌ପିଣ୍ଡ ଭାବରେ ପ୍ରତିଷ୍ଠା ପାଇ ପାରିଛି ।

ଊନବିଂଶ ଶତାବ୍ଦୀରେ ଓଡ଼ିଶାର ସୀମାରେଖା ଦକ୍ଷିଣରେ ଚିଲିକା ହ୍ରଦଠାରୁ ଉତ୍ତରରେ ସୁବର୍ଣ୍ଣ ରେଖା ନଦୀ ପର୍ଯ୍ୟନ୍ତ ଏବଂ ପୂର୍ବରେ ବଙ୍ଗୋପସାଗର ଓ ପଶ୍ଚିମରେ ଓଡ଼ିଶା ଗଡ଼ଜାତ ମହାଲ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏହି ଓଡ଼ିଶା ପ୍ରଦେଶ ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲାକୁ ନେଇ ଗଠିତ ହୋଇଥିଲା ଏବଂ ଏହାର ରାଜଧାନୀ ଥିଲା କଟକ ।

ବିଭିନ୍ନ ରାଜବଂଶର ରାଜତ୍ୱ ସମୟରେ କଟକ ସେମାନଙ୍କ ରାଜଧାନୀ ରହି-ଆସିଛି । ଗଙ୍ଗବଂଶ (୧୧୧୨-୧୪୩୫) ଓ ସୂର୍ଯ୍ୟବଂଶ (୧୪୩୫-୧୫୬୮) ର ନରପତି-ଗଣ କଟକର ବାରବାଟୀ ଦୁର୍ଗରୁ ଓଡ଼ିଶା ଶାସନ କରୁଥିବା ଜଣାଯାଏ । ୧୫୬୮ ରୁ ୧୫୭୬ ମଧ୍ୟରେ ଓଡ଼ିଶା ଆଫଗାନ ଶାସନାଧୀନ ଥିଲା ଏବଂ ୧୫୭୬ ରୁ ୧୭୦୭ ଯାଏ ମୋଗଲମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଏହି ସମୟରେ ମଧ୍ୟ କଟକ ଓଡ଼ିଶାର ରାଜଧାନୀ ଥିଲା । ୧୭୦୭ ରେ ବଙ୍ଗର ନବାବ ଆଲିବର୍ଦ୍ଦି ଖାଁ ମୋଗଲମାନଙ୍କୁ ପରାସ୍ତ କରି କଟକ ଦଖଲ କଲେ ଏବଂ ୧୭୫୧ ଯାଏ ନିଜ ଅଧୀନରେ ରଖିଲେ । ୧୭୫୧ରୁ ୧୮୦୩ ଯାଏ କଟକ ମରହଟ୍ଟାମାନଙ୍କ ଦଖଲରେ ରହିଲା ।

ଆଲୋଚିତ ସମୟ ବେଳକୁ ବ୍ରିଟିଶ ସରକାର ଉତ୍ତରରେ ବଙ୍ଗ ଓ ଦକ୍ଷିଣରେ ମାନ୍ଦ୍ରାଜ ବା ଦକ୍ଷିଣ ସରକାର ଦଖଲ କରିସାରିଥିଲେ । ଓଡ଼ିଶା ମରହଟ୍ଟାମାନଙ୍କ ଅଧୀନରେ ଥିବାରୁ କଲିକତା ଓ ମାନ୍ଦ୍ରାଜ ମଧ୍ୟରେ ସ୍ଥଳପଥରେ ଯୋଗାଯୋଗ ରକ୍ଷା କରିବା ସମ୍ଭବ ହେଉନଥିଲା । ଏଣୁ ଓଡ଼ିଶା ଦଖଲ କରିବା ପାଇଁ ବ୍ରିଟିଶ ସରକାର ବ୍ୟଗ୍ର ଥିଲେ । ଏଣୁ ୧୭୫୭ ର ପଲାସୀ ଯୁଦ୍ଧ ପରଠାରୁ ମରହଟ୍ଟା ଓ ବ୍ରିଟିଶ ସରକାର

ମଧ୍ୟରେ ଶୀତଳ ଯୁଦ୍ଧ ଲାଗି ରହିଥିଲା । ଏଣୁ ବ୍ରିଟିଶ ସରକାର ସମୟ ଓ ସୁଯୋଗ ଦେଖି ନାନା ପ୍ରକାର କୂଟନୀତି ପ୍ରୟୋଗ କରୁଥିଲେ ।

ବଙ୍ଗ ନବାବ ମୀରକାଶିମ ଇଂରେଜମାନଙ୍କ ଖେଳନା କଣ୍ଢେଇ ଥିଲେ । ସେ ନାଗପୁର ଭୋଁସଲଙ୍କୁ ବାର୍ଷିକ ଚୌଠ ଦାଖଲ କରି ଓଡ଼ିଶା ଶାସନ କରୁଥିଲେ । ବ୍ରିଟିଶ ମାନଙ୍କ ପ୍ରରୋଚନାରେ ସେ ମରହଟ୍ଟା ମୁଖ୍ୟଙ୍କୁ ଚୌଠ ଦେବା ବନ୍ଦ କରିଦେଲେ । ମରହଟ୍ଟା ଭୋଁସଲ ଜାନୁଜୀଙ୍କ ଅର୍ଥାଭାବ ଓ ଦୁର୍ବଳ ନେତୃତ୍ୱ ଯୋଗୁଁ ବଙ୍ଗନବାବ କମ୍ପାନୀ ବ୍ରିଟିଶମାନଙ୍କ ସହ ଯୁଦ୍ଧ କରି ନିଜର ଦାବୀ ହାସଲ କରିବାରେ ଅକ୍ଷମ ଥିଲେ ।

ଅପର ପକ୍ଷରେ ବ୍ରିଟିଶ ସରକାର ଚୌଠ ଦେଇ କମ୍ପାନୀ ବିନା ମୂଲ୍ୟରେ ଓଡ଼ିଶା ଅଧିକାର କରି ନେବାପାଇଁ କୂଟନୈତିକ ଉଦ୍ୟମ ଅବ୍ୟାହତ ରଖିଥିଲେ । ୧୭୬୭ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ ସରକାର ତେରଲକ୍ଷଟଙ୍କାରେ ଓଡ଼ିଶା ପ୍ରଦେଶକୁ କିଣିନେବା ନିମନ୍ତେ ବଙ୍ଗନବାବଙ୍କ ଜରିଆରେ ଜାନୁଜୀଙ୍କ ନିକଟରେ ପ୍ରସ୍ତାବ ବାଢ଼ିଲେ । କିନ୍ତୁ ତାହା ଫଳବତୀ ହେଲନାହିଁ । ପୁନଶ୍ଚ ୧୭୬୮ ରେ ଏକକାଳୀନ ତିନିବର୍ଷର ଚୌଠ ଦେଇ ଓଡ଼ିଶା ଦଖଲ କରିବା ପାଇଁ ଚେଷ୍ଟା କରି ବିଫଳ ହେଲେ । ପୁନଶ୍ଚ ବାର୍ଷିକ ଷୋହଳ ଲକ୍ଷ ଟଙ୍କା ହାରରେ ଏକକାଳୀନ ତିନିବର୍ଷର ଚୌଠ ଦେଇ ଓଡ଼ିଶା ଦଖଲ କରିବା ବ୍ରିଟିଶ ସରକାରଙ୍କ ଉଦ୍ୟମ ମଧ୍ୟ ଫସର ଫାଟି ଗଲା ।

ଓଡ଼ିଶା ସୁବାର ପ୍ରଭୁ ଭକ୍ତ ମରହଟ୍ଟା ସୁବେଦାର ଶିବରାମ ଭଟ୍ଟଙ୍କ ତୀକ୍ଷ୍ଣ ନଜର ଯୋଗୁଁ ବ୍ରିଟିଶମାନଙ୍କ ଓଡ଼ିଶା ଦଖଲ ସ୍ୱପ୍ନରେ ପରିଣତ ହୋଇବା ମନେ କରି ଇଂରେଜମାନେ ମରହଟ୍ଟା ଭୋଁସଲଙ୍କୁ ପ୍ରବର୍ତ୍ତାଇ ତାହାଙ୍କୁ ସ୍ଥାନାନ୍ତରିତ କରିବାରେ ସଫଳତା ହାସଲ କଲେ । ଶିବରାମଭଟ୍ଟ ସୁବେଦାର ପଦରୁ ବିତାଡ଼ିତ ହେଲା ପରେ ବି ଓଡ଼ିଶାର ଶାସନ ଜବରଦସ୍ତ ମାଡ଼ି ବସିବାକୁ ଉଦ୍ୟମ କଲେ ଏବଂ କିଛି ସୈନ୍ୟ ଯୋଗାଡ଼ କରି ବ୍ରିଟିଶମାନଙ୍କୁ ଆକ୍ରମଣ କଲେ ଏବଂ ୧୪ । ୨ । ୧୭୬୭ ରେ ପରାସ୍ତ ହେଲେ ।

୧୭୬୯ ରେ ମାଧବରାଓ I ଙ୍କ ସହ ବଙ୍ଗନବାବ ମୀରକାଶିମଙ୍କ ମଧ୍ୟରେ ଘଟିବାକୁ ଥିବା ଯୁଦ୍ଧ ନିମନ୍ତେ ମାଧବରାଓ I ସାମରିକ ସାହାଯ୍ୟ ନିମନ୍ତେ ବ୍ରିଟିଶ ସରକାରଙ୍କୁ ନିବେଦନ କଲେ । କିନ୍ତୁ ଶିବରାମ ଭଟ୍ଟଙ୍କୁ ବିତାଡ଼ିତ କଲା ସମୟରେ ବ୍ରିଟିଶ ସରକାର ସାମରିକ ସାହାଯ୍ୟ ନିମନ୍ତେ ଯେପରି ତତ୍ପରତା ଦେଖାଇଥିଲେ, ଏହି ନିବେଦନ ପ୍ରତି ସେପରି ଗୁରୁତ୍ୱ ନଦେଇ ଚୁପ ରହିଲେ । ଫଳରେ ମାଧବରାଓ I ମୀରକାଶିମଙ୍କ ମଧ୍ୟରେ ଘଟିବାକୁ ଥିବା ଯୁଦ୍ଧ ବନ୍ଦ ରହିଲା ଏବଂ ବଙ୍ଗରେ ବ୍ରିଟିଶଙ୍କ ସ୍ଥିତି ସୁଦୃଢ଼ ହେଲା ।

ଏହାପରେ ଓଡ଼ିଶା ଦଖଲ ପାଇଁ ବ୍ରିଟିଶ ସରକାର ନାନାପ୍ରକାର କୂଟନୀତି ପ୍ରୟୋଗ କରି ସଫଳ କାମ ହୋଇ ପାରିନଥିଲେ ମଧ୍ୟ ଆଶା ହରାଇ ନଥିଲେ ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଗଭର୍ଣ୍ଣର ଜେନେରାଲ୍ ୱେଲେସଲି ଯେ କୌଣସି ଉପାୟରେ ଓଡ଼ିଶା ଦଖଲ କରିବା ପାଇଁ ନିଷ୍ପତ୍ତି ନେଲେ । ତେଣୁ ମୁଖ୍ୟ ସେନାଧ୍ୟକ୍ଷଙ୍କୁ ଚିଠିଦ୍ୱାରା ଜଣାଇ ଦିଆଗଲା ଯେ ଓଡ଼ିଶାରେ ମରହଟ୍ଟା କୁଶାସନ ଏବଂ ବ୍ରିଟିଶ ସରକାରଙ୍କ ସୁରକ୍ଷିତ ବାହୁଚ୍ଛାୟା ତଳେ ଆଶ୍ରୟ ନେବା ନିମନ୍ତେ ଜନତାଙ୍କ ମଧ୍ୟରେ ସେ ଜନଚେତନା ଜାଗ୍ରତ କରନ୍ତୁ । ଏହି ଉଦ୍ଦେଶ୍ୟରେ ଲେଫଟେନାଣ୍ଟ କର୍ଣ୍ଣେଲ କ୍ୟାମ୍ପବେଲଙ୍କୁ ନିର୍ଦ୍ଦେଶ ଦିଆଗଲା ଯେ ସେ ଓଡ଼ିଶାର ମୁଖ୍ୟ ମୁଖ୍ୟ ଜମିଦାର ଏବଂ ଲୋକମାନଙ୍କୁ ବୁଝାଇ ଦିଅନ୍ତୁ ଯେ ବ୍ରିଟିଶ ଶାସନରେ ସେମାନଙ୍କ ଧନଜୀବନ ସୁରକ୍ଷିତ ରହିବ, ହିନ୍ଦୁ ମନ୍ଦିରର ଅନିଷ୍ଟ ଘଟିବ ନାହିଁ । ଜଗନ୍ନାଥ-ଯାତ୍ରୀମାନଙ୍କ ନିରାପତ୍ତା ରକ୍ଷା କରାଯିବ ଏବଂ ବ୍ରହ୍ମୋତ୍ତର ଓ ଦେବୋତ୍ତର ସମ୍ପତ୍ତି ଉପରେ ହସ୍ତକ୍ଷେପ କରାଯିବ ନାହିଁ । ବ୍ରାହ୍ମଣମାନଙ୍କ ସାମାଜିକ ସ୍ଥିତି ବଜାୟ ରହିବ ଏବଂ ସେମାନଙ୍କ ନିରାପତ୍ତା ପ୍ରତିଶ୍ରୁତି ଦିଆଯିବ । ମୋଟ ଉପରେ ବ୍ରିଟିଶ ଶାସନରେ ଓଡ଼ିଶାର ସ୍ଥିତାବସ୍ଥା ବଜାୟ ରହିବ ଏବଂ ସର୍ବସାଧାରଣ ସ୍ୱାର୍ଥରେ ବାଧା ଦେଲା ଭଳି କୌଣସି କାର୍ଯ୍ୟ ନ କରିବା ପାଇଁ ବ୍ରିଟିଶ ସରକାର ପ୍ରତିଶ୍ରୁତିବଦ୍ଧ ବୋଲି ଜଣାଇ ଦେବା ପାଇଁ ତାହାଙ୍କ ପ୍ରତି ଆଦେଶ ଦିଆଗଲା ।

ଏହାବ୍ୟତୀତ ଲେଫ୍ଟେନାଣ୍ଟ କର୍ଣ୍ଣେଲ କ୍ୟାମ୍ପବେଲ ଓ ମି. ମେଲଭିଲଙ୍କ ଦ୍ୱାରା କେତେକ ଚିଠି ତତ୍କାଳୀନ ଓଡ଼ିଶାର ଶାସନର ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଥିବା ଅଧିକାରୀମାନଙ୍କୁ ଦେଇ ସେମାନଙ୍କ ସହିତ ପରାମର୍ଶ କରିବା ପାଇଁ ଗଭର୍ଣ୍ଣର ଜେନେରେଲ ଆଦେଶ ଦେଲେ । ଉକ୍ତ ପତ୍ରରେ ଲେଖାଥିଲା ଯେ ଯେଉଁ ମରହଟ୍ଟା ଅଧିକାରୀମାନେ ବ୍ରିଟିଶ ସରକାରଙ୍କୁ ସମର୍ଥନ କରି ଯୁଦ୍ଧ ସମୟରେ ନୀରବ ରହିବେ, ସେମାନଙ୍କୁ ଦୁଇଲକ୍ଷ ଟଙ୍କା ଦିଆଯିବ ଏବଂ ଅନ୍ୟ ଯେଉଁ କର୍ମଚାରୀମାନେ ଇଂରେଜମାନଙ୍କୁ ସାହାଯ୍ୟ କରିବେ ସେମାନଙ୍କ ପାଇଁ ପେନସନ କିମ୍ବା ବ୍ରିଟିଶ ସରକାର ଓଡ଼ିଶା ଦଖଲ କଲାପରେ ଚାକିରି ଯୋଗାଇ ଦିଆଯିବ । ଏହାଦ୍ୱାରା ବହୁ ମରହଟ୍ଟା କର୍ମଚାରୀଙ୍କ ନୈତିକ ଦୁର୍ବଳତା ଆସିଗଲା ଏବଂ ସେମାନେ ପ୍ରକାରାନ୍ତରେ ବ୍ରିଟିଶ ସରକାରଙ୍କୁ ସମର୍ଥନ ଜଣାଇଲେ । ଏହି ଯୋଜନା ଦ୍ୱାରା ବ୍ରିଟିଶ, ସରକାର ଯୁଦ୍ଧ ପୂର୍ବରୁ ସର୍ବସାଧାରଣ ଓ ମରହଟ୍ଟା ଶାସକ ଓ କର୍ମଚାରୀ ମାନଙ୍କ ମନ ପରିବର୍ତ୍ତନ କରାଇବାରେ ସମର୍ଥ ହୋଇଥିଲେ ଓ ଓଡ଼ିଶା ଦଖଲ ନିମନ୍ତେ ରାସ୍ତା ସରଳ ଓ ସହଜ ହୋଇଗଲା ।

ଲେଫ୍ଟେନାଣ୍ଟ କର୍ଣ୍ଣେଲ କ୍ୟାମ୍ପବେଲଙ୍କ ଅସୁସ୍ଥତା ଯୋଗୁଁ ଲେଫଟେନାଣ୍ଟ କର୍ଣ୍ଣେଲ ହାରକୋର୍ଟଙ୍କୁ ଜଳପଥରେ କଲିକତାରୁ ଗଞ୍ଜାମ ଯାଇ ସେଠାରୁ କଟକ ଉଦ୍ଦେଶ୍ୟରେ ସୈନ୍ୟ ଚାଳନା କରିବା ପାଇଁ ଗଭର୍ଣ୍ଣର ଜେନେରାଲ ଆଦେଶ ଦେଲେ । ପାଞ୍ଚଶହ ବଙ୍ଗାଳୀ ସୈନ୍ୟ ବିଶିଷ୍ଟ ଏକ ଦଳ କ୍ୟାପଟେନ ଡ଼ିକଙ୍କ ଅଧ୍ୟକ୍ଷତାରେ ପୁଣି ଗଞ୍ଜାମ ପଠାଗଲା କର୍ଣ୍ଣେଲ ହାର୍କୋର୍ଟଙ୍କ ସୈନ୍ୟବାହିନୀକୁ ଶକ୍ତିଶାଳୀ କରିବା ପାଇଁ ।

କ୍ୟାପଟେନ ଫର୍ଗୁସନଙ୍କ ଅଧ୍ୟକ୍ଷତାରେ ଚାରିଶହ ସୈନ୍ୟ ବିଶିଷ୍ଟ ଏକଦଳ ଜଳେଶ୍ୱର-ଠାରେ ଅପେକ୍ଷା କରିବା ପାଇଁ ପଠାଗଲେ ଏବଂ ଜଳପଥରେ ୧୩-୯-୧୮୦୩ ରେ କ୍ୟାପଟେନ ମୁରଗାନଙ୍କ ଅଧ୍ୟକ୍ଷତାରେ ପାଞ୍ଚଶହ ସୈନ୍ୟ ବିଶିଷ୍ଟ ଏକଦଳ ବାଲେଶ୍ୱର ଦଖଲ କରିବା ନିମନ୍ତେ ପଠାଗଲା । ଏହା ବ୍ୟତୀତ କ୍ୟାପଟେନ ଫେନଉିକଙ୍କ ଅଧ୍ୟକ୍ଷତାରେ ତେରଶହ ସୈନ୍ୟବିଶିଷ୍ଟ ଏକଦଳକୁ ମେଦିନୀପୁରଠାରେ ରିଜର୍ଭ ଭାବରେ ରଖାଗଲା ।

ଏହିପରି ଭାବରେ ଏକାବେଳେ ତିନି ଦିଗରୁ ଆକ୍ରମଣ କରି କଟକ ପ୍ରଦେଶ ଦଖଲ କରିବା ଯୋଜନା ଚୂଡ଼ାନ୍ତ କରାଗଲା । ଏକାବେଳେ କର୍ଣ୍ଣେଲ ହାରକୋର୍ଟ ଗଞ୍ଜାମରୁ ଏବଂ କ୍ୟାପଟେନ ଡ଼ିକ ଜଳେଶ୍ୱରରୁ ସୈନ୍ୟ ଚାଳନା କରିବେ । ମୁରଗାନ ବାଲେଶ୍ୱର ଦଖଲ କରି ସେଠାରେ ଅବସ୍ଥାନ କରି ପରିସ୍ଥିତି ଅନୁଧ୍ୟାନ କରିବେ । ସେହି ଅନୁସାରେ ଆକ୍ରମଣ ଆରମ୍ଭ ହେଲା ଏବଂ କର୍ଣ୍ଣେଲ ହାରକୋର୍ଟ ଗଞ୍ଜାମରୁ ୧୧-୯-୧୮୦୩ ରେ କଟକ ଉଦ୍ଦେଶ୍ୟରେ ସୈନ୍ୟଚାଳନା କଲେ । ଏକଲକ୍ଷ ଟଙ୍କା ଓ ତିନୋଟି ମରହଟ୍ଟା ଅଧିକୃତ ପ୍ରଗନା ଫେରସ୍ତ ଦେବାର ପ୍ରତିଶ୍ରୁତି ଦେଇ ଖୋର୍ଦ୍ଧା ରାଜ୍ୟ ଦେଇ ସୈନ୍ୟ ଚାଳନା କରିବା ପାଇଁ କର୍ଣ୍ଣେଲ ହାରକୋର୍ଟ ଅନୁମତି ପାଇବାକୁ ସକ୍ଷମ ହେଲେ ପୁରୀ ପଣ୍ଡାମାନଙ୍କ ନିକଟକୁ ଜଗନ୍ନାଥ ମନ୍ଦିରର ସୁରକ୍ଷାର ପ୍ରତିଶ୍ରୁତି ଦେଇ କ୍ୟାପଟେନ ଫ୍ଲେଚରଙ୍କୁ ପ୍ରେରଣ କଲେ ଏବଂ ମରହଟ୍ଟାମାନଙ୍କ ଗତିବିଧି ଲକ୍ଷ୍ୟ କରିବା ପାଇଁ ମାଣିକପାଟଣାଠାରେ କ୍ୟାପଟେନ ଓ ଗଲଭିଙ୍କୁ ଅବସ୍ଥାପିତ କଲେ ।

କର୍ଣ୍ଣେଲ ହାରକୋର୍ଟ ୮-୧୦-୧୮୦୩ ରେ କଟକରେ ପହଞ୍ଚିଲେ ଏବଂ ୧୩-୧୦-୧୮୦୩ ରେ ବାରବାଟୀ ଦୁର୍ଗ ନିକଟରେ ତୋପ ସ୍ଥାପନ କଲେ । ଲେଫଟେ-ନାଣ୍ଟ କର୍ଣ୍ଣେଲ କ୍ଲେଟନ ବିନା ପ୍ରତିବନ୍ଧକରେ ତୋପ ଚଳାଇ ୧୪-୧୦-୧୮୦୩ ରେ ବାରବାଟୀ ଦୁର୍ଗ ଦଖଲ କଲେ । ଏହି ଯୁଦ୍ଧରେ ୧୪୪ ଅଶ୍ୱାରୋହୀଙ୍କ ସମେତ ୪୯୧୬ ପଦାତିକ ସୈନ୍ୟ ଯୋଗ ଦେଇଥିଲେ । ଉକ୍ତ ଯୁଦ୍ଧରେ ଇଂରେଜମାନଙ୍କ ପାଞ୍ଚଜଣ ସୈନ୍ୟ ନିହତ ଓ ଅଣତିରିଶ ଜଣ ସୈନ୍ୟ ଆହତ ହୋଇଥିବା ଜଣାଯାଏ ଏବଂ ମରହଟ୍ଟାଙ୍କ ପକ୍ଷରୁ ବହୁ ସୈନ୍ୟ ମୃତାହତ ହୋଇଥିଲେ । ୧୪-୧୦-୧୮୦୩ ରେ ବ୍ରିଟିଶଙ୍କ ଦ୍ୱାରା ଓଡ଼ିଶା ଅଧିକାର ୧୭-୧୨-୧୮୦୩ ରେ ମରହଟ୍ଟାଙ୍କ ଦ୍ୱାରା ଦେଓଗାଁଠାରେ ଚୁକ୍ତି ପତ୍ର ସ୍ୱାକ୍ଷର ହୋଇ ବୈଧ ହେଲା ।

୧୮୦୩ଠାରୁ ୧୯୪୭ ଯାଏ ଭାରତର ଅନ୍ୟ ରାଜ୍ୟ ପରି ଓଡ଼ିଶା ମଧ୍ୟ ବ୍ରିଟିଶ ଶାସନାଧୀନ ରହିଲା । ଏଣୁ ଊନବିଂଶ ଶତାବ୍ଦୀରେ ଯାହା କିଛି ଉନ୍ନତି ଅବନତି ପାଇଁ ଇଂରେଜମାନଙ୍କୁହିଁ ଦାୟୀ କରାଯାଇପାରେ । ଊନବିଂଶ ଶତାବ୍ଦୀରେ ଇଂରେଜମାନଙ୍କ ଶାସନକାଳରେ ଓଡ଼ିଶା ତଥା କଟକ ସହରର ସମସ୍ତ କ୍ଷେତ୍ରରେ ପ୍ରଭୂତ ଉନ୍ନତି ଘଟିଥିବା ପରିଲକ୍ଷିତ ହୁଏ ।

ଶାସନ :—କଟକ ପ୍ରଦେଶ ବ୍ରିଟିଶ ସରକାରଙ୍କ ଅଧୀନକୁ ଗଲାପରେ କଟକ ସହରକୁ ସେମାନେ ଓଡ଼ିଶାର ରାଜଧାନୀ କଲେ ଏବଂ ଗଭର୍ଣ୍ଣର ଜେନେରାଲ ଲର୍ଡ଼ ୱେଲେସଲି 'କଟକ ସମସ୍ୟାବଳୀର ନିଷ୍ପତ୍ତି କମିଶନର ( Comnissionor for Settling the affairs of Cuttack) ଭାବରେ କର୍ଣ୍ଣେଲ ହାର୍କୋର୍ଟଙ୍କୁ ନିଯୁକ୍ତ କଲେ ଏବଂ ଜନ ମେଲଭାଇଲଙ୍କୁ ତାହାଙ୍କ ସହକାରୀ ଭାବରେ ଅବସ୍ଥାପିତ କରାଗଲା । ୧୮୦୪ର ପ୍ରଥମ ଭାଗ ସୁଦ୍ଧା କଟକ ପ୍ରଦେଶରେ ଶାନ୍ତି ପ୍ରତିଷ୍ଠିତ ହୋଇ ସାରିଥିବାରୁ ସମସ୍ତ ସୈନ୍ୟଙ୍କୁ ସେମାନଙ୍କ ସଦର କାର୍ଯ୍ୟାଳୟକୁ ଫେରସ୍ତ କରି ଦିଆଗଲା ଏବଂ ନିରାପତ୍ତା ରକ୍ଷା ଓ ଜଗୁଆଳୀ କାର୍ଯ୍ୟ ପାଇଁ ଏକ ପ୍ରାଦେଶିକ ବାଟାଲିୟନ ସୃଷ୍ଟି କରାଗଲା ।

କଟକ ପ୍ରଦେଶକୁ ଦୁଇ ଭାଗ କରିଦିଆ ଗଲା । ତାହାର ସୀମାରେଖା ଭାବରେ ମହାନଦୀର ଉତ୍ତର ଭାଗ ଅଞ୍ଚଳର ଦାୟିତ୍ୱ ଦେଇ କ୍ୟାପଟେନ ମୁରଗାନଙ୍କୁ ଏବଂ ମହାନଦୀର ଦକ୍ଷିଣ ଅଞ୍ଚଳର ଦାୟିତ୍ୱରେ ଜେମସ ହଣ୍ଟରଙ୍କୁ ଯଥାକ୍ରମେ ବାଲେଶ୍ୱର ଓ ପୁରୀଠାରେ ଏକ୍ଟିଂ କଲେକ୍ଟର ଓ ମାଜିଷ୍ଟ୍ରେଟ ଭାବରେ ନିଯୁକ୍ତ କରାଗଲା । ୧୮୦୪ ଜୁନ ମାସରେ କ୍ୟାପଟେନ ମୁରଗାନ, ରବର୍ଟ କେରଙ୍କୁ ଓ ୨୪ । ୧୦ । ୧୮୦୪ ଜେମସ ହଣ୍ଟର, ଚାର୍ଲସ ଗ୍ରୁମଙ୍କୁ ସେମାନଙ୍କ ଦାୟିତ୍ୱ ହସ୍ତାନ୍ତର କଲେ । ୧୮୦୫ର ରେଗୁଲେସନ XIII ବଳରେ ଉକ୍ତ ଦୁଇ ଜିଲ୍ଲାକୁ ମିଶାଇ ଦେଇ ପୁରୀଠାରେ କେବଳ ଜଣେ କଲେକ୍ଟର ଓ ମାଜିଷ୍ଟ୍ରେଟଙ୍କ ଅଧୀନରେ ସମସ୍ତ ପ୍ରଦେଶକୁ ରଖାଗଲା । ସେହି ରେଗୁଲେସନ ବଳରେ 'କଟକ ସମସ୍ୟାବଳୀର ନିଷ୍ପତ୍ତି କମିଶନର' ପଦବୀ ମଧ୍ୟ ଉଠାଇ ଦିଆଗଲା ।

ଏହାପରେ ଜର୍ଜ ଵେବ୍‌ଙ୍କୁ ସମଗ୍ର ଓଡ଼ିଶାର କଲେକ୍ଟର ଭାବରେ ନିଯୁକ୍ତି ପାଇ ଚାର୍ଲସ ଗ୍ରୁମଙ୍କ ଠାରୁ ଦାୟିତ୍ୱ ଗ୍ରହଣ କଲେ ଓ ରବର୍ଟ କେର ସମଗ୍ର ଓଡ଼ିଶାର ମାଜିଷ୍ଟ୍ରେଟ ଓ ବିଚାରପତି ଭାବରେ ନିଯୁକ୍ତ ହେଲେ । ଜମିଦାରମାନଙ୍କ ବହୁ ଆପତ୍ତି ଫଳରେ ୧୮୧୪ରେ ରାଜସ୍ୱ ବିଭାଗର, ନିଲାମ ଉପବିଭାଗ ସହିତ ସାମୟିକ ଭାବରେ ଏବଂ ୧୮୧୬ରେ ସମ୍ପୂର୍ଣ୍ଣ ଭାବରେ କଲେକ୍ଟରଙ୍କ କାର୍ଯ୍ୟାଳୟ ପୁରୀଠାରୁ କଟକକୁ ଉଠାଇ ଅଣାଗଲା ।

୧୮୧୮ର ରେଗୁଲେସନ I ବଳରେ କଟକଠାରେ କମିଶନରଙ୍କ କାର୍ଯ୍ୟାଳୟ ସ୍ଥାପିତ ହେଲା ଏବଂ ରେଭେନ୍ୟୁ ବୋର୍ଡ, ବାଣିଜ୍ୟ ବୋର୍ଡ ଓ ପ୍ରାଦେଶିକ ଅପିଲ କୋର୍ଟର ଦାୟିତ୍ୱ ମଧ୍ୟ କମିଶନରଙ୍କ ଉପରେ ନ୍ୟସ୍ତ କରାଗଲା । କମିଶନରଙ୍କୁ ଟ୍ରିବ୍ୟୁଟାରି ମାହାଲର ସୁପରିଣ୍ଟେଣ୍ଡେଣ୍ଟ ଦାୟିତ୍ୱ ମଧ୍ୟ ଦିଆଗଲା ।

୨୮ । ୧୦ । ୧୯୨୮ଠାରୁ ଓଡ଼ିଶା ପ୍ରଦେଶକୁ ବାଲେଶ୍ୱର, କଟକ ଓ ପୁରୀ କ୍ରମରେ ତିନୋଟି ଜିଲ୍ଲାରେ ବିଭକ୍ତ କରାଗଲା ଏବଂ ଯଥାକ୍ରମେ ଏଚ. ରିକେଟ୍‌ସ, ଡବ୍ଲ୍ୟୁ

ବେଗଜିତ କରି ତାହାଙ୍କ ପରିବାର ସମେତ ବନ୍ଦୀ କରି ବାରବାଟୀ ଦୁର୍ଗ ମଧ୍ୟରେ ରଖିଥିବାର ପ୍ରମାଣ ମିଳେ । କାରଣ ବ୍ରିଟିଶ ଶାସନ କାଳରେ ବାରବାଟୀ ଦୁର୍ଗର ପ୍ରାଧାନ୍ୟ ହ୍ରାସ ପାଇଥିଲା ଏବଂ ଲାଲବାଗ ପ୍ରାସାଦକୁ କମିଶନରଙ୍କ ବାସଗୃହ ରୂପେ ବ୍ୟବହାର କରାଯାଉଥିଲା । ପରେ ରାଜା ମୁକୁନ୍ଦ ଦେବଙ୍କୁ ମେଦିନାପୁରକୁ ସ୍ଥାନାନ୍ତରିତ କରାଯାଇଥିଲା ।

ପୁଣି ବକ୍ସି ଜଗବନ୍ଧୁ ବିଦ୍ୟାଧର ୧୮୨୫ ଖ୍ରୀଷ୍ଟାବ୍ଦରେ ଆତ୍ମସମର୍ପଣ କରିବା ପରେ ୧୮୨୯ରେ ତାହାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ବକ୍ସିବଜାରସ୍ଥିତ ଏକ ଗୃହରେ ମାସିକ ଏକଶତ ଟଙ୍କା ପେନସନ ଦିଆଯାଇ ନଜରବନ୍ଦୀରେ ରଖାଯାଇଥିଲା । ତାହାଙ୍କ ନାମାନୁସାରେ ଉକ୍ତ ସ୍ଥାନକୁ ବକ୍ସି ପୋଖରୀ ନାମରେ ନାମିତ କରାଯାଇଛି ।

୧୫-୨-୧୮୪୮ରେ ଅନୁଗୁଳର ରାଜା ସୋମନାଥ ସିଂହଙ୍କୁ ବର୍ତ୍ତମାନର ଜେଲ ନିକଟସ୍ଥ ଆଟକିନସନ ସାହେବଙ୍କ ଘରକୁ ମାସିକ ପଇଁତିରିଶ ଟଙ୍କା ଭଡ଼ା ନେଇ ରଖାଯାଇଥିଲା । ପରେ ତାଙ୍କୁ ହଜାରିବାଗ ଜେଲକୁ ସ୍ଥାନାନ୍ତରିତ କରାଯାଇଥିଲା ।

ଏଣୁ ୧୮୪୮ ଯାଏ କଟକରେ ବନ୍ଦୀଶାଳା ନିର୍ମିତ ହୋଇନଥିବା ଅନୁମିତ ହୁଏ । କିନ୍ତୁ ୨-୧-୧୮୫୯ରେ ଜେଲ ଆ. ଜି., ଏଫ୍. ମାଉଣ୍ଟ କଟକ ଜେଲ ପରିଦର୍ଶନ କରି ସେଠାରେ ତେରଟି ଓ୍ୱାର୍ଡ ଥିବା ତାହାଙ୍କ ପରିଦର୍ଶନ ମନ୍ତବ୍ୟରେ ଉଲ୍ଲେଖ କରିଛନ୍ତି । ସେତିକବେଳେ ବାଙ୍କୀ ରାଜା ଜଗନ୍ନାଥ ଶ୍ରୀଚନ୍ଦନ ଉକ୍ତ ଜେଲରେ ଥିଲେ ଏବଂ ଅଠର ଜଣ ମହିଳାଙ୍କ ସମେତ ମୋଟ ପଚିଶି ଜଣ ବନ୍ଦୀ ଆଜୀବନ କାରାଦଣ୍ଡ ଭୋଗ କରୁଥିବା ଜଣାଯାଏ ।

ଉକ୍ତ ସମୟରେ କଟକ ଜେଲରେ ଏକ ଚିକିତ୍ସାଳୟ ଜଣେ ଦେଶୀ ଡାକ୍ତରଙ୍କ ଦାୟିତ୍ୱରେ ପରିଚାଳିତ ହେଉଥିଲା । କମ୍ପାଉଣ୍ଡର ନଥିବାରୁ ମାସିକ ଦଶଟଙ୍କା ବେତନରେ ଜଣେ କମ୍ପାଉଣ୍ଡର ନିଯୁକ୍ତି ନିମନ୍ତେ ମାଉଣ୍ଟ ସାହେବ ସୁପାରିଶ କରିଥିଲେ ।

କୋର୍ଟ ମଧ୍ୟକୁ ଯୋତା ପିନ୍ଧି ପ୍ରବେଶ କରିବା ନିମନ୍ତେ ସର୍ବସାଧାରଣଙ୍କ ପାଇଁ ନିଷେଧ ଥିଲା । ୧୮୬୮ରେ ସରକାର ଉକ୍ତ ପ୍ରଥାକୁ ପ୍ରତ୍ୟାହାର କଲେ । କିନ୍ତୁ କଟକର ଏକ୍ଟିଙ୍ଗ ମାଜିଷ୍ଟ୍ରେଟ ମି. କରକ ଉଡ଼ ମୋଜା ନପିନ୍ଧି କେବଳ ଯୋତା ପିନ୍ଧି କୋର୍ଟ ମଧ୍ୟକୁ ପ୍ରବେଶ କରିବାପାଇଁ ନିଷେଧାଦେଶ ଜାରି କରିଥିଲେ ।

## ନଅଙ୍କ ଦୁର୍ଭିକ୍ଷ ଓ ପ୍ରାକୃତିକ ବିପର୍ଯ୍ୟୟ :

୧୮୬୬ରେ ଓଡ଼ିଶାରେ ଏକ ଭୟାବହ ମରୁଡ଼ି ପଡ଼ିଥିଲା । ଏହା ଗଜପତି ଦିବ୍ୟସିଂହ ଦେବଙ୍କ ନବମ ଅଙ୍କରେ ଘଟିଥିବାରୁ ଏହାକୁ ନଅଙ୍କଦୁର୍ଭିକ୍ଷ ଭାବରେ ଅଭିହିତ କରାଯାଇଥାଏ । ଏହି ଦୁର୍ଭିକ୍ଷ ହିଁ ବ୍ରିଟିଶ ସରକାରଙ୍କ ଆଖି ଖୋଲିଦେଲା ଓ

ତାହା ପରେ ଓଡ଼ିଶାର ପ୍ରତ୍ୟେକ କ୍ଷେତ୍ରରେ ଉନ୍ନୟନ ସାଧନ ନିମନ୍ତେ ବ୍ରିଟିଶ ସରକାର ମନ ବଳାଇଲେ ।

୧୮୬୫ ବର୍ଷା ଋତୁରେ ଦୁର୍ବଳ ମୌସୁମୀ ପ୍ରବାହ ଫଳରେ କମ ବର୍ଷା ହୋଇଥିଲା । ସାଧାରଣତଃ ଓଡ଼ିଶାର ବର୍ଷାର ପରିମାଣ ୬୨·୯୧୧୦ ଇଞ୍ଚ ଥିବା ସ୍ଥଳେ ୧୮୬୫ରେ ଏହାର ପରିମାଣ ମାତ୍ର ୩୭·୧୧" ଇଞ୍ଚ ଥିଲା । ପୁଣି ଉକ୍ତ ବର୍ଷ ସେପ୍ଟେମ୍ବର ମାସରେ ମୋଟେ ବର୍ଷା ହେଲାନାହିଁ । ତେଣୁ ଅକ୍ଟୋବର ମାସଠାରୁ କ୍ରମାଗତ ଭାବରେ ଦରବୃଦ୍ଧି ଘଟିଲା ଓ ଖାଦ୍ୟଶସ୍ୟ ମହଜୁଦ ପରିମାଣ ହ୍ରାସ ହେବାକୁ ଲାଗିଲା । ୧୮୬୪-୬୫ରେ ୩୩୦୦୦ ଟନ ଓ ୧୮୬୬ରେ ୨୦୦୦୦ ଟନ ଧାନ ଓଡ଼ିଶାରୁ ରପ୍ତାନି ହୋଇଥିଲା । ସରକାର ତାହାର ପ୍ରତିରୋଧ ପାଇଁ କୌଣସି ପ୍ରତିରୋଧ କରି ନଥିଲେ । ଉକ୍ତ ସମୟରେ ଟି: ଇ: ରେଭେନ୍ସା ଓଡ଼ିଶାର କମିଶନର ଭାବେ ୧୯୬୫ ସାଲରେ କାର୍ଯ୍ୟଭାର ଗ୍ରହଣ କରିଥାନ୍ତି । ସେ ନୂଆ ଥିବାରୁ ଓଡ଼ିଶା ପରିସ୍ଥିତି ବିଷୟ ହୃଦୟଙ୍ଗମ କରି ପାରିଲେ ନାହିଁ । ପରିସ୍ଥିତି ଅତିଶୟ ଖରାପ ଆଡ଼କୁ ଗତି କରିବାରୁ ସେତେବେଳେ ଜୁନ ୧୮୬୬ରେ ଖାଦ୍ୟଶସ୍ୟ ଆମଦାନି କରିବା ପାଇଁ ଉଦ୍ୟମ କରାଗଲା, ଜୁଲାଇ ମାସରେ ପ୍ରବଳ ବର୍ଷା ହେବାରୁ ତାହା ବ୍ୟାହତ ହେଲା । ଏଣୁ ପରିସ୍ଥିତି ଭୟଙ୍କର ରୂପ ଧାରଣ କଲା ।

ରାଜ୍ୟରେ ଉତ୍କଟ ଖାଦ୍ୟାଭାବ ଯୋଗୁଁ ଲୋକେ ଅନାହାରରେ ରହି ରହି ଗଛର ପତ୍ର ଏବଂ ପଶୁଶବ ଖାଇବାକୁ ବାଧ୍ୟ ହେଲେ । ଏପରିକି ନିଜ ସନ୍ତାନର ମୃତ ଶବର ମାଂସ ମଧ୍ୟ ଖାଇବାକୁ ଲୋକେ ପଛାଇଲେ ନାହିଁ । ବହୁ ଲୋକ ଘରଗୁଡ଼ି ବିଦେଶକୁ ପଳାଇଗଲେ । ସରକାରୀ ହିସାବ ଅନୁସାରେ ଦୁର୍ଭିକ୍ଷ ପୂର୍ବ ଓ ପରସଂଖ୍ୟାକୁ ଅନୁଧ୍ୟାନ କଲେ ଏହି ତଥ୍ୟ ସ୍ପଷ୍ଟ ହୁଏ ।

| | କଟକ | ପୁରୀ | ବାଲେଶ୍ୱର | ମୋଟ |
|---|---|---|---|---|
| ଦୁର୍ଭିକ୍ଷ ପୂର୍ବ ଜନସଂଖ୍ୟା | ୧,୫୦୩,୮୨୯ | ୭,୭୯,୭୧୮ | ୭,୩୨,୨୬୯ | ୩,୦୧୫,୮୨୬ |
| ଦୁର୍ଭିକ୍ଷରେ ମୃତ୍ୟୁବରଣ କରିଥିବା ସଂଖ୍ୟା | ୩୭୮୦୦୯ | ୨୧୮୮୫୨ | ୧୧୭୬୦୮ | ୮୧୪୪୬୯ |
| ପଳାୟନ କରିଥିବା ସଂଖ୍ୟା | ୫୩୩୫୭ | ୩୨୧୧୩ | ୨୯୫୫୮ | ୧୧୫୦୨୮ |
| ମୋଟ କମିଥିବା ସଂଖ୍ୟା | ୪୩୧୩୬୬ | ୨୫୦୯୬୫ | ୨୪୭୧୬୬ | ୯୨୯୪୯୭ |
| ବଳକା ଜନସଂଖ୍ୟା | ୧୭୦୨୪୬୦ | ୫୨୮୭୫୩ | ୪୮୫୧୧୩ | ୨୦୮୬୩୨୯ |

କଟକ ସହର ମଧ୍ୟ ଏହି ଦୁର୍ଭିକ୍ଷର ହାତରୁ ରକ୍ଷା ପାଇନଥିଲା । ଏହା ପୂର୍ବରୁ କଟକରେ ୧୮୦୬, ୧୮୦୮, ୧୮୦୯, ୧୮୧୭, ୧୮୨୮, ୧୮୩୬, ୧୮୩୭ ଓ ୧୮୪୨ରେ ମଧ୍ୟ ଦୁର୍ଭିକ୍ଷ ପଡ଼ିଥିବା ଜଣାଯାଏ ।

ମହାନଦୀ ମଧ୍ୟ ବନ୍ୟା ମଧ୍ୟ ଓଡ଼ିଶାର ଶିର ସହରରେ ଏବଂ କଟକ ସହର ସର୍ବଦା ବନ୍ୟାର ଶିକାର ହୋଇଥାଏ । ୧୮୬୫ର ମନ୍ୱନ୍ତର ପରେ ୧୮୬୬ରେ ଭୀଷଣ ବନ୍ୟା ଦ୍ୱାରା ସମସ୍ତ ଫସଲ ଉଜୁଡ଼ିଗଲା । ଏହା ଫଳରେ ନଅଙ୍କର ରୂପ ଆହୁରି ଭୟଙ୍କର ହୋଇ ଉଠିଲା । ସେହିପରି ବନ୍ୟା ୧୮୩୦ରୁ ୧୯୦୦ ମଧ୍ୟରେ ବାଇଶି ଥର ଘଟିଥିବା ଜଣାଯାଏ । ୧୮୭୨ ସାଲର ବନ୍ୟାରେ କଟକ ଜିଲ୍ଲାର ୨୪୩୮ଟି ମନୁଷ୍ୟ, ୨୨୯୭୬ ଗାଈ ବଳଦ ମରିଥିବା ହିସାବ କରାଯାଇଥିଲା । ଉକ୍ତ ବର୍ଷ ନଦୀବନ୍ଧ ଭାଙ୍ଗିବା ପୂର୍ବରୁ ବନ୍ୟା ପ୍ରକୋପ କମିଯିବାରୁ କଟକ ସହର ରକ୍ଷା ପାଇଯାଇଥିବା ଜଣାଯାଏ ।

### ଗମନାଗମନ ଓ ବାଣିଜ୍ୟ :

୧୮୬୬ର ନଅଙ୍କ ଦୁର୍ଭିକ୍ଷ ପରେ ବ୍ରିଟିଶ ସରକାରଙ୍କ ଆଖି ଖୋଲିଗଲା । ଯଦିଓ ୧୮୯୬ରେ କଲିକତାରୁ କଟକ ଦେଇ ମାନ୍ଦ୍ରାଜକୁ ରେଳପଥ ନିର୍ମିତ ହୋଇ ରେଳ ଚଳାଚଳ କରୁଥିଲା । ତଥାପି ଏ ଏହା ଯଥେଷ୍ଟ ନଥିଲା । ସ୍ଥଳ ପଥରେ ଗ୍ରାଣ୍ଡ ଟ୍ରଙ୍କ ରୋଡ଼ ବ୍ୟତୀତ ଅନ୍ୟାନ୍ୟ ରାସ୍ତା ନିର୍ମିତ ହୋଇନଥିଲା । ଗମନାଗମନର ଅସୁବିଧା ନିମନ୍ତେ ଦୁର୍ଭିକ୍ଷକୁ ମୁକାବିଲା କରି ହେଲା ନାହିଁ ବୋଲି ବ୍ରିଟିଶ ସରକାର ହୃଦୟଙ୍ଗମ କଲେ । ଏଣୁ ଦୁର୍ଭିକ୍ଷ ପରବର୍ତ୍ତୀ କାର୍ଯ୍ୟକ୍ରମରେ ରାସ୍ତା ନିର୍ମାଣ ଓ ମରାମତି ଉପରେ ଅଗ୍ରାଧିକାର ଦିଆଗଲା । ଏଣୁ ମରହଟ୍ଟା ଅମଳରେ ତିଆରି ହୋଇଥିବା କଟକ-ସମ୍ବଲପୁର ରାସ୍ତାକୁ ଆହୁରି ଚଉଡ଼ା କରାଯାଇ ନିର୍ମାଣ ଶେଷ କରାଗଲା । କଟକ—ଚୂଡ଼ଙ୍ଗବାଲି ରାସ୍ତା, କଟକ—ତାଳଦଣ୍ଡା ରାସ୍ତା, କଟକ—ମାଛଗାଁ ରାସ୍ତା, ଫୁଲନଖରା—ମାଧବ ରାସ୍ତା ଓ କଟକ—ସୋନପୁର ରାସ୍ତାଗୁଡ଼ିକ ମରାମତି ତିଆରି କରାଗଲା ।

ଇଷ୍ଟଇଣ୍ଡିଆ ଇରିଗେସନ କମ୍ପାନୀ ୧୮୬୨ରେ କଟକ—କେନ୍ଦ୍ରାପଡ଼ା କେନାଲ ଖନନ କାର୍ଯ୍ୟ ଆରମ୍ଭ କରିଥିଲେ । ତାହା ୧୮୯୬ ଜୁଲାଇ ମାସରେ ଖୋଲିଗଲା । ଏହା ବ୍ୟତୀତ ଗୋବରୀ ଓ ପାଟାମୁଣ୍ଡାଇ କେନାଲ ଖୋଳାଯାଇ କେନ୍ଦ୍ରାପଡ଼ାରୁ ଗୋବରୀ କେନାଲ ଯୋଗେ ଚୂଡ଼ଙ୍ଗବାଲି ପର୍ଯ୍ୟନ୍ତ ଜଳପଥରେ ସଂଯୋଗ କରାଗଲା ।

କେନ୍ଦ୍ରାପଡ଼ା କେନାଲରେ ଉଚ୍ଚ ଅଧିକାରୀଙ୍କ ଯାତାୟାତ ନିମନ୍ତେ ଏକ ଷ୍ଟିମର ଚଳାଚଳ କଲା ଓ ବାଣିଜ୍ୟ ନିମନ୍ତେ ନୌକା ଚାଳନା ପାଇଁ ଅନୁମତି ଦିଆଗଲା । ଏକଶହ ମହଣ ମାଲ ପାଇଁ ଆଠଅଣା, ଏକଗଣ୍ଡି କାଠ ପାଇଁ ଦୁଇଅଣା, ଗୋଟିଏ ଶହ ବାଉଁଶ ପାଇଁ ଏକଅଣା ଚାରିପାହି ଏବଂ ଜଣେ ଯାତ୍ରୀ ପାଇଁ ଅଧପାହି ଶୁଳ୍କ ଧାର୍ଯ୍ୟ କରାଗଲା । ୧୮୯୬ ସେପ୍ଟେମ୍ବର ଦ୍ୱିତୀୟ ସପ୍ତାହରେ ୮୧୦୦ମହଣ ମାଲ ପରିବହନ ନିମନ୍ତେ ଛଅ ହଜାର ଟଙ୍କା ଶୁଳ୍କ ଆଦାୟ ହୋଇଥିବା ଜଣାଯାଏ ।

୧୮୬୯ଠାରୁ କଟକ ଠାରୁ କଲିକତା ଓ ମାନ୍ଦ୍ରାଜ ପର୍ଯ୍ୟନ୍ତ ଖଣ୍ଡିମିତ ଷ୍ଟିମର ଚଳାଚଳ କରିବା ଦ୍ୱାରା ୧୮୭୦ରେ ଆମଦାନୀ ଓ ରପ୍ତାନି କ୍ଷେତ୍ରରେ ଓଡ଼ିଶାର

ପ୍ରଭୂତ ଉନ୍ନତି ଘଟିଲା । ଫଳରେ ମାସିକ ଟ ୩୦୦୦୦ ଙ୍କା ମୂଲ୍ୟର ଜିନିଷ ରପ୍ତାନି କରାଯାଇ ଟ ୭୦୦୦୦ ଙ୍କା ମୂଲ୍ୟର ଦ୍ରବ୍ୟ ଆମଦାନୀ କରାଯାଇ ପାରିଲା । ତନ୍ମଧ୍ୟରେ ମଇଠାରୁ ଅଗଷ୍ଟ ମଧ୍ୟରେ ଟ ୨୧୦୦୦ ଙ୍କାର ବସ୍ତା କଲିକତାରୁ ଅଣା ଯାଇଥିଲା । ଆମଦାନୀ ଦ୍ରବ୍ୟ ମଧ୍ୟରେ ବିଦେଶୀ ଲୁଗା, ଗୁଆ, ମସଲା ଓ ତମ୍ବା ଏବଂ ରପ୍ତାନି ଦ୍ରବ୍ୟ ମଧ୍ୟରେ କାଠ, ଚମଡ଼ା, ଶିଙ୍ଗ, ଗୁଜୁଳି ଓ ସୋରିଷ ମୁଖ୍ୟ ପଣ୍ୟଦ୍ରବ୍ୟ ଥିଲା । ମାସରେ କଲିକତାରୁ ତିନିଥର ଓ ମାନ୍ଦ୍ରାସରୁ ଥରେ ଷ୍ଟିମର ବଣ୍ଟଘରଠାକୁ ଆସୁଥିଲା ।

୧୮୬୯ ଅପେକ୍ଷା ୧୮୭୦ ସାଲରେ ଆମଦାନୀ ଓ ରପ୍ତାନି କ୍ଷେତ୍ରରେ ଅଭୂତପୂର୍ବ ଉନ୍ନତି ପରିଲକ୍ଷିତ ହୁଏ । ୧୮୭୦ ସାଲରେ କଟକକୁ ଟ ୩, ୧୦, ୭୬୨ ଙ୍କା ମୂଲ୍ୟର ଦ୍ରବ୍ୟ ଆମଦାନୀ ଓ ଟ ୧,୮୬,୭୩୦ ଙ୍କା ମୂଲ୍ୟର ଦ୍ରବ୍ୟ ରପ୍ତାନି ହୋଇଥିଲା । ଏହି ବର୍ଷ ୨୩୨ଟି ଜାହାଜ କଟକରୁ ବାହାରକୁ ଯାଇଥିଲା । ଏହି ବର୍ଷ କାର୍ଗୋଥିବା ଏକ ରୁଷୀୟ ଜାହାଜ ବମ୍ବେଠାରୁ ଭୁଲାପର ଓଡ଼ିଶା ଆସିଥିଲା ।

କଟକ ବ୍ରିଟିଶ ଶାସନାଧୀନ ହେବା ପରେ ମି: ରବର୍ଟ କେର କଟକର ପ୍ରଥମ କଲେକ୍ଟର ଓ ମାଜିଷ୍ଟ୍ରେଟ ଭାବ ରେ ନିଯୁକ୍ତ ହେଲେ । ସେ ଦେଖିଲେ ଯେ କଟକରେ ସର୍ବସାଧାରଣ ବଜାରଟିଏ ନଥିବାରୁ ଇଂରେଜ କର୍ମଚାରୀମାନେ ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ଏଣୁ ଏକ ସର୍ବସାଧାରଣ ବଜାର ନିର୍ମାଣ ନିମନ୍ତେ ସେ ନିଷ୍ପତ୍ତି ନେଲେ ।

ବଜାର ନିର୍ମାଣ ନିମନ୍ତେ ମି: କେରଙ୍କ ଆଦେଶରେ ପୁରୁଣା ପଥର କାନ୍ଥ ଭଙ୍ଗାଯାଇ, ବହୁ ପୁରୁଣା କୂଅ ପୋତାଯାଇ ଏବଂ କ୍ଷତିପୂରଣ ଦେଇ ପଚିଶଟି ଗରିବ ପରିବାରକୁ ସ୍ଥାନାନ୍ତରିତ କରି ଏକ ସ୍ଥାନ ଦଖଲ କରାଗଲା ଏବଂ ଟ ୨୧୭୫।୧୨।୦ (ଦୁଇହଜାର ଏକଶହ ପଞ୍ଚସ୍ତରୀ ଟଙ୍କା ବାରଅଣା) ବ୍ୟୟରେ ବଜାର ନିର୍ମାଣ କରାଗଲା । ବ୍ୟବସାୟୀମାନଙ୍କୁ ରିହାତି ସୂତ୍ରରେ ଦୋକାନ ଘର ଓ ବାସଗୃହ ନିମନ୍ତେ ଜମି ଯୋଗାଇ ଦିଆଗଲା । ଏହା ଫଳରେ ୧୮୦୭ ସୁଦ୍ଧା କଟକରେ ଏକ ସୁନ୍ଦର ସର୍ବ-ସାଧାରଣ ବଜାର ସୃଷ୍ଟି ହେଲା ।

ଓଡ଼ିଶା ବ୍ରିଟିଶ ଶାସନାଧୀନ ହେବାଯାଏ ସମସ୍ତ ନେଣ ଦେଣ କଉଡ଼ି ଦ୍ୱାରା ହେଉଥିଲା । ମୋଗଲ ଓ ମରହଟ୍ଟାମାନେ ମୁଦ୍ରା ପ୍ରଚଳନ କରାଇଥିଲେ ମଧ୍ୟ କଉଡ଼ି ପ୍ରଚଳନରେ ଓଡ଼ିଆଙ୍କ ପ୍ରତି ପ୍ରତିବନ୍ଧ ଲଗାଇ ନଥିଲେ । କିନ୍ତୁ ବ୍ରିଟିଶ ସରକାର ୧୮୦୫ର ରେଗୁଲେସନ XII ଦ୍ୱାରା କଉଡ଼ିର 'ରୌପ୍ୟ ମୁଦ୍ରା ସହ ବିନିମୟ ମୂଲ୍ୟ ନିର୍ଦ୍ଧାରଣ କଲେ । ଏହି ଆଦେଶ ଦ୍ୱାରା ଗୋଟିଏ ଟଙ୍କାର ମୂଲ୍ୟ ସହ ଚାରିକାହାଣ ଦୁଇଚଣ୍ଡା କଉଡ଼ି ସମାନ ବୋଲି ସ୍ଥିର କରାଗଲା । ୧୮୧୧ରେ ରୌପ୍ୟ ମୁଦ୍ରାର ପ୍ରଚଳନ କରାଗଲା । ଜମିଦାରମାନେ ୧୮୦୯ ଯାଏ କଉଡ଼ି କିମ୍ବା ରୌପ୍ୟ ମୁଦ୍ରାରେ ସେମାନଙ୍କ ସରକାରୀ ଦେୟ ପଇଠ କରିବା ପାଇଁ ଆଦେଶ ଦିଆଗଲା । ଏହା ସତ୍ତ୍ୱେ ୧୮୧୨ ଡିସେମ୍ବର ଠାରୁ କଉଡ଼ିରେ ରାଜସ୍ୱ ଗ୍ରହଣ କରାଯିବା ନିମନ୍ତେ ନିଷେଧାଦେଶ

ଜାରି କରାଯିବା ଯାଏ କଉଡ଼ିର ପ୍ରଚଳନ ଓଡ଼ିଶାରେ ଥିଲା । କ୍ରମଶଃ କଉଡ଼ିର ପ୍ରଚଳନରେ ପ୍ରତିବନ୍ଧକ ସୃଷ୍ଟି କରାଯିବାରୁ ୧୮୧୧ ବେଳକୁ କଉଡ଼ିର ମୂଲ୍ୟ ହ୍ରାସ ହୋଇ ଏକଟଙ୍କା ପ୍ରତି ସାତକାହାଣ କଉଡ଼ି ହୋଇଗଲା । ଫଳରେ ମୁଦ୍ରାସହ ଅପରିଚିତ ଓଡ଼ିଆମାନେ ଏହାଦ୍ୱାରା ବହୁ ଅସୁବିଧାର ସମ୍ମୁଖୀନ ହେଲେ ଏବଂ ସେମାନଙ୍କ ଆର୍ଥିକ ମାନଦଣ୍ଡ ଦୋହଲିଗଲା । କଉଡ଼ି ପ୍ରଚଳନ ଦ୍ୱାରା ଓଡ଼ିଆ ସମାଜରେ ଯେଉଁ ଆର୍ଥିକ ସଙ୍କଟ ସୃଷ୍ଟି ହେଲା ତାହା ୧୮୧୭ର ପାଇକ ବିଦ୍ରୋହର ଏକ କାରଣ ବୋଲି କୁହାଯାଏ ।

ବ୍ରିଟିଶ ସରକାର ଓଡ଼ିଶା ଦଖଲ ପୂର୍ବରୁ ଲୁଣ ଶିଳ୍ପଗୁଡ଼ିକ ମରହଟ୍ଟାମାନଙ୍କ ଅଧୀନରେ ଥିଲା । ସେତିକିବେଳେ ମହଜଣେ ଲୁଣର ଆଦାୟ ସ୍ଥାନରେ ମୂଲ୍ୟ ତିନି କମ୍ବା ଚାରିଅଣା ଓ ବଜାରରେ ଚଉଦଅଣାରୁ ଅଧିକ ନଥିଲା ।

କିନ୍ତୁ ବ୍ରିଟିଶ ସରକାର ଲକ୍ଷ୍ୟ କଲେ ଯେ ଲୁଣ ଶିଳ୍ପରୁ କମ ଖର୍ଚ୍ଚରେ ବହୁତ ଲାଭ ହୋଇପାରିବ । ତେଣୁ ଅନ୍ୟ କୌଣସି ଚିନ୍ତା ନ କରି ତରବରି ଭାବରେ ଲୁଣ ଶିଳ୍ପକୁ ନିଜ ଅକ୍ତିଆରକୁ ନେଇଗଲେ । ଓଡ଼ିଶାର ଲୁଣ ବଙ୍ଗ ବଜାରକୁ ପଠାଗଲା । ଫଳରେ ଓଡ଼ିଶାରେ ଲୁଣର ଦରବୃଦ୍ଧି ଘଟିଲା । ସେଥି ନିମନ୍ତେ ୧୮୦୪ରେ ମି: ଜେ: ଭାଙ୍ଗଙ୍କୁ ଉତ୍ତରାଞ୍ଚଳ ଲୁଣ ଏଜେଣ୍ଟ ଭାବରେ ନିଯୁକ୍ତ କରାଗଲା । ସେହି ସମୟରେ ସରକାର ମହଜଣେ ଲୁଣକୁ ବେପାରୀମାନଙ୍କୁ ଦୁଇ ଟଙ୍କାରେ ବିକ୍ରୀ କରୁଥିଲେ । ବେପାରୀମାନେ ତାହାକୁ ଦୁଇ ଟଙ୍କା ଦଶଅଣାରେ ଖୁଚୁରା ବେପାରୀମାନଙ୍କୁ ବିକ୍ରୀ କରୁଥିଲେ । ଖୁଚୁରା ବେପାରୀମାନେ ଉକ୍ତ ଲୁଣକୁ ତିନିଟଙ୍କା ଚାରିଅଣାରେ ବିକ୍ରୀ କରୁଥିଲେ ।

ବ୍ରିଟିଶମାନଙ୍କ ଲୁଣ ଶିଳ୍ପ ନୀତି ଯୋଗୁଁ ଲୁଣ ମୂଲ୍ୟ ଅତ୍ୟଧିକ ବୃଦ୍ଧି ପାଇଲା ଏବଂ ଯେଉଁମାନେ ଲୁଣମାରି ଜୀବିକାର୍ଜନ କରୁଥିଲେ ସେମାନଙ୍କୁ ଲୁଣ ମାରିବାପାଇଁ ନିଷେଧ କରାଯିବାରୁ ସେମାନଙ୍କ ଆର୍ଥିକ ଅବସ୍ଥାର ଦ୍ରୁତ ଅବନତି ଘଟିଲା ।

## ଶିକ୍ଷା :

କଟକ ବ୍ରିଟିଶ ଅଧିକାରଭୁକ୍ତ ହେଲାବେଳକୁ ଗୋଟିଏ ହେଲେ ଶିକ୍ଷାନୁଷ୍ଠାନ ନଥିଲା । ସ୍ଥାନୀୟ ନାଗରିକମାନେ ମାଟିବଂଶ ଅବଧାନମାନଙ୍କ ଚାଟଶାଳୀରେ ବିଦ୍ୟା ଶିକ୍ଷା କରୁଥିଲେ । ଉଚ୍ଚବଂଶଜ ନାରୀମାନେ କ୍ୱଚିତ ଅନ୍ତଃପୁର ମଧ୍ୟରେ ବିଦ୍ୟାଶିକ୍ଷା କରୁଥିଲେ । ବ୍ରିଟିଶ ସରକାର ମଧ୍ୟ କଟକ ଦଖଲ ସଙ୍ଗେ ସଙ୍ଗେ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ପାଇଁ ଉଦ୍ୟମ କରି ନଥିଲେ ।

ଏକ ମିଶନାରୀ ଦଳ ଉଇଲିୟମ ବମ୍ପଟନ ଓ ଜେମସ ପେଗସ୍‌ଙ୍କ ନେତୃତ୍ୱରେ କଲିକତାରୁ ଜଳ ପଥରେ ଆସି ୭-୨-୧୮୨୨ ପଞ୍ଚାମୁଣ୍ଡାଇରେ ଓ ୧୨-୨-୧୮୨୨ରେ କଟକରେ ପହଞ୍ଚିଲେ । ଖ୍ରୀଷ୍ଟିୟାନ ଧର୍ମର ପ୍ରଚାର ଉଦ୍ଦେଶ୍ୟରେ ଜୁନ ୧୮୨୨ରେ

କଟକରେ ପ୍ରଥମ ଭର୍ଣ୍ଣାକୁଲାର ସ୍କୁଲ ଖୋଲିଲେ ଏବଂ ଡ଼ିସେମ୍ବର ୧୮୨୩ ମଧ୍ୟରେ ଏହିପରି ଚାରୋଟି ସ୍କୁଲ ବିଭିନ୍ନ ସ୍ଥାନରେ ସେମାନେ ଖୋଲିବାରେ ସକ୍ଷମ ହୋଇଥିଲେ । ନାସ୍ତ ଶିକ୍ଷାକୁ ହିନ୍ଦୁମାନେ ବିରୋଧ କରୁଥିଲେ ମଧ୍ୟ ମିଶନାରିମାନେ ଉକ୍ତ ବିଦ୍ୟାଳୟ ଗୁଡ଼ିକରେ ତେଷଠି ଜଣ ବାଳକାଙ୍କ ନାମ ଲେଖାଇ ପାରିଥିଲେ ।

ମିଶନାରିମାନେ ପ୍ରତିଷ୍ଠା କରିଥିବା ପ୍ରଥମ ଭର୍ଣ୍ଣାକୁଲାର ସ୍କୁଲକୁ ଅର୍ଥାଭାବ ପାଇଁ ଚଳାଇ ନପାରିବାରୁ ୧୮୪୧ରେ ସରକାରଙ୍କୁ ହସ୍ତାନ୍ତରିତ କଲେ ଏବଂ ସରକାର ତାହାକୁ ପ୍ରଥମ ଇଂରାଜୀ ବିଦ୍ୟାଳୟ ଭାବରେ ପ୍ରତିଷ୍ଠିତ କଲେ । ଉକ୍ତ ବିଦ୍ୟାଳୟ ୧୮୫୧ରେ କଟକ ଜିଲ୍ଲା ସ୍କୁଲ ଭାବରେ ପ୍ରତିଷ୍ଠା ଲାଭ କଲା ।

୧୮୬୪ରେ ତତ୍କାଳୀନ କମିଶନର ରେଭେନସା ସାହେବଙ୍କ ଉଦ୍ୟମରେ ଉକ୍ତ ସ୍କୁଲ ହାଇସ୍କୁଲର ମର୍ଯ୍ୟାଦା ଲାଭ କଲା ଏବଂ କଟକ ହାଇସ୍କୁଲ ନାମରେ ନାମିତ ହେଲା । ୨୦-୧-୧୮୬୮ ସୋମବାର ଦିନ ଉକ୍ତ ହାଇସ୍କୁଲର ପ୍ରଥମ ପାଠଦାନ ଆରମ୍ଭ ହେଲା । ପ୍ରଥମେ ମାତ୍ର ଶୁଣିଜଣ ଛାତ୍ର ହାଇସ୍କୁଲରେ ଯୋଗ ଦେଇଥିଲେ ଓ ପରେ ବାଲେଶ୍ୱରରୁ ରାଧାନାଥ ରାୟ ଓ ଆଉଜଣେ ଆସି ଯୋଗ ଦେଲେ ।

୧୮୬୮ ରୁ ୧୮୭୨ ଯାଏ ଏଣ୍ଟ୍ରାନ୍ସ ଓ ଏଫ୍.ଏ. ପରୀକ୍ଷା ଫଳ ନିମ୍ନରେ ଦିଆଗଲା ।

ଏଣ୍ଟ୍ରାନ୍ସ ପରୀକ୍ଷା ଫଳ

| | ପରୀକ୍ଷା ଦେଇଥିବା ସଂଖ୍ୟା | କୃତକାର୍ଯ୍ୟ ସଂଖ୍ୟା | ପ୍ରଥମ ଶ୍ରେଣୀ | ଦ୍ୱିତୀୟ ଶ୍ରେଣୀ | ତୃତୀୟ ଶ୍ରେଣୀ |
|---|---|---|---|---|---|
| ୧୮୬୮ | ୯ | ୬ | ୧ | ୪ | ୧ |
| ୧୮୬୯ | ୧୩ | ୧୦ | — | ୬ | ୪ |
| ୧୮୭୦ | — | ୧୪ | ୩ | ୬ | ୫ |
| ୧୮୭୧ | ୧୮ | ୧୫ | ୧ | ୧୦ | ୪ |
| ୧୮୭୨ | — | ୮ | — | ୪ | ୪ |

ଏଫ୍. ଏ. ପରୀକ୍ଷା ଫଳ

| | ପରୀକ୍ଷା ଦେଇଥିବା ସଂଖ୍ୟା | କୃତକାର୍ଯ୍ୟ ସଂଖ୍ୟା | ପ୍ରଥମ ଶ୍ରେଣୀ | ଦ୍ୱିତୀୟ ଶ୍ରେଣୀ | ତୃତୀୟ ଶ୍ରେଣୀ |
|---|---|---|---|---|---|
| ୧୮୬୯ | — | ୧ | — | — | — |
| ୧୮୭୦ | — | ୧ | — | — | ୧ |
| ୧୮୭୧ | ୮ | ୬ | — | ୬ | — |

ଉପରୋକ୍ତ ପରୀକ୍ଷା ଫଳ ମଧ୍ୟରେ ଏଣ୍ଟ୍ରାନ୍ସ ପରୀକ୍ଷା ନିମନ୍ତେ ବାଲେଶ୍ୱର ଜିଲ୍ଲା ସ୍କୁଲ, କଟକ ଜିଲ୍ଲା ସ୍କୁଲ ଓ ପୁରୀ ଜିଲ୍ଲା ସ୍କୁଲର ଛାତ୍ରମାନେ ଅନ୍ତର୍ଭୁକ୍ତ ଅଛନ୍ତି । ଏଫ୍.ଏ. ପରୀକ୍ଷା ଫଳ କେବଳ କଟକ ହାଇସ୍କୁଲ ନିମନ୍ତେ ଉଦ୍ଦିଷ୍ଟ ।

କମିଶନର ଟି.ଇ. ରେଭେନସାଙ୍କ ଆନ୍ତରିକ ଉଦ୍ୟମ ଫଳରେ କଟକ ହାଇସ୍କୁଲ ୧୮୭୬ରେ ଏକ ପ୍ରଥମ ଶ୍ରେଣୀ ଡ଼ିଗ୍ରୀ ମହାବିଦ୍ୟାଳୟ ଭାବରେ ସ୍ଥାପିତ ହେଲା ଏବଂ ୧୮୭୮ରେ ତାହାର ସ୍ଥାୟୀ ଘର ନିର୍ମିତ ହେଲା । ଏହି ମହାବିଦ୍ୟାଳୟ କଟକ କଲେଜ ନାମରେ ନାମିତ ହେଲା । ୧୮୭୯ରେ ମୟୂରଭଞ୍ଜ ମହାରାଜା କଟକ କଲେଜକୁ କୋଡ଼ିଏ ହଜାର ଟଙ୍କା ଦାନ କଲେ ଏବଂ ଉକ୍ତ କଲେଜକୁ ରେଭେନସା ସାହେବଙ୍କ ନାମାନୁସାରେ ରେଭେନସା କଲେଜ କରିବାକୁ ପ୍ରସ୍ତାବ ଦେଲେ । ସେହି ଦିନରୁ ଉକ୍ତ କଲେଜକୁ ରେଭେନସା କଲେଜ ନାମରେ ନାମିତ କରାଗଲା । ଉକ୍ତ କଲେଜରେ ୧୮୭୮ରେ ଆଇନ ଶ୍ରେଣୀ ଖୋଲାଗଲା ଓ ୧୮୮୧ରେ କଲେଜକୁ ସ୍ଥାୟୀ କରାଗଲା । ୧୮୮୩ରେ କେନ୍ଦୁଝରର ରାଜା ଉକ୍ତ କଲେଜକୁ ପାଞ୍ଚ ହଜାର ଟଙ୍କା ଦାନ କଲେ । ସେହି ଟଙ୍କାରେ ଏକ ଛାତ୍ରାବାସ ନିର୍ମିତ ହେଲା ।

ସରକାରୀ ଆଇନ ବିଦ୍ୟାଳୟର ଶିକ୍ଷକ ପଦରେ ରାଜକୃଷ୍ଣ ମୁଖାର୍ଜୀଙ୍କୁ ମାସିକ ଏକଶତ ପଚିଶ ଟଙ୍କା ବେତନରେ ନିଯୁକ୍ତ କରାଗଲା । ସେ ୧୮୬୯ ଫେବୃୟାରୀ ଶେଷ ସପ୍ତାହରେ କାର୍ଯ୍ୟରେ ଯୋଗଦେଲେ ଏବଂ ୧୦-୩-୧୮୬୯ ଠାରୁ ପଢ଼ାଇବା ଆରମ୍ଭ କଲେ । ଆଇନ ଶ୍ରେଣୀ ପୂର୍ବାହ୍ନ ଘ. ୯-୦୦ରୁ ଘ. ୧୦-୦୦ ଯାଏ ହେଉଥିଲା । ଆଇନ ବିଦ୍ୟାଳୟର ସ୍ୱତନ୍ତ୍ର ଘର ନଥିବାରୁ କଟକ ହାଇସ୍କୁଲ ଗୃହରେ ଆଇନ ବିଦ୍ୟାଳୟ ପରିଚାଳିତ ହେଉଥିଲା । ୧୮୭୦ରେ ରାଜକୃଷ୍ଣ ମୁଖାର୍ଜୀ ବ୍ରହ୍ମପୁର ବଦଳି ହୋଇ ଯିବାରୁ ଆଇନ ବିଦ୍ୟାଳୟ କିଛିଦିନ ପାଇଁ ବନ୍ଦ ରହିଲା ।

ତାହାପରେ ହରେକୃଷ୍ଣ ଚାଟାର୍ଜୀଙ୍କୁ ଆଇନ ଶିକ୍ଷକ ଭାବରେ ନିଯୁକ୍ତ କରାଗଲା । ସେ ଶିକ୍ଷାଦାନ ସହ କଟକ ସିଭିଲ କୋର୍ଟରେ ମଧ୍ୟ ଓକିଲାତି କରୁଥିଲେ । କୌଣସି କାରଣବଶତଃ ସେ ଆଇନ ଶିକ୍ଷକ ପଦ ତ୍ୟାଗ କରିବାରୁ ଆଇନ ବିଦ୍ୟାଳୟ ବନ୍ଦ ହୋଇଗଲା ।

କଟକ ହାଇସ୍କୁଲରେ ଇଞ୍ଜିନିୟରିଙ୍ଗ୍ ପଢ଼ାଇବା ପାଇଁ ୧୮୭୨ରେ ଜଣେ ଶିକ୍ଷକଙ୍କୁ ନିଯୁକ୍ତ କରାଯାଇଥିଲା ।

୧୮୬୯ ଜାନୁୟାରୀରୁ ଶିକ୍ଷକ ତାଲିମ ନିମନ୍ତେ କଟକ ନର୍ମାଲ ସ୍କୁଲ ପ୍ରତିଷ୍ଠା କରାଗଲା । ତାହାର ସ୍ଥାନ ସଂଖ୍ୟା ୧୨୦ ଥିଲେ ମଧ୍ୟ ୧୮୬୯ରେ ଶିକ୍ଷକ ତାଲିମ ନିମନ୍ତେ ୩୦୦ ଜଣ ପ୍ରାର୍ଥୀ ଥିବା ଜଣାଯାଏ । ଉକ୍ତ ସ୍କୁଲରୁ ୧୮୭୧ ସାଲରେ ପ୍ରଥମ ଶ୍ରେଣୀରେ ଏକୋଇଶ ଜଣ ଓ ଦ୍ୱିତୀୟ ଶ୍ରେଣୀରେ କୋଡ଼ିଏ ଜଣ ଉତ୍ତୀର୍ଣ୍ଣ ହୋଇଥିବା ଜଣାଯାଏ ।

୧୮୬୯ ବେଳକୁ କଟକ ହିନ୍ଦୁ ବାଳିକା ବିଦ୍ୟାଳୟ ନାମରେ ଏକ ସ୍କୁଲ ଥିବା ଜଣାଯାଏ । ୧୮୭୧ରେ ଅବିନାଶ ଗୃହାର୍ଥୀ ବାଲୁବଜାରରେ ଏକ ବାଳିକା ଭର୍ଣ୍ଣାକୁଲର ବିଦ୍ୟାଳୟ ସ୍ଥାପନ କଲେ । କମିଶନର ରେଭେନ୍‌ସା ସାହେବ ଜିଲ୍ଲା ଶିକ୍ଷା କମିଟିର ଚେୟାରମ୍ୟାନ ଭାବରେ ଉକ୍ତ ସ୍କୁଲକୁ ଗ୍ରାଣ୍ଟ ମଞ୍ଜୁର କରିଥିଲେ । ଉକ୍ତ ବର୍ଷ କଟକ ହିନ୍ଦୁ ବାଳିକା ବିଦ୍ୟାଳୟର ଛାତ୍ରୀମାନଙ୍କୁ ସ୍କୁଲ ଫି ଛାଡ଼ କରାଗଲା ।

୧୮୬୯ ବେଳକୁ କଟକରେ ଏକ ଇଂରେଜ ଉର୍ଦ୍ଦୁ ସ୍କୁଲ ଥିବା ଜଣାଯାଏ । କାଳୀପଦ ବନ୍ଦୋପାଧ୍ୟାୟ ଯେ କି ଉତ୍କଳ ହିତୈଷିଣୀର ସମ୍ପାଦକ ଥିଲେ, ସେ ଉକ୍ତ ସ୍କୁଲରେ ଏକ ନୈଶ ବିଦ୍ୟାଳୟ ପରିଚାଳନା କରି ଅଶିକ୍ଷିତ ପ୍ରୌଢ଼ମାନଙ୍କୁ ଶିକ୍ଷା ଦେଉଥିଲେ । ୧୮୭୦ ବେଳକୁ ଉକ୍ତ ଉର୍ଦ୍ଦୁ ସ୍କୁଲ ବ୍ୟତୀତ ଏକ ଓଡ଼ିଆ, ଏକ ବେଙ୍ଗଲି ଭର୍ଣ୍ଣାକୁଲର ସ୍କୁଲ ଓ ଦୁଇଟି ମଧ୍ୟ ଇଂରାଜୀ ବିଦ୍ୟାଳୟ ଥିଲା ଏବଂ କଟକ ନର୍ମାଲ ସ୍କୁଲ ଅଧୀନରେ ଉକ୍ତ ବିଦ୍ୟାଳୟଗୁଡ଼ିକ ପରିଚାଳିତ ହେଉଥିଲା ।

୧୮୬୯ ସାଲ ସୁଦ୍ଧା ହାଇସ୍କୁଲରେ ଓଡ଼ିଆ କିମ୍ବା ବଙ୍ଗଳା ଭାଷାରେ ଶିକ୍ଷାଦାନ କରାଯାଉଥିଲା । କିନ୍ତୁ ଏମ.ଇ. ସ୍କୁଲ ମାନଙ୍କରେ ଓଡ଼ିଆରେ ଶିକ୍ଷାଦାନ ହେଉଥିଲା । ବଙ୍ଗଳା ଭାଷା ମଧ୍ୟ ଇଚ୍ଛାଧୀନ ଥିଲା । କିନ୍ତୁ ୧୮୭୦ ଠାରୁ ସମସ୍ତ ସ୍କୁଲରେ ଓଡ଼ିଆ ମାଧ୍ୟମରେ ଶିକ୍ଷାଦେବା ପାଇଁ ସରକାର ଆଦେଶ ଦେଲେ ।

୧୮୬୭ରେ କଟକରେ ଏକ ସର୍ଭେ ସ୍କୁଲ ପ୍ରତିଷ୍ଠିତ ହେଲା । ୧୫ । ୧୨ । ୧୮୭୫ରେ କଟକରେ ମେଡ଼ିକେଲ ସ୍କୁଲ ଆରମ୍ଭ କରାଗଲା ଯାହା ପରବର୍ତ୍ତୀ କାଳର ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକେଲ କଲେଜର ଭିତ୍ତିଭୂମି ଥିଲା । ୧୮୭୫ରେ ରେଭେନ୍‌ସାଙ୍କ ଅନୁରୋଧକ୍ରମେ ଗୌରୀଶଙ୍କରଙ୍କ ଦ୍ୱାରା ଏକ ଏମ. ଇ. ସ୍କୁଲ ଗଢି ଉଠିଲା ଯାହା ୧୮୭୯ରେ କଟକ ଏକାଡ଼େମୀ ଭାବରେ ନାମିତ ହୋଇ ଏଣ୍ଟ୍ରାନ୍‌ସସ୍ତର ପର୍ଯ୍ୟନ୍ତ ଉନ୍ନୀତ ହୋଇଥିଲା । ୧୮୭୨ରେ କଟକ ୟଙ୍ଗମେନ ଲିଟେରାରୀ ଆସୋସିଏସନ ଆନୁକୂଲ୍ୟରେ ନିମଚଉଡ଼ିଠାରେ ଏକ ମାଗଣା ବିଦ୍ୟାଳୟ ଖୋଲା ଯାଇଥିଲା ।

## ସ୍ୱାସ୍ଥ୍ୟ :

୧୮୬୮ ବେଳକୁ କଟକରେ ଏକ ମାନସିକ ଚିକିତ୍ସାଳୟ (Mental Hospital) ଥିବା ଜଣାଯାଏ । ଉତ୍କଳ ଦୀପିକାର ତଥ୍ୟ ଅନୁଯାୟୀ ଗୋଟିଏ ମାନସିକ ରୋଗୀ ହଠାତ ଏକ ଜଗୁଆଳକୁ କୋଡ଼ରେ ହାଣି ମାରିଦେଲା । ସେହି ସମୟରେ ବସନ୍ତ କୁମାର ଗୁପ୍ତା ନାମକ ଜଣେ ଦେଶୀ ଡାକ୍ତର ଦକ୍ଷତାର ସହ ଚିକିତ୍ସା କରୁଥିବା ଜଣାଯାଏ । ସେହି ବର୍ଷ ନୂତନ ପଦ୍ଧତିରେ ଟୀକାଦାନ ଆରମ୍ଭ କରାଯାଇଥିଲେ ମଧ୍ୟ ଜନସାଧାରଣ ଗ୍ରାମ୍ୟ ପଦ୍ଧତିରେ ଟୀକାଦାନକୁ ପସନ୍ଦ କରି ନୂତନ ଟୀକାଦାନ ପ୍ରଣାଳୀକୁ ସହଜରେ ଗ୍ରହଣ କରୁ ନଥିଲେ ।

କଟକ ସହରର ଉନ୍ନତି ବିଧାନ ନିମନ୍ତେ ୧୮୬୮ ପୂର୍ବରୁ କେତୋଟି ପଞ୍ଚାୟତରେ ବିଭକ୍ତ କରାଯାଇଥିଲା । ଉକ୍ତ ପଞ୍ଚାୟତମାନଙ୍କ ସଦର ପଞ୍ଚାୟତକୁ ପରାମର୍ଶ ଦେଉଥିଲେ ଏବଂ ତାହାର ନିର୍ଦ୍ଦେଶରେ ପରିଚାଳିତ ହେଉଥିଲେ । ୧୮୬୮ରେ ପଞ୍ଚାୟତ ଓ ସଦର ପଞ୍ଚାୟତର ନାମ ପରିବର୍ତ୍ତନ କରାଯାଇ ୱାର୍ଡ କମିଟି ଓ ଟାଉନ କମିଟି ନାମରେ ନାମିତ ହେଲା । ଏମାନେ ଭବିଷ୍ୟତ ପୌର ପରିଷଦ ଓ ସ୍ୱାୟତ୍ତ ଶାସନର ଭିତ୍ତିଭୂମି ପ୍ରସ୍ତୁତ କରିଥିଲା ।

୧୮୬୮ ବେଙ୍ଗଲ ରେଗୁଲେସନ ନମ୍ବର VI ବଳରେ ପୂର୍ବରୁ ଆଦାୟ ହେଉଥିବା ଚୌକିଦାରି କର ଉଠାଇ ଦିଆଗଲା ଏବଂ ୧ । ୪ । ୧୮୬୮ଠାରୁ ସହର-ବାସୀଙ୍କ ଉପରେ ଏକ ନୂତନ କର ଧାର୍ଯ୍ୟ କରାଗଲା । କଟକର ମାଜିଷ୍ଟ୍ରେଟଙ୍କ ଉପରେ ଟାଉନ କମିଟିର ବଜେଟ ପ୍ରସ୍ତୁତ କରିବା ଦାୟିତ୍ୱ ରହିଲା । ଉକ୍ତ ବଜେଟରେ ପୋଲିସ ବିଭାଗର ଖର୍ଚ୍ଚ ସମେତ ସହରର ଉନ୍ନୟନ ଓ ପରିମଳ ବ୍ୟବସ୍ଥା ମଧ୍ୟ ଅନ୍ତର୍ଭୁକ୍ତ ହେଲା । ଟାଉନ୍ କମିଟି ସହରର ଉନ୍ନତି ନିମନ୍ତେ ମାଜିଷ୍ଟ୍ରେଟଙ୍କୁ ପରାମର୍ଶ ଦେବା ବ୍ୟବସ୍ଥା ରହିଲା ।

୧୮୬୮ରେ କଟକ ସହରରେ ଦୁଇଟି ସର୍ବସାଧାରଣ ପାଇଖାନା ନିର୍ମାଣ ନିମନ୍ତେ ଏବଂ ସହର ସଫାଇ ପାଇଁ ତିନିହଜାର ଟଙ୍କା ବଜେଟରେ ବ୍ୟୟ ବରାଦ କରା ଯାଇଥିଲା । ସେହି ଅନୁସାରେ ୧୮୭୦ରେ ସହରରେ ଏକ ସର୍ବସାଧାରଣ ପାଇଖାନା ନିର୍ମିତ ହେଲା । ୧୮୭୦ରେ ଟାଉନ କମିଟିର କାର୍ଯ୍ୟ ପ୍ରଶଂସାଯୋଗ୍ୟ ବୋଲି 'ଉତ୍କଳ ଦୀପିକା ମତବ୍ୟକ୍ତ କରିଥିଲା । ଏହିବର୍ଷ ରାସ୍ତାଘାଟ, ଜନସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥାର ଉଲ୍ଲେଖଯୋଗ୍ୟ ଉନ୍ନତି କରାଯାଇଥିଲା । ଗଙ୍ଗାନଗର ନିକଟରେ ଥିବା ଜଙ୍ଗଲକୁ ସଫା କରାଯାଇଥିଲା । ସହର ଉନ୍ନତି ନିମନ୍ତେ କର ଆକାରରେ ଅର୍ଥ ସହରବାସୀଙ୍କଠାରୁ ଆଦାୟ କରାଯାଉଥିଲା । ଏଣୁ କର ଆଦାୟ ଭଲ ଭାବରେ ହୋଇ ପାରିବା ନିମନ୍ତେ ସଦାନନ୍ଦ ଯାଚକ ଓ ନିମାଇଁ ଚରଣ ନିୟୋଗୀ ବିନା ଦରମାରେ କର ଆଦାୟ କରିବା ଦାୟିତ୍ୱ ନେଲେ ଏବଂ ଜଗମୋହନ ରାୟ ଓ କାଳୀପଦ ଚଟ୍ଟୋପାଧ୍ୟାୟ ସହରର ପରିମଳ ବ୍ୟବସ୍ଥା ଦାୟିତ୍ୱ ବହନ କଲେ ।

୧୮୭୬ରେ ଉକ୍ତ ଟାଉନ କମିଟିର ନାମ ପରିବର୍ତ୍ତନ କରାଯାଇ ପୌରସଂସଦ ନାମରେ ନାମିତ ହେଲା । ଉକ୍ତ ପୌର ସଂସଦ ତିନିଜଣ ନିର୍ବାଚିତ ସଭ୍ୟ, ତିନିଜଣ ସରକାରୀ କର୍ମଚାରୀ ଓ ଦୁଇଜଣ ମନୋନୀତ ସଭ୍ୟଙ୍କୁ ନେଇ ଗଠିତ ହେଲା । ପୌର ସଂସଦ ସହରର ବିଦ୍ୟୁତୀକରଣ, ପାନୀୟ ଜଳ ଯୋଗାଣ, ସ୍ୱାସ୍ଥ୍ୟ ଓ ପରିମଳ ବ୍ୟବସ୍ଥା ତଥା ପ୍ରାଥମିକ ଶିକ୍ଷା ବ୍ୟବସ୍ଥାର ଦାୟିତ୍ୱରେ ରହିଲେ ।

ଜୁଲାଇ ୧୮୭୦ରେ ଡାକ୍ତର ଡବ୍ଲ୍ୟୁ: ଡ଼ି: ଷ୍ଟୁଆର୍ଟ ସିଭିଲ ସର୍ଜନ ଭାବରେ କଟକରେ ଅବସ୍ଥାପିତ ହେଲେ ଏବଂ ୧୮୭୪ ଶେଷ ଭାଗରେ କଟକରେ ଏକ ମେଡ଼ିକାଲ

ସ୍କୁଲ ପ୍ରତିଷ୍ଠା କରିବା ପାଇଁ ପ୍ରସ୍ତାବ ଦେଲେ । ଉକ୍ତ ପ୍ରସ୍ତାବକୁ କମିଶନର ରେଭେନ୍‌ସା ସାହେବ ସୁପାରିଶ କରି ସରକାରଙ୍କୁ ପଠାଇଲେ ଏବଂ ୧୫ । ୨ । ୧୮୭୫ରେ ଉକ୍ତ ସ୍କୁଲ କାର୍ଯ୍ୟ ଆରମ୍ଭ କଲା । କଟକ କଲେଜ ଓ ମେଡ଼ିକାଲ ସ୍କୁଲରେ ଗ୍ରନ୍ଥ ବୃତ୍ତି ଦେବା ପାଇଁ ମୟୂରଭଞ୍ଜ ମହାରାଜା ପାଞ୍ଚହଜାର ଟଙ୍କା ଦାନ କରିଥିଲେ । ୧୮୭୫ରେ ଡାକ୍ତରଖାନା ନିର୍ମିତ ହେଲା ।

୧୮୭୬ରେ ଓଡ଼ିଶାରେ ଫ୍ଲୁରୋଗ ବ୍ୟାପକ ଭାବରେ ବ୍ୟାପିଥିଲା । ସର୍ବସାଧାରଣ ଲୋକେ ଏହାକୁ ଧୁମାରୋଗ ବୋଲି କହୁଥିଲେ । ସେହି ବର୍ଷ ଗଡ଼ଜାତ ଅଞ୍ଚଳରେ ହଇଜା ବ୍ୟାପିଥିଲା । କଟକ ଜିଲ୍ଲାରେ ଏକଶତ ତେଯ୍ନାଳିଶ ଜଣ ହଇଜାରେ ମୃତ୍ୟୁବରଣ କରିଥିବା ଜଣାଯାଏ ଏବଂ ସରକାର ପ୍ରତିଷେଧକ ଭାବରେ କଲେରା ବଟିକା ବିତରଣ କରିଥିଲେ ମଧ୍ୟ ତାହା ରୋଗ ପ୍ରତିରୋଧ ନିମନ୍ତେ ସକ୍ଷମ ହୋଇପାରି ନଥିଲା ।

## ଯୋଗାଯୋଗ :

୧୮୬୮ ଏପ୍ରିଲ ଠାରୁ କଟକରୁ କଲିକତା ପର୍ଯ୍ୟନ୍ତ ବଳଦଗାଡ଼ିରେ ଡାକ ପରିବହନ ବ୍ୟବସ୍ଥା ପ୍ରଚଳନ ପାଇଁ ପ୍ରସ୍ତାବ ହେଲା । ଉକ୍ତ ଗାଡ଼ିରେ ଯାତ୍ରୀ ଓ ମାଲ ମଧ୍ୟ ପରିବହନ କରାଯାଇ ପାରିବ ବୋଲି ସ୍ଥିର କରାଗଲା ।

୧୮୬୯ ଠାରୁ ଡାକ ପ୍ରେରଣ ନିମନ୍ତେ ଦର ଧାର୍ଯ୍ୟ ହେଲା । ଅଧତୋଳା ଓଜନର ଚିଠି ନିମନ୍ତେ ଛଅ ପାହୁଲା, ଏକତୋଳା ଓଜନର ଚିଠି ପାଇଁ ଏକଅଣା ଓ ଦୁଇତୋଳା ଓଜନର ଚିଠି ପାଇଁ ଦୁଇଅଣା ଧାର୍ଯ୍ୟ କରାଗଲା । ପ୍ରଥମ ଦୁଇତୋଳା ଚିଠି ପାଇଁ ଦୁଇଅଣା ଏବଂ ଅଧିକ ପ୍ରତି ତୋଳାପ୍ରତି ଏକଅଣା ଭାବରେ ଡାକ ମାସୁଲ ସ୍ଥିର କରାଗଲା ।

ମଇ ୧୮୭୦ରେ ଭଦ୍ରଖରେ ଏକ ଡାକଘର ଖୋଲାଗଲା ଏବଂ ସର୍ବସାଧାରଣ ନିଜ ଖର୍ଚ୍ଚରୁ ବଳକା ଟଙ୍କା ଜମା କରିବା ପାଇଁ ସରକାରୀ ଖଜଣାଖାନାରେ ସେଭିଙ୍ଗସ୍ ବ୍ୟାଙ୍କ ଖୋଲିବା ପାଇଁ ଭାରତ ସରକାର ଆଦେଶ ଦେଲେ ।

## କ୍ରୀଡ଼ା ଓ ମନୋରଞ୍ଜନ :

୧୮୬୭ ଠାରୁ କଟକ ଠାରେ ଘୋଡ଼ାଦୌଡ଼ ପ୍ରତିଯୋଗିତା ୟୁରୋପିୟାନମାନଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । ଏହା ପ୍ରତିବର୍ଷ ବଡ଼ଦିନ ଅବସରରେ ଅନୁଷ୍ଠିତ ହେଉଥିଲା । ୧୮୬୮ ସାଲରେ ଘୋଡ଼ାଦୌଡ଼ ୨୦।୧୨।୧୮୬୮ରୁ ଆରମ୍ଭ ହୋଇ ୨।୧।୧୮୬୯ରେ ଉଦ୍‌ଯାପିତ ହୋଇଥିଲା ଏବଂ ଏହି ଘୋଡ଼ାଦୌଡ଼ ପ୍ରତିଯୋଗିତାରେ ପ୍ରଥମଥର ପାଇଁ ସ୍ଥାନୀୟ ଜମିଦାର ବାବୁ ଲକ୍ଷ୍ମୀନାରାୟଣ ଚୌଧୁରୀଙ୍କ ଏକ ଘୋଡ଼ା ଭାଗ ନେଇଥିଲା । ଏହିବର୍ଷ ଘୋଡ଼ାଦୌଡ଼ରେ ଭାଗ ନେବାପାଇଁ ବିଜୟନଗର

ମହାରାଜା ଏବଂ ସମ୍ବଲପୁରର ଡେପୁଟି କମିଶନର କଚ୍ଛ ଘୋଡ଼ା ପଠାଇ ଥିଲେ । ସେଥିମଧ୍ୟରୁ ବିଜୟନଗର ମହାରାଜାଙ୍କ ଘୋଡ଼ାମାନେ ଅଧିକାଂଶ ପୁରସ୍କାର ପାଇଥିଲେ ବେଳେ ସମ୍ବଲପୁରର ଡେପୁଟି କମିଶନରଙ୍କ ଘୋଡ଼ାମାନେ ଅଳ୍ପ କିଛି ପୁରସ୍କାର ଜିତିଥିବା ଜଣାଯାଏ । ପୁରସ୍କାରର ପରିମାଣ ଏକଶତ ଟଙ୍କାଠାରୁ ସାତଶହ ଟଙ୍କା ଯାଏ ଥିଲା ।

କଟକ ଠାରେ ୧୮୭୦ ଏବଂ ୧୮୭୧ରେ ଓଡ଼ିଶା ବାହାରୁ ମଲ୍ଲମାନଙ୍କୁ ଡକାଯାଇ ମଲ୍ଲଯୁଦ୍ଧ ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା ଏହାପରି ବିଭିନ୍ନ ସମୟରେ ବିଭିନ୍ନ ପ୍ରକାର କ୍ରୀଡ଼ା ପ୍ରତିଯୋଗିତାମାନ ଅନୁଷ୍ଠିତ ହେବା ସହିତ ସ୍କୁଲମାନଙ୍କରେ କ୍ରୀଡ଼ା ପ୍ରତିଯୋଗିତା ଆୟୋଜନ କରାଯାଇ କୃତି ପ୍ରତିଯୋଗୀମାନଙ୍କୁ ପୁରସ୍କାର ପ୍ରଦାନ କରାଯାଉଥିଲା । ଏହାଦ୍ୱାରା କ୍ରୀଡ଼ାକୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ସହରବାସୀଙ୍କ ମନୋରଞ୍ଜନ ବି ହୋଇପାରୁଥିଲା ।

## ସାଂସ୍କୃତିକ ଅନୁଷ୍ଠାନ, ପତ୍ରପତ୍ରିକା ଓ ବହି ପ୍ରକାଶନ :

କଟକଠାରେ ପ୍ରଥମ ଓଡ଼ିଆ ଛାପାଖାନା କଟକ ମିଶନ ପ୍ରେସ ୧୮୩୮ରେ ମିଶନାରୀମାନଙ୍କ ଦ୍ୱାରା ସ୍ଥାପିତ ହେଲା । ଉକ୍ତ ପ୍ରେସରୁ ଓଡ଼ିଆରେ ଖ୍ରୀଷ୍ଟିୟାନ ଧର୍ମ ସମ୍ବନ୍ଧୀୟ ପ୍ରଚାରପତ୍ର ଛାପାଯାଇ ବିତରଣ କରାଯାଉଥିଲା । ୧୮୪୯ରେ ପ୍ରଥମ ଓଡ଼ିଆ ମୁଦ୍ରିତ ପତ୍ରିକା 'ଜ୍ଞାନାରୁଣ' ମିଶନାରୀମାନଙ୍କ ଦ୍ୱାରା ପ୍ରକାଶିତ ହେଲା । ଏହାପରେ ୧୮୫୬ରେ ପ୍ରବୋଧ ଚନ୍ଦ୍ରିକା ଓ ୧୮୬୧ରେ 'ଅରୁଣୋଦୟ' ନାମକ ପତ୍ରିକା ପ୍ରକାଶ ପାଇଲା । ଊନବିଂଶ ଶତାବ୍ଦୀ ମଧ୍ୟରେ ମିଶନାରୀମାନଙ୍କ ଦ୍ୱାରା ଅଜ୍ଞାନୀ, ଧର୍ମବୋଧିନୀ, ତାରକା ଓ ଖ୍ରୀଷ୍ଟିୟାନ ମିତ୍ର ନାମକ ପତ୍ରିକା ମଧ୍ୟ ପ୍ରକାଶ ପାଉଥିଲା । ରୋମାନ କ୍ୟାଥଲିକ ସଂସ୍ଥାଦ୍ୱାରା ଖ୍ରୀଷ୍ଟରାଜ ଓ ପ୍ରଭାନାମକ ଓଡ଼ିଆ ପତ୍ରିକା ମଧ୍ୟ ପ୍ରକାଶିତ ହେଉଥିଲା । ଏହି ସମସ୍ତ ପତ୍ରିକା ଖ୍ରୀଷ୍ଟଧର୍ମର ଭାବଧାରା ପ୍ରଚାର ଉଦ୍ଦେଶ୍ୟରେ ପ୍ରକାଶିତ ହେଉଥିଲା ।

୧୮୬୬ରେ ବିଚିତ୍ରାନନ୍ଦ ଦାସ କଟକରେ କଟକ ପ୍ରିଣ୍ଟିଂ କମ୍ପାନୀ ସ୍ଥାପନ କଲେ ଏବଂ ସେଠାରୁ ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ 'ଉତ୍କଳ ଦୀପିକା' ନାମକ ସାହିତ୍ୟ ଓ ସମ୍ବାଦ ପତ୍ରିକା ପ୍ରକାଶ ପାଇଲା । ୧୭।୨।୧୮୬୯ରେ ଉତ୍କଳ ହିତୈଷିଣୀ ନାମକ ଦୈନିକ ଓଡ଼ିଆ ପତ୍ରିକା ଓ ୨।୪।୧୮୬୯ରେ 'କଟକ ଷ୍ଟାଣ୍ଡାର୍ଡ' ନାମକ ଦୈନିକ ଇଂରାଜୀ ପତ୍ରିକା ପ୍ରକାଶିତ ହେଲା । 'ବୋଧଦାୟିନୀ', 'ଶୁଭକରୀ' ଓ 'ଗ୍ରାମବାର୍ତ୍ତା ପ୍ରକାଶିକା' ନାମକ ମାସିକ ଓଡ଼ିଆ ପତ୍ରିକା ସେହିବର୍ଷ କଟକରୁ ପ୍ରକାଶ ପାଇଲା । ୧୮୭୦ରେ 'ଓଡ଼ିଶା ପେଟ୍ରିୟଟ' ନାମକ ପାକ୍ଷିକ ପତ୍ରିକା ଉଭୟ ଓଡ଼ିଆ ଓ ଇଂରେଜୀରେ ପ୍ରକାଶିତ ହେଲା । ୮।୭।୧୮୭୧ ଠାରୁ 'କଟକ କ୍ରନିକଲ' ନାମକ ଏକ ଇଂରେଜୀ ପତ୍ରିକା କଟକରୁ ପ୍ରକାଶ ପାଇଲା । ଏହି ସମୟ ମଧ୍ୟରେ ହିଆରେଗା ଓ 'କଟକ ଷ୍ଟାର' ନାମକ ପତ୍ରିକା ମଧ୍ୟ ପ୍ରକାଶ ପାଇଥିବା ଜଣାଯାଏ ।

ସ୍କୁଲ ପ୍ରତିଷ୍ଠା କରିବା ପାଇଁ ପ୍ରସ୍ତାବ ଦେଲେ । ଉକ୍ତ ପ୍ରସ୍ତାବକୁ କମିଶନର ରେଭେନ୍‌ସା ସାହେବ ସୁପାରିଶ କରି ସରକାରଙ୍କୁ ପଠାଇଲେ ଏବଂ ୧୫।୨।୧୮୭୫ରେ ଉକ୍ତ ସ୍କୁଲ କାର୍ଯ୍ୟ ଆରମ୍ଭ କଲା । କଟକ କଲେଜ ଓ ମେଡିକାଲ ସ୍କୁଲରେ ଗ୍ରାଣ୍ଟ ବୃତ୍ତି ଦେବା ପାଇଁ ମୟୂରଭଞ୍ଜ ମହାରାଜା ପାଞ୍ଚହଜାର ଟଙ୍କା ଦାନ କରିଥିଲେ । ୧୮୭୫ରେ ଡାକ୍ତରଖାନା ନିର୍ମିତ ହେଲା ।

୧୮୭୨ରେ ଓଡ଼ିଶାରେ ଫ୍ଲୁରୋଗ ବ୍ୟାପକ ଭାବରେ ବ୍ୟାପିଥିଲା । ସର୍ବସାଧାରଣ ଲୋକେ ଏହାକୁ ଘୁମାରୋଗ ବୋଲି କହୁଥିଲେ । ସେହି ବର୍ଷ ଗଡ଼ଜାତ ଅଞ୍ଚଳରେ ହଇଜା ବ୍ୟାପିଥିଲା । କଟକ ଜିଲ୍ଲାରେ ଏକଶତ ତେୟାଳିଶ ଜଣ ହଇଜାରେ ମୃତ୍ୟୁବରଣ କରିଥିବା ଜଣାଯାଏ ଏବଂ ସରକାର ପ୍ରତିଷେଧକ ଭାବରେ କଲେରା ବଟିକା ବିତରଣ କରିଥିଲେ ମଧ୍ୟ ତାହା ରୋଗ ପ୍ରତିରୋଧ ନିମନ୍ତେ ସକ୍ଷମ ହୋଇପାରି ନଥିଲା ।

## ଯୋଗାଯୋଗ :

୧୮୬୮ ଏପ୍ରିଲ ଠାରୁ କଟକରୁ କଲିକତା ପର୍ଯ୍ୟନ୍ତ ବଳଦଗାଡ଼ିରେ ଡାକ ପରିବହନ ବ୍ୟବସ୍ଥା ପ୍ରଚଳନ ପାଇଁ ପ୍ରସ୍ତାବ ହେଲା । ଉକ୍ତ ଗାଡ଼ିରେ ଯାତ୍ରୀ ଓ ମାଲ ମଧ୍ୟ ପରିବହନ କରାଯାଇ ପାରିବ ବୋଲି ସ୍ଥିର କରାଗଲା ।

୧୮୬୯ ଠାରୁ ଡାକ ପ୍ରେରଣ ନିମନ୍ତେ ଦର ଧାର୍ଯ୍ୟ ହେଲା । ଅଧତୋଳା ଓଜନର ଚିଠି ନିମନ୍ତେ ଛଅ ପାହୁଲା, ଏକତୋଳା ଓଜନର ଚିଠି ପାଇଁ ଏକଅଣା ଓ ଦୁଇତୋଳା ଓଜନର ଚିଠି ପାଇଁ ଦୁଇଅଣା ଧାର୍ଯ୍ୟ କରାଗଲା । ପ୍ରଥମ ଦୁଇତୋଳା ଚିଠି ପାଇଁ ଦୁଇଅଣା ଏବଂ ଅଧିକ ପ୍ରତି ତୋଳାପ୍ରତି ଏକଅଣା ଭାବରେ ଡାକ ମାସୁଲ ସ୍ଥିର କରାଗଲା ।

ମଇ ୧୮୭୦ରେ ଭଦ୍ରକରେ ଏକ ଡାକଘର ଖୋଲାଗଲା ଏବଂ ସର୍ବସାଧାରଣ ନିଜ ଖର୍ଚ୍ଚରୁ ବଳକା ଟଙ୍କା ଜମା କରିବା ପାଇଁ ସରକାରୀ ଖଜଣାଖାନାରେ ସେଭିଙ୍ଗସ୍ ବ୍ୟାଙ୍କ ଖୋଲିବା ପାଇଁ ଭାରତ ସରକାର ଆଦେଶ ଦେଲେ ।

## କ୍ରୀଡ଼ା ଓ ମନୋରଞ୍ଜନ :

୧୮୬୭ ଠାରୁ କଟକ ଠାରେ ଘୋଡ଼ାଦୌଡ଼ ପ୍ରତିଯୋଗିତା ୟୁରୋପିୟାନମାନଙ୍କ ଦ୍ୱାରା ଆରମ୍ଭ ହୋଇଥିଲା । ଏହା ପ୍ରତିବର୍ଷ ବଡ଼ଦିନ ଅବସରରେ ଅନୁଷ୍ଠିତ ହେଉଥିଲା । ୧୮୬୮ ସାଲରେ ଘୋଡ଼ାଦୌଡ଼ ୨୦।୧୨।୧୮୬୮ରୁ ଆରମ୍ଭ ହୋଇ ୨।୧।୧୮୬୯ରେ ଉଦ୍‌ଯାପିତ ହୋଇଥିଲା ଏବଂ ଏହି ଘୋଡ଼ାଦୌଡ଼ ପ୍ରତିଯୋଗିତାରେ ପ୍ରଥମଥର ପାଇଁ ସ୍ଥାନୀୟ ଜମିଦାର ବାବୁ ଲକ୍ଷ୍ମୀନାରାୟଣ ଚୌଧୁରୀଙ୍କ ଏକ ଘୋଡ଼ା ଭାଗ ନେଇଥିଲା । ଏହିବର୍ଷ ଘୋଡ଼ାଦୌଡ଼ରେ ଭାଗ ନେବାପାଇଁ ବିଜୟନଗର

ମହାରାଜା ଏବଂ ସମ୍ବଲପୁରର ଡେପୁଟି କମିଶନର କଟ୍ଟ ଘୋଡ଼ା ପଠାଇ ଥିଲେ । ସେଥିମଧ୍ୟରୁ ବିଜୟନଗର ମହାରାଜାଙ୍କ ଘୋଡ଼ାମାନେ ଅଧିକାଂଶ ପୁରସ୍କାର ପାଇଥିଲା ବେଳେ ସମ୍ବଲପୁରର ଡେପୁଟି କମିଶନରଙ୍କ ଘୋଡ଼ାମାନେ ଅଳ୍ପ କଟ୍ଟ ପୁରସ୍କାର ଜିତିଥିବା ଜଣାଯାଏ । ପୁରସ୍କାରର ପରିମାଣ ଏକଶତ ଟଙ୍କାଠାରୁ ସାତଶହ ଟଙ୍କା ଯାଏ ଥିଲା ।

କଟକ ଠାରେ ୧୮୭୦ ଏବଂ ୧୮୭୧ରେ ଓଡ଼ିଶା ବାହାରୁ ମଲ୍ଲମାନଙ୍କୁ ଡକାଯାଇ ମଲ୍ଲଯୁଦ୍ଧ ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା ଏହାପରେ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାର କ୍ରୀଡ଼ା ପ୍ରତିଯୋଗିତାମାନ ଅନୁଷ୍ଠିତ ହେବା ସହିତ ସ୍କୁଲମାନଙ୍କରେ କ୍ରୀଡ଼ା ପ୍ରତିଯୋଗିତା ଆୟୋଜନ କରାଯାଇ କୃତୀ ପ୍ରତିଯୋଗୀମାନଙ୍କୁ ପୁରସ୍କାର ପ୍ରଦାନ କରାଯାଉଥିଲା । ଏହାଦ୍ୱାରା କ୍ରୀଡ଼ାକୁ ଉତ୍ସାହିତ କରାଯିବା ସଙ୍ଗେ ସଙ୍ଗେ ସହରବାସୀଙ୍କ ମନୋରଞ୍ଜନ ବି ହୋଇପାରୁଥିଲା ।

## ସାଂସ୍କୃତିକ ଅନୁଷ୍ଠାନ, ପତ୍ରପତ୍ରିକା ଓ ବହି ପ୍ରକାଶନ :

କଟକଠାରେ ପ୍ରଥମ ଓଡ଼ିଆ ଛାପାଖାନା କଟକ ମିଶନ ପ୍ରେସ ୧୮୩୮ରେ ମିଶନାରୀମାନଙ୍କ ଦ୍ୱାରା ସ୍ଥାପିତ ହେଲା । ଉକ୍ତ ପ୍ରେସରୁ ଓଡ଼ିଆରେ ଖ୍ରୀଷ୍ଟିୟାନ ଧର୍ମ ସମ୍ବନ୍ଧୀୟ ପ୍ରଚାରପତ୍ର ଛପାଯାଇ ବିତରଣ କରାଯାଉଥିଲା । ୧୮୪୯ରେ ପ୍ରଥମ ଓଡ଼ିଆ ମୁଦ୍ରିତ ପତ୍ରିକା 'ଜ୍ଞାନାରୁଣ' ମିଶନାରୀମାନଙ୍କ ଦ୍ୱାରା ପ୍ରକାଶିତ ହେଲା । ଏହାପରେ ୧୮୫୬ରେ ପ୍ରବୋଧ ଚନ୍ଦ୍ରିକା ଓ ୧୮୬୧ରେ 'ଅରୁଣୋଦୟ' ନାମକ ପତ୍ରିକା ପ୍ରକାଶ ପାଇଲା । ଊନବିଂଶ ଶତାବ୍ଦୀ ମଧ୍ୟରେ ମିଶନାରୀମାନଙ୍କ ଦ୍ୱାରା ଅଙ୍ଗନା, ଧର୍ମବୋଧିନୀ, ତାରକା ଓ ଖ୍ରୀଷ୍ଟିୟାନ ମିତ୍ର ନାମକ ପତ୍ରିକା ମଧ୍ୟ ପ୍ରକାଶ ପାଉଥିଲା । ରୋମାନ କ୍ୟାଥଲିକ ସଂସ୍ଥାଦ୍ୱାରା ଖ୍ରୀଷ୍ଟରାଜ ଓ ପ୍ରଭାନାମକ ଓଡ଼ିଆ ପତ୍ରିକା ମଧ୍ୟ ପ୍ରକାଶିତ ହେଉଥିଲା । ଏହି ସମସ୍ତ ପତ୍ରିକା ଖ୍ରୀଷ୍ଟଧର୍ମର ଭାବଧାରା ପ୍ରଚାର ଉଦ୍ଦେଶ୍ୟରେ ପ୍ରକାଶିତ ହେଉଥିଲା ।

୧୮୬୬ରେ ବିଚିତ୍ରାନନ୍ଦ ଦାସ କଟକରେ କଟକ ପ୍ରିଣ୍ଟିଂ କମ୍ପାନୀ ସ୍ଥାପନ କଲେ ଏବଂ ସେଠାରୁ ଗୌରୀଶଙ୍କର ରାୟଙ୍କ ସମ୍ପାଦନାରେ 'ଉତ୍କଳ ଦୀପିକା' ନାମକ ସାହିତ୍ୟ ଓ ସମ୍ବାଦ ପତ୍ରିକା ପ୍ରକାଶ ପାଇଲା । ୧୬।୨।୧୮୬୯ରେ ଉତ୍କଳ ହିତୈଷିଣୀ ନାମକ ଦୈନିକ ଓଡ଼ିଆ ପତ୍ରିକା ଓ ୭।୯।୧୮୬୯ରେ 'କଟକ ଷ୍ଟାଣ୍ଡାର୍ଡ' ନାମକ ଦୈନିକ ଇଂରାଜୀ ପତ୍ରିକା ପ୍ରକାଶିତ ହେଲା । 'ବୋଧଦାୟିନୀ', 'ଶୁଭକରୀ' ଓ 'ଗ୍ରାମବାର୍ତ୍ତା ପ୍ରକାଶିକା' ନାମକ ମାସିକ ଓଡ଼ିଆ ପତ୍ରିକା ସେହିବର୍ଷ କଟକରୁ ପ୍ରକାଶ ପାଇଲା । ୧୮୭୦ରେ 'ଓଡ଼ିଶା ପେଟ୍ରିୟଟ' ନାମକ ପାକ୍ଷିକ ପତ୍ରିକା ଉଭୟ ଓଡ଼ିଆ ଓ ଇଂରେଜୀରେ ପ୍ରକାଶିତ ହେଲା । ୮।୬।୧୮୭୧ ଠାରୁ 'କଟକ କ୍ରନିକଲ' ନାମକ ଏକ ଇଂରେଜୀ ପତ୍ରିକା କଟକରୁ ପ୍ରକାଶ ପାଇଲା । ଏହି ସମୟ ମଧ୍ୟରେ ଦୀପଆଲୋକ ଓ 'କଟକ ଷ୍ଟାର' ନାମକ ପତ୍ରିକା ମଧ୍ୟ ପ୍ରକାଶ ପାଇଥିବା ଜଣାଯାଏ ।

୧୮୬୮ ପୂର୍ବରୁ ଓଡ଼ିଶାର ସ୍କୁଲଗୁଡ଼ିକରେ ବଙ୍ଗଳା ଭାଷାରେ ଶିକ୍ଷାଦାନ କରାଯାଉଥିଲା । ସରକାର ଉକ୍ତ ବର୍ଷ ଓଡ଼ିଶାର ସ୍କୁଲଗୁଡ଼ିକରେ କେଉଁ ଭାଷାରେ ଶିକ୍ଷାଦାନ ହେଉଛି ଜାଣିବାକୁ ଚାହିଁଲେ । ତତ୍କାଳୀନ ଦକ୍ଷିଣ-ପଶ୍ଚିମାଞ୍ଚଳ ସ୍କୁଲ ଇନ୍‌ସପେକ୍ଟର ଶ୍ରୀ ରାଜେନ୍ଦ୍ର ଲାଲ ମିତ୍ର ବଙ୍ଗଳା ଭାଷାରେ ଓଡ଼ିଶାର ସ୍କୁଲଗୁଡ଼ିକରେ ଶିକ୍ଷାଦାନ ଦେବା ପାଇଁ ପ୍ରସ୍ତାବ ଦେଲେ । ସେହି ପ୍ରସ୍ତାବ ସପକ୍ଷରେ ମତଦେବାକୁ ଯାଇ ସେ ଲେଖିଲେ ଯେ ଓଡ଼ିଆ ଭାଷାରେ ଶିକ୍ଷାଦାନ ଦେବା ପାଇଁ ଓଡ଼ିଆ ପୁସ୍ତକ ଦୁଷ୍ପ୍ରାପ୍ୟ ଏବଂ କୋଡ଼ିଏ ବର୍ଷ ମଧ୍ୟରେ ଏହି ଅଭାବ ପୂରଣ ହୋଇପାରେ । କିନ୍ତୁ ସରକାର ଏହି ପ୍ରସ୍ତାବ ପ୍ରତି ଗୁରୁତ୍ୱ ନ ଦେଇ ଡିରେକ୍ଟର ଜେନେରାଲ କମିଶନରଙ୍କ ମତାମତ ନେଲେ । ତତ୍କାଳୀନ କମିଶନର ଟି: ଇ: ରେଭେନ୍‌ସା ଏହାର ଘୋର ପ୍ରତିବାଦ କରି ଓଡ଼ିଶା ସ୍କୁଲଗୁଡ଼ିକରେ ଓଡ଼ିଆରେ ପାଠଦାନ କରିବା ପାଇଁ ପ୍ରସ୍ତାବ ଦେଲେ । ବହୁ ତର୍କବିତର୍କର ଅବସାନ କରି ୧୮୭୦ ଠାରୁ ସ୍କୁଲଗୁଡ଼ିକରେ ଓଡ଼ିଆ ମାଧ୍ୟମରେ ଶିକ୍ଷାଦାନ କରିବା ପାଇଁ ସରକାର ଆଦେଶ ଦେଲେ ।

ଏହି ପରିପ୍ରେକ୍ଷୀରେ କଲିକତାର ସ୍କୁଲ ବୁକ୍ ସୋସାଇଟି ଦକ୍ଷିଣ-ପଶ୍ଚିମାଞ୍ଚଳ ସ୍କୁଲ ଇନ୍‌ସପେକ୍ଟରଙ୍କୁ ଜଣାଇଲେ ଯେ କମିଟି ଦ୍ୱାରା ସ୍ୱୀକୃତି ପାଇ ନ ଥିବା ପାଠ୍ୟ-ପୁସ୍ତକ ବ୍ୟତୀତ ଅନ୍ୟ କୌଣସି ଓଡ଼ିଆ ପୁସ୍ତକ ଛପାଇ ପାରିବେ ନାହିଁ ।

ଏହି ସମୟରେ ୧୮୬୮ରେ ଢେଙ୍କାନାଳ ମହାରାଜା ହାଇସ୍କୁଲ ପାଠ୍ୟପୁସ୍ତକ ପ୍ରକାଶନ ନିମନ୍ତେ ଏକହଜାର ଟଙ୍କା କଟକ ଏଡ୍‌ୁକେସନାଲ କମିଟିକୁ ଦାନ କଲେ । ସେହି ଟଙ୍କାରୁ ସର୍ବଶ୍ରେଷ୍ଠ ବିବେଚିତ ହେବା ଓଡ଼ିଶା ଇତିହାସ ପୁସ୍ତକର ଲେଖକଙ୍କୁ ତିନିଶତ ଟଙ୍କା ପୁରସ୍କାର ଦେବା ପାଇଁ କମିଟି ଘୋଷଣା କଲେ । ସରକାର ଡବ୍ଲ୍ୟୁ: ସି: ଲେସିଙ୍କ ସଭାପତିତ୍ୱରେ ପାଠ୍ୟପୁସ୍ତକ ନିର୍ବାଚନ ନିମନ୍ତେ ଏକ କମିଟି ଗଠନ କଲେ । ଉକ୍ତ କମିଟିରେ ରାଜା ଭଗୀରଥି ମହେନ୍ଦ୍ର ବାହାଦୁର, ବିଚିତ୍ରାନନ୍ଦ ଦାସ, ବନମାଳୀ ସିଂହ ଓ ଦ୍ୱାରକାନାଥ ଚକ୍ରବର୍ତ୍ତୀ ସଭ୍ୟ ଭାବରେ ରହିଲେ । ଏହା ଫଳରେ ଓଡ଼ିଆରେ ପାଠ୍ୟପୁସ୍ତକ ରଚନା ଓ ପ୍ରକାଶନ ନିମନ୍ତେ ଉତ୍ସାହ ବୃଦ୍ଧି ପାଇଲା ଓ ଉଲ୍ଲେଖଯୋଗ୍ୟ ଅଗ୍ରଗତି ପରିଲକ୍ଷିତ ହେଲା । ଏଣୁ ୧୮୬୯ ସୁଦ୍ଧା କେତେକ ଓଡ଼ିଆ ପାଠ୍ୟପୁସ୍ତକ ରଚିତ ଓ ଅନୁବାଦିତ ହୋଇ ପ୍ରକାଶିତ ହେଲା ।

୧୮୭୨ରେ ଓଡ଼ିଆରେ ପାଟିଗଣିତ, ଜୀବତତ୍ତ୍ୱ, କୃଷିବିଜ୍ଞାନ, ଭାରତ ଇତିହାସ, ଭୂଗୋଳ, ମାନସାଙ୍କ, ପତ୍ରଲେଖନ, ଓଡ଼ିଆ ମାନଚିତ୍ର ଓ ଅଭିଧାନର ଶ୍ରେଷ୍ଠ ପୁସ୍ତକ ଲେଖକଙ୍କୁ ଟ ୩୦୦୦.୦୦ ପୁରସ୍କାର ଦିଆଯିବା ପାଇଁ ସରକାରୀ ଘୋଷଣାନାମା ପ୍ରକାଶ ପାଇଲା । କ୍ରମେ କ୍ରମେ ପୁସ୍ତକ ରଚନା ଓ ପ୍ରକାଶନ କ୍ଷେତ୍ରରେ ଉନ୍ନତି ହେଲା ଏବଂ ଓଡ଼ିଆ ପାଠ୍ୟପୁସ୍ତକ ସମସ୍ୟା ଦୂରୀଭୂତ ହେଲା ।

ମିଶନାରୀମାନଙ୍କ ଉଦ୍ୟମରେ ମଧ୍ୟ ବହୁ ଓଡ଼ିଆ ପୁସ୍ତକ ରଚିତ ଓ ପ୍ରକାଶିତ ହୋଇଥିବା ଜଣାଯାଏ । ଶ୍ରୀରାମପୁର ମିଶନାରୀମାନେ ଓଡ଼ିଆରେ ନୂତନ ନିୟମ

ଅନୁବାଦ କରି ପ୍ରକାଶ କରାଇଥିଲେ । ଷ୍ଟିଫେନ୍ ସଟନ୍ ୧୮୮୧ରେ ଓଡ଼ିଆ ଇଂରେଜି ବ୍ୟାକରଣ, ୧୮୩୯ରେ ଓଡ଼ିଶା ଇତିହାସ, ଓଡ଼ିଆ ଭୂଗୋଳ, ଓଡ଼ିଆ ପଦାର୍ଥ ବିଦ୍ୟାସାର (୧୮୪୫) ନାମକ ବହି ପ୍ରଣୟନ କରିଥିଲେ । ୧୮୪୧-୪୩ ମଧ୍ୟରେ ସେ ଏକ ଓଡ଼ିଆ ଶବ୍ଦକୋଷ ସଂକଳନ କରିଥିଲେ । ଓଡ଼ିଆ ପ୍ରତିଶବ୍ଦ ସହିତ ସଂସ୍କୃତ ଶବ୍ଦାବଳୀ ଉପରେ ଗୋଟିଏ ବହି ମଧ୍ୟ ୧୮୪୪ରେ ସମ୍ପାଦନା କରିଥିଲେ । ଇ. ସି. ବି ହାଲନ ମଧ୍ୟ ଏକ ଓଡ଼ିଆ ଶବ୍ଦକୋଷ ସମ୍ପାଦନା କରିଥିବା ଜଣାଯାଏ । ଓଡ଼ିଶାର ଭୂଗୋଳ ନାମକ ବହି ୧୮୪୫ରେ ଫଲିନ୍ସ ସାହେବ ରଚନା କରିଥିଲେ । ଏହା ବ୍ୟତୀତ ସରକାରୀ ଦପ୍ତରରେ ବ୍ୟବହାର ନିମନ୍ତେ ସରକାରୀ ଆଇନଗୁଡ଼ିକୁ ସଟନ୍ ସାହେବ ଓଡ଼ିଆରେ ଅନୁବାଦ କରିଥିବା ଜଣାଯାଏ ।

୧୮୭୦ରେ ବିଛନ୍ଦ ପଟ୍ଟନାୟକଙ୍କ ଲିଖିତ ବୋଧଦାୟ ଓ ବ୍ୟାକରଣ ସଂକ୍ଷେପ, ଚୂଡ଼ାମଣିଙ୍କ ଉପଦେଶ ମଞ୍ଜରୀ, ସଟନ୍‌ଙ୍କ ପଦ୍ୟମାଳା ପ୍ରଥମ ଭାଗ ଓ ପାଟିଗଣିତ ପ୍ରଥମ ଭାଗ, ପଣ୍ଡିତ ପ୍ରଭାକର ବିଦ୍ୟାରତ୍ନଙ୍କ ପଦ୍ୟ ସଂଗ୍ରହ ଓ ଉପଦେଶ ମଞ୍ଜରୀ, ଦ୍ୱାରକାନାଥ ଚକ୍ରବର୍ତ୍ତୀଙ୍କ ଶିକ୍ଷାବିଧାନ, ଫକୀରମୋହନ ସେନାପତିଙ୍କ ଭାରତ ଇତିହାସ ଦ୍ୱିତୀୟ ଭାଗ ଏବଂ ରାମପ୍ରସନ୍ନ ମୁଖୋପାଧ୍ୟାୟଙ୍କ ଦ୍ୱାରା ଓଡ଼ିଆରେ ଅନୁବାଦିତ ଭୂବିଦ୍ୟା ଓ ନବୀନ ଷଡ଼ଙ୍ଗୀଙ୍କ ଓଡ଼ିଆ ଅନୁବାଦିତ କ୍ଷେତ୍ରକାଣ୍ଡ (ଜ୍ୟାମିତି) ପୁସ୍ତକ ଓଡ଼ିଆରେ ପ୍ରକାଶିତ ହୋଇଥିଲା ।

୧୮୬୮ ସୁଦ୍ଧା କଟକ ପ୍ରିଣ୍ଟିଂ ପ୍ରେସରୁ ଉପେନ୍ଦ୍ର ଭଞ୍ଜଙ୍କ ପ୍ରେମସୁଧାନିଧି, ରସପଞ୍ଚକ ପ୍ରକାଶ ପାଇଥିଲା । ଏହା ବ୍ୟତୀତ ଶକୁନ୍ତଳା ଉପାଖ୍ୟାନ, ଭୂଗୋଳ ସୂତ୍ର ମଧ୍ୟ ପ୍ରକାଶ ପାଇଥିଲା । କାଦମ୍ବରୀ, ମାନଭଞ୍ଜନ, ଦର୍ଶନ ଚନ୍ଦ୍ର ଓ ରଘୁବଂଶ ପୁସ୍ତକ ମଧ୍ୟ ୧୮୬୮ରେ ପ୍ରକାଶିତ ହୋଇଥିଲା ଏବଂ କୃଷ୍ଣ ସିଂହ ମହାଭାରତ ଛପା ହୋଇଥିଲା । ୧୮୬୯-୭୦ ନିମନ୍ତେ ପ୍ରଥମଥର ପାଇଁ ଓଡ଼ିଆ ନୂତନ ପଞ୍ଜିକା ପ୍ରକାଶିତ ହୋଇଥିଲା ୧୮୬୮ ସାଲରେ ।

ପତ୍ରପତ୍ରିକା ଓ ପୁସ୍ତକ ପ୍ରକାଶନ ଓଡ଼ିଶାର ଶିକ୍ଷା ଓ ସଂସ୍କୃତିର ଦିଗ୍‌ବଳୟକୁ ଯେମିତି ପ୍ରସାରିତ କଲା କେତେଗୁଡ଼ିଏ ସାଂସ୍କୃତିକ ଅନୁଷ୍ଠାନ ମଧ୍ୟ କଟକରେ ମୁଣ୍ଡଟେକି ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ଋଦ୍ଧିମନ୍ତ କରିବାକୁ ଚେଷ୍ଟିତ ଥିଲେ । ତାହା ମଧ୍ୟରୁ ୧୮୬୬ରେ ପ୍ରତିଷ୍ଠିତ ଉତ୍କଳ ବିଧାୟିନୀ ସଭା, ୧୮୬୯ରେ କଟକ ଡିବେଟିଙ୍ଗ କ୍ଳବ୍, ୨୦।୫।୧୮୬୭ରେ ପ୍ରତିଷ୍ଠିତ ଉତ୍କଳ ଭାଷୋଦ୍ଦୀପନୀ ସଭା, ୧୮୬୬ରେ ଓଡ଼ିଆ ତାଳପତ୍ର ସାହିତ୍ୟ ଉଦ୍ଧାରଣ ସମିତି ଏବଂ ଉତ୍କଳ ସଭା ଇତ୍ୟାଦି ଉଲ୍ଲେଖଯୋଗ୍ୟ । ୧୬ । ୧୨ । ୧୮୯୩ରେ ଭକ୍ତକବି ମଧୁସୂଦନ ରାଓଙ୍କ ସଭାପତିତ୍ୱ ଓ ଚନ୍ଦ୍ରମୋହନ ମହାରଣାଙ୍କ ସମ୍ପାଦକତ୍ୱରେ ଆଲୋଚନା ସଭା ନାମକ ଅନୁଷ୍ଠାନ ଜନ୍ମଲାଭ କଲା । ପ୍ରତି ଶନିବାର ଦିନ ବୈଠକ ଅନୁଷ୍ଠିତ ହୋଇ ବିଭିନ୍ନ ବିଷୟରେ ପ୍ରବନ୍ଧ ପାଠ କରାଯାଉଥିଲା । ୭ । ୫ । ୧୯୦୩ରେ ଏହି ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜ ନାମରେ ନାମିତ ହେଲା ।

କଟକ ଡ଼ିବେଟିଙ୍ଗ କ୍ଲବ (୧୬୬୮) କଟକ ସୋସାଇଟି (୧୮୬୯) ଉତ୍କଳୋ-ନ୍ନତିସିଣୀ (୧୮୬୯) ଇତ୍ୟାଦି ଅନୁଷ୍ଠାନ କଟକରେ ଗଠିତ ହୋଇ ବିଭିନ୍ନ ବିଷୟମାନଙ୍କ ଉପରେ ଆଲୋଚନା ସଭାମାନ ଅନୁଷ୍ଠିତ କରାଉଥିଲେ । ଏଥିରେ ରେଭେନ୍‌ସା ସାହେବ ମଧ୍ୟ ଯୋଗ ଦେଉଥିଲେ ଏବଂ ସମସ୍ତଙ୍କ ସହ ସ୍ୱଚ୍ଛନ୍ଦରେ ମିଳାମିଶା କରୁଥିଲେ । ୩।୪।୧୮୭୧ରେ ରେଭେନ୍‌ସା ସାହେବ ଉଡ଼ରେକ୍ତ ଉନୋଟି ସଙ୍ଗଠନର ମିଶ୍ରଣ ସମ୍ପର୍କୀୟ ପୂର୍ବର ପ୍ରସ୍ତାବ ଉପରେ ଅନୁକୂଳ ମତାମତ ଦେଇ ଏହାର ଉପକାରିତା ସମ୍ବନ୍ଧରେ ଭାଷଣ ଦେଇଥିଲେ । ୧୮୭୧ ବେଳକୁ ୟଙ୍ଗମ୍ୟାନସ ଲିଟେରେରି ଆସୋସିଏସନ ନାମକ ଏକ ଅନୁଷ୍ଠାନ ମଧ୍ୟ କାର୍ଯ୍ୟ କରୁଥିବା ଜଣାଯାଏ ।

## ଧର୍ମ :

ଊନବିଂଶ ଶତାବ୍ଦୀରେ ଓଡ଼ିଶା ବ୍ରିଟିଶ ଶାସନାଧୀନ ହେବା ଦ୍ୱାରା ଖ୍ରୀଷ୍ଟଧର୍ମର ପ୍ରସାର ପାଇଁ ରାସ୍ତା ସୁଗମ ହେଲା । ଏଣୁ ୧୮୨୨ ଫେବ୍ରୁୟାରୀ ୧୨ ତାରିଖ ଠାରୁ ଅର୍ଥାତ୍ ଯେଉଁଦିନ ଠାରୁ ଖ୍ରୀଷ୍ଟିୟାନ ମିଶନାରୀମାନେ କଟକରେ ପଦାର୍ପଣ କଲେ ସେହି ଦିନଠାରୁ କଟକ ଖ୍ରୀଷ୍ଟଧର୍ମ ପ୍ରଚାରର ଏକ ମୁଖ୍ୟ କେନ୍ଦ୍ର ହୋଇ ଆସିଛି । ସେହି ବର୍ଷ କଟକ ଠାରେ ଦି ଜେନେରାଲ ବାପ୍‌ଟିଷ୍ଟ ମିଶନର କେନ୍ଦ୍ର ଖୋଲିଲା । ଏହା ପୂର୍ବରୁ ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାର ନିମନ୍ତେ ଶ୍ରୀରାମପୁର ମିଶନରୁ କ୍ରମାଗତ ଉଦ୍ୟମ କରାଯାଉଥିଲେ ମଧ୍ୟ ତାହା ସଫଳ ହୋଇ ପାରୁନଥିଲା ।

କଟକରେ ରୋମାନ କ୍ୟାଥଲିକ ମିଶନ ୧୮୫୦ରେ ସ୍ଥାପିତ ହେଲା । ଓଡ଼ିଶାରେ ଖ୍ରୀଷ୍ଟିୟାନ ମିଶନାରୀମାନେ ସେମାନଙ୍କ ଧର୍ମ ପ୍ରଚାର ଚଳାଇଲେ । ସେହି ଉଦ୍ଦେଶ୍ୟରେ ବିଭିନ୍ନ ସ୍ଥାନରେ ସ୍କୁଲ ବସାଇଲେ । ନାରୀଶିକ୍ଷାକୁ ଉତ୍ସାହିତ କଲେ । କନ୍ଧମାଳ ଅଞ୍ଚଳରୁ ଉଦ୍ଧାର କରାଯାଇଥିବା ମେରିଆମାନଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଇ ବ୍ରହ୍ମପୁର, କଟକ ଓ ବାଲେଶ୍ୱରରେ ରଖାଇଥାନ କଲେ । ବନ୍ୟା, ମରୁଡ଼ି ଓ ସଂକ୍ରାମକ ବ୍ୟାଧି ବ୍ୟାପୁଥିବା ସମୟରେ ରିଲିଫ୍ ଓ ଔଷଧ ବାଣ୍ଟିଲେ । ହାଟ ବଜାରମାନଙ୍କରେ ଖ୍ରୀଷ୍ଟିୟାନ ଧର୍ମଧାରା ପ୍ରଚାର କଲେ ଓ ପ୍ରଚାରପତ୍ର ବାଣ୍ଟିଲେ । ଏହିପରି କ୍ରମାଗତ ଉଦ୍ୟମ ଫଳରେ ୧୮୨୮ରେ ବ୍ରହ୍ମପୁରରେ ଜଣେ ବ୍ୟକ୍ତି ପ୍ରଥମେ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ଓ ସେହିବର୍ଷ କଟକରେ ଦୁଇଜଣ ହିନ୍ଦୁ ଧର୍ମାନ୍ତରିତ ହେଲେ ।

ଖ୍ରୀଷ୍ଟିୟାନମାନେ ଓ ୟୁରୋପିଆନ କର୍ମଚାରୀମାନେ ବଡ଼ଦିନ ପର୍ବ ପାଳନ କରୁଥିଲେ । ମୁସଲିମ ପର୍ବ ମଧ୍ୟରେ ମହରମ, ଇଦ୍ ଉଲ୍ ଫିତର୍, ଇଦ୍ ଉଲ୍ ଜୁହା ବି ପାଳିତ ହେଉଥିଲା । କଦମରସୁଲ ଠାରେ ଭକ୍ତମାନଙ୍କ ଦ୍ୱାରା ଦୀପ ପ୍ରଜ୍ୱଳିତ କରାଯାଉଥିଲା । ସ୍ତ୍ରୀମାନେ ମଧ୍ୟ ଉକ୍ତ ସ୍ଥାନକୁ ଦର୍ଶନ ପାଇଁ ଯାଉଥିଲେ ।

ହିନ୍ଦୁମାନେ ଦଶହରା, ଦୀପାବଳୀ, ବାଲିଯାତ୍ରା, ଚନ୍ଦନଯାତ୍ରା, ରାମନବମୀ ୧୮୬୮ ବେଳକୁ ବି ପାଳନ କରୁଥିବା ଜଣାଯାଏ । ୧୮୭୧ ଓ ୭୨ରେ କାଠଯୋଡ଼ି କୂଳରେ ଅନ୍ୟ ଏକ ବାଲିଯାତ୍ରା ମଧ୍ୟ ଅନୁଷ୍ଠିତ ହେଉଥିଲା ।

୧୮୭୨ରେ ବ୍ରାହ୍ମସମାଜର ଏକ ଶାଖା କଟକ ଠାରେ ସ୍ଥାପିତ ହେଲା ଏବଂ ତାହାର ସ୍ଥାୟୀ ଗୃହ ନିର୍ମାଣ ନିମନ୍ତେ ଉଦ୍ୟମ ଆରମ୍ଭ ହେଲା ।

ଏଥିରୁ ପ୍ରତୀୟମାନ ହୁଏ ଯେ ବ୍ରିଟିଶମାନେ ଅନ୍ୟ ଧର୍ମ ଉପରେ ହସ୍ତକ୍ଷେପ କରୁନଥିଲେ । ଖ୍ରୀଷ୍ଟିଆନ ମିଶନାରୀମାନଙ୍କ ପ୍ରଭାବରେ କେତେକ ଅନ୍ଧବିଶ୍ୱାସ ଓ କୁପ୍ରଥା ଧୀରେ ଧୀରେ ଲୋପ ପାଇଲା ।

**ଉପସଂହାର :**

ଊନବିଂଶ ଶତାବ୍ଦୀରେ କଟକ ବ୍ରିଟିଶ ଶାସନାଧୀନ ହେଲା । ଏଣୁ ଊନବିଂଶ ଶତାବ୍ଦୀର କଟକର ଇତିହାସ ମୋଟ ଉପରେ ବ୍ରିଟିଶ ଶାସନର ଇତିହାସ ଅଟେ । ବ୍ରିଟିଶ ଶାସନକାଳରେ ସେମାନଙ୍କ ଆବଶ୍ୟକତା ପୂରଣ ନିମନ୍ତେ ପ୍ରତ୍ୟେକ କ୍ଷେତ୍ରରେ ଉନ୍ନତି କରିବାକୁ ବ୍ରିଟିଶମାନେ ଚେଷ୍ଟିତ ଥିଲେ । ଏଣୁ କ୍ରମେ କ୍ରମେ ଓଡ଼ିଆମାନେ ଆଧୁନିକ ଶିକ୍ଷା ଓ ସଭ୍ୟତା ପ୍ରତି ଆକୃଷ୍ଟ ହେଲେ ।



କଟକ ଡିବେଟିଙ୍ଗ କ୍ଲବ (୧୬୬୮) କଟକ ସୋସାଇଟି (୧୮୬୯) ଉତ୍କଳୋ-ହ୍ଲାସିନୀ (୧୮୬୯) ଇତ୍ୟାଦି ଅନୁଷ୍ଠାନ କଟକରେ ଗଠିତ ହୋଇ ବିଭିନ୍ନ ବିଷୟମାନଙ୍କ ଉପରେ ଆଲୋଚନା ସଭାମାନ ଅନୁଷ୍ଠିତ କରାଉଥିଲେ । ଏଥିରେ ରେଭେନ୍ସା ସାହେବ ମଧ୍ୟ ଯୋଗ ଦେଉଥିଲେ ଏବଂ ସମସ୍ତଙ୍କ ସହ ସ୍ୱଚ୍ଛନ୍ଦରେ ମିଳାମିଶା କରୁଥିଲେ । ୩।୪।୧୮୭୧ରେ ରେଭେନ୍ସା ସାହେବ ଉପରୋକ୍ତ ତିନୋଟି ସଙ୍ଗଠନର ମିଶ୍ରଣ ସମ୍ପର୍କୀୟ ପୂର୍ବର ପ୍ରସ୍ତାବ ଉପରେ ଅନୁକୂଳ ମତାମତ ଦେଇ ଏହାର ଉପକାରିତା ସମ୍ବନ୍ଧରେ ଭାଷଣ ଦେଇଥିଲେ । ୧୮୭୧ ବେଳକୁ ୟଙ୍ଗମ୍ୟାନସ ଲିଟେରେରି ଆସୋସିଏସନ ନାମକ ଏକ ଅନୁଷ୍ଠାନ ମଧ୍ୟ କାର୍ଯ୍ୟ କରୁଥିବା ଜଣାଯାଏ ।

## ଧର୍ମ :

ଊନବିଂଶ ଶତାବ୍ଦୀରେ ଓଡ଼ିଶା ବ୍ରିଟିଶ ଶାସନାଧୀନ ହେବା ଦ୍ୱାରା ଖ୍ରୀଷ୍ଟଧର୍ମର ପ୍ରସାର ପାଇଁ ରାସ୍ତା ସୁଗମ ହେଲା । ଏଣୁ ୧୮୨୨ ଫେବୃୟାରୀ ୧୨ ତାରିଖ ଠାରୁ ଅର୍ଥାତ୍ ସେଉଁଦିନ ଠାରୁ ଖ୍ରୀଷ୍ଟିୟାନ ମିଶନାରୀମାନେ କଟକରେ ପଦାର୍ପଣ କଲେ ସେହି ଦିନଠାରୁ କଟକ ଖ୍ରୀଷ୍ଟଧର୍ମ ପ୍ରଚାରର ଏକ ମୁଖ୍ୟ କେନ୍ଦ୍ର ହୋଇ ଆସିଛି । ସେହି ବର୍ଷ କଟକ ଠାରେ ଦି ଜେନେରାଲ ବାପ୍ଟିଷ୍ଟ ମିଶନର କେନ୍ଦ୍ର ଖୋଲିଲା । ଏହା ପୂର୍ବରୁ ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାର ନିମନ୍ତେ ଶ୍ରୀରାମପୁର ମିଶନରୁ କ୍ରମାଗତ ଉଦ୍ୟମ କରାଯାଉଥିଲେ ମଧ୍ୟ ତାହା ସଫଳ ହୋଇ ପାରୁନଥିଲା ।

କଟକରେ ରୋମାନ କ୍ୟାଥଲିକ ମିଶନ ୧୮୫୦ରେ ସ୍ଥାପିତ ହେଲା । ଓଡ଼ିଶାରେ ଖ୍ରୀଷ୍ଟିୟାନ ମିଶନାରୀମାନେ ସେମାନଙ୍କ ଧର୍ମ ପ୍ରଚାର ଚଳାଇଲେ । ସେହି ଉଦ୍ଦେଶ୍ୟରେ ବିଭିନ୍ନ ସ୍ଥାନରେ ସ୍କୁଲ ବସାଇଲେ । ନାରୀଶିକ୍ଷାକୁ ଉତ୍ସାହିତ କଲେ । କନ୍ଧମାଳ ଅଞ୍ଚଳରୁ ଉଦ୍ଧାର କରାଯାଇଥିବା ମେରିଆମାନଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରାଇ ବ୍ରହ୍ମପୁର, କଟକ ଓ ବାଲେଶ୍ୱରରେ ଥଇଥାନ କଲେ । ବନ୍ୟା, ମରୁଡ଼ି ଓ ସଂକ୍ରାମକ ବ୍ୟାଧି ବ୍ୟାପୁଥିବା ସମୟରେ ରିଲିଫ୍ ଓ ଔଷଧ ବାଣ୍ଟିଲେ । ହାଟ ବଜାରମାନଙ୍କରେ ଖ୍ରୀଷ୍ଟିୟାନ ଧର୍ମଧାରା ପ୍ରଚାର କଲେ ଓ ପ୍ରଚାରପତ୍ର ବାଣ୍ଟିଲେ । ଏହିପରି କ୍ରମାଗତ ଉଦ୍ୟମ ଫଳରେ ୧୮୨୮ରେ ବ୍ରହ୍ମପୁରରେ ଜଣେ ବ୍ୟକ୍ତି ପ୍ରଥମେ ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ଓ ସେହିବର୍ଷ କଟକରେ ଦୁଇଜଣ ହିନ୍ଦୁ ଧର୍ମାନ୍ତରିତ ହେଲେ ।

ଖ୍ରୀଷ୍ଟିୟାନମାନେ ଓ ୟୁରୋପିଆନ କର୍ମଚାରୀମାନେ ବଡ଼ଦିନ ପର୍ବ ପାଳନ କରୁଥିଲେ । ମୁସଲମ ପର୍ବ ମଧ୍ୟରେ ମହରମ, ଇଦ୍ ଉଲ୍ ଫିତର୍, ଇଦ୍ ଉଲ୍ ଜୁହା ବି ପାଳିତ ହେଉଥିଲା । କଦମରସୁଲ ଠାରେ ଭକ୍ତମାନଙ୍କ ଦ୍ୱାରା ଦୀପ ପ୍ରଜ୍ୱଳିତ କରାଯାଉଥିଲା । ସ୍ତ୍ରୀମାନେ ମଧ୍ୟ ଉକ୍ତ ସ୍ଥାନକୁ ଦର୍ଶନ ପାଇଁ ଯାଉଥିଲେ ।

ହିନ୍ଦୁମାନେ ଦଶହରା, ଦୀପାବଳୀ, ବାଲିଯାତ୍ରା, ଚନ୍ଦନଯାତ୍ରା, ରାମନବମୀ ୧୮୬୮ ବେଳକୁ ବି ପାଳନ କରୁଥିବା ଜଣାଯାଏ । ୧୮୭୧ ଓ ୭୨ରେ କାଠଯୋଡ଼ି କୂଳରେ ଅନ୍ୟ ଏକ ବାଲିଯାତ୍ରା ମଧ୍ୟ ଅନୁଷ୍ଠିତ ହେଉଥିଲା ।

୧୮୭୬ରେ ବ୍ରାହ୍ମସମାଜର ଏକ ଶାଖା କଟକ ଠାରେ ସ୍ଥାପିତ ହେଲା ଏବଂ ତାହାର ସ୍ଥାୟୀ ଗୃହ ନିର୍ମାଣ ନିମନ୍ତେ ଉଦ୍ୟମ ଆରମ୍ଭ ହେଲା ।

ଏଥିରୁ ପ୍ରତୀୟମାନ ହୁଏ ଯେ ବ୍ରିଟିଶମାନେ ଅନ୍ୟ ଧର୍ମ ଉପରେ ହସ୍ତକ୍ଷେପ କରୁନଥିଲେ । ଖ୍ରୀଷ୍ଟିଆନ ମିଶନାରୀମାନଙ୍କ ପ୍ରଭାବରେ କେତେକ ଅନ୍ଧବିଶ୍ୱାସ ଓ କୁପ୍ରଥା ଧୀରେ ଧୀରେ ଲୋପ ପାଇଲା ।

## ଉପସଂହାର :

ଊନବିଂଶ ଶତାବ୍ଦୀରେ କଟକ ବ୍ରିଟିଶ ଶାସନାଧୀନ ହେଲା । ଏଣୁ ଊନବିଂଶ ଶତାବ୍ଦୀର କଟକର ଇତିହାସ ମୋଟ ଉପରେ ବ୍ରିଟିଶ ଶାସନର ଇତିହାସ ଅଟେ । ବ୍ରିଟିଶ ଶାସନକାଳରେ ସେମାନଙ୍କ ଆବଶ୍ୟକତା ପୂରଣ ନିମନ୍ତେ ପ୍ରତ୍ୟେକ କ୍ଷେତ୍ରରେ ଉନ୍ନତି କରିବାକୁ ବ୍ରିଟିଶମାନେ ଚେଷ୍ଟିତ ଥିଲେ । ଏଣୁ କ୍ରମେ କ୍ରମେ ଓଡ଼ିଆମାନେ ଆଧୁନିକ ଶିକ୍ଷା ଓ ସଭ୍ୟତା ପ୍ରତି ଆକୃଷ୍ଟ ହେଲେ ।



# କଟକେ ଅନାଅ ଛଟକେ

ଶ୍ରୀ କୃଷ୍ଣଚନ୍ଦ୍ର ମହାପାତ୍ର

**କ**ଟକ ଏକ 'କ' ଯମକ ବିଶିଷ୍ଟ ଶବ୍ଦ । ପ୍ରତ୍ୟେକ ସ୍ଥାନ, କାଳ, ପାତ୍ର, ଶବ୍ଦର ପ୍ରସିଦ୍ଧି ଅଛି । ଶ୍ରୀ ବିଷ୍ଣୁଙ୍କୁ ଅଚ୍ୟୁତ, ଅନନ୍ତ କହିବା ଏବଂ ଓଡ଼ିଆ ଭାଷା ସାହିତ୍ୟରେ ଥିବା ଭାବ ତଥା ଅର୍ଥବ୍ୟଞ୍ଜକ ଶବ୍ଦପୁଞ୍ଜର ରଚନାଶୈଳୀ ପରି 'କଟକ' ଏକ ବହୁ ଜନସମର୍ଥିତ ବ୍ୟାପକ ଶବ୍ଦ ।

"ବର୍ଦ୍ଧମାନ ଜରତ ତରଜନ ମାଧବ
ବନ୍ଦିବ ସଦା ଶରତ ତରସ ଦାସ ନହିବ ।"

ବାମରୁ ଡାହାଣ, ଡାହାଣରୁ ବାମ ପାଠକଲେ ଏକା ଅକ୍ଷର, ଏକା ଉଚ୍ଚାରଣ । ଅର୍ଥ ଭିନ୍ନାତ୍ମକ ! 'କଟକ' ଠିକ୍ ଏକ ପ୍ରହେଳିକା । କଟକ ନାମରେ କୌଣସି ନଗର ନଥିଲା । ମାତ୍ର 'କଟକ' ବର୍ତ୍ତମାନ ଯୋଗାରୂଢ଼ ପଦ ହୋଇ ବାରବାଟୀ କଟକ କେବଳ କଟକ ନାମରେ ଅଭିହିତ । ମାଦଳାପାଞ୍ଜିରେ ଲେଖାଅଛି—"ଶ୍ରୀପୁରୁଷୋତ୍ତମ କଟକେ ଶ୍ରୀନଗରେ ଇତ୍ୟାଦି" × × × ଏ ଚୂଡ଼ଙ୍ଗଦେବ × × ରାଜ୍ୟକଲା ୧୩ ଦିନ । କୃଷ୍ଣ ତ୍ରୟୋଦଶୀ ଗୁରୁବାର ଦିନ ନାଟ ବେଶରେ ଆସି କଟକ ମାଡ଼ିବସି ରାଜା ହୋଇଲେ । × × ଯାଜପୁର କଟକେ ପ୍ରବେଶ ହୋଇ ପ୍ରଥମେ ରହିଲେ । ପଞ୍ଚମ କଟକ ବାରାଣସୀ ପ୍ରବେଶ କରି ଭୋଗକଲେ ୬୭ ବର୍ଷ । ମଦନ ମହାଦେବ ସିରାଇ ଦଣ୍ଡପାଟ ସହଜପାଣି ଗ୍ରାମ କଟକ କରିଥିଲେ । ପୂର୍ବୋକ୍ତ ବାରାଣସୀ କଟକ ଆଜିର ବିଡ଼ାନାସୀ ।

କଟକ ଶବ୍ଦକୁ କ୍ରିୟା ଭାବରେ "କଟକାଇବା" ବ୍ୟବହାର ଦେଖାଯାଏ । ମାଦଳାପାଞ୍ଜିର ଉଲ୍ଲେଖ ଅନୁସାରେ ଜଣାଯାଏ—ରାଜା କପିଳେଶ୍ୱର ଦେବ ୮ ଅଙ୍କେ ଛତ୍ରଗଡ଼ କଟକାଇ କଲେ, ୯ ଅଙ୍କେ ପଶ୍ଚିମେ କଟକାଇ କଲେ, ୧୦ ଅଙ୍କେ ଖିମୁଣ୍ଡି ମାଇଲେ । × × × ଦକ୍ଷିଣ କଟକାଇରେ ଯେ ରାଜା ଯାଇଥିଲେ ସେ ବାରତା ପାଇଲେ ଓ ଅଇଲେ ।

କଟକ ଅର୍ଥ ରାଜଧାନୀ, ନଗର, ପୁର, ସ୍ଥାନକୁ ବୁଝାଏ । ଓଡ଼ିଶାରେ ରାଜତ୍ୱ କରିଥିବା ବିଭିନ୍ନ ରାଜବଂଶର ରାଜାମାନେ ଖୋର୍ଦ୍ଧା, ଚଉଦ୍ୱାର, ବାରବାଟୀ (ଦୁର୍ଗ), ପୁରୀକୁ ସେମାନଙ୍କର ମୁଖ୍ୟ ରହଣିସ୍ଥଳ, ଶାସନର କେନ୍ଦ୍ରସ୍ଥଳ ରୂପେ ନିର୍ବାଚନ କରିଥିଲେ । ଆଜିର କଟକ ଅତୀତର ଐତିହାସିକ, ପୌରାଣିକ ସ୍ମୃତି ସ୍ତମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ । ଦୀର୍ଘ ୧୩୫ ବର୍ଷ ପୂର୍ବେ 'କଟକ' ଓଡ଼ିଶାର ଏକ ମୁଖ୍ୟ ସ୍ଥଳ ରୂପେ ବିବେଚିତ ହେଉଥିଲା । ଶିକ୍ଷା, ସଂସ୍କୃତି, ସଭ୍ୟତା, ପରିବହନ, ବାଣିଜ୍ୟ, ବ୍ୟବସାୟ, ସ୍ଥାପତ୍ୟ, କଳା ପ୍ରତ୍ୟେକ କ୍ଷେତ୍ରରେ କଟକରୁ ଅଗ୍ରମ୍ ଆରମ୍ଭ ହେବାକୁ ଲାଗିଲା । ତ୍ରିପାର୍ଶ୍ୱିକ ଜଳପଥରେ ସୁଗମ୍ୟ ଯାତାୟାତର ସ୍ଥଳ ହେତୁ ଅନ୍ୟ ସ୍ଥାନ ତୁଳନାରେ ଏହାର ସଭ୍ୟତା—ଉନ୍ନତିର ସୂଚୀ ସର୍ବାଗ୍ର ଅଧିଷ୍ଠିତ ହୋଇପାରିଲା । ମାତ୍ର ୧୩୫ ବର୍ଷ ତଳର 'କଟକ' ଖବର ନେକଲେଚନକୁ ଆଣିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

**କଟକର ସମ୍ବାଦପତ୍ର :**

| | | |
|---|---|---|
| ୧୮୫୫-୫୬ | ମିଶନାରୀ ପତ୍ରିକା | ଜ୍ଞାନାରୁଣ, ପ୍ରବୋଧ ଚନ୍ଦ୍ରିକା |
| ୪-୮-୧୮୬୬ | | ଉତ୍କଳ ଦୀପିକା |
| ୧୮୬୯ | କଟକ-ପାକ୍ଷିକ | ଉତ୍କଳ ହିତୈଷିଣୀ |
| ୧୮୭୩ | ପାକ୍ଷିକ, ସାପ୍ତାହିକ | ଉତ୍କଳପୁତ୍ର, ସ୍ୱଦେଶୀ, ଭକ୍ତ ପ୍ରଦାୟିନୀ |
| ୧୮୭୮ | ମାସିକ | ଉତ୍କଳ ମଧୁପ |
| ୧୮୭୯ | | ଓଡ଼ିଆ ଗେଜେଟ୍ |
| ୧୮୮୦ | | କୋହିନୂର |
| ୧୮୮୩ | | ସେବକ, ସଂସ୍କାରକ |
| ୧୮୮୬ | | ଶିକ୍ଷାବନ୍ଧୁ, ନବସମ୍ବାଦ |
| ୧୮୮୮ | | ସାମ୍ୟବାଦୀ, Orissa Patriot, ଆଶା |
| ୧୮୮୯ | | ସାହିତ୍ୟ ସମ୍ମିଳନୀ, ଦୀପକ |
| ୧୮୯୩ | | ଇନ୍ଦ୍ରଧନୁ, ଆଶା, ବ୍ରାହ୍ମ |
| ୧୮୯୪ | | ଉତ୍କଳ-ଚନ୍ଦ୍ରିକା |
| ୧୮୯୬ | | ପ୍ରଭାତି ତାରା |

ସେତେବେଳେ ଅକ୍ଷରଗୁଡ଼ିକ ପଥର ଗ୍ଲପାରେ ଛପା ହେଉଥିଲା । ତାହା ଦେଖିବାକୁ ଆଜିକାଲିର ସାଇକ୍ଲୋଷ୍ଟାଇଲ୍ ଛପା ପରି । ଛପାକାର୍ଯ୍ୟ ଅଳ୍ପ ମାତ୍ରାରେ ବେଶି ସମୟ ମଧ୍ୟ ଲାଗୁଥିଲା । କଟକ ନଗରରେ ଧନୀ, ଶିକ୍ଷିତ ବାସିନ୍ଦା, ବାବୁଭାୟା ମୁଷ୍ଟିମେୟ କିଣୁଥିଲେ ଖବରକାଗଜ । ସମ୍ବାଦପତ୍ରର ଭାଷାରେ ବହୁ ପ୍ରାଚୀନ, ଯାବନିକ, ଆରବୀୟ ଶବ୍ଦ ରହୁଥିଲା । ପ୍ରବୋଧ ଚନ୍ଦ୍ରିକାର ମାର୍ଫତଦାର ଥିଲେ କଟକ

ସହରର ନିବାସୀ ଲେଖି ସାହେବ ମୂଲ୍ୟ ଦଶ ପଇସା ମାତ୍ର । ସେତେବେଳର ସାମ୍ବାଦିକତା ଥିଲା ନିର୍ଭୀକତା ।

## ପଲଟଣ ଓ ସୈନିକ :

ହଜାରିବାଗ ଜେଲରୁ ବନ୍ଦୀ 'ସୁନ୍ଦର ସା'ର ବିଦ୍ରୋହ କରିବା ଆଶଙ୍କାରେ କଟକଠାରୁ ୩ କମ୍ପାନୀ ସୈନ୍ୟ ସମ୍ବଲପୁର ଗଲେ ଏବଂ ବ୍ରହ୍ମପୁରଠାରୁ ୫ ନମ୍ବର ପଲଟଣ କଟକ ଆସିଲେ । କଟକ ଜିଲ୍ଲାର ଥିବା ରାଜା, ଜମିଦାର, ମକଦ୍ଦମମାନଙ୍କର ହାତୀ ଘୋଡ଼ା ଏଇ ପଲଟଣଙ୍କ ଜିନିଷ ସରଞ୍ଜାମ ବୋହିବା ପାଇଁ କଟକ ସଦରମୁକାମ (Head quarters)ରେ ମହଜୁଦ୍ ହେବେ । ଯଦି ଦରକାର ହୁଏ ଏହି ହାତୀ ଘୋଡ଼ାମାନେ ଯୁଦ୍ଧ, ବିଦ୍ରୋହଦମନରେ ଲାଗିବେ । ମଲେ ଗଲେ । ବଞ୍ଚିଲେ ମାଲିକ ଫେରିପାଇବେ ! ସରକାରଙ୍କୁ ସେତେବେଳେ 'ସରକାର ବାହାଦୁର' ବୋଲି କୁହା ଯାଉଥିଲା । ହାକିମ ହୁକୁମାଙ୍କୁ 'ସାହେବ' ଭାବେ ସମ୍ବୋଧିତ, ସମ୍ମାନିତ କରାଯାଉଥିଲା । ଏବେ ମଧ୍ୟ ସ୍ୱାଧୀନତାର ୪୪ବର୍ଷ ପରେ କଲେକ୍ଟର, ଏସ୍, ପି ଓ ତାଙ୍କ ଉପର ହାକିମ ପ୍ରଭୃତିଙ୍କୁ 'ସାହବ' 'ସାହେବ', 'ସାବ୍' କହିବାର ଅନୁଗତ୍ୟ ଓ ଶ୍ଳୀଳତା ଯାଇନି ।

'ଉତ୍କଳଦୀପିକା' ହେଉଛି ଜ୍ଞାନାରୁଣ ଓ ପ୍ରବୋଧ ଚନ୍ଦ୍ରିକା ପରେ ହେତୁଭିତ୍ତିକ ପ୍ରଥମ ସମ୍ବାଦପତ୍ର ଯାହା କଟକର ଆଲମଗୃନ୍ଦ ବଜାରସ୍ଥିତ କଟକ ପ୍ରିଣ୍ଟିଂ କମ୍ପାନୀର ପଥର ଛାପାରେ ମୁଦ୍ରିତ ହେଉଥିଲା ।

## କଟକ ଓ କଟକୀ :

ପ୍ରତ୍ୟେକ ସ୍ଥାନର ଓ ତାହାର ଜନିଷପତ୍ର, ଲୋକଙ୍କର ପ୍ରାଧାନ୍ୟ ଥିଲେ ମଧ୍ୟ 'କଟକ ଓ କଟକୀ' କଥା ଅଲଗା ଓ ଗୁରୁତ୍ୱପୂର୍ଣ୍ଣ ! କଟକୀ ଛଇ, କଟକୀ ଶାଢ଼ୀ କଟକୀଆଣୀ ବୋହୂ ଇତ୍ୟାଦି ।' ନଅଙ୍କ ଦୁର୍ଭିକ୍ଷ (୧୮୬୬) ସମୟ । କଟକସ୍ଥ ଦୁର୍ଭିକ୍ଷ ନିବାରଣ କୁମେଟୀ' (କମିଟି), ଏବଂ 'କଟକସ୍ଥ ସାହାଯ୍ୟ କୁମେଟୀ'ରେ ଧାର୍ଯ୍ୟ ହୋଇଥିଲା—

ସହର ମଧ୍ୟରେ ଯେତେ ଅରକ୍ଷିତ ଦରିଦ୍ର ପିଲା ସରକାରୀ ସଡ଼କ ଉପରେ ବୁଲୁଥିବାର ଦେଖାଯିବେ ସେମାନଙ୍କୁ ମହକୁମାରେ ନିଯୁକ୍ତ ଓଭରସିୟର ଜମା ନେଇ ଭରଣ ପୋଷଣ କରିବେ ।

ପୁନଶ୍ଚ ଗୃହସ୍ଥ ଦୁଃଖୀ ସ୍ତ୍ରୀମାନେ ସୂତାକାଟି ଦେଲେ ସେମାନଙ୍କୁ ଖୁଆଇ ଦିଆଯିବ ।

## କଟକ ନଗର ଚାଉଳ ଭାଉ—

| | | |
|---|---|---|
| ଅଗଷ୍ଟ ମାସ | ଟଙ୍କାକୁ | ୧୪ସେରରୁ ୫ସେର |
| ସେପ୍ଟେମ୍ବର | ,, | ସେ ୫୪ ,, ସେ ୭୪ର |
| ନଭେମ୍ବର | ,, | ସେ ୧୩ ର ପର୍ଯ୍ୟନ୍ତ |
| ଡିସେମ୍ବର | , | ,, ,, (ଦେଶୀ) |
| | | ସେ ୧୪ର ,, (ସମ୍ବଲପୁରୀ) |

## ଦୁର୍ଭିକ୍ଷ ଅନୁସନ୍ଧାନ କମିଶନ :

କଟକ ହାଇକୋର୍ଟର ଜଜ୍ କ୍ୟାମ୍ବେଲ ସାହେବ, କର୍ଣ୍ଣେଲ ମର୍ଟନ ସାହେବ, ଜଣେ ଡାକ୍ତର, ଡେମ୍ପିୟର ସାହେବ, ଏମାନେ ବଙ୍ଗଳା ସ୍ଥାନର ଦୁର୍ଭିକ୍ଷ ପ୍ରପୀଡ଼ିତ ଅବସ୍ଥା ଅନୁସନ୍ଧାନ କରିବା ପାଇଁ ନିଯୁକ୍ତ ହୋଇଥିଲେ ।

ଏହି ଉଦ୍ଦେଶ୍ୟରେ ସରକାରୀ ଚାଉଳ ସାହାଯ୍ୟ କାରବାରର ସୁପରିଚାଳନା ପାଇଁ କଟକରେ ଜେ: ଏମ୍: ଆର୍ମଷ୍ଟ୍ରଙ୍ଗ୍ ସାହେବ (ଡେପୁଟୀ କଲେକ୍ଟର) ନିଯୁକ୍ତ ହେଲେ ।

କଟକର ସହକାରୀ ଜିଲ୍ଲାପାଳ ଓ ରେଲଓ୍ୱେ ମ୍ୟାନେଜର କର୍କଉଡ୍ ସାହେବ ଜଣେ କର୍ମଚାରୀଙ୍କୁ ପ୍ରହାର କରିଥିବାରୁ ଆଇନ୍ ଅନୁସାରେ ଟ ୫ ଅର୍ଥଦଣ୍ଡ ଦେଇଛନ୍ତି ।

## କଟକର ବଦାନ୍ୟତା :

ଦୁର୍ଭିକ୍ଷ ସମୟରେ ଏଇ କଟକର ବଦାନ୍ୟବ୍ୟକ୍ତିମାନେ ସାହାଯ୍ୟ କରିଥିଲେ । ସେମାନେ ହେଲେ—ରାଧାଶ୍ୟାମ ନରେନ୍ଦ୍ର, ଗୌରିଶ୍ୟାମ ଜେନା, ଦୁର୍ଗାନାରାୟଣ ଘୋଷ, ମୌଲଭୀ ସଯୁଦ୍ ଗୋଲାମ କାଦର, ଚୌଧୁରୀ ସଦାଦେବ ମହାପାତ୍ର, କମଳ ଚରଣ ନେଓଗୀ, ପାଦ୍ରୀ ବକଲ ଏବଂ ମିଲର ସାହେବ ।

ଏଥିରୁ ସ୍ପଷ୍ଟ ଅନୁମିତ ଯେ, ସାମ୍ପ୍ରଦାୟିକ ମନୋଭାବ ନଥିଲା, ଭେଦାଭେଦର ସଂକୀର୍ଣ୍ଣତାଠାରୁ ଦୂରରେ ଥିଲେ କଟକବାସୀ । ସମାଜ ସେବକ ତଥା ସଂସ୍କାରକ ଶ୍ରୀଯୁକ୍ତ ବାବୁ ବିଚିତ୍ରାନନ୍ଦ ଦାସ ଦାସଦାସୀଙ୍କର ଜାତକରଣ, ରକ୍ଷଣାବେକ୍ଷଣ ପାଇଁ କଟକ ସହରର ସମ୍ଭ୍ରାନ୍ତ ବ୍ୟକ୍ତିଙ୍କୁ ନେଇ ଏକ ସଭା କରିଥିଲେ ।

## ପାଗଳ ରୋଗୀଙ୍କ ମନୋରଞ୍ଜନ :

ନଗର ତ ନଗର କଟକ ନଗର । ଏଠାରେ ବାୟା, ବାତୁଳ, ଅର୍ଦ୍ଧପାଗଳ, ବୃଦ୍ଧପାଗଳ, ପାଗଳବୃଦ୍ଧଙ୍କ ମନୋରଞ୍ଜନ ବ୍ୟବସ୍ଥା ଉଲ୍ଲେଖଯୋଗ୍ୟ । ସିଭିଲ ଇଲାକାର ଡାକ୍ତର ଷ୍ଟିଓ୍ୱାର୍ଟ ସାହେବଙ୍କ ତତ୍ତ୍ୱାବଧାନରେ ପାଗଳଖାନାରେ ଦୁଇଘଣ୍ଟା ପାଇଁ ବେଶ୍ୟା ନର୍ତ୍ତନର ବ୍ୟବସ୍ଥା କରିଥିଲେ । ସରକାରଙ୍କ ତରଫରୁ ସେମାନଙ୍କୁ ବେତନ ଦେବାର ବ୍ୟବସ୍ଥା ଥିଲା ।

## ଘୋଡ଼ାଦୌଡ଼ ଓ ଘୋଡ଼ାଗାଡ଼ି :

ସୁଧୀ ପାଠକବୃନ୍ଦ ! ଆପଣମାନେ ବ୍ୟାସକବି ଫକୀରମୋହନଙ୍କ 'ପେଟେଣ୍ଟ ମେଡ଼ିସିନ୍"ର ଶୁକର ମଳର କଣ୍ଠରେ ଘୋଡ଼ାଗାଡ଼ିରେ ବାବୁଙ୍କର ସହରବୁଲା ଶୁଣିଥିବେ । କଟକ ସହରରେ ଧନୀ, ଜମିଦାର, ସମ୍ଭ୍ରାନ୍ତମାନେ ଘୋଡ଼ାଗାଡ଼ି ଭଡ଼ା ଦେବା ପାଇଁ ଏକ ସଂସ୍ଥା କରିଥିଲେ । ଏହା ୧୮୬୮ ଫେବୃଆରୀ ମାସରେ ଆରମ୍ଭ ।

କଟକର ଗୁଜୁଳିଆଗଞ୍ଜଠାରେ ଘୋଡ଼ା ପ୍ରଦର୍ଶନୀ ଓ ଘୋଡ଼ାଦୌଡ଼ ପ୍ରତି-ଯୋଗିତା ହେଉଥିଲା । କମିଶନର ରେଭେନ୍‌ସା ସାହେବ ନିଜେ ଉପସ୍ଥିତ ରହି ପୁରସ୍କାର ପ୍ରଦାନ କରୁଥିଲେ ।

## କଟକରେ ଯୋତା ଅଟକ :

ଆଜ୍ଞାମାନେ ! ଶୁଣିବା ଲୋକକୁ ଲାଜ, କହିବାକୁ ଲାଜ ଆଉ ଲେଖିବାକୁ ମଧ୍ୟ ଲାଜ । ସରକାର ବାହାଦୁରଙ୍କ ଗେଜେଟରେ ବାହାରିଲା ଯେ, କଚେରୀ, କଲେକ୍ଟରୀ, ମିଶନ, ହାକମ ହୁକୁମାଙ୍କ ଦପ୍ତର, ବାସଗୃହରେ ଜନସାଧାରଣ ମରହଟ୍ଟୀ ବା ଦେଶୀୟ ଯୋତା ପିନ୍ଧି ଯାଇପାରିବେ ନାହିଁ । କେବଳ ବିଦେଶୀ ଇଂଲଣ୍ଡ ଯୋତା ଚଳିବ । କଟକରେ ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଦରବାର କରିଥିବାବେଳେ ନିମନ୍ତ୍ରିତ ଭଦ୍ରବ୍ୟକ୍ତି କେତେକ ଫେରିଲେ ଆଉ କେତେକ ଖାଲି ଗୋଡ଼ରେ ସଭାରେ ବସିଲେ । ଆଉ କେହି କେହି କହିଲେ 'କିସ ପୁଣି ଦେଖା ନଯାଏ ଜାଇ ଥିଲେ ଜୀବନେ' । କିନ୍ତୁ ଏହି କଳଙ୍କ ଲରେନ୍‌ସ ସାହେବ ଦୂର କରିଥିଲେ । କିନ୍ତୁ Acting Joint Magistrateଙ୍କର ମିଜାଜ୍ ଅଲଗା ପ୍ରକାର ଥିଲା । ସେ ନିୟମ କଲେ ଯେ-ଯୋତା-ସହ ମୋଜା ନପିନ୍ଧି ମିଶନକୁ ଆସିବା ଦୋଷାବହ ଓ ଅସଭ୍ୟତା, ଅସମ୍ମାନସୂଚକ ।

## କଟକର ଜନତା ଜନାର୍ଦ୍ଦନ :

୧୮୬୯ ମସିହାରେ କଟକ ସହରର ଲୋକସଂଖ୍ୟା ଥିଲା ୩୭୨୮୦ ଜଣ । ପୁରୁଷ ୧୩୨୫୯, ସ୍ତ୍ରୀ ୧୦୦୯୫, ବାଳକ ବାଳିକା ୫୨୫୦ ଜଣ । ଯୁବଗୋଷ୍ଠୀଙ୍କ ମଧ୍ୟରେ ସତ୍କାର୍ଯ୍ୟ ପରିଚାଳନାର ପାରଙ୍ଗମତା, ତର୍କ ବିତର୍କ ବକ୍ତୃତା ଅଭ୍ୟାସ ଓ ନିର୍ଭୟଭାବେ ଭାବ ପ୍ରକାଶ ଓ ଜନସେବା ପାଇଁ Cuttack Youngmens' Association ବା କଟକ ଯୁବକ ସମାଜ ଶ୍ରୀ ଲକ୍ଷ୍ମୀନାରାୟଣ ଚୌଧୁରୀଙ୍କ ମାର୍ଫତରେ ଗଢ଼ି ଉଠିଲା ।

## କଟକ-ବାଣିଜ୍ୟ :

ମହାନଦୀ ଘାଟମାନଙ୍କରୁ ଧୂଆଁକଳ ଜାହାଜରେ ତାଳଦଣ୍ଡା କେନାଲ ପର୍ଯ୍ୟନ୍ତ ଓ କେନାଲଠାରୁ ନୌକାରେ ସହର ମଧ୍ୟକୁ ବାହାରୁ ଆମଦାନୀ ଜିନିଷ ଆସୁଥିଲା । ଆମଦାନୀର ଲାଭ ଭୋଜପୁରୀ ଓ ମାରୱାଡ଼ୀଙ୍କର ଏବଂ ରପ୍ତାନି ଲାଭ ଇଂରେଜ ଓ ତେଲେଙ୍ଗା ମହାଜନମାନଙ୍କର । କଲିକତାରୁ ପ୍ରାୟ ଜିନିଷ ଆସେ । ଆମଦାନୀ ଜିନିଷ

ମଧ୍ୟରେ ବଳାତ ଲୁଗା, ଗୁଆ ମସଲା ଓ ତମ୍ବା ଖପର ଏବଂ ଜିନିଷ ମଧ୍ୟରେ ଚର୍ମ, ଶୃଙ୍ଗ, ଗୁଗୁଳ, ଲାଖ, କାଠ ମୁଖ୍ୟ ଥିଲା ।

## କେହି ବୋଲେ ମୁହିଁ ଅଟଇ ପୁଲିସ :

୧୮୭୦ ମସିହା ବେଳକୁ କଟକ ନଗରରେ ପୁଲିସ ପ୍ରତାପ ଖୁବ୍ ବଢ଼ିଲାଣି । ପୁଲିସର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଗ୍ରେବ୍ ସାହେବଙ୍କ ଅମଳରେ ବାଟ, ଘାଟ, ସଡ଼କରେ କିପରି ଚାଲିବାକୁ ହେବ ତାର ନିୟମ ହେଲା—

୧—ସୂର୍ଯ୍ୟାସ୍ତଠାରୁ ସୂର୍ଯ୍ୟୋଦୟ ପର୍ଯ୍ୟନ୍ତ କଟକ ନଗରର କୌଣସି ସଡ଼କ ବା ଗଳିରେ ବାଜା, ଘୋଷଣି କରି ବା ଦଳବଦ୍ଧ ହୋଇ ଗତାୟାତ କରିପାରିବ ନାହିଁ ।

୨—ଆବଶ୍ୟକ ମନେ କଲେ ପୁଲିସର ଆଜ୍ଞା ଆଣିବ । ପୁଲିସଠାରୁ ଅନୁମତି ଆଣିବା ପାଇଁ ବ୍ୟକ୍ତି ସକଳଙ୍କୁ ୨ଦିନ ଅଧିଆ ବା ଗୁହାରିଆ ପଡ଼ି ଆଣିବାକୁ ହେଉଥିଲା । ସେଥିରେ ପୁଣି ଲାଞ୍ଚ, କୋରଡ଼ାମାଡ଼ ବାଦ୍ ଯାଉନଥିଲା ।

## ସମୟର ଘୋଡ଼ା ପାଇଁ ତୋପ ଫାଏର :

୭-୫-୧୮୭୦ କଟକ ନଗରରେ ପ୍ରତି ଶନିବାର ତୋପ ଫାଏର୍ ହୁଏ । ଫଳରେ ନଗରବାସୀ ଆପଣାର ଘଡ଼ିର ସମୟକୁ ଠିକ୍ କରିନିଅନ୍ତି ।

ରେଭେନ୍‌ସା ସାହେବ କାର୍ଯ୍ୟରେ ମୁକ୍ତିର ହେବା ଅବସରରେ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହେଲା । ପ୍ରଥମେ କେନ୍ଦୁଝର ରାଜା, ତା'ପରେ ଢେଙ୍କାନାଳ, ମଧୁପୁର ଆଠଗଡ଼, କଟକ ସୋସାଇଟି, କଟକ ସାହିତ୍ୟ ସମାଜ କ୍ରମଶଃ ସମ୍ମାନ କଲେ ।

## କର ଓ କରଦାତା :

କଟକ ନଗରରେ ୧୮୭୦ ମସିହା ହିସାବ ଅନୁଯାୟୀ ଘର ସଂଖ୍ୟା ହେଲା ୮୮୪୭ । ସେଥିମଧ୍ୟରୁ ୪୫୫୯ଟି ଘର କର ଭାରରୁ ମୁକ୍ତ ପାଇଲା । କାଣ୍ଟନମେଣ୍ଟରେ ଥିବା ୨୭୩ ଘର ସ୍ୱତନ୍ତ୍ର ଭାବେ କରହୀନ ହେଲା । କାରଣ ସେଠାରେ ବାୟୁସେନା, ପଦାତିକ, ନୌସେନା ରହୁଥିଲେ । ଦୁଃଖୀ ଲୋକଙ୍କଠାରୁ ମାସକୁ ଅଣାଏ ଟିକସ ଆଦାୟ କରିବା ପାଇଁ ଆପେସର (ଖଜଣା ସଂଗ୍ରହକାରୀ)ର ଖର୍ଚ୍ଚ ଅଧିକ, ଶ୍ରମ ମଧ୍ୟ ବହୁତ । ତେଣୁ ସେମାନଙ୍କୁ ଛାଡ଼ିଦେଇ ଯେଉଁମାନେ ଦୁଇଅଣା ପରିବର୍ତ୍ତେ ତିନିଅଣା ଦେବେ ବରଂ ସେମାନେ ଆଉ ଏକଅଣା ଅଧିକ ଦିଅନ୍ତୁ ! କାରଣ କୁହୁଡ଼ି ଜଳରେ ମାଠିଆ ଭର୍ତ୍ତି କରିବା ଅର୍ଥ ଲୋକହସା ହେବା କଥା ।

## ପରୋପକାରାୟ ସ୍ୱର୍ଗାୟ :

ପଥିକମାନଙ୍କର ଉପକାର ପାଇଁ ବାବୁ କନ୍ହେୟାଲାଲ ପଣ୍ଡିତ କାଠଯୋଡ଼ି ନଦୀର ଦକ୍ଷିଣପାର ମୋକାମେଶ୍ୱର ନିକଟରେ ଗୋଟିଏ ପକ୍କା ଧର୍ମଶାଳା ନିର୍ମାଣାର୍ଥେ ପାଞ୍ଚ ହଜାର ଟଙ୍କା କଟକ ଅନ୍ନଛତ୍ର କମିଟି ମାର୍ଫତରେ ଜମା ଦେଲେ ।

ଶ୍ରୀଜଗନ୍ନାଥ ସଡ଼କରେ ଚାଲି ଚାଲି ଆସୁଥିବା ଯାତ୍ରୀଙ୍କ କଷ୍ଟ ସେ ଦେଖୁଛନ୍ତି— ସେଥିପାଇଁ ରଙ୍ଗପୁରର ପ୍ରସିଦ୍ଧ ଜମିଦାର ଈଶାନଚନ୍ଦ୍ର ରାୟ ତିନିହଜାର ଟଙ୍କା ଦାନ କଲେ : ଏଥିରେ ଯାତ୍ରୀଙ୍କର ଚିକିତ୍ସା ପାଇଁ ବ୍ୟବସ୍ଥା ହେବ ବୋଲି ସ୍ଥିର ହେଲା ।

**କଟକ ନଗର ନାଳ ନର୍ଦ୍ଦମାର :**

ପ୍ରଥମେ କ୍ଷମା ମାଗି ନେଉଛୁ ସୁଧୀ ପାଠକଗଣଙ୍କ ଠାରୁ ! ଆଜି ସମ୍ବାଦପତ୍ର ମାନଙ୍କରେ 'କଟକ ନଗର ପରିକ୍ରମା' ଶୀର୍ଷକରେ କଟକ ସହରର ନାଳ, ନର୍ଦ୍ଦମା, ମଶାଙ୍କ ପ୍ରାଦୁର୍ଭାବ କଥା ପ୍ରତ୍ୟେକ ଦିନ ଛପା ହେଉଛି । ୧୦୦ ବର୍ଷରୁ ଊର୍ଦ୍ଧ୍ୱ ହେବ ଏହି ସମସ୍ୟା ଚାଲି ଆସିଛି । ୧୮୭୦ ମସିହା କଥା—ଷ୍ଟୋନ ସାହେବଙ୍କୁ ନାଳର ସୁପ୍ରଣାଳୀ ଓ ପାଇଖାନା ନିର୍ମାଣ ପାଇଁ ମାତ୍ର ଆଠଶହ ଟଙ୍କା ଦିଆଯାଇଥିଲା ।

**କଟକ ନୟାସଡ଼କ :**

ଚୌଧୁରୀ ବଜାର ଗୋପାଳଜୀଉଙ୍କ ମଠ ପଛପାଖେ ପ୍ରଶସ୍ତ ଯାଗାରେ ଜନ୍ ବୀମସ୍ ସାହେବ ଏକ ହାଟ ଆରମ୍ଭ କଲେ । ଏହି ହାଟକୁ ଯିବା ପାଇଁ ନୂଆସଡ଼କ ତିଆରି ହେଲା ଯାହାକି ଆଜି ପ୍ରଧାନ ବ୍ୟବସାୟସ୍ଥଳ "ନୟାସଡ଼କ" ହୋଇଛି ।

କଲେକ୍ଟର ବୀମସ୍ ସାହେବ ପ୍ରତିଦିନ ସହରର ବିଭିନ୍ନ ସ୍ଥାନ ବୁଲି ଅଭାବ ଅସୁବିଧା ଦୂର ପାଇଁ ସାହି, ପଡ଼ାର ବୃଦ୍ଧ, ଶିକ୍ଷିତ ବାସିନ୍ଦାଙ୍କ ସହ ପରାମର୍ଶ କରନ୍ତି । କଟକର ପ୍ରାୟ ସମସ୍ତ କ୍ଲବ, ସମାଜ, ସମିତିର ସଭା କଟକ ପ୍ରିଣ୍ଟିଂ କମ୍ପାନୀଙ୍କ ଯନ୍ତ୍ରାଳୟ ଗୃହରେ ହେଉଥିଲା ।

**କଟକ ମ୍ୟୁନିସିପାଲଟି :**

ଭାରତ ସରକାର ଅର୍ଥାତ୍ ସେତେବେଳର ଗବର୍ଣ୍ଣମେଣ୍ଟ ବାହାଦୁରଙ୍କ ମୁଖ୍ୟ କାର୍ଯ୍ୟାଳୟ କଲିକତା । କଟକ ମ୍ୟୁନିସିପାଲଟିକୁ ପ୍ରଥମ ଶ୍ରେଣୀ-ଭୁକ୍ତ କରିଦିବାକୁ ସ୍ଥିର କରାଗଲା । କିନ୍ତୁ ଆଇନ୍ ଓଡ଼ିଆରେ ତର୍ଜମା ନ ହେବାରୁ ନଗରବାସୀ କିଛି ବୁଝି ପାରୁ ନଥିଲେ । ପ୍ରଥମ ଶ୍ରେଣୀଭୁକ୍ତ ହେଲେ ପୁଲିସ ଖର୍ଚ୍ଚ ବଢ଼ିଯାଏ । ଘର ପିଛା ଦେଢ଼ଟଙ୍କା ଆଦାୟ, ଦ୍ୱିତୀୟ ଶ୍ରେଣୀ ହେଲେ ଏକଟଙ୍କା ଚାରିଅଣା ଆଦାୟ ହେଉଥିଲା । ପ୍ରଥମ ଶ୍ରେଣୀରେ ୩୦ ଜଣ ଓ ଦ୍ୱିତୀୟ ଶ୍ରେଣୀରେ ୨୦ ଜଣ କମିଶନର ନିଯୁକ୍ତ ହେଉଥିଲେ । ଏହି କମିଶନର ହେଉଛି ଆଜିର ୱାର୍ଡ ମେମ୍ବର ବା କାଉନ୍‌ସିଲର ।

**ସେ କାଳର ବାଲିଯାତ୍ରା :**

ଆଜିକାଲି ପରି ସେକାଳରେ ବାଲିଯାତ୍ରା ହେଉଥିଲା । ଦୁର୍ଗାପୂଜା, ଦୋଲି, ଦଶହରା, ଆଜି କଟକର ମୁଖ୍ୟ ଓ ସାର୍ବଜନୀନ ଉତ୍ସବ ହୋଇଛି । କିନ୍ତୁ ସେତେବେଳେ ବାଲିଯାତ୍ରା ମୁଖ୍ୟ ଥିଲା ! ଭଜନ, କୀର୍ତ୍ତନ, ଦର୍ଶନ, ସଭା ସମିତି ବହୁଳ ପରିମାଣରେ ହେଉଥିଲା । ଖ୍ରୀଷ୍ଟିୟାନ ଓ ବ୍ରାହ୍ମଣ ସମ୍ପ୍ରଦାୟ ନିଜ ନିଜ ଧର୍ମରକ୍ଷା ପାଇଁ ଖୁବ୍ ସଭା କରି ଉପଦେଶ ଦେଉଥିଲେ ।

## ରେଭେନ୍‌ସା ସାହେବ :

ତା ୨୦-୩-୧୮୭୭ରେ ରେଭେନ୍‌ସା ସାହେବ ଦୀର୍ଘ ୧୨ ବର୍ଷ କମିଶନର ରହିବାପରେ କଲିକତା ଗଲେ । ଶାସନ କାର୍ଯ୍ୟରେ ଅପାରଗ ହେଲେହେଁ ଲୋକହିତକର କାର୍ଯ୍ୟ ଓ ଶିକ୍ଷାପ୍ରତି ପ୍ରବଳ ଆଗ୍ରହରେ କାମ କରୁଥିଲେ । ରେଭେନ୍‌ସା କଲେଜ, ଗାର୍ଲ୍‌ସ୍କୁଲ, କଲିଜିଏଟ୍ ସ୍କୁଲ, ମେଡିକାଲ ସ୍କୁଲ ପ୍ରତିଷ୍ଠାର ସେ ମୂଳପିଣ୍ଡ ଥିଲେ ।

## କଟକ—ଅଭିନବ ସାମାଜିକ ବୈଠକସ୍ଥଳ :

ଆଜିପରି ସେକାଳେ କଟକ ନଗରରେ ମଧ୍ୟ ବହୁ ଅନୁଷ୍ଠାନ ଗଢ଼ି ଉଠିଥିଲା ଏବଂ ଦେଶୀୟ ତଥା ବିଦେଶୀଙ୍କ ସମନ୍ୱିତ ବୈଠକ, ବଢ଼ାଖାନା, ବାଦ୍ୟ ମହୋତ୍ସବ ହେଉଥିଲା । ବିଲାତର ରାଣୀ "ଭାରତେଶ୍ୱରୀ" ପଦରେ ଅଭିଷିକ୍ତ ହେବାରୁ ଏହି ମିଳନ ସମ୍ଭବ ହୋଇଉଠିଥିଲା ।

୧ । ବାଉନ୍ ସାହେବଙ୍କ କୋଠିକୁ କଟକର ଭଦ୍ର, ସମ୍ଭ୍ରାନ୍ତ ଜମିଦାର, ରାଜା ମହାରାଜା, ରାୟବାହାଦୁର ପଦପଦବୀଯୁକ୍ତ ବ୍ୟକ୍ତି ସକଳଙ୍କୁ ନିମନ୍ତ୍ରଣ କରାଯାଇ ଆପ୍ୟାୟିତ ଓ ସମ୍ମାନିତ କରାଯାଇଥିବାର ନଥିଗତ ପ୍ରମାଣ ମିଳେ । ଖେଳ, ସଙ୍ଗୀତ ଦ୍ୱାରା ନିକଟରୁ ନିକଟତର ହେବାରେ ସାହାଯ୍ୟ କଲା ।

୨ । ବାବୁ ବୈଦ୍ୟନାଥ ପଣ୍ଡିତଙ୍କ ଘରକୁ କେତେଜଣ ଇଂରେଜ ସର୍କସ ଦେଖିବାକୁ ଆସି ଜଳପାନ ବୈଠକରେ ଯୋଗ ଦେଇଥିଲେ ।

୩ । କଲେକ୍ଟର ବାମ୍‌ସ ସାହେବ ୨।୩ ଜଣ ସମ୍ଭ୍ରାନ୍ତ ଲୋକଙ୍କ ଗୃହରେ ପଦାର୍ପଣ କରି ମିଷ୍ଟାଳାପ, ମିଷ୍ଟାନ୍ନ ଭୋଜନ କରିଥିଲେ ।

୪ । ବାବୁ ଜଗନ୍ମୋହନ ରାୟଙ୍କ ଘରେ ହୋଇଥିବା ବୈଠକ ପ୍ରଣିଧାନ ଯୋଗ୍ୟ । ୧୮୭୮ ମସିହା ପ୍ରାରମ୍ଭ କଥା । ପ୍ରାୟ ୩୫ ଜଣ ସମ୍ଭ୍ରାନ୍ତ ଇଂରେଜ ଆମନ୍ତ୍ରିତ ହେଲେ । ଘର ଅଗଣା ଝାଡ଼, ଲଣ୍ଠନ, ଲଟକନ ଫୁଲ ଶ୍ରେଷଣୀରେ ଭରପୂର । ତଳ ମହଲା ବୈଠକଖାନାରେ ଖେଳ ବ୍ୟବସ୍ଥା ଓ ଦୋ'ମହଲାରେ ଜଳପାନ ବ୍ୟବସ୍ଥା । ଇଂରେଜ ଓ ଦେଶୀୟ ଭଦ୍ରବ୍ୟକ୍ତିମାନେ ନାଚିବା, ଗାଇବା, କୁଣ୍ଢାକୁଣ୍ଢି ହେବା, କରମର୍ଦ୍ଦନ କରିବା, ଖାଇବାରେ ମସଗୁଲ ହୋଇଥିଲେ । ମୁଖ୍ୟ ଇଂରେଜ ହେଲେ ବାମ୍‌ସ୍, ମାକଫର୍ଶନ୍, ଗ୍ରେବ୍, ଫେରାର, ହାଣ୍ଡ୍‌ଲି ଓ ବାଉନ୍ ସାହେବ ।

## କଟକ—ନାଟକର ଜନ୍ମସ୍ଥାନ :

ଓଡ଼ିଶାରେ ପ୍ରଥମଥର ପାଇଁ କଟକରେ ୧୮୭୮ ମସିହା ସରସ୍ୱତୀ ପୂଜା ଦିନ ନାଟକ ଅଭିନୀତ ହୋଇଥିଲା । ମନମୋହନ ବସୁଙ୍କ "ରାମାଭିଷେକ" ନାଟକ ଅଭିନୀତ ହେଲା । ପୁରୁଣା ବାଙ୍କନାଚଠାରୁ ନାଟକକୁ ସମସ୍ତେ ଭଲ ପ୍ରଶଂସା କଲେ । ଏହି ନାଟକ ପୁନରାୟ ଗୋଲୋକ ଚନ୍ଦ୍ର ଘୋଷଙ୍କ ଘର ନିକଟରେ ହେଲା ।

## କଟକ—ସମାଜ ଓ ସମିତ :

ଉତ୍କଳ ସଭା, ଉତ୍କଳସିଂ ସମିତ, ସୁହୃଦ୍ ସମାଜ, ସାହିତ୍ୟ ସମାଜ, ଡ଼ିବେଟିଂ କ୍ଲବ, ଭରତେଶ୍ୱର ମନ୍ଦର ନିର୍ମାଣ କମିଟି, ଉତ୍କଳୀୟ କରଣ ସମାଜ, ବ୍ରାହ୍ମସମାଜ ।

## କାଳଆ ଘୋଡ଼ାରେ ଚଢ଼ିବ :

ପିଲାବେଳେ ଆମେ ପଢ଼ିଥିଲୁ "କାଳଆ ଘୋଡ଼ାରେ ଚଢ଼ିବ, ମଧୁବାବୁ ସଙ୍ଗେ ଲଢ଼ିବ"—ଅବଶ୍ୟ ଏହା ଥିଲା ଓଡ଼ିଆ ଜାତିର ସ୍ୱାଭିମାନ ଏବଂ ପ୍ରେରଣା । ଏଇ ମଧୁବାବୁ ଓରଫ ମଧୁସୂଦନ ଦାସ ଥିଲେ ଥିଲେ ହାଇକୋର୍ଟର ଜଣେ ଅନୁବାଦକ, ତା'ପରେ ଚବଶ ପ୍ରଗଣାରେ ଓକିଲାତି କଲେ ଏବଂ ୧୬-୯-୧୮୮୧ରେ ଆସି ହାଇକୋର୍ଟରେ ଓକିଲାତି କଲେ । ସେ ଥିଲେ ଜଣେ ଖାଣ୍ଟି ଓଡ଼ିଆ କଟକୀ ଏବଂ ଓଡ଼ିଶାର ପ୍ରଥମ, ସେ ପର୍ଯ୍ୟନ୍ତ ଏକମାତ୍ର ଏମ୍.ଏ., ବି.ଏଲ୍ ।

## କଟକ—ପାଠପଢ଼ା :

ଏବେ ବି ରେଭେନ୍ସା କଲେଜରେ ପଢ଼ିବା ମୋହ, ଝୁଙ୍କ ସମ୍ମାନ ଅଛି । ସେତେବେଳେ ଏଣ୍ଟ୍ରାନ୍ସ (Entrance), ଏଫ୍.ଏ. (Fist Arts), ତା'ପରେ ବି.ଏ ଥିଲା । ଜାନୁୟାରୀ ୧୮୬୮ରେ ଓଡ଼ିଶାର ପ୍ରଥମ ଉଚ୍ଚ ବିଦ୍ୟାଳୟ (High School) "କଟକ ହାଇସ୍କୁଲ" ନାମରେ ଆରମ୍ଭ ହୋଇଥିଲା । ପ୍ରଧାନଶିକ୍ଷକଙ୍କ ଦରମା ମାସିକ ଟ ୩୦୦ ମାତ୍ର ! ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ମାସିକ ଟ ୧୦ ବୃତ୍ତି ପାଉଥିଲେ । ଉପଯୁକ୍ତ ଶିକ୍ଷକ ପ୍ରସ୍ତୁତ କରିବା ପାଇଁ କଟକରେ ଏକ 'ନରମାଲ୍ ସ୍କୁଲ' ସ୍ଥାପିତ ହେଲା । ଅନ୍ୟ କେଉଁ ସ୍କୁଲରୁ ପିଲା ଆସି କଟକ ହାଇସ୍କୁଲରେ ପଢ଼ିଲେ ସେମାନଙ୍କୁ ଉତ୍ସାହିତ କରିବା ପାଇଁ ଟ ୫ ଙ୍କା ଲେଖାଏଁ ବୃତ୍ତି ମଧ୍ୟ ଦିଆଯାଉଥିଲା । ଉତ୍କଳ ଭାଷାରେ ବଙ୍ଗଳା ଲେଖିବା ଓ ବଙ୍ଗଭାଷାରେ ଉତ୍କଳ ସାହିତ୍ୟ ଲେଖିବାକୁ ବାଧ୍ୟ କରାଯାଉଥିଲା । ୧୮୭୯ ମସିହାର କଟକର ସୁଦାମଚରଣ ପଟ୍ଟନାୟକ କଲିକତା ବିଶ୍ୱବିଦ୍ୟାଳୟର ପ୍ରଥମେ ସିଭିଲ୍ ଇଞ୍ଜିନିୟରିଂ ପରୀକ୍ଷାରେ ପାଶ କରିଥିଲେ ।

ଉତ୍କଳ ଭାଷାରେ ଉପଯୁକ୍ତ ବହି ନଥିବାରୁ ବଙ୍ଗଳା ଭାଷାର ପ୍ରାଧାନ୍ୟ ଦିନକୁ ଦିନ ବଢ଼ିବାକୁ ଲାଗିଲା । ୧୮୭୯ରେ କଟକ ନଗରରେ ବଦାନ୍ୟ ବ୍ୟକ୍ତିଙ୍କ ସହୃଦୟତାରେ ଏକ ବାଳିକା ହିନ୍ଦୀ ଗୃହଶାଳୀ ଗଢ଼ିଉଠିଲା । ୧୪ ଜଣ ପିଲା ପଢ଼ୁଥିଲେ । ଜଣେ ଶିକ୍ଷକ, ଜଣେ ଦାସୀ ନିଯୁକ୍ତ ହୋଇଥିଲେ । ବ୍ୟାବହାରିକ ବିଜ୍ଞାନ ଶିକ୍ଷା ପାଇଁ କଟକଠାରେ ଏକ ଜରିବ-ଶିକ୍ଷା (ସର୍ଭେ) ସ୍କୁଲ ମାର୍ଚ୍ଚ ୧।୧୮୭୬ରେ ଆରମ୍ଭ ହେଲା । କଟକ ମେଡ଼ିକାଲ ସ୍କୁଲ ୧୫-୨-୧୮୭୬ରେ ଆରମ୍ଭ ହେଲା । ଆସିଷ୍ଟାଣ୍ଟ ସର୍ଜନ ଚୁନିଲାଲ ପ୍ରଥମେ ବକ୍ତୃତା ଦେଲେ । ତା'ପରେ ଷ୍ଟୁଆର୍ଟ ସାହେବ ସମ୍ଭାଷଣ କଲେ । ମାତ୍ର ୩୬ ଜଣ ପଢ଼ିଲେ । ୧୬ ଜଣ ଛାତ୍ରାବାସରେ ରହୁଥିଲେ ।

**କଟକେ ଅଟକ ହେବାରୁ :**

ପ୍ରଭୁ ନୀଳାଦ୍ରି ବିହାରି !
କଟକେ ଅଟକ ହେବାରୁ ମୋ ଜନ ସବୁ ନାହାଁନ୍ତି ଝୁରି ଝୁରି !!
× × × ×
କନ୍ଦରୁ ଅଣାଇ, ବନ୍ଦୀ କରାଇଲ, ଶ୍ରୀନନ୍ଦଘୋଷ ବିହାରୀ
ବନ୍ଧ କରନ୍ତୁ, ଦେଖାଉଛ ଭୟ, ବନ୍ଦୀ ବନାଅ ପାହାରୀ ॥
× × × ×
ସିନ୍ଧୁ ସୁତାପତି ! ଅବା ମୋ ବିପତ୍ତି ପ୍ରଚାରେ ହେଉଛି ଘୋର
ଦିବ୍ୟସିଂହ ଦେବ, କାହାକୁ କହିବ ଆପଣ ନ କଲେ ପାର ॥

ଏହି ଭଜନ, ପୁରୀର ଗଜପତି ମହାରାଜା ଶ୍ରୀ ଦିବ୍ୟସିଂହ ଦେବ କଟକ ଜେଲଖାନାରେ ଥିବାବେଳେ ଲେଖିଥିଲେ । ମାର୍ଚ୍ଚ ୧୮୭୮ ବେଳକୁ ସେ ବନ୍ଦୀ ହୋଇଗଲେଣି । ୨୩-୨-୧୮୭୮ ରାତିରେ ଜଣେ ବୈଷ୍ଣବକୁ ଡକାଇ ନଅର ମଧ୍ୟକୁ ନେଇଗଲେ ଓ ତାକୁ ଅନେକ ମାଡ଼ ମାରି ତା ଦେହରେ ଚିଆଁ ଦେଲେ । ପୁରୁଷାଙ୍ଗ ରନ୍ଧ୍ରରେ ଚୂନ ପୁରାଇ ଲୁହାଗଜ ଗୁଞ୍ଜିଲେ ଓ ମଳଦ୍ୱାରରେ ୪୦ ଖଣ୍ଡ ସୋଲ ଖଣ୍ଡ ପୁରାଇ ନିଆଁ ଲଗାଇଲେ, ମୁହଁରେ ବିଷ୍ଠା ପୁରାଇଲେ—ଏଥିରେ ଭଗବାନପୁର ପୁନାଙ୍ଗ ଚୋଟା ବାବାଜୀ ଶିବୁ ଦାସ ବାବାଜୀଙ୍କ ମୃତ୍ୟୁ ହେବାରୁ ରାଜାଙ୍କୁ ମଧ୍ୟ ଆଜୀବନ କଳାପାଣି ଦଣ୍ଡ ହୋଇଥିଲା ।

କଟକ ହାଇକୋର୍ଟରେ ସାକ୍ଷୀ ଦେଲେ ପୁରୀ ହାସପାତାଲ କମ୍ପାଉଣ୍ଡର, ପୁରୀ ରୋଡ଼ସେସ୍ ଇଲାକାର ଇଞ୍ଜିନିୟର ବେକ୍ ସାହେବ, ଟଙ୍କା ଚପରାସୀ ଗୋପି ସିଂହ, କନଷ୍ଟେବଲ ଗିରିଧାରୀବାବୁ, ପଣ୍ଡିତ ନାୟକ, ମାଳା ବେହେରା, ପହରାଦାର ନାରାୟଣ ମହାନ୍ତି, ଦର୍ଶନ ସିଂହ, ସ୍ଥାନୀୟ ଡାକ୍ତର ନସିରାମ ଘୋଷାଲ୍, ରାମ ରାଓ ଇନସ୍‌ପେକ୍ଟର, ସିଭିଲ୍ ସର୍ଜନ ଡ: ଏମ୍: ଗୁପ୍ତା, ଦେବାନ, ପୁରାଣପଣ୍ଡା, ଖଟଣୀ, ମହାସୁଆର । ବାରିଷ୍ଟର ଇବାନ୍‌ସ ସାହେବ ଲଢ଼ୁଥିଲେ ସରକାର ତରଫରୁ ।

ବିଚାରପତି ଥିଲେ ଜାକ୍‌ସନ ଏନ୍‌ସାଲ ସାହେବ । ମହାରାଜାଙ୍କୁ କାରାଦଣ୍ଡ ହେଲା ଆଜୀବନ । ଅଗଷ୍ଟ ମାସରେ ରାଜା କଲିକତା ପ୍ରେସିଡ଼େନ୍‌ସି ଜେଲ ଛାପାଖାନାରେ ଅକ୍ଷର ବାଛିବା କାର୍ଯ୍ୟ କରୁଥିଲେ । ୪-୯-୧୮୭୮ରେ ପୁରୀ ରାଜା ସାତାରା ନାମକ ଜାହାଜରେ ପୋର୍ଟବ୍ଲେୟାର ପହଞ୍ଚିଲେ । ସେଠାରେ ରାଜା ବହୁତ କନ୍ଦାକଟା କଲେ । ଏକ ନିର୍ଜନ କୋଠରୀରେ ତାଙ୍କୁ ରଖାଗଲା ।

# କଟକରେ ଚାନ୍ଦି ତାରକସି ଜାଲିକାମ

ଶ୍ରୀ ବଂଶୀଧର ଜେଠୀ

ଚାନ୍ଦି ରୂପା ସରୁ ତାରରେ କଟକ ସହରର କୁଶଳୀ କାରିଗର ଯେଉଁ ସୂକ୍ଷ୍ମ କାରୁକାର୍ଯ୍ୟଖଚିତ ତାରକସିର ଗହଣା ଓ ଘର ସଜାଇବା ଉପକରଣ ନିଖୁଣ ଭାବରେ ତିଆରି କରେ, ତାହା ପୃଥିବୀରେ ଅଦ୍ୱିତୀୟ । ବଣିଆ କାରିଗର ତାର ଅପୂର୍ବ କଳା ନୈପୁଣ୍ୟ ଦ୍ୱାରା ଏହା ସମ୍ଭବ କରାଇ ପାରିଛି । ଏହି କଳାର ଉଦ୍ଭବ କେବେ ହୋଇଛି ତାହା ଐତିହାସିକମାନେ ଏଯାବତ୍ ନିର୍ଣ୍ଣୟ କରିନାହାନ୍ତି । ବିଶ୍ୱର ଅନ୍ୟତମ ଆଶ୍ଚର୍ଯ୍ୟ କୋଣାର୍କ ମନ୍ଦିର କିମ୍ବା ଭୁବନେଶ୍ୱରର ରାଜାରାଣୀ ଆଦି ମନ୍ଦିର ଯେଉଁ ଜାତି ଗଢ଼ିଲ, ତାର କଳାବୃତ୍ତି ଅତି ମହାନ ଏବଂ ଏହି ସୂକ୍ଷ୍ମ ତାରକସି କାମ ହେଉଛି ବଂଶ ପରମ୍ପରାଗତ କଳା ଚର୍ଚ୍ଚାର ଏକ ଜ୍ୱଳନ୍ତ ନିଦର୍ଶନ । କିନ୍ତୁ ଅତି ଦୁଃଖର କଥା ଯେ ଏହି ତାରକସି କଳା ଏବେ ଚରମ ଦୁର୍ଦ୍ଦଶାର ସମ୍ମୁଖୀନ । କାରଣ ହେଲା ପୃଷ୍ଠପୋଷକତାର କାର୍ପଣ୍ୟ ।

ଏହି ତାରକସି କାମ କେବେ ଆରମ୍ଭ ହୋଇଥିଲା ଏବଂ ଏଥିର ନମୁନା କିଏ ଦେଇଥିଲା ସେ ସମ୍ବନ୍ଧରେ ଇତିହାସ ପୂରାପୂରି ନୀରବ । କେତେକ କହନ୍ତି ଯେ ଏହା ଚୀନ ଦେଶର କାମ ଏବଂ ଆଉରି କେତେକଙ୍କ ମତରେ ଏହାର ନିର୍ମାଣ ଶୈଳୀ ଓଡ଼ିଆ ସାଧବମାନେ ଦୂରପ୍ରାଚ୍ୟ ଦେଶମାନଙ୍କରୁ ଆଣିଥିଲେ । କିନ୍ତୁ ଏହା କେତେଦୂର ଠିକ୍ ତାହା କହିବା କଷ୍ଟକର । ଆମ ରାଜ୍ୟରେ ଥିବା ପୁରୁଣା ଅସଂଖ୍ୟ ଦେବଦେବୀ ମନ୍ଦିରଗୁଡ଼ିକର ପ୍ରସ୍ତରଗାତ୍ରରେ ଜାଲିକାମ ଥିବାର ଦେଖାଯାଏ ନାହିଁ ।

ଓଡ଼ିଶା ରାଜ୍ୟ ବାଦଶାହ ଆକବରଙ୍କ ରାଜତ୍ୱ କାଳରେ ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହୋଇଥିଲା । ଏହା ପ୍ରାୟ ଷୋଡ଼ଶ ଶତାବ୍ଦୀର ଶେଷ ବେଳକୁ । ତାଙ୍କର ସୁଦକ୍ଷ ସେନାପତି ରାଜା ମାନସିଂହ ଓଡ଼ିଶା ରାଜ୍ୟ ଜୟ କରିଥିଲେ । ଆକବରଙ୍କ ପୌତ୍ର ଶାହାଜାହାନଙ୍କ ସମୟରେ ଶ୍ୱେତ ମର୍ମର ପ୍ରସ୍ତରରେ ଅନେକ ରମଣୀୟ ସୌଧ ନିର୍ମିତ ହୋଇଥିଲା । ଏହି ସମୟରେ ମୋତି ମସଜିଦ୍, ଦେବାନ-ଇ-ଖାସ, ଦେବାନ-ଇ-ଆମ, ଜୁମ୍ମା ମସଜିଦ୍ ଏବଂ ପୃଥିବୀର ସର୍ବୋତ୍କୃଷ୍ଟ ଆଶ୍ଚର୍ଯ୍ୟ ତାଜମହଲ ମଧ୍ୟ ନିର୍ମିତ ହୋଇଥିଲା । ସେହିପରି ଏକଲକ୍ଷ ଭରି ଓଜନ ସୁନାରେ ତିଆରି

ହୋଇଥିବା ହୀରା, ନୀଳା, ମୋତି, ମାଣିକ୍ୟ ଖଚିତ ମୟୂରସିଂହାସନ ମଧ୍ୟ କୋଟି କୋଟି ଟଙ୍କା ଖର୍ଚ୍ଚରେ ଏହି ସମୟ ମଧ୍ୟରେ ନିର୍ମିତ । ଗୁଜୁରାଟର ଅହମ୍ମଦାବାଦ ଠାରେ ଥିବା ପ୍ରସିଦ୍ଧ ମସଜିଦ ମଧ୍ୟ ଏହିକାଳରେ ମଧ୍ୟପ୍ରାଚ୍ୟ ଏବଂ କୁଶଳୀ ଭାରତୀୟ କାରିଗରମାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏ ସମସ୍ତ ମସଜିଦ୍‌ର ପ୍ରସ୍ତରନିର୍ମିତ କାନ୍ଥରେ ଅପୂର୍ବ ଜାଲିକାମ ସବୁ ଦେଖିବାକୁ ମିଳେ । ତେଣୁ ଅନୁମାନ କରିବା ସ୍ୱାଭାବିକ ଯେ ଏହିରି ଜାଲିକାମର ନମୁନା ମଧ୍ୟପ୍ରାଚ୍ୟ ଦେଶର କାରିଗରମାନଙ୍କ ଦ୍ୱାରା ଆନୀତ ହୋଇଥାଇପାରେ ।

ପିଲାଦିନେ ମନେଅଛି ଯେ ଆମ ସହରର ବଣିଆ କାରିଗରମାନଙ୍କ ନିକଟରେ ଅନେକ କାବୁଲି ବେପାରୀ ଆସି ସେମାନଙ୍କର ଆବଶ୍ୟକ ରୂପା ଗହଣା ସବୁ ତିଆରି କରିବାପାଇଁ ବରାଦ ଦେଉଥିଲେ । ହଜାର ହଜାର ଭରି ଓଜନର ଏହି ନିର୍ମିତ ଗହଣା ସବୁ ସେମାନେ ସେମାନଙ୍କ ଦେଶକୁ ପଠାଉଥିଲେ । ଏସବୁ ଗହଣା ମଧ୍ୟରେ ବେକରେ ପିନ୍ଧିବା ସକାଶେ ହଁସଳି, କାନରେ ପିନ୍ଧା ହେଉଥିବା ବଜଲି, କୁରତାରେ ଲଗାଇବା ନିମନ୍ତେ ଚେନ ଲଗା ବୋତାମ, ବାଜୁ, ଲକ୍ତି ଆଦି ପ୍ରଧାନ । ଏଗୁଡ଼ିକ ରୂପାର ମୋଟା ଜାଲିକାମ । ଏସବୁ ଗହଣାରେ ରଙ୍ଗବେରଙ୍ଗର କାଚ ପଥର ସବୁ ବସା ଯାଉଥିଲା । ଏହିସବୁ କାମ କରି କଟକ ସହରର ଶହ ଶହ କାରିଗର ସେମାନଙ୍କର ଜୀବିକା ନିର୍ବାହ କରୁଥିଲେ । ତେଣୁ ମୋଗଲ କିମ୍ବା ପଠାଣ ରାଜତ୍ୱ କାଳରେ ଏହି ତାରକସି କାମର ନମୂନା ଆମ କଟକ ସହରକୁ ଆସିଥିବା ମନେହୁଏ ।

ଆମ ରାଜ୍ୟରେ ମୋଗଲ ଏବଂ ପଠାଣ ରାଜତ୍ୱର ସମୟ ହେଲା ୧୫୬୮ ଖ୍ରୀଷ୍ଟାବ୍ଦ ଠାରୁ ୧୭୫୧ ଖ୍ରୀଷ୍ଟାବ୍ଦ ମଧ୍ୟରେ । ସେତେବେଳେ କଟକର ଲାଲବାଗ ଥିଲା ମୋଗଲମାନଙ୍କର ରାଜଧାନୀ । ଏହି ଲାଲବାଗ ପାଖାପାଖି ଗୃଦ୍ଧମାଚୌକି, ମହମ୍ମଦିଆ ବଜାର, ଶେଖବଜାର, ମାନସିଂହ ପାଟଣା, ରାମଗଡ଼, ଦେୱାନ ବଜାର, କାଜି ବଜାର, ମେହେନ୍ଦି ପୀର, କାଫଲା ବଜାର, ଅଲିଶା ବଜାର, ଡଗରପଡ଼ା ଆଦି ସାହି ମହଲ୍ଲା ସବୁ ଅବସ୍ଥିତ । ଏଗୁଡ଼ିକ ମୁସଲମାନ ରାଜତ୍ୱକାଳରେ ସ୍ଥାପିତ ବସ୍ତିମାନଙ୍କର ନାମକରଣ । ଏହି ଅଞ୍ଚଳ ମଧ୍ୟରେ ଥିବା ମାନସିଂହ ପାଟଣା, ରାମଗଡ଼, ଡଗରପଡ଼ା, ଅଲିଶା ବଜାର ଏବଂ ମହମ୍ମଦିଆ ବଜାରର ସାହିବସ୍ତିରେ ରହୁଥିବା ବଣିଆ କାରି-ଗରମାନେ ଏହି ତାରକସି କାମରେ ସିଦ୍ଧହସ୍ତ ଓ ପଟୁ ଥିବାରୁ, ଅନୁମିତ ହୁଏ ଯେ ଏହି ସମସ୍ତ ଇଲାକାରେ ବାସ କରୁଥିବା ସେତେବେଳର ମୋଗଲ ସୁବେଦାର ଏବଂ ତାଙ୍କ ଅଧୀନରେ ବିଭିନ୍ନ ପଦପଦବୀରେ ଥିବା ମୁସଲମାନ କର୍ମଚାରୀମାନଙ୍କର ବରାଦ ଗହଣା ଯୋଗାଇବା ସକାଶେ ସେମାନଙ୍କ ଢାଞ୍ଚାର ତାରଜାଲିକାମ ବହୁଳ ପରିମାଣରେ ତିଆରି କରିବା ଆରମ୍ଭ ହୋଇଥାଇପାରେ । ଲାଲବାଗଠାରୁ ଟିକେ ଦୂରରେ ଥିବା ଅନ୍ୟାନ୍ୟ ବଣିଆ ସାହି, ଯଥା—ବକ୍ସି ବଜାର, ମଙ୍ଗଳାବାଗ, (ନୂଆପାଟଣା) ଅଥବା ବିଦ୍ୟାଧରପୁର, କଖଡ଼, ଦାଡ଼ା, ବାରଙ୍ଗ ଏବଂ ଚୌଦ୍ୱାର ଆଦି ଅଞ୍ଚଳରେ

ବସବାସ କରୁଥିବା ବଣିଆ ଘରମାନଙ୍କରେ ଓଡ଼ିଆ ହିଁଅବୋହୂମାନଙ୍କର ଲୋଡ଼ା ହେଉଥିବା ପାରମ୍ପରିକ ରୂପାଗହଣା ସବୁ ତିଆରି ହେଉଥିଲା । ଏଗୁଡ଼ିକ ହେଲା— ଖଡ଼ୁ, ପାହୁଡ଼, ବାଳି, ମଲ, ଛଡ଼ା, ବଟଫଳ, ବାଜୁ, କପୁରି, ବାଲିଆ, ଗୋଠ, କଣ୍ଠି, ମଥାମଣି, ଗଣ୍ଠିଆ, ଠଅମ, ପାଉଁଜମ, ବାହୁଚୂଡ଼, ଝୁଣ୍ଟିଆ, ଗୋଡ଼ମୁଦି, ଗୁଜକାଠି, ହଦ, ଚୁଡ଼ି, ରସୁଣିଆ, ଚଅଁରଭୁଣ୍ଡି, ଚମ୍ପାକଳିମାଳି, ମୁଣ୍ଡପାନିଆ, ଚନ୍ଦ୍ରହାର ଇତ୍ୟାଦି ।

ଆଗକାଳରେ ତିଆରି ହେଉଥିବା ବଡ଼ ବଡ଼ ଗୃହ ଜାଲିକାମ ମଧ୍ୟରେ ଝାଡ଼, ଗୋଲାପ ବାସ, ଅତରଗିନା, ଥାଳି, ଫଟୋଫ୍ରେମ ଆଦି ପ୍ରଧାନ । ଏବେ ଗ୍ଲେଟ ଗ୍ଲେଟ କାମ ଉପହାର ଦେବା ନିମନ୍ତେ ବେଶି ବରାଦ । ଏଗୁଡ଼ିକ ହେଲା ବେକର ହାର, କାନଫୁଲ, ହାତ ମୁଦି, ଟାଇ ପିନ, ସିନ୍ଦୂର ଫରୁଆ, ଗୋଲାପ ଫୁଲ କିମ୍ବା ଜୁଇଫୁଲ ଇତ୍ୟାଦି ।

ଅବଶ୍ୟ ବିଗତ ଦଶନ୍ଧିରେ କଟକ ଚୌଧୁରୀ ବଜାରର କିମ୍ବା ଢେଙ୍କାନାଳର ଲକ୍ଷ୍ମୀମେଡ଼ ଗୃହ ତାରକସି କାମରେ ତିଆରି ହୋଇଛି । ଏଗୁଡ଼ିକ ମଧ୍ୟ ଅଭୁତପୂର୍ବ ସୁନ୍ଦର ତାରକସି କାମ । କଟକ ସହରର ବଣିଆ କାରିଗରମାନଙ୍କର ସୂକ୍ଷ୍ମ ଗୃହକଳାର ନମୂନା । ଏବେ ବଣିଆ କାରିଗର ବ୍ୟତୀତ ଆହୁରି କେତେକ ବ୍ରାହ୍ମଣ, ଗଉଡ଼ ଏବଂ କେଉଟ ଆଦି ସମ୍ପ୍ରଦାୟର ପିଲାମାନେ ଏ କାମ ଶିଖି ଉଚ୍ଚ ମାନର କାମ ମଧ୍ୟ କରୁଅଛନ୍ତି ।

ଏହି ଜାଲିକାମ ସକାଶେ ଆଗେ ଯନ୍ତା ଏବଂ ସିଆଡ଼ ସାହାଯ୍ୟରେ ହାତରେ ତାର ଟଣା ହେଉଥିଲା । ପରେ ହସ୍ତଚାଳିତ ତାରଟଣା ଯନ୍ତ୍ର ମଧୁବାବୁଙ୍କ କାରଖାନାକୁ ଅଣା ହେଲା ଏବଂ ବିଜୁଳି ଚାଳିତ ତାରଟଣା ଯନ୍ତ୍ର ସବୁ ମଧ୍ୟ ଏବେ ବସିଲାଣି । ୧୮୯୮ ମସିହାରେ ଦଶହଜାର ଟଙ୍କା ମୂଳଧନରେ ଓଡ଼ିଶା ଆର୍ଟଓ୍ୱାରସ ନାମକ ଏକ ଯୌଥ ବ୍ୟବସାୟ ପ୍ରତିଷ୍ଠାନ ଆରମ୍ଭ ହୋଇଥିଲା; ଏହାକୁ କୁଳବୃଦ୍ଧ ମଧୁସୂଦନ ଦାସ ଆରମ୍ଭ କରିଥିଲେ । ଉଦ୍ଦେଶ୍ୟ ଥିଲା ଯେ କୁଶଳୀ କାରିଗରମାନେ ସ୍ଥାନୀୟ ଲୋଭୀ ବେପାରୀ କିମ୍ବା କାବୁଲି ମହାଜନମାନଙ୍କ ଶୋଷଣରୁ ଉଦ୍ଧାର ପାଇ କିଛି ଅଧିକ ରୋଜଗାର କରନ୍ତୁ । ସେତେବେଳେ କଟକଚଣ୍ଡୀ ମନ୍ଦିର ପାଖରେ ମଧୁବାବୁଙ୍କ କୋଠାରେ ପ୍ରତିଷ୍ଠିତ ହୋଇଥିବା କାରଖାନାରେ ବହୁ କୁଶଳୀ କାରିଗରମାନେ କାମ କରୁଥିଲେ । ସେମାନେ ଆଉ ଇହଜଗତରେ ନାହାନ୍ତି ।

ଏ ବ ମଧ୍ୟ ବଣିଆ ତାରକସି କାରିଗର ଧନୀ ବେପାରୀଙ୍କ ଶୋଷଣ ହାତରୁ ମୁକ୍ତ ନୁହେଁ । ମଝିରେ ଥିବା ମୁନାଫାଖୋର ବ୍ୟବସାୟୀମାନେ କାରିଗରମାନଙ୍କର ନ୍ୟାଯ୍ୟ ପାଉଣା ଦେବା ନିମନ୍ତେ ପରାଙ୍ମୁଖୀ । ଫଳରେ କାରିଗର କୁଳ ଏ ବୃତ୍ତି

ଉପରେ ଆଉ ଭରସା ନ ରଖି ଅନ୍ୟ ଧନ୍ଦା କରି ପେଟ ପୋଷିବା ସକାଶେ ବ୍ୟାକୁଳ । କେଉଁ ଉପାୟ ଅବଲମ୍ବନ କଲେ ଏହି କଳା ବଞ୍ଚି ରହିବ ତାହା ଆମେ ସମସ୍ତେ ମିଳିତ ହୋଇ ଚିନ୍ତା କରିବା କଥା । ନଚେତ ଏହି ଶିଳ୍ପ ଅଚିରେ ଲୋପ ପାଇଯାଇ ପାରେ । ନୂତନ ରାଜ୍ୟ ସରକାର ଏହି ଶିଳ୍ପ ପ୍ରତି ସୁଦୃଷ୍ଟି ଦେବେ ବୋଲି ଆଶା କରାଯାଏ ।

ପୁଞ୍ଜିର ଘୋର ଅଭାବ ହେତୁ ଆବଶ୍ୟକ ପଡୁଥିବା ଦ୍ରବ୍ୟ କିଣିବା ଗରିବ କାରିଗରମାନଙ୍କ ପକ୍ଷରେ ସମ୍ଭବ ହୋଇପାରୁ ନାହିଁ । ତଦୁପରି କାମ ଶେଷକରି ବଜାରକୁ ବିକ୍ରୀ କରିବାକୁ ଗଲାବେଳକୁ ଉପଯୁକ୍ତ ମଜୁରି ପାଇବା ମଧ୍ୟ କଷ୍ଟକର ହୋଇ ପଡୁଛି । ଏ ସବୁରୁ ମୁକ୍ତି ପାଇବା ସକାଶେ ଉପାୟ ଉଦ୍ଭାବନ କରିବା ଆବଶ୍ୟକ ।

ରାଜ୍ୟ ଭିତରେ ଏବଂ ବାହାରେ ତଥା ଭାରତ ବାହାରେ ଏହି କାମର ଚାହିଦା ରହିଛି । ଏହି ଚାହିଦା କିପରି ଶୃଙ୍ଖଳିତ ଭାବରେ ମେଣ୍ଟାଇ ହେବ ତାହାର ପନ୍ଥା ସରକାର ସ୍ଥିର କରିପାରିଲେ, ଏହି ତାରକସି କାମ ଭାରତ ବାହାରକୁ ରପ୍ତାନି କରାଯାଇ ପାରିବ ଏବଂ ହଜାର ହଜାର କାରିଗର ହାତବାନ୍ଧି ବସି ନ ରହି କର୍ମ-ଯୋଗାଣର ସୁଯୋଗ ପାଇ ପାରିବେ ।



# କଟକରେ ଉତ୍କଳ ବିଶ୍ୱବିଦ୍ୟାଳୟ

ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ

ଉତ୍କଳ ସମ୍ମିଳନୀରେ ସର୍ବପ୍ରଥମେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ବିଷୟରେ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହାର ପ୍ରସ୍ତାବକ ଥିଲେ ଶିକ୍ଷାବିତ୍ ପଣ୍ଡିତ ଗୋପବନ୍ଧୁ ଦାସ । ସତ୍ୟବାଦୀ ବନ ବିଦ୍ୟାଳୟ ପ୍ରଥମେ କଲିକତା ବିଶ୍ୱବିଦ୍ୟାଳୟ ସହିତ ସଂଶ୍ଳିଷ୍ଟ ଥିଲା ଓ କୁଳପତି ସାର୍ ଆଶୁତୋଷ ମୁଖାର୍ଜୀ ଏହାକୁ ପରିଦର୍ଶନ କରି ସରକାରୀ ଅନୁଦାନ ଗ୍ରହଣ କରିବା ଲାଗି ବନ ବିଦ୍ୟାଳୟକୁ ବାଧ୍ୟ କରିଥିଲେ । ସରକାରଙ୍କ ତରଫରୁ ପୁରୀ କଲେକ୍ଟର ଶ୍ରୀଯୁକ୍ତ ମିଶ୍ର ଏ ସମ୍ବନ୍ଧରେ ସୁପାରିଶ କରିଥିଲେ ଏବଂ ଏହା ଗୋଟିଏ ଅନୁଦାନପ୍ରାପ୍ତ ଅନୁଷ୍ଠାନରେ ପରିଣତ ହୋଇଥିଲା । ୧୯୧୭ରେ ପାଟନା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା ଏବଂ ଆନ୍ଦୋଳନ ଆରମ୍ଭ ହୋଇ ବନ ବିଦ୍ୟାଳୟ ଗୋଟିଏ ଜାତୀୟ ବିଦ୍ୟାଳୟରେ ରୂପାନ୍ତରିତ ହୋଇଥିଲା । ପାଟନା ସହିତ ସଂଶ୍ଳେଷଣ ପ୍ରଶ୍ନ ଆଉ ଉଠିଲା ନାହିଁ ।

ଓଡ଼ିଆମାନେ ଗଡ଼ଜାତ ବା ମୋଗଲବନ୍ଦୀ ଯେକୌଣସି ଅଞ୍ଚଳର ଅଧିବାସୀ ହୁଅନ୍ତୁ ନା କାହିଁକି ଭାଷାଗତ ଐକ୍ୟ ସେମାନଙ୍କୁ ଗୋଟିଏ ଡୋରିରେ ବାନ୍ଧି ରଖିଥିଲା । ଭାଷା ସୂତ୍ରରେ ପ୍ରଦେଶ ଗଠନ ବା ଅନ୍ୟ ଉପାୟରେ ଭାଷାଗତ ଦୃଷ୍ଟିରୁ ସେମାନଙ୍କୁ ଏକ ଶାସନାଧୀନ କରିବା ଲାଗି ଓଡ଼ିଆ ନେତାମାନଙ୍କ ମଧ୍ୟରେ ବ୍ୟାକୁଳତା ଥିଲା । ଆମର ଗୋଟିଏ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲେ ଏହି ଉଦ୍ଦେଶ୍ୟ ଚରିତାର୍ଥ ହେବ ବୋଲି ଧାରଣା ସୃଷ୍ଟି ହୋଇଥିଲା । ସମ୍ମିଳନୀ କେବଳ ମୋଗଲବନ୍ଦୀ ଅଞ୍ଚଳର ଅଧିବାସୀଙ୍କ ଅନୁଷ୍ଠାନ ନ ଥିଲା । ଏଥିରେ ଗଡ଼ଜାତର ରାଜା ଓ ପ୍ରଜାମାନେ ସମାନ ଭାଗ ନେଉଥିଲେ । ୧୯୦୩ର ପ୍ରଥମ ଅଧିବେଶନରେ ବାମଣ୍ଡାର ନରପତି ସାହିତ୍ୟ-ବତ୍ସଳ ସାର୍ ବାସୁଦେବ ସୁଡ଼ଳଦେବ ସଭାପତି ହେବାର ଥିଲା । ତାଙ୍କର ହଠାତ୍ ପରଲୋକ ହୋଇଯିବାରୁ ମୟୂରଭଞ୍ଜ ମହାରାଜା ସାର୍ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ସଭାପତିତ୍ୱ କରିଥିଲେ । ତେଣୁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ମୂଳରେ ଦୁଇଗୋଟି ଲକ୍ଷ୍ୟ ଥିଲା । ପ୍ରଥମଟି ଥିଲା ଭାଷାର ଉନ୍ନତି ଓ ଭାଷାଗତ ଐକ୍ୟ । ଦ୍ୱିତୀୟଟି ଥିଲା

ଏହାର ନାମକରଣ । ଏହା ଉତ୍କଳ ବିଶ୍ୱବିଦ୍ୟାଳୟ ହେଲେ ଏତଦ୍ଵାରା ଗଡ଼ଜାତ ଓ ମୋଗଲବନ୍ଦୀ ମଧ୍ୟରେ ସହଯୋଗ ପ୍ରତିଷ୍ଠା ହୋଇପାରିବ ।

୧୯୧୯ରେ ବିହାର-ଓଡ଼ିଶାର ଲେଫ୍ଟେନାଣ୍ଟ ସାର୍ ହେଡ଼ଗେଟ୍ ଚଣ୍ଡଗୃଦ ପଡ଼ିଆରେ ଆଧୁନିକ ରେଭେନ୍‌ସା କଲେଜର ଭିତ୍ତିପ୍ରସ୍ତର ସ୍ଥାପନ କଲାବେଳେ ମତ ଦେଇଥିଲେ, "ଏହା ହିଁ ଭବିଷ୍ୟତରେ ବିଶ୍ୱବିଦ୍ୟାଳୟର ମୂଳଦୁଆ ହେବ ।" ସମ୍ମିଳନୀର ବେସରକାରୀ ଲକ୍ଷ୍ୟ ଲେଫ୍ଟେନାଣ୍ଟଙ୍କ ତୁଣ୍ଡରେ ସରକାରୀ ଅନୁମୋଦନ ଲାଭ କଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପର୍ଯ୍ୟନ୍ତ ଓଡ଼ିଶାର ମୁଷ୍ଟିମେୟ ସ୍କୁଲ ଓ କଲେଜ ପାଟନା ବିଶ୍ୱବିଦ୍ୟାଳୟ ସହିତ ସଂଶ୍ଳିଷ୍ଟ ହୋଇ ରହିଲା ।

୧୯୩୬ ଅପ୍ରେଲ ପହିଲା ଦିନ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ଏବଂ ୧୯୩୫ର ଭାରତ ଶାସନ ଆଇନ ପ୍ରବର୍ତ୍ତନ ହେବା ଯୋଗୁ ବିଶ୍ୱନାଥ ଦାସଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଓଡ଼ିଶାରେ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସମ୍ବନ୍ଧରେ ସୁପାରିଶ କରିବା ଲାଗି ପଣ୍ଡିତ ନୀଳକଣ୍ଠ ଦାସଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିଟି ସ୍ଥାପିତ ହେଲା । ଏହି କମିଟି ସୁପାରିଶ ଦେବା ପୂର୍ବରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା ଓ ଦାସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ । ତେଣୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଉଦ୍ୟମ ଆଗେଇ ପାରିଲା ନାହିଁ । ୧୯୪୧ ନଭେମ୍ବର ମାସରେ ପାରଳାଖେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ଗୋଟିଏ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା । ଏଥିରେ ଶିକ୍ଷାମନ୍ତ୍ରୀ ଥିଲେ ପଣ୍ଡିତ ଗୋଦାବରୀଶ ମିଶ୍ର । ପଣ୍ଡିତ ନୀଳକଣ୍ଠ ଦାସ ଏହି ମନ୍ତ୍ରିମଣ୍ଡଳର ମୁଖ୍ୟ ପୃଷ୍ଠପୋଷକ ଥିଲେ । ପଣ୍ଡିତ ଗୋପବନ୍ଧୁ ଥିଲେ ଉଭୟ ପଣ୍ଡିତ ନୀଳକଣ୍ଠ ଦାସ ଓ ପଣ୍ଡିତ ମିଶ୍ରଙ୍କ ଦୀକ୍ଷା ଗୁରୁ । ଗୋପବନ୍ଧୁଙ୍କ ମାନସପୁତ୍ର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପ୍ରସ୍ତାବକୁ ରୂପାୟିତ କରିବା ଲାଗି ପଣ୍ଡିତ ନୀଳକଣ୍ଠ ତାଙ୍କ ବିବରଣୀ ଦାଖଲ କଲେ ଓ ସେହି ନକ୍‌ସାରେ ବିଶ୍ୱବିଦ୍ୟାଳୟ ବିଧେୟକ ତିଆରି ହେଲା । ବିଧେୟକକୁ ଆଇନ ସଚିବ ଡବ୍ଲ୍ୟୁ: ଡ଼: ଏଲ୍: ତିଆରି କରିଥିଲେ ସିନା, ନିୟମାବଳୀ ଓ ପାଠ୍ୟ ଖସଡ଼ା ତିଆରି କରିବା ତାଙ୍କର ସାଧ୍ୟାତୀତ ଥିଲା । ପାରଳା ମହାରାଜା ଜଣେ ଶିକ୍ଷାନୁରାଗୀ ଥିଲେ ଓ ବିଶ୍ୱବିଦ୍ୟାଳୟ ପାଇଁ ସେ ମଧ୍ୟ ଆଗ୍ରହୀ ଥିଲେ । ସେ ତାଙ୍କ ପୂର୍ବ ପରିଚିତ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟର କୁଳପତି ଡବ୍ଲ୍ୟୁ: ମାକ୍‌ଲିନଙ୍କୁ ଧାରସୂତ୍ରରେ ଆଣି ନିୟମାବଳୀ ଓ ପାଠ୍ୟଖସଡ଼ା ତିଆରି କରିଦେଲେ । ବିଶ୍ୱବିଦ୍ୟାଳୟ ବିଧେୟକ ୧୯୪୩ ଜୁନ୍ ୩୦ ତାରିଖରେ ବିଧାନସଭା ଅନୁମୋଦନ କଲା ଓ ଅଗଷ୍ଟ ଦୁଇ ତାରିଖ ଦିନ ଓଡ଼ିଶାର ଲାଟସାହେବ ଏହାକୁ ସ୍ୱୀକୃତି ଦେଲେ । ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ବିରୋଧରେ କେତେଜଣ ବିଧାୟକ ଓ ଶିକ୍ଷାବିତ୍ ପ୍ରତିବାଦ କରିଥିଲେ ସତ୍ୟ କିନ୍ତୁ ଶିକ୍ଷାମନ୍ତ୍ରୀ ପଣ୍ଡିତ ମିଶ୍ର ଓ ଶିକ୍ଷାବିଭାଗ ନିର୍ଦ୍ଦେଶକ ଶ୍ୟାମଚନ୍ଦ୍ର ତ୍ରିପାଠୀ ଏହାକୁ ଏଡ଼ାଇଦେଇ ପାରିଥିଲେ ।

ବିଶ୍ୱବିଦ୍ୟାଳୟର ନାମକରଣ ପ୍ରଶ୍ନ ଉତ୍ଥାପିତ ହୋଇଥିଲା । କଟକର ନାମାନୁସାରେ ଏହାକୁ କଟକ ବିଶ୍ୱବିଦ୍ୟାଳୟ ବା ଓଡ଼ିଶା ବିଶ୍ୱବିଦ୍ୟାଳୟ ନାମ ଦେବା କଥା ଉଠିଥିଲା କିନ୍ତୁ ଉତ୍କଳ ସମ୍ମିଳନୀର ପ୍ରସ୍ତାବ ଓ ଗଡ଼ଜାତଗୁଡ଼ିକ ସହିତ ସମ୍ପର୍କ ଅକ୍ଷୁର୍ଣ୍ଣ ରଖିବା ଲାଗି ଏହାର ନାମ ଉତ୍କଳ ବିଶ୍ୱବିଦ୍ୟାଳୟ ରଖିବାକୁ ସ୍ଥିର ହେଲା ।

୧୯୪୩ ମସିହା ନଭେମ୍ବର ୨୭ ତାରିଖ ଦିନ ଉତ୍କଳ ବିଶ୍ୱବିଦ୍ୟାଳୟ ଉଦ୍‌ଘାଟିତ ହେଲା । ଡକ୍ଟର ପ୍ରାଣକୃଷ୍ଣ ପରିଜା ରେଭେନ୍‌ସା କଲେଜର ଅଧ୍ୟକ୍ଷ ଥାଇ ପ୍ରଥମ କୁଳପତି ଓ କଲେଜର ଇଂରେଜୀ ଅଧ୍ୟାପକ ଭି: ଭି: ଜନ ପ୍ରଥମ କୁଳସଚିବ ନିଯୁକ୍ତ ହେଲେ । ବିଶ୍ୱବିଦ୍ୟାଳୟର ନିଜସ୍ୱ ଗୃହ ନ ଥିବାରୁ ପଶ୍ଚିମ ଛାତ୍ରାବାସର ଓ୍ୱାର୍ଡେନଙ୍କ ବାସଗୃହରେ ପ୍ରଥମ ଦପ୍ତର ଖୋଲିଲା ଏବଂ କଲେଜର ମୁଖ୍ୟ କିରାଣୀ ଜଗନ୍ନାଥ ମିଶ୍ର ଅଫିସ ପରିଚାଳକ ନିଯୁକ୍ତ ହୋଇ ଦପ୍ତର ସଙ୍ଗଠନ ଦାୟିତ୍ୱ ଗ୍ରହଣ କଲେ ।

ସେତେବେଳେ ଓଡ଼ିଶାର କଲେଜ ଓ ଉଚ୍ଚ ଇଂରାଜୀ ବିଦ୍ୟାଳୟଗୁଡ଼ିକ ବିଶ୍ୱ-ବିଦ୍ୟାଳୟ ସହିତ ସଂଶ୍ଳିଷ୍ଟ ହେଲେ । ଗଞ୍ଜାମ ଓ କୋରାପୁଟ ଜିଲ୍ଲାର କଲେଜ ଓ ସ୍କୁଲଗୁଡ଼ିକ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ସହିତ ସଂଶ୍ଳିଷ୍ଟ ଥିଲେ । କେବଳ ଓଡ଼ିଶାର ଛଅ ଗୋଟି ଜିଲ୍ଲାର ସମ୍ପର୍କ ଉତ୍କଳ ବିଶ୍ୱବିଦ୍ୟାଳୟ ସହିତ ରହିଲା । ସେତେବେଳେ ପୂର୍ବତନ ଛଅଗୋଟି ଜିଲ୍ଲାରେ ଥିଲା ରେଭେନ୍‌ସା କଲେଜ, କଟକ ଟ୍ରେନିଂ କଲେଜ ଓ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ଥିବା ଆଇ: ଏ: ଶ୍ରେଣୀ । ଅନ୍ୟ କୌଣସି କଲେଜ ଓଡ଼ିଶାରେ ବା ଉତ୍କଳ ବିଶ୍ୱବିଦ୍ୟାଳୟରେ ନଥିଲା ।

ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପରେ ୧୯୪୪ ଜୁଲାଇ ପହିଲାରେ ମିଳିତ ମନ୍ତ୍ରିମଣ୍ଡଳୀ ଇସ୍ତଫା ଦେଲେ । ତଥାପି ପଣ୍ଡିତ ଗୋଦାବରୀଶଙ୍କ ଉଦ୍ୟମ ଅନୁସାରେ କଟକରେ ଉତ୍କଳ ଖୀରସ୍ତନ ବା ଜାଏଣ୍ଟ କଲେଜ, ଷ୍ଟିଓ୍ୱାର୍ଟ ବିଜ୍ଞାନ କଲେଜ, ଓଡ଼ିଶା ମେଡ଼ିକାଲ ସ୍କୁଲ ୧୯୪୪ ଜୁଲାଇ ମାସରେ ଉନ୍ନୀତ ହୋଇ ଭେଷଜ ମହାବିଦ୍ୟାଳୟ ଏବଂ ପୁରୀ, ବାଲେଶ୍ୱର ଓ ସମ୍ବଲପୁର ଜିଲ୍ଲା ସ୍କୁଲରେ ଆଇ: ଏ ଶ୍ରେଣୀ ଖୋଲିଲା । ନନ୍ଦେଶ୍ୱର ତ୍ରିପାଠୀଙ୍କ ପ୍ରଚେଷ୍ଟାରେ ବଲାଙ୍ଗୀର-ପାଟନା ଗଡ଼ଜାତର ମହାରାଜା ସାର ରାଜେନ୍ଦ୍ର ନାରାୟଣ ସିଂହଦେଓ ବଲାଙ୍ଗୀରରେ ନିଜ ନାମ ବହନ କରିଥିବା ରାଜେନ୍ଦ୍ର କଲେଜ ପ୍ରତିଷ୍ଠା କରିଥିଲେ । ୧୯୪୪ ଜୁଲାଇ ପହିଲା ଦିନ ଏହାହିଁ ଥିଲା ଉତ୍କଳ ବିଶ୍ୱବିଦ୍ୟାଳୟ ଭିତ୍ତିଭୂମି । ସେହି ବିଶ୍ୱବିଦ୍ୟାଳୟ ପରିବର୍ଦ୍ଧିତ ହୋଇ ବର୍ତ୍ତମାନ ସଂସ୍କୃତ ବିଶ୍ୱବିଦ୍ୟାଳୟ ସମେତ ପାଞ୍ଚଗୋଟି ବିଶ୍ୱବିଦ୍ୟାଳୟ, ତିନିଗୋଟି ଭେଷଜ ମହାବିଦ୍ୟାଳୟ, ତିନିଗୋଟି ଯାନ୍ତ୍ରିକ ମହାବିଦ୍ୟାଳୟ ଓ ପ୍ରାୟ ପାଞ୍ଚଶହ ଗୋଟି ଅନ୍ୟାନ୍ୟ କଲେଜ ସ୍ଥାପିତ ହୋଇଛି ଏବଂ କାର୍ଯ୍ୟର ସୁପ ଲାଘବ କରିବା ଲାଗି ୧୯୫୬ ରୁ ସ୍କୁଲ ଶିକ୍ଷା ଓ ୧୯୮୩ ରୁ ଉଚ୍ଚତର ମାଧ୍ୟମିକ ଶିକ୍ଷା ଯଥାକ୍ରମେ ମାଧ୍ୟମିକ

ଶିକ୍ଷା ମଣ୍ଡଳ ଓ ଉଚ୍ଚ ମାଧ୍ୟମିକ ଶିକ୍ଷା ପରିଷଦ ଉକ୍ତ ପରୀକ୍ଷା ଦାୟିତ୍ୱ ବିଶ୍ୱବିଦ୍ୟାଳୟ ଗୁଡ଼ିକ ହାତରୁ ନେଇ ଯାଇଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟ ମାତ୍ର ଅଠେଇଶଗୋଟି କଲେଜ ଓ ଦଶଗୋଟି ଉଚ୍ଚ ଇଂରାଜୀ ବିଦ୍ୟାଳୟକୁ ମିଶାଇ ୧୯୪୪ ରେ ଗଠିତ ହୋଇଥିଲା ବୋଲି ଉତ୍କଳ ବିଶ୍ୱବିଦ୍ୟାଳୟ ସୁବର୍ଣ୍ଣ ଜୟନ୍ତୀ ପାଳୁଥିବାବେଳେ ଶିକ୍ଷାର ଏପରି ଅଭୂତପୂର୍ବ ପ୍ରଗତି ସମ୍ଭବପର ହୋଇଛି ।

ଉଦଳାନିବାସୀ ଶିକ୍ଷା ନିର୍ଦ୍ଦେଶକ ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କ ବ୍ୟକ୍ତିଗତ ଉଦ୍ୟମରେ ରେଲଷ୍ଟେସନର ପୂର୍ବ ଓ ପଶ୍ଚିମ ଦିଗରେ ଥିବା ମୟୂରଭଞ୍ଜ ମହାରାଜାଙ୍କର ଦୁଇଗୋଟି ଅଟ୍ଟାଳିକା ବିଶ୍ୱବିଦ୍ୟାଳୟ ଦଖଲ କରିଛି । ବିଶ୍ୱବିଦ୍ୟାଳୟର ଅଭିବୃଦ୍ଧି ଯୋଗୁଁ ପଶ୍ଚିମ ପାଖ ମୟୂରଭଞ୍ଜ କୋଠିକୁ ୧୯୪୪ ରେ ବିଶ୍ୱବିଦ୍ୟାଳୟ ଦପ୍ତର ଉଠିଗଲା । ସେହି ଅଟ୍ଟାଳିକାରେ ଏବେ ମଧ୍ୟ ମଧୁସୂଦନ ଆଇନ ମହାବିଦ୍ୟାଳୟ ଚାଲିଛି । ତାହାର କିଛିଦିନ ପରେ ବିଶ୍ୱବିଦ୍ୟାଳୟର ପ୍ରଶାସକୀୟ ଦପ୍ତର ପୂର୍ବତନ ସର୍କିଟ ହାଉସକୁ ଉଠିଗଲା । ପ୍ରଥମେ ଚିନ୍ତା କରାଯାଉଥିଲା ଯେ ମୟୂରଭଞ୍ଜ କୋଠିର ମେଡ଼ିକାଲ କଲେଜ ପର୍ଯ୍ୟନ୍ତ ଅଞ୍ଚଳ ପାଟଣା ବିଶ୍ୱବିଦ୍ୟାଳୟ ପରି ଉତ୍କଳ ବିଶ୍ୱବିଦ୍ୟାଳୟ କିଣିନେବ । ତାହାହେଲେ ରେଭେନ୍ସା କଲେଜଠାରୁ ମେଡ଼ିକାଲ କଲେଜ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟ ଅଞ୍ଚଳ ହୋଇଯିବ । ଉତ୍କଳ ବିଶ୍ୱବିଦ୍ୟାଳୟ ଓ ଓଡ଼ିଶା ସରକାର ଏତେ ବ୍ୟୟଭାର ବହନ କରିବା ଲାଗି ସମର୍ଥ ନ ଥିଲେ । ତେଣୁ ନୂଆ ବଜାର କୁଷ୍ଠାଶ୍ରମଠାରେ ନିଜସ୍ୱ ଭୂମି କ୍ରୟ କରି ବିଶ୍ୱବିଦ୍ୟାଳୟ ସେଠାରେ ରହିବ ବୋଲି ପ୍ରସ୍ତାବ ହେଲା । ଭୂମିମାଲିକ ଜମିର ଦର ଏତେ ବେଶି ଦାବି କଲେ ଯେ ସେ ଜମିକୁ କିଣିବା ଅସମ୍ଭବ ହୋଇଗଲା । ୧୯୫୭ ରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଅଧ୍ୟକ୍ଷ ଥିଲେ ସାର୍ ଚିନ୍ତାମଣି ଦେଶମୁଖ । ସେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଆସିଥିଲେ । ସେ ଉଭୟ କୁଳାଧିପତି ଯଶୋବନ୍ତ ନାରାୟଣ ସୁଖଠଣକର ଓ କୁଳପତି ଡକ୍ଟର ପରିଜାଙ୍କର କେମ୍ବ୍ରିଜରେ ସହାଧ୍ୟାୟୀ । ମୁଖ୍ୟମନ୍ତ୍ରୀ ଥିଲେ ଡକ୍ଟର ହରେକୃଷ୍ଣ ମହତାବ । ଦେଶମୁଖଙ୍କୁ ଦିବାଭୋଜନ ଦିଆ ଯାଉଥିଲା । ସେହିଠାରେ ଭୁବନେଶ୍ୱରରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ପ୍ରସ୍ତାବ ଉଠିଲା । ଡକ୍ଟର ମହତାବ ବିନାମୂଲ୍ୟରେ ୪୦୦ ଏକର ପରିମିତ ଜମି ଯୋଗାଇ ଦେବେ ବୋଲି ପ୍ରତିଶ୍ରୁତି ଦେଲେ । ସିନେଟ ଓ ସିଣ୍ଡିକେଟ ସଭ୍ୟମାନେ ତତ୍‌କ୍ଷଣାତ ସେମାନଙ୍କ ସହିତ ଭୁବନେଶ୍ୱର ଗଲେ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ଆଧୁନିକ ପରିସର ମନୋନୀତ ହେଲା । କଟକ ଆଉ ବିଶ୍ୱବିଦ୍ୟାଳୟ ପୀଠ ହୋଇ ରହିଲା ନାହିଁ, ଏହା କେବଳ ଅନୁଷ୍ଠଶାଳୀ ହୋଇଗଲା ।

ଜାତୀୟ ରାଜପଥ ଦକ୍ଷିଣ ପାର୍ଶ୍ୱରେ ୧୯୫୮ ଜାନୁଆରୀ ପହିଲା ଦିନ ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ଭୁବନେଶ୍ୱରରେ ବିଶ୍ୱବିଦ୍ୟାଳୟର ଭିତ୍ତି ପ୍ରସ୍ତର ସ୍ଥାପନ କଲେ । ସିଣ୍ଡିକେଟର ଗୋଟିଏ ଉପସମିତି କନିକା ରାଜା ଓ ପୂର୍ତ୍ତମନ୍ତ୍ରୀ ଶୈଳେନ୍ଦ୍ର

ନାରାୟଣ ଭଞ୍ଜଦେଓଙ୍କ ଅଧ୍ୟକ୍ଷତାରେ ନିର୍ମାଣ କାର୍ଯ୍ୟ ତଦାରଖ କରୁଥିଲେ । ଯନ୍ତ୍ରୀ ମମତାଜ ଅଲି ହିନ୍ଦୁସ୍ଥାନ ନିର୍ମାଣ ପ୍ରତିଷ୍ଠାନ ମାଧ୍ୟମରେ ନିର୍ମାଣ କାର୍ଯ୍ୟ କରାଉଥିଲେ । ୧୯୬୨ ସୁଦ୍ଧା ଅଟ୍ଟାଳିକାଗୁଡ଼ିକ ନିର୍ମିତ ହୋଇଗଲା ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟ ନୂତନ ପରିସରକୁ ସ୍ଥାନାନ୍ତରିତ ହେଲା । ୧୯୬୩ର ସମାବର୍ତ୍ତନ ଉତ୍ସବ ବାଣୀବିହାର ନାମରେ ନାମିତ ବିଶ୍ୱବିଦ୍ୟାଳୟର ନୂତନ ପରିସରରେ ଅନୁଷ୍ଠିତ ହୋଇଥିଲା । ସେହି ଉପଲକ୍ଷେ ଆସିଥିବା ଭାରତର ଦ୍ୱିତୀୟ ରାଷ୍ଟ୍ରପତି ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ ନୂତନ ପରିସରକୁ ଆନୁଷ୍ଠାନିକ ଭାବରେ ଉଦ୍‌ଘାଟନ କରିଥିଲେ । ଓଡ଼ିଶା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ଏକମାତ୍ର ବିଶ୍ୱବିଦ୍ୟାଳୟ ଥିଲା । ନାନା କାରଣରୁ ପାଞ୍ଚ ବର୍ଷ ପରେ ୧୯୬୭ ଜାନୁଆରୀ ମାସରେ ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଦୁଇଟିର ପ୍ରତିଷ୍ଠା ହୋଇଥିଲା । ତାର ପାଞ୍ଚବର୍ଷ ଆଗରୁ ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ, ୧୯୬୨ରେ କୃଷି କଲେଜ ଓ ପଶୁଚିକିତ୍ସା ବିଜ୍ଞାନ କଲେଜକୁ ନେଇ ଆରମ୍ଭ ହୋଇଥିଲା । ଏବେ ସେଠାରେ ପାଞ୍ଚଗୋଟି କଲେଜ ହେଲାଣି । ତେଣୁ ୧୯୬୮ରେ ଉତ୍କଳ ବିଶ୍ୱବିଦ୍ୟାଳୟ ରଜତ ଜୟନ୍ତୀ ପାଳନ କରିବା ବେଳକୁ ଓଡ଼ିଶାରେ ଶିକ୍ଷାର ଅଭୂତପୂର୍ବ ଉନ୍ନତି ସାଧିତ ହୋଇଥିଲା ।

ବିଶ୍ୱବିଦ୍ୟାଳୟ କଟକରେ ଥିବା ବେଳେ କୁଳାଧିପତି ଥିଲେ ସାର୍ ଉଇଲିଅମ ହଥର୍ଣ୍ଣ ଲୁଇସ୍, ସାର୍ ଚନ୍ଦୁଲାଲ ତ୍ରିବେଦୀ, ଡକ୍ଟର କୈଳାସ ନାଥ କାଟ୍‌ଜୁ, ଆସଫ ଅଲ୍ଲୀ, ଭୀମସେନ ସାଚ୍ଚର, ସାର୍ ସୟଦ୍ ଫଜଲ ଅଲ୍ଲୀ, କୁମାର ସ୍ୱାମୀ ରାଜା ଓ ସାର୍ ଯଶୋବନ୍ତ ନାରାୟଣ ସୁଖଠଣକର । ଡକ୍ଟର ପ୍ରାଣକୃଷ୍ଣ ପରିଜା, ଚିନ୍ତାମଣି ଆଚାର୍ଯ୍ୟ ଓ ଡକ୍ଟର ପର୍ଶୁରାମ ମିଶ୍ର କୁଳପତି ଆସନ ମଣ୍ଡନ କରିଥିଲେ ଏବଂ ଭି. ଭି. ଜନ, ଗୋକୁଳଚନ୍ଦ୍ର ଶତପଥୀ ଓ ଗୋବିନ୍ଦ ରଥ କୁଳସଚିବ ଥିଲେ । ଓଡ଼ିଶା ସହିତ ଗଡ଼ଜାତ ମିଶ୍ରଣ ହୋଇଯାଇଥିବା ସତ୍ତ୍ୱେ ଜଣେ ରାଜାଙ୍କୁ ପଦାସୀନ କରିବା ଲାଗି ପ୍ରକୁଳପତି ପଦ ସୃଷ୍ଟି ହୋଇଥିଲା ଏବଂ ବିଶ୍ୱବିଦ୍ୟାଳୟ କଟକରେ ଥିବା ପର୍ଯ୍ୟନ୍ତ ମୟୂରଭଞ୍ଜ ମହାରାଜା ସାର୍ ପ୍ରତାପଚନ୍ଦ୍ର ଭଞ୍ଜଦେଓ, ଡକ୍ଟର ହରେକୃଷ୍ଣ ମହତାବ ଓ ଡକ୍ଟର ପ୍ରାଣକୃଷ୍ଣ ପରିଜା ଏହାକୁ ମଣ୍ଡନ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ବାଣୀବିହାରକୁ ଯିବାବେଳକୁ ସୁଖଠଣକର କୁଳାଧିପତି, ଜଷ୍ଟିସ୍ ଗୋପାଳ ଚନ୍ଦ୍ର ଦାସ ପ୍ରକୁଳାଧିପତି, ଡକ୍ଟର ପରିଜା କୁଳପତି ଓ ଗୋବିନ୍ଦ ରଥ କୁଳସଚିବ ଥିଲେ । ମୁଖ୍ୟମନ୍ତ୍ରୀ ଥିଲେ ଶ୍ରୀ ବିଜୁ ପଟ୍ଟନାୟକ । ଏବେ ମଧ୍ୟ ଶ୍ରୀ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ରୂପେ କଟକ ସହରର ଗୌରବ ଲୋପ କରିବାକୁ ବଦ୍ଧପରିକର ହୋଇ ନୂତନ ଓଡ଼ିଶାର ପ୍ରଥମ ରାଜଧାନୀ କଟକକୁ ଶ୍ରୀହୀନ କରି ସାରିଲେଣି । ଉତ୍କଳ ବିଶ୍ୱବିଦ୍ୟାଳୟ କଟକରେ ଥିଲେ ସେ ନିଶ୍ଚୟ ତାକୁ ଭୁବନେଶ୍ୱରକୁ ଉଠାଇ ନେଇଥାନ୍ତେ । ସେ କାମଟି ତାଙ୍କ ପାଇଁ ଡକ୍ଟର ମହତାବ ଆଗରୁ ସାରି ଦେଇଛନ୍ତି ।

ବିଶ୍ୱବିଦ୍ୟାଳୟ କେବଳ ଅଟ୍ଟାଳିକାସମୂହ ନୁହେଁ କିମ୍ବା ଏପରି ଗୋଟିଏ ସ୍ୱୟଂଶାସିତ ଅନୁଷ୍ଠାନ ସରକାରଙ୍କ କ୍ଷମତା ବୃଦ୍ଧି କରେ ନାହିଁ । ଶିକ୍ଷାଗତ ଐତିହ୍ୟ ଓ ପରମ୍ପରା ଉପରେ ଅଧ୍ୟାପକଗୋଷ୍ଠୀ ଓ ଛାତ୍ରସମାଜ ନିଜ ଜୀବନ ଗଢ଼ନ୍ତି । ମୁଷ୍ଟିମେୟ ବିଶ୍ୱବିଦ୍ୟାଳୟକୁ ବାଦ ଦେଲେ ଭାରତର ସବୁ ବିଶ୍ୱବିଦ୍ୟାଳୟ ସହର ମଧ୍ୟରେ ପ୍ରତିଷ୍ଠିତ । ତଦ୍ୱାରା ସେମାନଙ୍କ ମଧ୍ୟରେ ଯୌଥଜୀବନ ବିକାଶ ଲାଭ କରିଛି । ଭୁବନେଶ୍ୱର ଗୋଟିଏ ଉପନିବେଶ ସଦୃଶ । ଏହାର ଦୈନିକ ଜୀବନ ନୈଶ ଜୀବନ ଠାରୁ ଭିନ୍ନ । ଚାରିଗୋଟି ପୁରୁଷ ଛାତ୍ରାବାସ ଓ ଦୁଇଟି ବାଳିକା ଛାତ୍ରାବାସ ଅନ୍ତେବାସୀଙ୍କୁ ବାଦ୍ ଦେଲେ ଅଧିକାଂଶ ଛାତ୍ରଛାତ୍ରୀ କଟକ, ପୁରୀ, ଭୁବନେଶ୍ୱର, ଖୋର୍ଦ୍ଧା ଓ ଆଖପାଖ ଅଞ୍ଚଳରୁ କେବଳ ଶ୍ରେଣୀରେ ଯୋଗ ଦେବାକୁ ଆସନ୍ତି । ବିଶ୍ୱବିଦ୍ୟାଳୟ ସମାଜ ବା ସମ୍ପ୍ରଦାୟର ବିକାଶ ଲାଭ କରୁନାହିଁ । ବାଣୀବିହାର ପରିସରରେ ଯଥେଷ୍ଟ ସ୍ଥାନ ଅଛି । ଏହା ଅତ୍ୟନ୍ତ ସୁବିଧାଜନକ । ବାରାଣସୀ ହିନ୍ଦୁ ବିଶ୍ୱବିଦ୍ୟାଳୟ ଓ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ପରି ଆଉ କେତେଗୋଟି ଛାତ୍ରାବାସ ନିର୍ମାଣ ନ କଲେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୌଥଜୀବନ ସୃଷ୍ଟି ହୋଇ ପାରିବ ନାହିଁ ।



# ସ୍ୱରାଜ୍ୟ ଆଶ୍ରମର ଇତିହାସ

**ଶ୍ରୀ କୃଷ୍ଣଚନ୍ଦ୍ର ମହାନ୍ତି**

ଆଜି ସ୍ୱରାଜ୍ୟ ଆଶ୍ରମ କୋଳାହଳଶୂନ୍ୟ । ଗତ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧି ଠାରୁ ଯେଉଁ ସ୍ଥାନ ଜାତୀୟ ମୁକ୍ତି ଆନ୍ଦୋଳନର ତୀର୍ଥସ୍ଥଳୀ ଥିଲା ସମ୍ପ୍ରତି ସେହି ସ୍ଥାନ ନୀରବ, ନିଥର, ମୂକ ଓ ସ୍ଥାବର । 'ମହାତ୍ମା ଗାନ୍ଧି କି ଜୟ' 'ବନ୍ଦେ ମାତରମ୍'ର ଆକାଶ ପ୍ରକମ୍ପିତ ଧ୍ୱନି ସେହି ସ୍ୱରାଜ୍ୟ ଆଶ୍ରମର ହତାରେ କେଉଁକାଳୁ ମହାକାଳର ଅଶରୀର ଆତ୍ମାରେ ଅବଲୁପ୍ତ ହୋଇଗଲାଣି । ପରିବର୍ତ୍ତିତ ପରିସ୍ଥିତିରେ ସବୁକିଛି ପରିବର୍ତ୍ତନ ହୋଇଯାଇଛି । ଦେଶ ସ୍ୱାଧୀନ ହୋଇସାରିଛି । ସ୍ୱାଧୀନତା ଆନ୍ଦୋଳନର ସ୍ୱର ସ୍ୱରାଜ୍ୟ ଗଠନର ସ୍ୱରରେ ଭିନ୍ନ ଆକାରରେ ରୂପାନ୍ତରିତ ହୋଇଛି ।

ଜାତିର ଜନକ ମହାତ୍ମାଗାନ୍ଧିଙ୍କ ମୁକ୍ତି ଆନ୍ଦୋଳନର ବାଣୀ ସେତେବେଳେ ଆକୁମାରୀ ହିମାଚଳ ପର୍ଯ୍ୟନ୍ତ ସବୁଠାରେ ପ୍ରତିଧ୍ୱନିତ ହୋଇଥିଲା । ଦେଶର ସବୁ ଅଞ୍ଚଳରେ ମୁକ୍ତି ଆନ୍ଦୋଳନ ପାଇଁ ବ୍ୟାପକ ପ୍ରସ୍ତୁତି ଲାଗି ରହିଥିଲା । ଜାତୀୟ ସ୍ୱାଧୀନତା ଆନ୍ଦୋଳନର ଏହି ଶୁଭ ଅବସରରେ ଓଡ଼ିଶାରେ ସ୍ୱରାଜ୍ୟ ଆଶ୍ରମ ଥିଲା ଆନ୍ଦୋଳନର କର୍ମକ୍ଷେତ୍ର । ଏହି ସ୍ୱରାଜ୍ୟ ଆଶ୍ରମରୁ ସ୍ୱାଧୀନତା ସଂଗ୍ରାମ ପାଇଁ ସମଗ୍ର ଓଡ଼ିଶାର ଜନସାଧାରଣଙ୍କୁ ଦିଗ୍‌ଦର୍ଶନ ପ୍ରଦାନ କରାଯାଉଥିଲା । ସ୍ୱରାଜ୍ୟ ଆଶ୍ରମ ଥିଲା ମୁକ୍ତି ଆନ୍ଦୋଳନକାରୀ ଯୋଦ୍ଧାଙ୍କ ମହାନ୍ ପବିତ୍ର ଦୁର୍ଗ । ଜାତୀୟ ଓ ପ୍ରାନ୍ତୀୟ ଅନେକ ସଂଗ୍ରାମୀଙ୍କ ବିପ୍ଳବର ସ୍ୱର ଓ ପାଦର ଶବ୍ଦ ସ୍ୱରାଜ୍ୟ ଆଶ୍ରମର ବାତାବରଣକୁ ଉତ୍ସାହ ଓ ଉଦ୍ଦୀପନାରେ ସେ କାଳରେ ଭରିଦେଇ ମୁକ୍ତି ସୂର୍ଯ୍ୟର ଉଦୟ ପଥକୁ ଚାହିଁ ରହିଥିଲା ।

କଥାରେ ଅଛି, କଟକ ନଗରରେ ବାଉନ ବଜାର ତେପନ ଗଳି । ଏକ ହଜାର ବର୍ଷର କଟକ ନଗର ସମୟର ଆହ୍ୱାନ ସହିତ ପାଦ ମିଳାଇ ପରିବର୍ତ୍ତନ ମଧ୍ୟ ଦେଇ ଗତି କରି ଚାଲିଛି । ଆଜିର କଟକ ସହର ରୂପରେଖ ସ୍ୱାଧୀନତା ଆନ୍ଦୋଳନ ସମୟର ଆକାର ପ୍ରକାର ଠାରୁ ବହୁ ପରିମାଣରେ ଭିନ୍ନ ହୋଇଗଲାଣି । ସ୍ୱରାଜ୍ୟ ଆଶ୍ରମ କାଳର ସ୍ୱାଧୀନତା ଆନ୍ଦୋଳନ ଆଜି ଜାତୀୟ ଇତିହାସ ପୃଷ୍ଠା ମଣ୍ଡନ

କରିଛି । ସ୍ୱରାଜ୍ୟ ଆଶ୍ରମରେ ଦେଶର ମୁକ୍ତି ଆନ୍ଦୋଳନ ପାଇଁ ପ୍ରକୃତ ପର୍ବ ଆରମ୍ଭ ହୁଏ ୧୯୨୧ ମସିହାରେ । ଦେଶ ସ୍ୱାଧୀନତା ଲାଭ କରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ । ଏଥିମଧ୍ୟରେ ୪୭ ବର୍ଷ ଅତୀତ ହୋଇଗଲାଣି । ୧୯୨୧ ମସିହା ଠାରୁ ଆଜି ୧୯୯୪ ମସିହା ଭିତରେ ୭୩ ବର୍ଷ ବିତିଗଲାଣି । ସ୍ୱରାଜ୍ୟ ଆଶ୍ରମରେ ସେତେବେଳେ ଯେଉଁମାନେ ମୁକ୍ତି ଆନ୍ଦୋଳନର ଯୋଦ୍ଧା ଥିଲେ ଏବଂ ମୁକ୍ତି ମଶାଲର ଆଲୋକରେ ଜନ ଜୀବନକୁ ଉଦ୍‌ଭାସିତ କରୁଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଆମ ମାନଙ୍କ ପାଇଁ ଏବଂ ଆମ ଉତ୍ତର ପୁରୁଷଙ୍କ ପାଇଁ ପ୍ରାତଃ ସ୍ମରଣୀୟ ବ୍ୟକ୍ତି ବିଶେଷରେ ପରିଣତ ହୋଇଗଲେଣି ।

କଟକ ନଗରର ସାହେବଜାଦା ବଜାରରେ ସ୍ୱରାଜ୍ୟ ଆଶ୍ରମର ଅବସ୍ଥିତି । ସ୍ୱରାଜ୍ୟ ଆଶ୍ରମ ହତାରେ ସେଇ ପୁରୁଣା ମୂଳ କୋଠାଟି ଏ ପର୍ଯ୍ୟନ୍ତ କେତେକ ସ୍ତରରେ ପୁନର୍ବିନ୍ୟାସ ସହିତ ଏବେ ମଧ୍ୟ ଦଣ୍ଡାୟମାନ । ଦକ୍ଷିଣମୁହାଁ ହୋଇ କାଠଯୋଡ଼ି ନଦୀକୁ ଚାହିଁ ରହିଥିବା କୋଠାଟି ବହୁ ସ୍ମୃତିର ବାହକ, ଜାତୀୟ ମୁକ୍ତି ଆନ୍ଦୋଳନର ମୂକ ସାକ୍ଷୀ । ଏହି କୋଠାର ପୂର୍ବ, ପଶ୍ଚିମ ଓ ପଛ ଭାଗରେ ସାହାଲ୍, ସାହାଲ୍ ଘର । ଏହି ଘରଗୁଡ଼ିକ ପରବର୍ତ୍ତୀ ସମୟରେ ଆବଶ୍ୟକତା ଅନୁସାରେ ନିର୍ମାଣ କରାଯାଇଥିଲା । ମୁଖ୍ୟ କୋଠାର ବାମ ପାର୍ଶ୍ୱ ଓ ଦକ୍ଷିଣ ପାର୍ଶ୍ୱରେ ନିର୍ମାଣ କରାଯାଇଥିବା ତିଣ ଛାତର ଗୃହଗୁଡ଼ିକ ୧୯୮୦ ମସିହା ବେଳକୁ ସରକାରୀ ଅନୁଦାନରେ କଂକ୍ରିଟ୍ ଛାତରେ ପରିଣତ ହୋଇଛି । ମୁଖ୍ୟ କୋଠାର ପଛପଟେ ଏବଂ ଦକ୍ଷିଣ ପାର୍ଶ୍ୱରେ ଥିବା କୋଠାଗୁଡ଼ିକ ୧୯୬୦ ମସିହା ଠାରୁ ପରବର୍ତ୍ତୀ କାଳରେ ନିର୍ମିତ ।

ସ୍ୱରାଜ୍ୟ ଆଶ୍ରମ ହତାରେ ମୁଖ୍ୟ କୋଠାର ପଛପଟେ ରୋଷେଇଶାଳ ଏବଂ ଗୋଟିଏ ବଡ଼ ବାର୍ଣ୍ଣି ମଧ୍ୟ ରହିଛି । ପଛ ପଟରେ ଥିବା କୋଠାର ତଳ ମହଲାରେ ଷଷ୍ଠ, ସପ୍ତମ ଦଶକରେ କଂଗ୍ରେସ କର୍ମୀମାନେ ଅବସ୍ଥାନ କରୁଥିଲେ ଓ ଅର୍ଦ୍ଧ ନିର୍ମିତ ଅବସ୍ଥାରେ ଥିବା ଉପର ମହଲ ନିର୍ମିତ ହେବାପରେ ଏବେ ସେଇ ଉପର ମହଲ ଲମ୍ବା ପ୍ରକୋଷ୍ଠଟି ଜାତୀୟ ଓ ପ୍ରାନ୍ତୀୟ ସ୍ତରରେ ଖ୍ୟାତନାମା ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ଉତ୍କଳ କେଶରୀ ହରେକୃଷ୍ଣ ମହତାବଙ୍କ ସ୍ମୃତିରେ 'ମହତାବ ହଲ'ରେ ପରିଣତ ହୋଇଛି । ପ୍ରଥମ କୋଠାର ଉଭୟ ପାର୍ଶ୍ୱରେ ଥିବା ଗୃହମାନଙ୍କରେ ସଂପ୍ରତି ଦେଶପ୍ରାଣ ଖଦୀ ସଂସ୍ଥାର କାର୍ଯ୍ୟାଳୟ ରହିଛି । ରଚନାତ୍ମକ କାର୍ଯ୍ୟ ଉଦ୍ଦେଶ୍ୟରେ କେତୋଟି ବର୍ଷ ଧରିରେ ଚରଖା ସାହାଯ୍ୟରେ ସୂତାକଟା ଶିକ୍ଷା ଦିଆଯାଉଛି । ସ୍ୱଳ୍ପ ପରିସର ଘରରେ ଶିକ୍ଷା ଦିଆଯାଉଥିବା ଏହି ସୂତାକଟା ବ୍ୟବସ୍ଥା ମୁମୂର୍ଷୁ ପ୍ରାୟ ଆଜିର କାରିଗରୀ କୌଶଳ ଯୁଗରେ ସ୍ୱରାଜ୍ୟ ଆଶ୍ରମ ହତାରେ ଚରଖାରେ ସୂତା କାଟିବା ଆଦର୍ଶ ପ୍ରତି ଅଥବା ଅତୀତର ସ୍ମୃତି ରୋମନ୍ଥନ କରିବା ପାଇଁ ସେତେ ଯେପରି କାହାର ଉତ୍ସାହ ନାହିଁ ।

୧୯୮୦ ମସିହାଠାରୁ ସ୍ୱରାଜ୍ୟ ଆଶ୍ରମରେ ଆଉ ଉତ୍କଳ ପ୍ରଦେଶର ପ୍ରାଦେଶିକ କଂଗ୍ରେସ ଅଫିସ କିମ୍ବା କଟକ ଜିଲ୍ଲା କଂଗ୍ରେସ ଅଫିସ କାର୍ଯ୍ୟକରୁ ନାହିଁ । ୧୯୬୯ ମସିହାରେ କଂଗ୍ରେସ ଜାତୀୟ ସ୍ତରରେ ବିଭାଜନହେବା ପରେ ଦଳୀୟ ଭିନ୍ନମତ ଯୋଗୁଁ ସ୍ୱରାଜ୍ୟ ଆଶ୍ରମରେ ଜାତୀୟ କଂଗ୍ରେସର କାର୍ଯ୍ୟାଳୟ ବିବଦମାନ ହୋଇ ପଡ଼ିଥିଲା ।

କିନ୍ତୁ ୧୯୨୧ ମସିହାଠାରୁ ୧୯୬୯ ମସିହା ପର୍ଯ୍ୟନ୍ତ ସ୍ୱରାଜ୍ୟାଶ୍ରମରେ ଉତ୍କଳ ପ୍ରାଦେଶିକ କଂଗ୍ରେସର କାର୍ଯ୍ୟାଳୟ ଓ କଟକଜିଲ୍ଲା କଂଗ୍ରେସ କମିଟିର କାର୍ଯ୍ୟାଳୟ ରହିଥିଲା ଏବଂ ସ୍ୱରାଜ୍ୟ ଆଶ୍ରମ ହତା କଂଗ୍ରେସ କର୍ମୀ ଓ ନେତାମାନଙ୍କ ଆତଯାତ, ଚଳପ୍ରଚଳନରେ କର୍ମମୁଖର ରହୁଥିଲା । ସମଗ୍ର ପ୍ରଦେଶର କଂଗ୍ରେସ କର୍ମୀ ଓ ନେତାମାନେ ଚଳିତ ଶତାବ୍ଦୀର ସପ୍ତଦଶନ୍ଧି ପର୍ଯ୍ୟନ୍ତ ସ୍ୱରାଜ ଆଶ୍ରମର ମାୟାକୁ ଭୁଲାଇ ପାରିନଥିଲେ ।

ଜାତୀୟ ସ୍ତରରେ କଂଗ୍ରେସ ବିଭାଜନ ହେବାପରେ ଜାତୀୟ କଂଗ୍ରେସ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ ହେଲା, ଶାସକ କଂଗ୍ରେସ ଓ ସଙ୍ଗଠନ କଂଗ୍ରେସ ନାମରେ । ସ୍ୱରାଜ୍ୟ ଆଶ୍ରମରେ ସଂଗଠନ କଂଗ୍ରେସକୁ ସମର୍ଥନ କରୁଥିବା କଂଗ୍ରେସଲୋକମାନେ କିଛିକାଳ କାର୍ଯ୍ୟାଳୟ ରଖିଥିଲେ । ସଙ୍ଗଠନ କଂଗ୍ରେସରୁ କେତେକ ଭିନ୍ନ ଗୋଷ୍ଠୀ ଗଢ଼ି ସପ୍ତଦଶକରେ ପ୍ରତିଷ୍ଠା କରାଯାଇଥିବା ପ୍ରାଦେଶିକ ଉତ୍କଳ କଂଗ୍ରେସର କାର୍ଯ୍ୟାଳୟ ମଧ୍ୟ ସ୍ୱରାଜ୍ୟ ଆଶ୍ରମରେ କିଛିଦିନ ରହିଥିଲା । ପୁନର୍ବାର ସଙ୍ଗଠନ କଂଗ୍ରେସର କାର୍ଯ୍ୟାଳୟ ୧୯୮୦ ପାଖାପାଖି ପର୍ଯ୍ୟନ୍ତ ସ୍ୱରାଜ୍ୟ ଆଶ୍ରମରେ ରହିଥିଲା । ସ୍ୱରାଜ୍ୟ ଆଶ୍ରମକୁ ଅକ୍ତିଆର କରିବାପାଇଁ ଅନ୍ୟ ଗୋଷ୍ଠୀମାନେ ମଧ୍ୟ ଉଦ୍ୟମ ଅବ୍ୟାହତ ରଖିଥିଲେ ।

ସ୍ୱରାଜ୍ୟ ଆଶ୍ରମର ପ୍ରକୃତ କିଏ କାର୍ଯ୍ୟ ଉତ୍ତରାଧିକାରୀ, ଏଥିପାଇଁ ମଧ୍ୟ ଅନେକ ବିବଦମାନ ପରିସ୍ଥିତି ସୃଷ୍ଟି ହୋଇ ତାହା ଅବଲୀଳାକ୍ରମେ ସ୍ତିମିତ ହୋଇ ଯାଇଛି । ସପ୍ତଦଶକ ବେଳକୁ ଓଡ଼ିଶା ପ୍ରଦେଶ କଂଗ୍ରେସ (ଇ) ର ପ୍ରାଦେଶିକ କାର୍ଯ୍ୟାଳୟ ଭୁବନେଶ୍ୱର ରେଳଷ୍ଟେସନ ନିକଟରେ ନିର୍ମିତ ହୁଏ ।

ସେ ସମୟରେ କିଛିଦିନ ପର୍ଯ୍ୟନ୍ତ କଟକ ଜିଲ୍ଲା କଂଗ୍ରେସ କମିଟି ସହିତ ସଂପୃକ୍ତ କର୍ମକର୍ତ୍ତା ସ୍ୱରାଜ୍ୟ ଆଶ୍ରମରେ ମଧ୍ୟ ଅବସ୍ଥାନ କରୁଥିବାର ନଜିର ଅଛି । ୧୯୭୪ ମସିହାଠାରୁ ୧୯୭୭ ମସିହା ମଧ୍ୟରେ ପୁନର୍ବାର ସ୍ୱରାଜ୍ୟ ଆଶ୍ରମ କଂଗ୍ରେସ ନେତା ଓ କର୍ମୀମାନଙ୍କ ସମାଗମରେ କର୍ମମୁଖର ହୋଇ ଉଠିଥିଲା । କିନ୍ତୁ ଏହି ସମାଗମ ଓ କର୍ମପ୍ରବଣଭାବ ବେଶିଦିନ ସ୍ଥାୟୀ ହୋଇ ପାରିନଥିଲା । ୧୯୮୦ ମସିହା ଠାରୁ ୧୯୯୦ ମସିହା ମଧ୍ୟରେ ସ୍ୱରାଜ୍ୟ ଆଶ୍ରମରେ ଜାତୀୟ କଂଗ୍ରେସର କୌଣସି ଗୋଷ୍ଠୀର ବିଧିବଦ୍ଧ କାର୍ଯ୍ୟାଳୟ ସ୍ୱରାଜ୍ୟ ଆଶ୍ରମରେ ନଥିଲା । ଅଥଚ ବେଳେବେଳେ କାଁ ଭାଁ କଂଗ୍ରେସ

କାର୍ଯ୍ୟକ୍ରମ ସ୍ୱରାଜ୍ୟ ଆଶ୍ରମରେ ସେ ସମୟରେ ଅନୁଷ୍ଠିତ ହେଉଥିବାର ପ୍ରଥମ ନଜର ରହିଛି । ୧୯୮୦ ମସିହା ବେଳକୁ ଜାତୀୟ କଂଗ୍ରେସର ପ୍ରାଦେଶିକ କାର୍ଯ୍ୟାଳୟ ଭୁବନେଶ୍ୱରଠାରେ ଅବସ୍ଥିତ ହୋଇ ସାରିଥିଲା ଏବଂ କଟକ ଜିଲ୍ଲା କଂଗ୍ରେସ କମିଟିର କାର୍ଯ୍ୟାଳୟ ସ୍ୱରାଜ୍ୟ ଆଶ୍ରମରେ ନଥାଇ ସହରର ଅନ୍ୟ ବାହାର ସ୍ଥାନରେ କାର୍ଯ୍ୟକାରୀ ହେଉଥିଲା ଏହି ସମୟ ମଧ୍ୟରେ ଓଡ଼ିଶାରେ ସଙ୍ଗଠନ କଂଗ୍ରେସ କିଛି କାଳପୂର୍ବରୁ ପ୍ରାୟ ତାର ସତ୍ତା ହରାଇ ନେଇ ଜାତୀୟ କଂଗ୍ରେସ ଓ ଅନ୍ୟାନ୍ୟ ପ୍ରାଦେଶିକ ରାଜନୈତିକ ଦଳରେ ଲୀନ ହୋଇ ଯାଇଥିଲା । ଫଳତଃ ୧୯୮୦ ମସିହାଠାରୁ ଏ ଯାବତ୍ ସ୍ୱରାଜ ଆଶ୍ରମରେ ଆଉ କଂଗ୍ରେସ କାର୍ଯ୍ୟାଳୟ କାର୍ଯ୍ୟକରୁ ନାହିଁ ।

ସ୍ୱରାଜ୍ୟ ଆଶ୍ରମରେ ପୂର୍ବରୁ ଏକ ମର୍ଯ୍ୟାଦାପନ୍ନ ପାଠାଗାର ଥିଲା । ସେଇ ପାଠାଗାର ଏବେ ମଧ୍ୟ ନାମକୁ ମାତ୍ର ରହିଛି । ପାଠାଗାର ବହୁଦିନ ହେଲା ବନ୍ଦ ରହିଛି । ପାଠାଗାର ଆଲମିରାରେ ଆଉ ମୂଲ୍ୟବାନ ପୁସ୍ତକମାନ ନାହିଁ । ଭିନ୍ନ ସମୟରେ ସେହି ମୂଲ୍ୟବାନ ପୁସ୍ତକଗୁଡ଼ିକ ଲାଇବ୍ରେରୀ ମଧ୍ୟରୁ ହରଣଚାଳ ହୋଇ ଯାଇଛି । ଅର୍ଦ୍ଧ ବର୍ଷ ବର୍ଷ ଧରି ବନ୍ଦ ହୋଇ ପଡ଼ିଥିବା ଏହି ପୁସ୍ତକାଗାର ଆଜି ମୁମୂର୍ଷ ଅବସ୍ଥାରେ । ଜିଲ୍ଲା କଂଗ୍ରେସ କାର୍ଯ୍ୟାଳୟ ସ୍ୱରାଜ ଆଶ୍ରମରେ ଥିବା ସମୟରେ ଅନେକ ସମୟରେ କଂଗ୍ରେସ କର୍ମୀ ସମ୍ମିଳନୀ ପୁସ୍ତକାଗାର ହଲରେ ଅନୁଷ୍ଠିତ ହୋଇ ଆସୁଥିଲା । ଷଷ୍ଠଦଶକ ଓ ସପ୍ତମ ଦଶକର ପୂର୍ବଭାଗରେ ପ୍ରାଦେଶିକ କଂଗ୍ରେସର କର୍ମୀ ସମ୍ମିଳନୀ ଓ କାର୍ଯ୍ୟକାରୀ କମିଟି ବୈଠକମାନ ମଧ୍ୟ ପୁସ୍ତକାଗାରର ପ୍ରଶସ୍ତ ପ୍ରକୋଷ୍ଠରେ ଅନୁଷ୍ଠିତ ହୋଇଛି ।

ସ୍ୱରାଜ ଆଶ୍ରମରେ ଥିବା ବହୁ ଆସବାବ ଦ୍ରବ୍ୟ ମଧ୍ୟ ଘଟଣାଚକ୍ରରେ ଅବଲୁପ୍ତ ହୋଇଯାଇଛି । ସ୍ୱାଧୀନତା ସଂଗ୍ରାମୀମାନଙ୍କ ଭୋଜନ ପ୍ରସ୍ତୁତି ପାଇଁ ସେ ସମୟରେ ଟଙ୍କା କରଜ କରିପାଇ ଆମର ପୂର୍ବସୂରିମାନେ ଖର୍ଚ୍ଚ କରିଥିବା ତିନୋଟି ବଡ଼ ପିତଳ ହଣ୍ଡା ଏବଂ ଦୁଇଟି ବଡ଼ ଲୁହା କରେଇ ଆଉ ନାହିଁ । ସ୍ୱରାଜ୍ୟ ଆଶ୍ରମର ଏହି ସବୁ ଆସବାବ ଦ୍ରବ୍ୟ ଏବଂ ହଣ୍ଡା, କରେଇ ପ୍ରଭୃତି ଯାହାକି ଜାତୀୟ ଆନ୍ଦୋଳନର ସ୍ମାରକୀ, ତାହାକୁ ଉଦ୍ଧାର କରିବା ପାଇଁ ସ୍ୱର୍ଗତ ଡକ୍ଟର ହରେକୃଷ୍ଣ ମହତାବଙ୍କ ସମେତ କେତେକ ତତ୍କାଳୀନ କଂଗ୍ରେସ କର୍ମକର୍ତ୍ତା ଉଦ୍ୟମ କରିଥିଲେ ମଧ୍ୟ ତାହା ବିଫଳ ହୋଇଯାଇଛି । କଂଗ୍ରେସ ମଧ୍ୟରେ ଥିବା ଗୋଷ୍ଠୀ ବିବାଦ ଓ କଂଗ୍ରେସର ବିଭାଜନ ଆଳ ନେଇ ସ୍ୱାର୍ଥାନ୍ୱେଷୀମାନେ ଆଉ ସେଇ ଦ୍ରବ୍ୟ ସ୍ୱରାଜ ଆଶ୍ରମକୁ ଫେରାଉ ନାହାଁନ୍ତି । ଆଜିର କଂଗ୍ରେସ ମହଲରେ ମଧ୍ୟ ସେଥିପ୍ରତି କାହାର ନଜର ନାହିଁ ।

ସ୍ୱେଚ୍ଛାସର୍ବସ୍ୱ ଗଣତନ୍ତ୍ର ବ୍ୟକ୍ତି ସର୍ବସ୍ୱ ରାଜନୀତିର ପେଷଣରେ ସ୍ୱରାଜ୍ୟ ଆଶ୍ରମ ଆଜି ଉଡ଼ିଯାଉଥିବା କର୍ପୂରହୀନ କନାରେ ମଳିନ ହୋଇଯାଇଛି । ଯାହା କେତେକ ବର୍ଷ ତଳେ ସୁନ୍ଦର ସଜଳ ଥିଲା, ତାହା ଆଜି ଇତିହାସର ପୃଷ୍ଠାରେ କେଉଁଠି କେଉଁଠି ଲିପିବଦ୍ଧ ହୋଇପାରିଥାଏ ।

"ସେତେବେଳକୁ କଂଗ୍ରେସ ଅଫିସ ଥାଏ କଟକରେ ସାହେବଜାଦା ବଜାରରେ- ସ୍ୱରାଜ୍ୟାଶ୍ରମ । ଆଗେ ଘରଟି ଥିଲା କଟକ ଜିଲ୍ଲା ଘଣ୍ଟିଆଡ଼ୋର—ଦିବାକର ଦାସଙ୍କର । କାଳକ୍ରମେ ସେଇ ଘରେ ପୂଜ୍ୟ ଗୋପବାବୁଙ୍କ ବାପା ସପରିବାର ରହୁଥିଲେ ଓ ଗୋପବାବୁ ସେ ଘରେ ଜନ୍ମ ହୋଇଥିଲେ । ପରେ ସେ ଘରେ ଅଧ୍ୟାପକ ଯୋଗେଶ ଚନ୍ଦ୍ର ଗୁପ୍ତ ବିଦ୍ୟାନିଧି ରହୁଥିଲେ । ସେ ଗଲାପରେ ସେଠି ସାକ୍ଷୀଗୋପାଳର କେତେ- ଜଣ ଥିଲେ । ଉତ୍କଳମଣି କଟକ ଆସିଲେ ସେଠି ବସା କରନ୍ତି । ତା'ପରେ ସେ ହେଲା "ସ୍ୱରାଜ୍ୟାଶ୍ରମ" । ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନର କର୍ମକ୍ଷେତ୍ର । ଗୋପବାବୁ ତା ୮ । ୫ । ୧୮୯୫ରେ ସ୍ୱରାଜ୍ୟାଶ୍ରମ କୋଠାର ତଳ ମହଲାର ତିନି ବଖରା ଭିତରୁ ମଝି ବଖରାରେ ଭୂମିଷ୍ଠ ହୋଇଥିଲେ । ('ଧୂଳି ମାଟିର ସନ୍ଥ, ପୃଷ୍ଠା ୪୮—ଗୋପୀନାଥ ମହାନ୍ତି; ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ପ୍ରଖ୍ୟାତ ଔପନ୍ୟାସିକ) ।

ପ୍ରଖ୍ୟାତ ଔପନ୍ୟାସିକ ସ୍ୱର୍ଗତ ଗୋପୀନାଥ ମହାନ୍ତି "ଧୂଳି ମାଟିର ସନ୍ଥ" ପୁସ୍ତକଟିରେ ସେ କାଳର ମହାନ୍ ସ୍ୱାଧୀନତା ସଂଗ୍ରାମୀ ବିଶିଷ୍ଟ ଗାନ୍ଧିବାଦୀ ନେତା ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀଙ୍କ ଜୀବନ ଇତିହାସ ଓ ତାଙ୍କର ସ୍ୱାଧୀନତା ସଂଗ୍ରାମର କାର୍ଯ୍ୟାବଳୀ ସମ୍ପର୍କରେ ଉଲ୍ଲେଖ କଲାବେଳେ, ସ୍ୱରାଜ୍ୟ ଆଶ୍ରମର ସେହି ପୁରାତନ କୋଠାର ତଳମହଲା ଘରେ ଜନ୍ମ ହୋଇଥିଲେ ବୋଲି ଲେଖିଛନ୍ତି । ଏଣୁ ଉକ୍ତ କୋଠାଟି ସ୍ୱରାଜ୍ୟ ଆଶ୍ରମର ମୁଖ୍ୟ କାର୍ଯ୍ୟାଳୟ ହେବା ପୂର୍ବରୁ ସେ ଘରେ ତତ୍କାଳୀନ ବିଖ୍ୟାତ ଆଇନଜୀବୀ ଗୋପବନ୍ଧୁ ଚୌଧୁରୀଙ୍କ ପିତା ସ୍ୱର୍ଗତ ଗୋକୁଳାନନ୍ଦ ଚୌଧୁରୀ ଅବସ୍ଥାନ କରୁଥିଲେ ।

ଗୋକୁଳାନନ୍ଦ ଚୌଧୁରୀ କାଠଯୋଡ଼ି କୂଳରେ ସେଇ ସାହେବଜାଦା ବଜାର ନିକଟରେ ତାଙ୍କର ନୂତନ କୋଠା ନିର୍ମାଣ କଲାପରେ ସ୍ୱରାଜ୍ୟ ଆଶ୍ରମ ନାମରେ ଭବିଷ୍ୟତରେ ନିର୍ମିତ ହୋଇଥିବା କୋଠାଟିରେ ସାମୟିକଭାବେ ଅଧ୍ୟାପକ ଯୋଗେଶ ଚନ୍ଦ୍ର ଗୁପ୍ତ ବିଦ୍ୟାନିଧି ରହୁଥିଲେ । ତାଙ୍କ ପରେ ସାକ୍ଷୀଗୋପାଳର କେତେକ ସତ୍ୟବାଦୀ ଜାତୀୟ ବନ ବିଦ୍ୟାଳୟର ପ୍ରାକ୍ତନ ଛାତ୍ରଙ୍କ ଗହଣରେ ବେଳେ ବେଳେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ମଧ୍ୟ ସେଇ କୋଠାରେ ରହୁଥିବା ଜଣାଯାଇଛି ।

୧୯୨୧ ମସିହା ବେଳକୁ ମହାତ୍ମା ଗାନ୍ଧିଙ୍କ ନେତୃତ୍ୱରେ କଂଗ୍ରେସ ମାଧ୍ୟମରେ ଜାତୀୟ ସ୍ୱାଧୀନତା ଆନ୍ଦୋଳନ ବହୁଗୁଣିତ ସକ୍ରିୟ ହୋଇଉଠେ । ଦେଶର ସବୁ ପ୍ରାନ୍ତରେ ବିଧିବଦ୍ଧ ଭାବରେ ଜାତୀୟ ମୁକ୍ତି ଆନ୍ଦୋଳନ ପାଇଁ କ୍ଷେତ୍ର ପ୍ରସ୍ତୁତ ହୁଏ । ଦେଶର ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ କଂଗ୍ରେସ କାର୍ଯ୍ୟାଳୟମାନ ସ୍ଥାପନ ହୁଏ । ଯେଉଁ ସ୍ଥାନମାନଙ୍କରୁ ସ୍ୱାଧୀନତା ଆନ୍ଦୋଳନର କାର୍ଯ୍ୟକ୍ରମ ପ୍ରସ୍ତୁତ, ପ୍ରଚାରିତ, ଆନ୍ଦୋଳନ ପାଇଁ ସଦସ୍ୟବର୍ଗ ଗ୍ରହଣ ଚାଲିଥାଏ, ତାହା ମନକୁ ମନ ଜାତୀୟ ତୀର୍ଥ କ୍ଷେତ୍ରରେ ପରିଣତ ହୋଇ ଯାଉଥାଏ ।

ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନକୁ ଚଳାଇ ରଖିଥିବା ଅଗ୍ରଣୀ ନେତାମାନେ କଟକ ସହରକୁ ପ୍ରାନ୍ତୀୟ ଆନ୍ଦୋଳନର କେନ୍ଦ୍ରସ୍ଥଳ ସ୍ୱୀକାର କରିଥିଲେ । ସେଥିପାଇଁ ଥିଲ ସ୍ଥାନ ଓ ଗୃହର ଆବଶ୍ୟକତା । ମହାତ୍ମା ଗାନ୍ଧିଙ୍କ ପରାମର୍ଶ ଓ ପ୍ରେରଣାରେ ଉତ୍କଳମଣି ଗୋପବନ୍ଧୁ କଂଗ୍ରେସର ବାର୍ତ୍ତା ସର୍ବପ୍ରଥମେ ଓଡ଼ିଶାରେ ପହଞ୍ଚାଇଥିଲେ ।

ଉତ୍କଳମଣିଙ୍କ ନେତୃତ୍ୱରେ ଓଡ଼ିଶାର ପ୍ରାଦେଶିକ କଂଗ୍ରେସ କମିଟି ଗଠନ କରାଗଲା । ୧୯୨୦ ମସିହାଠାରୁ ୧୯୨୮ ମସିହା ପର୍ଯ୍ୟନ୍ତ ଗୋପବନ୍ଧୁ ଥିଲେ ଉତ୍କଳ ପ୍ରଦେଶ କଂଗ୍ରେସ୍ ସଭାପତି ।

୧୯୨୧ ମସିହାର ପୂର୍ବଭାଗରେ ଓଡ଼ିଶା ପ୍ରଦେଶ କଂଗ୍ରେସରେ ଉତ୍କଳମଣିଙ୍କ ନେତୃତ୍ୱରେ ଏକାମରସୁଲ, ଉପସଭାପତି, ସ୍ୱର୍ଗତ ଭଗୀରଥି ମହାପାତ୍ର, ସାଧାରଣ ସମ୍ପାଦକ ଏବଂ ସ୍ୱର୍ଗତ ବ୍ରଜବନ୍ଧୁ ଦାସ ଥିଲେ ଯୁଗ୍ମ ସମ୍ପାଦକ । ଏହା ବ୍ୟତୀତ ଉକ୍ତ କମିଟିରେ ପାଞ୍ଚଜଣ କାର୍ଯ୍ୟକାରୀ କମିଟି ସଦସ୍ୟ ରହିଥିଲେ । ଏହି କମିଟି ତତ୍କାଳୀନ ବିହାର ଓଡ଼ିଶା ପ୍ରଦେଶର କଟକ, ବାଲେଶ୍ୱର, ପୁରୀ, ସମ୍ବଲପୁର ଏବଂ ସିଂହଭୂମି ଜିଲ୍ଲାକୁ ନିଜ ସଂଗଠନର ପରିସରଭୁକ୍ତ କରି କାର୍ଯ୍ୟ କରୁଥିଲା ।

ସେ ସମୟରେ ସ୍ଥାୟୀ ଭାବରେ କେଉଁଠାରେ ସ୍ୱରାଜ୍ୟ ଆଶ୍ରମ ଭଳି କଂଗ୍ରେସ କାର୍ଯ୍ୟାଳୟ ନ ଥିଲା । ଗୋପବନ୍ଧୁଙ୍କ ସମୟରେ କେବେକେବେ ପୁରୀଠାରୁ ଆଉ ଅନ୍ୟ କେତେବେଳେ ଅନ୍ୟ ସ୍ଥାନରୁ କଂଗ୍ରେସର କାର୍ଯ୍ୟକ୍ରମ ଚାଲୁଥିଲା । ନେତାଜୀ ସୁଭାଷ ଚନ୍ଦ୍ର ବୋଷ ୧୯୩୦ ମସିହାରେ ନିଖିଳ ଭାରତ କଂଗ୍ରେସ କମିଟିର ସଭାପତି ଥିବାବେଳେ ତାଙ୍କର ଓଡ଼ିଆ ବଜାରରେ ଥିବା ପୈତୃକ ବାସଭବନ "ଜାନକୀନାଥ ଭବନ"ରୁ ମଧ୍ୟ ସମୟ ସମୟରେ କଂଗ୍ରେସ କାର୍ଯ୍ୟକ୍ରମ ନିର୍ଦ୍ଧାରିତ ହୋଇଛି ।

"ଏହିପରି ଅବସ୍ଥାରେ ମଧ୍ୟ ମୁଁ ପୁରୀ ସମୟ ଦେଇ କଂଗ୍ରେସ କାର୍ଯ୍ୟ କରୁଥାଏ । ଏହି ଅବସ୍ଥାରେ କଟକର ଯେଉଁ ଘର ଓ ହତା ୧୯୨୧ ମସିହାଠାରୁ 'ସ୍ୱରାଜ୍ୟାଶ୍ରମ' ହୋଇ ଆସିଛି ଓ ଯାହାକୁ ଦଖଲ କରିବା ପାଇଁ ସତ୍ୟାଗ୍ରହୀମାନେ ନିଜର ରକ୍ତ ଦାନ କରିଛନ୍ତି, ତାକୁ କିଣି ନେବାର ଚେଷ୍ଟା କଲି । ୧୧,୦୦୦ (ଏଗାର ହଜାର) ଟଙ୍କା ସେଥିପାଇଁ ଦରକାର ଥିଲା । ସେଥିରୁ ୭୦୦୦ ସାତହଜାର) ଟଙ୍କା ଚାନ୍ଦା ଉଠାଇ ଆଉ-ପାରୁ ନଥାଏ । ନିତ୍ୟାନନ୍ଦ କାନୁନ୍‌ଗୋ ୨,୦୦୦ (ଦୁଇହଜାର) ଟଙ୍କା ଦାନକଲେ ଓ ବାକିତକ ଶ୍ରୀ ଭଗୀରଥି ମହାପାତ୍ର ଓ ମୁଁ ନିଜ ଦାୟିତ୍ୱରେ ଧାରକରି ସେ ଘର କିଣିଲୁ । ଏବଂ ସେଥିରେ ମୋ' ନିଜର ରହିବା ପାଇଁ ଗୋଟିଏ ଅତିଥିଶାଳା ୨୫୦୦ (ଦୁଇହଜାର ପାଞ୍ଚଶହ) ବ୍ୟୟରେ ତିଆରିକରି ସମୁଦାୟକୁ ସାତଜଣ ପଞ୍ଚାୟତ ମାର୍ଫତରେ ରେଜେଷ୍ଟ୍ରି ଦଲିଲ ଅନୁସାରେ ଦିଆ ହୋଇଥିଲା । ଏହି ଆଶ୍ରମ ନିଜର ହେବାରେ—ମୁଁ ଅତି ସନ୍ତୋଷ ଲାଭ କରିଥିଲି । କଂଗ୍ରେସ ମହଲରେ ମଧ୍ୟ ଉତ୍ସାହ ଜାତ ହୋଇଥିଲା ।" "ସାଧନା ପଥେ (ପ୍ରଥମ ଖଣ୍ଡ ୧୮୯୯ରୁ ୧୯୫୦ ପୃଷ୍ଠା ୧୭୭ ।")

ଡଃ ହରେକୃଷ୍ଣ ମହତାବ

୧୯୨୧ ମସିହାଠାରୁ ସାହାବଜାଦା ବଜାରରେ ଥିବା କୋଠା ଘରଟି କାଳକ୍ରମେ ବିଭିନ୍ନ ବ୍ୟକ୍ତିଙ୍କ ଅଧିକାରରୁ ମୁକ୍ତ ହୋଇ ଉତ୍କଳ କଂଗ୍ରେସ କମିଟିର ନିଜସ୍ୱ ଭବନରେ ପରିଣତ ହେଲା । ଉକ୍ତ କୋଠାଟିର ମାଲିକ ଥିଲେ ସେତେବେଳେ ଶ୍ରୀଯୁକ୍ତ ମାଧବ ନଳିନୀକାନ୍ତ ଘୋଷ । ଚୁକ୍ତିବଦ୍ଧ ଭାବରେ ୧୯୩୭ ମସିହା ଡିସେମ୍ବର ୨୦ ତାରିଖରେ ୧୦,୬୫୦ ଟଙ୍କା ମୂଲ୍ୟରେ ନଳିନୀକାନ୍ତ ଘୋଷ କଂଗ୍ରେସ କାର୍ଯ୍ୟାଳୟ ପାଇଁ ଉକ୍ତ କୋଠାଟିକୁ ବିକ୍ରି କବଲା କରି ଦେଲେ । କୋଠାଟି ପ୍ରଦେଶ କମିଟି ପକ୍ଷରୁ ଟ୍ରଷ୍ଟି ଦାୟିତ୍ୱରେ ରହିଲା । ରେଜେଷ୍ଟ୍ରୀ ହେବାପରେ ଉକ୍ତ କୋଠାଟି "ଉତ୍କଳ ସ୍ୱରାଜଆଶ୍ରମ ଟ୍ରଷ୍ଟ"—ନାମରେ ନାମିତ ହେଲା ଏବଂ ଏହି କୋଠାଥିବା ପରିସର ଓ ହତା "ଉତ୍କଳ ସ୍ୱରାଜ୍ୟ ଆଶ୍ରମ" ନାମରେ ଖ୍ୟାତ ହେଲା ।

ସ୍ୱରାଜ ଆଶ୍ରମ ଟ୍ରଷ୍ଟ ଦଲିଲରେ ସ୍ୱରାଜ ଆଶ୍ରମ କୋଠା ଓ ହତା ମଧ୍ୟରେ କଟକ ଜିଲ୍ଲା କଂଗ୍ରେସ କାର୍ଯ୍ୟାଳୟ ସମେତ ପ୍ରାନ୍ତୀୟ ଓ ଜାତୀୟ ସ୍ତରରେ କଂଗ୍ରେସ କାର୍ଯ୍ୟକ୍ରମମାନ ନିରନ୍ତରୀୟମ ଅନୁଯାୟୀ ସମାହିତ କରାଯିବା ପାଇଁ ବ୍ୟବସ୍ଥା ମାନ ରହିଛି । ଦଲିଲରେ ଉଲ୍ଲିଖିତ ବ୍ୟବସ୍ଥା ଅନୁସାରେ ସ୍ୱରାଜ ଆଶ୍ରମରେ କଂଗ୍ରେସ ସମ୍ପର୍କିତ ସମସ୍ତ କାର୍ଯ୍ୟାବଳୀ ହେବା ସହିତ, ପୁସ୍ତକାଗାର, ଖଦି ଉତ୍ପାଦନ, ଖଦି ଲୁଗା ମହଜୁତ, ଏବଂ ଅନ୍ୟାନ୍ୟ ଗ୍ରାମଶିଳ୍ପ ସାମଗ୍ରୀ ଉତ୍ପାଦନ ପାଇଁ ମଧ୍ୟ ପ୍ରୋତ୍ସାହନ କରାଯିବା ପାଇଁ କୁହାଯାଇଛି । ଜାତୀୟ – ରାଜନୈତିକ—ସାମାଜିକ ସ୍ତରରେ ପ୍ରଗତିମୂଳକ କାର୍ଯ୍ୟକ୍ରମ ଉଦ୍ଦେଶ୍ୟରେ ସଭାସମିତି, ଆଲୋଚନାଚକ୍ରମାନ ଆୟୋଜନ କରାଯିବା ପାଇଁ ମଧ୍ୟ ଉକ୍ତ ଦଲିଲରେ ଉଲ୍ଲେଖ କରାଯାଇଛି । ଏହାଛଡ଼ା ସ୍ୱରାଜ ଆଶ୍ରମ କୋଠା ଓ ହତା ମଧ୍ୟରେ ସ୍ୱାଧୀନତା ସଂଗ୍ରାମୀ, କଂଗ୍ରେସ କର୍ମୀ, ପ୍ରଦେଶ ମଧ୍ୟରୁ ଓ ପ୍ରଦେଶ ବାହାରୁ ଆସୁଥିବା କଂଗ୍ରେସ ନେତାମାନେ ଅବସ୍ଥାନ କରିବେ ବୋଲି ମଧ୍ୟ ଦଲିଲରେ ବ୍ୟବସ୍ଥା ରହିଛି ।

ମୁଖ୍ୟତଃ ଦେଶଗଠନମୂଳକ ସମସ୍ତ କାର୍ଯ୍ୟକ୍ରମ ସ୍ୱରାଜ ଆଶ୍ରମରେ କରାଯିବା ଉଦ୍ଦେଶ୍ୟରେ ସ୍ୱରାଜ ଆଶ୍ରମ ଉଦ୍ଦିଷ୍ଟ । ସ୍ୱରାଜ ଆଶ୍ରମ ହତାମଧ୍ୟରେ ନିଜ ବ୍ୟକ୍ତିଗତ ବ୍ୟୟରେ ଉତ୍କଳ ମହତାବ ନିର୍ମାଣ କରିଥିବା ଗୃହରେ ସେ ବସବାସ କରିପାରିବେ ବୋଲି ଦଲିଲରେ ଉଲ୍ଲେଖ କରାଯାଇଛି । ସେ ସମୟରେ ଡକ୍ଟର ମହତାବଙ୍କର କଟକ ସହରରେ ସ୍ୱଗୃହ ନ ଥିବାରୁ ସେ ସ୍ୱରାଜ ଆଶ୍ରମରେ ନିର୍ମାଣ କରୁଥିବା ଗୃହରେ ମଧ୍ୟବର୍ତ୍ତୀକାଳୀନ ସରକାରରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ସ୍ୱାଧୀନତା ପରେ ପ୍ରଥମ ମୁଖ୍ୟମନ୍ତ୍ରୀ ହେବା ପୂର୍ବରୁ ସ୍ୱରାଜ ଆଶ୍ରମରେ ଅବସ୍ଥାନ କରୁଥିଲେ ।

୧୯୨୧ ମସିହାଠାରୁ ୧୯୩୪ ମସିହା ମଧ୍ୟରେ ସ୍ୱାଧୀନତା ଆନ୍ଦୋଳନର ପ୍ରାକ୍କାଳରେ ଥିବା ଜାତିର ଜନକ ମହାତ୍ମାଗାନ୍ଧି ପାଞ୍ଚଥର ଓଡ଼ିଶା ପରିଦର୍ଶନ କରିଥିଲେ । କାଠଯୋଡ଼ି ବାଲିରେ ମହାତ୍ମା ଗାନ୍ଧିଙ୍କ ସଭା ଅନୁଷ୍ଠିତ ହୋଇଥିଲା । ସେହି ସଭାରେ ସେ ଛାତ୍ରମାନଙ୍କୁ ପରାଧୀନ ଭାରତରେ ସେମାନଙ୍କ କର୍ତ୍ତବ୍ୟ ସମ୍ପର୍କରେ

ମୂଲ୍ୟବାନ ପରାମର୍ଶ ସବୁ ଦେଇଛନ୍ତି । କଟକର ବିନୋଦବିହାରୀଠାରେ ମହିଳାମାନଙ୍କ ସଭାରେ ମଧ୍ୟ ଗାନ୍ଧିଜୀ ଉଦ୍‌ବୋଧନ ଦେଇଛନ୍ତି । ମହାତ୍ମାଙ୍କ ପ୍ରାଥମିକ ଓଡ଼ିଶା ପରିଦର୍ଶନ ମଧ୍ୟରେ ସେ ୧୯୨୧ ମସିହା ମାର୍ଚ୍ଚ ମାସ ୨୩ ତାରିଖରେ ସ୍ୱରାଜ୍ୟ ଆଶ୍ରମରେ ଅବସ୍ଥାନ କରିଛନ୍ତି । ସ୍ୱରାଜ୍ୟ ଆଶ୍ରମ ମୂଳକୋଠାର ଉପର ମହଲ ପ୍ରକୋଷ୍ଠରେ ତାଙ୍କ ସ୍ମୃତି ଏବେ ମଧ୍ୟ ରହିଛି ।

ମହାତ୍ମାଗାନ୍ଧି ୧୯୨୫ ମସିହାରେ ଓଡ଼ିଶା ଗସ୍ତରେ ଆସିଥିବା ବେଳେ ଅଗଷ୍ଟ ମାସ ୧୯ ତାରିଖରେ କଟକ ଟାଉନ ହଲରେ ଅନୁଷ୍ଠିତ ସଭାରେ ଉଦ୍‌ବୋଧନ ଦେଇଥିଲେ । ସେହିମାସ ୨୦ ତାରିଖରେ ସ୍ୱରାଜ୍ୟ ଆଶ୍ରମରେ ଅବସ୍ଥାନ କରିଥିଲେ । ୧୯୨୭ ମସିହା ଡିସେମ୍ବର ମାସ ୩ ତାରିଖରେ ମହାତ୍ମା ଓଡ଼ିଶା ଗସ୍ତରେ ଆସି ଗଞ୍ଜାମ ଓ ପୁରୀ ଜିଲ୍ଲାର ବିଭିନ୍ନ ସ୍ଥାନରେ ସଭା କରିବା ପରେ ୧୮ ତାରିଖରେ କଟକର ସ୍ୱରାଜ୍ୟ ଆଶ୍ରମରେ ବିଶ୍ରାମ ନେଇଥିଲେ । ୧୯୨୮ ମସିହାରେ ମହାତ୍ମା ଓଡ଼ିଶାକୁ ଚତୁର୍ଥଥର ପାଇଁ ଗସ୍ତରେ ଆସି ସମ୍ବଲପୁରଠାରେ ସଭା କରି ଫେରିଥିଲେ । ପଞ୍ଚମଥର ଓଡ଼ିଶା ପରିଦର୍ଶନ କାଳରେ ମହାତ୍ମା ସମ୍ବଲପୁର, ପୁରୀ ଓ କଟକ ଜିଲ୍ଲାର ବିଭିନ୍ନ ସ୍ଥାନରେ ସଭା କରିଥିଲେ । ମହାତ୍ମାଗାନ୍ଧି ମେ ମାସ ୫ ତାରିଖରେ ଓଡ଼ିଶା ଗସ୍ତରେ ଆସି ସେହି ମାସ ୧୭ ତାରିଖରେ ସଭାରେ ଉଦ୍‌ବୋଧନ ଦେଇ ୧୯୩୪ ମସିହା ୧୫ ତାରିଖରେ ବେଲେଙ୍ଗାପେଣ୍ଠରେ ପଦଯାତ୍ରାବେଳେ ସଭା କରି, ପଥ ମଧ୍ୟରେ ଅନେକ ସ୍ଥାନରେ ଜନସାଧାରଣଙ୍କୁ ଉଦ୍‌ବୋଧନ ଦେଇଥିଲେ ।

୧୯୩୮ ମସିହା ମାର୍ଚ୍ଚ ୨୫ ତାରିଖରେ ମହାତ୍ମା ଓଡ଼ିଶା ଗସ୍ତରେ ଆସି ପୁରୀ ଜିଲ୍ଲା ଡେଲଙ୍ଗର ବେରବୋଇଠାରେ ସଭା କରି ଫେରିଥିଲେ । କଟକ ଆସି ନଥିଲେ । ମହାତ୍ମାଗାନ୍ଧିଙ୍କର ୧୯୨୧ ମସିହା ମାର୍ଚ୍ଚ ୨୩ ତାରିଖରେ ସର୍ବପ୍ରଥମ ଥର ପାଇଁ ଓଡ଼ିଶା ଗସ୍ତ କାର୍ଯ୍ୟକ୍ରମ ଓଡ଼ିଶାବାସୀଙ୍କ ମନରେ ଅପୂର୍ବ ଉତ୍ସାହ ଓ ଉଦ୍ଦୀପନା ସୃଷ୍ଟି କରିଥିଲା । ମହାତ୍ମା ତାଙ୍କର ଧର୍ମପତ୍ନୀ କସ୍ତୁରବା ଏବଂ ସର୍ବଜନପ୍ରିୟ ଶ୍ରୀଯୁକ୍ତ ଦେବଦାସଙ୍କ ସହିତ ରେଳଗାଡ଼ି ଯୋଗେ ଆସି କଟକ ଷ୍ଟେସନରେ ପ୍ରତ୍ୟୁଷରେ ପହଞ୍ଚିଥିଲେ । ତାଙ୍କୁ ଏକ ବିରାଟ ଶୋଭାଯାତ୍ରାରେ ସ୍ୱରାଜ୍ୟ ଆଶ୍ରମକୁ ନିଆଯାଇଥିଲା । ସେଦିନ ଥିଲା ଓଡ଼ିଶାରେ ପର୍ବଦିନ, ଦୋଳପୂର୍ଣ୍ଣିମା, ହୋଲି ଉତ୍ସବ । ଶୋଭାଯାତ୍ରାରେ ହଜାର ହଜାର ନରନାରୀ ଯୋଗ ଦେଇଥିଲେ ଏବଂ ଶୋଭାଯାତ୍ରାରେ ବାଉରୀ ଦଳ କୀର୍ତ୍ତନ ମଣ୍ଡଳୀ ଥିଲେ । ଝାଞ୍ଜ, ମୃଦଙ୍ଗ ଓ ଭକ୍ତି ସଙ୍ଗୀତର ସ୍ୱର ସହିତ, ମହାତ୍ମାଗାନ୍ଧିଙ୍କ ଜୟଧ୍ୱନିରେ ଷ୍ଟେସନ ବଜାରଠାରୁ ସାହେବଜାଦା ବଜାର ପର୍ଯ୍ୟନ୍ତ ପଥ ପ୍ରକମ୍ପିତ ହୋଇଥିଲା ।

ମହାତ୍ମାଗାନ୍ଧିଙ୍କୁ ସେହିବେଳର ଉତ୍କଳ କଂଗ୍ରେସର ସଭାପତି ଉତ୍କଳମଣି ଗୋପବନ୍ଧୁ ଦାସ ଜନସଭାରେ ପରିଚିତ କରାଇ ଅତୀତରେ ଏହି ପୁଣ୍ୟଭୂମିକୁ ବୁଦ୍ଧ, ଶଙ୍କର, ନାନକ, ରାମ ଦାସ ପ୍ରଭୃତି ମହାନ୍ ଧର୍ମଗୁରୁଙ୍କ ଆଗମନ ସମ୍ପର୍କରେ ସୂଚନା

ଦେଇ ମହାତ୍ମାଙ୍କ ବାଣୀ ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରିବାକୁ ଉଲ୍ଲେଖ କରିଥିଲେ । ମହାତ୍ମାଗାନ୍ଧି ସେତେବେଳେ ଭାରତର ସବୁଠାରୁ ଦରିଦ୍ର ପ୍ରଦେଶ ଅଥଚ ଧର୍ମପ୍ରାଣ ଓଡ଼ିଶାକୁ ଭଲ ପାଉଥିଲେ । ସଂଧ୍ୟାବେଳେ କଟକ ସହରର ବିନୋଦ-ବିହାରୀଠାରେ ଅନୁଷ୍ଠିତ ମହିଳାମାନଙ୍କ ସଭାରେ ମହାତ୍ମା ଉଦ୍‌ବୋଧନ ଦେବାବେଳେ ବହୁ ସଂଖ୍ୟାରେ ଦେଶପ୍ରାଣ ମହିଳା ସେମାନଙ୍କ ସ୍ୱର୍ଣ୍ଣଗହଣା ହରିଜନ ପାଣ୍ଠି ପାଇଁ ମହାତ୍ମା ଗାନ୍ଧିଙ୍କୁ ଦାନ କରିଥିଲେ । ମହାତ୍ମାଙ୍କ ସ୍ୱରାଜ ଆଶ୍ରମ ସଭା ଓ ବିନୋଦ-ବିହାରୀ ସଭାରେ ସହରର ହଜାର ହଜାର ନରନାରୀ ଯୋଗ ଦେଇଥିଲେ ଓ ମହାତ୍ମାଙ୍କୁ ଈଶ୍ୱରଙ୍କ ଅବତାର ରୂପେ ମାନସରେ ଗ୍ରହଣ କରୁଥିଲେ ।

ସ୍ୱରାଜ ଆଶ୍ରମର ପ୍ରକୋଷ୍ଠମାନଙ୍କରେ ଏବଂ ପରିସର ମଧ୍ୟରେ ଯେଉଁମାନେ ଅବସ୍ଥାନ କରୁଥିଲେ କିମ୍ବା ଯିଏ ସବୁ ବିଚରଣ କରୁଥିଲେ, ସେମାନେ ସମସ୍ତେ ଥିଲେ ସ୍ୱାଧୀନତା ସଂଗ୍ରାମୀ, ଦେଶପ୍ରେମୀ । ଜୀବନର ସମସ୍ତ ସୁଖସମ୍ଭୋଗକୁ ତ୍ୟାଗକରି ସେମାନେ ମାତୃଭୂମିର ମୁକ୍ତି ଚାହୁଁଥିଲେ । ସେହି ମାନନୀୟ ବ୍ୟକ୍ତିମାନଙ୍କ ମଧ୍ୟରୁ ସ୍ୱାଧୀନତା ଲାଭ ପରେ କେତେକ କ୍ଷମତା ରାଜନୀତିରେ ଦାୟିତ୍ୱ ବହନ କରି ନୂତନ ଓଡ଼ିଶାର ନିର୍ମାଣ କାର୍ଯ୍ୟରେ ଲାଗିଛନ୍ତି । ଆହୁରି ଅନେକ ସମ୍ମାନଜନକ ଭାବେ ଅନ୍ୟାନ୍ୟ କର୍ମକ୍ଷେତ୍ରରେ ମଧ୍ୟ ପ୍ରତିଷ୍ଠିତ ହୋଇଛନ୍ତି । ଆହୁରି କେତେକ ବାର୍ଦ୍ଧକ୍ୟର ଚରମ ପର୍ଯ୍ୟନ୍ତ ବିତାଉଛନ୍ତି । ଲଢ଼ିକରି ସ୍ୱାଧୀନତା ଆଣିଥିବା ପ୍ରିୟ ମାତୃଭୂମିର ସାମ୍ପ୍ରତିକ ପରିସ୍ଥିତିରେ ହତାଶ ହୋଇ ଉଠୁଛନ୍ତି ।

ବାନରସେନାକୁ ତାଲିମ ଦେଉଥିବା ଯୁବକ ନେତାମାନଙ୍କ ସହିତ ତାଲିମ ନେଇ ଲଢ଼େଇ କରୁଥିବା କିଶୋରଙ୍କ ପର୍ଯ୍ୟନ୍ତ ଅଧିକାଂଶ ସ୍ୱାଧୀନତା ସଂଗ୍ରାମୀ ଆର୍ଥିକ ପ୍ରାଚୁର୍ଯ୍ୟ ମଧ୍ୟରେ ନଥିଲେ ମଧ୍ୟ ନୈତିକ ମୂଲ୍ୟବୋଧର ଅନୁଭବରେ ଜାତି ନିକଟରେ ସମ୍ମାନନୀୟ ହେଉଛନ୍ତି ।

ସ୍ୱରାଜ୍ୟ ଆଶ୍ରମର ସଂଗ୍ରାମୀ ପରିସରରେ ଥିବା ସେତେବେଳର ଦେଶପ୍ରେମୀ ଯୋଦ୍ଧାମାନଙ୍କ ନାମ ଉଲ୍ଲେଖ କରିବା ପ୍ରୟୋଜନ ମନେକରେ । ସେହି ନମସ୍ୟ ସଂଗ୍ରାମୀ-ମାନଙ୍କ ମଧ୍ୟରେ ହେଉଛନ୍ତି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଭାଗୀରଥି ମହାପାତ୍ର, ସରଳାଦେବୀ, ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ମା'ରମାଦେବୀ, ଶ୍ରୀମତୀ ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନଗୋ, ପ୍ରାଣକୃଷ୍ଣ ପଢ଼ିହାରୀ, ସୁରେନ୍ଦ୍ରନାଥ ପଟ୍ଟନାୟକ, ବନମାଳୀ ପଟ୍ଟନାୟକ, ମାଗୁଣି ଚରଣ କାନୁନଗୋ, ଯଦୁମଣି ମଙ୍ଗରାଜ, ବିନୋଦଚନ୍ଦ୍ର କାନୁନଗୋ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ରାଧାନାଥ ରଥ, ବାଞ୍ଛାନିଧି ଦାଶ, ଗିରିକିଶୋର ଦାସ, ଅଦ୍ୱୈତ ବଲ୍ଲଭ ରାୟ, ନୃସିଂହ ଚରଣ ମହାନ୍ତି, ଗନ୍ଧର୍ବ ରାଜପୁତ, ପୁରୁଷୋତ୍ତମ ସିଂହ, ବିଶ୍ୱମ୍ଭର ପଣ୍ଡା, ସର୍ବ ପ୍ରଥମେ ସ୍ୱାଧୀନତାର ଆନ୍ଦୋଳନରେ ଜେଲ ବରଣ କରିଥିବା ରାଜକୃଷ୍ଣ ବୋଷ,

ସୁଧୀର ଚନ୍ଦ୍ର ଘୋଷ, ବଳରାମ ମହାନ୍ତି, ମନମୋହନ ଚୌଧୁରୀ, ଅନ୍ନପୂର୍ଣ୍ଣା ଚୌଧୁରୀ, ଗୌରିଶ୍ୟାମ ନାୟକ, ଶରତଚନ୍ଦ୍ର ମହାରଣା, ପ୍ୟାରୀଶଙ୍କର ରାୟ, ଶ୍ୟାମସୁନ୍ଦର ଖାଁ, ମାଳତୀ ମାଇଁ, ସୁରଜମଲ୍ଲ ସାହା, ଭୋଳାନାଥ ମହାନ୍ତି, ବୈକୁଣ୍ଠନାଥ ମହାନ୍ତି, ଭିକାରୀ ମାଣ୍ଡୁ, ଗୌରାଙ୍ଗ ଚରଣ ଦାସ, ଶଶୀବାଳା କାନୁନ୍‌ଗୋ, ବାସୁଦେବ କାନୁନ୍‌ଗୋ, ଶଙ୍କର ବେହେରା, ପ୍ରିୟନାଥ ଦେ, ଶତ୍ରୁଘ୍ନ ସାହୁ, ଆଗୃଦାସ ହରିହର ଦାସ, ନନ୍ଦକିଶୋର ଦାସ, ସରସ୍ୱତୀ ଦେବୀ, ରାଜେନ୍ଦ୍ର ବର୍ମା, ଅମିତାଭ ମହାପାତ୍ର, ବାଞ୍ଛାନିଧି ମିଶ୍ର, ଗଦାଧର ଦତ୍ତ, କ୍ଷେତ୍ରମୋହନ କାନୁନ୍‌ଗୋ, ରାମଚନ୍ଦ୍ର ସିଂହ, ଅଂଶୁମାଳୀ ରାୟ, କରୁଣାକର ଦାସ, ଭୈରବଚନ୍ଦ୍ର ମହାନ୍ତି, ପ୍ରହ୍ଲାଦ ରାୟଗୁରୁ । ସମଗ୍ର ଓଡ଼ିଶାର ବିଭିନ୍ନ ସ୍ଥାନରୁ ଯୁବକ ଓ କିଶୋରମାନେ ସ୍ୱରାଜ ଆଶ୍ରମକୁ ମୁକ୍ତି ସଂଗ୍ରାମ ପାଇଁ ବଳିଦାନ ପୀଠରୂପେ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ସ୍ମରଣରେ ଆସୁଥିବା କେତେକ ନାମ ଉଲ୍ଲେଖ କରାଗଲା ବେଳେ ଆହୁରି ଶତଶତ ସଂଖ୍ୟାରେ ଥିବା ସଂଗ୍ରାମୀମାନଙ୍କ ନାମ ଜାତିର ଇତିହାସରେ ଉଲ୍ଲିଖିତ ରହିଛି ।

ସ୍ୱରାଜ ଆଶ୍ରମରୁ ଲବଣ ସତ୍ୟାଗ୍ରହୀମାନଙ୍କୁ ପ୍ରଥମ ଦଫାରେ ସତ୍ୟାଗ୍ରହ ପାଇଁ ଛଡ଼ା ଯାଇଥିଲା । ପୋଲିସ ଦ୍ୱାରା ନିର୍ଯ୍ୟାତିତ କିଶୋର ବାନର ସେନାମାନଙ୍କ କ୍ଷତ ସ୍ଥାନକୁ ସେତେବେଳେ ମା' ରମାଦେବୀ ମାତୃସୁଲଭ ମମତା ନେଇ ବାରମ୍ବାର ମଲମ ଲଗାଇ ଶୁଶ୍ରୂଷା କରୁଥିଲେ । ଦେଶର ବିଭିନ୍ନ ସ୍ଥାନରୁ ସେ ସମୟରେ ଏବଂ ସ୍ୱାଧୀନତା ପରେ ବହୁ ପ୍ରମୁଖ କଂଗ୍ରେସ ନେତା ଆସି ସ୍ୱରାଜ ଆଶ୍ରମରେ ଅବସ୍ଥାନ କରିଛନ୍ତି । ସ୍ୱରାଜ ଆଶ୍ରମର ଟ୍ରଷ୍ଟ ଗଠନ କରାଯାଇ ୧୯୫୦ ମସିହା ନଭେମ୍ବର ମାସରେ ରେଜେଷ୍ଟ୍ରୀ ହୋଇଥିଲା । ଏହି ଟ୍ରଷ୍ଟର ପ୍ରମୁଖ ଭୂମିକାରେ ଥିଲେ ଡକ୍ଟର ହରେକୃଷ୍ଣ ମହତାବ । ଡକ୍ଟର ମହତାବଙ୍କ ସହିତ ଅନ୍ୟ ନ୍ୟାସୀମାନେ ହେଲେ ଭାଗୀରଥି ମହାପାତ୍ର, ନିତ୍ୟାନନ୍ଦ କାନୁନ୍‌ଗୋ, ନବକୃଷ୍ଣ ଚୌଧୁରୀ, ପଣ୍ଡିତ ପ୍ରାଣକୃଷ୍ଣ ପଢ଼ିହାରୀ ଓ ମଦନମୋହନ ପଟ୍ଟନାୟକ ।

ଏହି ଟ୍ରଷ୍ଟିମାନଙ୍କ ମଧ୍ୟରୁ ସମସ୍ତେ ଇହସଂସାର ତ୍ୟାଗ କଲେଣି । ବିଗତ ଦିନ ଗୁଡ଼ିକରେ ଟ୍ରଷ୍ଟିମାନଙ୍କ ମଧ୍ୟରୁ ଯେଉଁମାନେ ଜୀବିତ ଥିଲେ ୧୯୭୦ ମସିହାଠାରୁ ୧୯୮୦ ମଧ୍ୟରେ ସେମାନେ କେହି କେବଳ ଡକ୍ଟର ମହତାବଙ୍କ ବ୍ୟତୀତ ସ୍ୱରାଜ ଆଶ୍ରମର ଭବିଷ୍ୟତ ସଂସ୍କାର ସମ୍ପର୍କରେ ଯଥେଷ୍ଟ ଶ୍ରଦ୍ଧା କିମ୍ବା ଆଗ୍ରହ ପ୍ରକାଶ କରି ନାହାଁନ୍ତି । ସ୍ୱରାଜ ଆଶ୍ରମର ପରିସର ଓ ଗୃହର ନିକଟ ଅତୀତରେ ଯେଉଁସବୁ ପୁନର୍ବିନ୍ୟାସ ହୋଇଛି, ତାହା ଡକ୍ଟର ମହତାବଙ୍କ ଆଗ୍ରହ ଯୋଗୁଁ ପ୍ରାୟ ସମ୍ଭବ ହୋଇଛି ।

ସ୍ୱରାଜ ଆଶ୍ରମରେ ବେଳେବେଳେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ବୈଠକ ଅନୁଷ୍ଠିତ ହେଉଛି । ଅଗଷ୍ଟ ୧୫, ଜାନୁଆରୀ ୨୬, ଗାନ୍ଧିଜୟନ୍ତୀ ଏହିସବୁ ଜାତୀୟ

ଉତ୍ସବ ଦିନମାନଙ୍କରେ କଟକ ସ୍ୱାଧୀନତା ସଂଗ୍ରାମୀ ସଂସ୍ଥା ପକ୍ଷରୁ ଉତ୍ସବ ପାଳନ କରାଯାଇଥାଏ । ନେତାଜୀ ଜୟନ୍ତୀ ପାଳନ ମଧ୍ୟ କେତେବର୍ଷ ହେଲା ସ୍ୱରାଜ ଆଶ୍ରମ ପରିସର ମଧ୍ୟରେ ଅନୁଷ୍ଠିତ କରାଯାଉଛି । ସ୍ୱରାଜ ଆଶ୍ରମରେ ନିୟମିତ ଭାବେ ମହାତ୍ମା ଗାନ୍ଧିଙ୍କ ନିର୍ଦ୍ଦେଶିତ କୌଣସି ରଚନାତ୍ମକ କାର୍ଯ୍ୟ ହେଉ ନାହିଁ ।

ଆଶ୍ରମ ଖାଲି ପଡ଼ିଛି । ଆଶ୍ରମ ପରିସର ମଧ୍ୟରେ ନୀରବତା ରାଜତ୍ୱ କରୁଛି । ଆଶ୍ରମର ଦଲିଲରେ ଉଲ୍ଲିଖିତ ହୋଇଥିବା ଜାତୀୟ ଅଥବା ପ୍ରାନ୍ତୀୟ ସ୍ତରରେ ସାମାଜିକ ରାଜନୈତିକ-ଅର୍ଥନୈତିକ ସମସ୍ୟାମାନଙ୍କୁ ନେଇ ଆଲୋଚନା, ତର୍କ କିମ୍ବା ସମ୍ମାନ ମାନ କେବେ ଅନୁଷ୍ଠିତ ହୁଏ ନାହିଁ । ପୂର୍ବଭଳି ପ୍ରାନ୍ତୀୟ କିମ୍ବା ଜାତୀୟ ସ୍ତରର କୌଣସି ଗାନ୍ଧିବାଦୀ ବିଶିଷ୍ଟ ବ୍ୟକ୍ତି ସ୍ୱରାଜ ଆଶ୍ରମ ଆସନ୍ତି ନାହିଁ ।

ଏହି ଆଶ୍ରମର ପରିଚାଳନା ନେଇ ଏବେ ମଧ୍ୟ ବିବଦମାନ ଅବସ୍ଥା ରହିଛି । ସଂପ୍ରତି କଟକର ଜିଲ୍ଲା ମାଜିଷ୍ଟ୍ରେଟ ଓ କଲେକ୍ଟର ଆଶ୍ରମ ପରିଚାଳନାର ମୁଖ୍ୟ ଅଛନ୍ତି । ଆଶ୍ରମର ସମ୍ପତ୍ତି ଓ ଆସବାବପତ୍ର ତାଙ୍କର ଦାୟିତ୍ୱରେ ରହିଛି । ରାଜ୍ୟ ସାଂସ୍କୃତିକ ବିଭାଗ ଅନୁଦାନରେ ୧୯୮୦ ମସିହା ପରଠାରୁ ଆଶ୍ରମର ଗୃହଗୁଡ଼ିକର ମରାମତି କାମ କରାଯାଇଥିଲା ।

ଗାନ୍ଧି ଶାନ୍ତି ପ୍ରତିଷ୍ଠାନକୁ ସ୍ୱରାଜ ଆଶ୍ରମ ପରିଚାଳନାକୁ ଅର୍ପଣ କରି, ଏହି ଆଶ୍ରମକୁ ଜାତୀୟ ସ୍ମୃତି ପୀଠରେ ପରିଣତ କରିବା ଥିଲା ଡକ୍ଟର ମହତାବଙ୍କ ଇଚ୍ଛା । ସେ ସମ୍ପର୍କରେ ଅନ୍ୟ କେହି ଉଦ୍ୟମ ଅବ୍ୟାହତ ରଖିଛନ୍ତି କି ନାହିଁ, ସେ ସମ୍ପର୍କରେ କୌଣସି ତଥ୍ୟ ମିଳେ ନାହିଁ ।

କିନ୍ତୁ ଜନସାଧାରଣ ବର୍ତ୍ତମାନର ପରିସ୍ଥିତିକୁ ଲକ୍ଷ୍ୟକରି ଚାହାଁନ୍ତି ସ୍ୱରାଜ ଆଶ୍ରମ ସଂସ୍ଥା ଜାତୀୟ ସ୍ମୃତିରେ ପରିଣତ ହେଉ । ଦେଶର ଯେଉଁସବୁ ସ୍ଥାନ ପରାଧୀନ କାଳରେ ସ୍ୱାଧୀନତା ଆନ୍ଦୋଳନର କ୍ଷେତ୍ର ଥିଲା, ତାହା କାଳକ୍ରମେ ଜାତୀୟ ସ୍ମୃତିରେ ପରିଣତ ହେଲାଣି । ବିହାରର ସଦାକତ୍ ଆଶ୍ରମ, ଗାନ୍ଧିଜୀଙ୍କ ହସ୍ତରେ ନିର୍ମିତ ସେବାଗ୍ରାମ, ସାବରମତି ଆଶ୍ରମ ପ୍ରଭୃତିକୁ ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇପାରେ । ଯେଉଁ ଅନୁଷ୍ଠାନ ଗୁଡ଼ିକ ସହିତ ସ୍ୱାଧୀନତା ସଂଗ୍ରାମର ଇତିହାସ ଜଡ଼ିତ ଏବଂ ଯେଉଁଠାରେ ଜାତିର ଜନକ ମହାତ୍ମା ଗାନ୍ଧିଙ୍କ ପାଦସ୍ପର୍ଶ ପଡ଼ିଛି ତାହା ଜାତୀୟ ସମ୍ପତ୍ତି ରୂପେ ପରିଗଣିତ କରାଯାଇ ଦେଶର ଉତ୍ତରପୁରୁଷଙ୍କ ପାଇଁ ସାଇତା ହୋଇ ରହିବା କଥା । ସେ କ୍ଷେତ୍ରରେ ବିଳମ୍ବ କରାଯିବା ଉଚିତ ନୁହେଁ ।

ସ୍ୱାଧୀନତା ପୂର୍ବରୁ ଜାତିର ଜନକ ମହାତ୍ମାଗାନ୍ଧି ଏବଂ ଦେଶପ୍ରେମୀ ସଂଗ୍ରାମୀମାନେ ଯେଉଁ ସବୁ ସ୍ୱପ୍ନ ଦେଖିଥିଲେ ସ୍ୱାଧୀନତାର ୪୭ ବର୍ଷ ପରେ ମଧ୍ୟ ସେଗୁଡ଼ିକୁ ଆମେ ଯଥାର୍ଥରେ ସାକାର କରିପାରି ନାହୁଁ ।

ସାଂପ୍ରଦାୟିକତା, ସାକ୍ଷରତା, ଜାତିଭେଦ, ଅସ୍ପୃଶ୍ୟତା, ହରିଜନ, ଗିରିଜନ ଉନ୍ନୟନ, ଜାତୀୟ ସଂହତି ପ୍ରଭୃତି କ୍ଷେତ୍ରରେ ଆହୁରି ଅନେକ କାର୍ଯ୍ୟ ଆମର କରିବାକୁ ଅଛି । ଆଜି ଆମ ଦେଶରେ ସନ୍ତ୍ରାସବାଦ, ବିଚ୍ଛିନ୍ନତା, ମୁଣ୍ଡଟେକୁଥିବାରୁ ଜାତୀୟ ସଂହତି ଆହ୍ୱାନର ସମ୍ମୁଖୀନ ହୋଇଛି । ଦେଶରେ ଗଣତନ୍ତ୍ର ଭୋଟସର୍ବସ୍ୱ ହୋଇ-ଯାଇଛି । ଗ୍ରାମ୍ୟସ୍ତରରେ ଦାରିଦ୍ର୍ୟ ଉତ୍କଟ ଆକାର ଧାରଣ କରୁଛି । ଦେଶକୁ ଏସବୁରୁ କପରି ମୁକ୍ତ କରିବାପାଇଁ ଗାନ୍ଧିଜୀଙ୍କ ଚିନ୍ତାଧାରା ଏବଂ ପ୍ରଦର୍ଶିତ ମାର୍ଗର ଗୃହ୍ୟତା ସାଂପ୍ରତିକ କାଳରେ ଅଧିକ ଅନୁଭୂତ ହେଉଛି ।

ଏଣୁ ସ୍ୱରାଜ ଆଶ୍ରମକୁ ପୁନର୍ଜୀବିତ କରିବାକୁ ହେଲେ ସେଠାରେ ସଭା, ସମିତି, ଆଲୋଚନା ମାଧ୍ୟମରେ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରିବା ପାଇଁ ପ୍ରଯତ୍ନ କରାଯିବା ଉଚିତ । ଏଥିପାଇଁ ରାଜ୍ୟ ସରକାର ଯୋଜନା ପ୍ରସ୍ତୁତ କରି ସ୍ୱରାଜ୍ୟ ଆଶ୍ରମକୁ ଏକ ଦକ୍ଷ ଦେଶପ୍ରେମୀ ପରିଚାଳନା ଅଧୀନରେ ଛାଡ଼ିଦେଲେ ଭଲ ହୁଅନ୍ତା । ସ୍ୱରାଜ୍ୟ ଆଶ୍ରମର ପାଠାଗାରକୁ ପୁନଃଉଦ୍ଧାର କରି ଏହାକୁ ସର୍ବସାଧାରଣଙ୍କ ପାଇଁ ଉନ୍ମୁକ୍ତ କରାଯାଇ-ପାରେ । ଜାତୀୟ ସ୍ମୃତି ପ୍ରତି ଅବହେଳା ପ୍ରଦର୍ଶନ କରାଗଲେ ଭବିଷ୍ୟତ ବଂଶଧର ମାନଙ୍କଠାରୁ କ୍ଷମା ମିଳିବ ନାହିଁ ।

## ସ୍ୱରାଜ୍ୟ ଆଶ୍ରମ ଦଲିଲ ପତ୍ର :

**TRUE COPY**

DEED NO.4347 Vol 41 PAGES 475 to 484

THIS DEED OF TRUST is made on the 20th Day of November, 1940 between HAREKRISHNA MAHATAB son of late Jagannath Mahatab aged 40 years by caste Ksheriya of Mouza Agarpara P. S. Banta, Dist. Balasore at P O. Sahebzada Bazar, Cuttack (here in after called **THE AUTHOR**) of the ONE PART **AND** 1. SRI BHAGIRATHI MOHAPATRA son of late Choudhury D.r.a Charan Mohapatra aged 47 years of Chetra P. S Jagatsinghpur Dist. Cuttack (2) NITYANANDA KANUNGO son of late Balamukunda Kanungo, aged 9 years of Bakharabad, Cuttack (3) NABA KRISHNA CHOUDHURY son of late Gokulananda Choudhury aged 39 years of Bakharabad Cuttack (4) HAREKRISHNA MAHATAB son of late Jagannath Mahatab aged 40 years of Agarpara P. S. Banta, Dist Balasore, at present Sahebzada Bazar, Cuttack. (5) Pandit Prana Krishna Parihari

son of late Kalandi Parihari aged 57 years of Jayban P. S. Jagatsinghpur, District Cuttack, (6) Madan Mohan Patnaik son of late Bhikari Charan Patnaik, aged 40 years of Tentuli Khunta P. S. Korai, District Cuttack, (7) Bichitrananda Das son of late Rama Chandra Das aged 55 years Advocate of Dagarapara, Cuttack.

WHEREAS the author acquired the lands buildings and all other tenements and hereditament appendant and appertenant there to here in after described in the schedule here in below annexed with the intent of dedicating the same to the use and occupation there of by such national Congress Organisation in the Province of Orissa and in furtherance of such national works to be done under the auspices of the said organisation as the author thinks fit;

AND Where as the funds for the acquisition of the properties referred to above were raised to a large extent by donations given by Public minded persons having sympathy with such causes as may best further the advance of the country towards the attainment of Swaraj and WHEREAS in pursuance of the aforesaid object of the author and of the wishes of the donors the lands and premises referred to above have been, since their acquisition being utilised for the various beneficient purposes connected with the various Congress Organisations especially District Congress Committee of Cuttack including the residence of Members and volunteers of the Organisation holding of offices and meeting of the said District Committee and of other Meetings for deliberation over the matters connected with the Congress Activities and for matter connected with the Congress activities and for various other purposes of the like nature and akin there to.

AND WHEREAS be declared and trustees be appointed and the properties be transferred and assigned to the said trustees to be held by them as legal owners there of, subject to the following causes being the conditions of the Trust for

the avowed object set forth above. Now these Presents witness and the Parties here to hereby agree as follows :

( 1 ) That the author in whose name the Property has been acquired by virtue of a registered Sale Deed executed by Rai Saheb Nalini Kanta Ghose for a consideration of Rs. 10,550u/- only on the 20th December, 1937 and who has been so far in possession of the said properties as owner thereof divests himself of all his Private and Personal interest in the Properties thus acquired and transfers the same to the trustees to be owned and held by them upon the trust with and subject to the Powers and Provisions and agreements hereinafter declared and expressed concerning the same.

( 2 ) That the trust shall be known as "Utkal Swaraj Ashram Trust" and the premises shall be known as "Utkal Swaraj Ashram."

( 3 ) That the Trustees shall utilise the lands premises buildinss and all other hereditaments appendant there to for purposes connected with lawful activities of the Indian National Congress in Orissa and shall in furtherance of the said object but subject to payment of such charges or taxes as may be deemed reasonably sufficient to meet the costs necessary rapairs of the buildings payment of land rent and other taxes and the upkeep of the Swaraj Ashram Trust in fit and proper condition of service allow inter-alia the holding of Offices of the Congress Organisation namely Cuttack District Congress Committee and of such other committeess. meetings associations and the like set up or arranged by or held under the auspices of the said District Congress Committee.

( 4 ) That the trustees shall allow the said properties to be utilised in furtherance of such nation building and nation planning activities such as production storage sale of Khadi and other kinds of cottage Industries. Hindi Prachar and Harijan upliftment works etc.

( 5 ) That they shall utilise the same for establishing libraries reading rooms or press for lawful propaganda of the

Congress activities for the accommodation of distinguished guests and personeges having had occasion to stay here in Cuttack in course of the tour undertaken by them for such propaganda works as are connected with and relating to the National Political Social upliftment and other Nation building activities.

( 6 ) That they shall let at least two rooms of the old block a kitchen and the big Hall constructed at their cost out of the said premises subject to payment of proportionate rent and taxes for use of the Cuttack District Congress Committee as the said Committee have contributed a sum of Rs. 2300/- in cash towards acquisition of the properties.

( 7 ) That Sri Mahatabji (the Author) having at his own costs built a bunglow in the Swaraj Ashram compound for his personal use. The Trustees shall permit his personal user of the same for this residence and other like purposes connected with his Public and political activities subject to payment of proportionate rent and taxes.

( 8 ) That the outstanding loan of Rs. 3,000/- with interest at the rate of 12% per annum hereby become the liabilities of the trustees as such and they shall liquidate the same for which the trust properties and not the trustees shall be personally liable.

( 9 )That thay shall keep the house in good repairs and shall maintain the properties in tact free from any encumbrances whatsoever and shall defend against any encrochment thereupon or any invasion on their title thereto.

( 10 ) That they shall not be entitled to transfer or part with possession of the said premises nor encumber the same.

( 11 ) That they shall be entitled to make such improvements as the funds in their hands permit.

( 12 )That they shall receive donations for any of the purposes therein setforth and shall maintain accounts and shall allow examination thereof to the author or to such agency as is appointed by the Author.

( 13 ) That they may frame rules for the better management of the trust including tha keeping of accounts.

( 14 ) That they shall be entitled to use the properties in whichever way they think fit so long as it is not in consistent with nor repugnant to the object of the Trust as set further above nor to any of the terms and conditions of this Deed.

( 15 ) That they shall in the event of the Congress Organisation or any of its activities or any of its Committees being declared unlawful according to the laws, Regulations ordinances Promulgated for the time being be entitled to convert the use of the properties to such other national object or confine their user to such national activities of the Congress as are not inconsistent with nor repugnant to the said laws Regulations or ordinances till such time as the said Laws Regulations or ordinances remain in force.

Provided that this power either of diverting or of limiting the user of the properties may be validly exercised by all or only such other trustees as are physically capable exercising this discretion at the time when such diversion or limitation or both be considered imminent and necessary. Provided further that they shall not be free and competent to so divert or limit permanently.

( 16 ) That if for any cause all the objects as stated above fail then and then only the Trustees may utilise the Trust properties for any other National and Political welfare of the province or District as they think just and proper.

( 17 ) That in case of any vacancy occuring amongst the trustees by reason of death resignation or otherwise it shall be tilled up by the remaining trustees by election such election of and acceptance by the new Trustees or Trustee shall be duly Published.

( 18 ) That is shall be competent for the trustees to appoint a Secretary for managing the trust properties keeping accounts etc.

( 19 ) That the trustees may get their names mutated in the land lords landlords sherista and register of Cuttack Municipality as trustees of UTKAL SWARAJ ASHRAM TRUST and shell pay land and Municipal Taxes and ce ses as they fall due and become payable.

SCHEDULE OF TRUST PROPERTIES

Within the District of Cuttack and Police Station and S. R Cuttack sadar in Mouza Baharnal Thana no. 200 pragana Bakharabad Mahal Bisinabar Touzi no. 2498 of the Cuttack Collectorate Mafi Kharida Bajyapti Pattadari right being schedule nol. 92 93 of the Provincial settlement and Kbasara no. and boundary as the set forth below and total area of A 0.5197 decimals with rental Rs 10/3 which acco ding to the current settlement is A 0.490 Deceimals with Rs 17.12 and which forms holding No 1036 in Ward No. 11 of the Cuttack Municipality the aforsaid land together with one storied and two storied pucca buildings with doors and door frames therein pucca compound wall courtyard well privey etc. and all rights and interests appertaining thereto valued at Rs. 20 000/- only

SCHEDULE SURVEY NUMBERS

Khata No. 316 house A0.0245 No. 317 Privey A00025 No. 318 Court Yard A0 2210 No. 319 Building A00020 No. 320 Pucca platform A00015 No. 311 Court Yard A0.0540 No. 322 House A0 0184 No 323 house A00 150 No. 324 court yard A00 622 No 325 house A00220 No. 326 court yard A00 395 No. 327 privey A0 015 No. 328 building A00340 No. 329 House A00145 No. 330 Gobir A00075 total 15 items A0 5197 decimals. which in the currenn settlement has been recorded as bajyapti sthitiban in Khata No. 124 Khasara No. 667 having an area of A0 490 dec. being kotha bari boundary north house of AMAL Mian south public road, east lane west house of Bach MIAN.

20. 11. 1940

Typed by lala khetra mohan roy
at p mahidas bazar. CUTTACK
IDENTIFIED BY PERSONALLY KNOWN TO DSR
WIT :
BIRAKISHORE DAS AT P.O. MAHIDAS BAZAR, CUTTACK.
Maguni Charan Kanungo at BAKHARABAD, CUTTACK

# ଓଡ଼ିଶାର ସାଂସ୍କୃତିକ ପୁନର୍ଜାଗରଣରେ ଆକାଶବାଣୀର ଭୂମିକା

**ଡକ୍ଟର ହୃଷୀକେଶ ପଣ୍ଡା**

ସଭ୍ୟତାର ବିକାଶ ସହିତ ଶିକ୍ଷାର ଅଗ୍ରଗତି, ବିଜ୍ଞାନର ନବ ନବ ଆବିଷ୍କାର ଓ ଉଦ୍ଭାବନ, ପ୍ରଯୁକ୍ତି ବିଦ୍ୟାର ବିନିଯୋଗ, ବୈଷୟିକ ବିକାଶ ଏବଂ ଶିଳ୍ପ ବିସ୍ତାର ମାଧ୍ୟମରେ, ମଣିଷର ଜୀବନଧାରାରେ ଯେଉଁ ପରିବର୍ତ୍ତନ ଆସିଛି, ସେହି ପରିବର୍ତ୍ତନ ମୂଳରେ ଏକ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିଛି 'ଗଣମାଧ୍ୟମ' ।

ବିଂଶ ଶତାବ୍ଦୀର ଏଇ ଶେଷ ଦଶନ୍ଧିବେଳକୁ ସମଗ୍ର ବିଶ୍ୱରେ 'ଗଣମାଧ୍ୟମ'ହିଁ ଏକ ବିସ୍ଫୋରଣ ଘଟାଇଛି ଏବଂ ଏହି ବିସ୍ଫୋରଣ ମାଧ୍ୟମରେ ଏକ ବୈପ୍ଳବିକ ଚେତନା ସୃଷ୍ଟି କରି ବିଶ୍ୱର ଅଗ୍ରଗତିରେ ପଥପ୍ରଦର୍ଶକ ହୋଇ ଆସିଛି । ବିଶେଷତଃ ଗଣମାଧ୍ୟମର 'ଇଲେକ୍ଟ୍ରୋନିକ୍ ମିଡ଼ିଆ'ଟି ସବୁଠାରୁ ପ୍ରଭାବଶାଳୀ ଭାବରେ ଆଗକୁ ଆଗେଇ ଆସିଛି ଏବଂ ଆଗାମୀ ଶତାବ୍ଦୀରେ ଯେ ଏହା ଅଧିକ ଭାବରେ କ୍ରାନ୍ତିକାରୀ ବିପ୍ଳବର ନେତୃତ୍ୱ ନେବ ଏଥିରେ ସନ୍ଦେହ ନାହିଁ ।

'ଗଣମାଧ୍ୟମ' ହେଉଛି, ଗଣଚେତନାର ବାହକ । ଗଣତନ୍ତ୍ରର ପ୍ରହରୀ ଏବଂ ଗଣଜାଗୃତିର ଆଧାର । ସେହି ଦୃଷ୍ଟିକୋଣରୁ ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ 'ଗଣମାଧ୍ୟମ'ର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଏବଂ ଅପରିହାର୍ଯ୍ୟ । ଗଣତାନ୍ତ୍ରିକ ମୂଲ୍ୟବୋଧର ସୁରକ୍ଷା ଓ ବିକାଶ ସହିତ, ସାମୂହିକ ପ୍ରଗତିକୁ ତ୍ୱରାନ୍ୱିତ କରିବା ଦିଗରେ 'ଗଣମାଧ୍ୟମ'ର ଭୂମିକା ଅଧିକ ପ୍ରଭାବଶାଳୀ ।

'ଗଣମାଧ୍ୟମ' ମୌଳିକ ଭାବରେ ଜନଗଣଙ୍କ ମଧ୍ୟରେ ଗଣସୂଚନା, ଗଣଶିକ୍ଷା ଓ ଗଣଆନନ୍ଦ ଦେବାର ଆଭିମୁଖ୍ୟ ଗ୍ରହଣ କରିଥାଏ । ତେବେ ଏହି ଶିକ୍ଷା, ସୂଚନା ଓ ପ୍ରମୋଦ ସବୁବେଳେ ସମୂହଙ୍କର ପ୍ରଗତି ପାଇଁ ଉଦ୍ଦିଷ୍ଟ । ସୁରକ୍ଷା, ବିକାଶ ଓ ବିସ୍ତାର ମାଧ୍ୟମରେ ଚେତନାରେ ଜାଗରଣ ସୃଷ୍ଟି କରି ତାକୁ ଗଠନମୂଳକ ଭାବରେ ପ୍ରଗତି ପଥରେ ପରିଚାଳିତ କରିଥାଏ । ସେହି ଦୃଷ୍ଟିକୋଣରୁ 'ଗଣମାଧ୍ୟମ'ର

ଯଥାର୍ଥ ଉପଯୋଗ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ଗଠନମୂଳକ ଭାବରେ ତାର ଉପଯୋଗ ନ ହେଲେ, ତାହା ଜନଗଣଙ୍କର ପ୍ରଭୂତ କ୍ଷତି ଘଟାଇବାରେ ସମର୍ଥ ହୋଇପାରେ ଓ ସାମୁହିକ ପ୍ରଗତିର ପଥକୁ ପ୍ରତିରୋଧ ମଧ୍ୟ କରିପାରେ । ତେଣୁ 'ଗଣମାଧ୍ୟମ' ଗୁଡ଼ିକର ନିରପେକ୍ଷ କାର୍ଯ୍ୟକାରିତା ପାଇଁ ସ୍ୱାଧୀନତା ଯେପରି ଆବଶ୍ୟକ, ସେହି ସ୍ୱାଧୀନତାକୁ ଯଥାର୍ଥ ଭାବରେ ଉପଯୋଗ କରିବାର ଶୃଙ୍ଖଳା ଓ ସଂଯମତା ସେତିକି ପ୍ରୟୋଜନ । ସେଇଥିପାଇଁ 'ଗଣମାଧ୍ୟମ'ର 'ପ୍ରିଣ୍ଟିଙ୍ଗ ମିଡ଼ିଆ' ବା ସମ୍ବାଦ-ପତ୍ରକୁ ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ଭାବରେ ଗ୍ରହଣ କରାଯାଇଛି ।

ପ୍ରାଚୀନ ଐତିହ୍ୟ, ପରମ୍ପରା ଓ ସଂସ୍କୃତିର ସୁରକ୍ଷା, ଶିକ୍ଷାର ବିକାଶ, କଳା, ସାହିତ୍ୟ ଓ ସଂସ୍କୃତିର ଅଭିବୃଦ୍ଧି, ବିଭିନ୍ନ ଭାଷା, ଗୋଷ୍ଠୀ, ଧର୍ମ, ଦର୍ଶନ ଓ ସାମ୍ପ୍ରଦାୟିକତାର ଊର୍ଦ୍ଧ୍ୱରେ ମାନବିକ ସଂହତିର ପ୍ରତିଷ୍ଠା ସହିତ ବିଜ୍ଞାନ, କାରିଗରୀ ଓ ପ୍ରଯୁକ୍ତି ଜ୍ଞାନର ଉପଯୋଗ ପାଇଁ 'ଗଣମାଧ୍ୟମ' ବିଶେଷ ଭୂମିକା ଗ୍ରହଣ କରିଥାଏ । ଭାରତ ଭଳି ଅନଗ୍ରସର, ବହୁ ସମସ୍ୟା ଜର୍ଜରିତ, ବୃହତ୍ ଗଣତାନ୍ତ୍ରିକ ଓ ତୃତୀୟ ବିଶ୍ୱର ବିକାଶଶୀଳ ରାଷ୍ଟ୍ର ପାଇଁ ଏହି 'ଗଣମାଧ୍ୟମ' ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ପାଳନ କରି ଆସିଛି । ବିଶେଷତଃ 'ବେତାର ଓ ଦୂରଦର୍ଶନ'ର ଭୂମିକା ଏ ଦିଗରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସୂଚନା ଓ ପ୍ରସାରଣ କ୍ଷେତ୍ରରେ ଦୂରଦର୍ଶନର ଅଭ୍ୟୁଦୟର ଇତିହାସ ସ୍ୱଳ୍ପ ସମୟର ହେଲେ ମଧ୍ୟ ବେତାରର ଭୂମିକା ଅପେକ୍ଷାକୃତ ପ୍ରାଚୀନ ଓ ପ୍ରଭାବଶାଳୀ ।

ଭାରତବର୍ଷରେ ବେତାର ପ୍ରସାରଣର ଭିତ୍ତିଭୂମି ପ୍ରତିଷ୍ଠା ହୋଇଥିଲା, ଏହି ଶତାବ୍ଦୀର ଦ୍ୱିତୀୟ ଦଶକ ବେଳକୁ । ୧୯୩୭ରୁ ୪୦ ମଧ୍ୟରେ ବ୍ରିଟିଶ ଶାସନାଧୀନ ଭାରତ ବର୍ଷରେ ବେତାର ପ୍ରସାରଣ ପାଇଁ 'ଅଲ ଇଣ୍ଡିଆ ରେଡ଼ିଓ'ର ନାମକରଣ ଓ ତାର ପ୍ରଶାସନିକ ସ୍ୱରୂପର ବାସ୍ତବ ରୂପ ଦିଆଯାଇଥିଲା । ୧୯୩୯ରେ ବେତାର ପ୍ରସାରଣର ନିୟନ୍ତ୍ରକ ତାଙ୍କର ଭାରତ ସରକାରଙ୍କୁ ପ୍ରଦତ୍ତ ଏକ ରିପୋର୍ଟରେ ଏହି ବେତାର ପ୍ରସାରଣ ବ୍ୟବସ୍ଥାର ବିଭିନ୍ନ ଦିଗପ୍ରତି ବିଶଦ୍‌ଭାବରେ ବିବରଣୀ ଦେଇଥିଲେ । ତାହାକୁ ଭିତ୍ତିଭୂମି ଭାବରେ ଗ୍ରହଣ କରି ଭାରତରେ ବେତାର ପ୍ରସାରଣ ବ୍ୟବସ୍ଥା କାର୍ଯ୍ୟକାରୀ ହୋଇଥିଲା ।

ସ୍ୱାଧୀନତା ଲାଭ ପୂର୍ବରୁ ଅବିଭକ୍ତ ଭାରତବର୍ଷରେ ନଅଟି ବେତାର କେନ୍ଦ୍ର ପ୍ରତିଷ୍ଠା କରାଯାଇଥିଲା । ସ୍ୱାଧୀନତା ଲାଭ ପରେ ଦେଶର ସ୍ୱାଧୀନ ସରକାର ବେତାର ପ୍ରସାରଣର ବିକାଶ ପାଇଁ ଏକ ବୃହତ୍ ଯୋଜନା କାର୍ଯ୍ୟକାରୀ କରିଥିଲେ । ଯାହା ଫଳରେ ସମଗ୍ର ଦେଶରେ ବହୁ ବେତାର କେନ୍ଦ୍ର ପ୍ରତିଷ୍ଠିତ ହେଲା । ଭାରତବର୍ଷରେ ଏହି ବେତାର ପ୍ରସାରଣର ଇତିହାସ ଅର୍ଦ୍ଧ ଶତାବ୍ଦୀର ଇତିହାସ ।

ବେତାର ପ୍ରସାରଣର ପ୍ରଥମ ଯୋଜନା କାର୍ଯ୍ୟକାରୀ ହୋଇଥିଲା ୧୯୪୫ ମସିହାରେ । ଏହା ଫଳରେ ପ୍ରତ୍ୟେକ ଭାଷାଭିତ୍ତିକ ଅଞ୍ଚଳରେ ଏକ ବା ଏକାଧିକ

'ମିଡ଼ିୟମ ଓ୍ୱେଭ୍ ଟ୍ରାନସ୍‌ମିଟର' ପ୍ରତିଷ୍ଠାର ଉଦ୍ୟମ ହୋଇଥିଲା । କିନ୍ତୁ ଅନେକଗୁଡ଼ିଏ ଉଚ୍ଚ କ୍ଷମତାସମ୍ପନ୍ନ ଟ୍ରାନ୍‌ସମିଟର ଓ କେନ୍ଦ୍ର ପ୍ରତିଷ୍ଠା, ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ସେଗୁଡ଼ିକର ନିର୍ମାଣ କାର୍ଯ୍ୟ ସମାପନ ପାଇଁ ରାଜନୈତିକ ପ୍ରବଳଚାପ ଓ ସେଥିପାଇଁ ପ୍ରବଳ ଆର୍ଥିକ ବ୍ୟୟବହୁଳତାର ସମସ୍ୟାକୁ ଏଡ଼ାଇବା ଉଦ୍ଦେଶ୍ୟରେ ଉପେକ୍ଷିତ ଅଞ୍ଚଳଗୁଡ଼ିକରେ ଏକ କିଲୋଓ୍ୱାଟ୍ କ୍ଷମତାସମ୍ପନ୍ନ ବା ସ୍ୱଳ୍ପ କ୍ଷମତାସମ୍ପନ୍ନ ପାଇଲଟ୍ ଷ୍ଟେସନ ପ୍ରତିଷ୍ଠା ପାଇଁ ଏକ ଯୋଜନା ପ୍ରସ୍ତୁତ କରାଯାଇଥିଲା । ଏଗୁଡ଼ିକ ପରବର୍ତ୍ତୀ କାଳରେ ଉଚ୍ଚ କ୍ଷମତାସମ୍ପନ୍ନ ଟ୍ରାନ୍‌ସମିଟର ଓ ସ୍ଥାୟୀ କେନ୍ଦ୍ରରେ ରୂପାନ୍ତରିତ କରାଯିବାର ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା ।

ଏହି ଯୋଜନା ଅନୁଯାୟୀ ୧୯୪୮ ଜାନୁୟାରୀ ୨୮ ତାରିଖରେ କଟକ ବେତାର କେନ୍ଦ୍ର କଲ୍ଲା ପଡ଼ିଆରେ ଏକ କିଲୋଓ୍ୱାଟ୍ ଶକ୍ତିସଂପନ୍ନ ଟ୍ରାନ୍‌ସମିଟର ସହିତ କଟକର ମଧୁପୁର କୋଠୀର ଅସ୍ଥାୟୀ ଗୃହରେ କାର୍ଯ୍ୟକ୍ରମ ଆରମ୍ଭ କରିଥିଲା । ଏଥିସହ ଏକ ରିସିଭିଂ ସେଣ୍ଟର ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । କଟକ ବେତାର କେନ୍ଦ୍ର ପ୍ରତିଷ୍ଠା ମୂଳରେ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ, ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅନ୍ୟତମ ଅଗ୍ରଣୀ ଜନନାୟକ, ବରିଷ୍ଠ ସାହିତ୍ୟିକ, ଐତିହାସିକ ଓ ସଂସ୍କୃତିସଂପନ୍ନ ପୁରୁଷ ଡକ୍ଟର ହରେକୃଷ୍ଣ ମହତାବଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ସେତେବେଳେ ପଣ୍ଡିତ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଥିଲେ ଘରୋଇ ବିଭାଗ ସହ ସୂଚନା ଓ ପ୍ରସାରଣ ବିଭାଗର ମନ୍ତ୍ରୀ । ଗଡ଼ଜାତ ଆନ୍ଦୋଳନ ସମୟରେ ସର୍ଦ୍ଦାର ପଟେଲ ଓ ଡକ୍ଟର ମହତାବଙ୍କ ମଧ୍ୟରେ ଘନିଷ୍ଠତା ଅଧିକ ନିବିଡ଼ ହୋଇଥିଲା । କଟକରେ ବେତାର କେନ୍ଦ୍ର ପ୍ରତିଷ୍ଠା ପାଇଁ ମହତାବଜୀ ସର୍ଦ୍ଦାର ପଟେଲଙ୍କ ଉପରେ ବାରମ୍ବାର ଚାପ ପକାଇ କାର୍ଯ୍ୟକୁ ତ୍ୱରାନ୍ୱିତ କରାଇଥିଲେ ।

ତତ୍କାଳୀନ ଓଡ଼ିଶାର ରାଜ୍ୟପାଳ ଡଃ କୈଳାସନାଥ କାଟଜୁ କଟକ କେନ୍ଦ୍ରର ଶୁଭ ଉନ୍ମୋଚକ ଥିଲେ । ମହତାବଜୀ ଏଥିରେ ଉପସ୍ଥିତ ଥାଇ ଉଦ୍‌ବୋଧନ ଦେଇଥିଲେ ।

୧୯୫୮ ମସିହା ମେ ମାସରେ ଏକ କିଲୋଓ୍ୱାଟ୍ ଶକ୍ତିସଂପନ୍ନ ଟ୍ରାନ୍‌ସମିଟର ୨୦ କିଲୋଓ୍ୱାଟ୍ କ୍ଷମତାସଂପନ୍ନ ଟ୍ରାନ୍‌ସମିଟର ପରେ ରୂପାନ୍ତରିତ ହୋଇଥିଲା ।

୧୯୬୪ ମସିହାରେ କଟକ କେନ୍ଦ୍ର ମଧୁପୁର କୋଠୀରୁ କ୍ୟାଣ୍ଟନ୍‌ମେଣ୍ଟ ରୋଡ୍ ନିକଟରେ ନୂଆ ହୋଇ ତିଆରି ହୋଇଥିବା ସ୍ଥାୟୀ କାର୍ଯ୍ୟାଳୟ ଗୃହକୁ ସ୍ଥାନାନ୍ତରିତ ପାଇଁ ବ୍ୟବସ୍ଥା ହେଲା । ସେହି ବର୍ଷ ନଭେମ୍ବର ମାସ ୧୯ ତାରିଖରେ ୨୦ କିଲୋଓ୍ୱାଟ କ୍ଷମତା ସଂପନ୍ନ ଟ୍ରାନ୍‌ସମିଟର ୧୦୦ କିଲୋଓ୍ୱାଟ ଉଚ୍ଚ କ୍ଷମତାସଂପନ୍ନ ଟ୍ରାନ୍‌ସମିଟରରେ ପରିବର୍ତ୍ତିତ ହେଲା । ୧୯୬୭ ଡିସେମ୍ବର ୨୫ ତାରିଖକୁ ବିଧିବଦ୍ଧ ଭାବରେ କ୍ୟାଣ୍ଟନ୍‌ମେଣ୍ଟ ରୋଡ଼ଠାରେ ନବନିର୍ମିତ ସ୍ଥାୟୀ ଗୃହରେ କାର୍ଯ୍ୟାଳୟ କାର୍ଯ୍ୟ ଆରମ୍ଭ କଲା ।

ଓଡ଼ିଶାରେ ବେତାର ପ୍ରଚାରର ବ୍ୟବସ୍ଥାକୁ ବ୍ୟାପକ ଓ ବହୁମୁଖୀ କରିବା ସହିତ ସବୁ ଅଞ୍ଚଳର ଶ୍ରୋତାମାନଙ୍କୁ ଅନ୍ତର୍ଭୁକ୍ତ କରିବା ପାଇଁ ସମ୍ବଲପୁରଠାରେ ସ୍ୱଳ୍ପ ଶକ୍ତି ସମ୍ପନ୍ନ ଏକ କେନ୍ଦ୍ର ୨୬-୫-୭୩ରେ ଓ କୋରାପୁଟ ଜିଲ୍ଲାର ଜୟପୁରଠାରେ ୨୮।୭।୭୪ରେ ଦୁଇଟି ଆଞ୍ଚଳିକ ବେତାର କେନ୍ଦ୍ର ପ୍ରତିଷ୍ଠା କରାଗଲା । ବିବିଧଭାରତୀ କାର୍ଯ୍ୟକ୍ରମର ପ୍ରଚାର ନିମନ୍ତେ ଏକ କଲୋଓ୍ୱାଟ ଶକ୍ତିସମ୍ପନ୍ନ ଏକ ଟ୍ରାନ୍ସମିଟର ଓ କେନ୍ଦ୍ର କାର୍ଯ୍ୟାଳୟ ୧୯।୮।୭୨ରେ ସ୍ଥାପିତ ହେଲା । ୭୬ ମସିହା ନଭେମ୍ବର ୨୭ ତାରିଖରୁ କଟକ କେନ୍ଦ୍ରର ଏକ ସହାୟକ ଷ୍ଟୁଡ଼ିଓ ଭୁବନେଶ୍ୱରଠାରେ ସ୍ଥାପିତ ହୋଇଛି । ଗତ ୧୯୮୯ ମସିହାଠାରୁ ପଶ୍ଚିମବଙ୍ଗ ଓ ଓଡ଼ିଶା ପାଇଁ ବେତାର କର୍ମଚାରୀ ପ୍ରଶିକ୍ଷଣ ଅନୁଷ୍ଠାନ ଆକାଶବାଣୀ କଟକଠାରେ ପ୍ରତିଷ୍ଠିତ ହୋଇଛି । ନିକଟ ଭବିଷ୍ୟତରେ ଏହା ପୂର୍ଣ୍ଣାଙ୍ଗ ହୋଇ ଅଧିକ କାର୍ଯ୍ୟକ୍ଷମ ହେବାର ବ୍ୟବସ୍ଥା ଚାଲିଛି । ସପ୍ତମ ପଞ୍ଚବାର୍ଷିକ ଯୋଜନା କାଳରେ ବେତାର ପ୍ରଚାରକୁ ଅଧିକ ବ୍ୟାପକ କରିବା ଉଦ୍ଦେଶ୍ୟରେ କେନ୍ଦୁଝରଠାରେ ଓ ମୟୂରଭଞ୍ଜ ଜିଲ୍ଲାର ବାରିପଦାଠାରେ ଦୁଇଟି ସ୍ୱଳ୍ପ ଶକ୍ତିସମ୍ପନ୍ନ ସ୍ଥାନୀୟ ବେତାର କେନ୍ଦ୍ର ପ୍ରତିଷ୍ଠିତ ହେଲା । ଅଷ୍ଟମ ପଞ୍ଚବାର୍ଷିକ ଯୋଜନା କାଳରେ ଓଡ଼ିଶାର ଭବାନୀପାଟଣା, ବଲାଙ୍ଗୀର, ବ୍ରହ୍ମପୁର, ବାଲେଶ୍ୱର ପ୍ରଭୃତି ଅଞ୍ଚଳରେ ଅନ୍ୟ କେତୋଟି ସ୍ୱଳ୍ପ ଶକ୍ତିସମ୍ପନ୍ନ ବେତାରକେନ୍ଦ୍ର ପ୍ରତିଷ୍ଠା ହେବାର ଯୋଜନା ବିଚାରାଧୀନ ରହିଛି ।

ମାତ୍ର, ରାଜ୍ୟର ସବୁ ପୁରାତନ ଓ ମୁଖ୍ୟ ବେତାରକେନ୍ଦ୍ର ଭାବରେ କଟକ କେନ୍ଦ୍ର ତା'ର ପ୍ରତିଷ୍ଠା ସମୟରୁ ଆଜିପର୍ଯ୍ୟନ୍ତ ଦୀର୍ଘ ୪୩ ବର୍ଷ ଧରି ଓଡ଼ିଶାର କଳା, ସାହିତ, ସଂସ୍କୃତି, ସ୍ୱାସ୍ଥ୍ୟ, ଜନଶିକ୍ଷା, କୃଷି, ଅର୍ଥନୀତି, ଶିଳ୍ପ ବିକାଶ, ରାଜନୈତିକ ଓ ଐତିହାସିକ ବିବର୍ତ୍ତନ କ୍ଷେତ୍ରରେ ତା'ର ଗୌରବମୟ ଭୂମିକା ପାଳନ କରି ଆସିଛି । ଓଡ଼ିଶାର ସାମାଜିକ, ସାଂସ୍କୃତିକ ଓ ଅର୍ଥନୈତିକ ବିକାଶ କ୍ଷେତ୍ରରେ ମହତ୍ତ୍ୱପୂର୍ଣ୍ଣ ଯୋଗଦାନ ଦେଇ ଆସିଛି । ସାଂସ୍କୃତିକ ପୁନର୍ଜାଗରଣ ଓ ଅଭିବୃଦ୍ଧିର ନିୟାମକ ଏବଂ ପଥ ପ୍ରଦର୍ଶକ ହୋଇ ଆସିଛି ।

ଦୀର୍ଘ ୪୩ ବର୍ଷର ଐତିହାସିକ ପରିସଂଖ୍ୟାନକୁ ଭିତ୍ତିକରି କଟକ ଆକାଶବାଣୀର ଅବଦାନକୁ ବିଶଦଭାବରେ ପର୍ଯ୍ୟାଲୋଚନା କରିବାର ଅବସର ଏଠାରେ ନାହିଁ । ଆକାଶବାଣୀର ଭୂମିକା ସମ୍ପର୍କରେ ଦୁଇ ଦୁଇଟି ଗବେଷଣା ନିବନ୍ଧ ପ୍ରସ୍ତୁତ ହୋଇ ବିଶ୍ୱବିଦ୍ୟାଳୟରୁ ପି:ଏଚ୍:ଡ଼ି: ଡ଼ିଗ୍ରୀ ଭାବରେ ସ୍ୱୀକୃତ ହୋଇଛି ।

ତେବେ, ଏଠାରେ କେତେକ ମୁଖ୍ୟ ବିଷୟ ପ୍ରତି ନିବିଷ୍ଟ ଦୃଷ୍ଟି ଦେବାର ପ୍ରାସଙ୍ଗିକତା ରହିଛି । ଆକାଶବାଣୀର ପ୍ରତିଷ୍ଠା ଓ ପ୍ରସାର ହେବା ଫଳରେ, ଓଡ଼ିଶାର ଜନସାଧାରଣ ନିଜର ଭାଷା, ସାହିତ୍ୟ, କଳାର ବିଳକ୍ଷଣ ପରମ୍ପରା, ଐତିହ୍ୟ ଓ ସଂସ୍କୃତି ପ୍ରତି ଯେ ଖାଲି ସଚେତନ ହୋଇଛନ୍ତି ତାହା ନୁହେଁ, ପରନ୍ତୁ ଦେଶର ବିଭିନ୍ନ ଆଞ୍ଚଳିକ ଭାଷା, ସାହିତ୍ୟ, କଳା ସ୍ଥାପତ୍ୟ, ଜୀବନଧାରା, ଜୀବନ

ଦର୍ଶନ ଓ ଶିଳ୍ପ ଜନମାନସର ଅଧିକ ନିକଟବର୍ତ୍ତୀ ହୋଇଛନ୍ତି । ବିବର୍ତ୍ତିତ ପରିସ୍ଥିତିରେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ଚିନ୍ତା-ଚେତନା ସହିତ ନିଜକୁ ସାମିଲ କରିଛନ୍ତି । ପରମ୍ପରା ଓ ପ୍ରଗତିବାଦ ମଧ୍ୟରେ ଏକ ମହନୀୟ ଯୋଗସୂତ୍ର ସ୍ଥାପନ କରି ସାମୂହିକ ପ୍ରଗତି ଦିଗରେ ସମାଜକୁ ଆଗେଇ ନେବା ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରିଛି ଆକାଶବାଣୀ ।

ସମାଜର ନିମ୍ନତମ ଶ୍ରେଣୀଠାରୁ ଉଚ୍ଚତମ ସୋପାନରେ ଓ ସମସ୍ତ ଶ୍ରେଣୀର ବ୍ୟକ୍ତିମାନଙ୍କୁ ସଂପୃକ୍ତ କରାଇ ସେମାନଙ୍କର ଜ୍ଞାନ, ଗରିମା, ଅଭିଜ୍ଞତା ଓ ସୃଜନଶୀଳ ଚେତନାକୁ ସମନ୍ୱିତ ଓ ସଂପ୍ରସାରିତ କରିବା ଦ୍ୱାରା ଭାଷାଭିତ୍ତିକ ଓ ସାଂସ୍କୃତିକ ସଂହତି ଏବଂ ଐକ୍ୟ ପ୍ରତିଷ୍ଠା କରି ସେହି ପ୍ରବାହକୁ ଜାତୀୟ ଚେତନା ଦିଗରେ ମୁହାଁଇବାରେ ଆକାଶବାଣୀର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ ।

ପ୍ରାଚୀନ କଳା, ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ, ଲୋକକଳା, ଲୋକସଙ୍ଗୀତ, ଲୋକନାଟକ ଓ ଲୋକ କଥାର ସଂରକ୍ଷଣ, ପ୍ରଚାର ଓ ପ୍ରସାର, ପ୍ରାଚୀନ ପୋଥିରେ ଦୁଷ୍ପ୍ରାପ୍ୟ ପାଣ୍ଡୁଲିପିର ପୁନରୁଦ୍ଧାର ଭିତ୍ତିକ ଆଲୋଚନା, ପର୍ଯ୍ୟାଲୋଚନା, ସମୟାନୁ-ଭିତ୍ତିକ ପରିବର୍ତ୍ତିତ ଧାରା ସହିତ ସଂଯୋଗ ସ୍ଥାପନ କରିଛି ଆକାଶବାଣୀ । ଏଥିସହିତ ସମାଜର ବିଭିନ୍ନ ବୟସ ଓ ଶ୍ରେଣୀର ଜନସାଧାରଣଙ୍କ ପାଇଁ ଲକ୍ଷ୍ୟ ଓ ଉଦ୍ଦେଶ୍ୟ-ଭିତ୍ତିକ 'ବିଭିନ୍ନ କାର୍ଯ୍ୟକ୍ରମ ମାଧ୍ୟମରେ, ଶିଶୁସଂସାର, କିଶୋରଚକ୍ର, ଯୁବବାଣୀ, ନାରୀମହଲ, ଶିକ୍ଷାଶିକ୍ଷକ, କୃଷିଶିକ୍ଷା, ପରିବାର କଲ୍ୟାଣ, ବିଦ୍ୟାଳୟ କାର୍ଯ୍ୟକ୍ରମ ପ୍ରଭୃତି ଶିର୍ଷକରେ ସମ୍ପୃକ୍ତ ଶ୍ରେଣୀର ବ୍ୟକ୍ତିମାନଙ୍କୁ ସମ୍ପୃକ୍ତ କରାଇ ସେମାନଙ୍କର ଚିନ୍ତା ଚେତନା, ସମସ୍ୟା ଓ ସଂସ୍କାର ଏବଂ ଶିକ୍ଷା ସମ୍ପର୍କିତ କାର୍ଯ୍ୟକ୍ରମ ପରିବେଷଣ କରି, ସମାଜର ପ୍ରତିଟି ସ୍ତରକୁ ପରିପୁଷ୍ଟ କରିଛି ଆକାଶବାଣୀ ।

ଆକାଶବାଣୀର ଶିଶୁ କାର୍ଯ୍ୟକ୍ରମ ମାଧ୍ୟମରେ ଶିଶୁ କିଶୋରମାନଙ୍କ ମଧ୍ୟରେ ଏକ ଗଠନମୂଳକ ସଚେତନତା ସୃଷ୍ଟି ହେବା ସହିତ ସଂପୃକ୍ତ ଶିଶୁ କଳାକାରମାନେ ପରବର୍ତ୍ତୀ ଜୀବନରେ ସମାଜର ବିଭିନ୍ନ ସ୍ତରରେ ଖ୍ୟାତିଲାଭ କରି ପ୍ରତିଷ୍ଠିତ ହୋଇଛନ୍ତି । ମାନବ ସମ୍ବଳର ଯଥାର୍ଥ ବିନିଯୋଗ ଦ୍ୱାରା ଏକ ସୁସ୍ଥ, ସୁନ୍ଦର ଓ ସମୃଦ୍ଧି ସମାଜ ଗଢ଼ି ଉଠିଛି । ଏ ଦିଗରେ ପ୍ରଯୋଜକ ନରସିଂହପ୍ରସାଦ ମହାନ୍ତି ଓ ବୀଣାପାଣି ମହାନ୍ତିଙ୍କ ଅବଦାନ ସ୍ମରଣୀୟ ।

ଓଡ଼ିଶୀ ସଙ୍ଗୀତକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦେବାରେ ଓ ଓଡ଼ିଶୀ ନୃତ୍ୟକୁ 'କ୍ଲାସିକାଲ ଡ୍ୟାନ୍ସ' ଭାବରେ ସ୍ୱୀକୃତି ଆଣିଦେବାରେ ଆକାଶବାଣୀ କଟକ କେନ୍ଦ୍ରର ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ।

ତତ୍କାଳୀନ କେନ୍ଦ୍ର ନିର୍ଦ୍ଦେଶକ ପି: ଭି: କୃଷ୍ଣମୂର୍ତ୍ତି, ପ୍ରଯୋଜକ କବି କାଳନ୍ଦୀ ଚରଣ ପାଣିଗ୍ରାହୀ, କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ, ଶିଳ୍ପୀ ହରପ୍ରସାଦ ଚୌଧୁରୀ, ସିଂହାରି ଶ୍ୟାମସୁନ୍ଦର କର, ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶ ଓ ଯନ୍ତ୍ରଶିଳ୍ପୀ ଭୁବନେଶ୍ୱର ମିଶ୍ରଙ୍କ ଅବଦାନ ବେଶ୍ ସ୍ମରଣୀୟ ।

ବରିଷ୍ଠ ନାଟ୍ୟକାର ଗୋପାଳ ଛୋଟରାୟ, ଗଣକବି ବୈଷ୍ଣବ ପାଣିଙ୍କ ଗୀତି-ନାଟ୍ୟକୁ ନୂତନଭାବରେ ସଂଯୋଜନ କରି ବେତାର ରୂପାନ୍ତର ଓ ପରିବେଷଣ ମାଧ୍ୟମରେ ଓଡ଼ିଆ ଲୋକନାଟକକୁ ଏକ ନୂତନ ଜୀବନ୍ୟାସ ଦେବା ମାଧ୍ୟମରେ ନାଟ୍ୟ ସାହିତ୍ୟକୁ ସମୃଦ୍ଧି କରିଛନ୍ତି । ପରବର୍ତ୍ତୀ କାଳରେ, ଲୋକକବି ଜଗନ୍ନାଥ ପାଣି, ବାଳକୃଷ୍ଣ ମହାନ୍ତି, ଗୋପାଳ ଦାସ, ରାଘବ ଚୌଧୁରୀ ପ୍ରମୁଖ ପ୍ରାଚୀନ ଗଣନାଟ୍ୟକାର ମାନଙ୍କର ସୃଷ୍ଟି ନୂତନ ଧାରା ପରିବେଶିତ ହୋଇ ନାଟ୍ୟକଳାର ସମୃଦ୍ଧିରେ ସହାୟକ ହୋଇଛନ୍ତି । ୧୯୫୩ ମସିହାରେ ନାଟ୍ୟକାର ଗୋପାଳ ଛୋଟରାୟଙ୍କ ଲିଖିତ ବେତାର ନାଟକ 'ଅଥନାଶିକ ସମ୍ବାଦ' ୧୯୮୨ ରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇ ଆକାଶବାଣୀର ମର୍ଯ୍ୟାଦା ବୃଦ୍ଧି କରିଛି ।

ତତ୍କାଳୀନ ପ୍ରଯୋଜକ ନାଟ୍ୟକାର ମନୋରଞ୍ଜନ ଦାସଙ୍କ ପରୀକ୍ଷା ନିରୀକ୍ଷାଧର୍ମୀ ବେତାର ନାଟକଗୁଡ଼ିକ ପରେ ପ୍ରକାଶିତ ହୋଇ କେବଳ ନବନାଟ୍ୟ ଆନ୍ଦୋଳନର ଧାରା ସୃଷ୍ଟି କରିନାହିଁ, ଆଧୁନିକ ଓଡ଼ିଆ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରିଛି ଓ କେନ୍ଦ୍ର ସାହିତ୍ୟ ଓ ସଙ୍ଗୀତ ନାଟକ ଏକାଡେମୀରୁ ପୁରସ୍କୃତ ହେବାର ଗୌରବ ଲାଭ କରିଛି ।

ଦୀର୍ଘଦିନ ଧରି ନିରବଚ୍ଛିନ୍ନ ଭାବରେ ଓଡ଼ିଆର ପ୍ରାଣର ପ୍ରଭୁ, ଆରାଧ୍ୟ ଦେବତା, ଭାଷା, ସାହିତ୍ୟ, ସଂସ୍କୃତି ଓ ଇତିହାସର ଆରାଧ୍ୟ ନାୟକ ମହାପ୍ରଭୁ ଜଗନ୍ନାଥଙ୍କ ବିଶ୍ୱପ୍ରସିଦ୍ଧ ରଥଯାତ୍ରାର ଧାରାବିବରଣୀ ମାଧ୍ୟମରେ, ଜଗନ୍ନାଥ ଧର୍ମ, ଜଗନ୍ନାଥ ଦର୍ଶନ, ଜଗନ୍ନାଥ ଚେତନାର ପ୍ରଚାର ଓ ପ୍ରସାର ଦ୍ୱାରା ଭକ୍ତିପାଗଳ ଓ ସଂସ୍କୃତି ସମ୍ପନ୍ନ ଓଡ଼ିଆ ଜାତିର ପ୍ରାଣଭିତରେ ଚେତନାର ମହୋଦଧିକୁ ଉଚ୍ଛଳ କରିବା ଦିଗରେ ଆକାଶବାଣୀ କଟକ କେନ୍ଦ୍ରର ଭୂମିକା ଖୁବ୍ ପୂ ଗୁରୁତ୍ୱପୂର୍ଣ୍ଣ ।

ସେହିପରି କ୍ରୀଡ଼ାଭିତ୍ତିକ କାର୍ଯ୍ୟକ୍ରମରେ ପ୍ରବୀଣ ଓ ନବୀନ କ୍ରୀଡ଼ାବିତ୍‌ମାନଙ୍କୁ ସମ୍ପୃକ୍ତ କରାଇ କ୍ରୀଡ଼ାର ଧାରା ବିବରଣୀ ପ୍ରଚାର ମାଧ୍ୟମରେ ଗ୍ରାମୀଣ କ୍ରୀଡ଼ା ଓ ସହରୀ କ୍ରୀଡ଼ାର ବିକାଶ କ୍ଷେତ୍ରରେ ଯେପରି ସଚେତନତା ସୃଷ୍ଟି କରିଛି ଆକାଶବାଣୀ, ସେହିପରି ଜାତୀୟ ଓ ଆନ୍ତର୍ଜାତିକ କ୍ରୀଡ଼ା ଓ କ୍ରୀଡ଼ାବିତ୍‌ମାନଙ୍କ ସହିତ ପରିଚିତ ଓ ସମନ୍ୱିତ କରାଇବାରେ ଗୁରୁଦାୟିତ୍ୱ ବହନ କରିଛି । କ୍ରୀଡ଼ାର ଧାରାବିବରଣୀ ମାଧ୍ୟମରେ ବିଜନ ପାଲ, ଗୋପାଳ ଚୌଧୁରୀ, ପ୍ରମୁଖ ଏହି ଧାରାର ସମୃଦ୍ଧିରେ ପଥ ପ୍ରଦର୍ଶକ ହୋଇଛନ୍ତି ।

ଚଳନ୍ତି ଘଟଣାବଳୀର ସାର୍ଥକ ବ୍ୟଞ୍ଜନା ମାଧ୍ୟମରେ ୬ ସୁରେନ ମହାନ୍ତି ଓ ବିଜୟକେତନ ମଙ୍ଗରାଜ ଏକ ସ୍ୱତନ୍ତ୍ର ଶୈଳୀର ଉପଯୋଗ କରି ଜନଚେତନା ଜାଗରିତ କରିଥିଲେ । ସୁରେନ ମହାନ୍ତିଙ୍କ 'ନକହିଲେ ଭଲ', ବିଜୟକେତନ ମଙ୍ଗରାଜଙ୍କର ଆଜିର ପ୍ରସଙ୍ଗ' ଓ ପରେ ପରେ ଡଃ ବ୍ରଜମୋହନ ମହାନ୍ତିଙ୍କ 'ଆମରି କଥା' ଶୀର୍ଷକରେ

ପ୍ରସାରିତ ବ୍ୟଞ୍ଜନାଧର୍ମୀ ବାର୍ତ୍ତାଗୁଡ଼ିକ ଜନଚେତନାର ଧାରାରେ ଇତିହାସ ପାଲଟି ଯାଇଛି ।

ମନୀଷୀ ପଣ୍ଡିତ ନୀଳକଣ୍ଠ ଦାଶଙ୍କ ଲିଖିତ ବେତାର ଆଲୋଚନାଗୁଡ଼ିକ ପରବର୍ତ୍ତୀ କାଳରେ ମୁଦ୍ରିତ ଓ ସଂକଳିତ ହୋଇ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଇତିହାସକୁ ସମୃଦ୍ଧି କରିଛି । କବି ମାୟାଧର ମାନସିଂହଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ' ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ 'ଓଡ଼ିଶାର ଇତିହାସ' ପୁସ୍ତକ ପାଇଁ ସେମାନଙ୍କ ପ୍ରଦତ୍ତ ବେତାର ଆଲୋଚନାଗୁଡ଼ିକ ଉପାଦାନ ଭାବରେ ବିନିଯୁକ୍ତ ହୋଇଛି ।

୧୯୬୫ ମସିହା ସେପ୍ଟେମ୍ବର ୨୪ ତାରିଖରେ ଆକାଶବାଣୀ କଟକ କେନ୍ଦ୍ରରୁ 'ସବୁଜ ସାହିତ୍ୟ' ଉପରେ ପ୍ରଥମ ଓ ପ୍ରାରମ୍ଭିକ ଦଳଗତ ଆଲୋଚନା ପ୍ରସାରିତ ହୁଏ । ଏଥିରେ ଅଂଶଗ୍ରହଣ କରନ୍ତି ସବୁଜ ପଞ୍ଚସଖା କବି ଅନ୍ନଦାଶଙ୍କର ରାୟ, କବି କାଳନ୍ଦୀ ଚରଣ ପାଣିଗ୍ରାହୀ, କବି ବୈକୁଣ୍ଠନାଥ ପଟ୍ଟନାୟକ, ଶରତଚନ୍ଦ୍ର ମୁଖାର୍ଜୀ ଓ ହରିହର ମହାପାତ୍ର । କହିବା ବାହୁଲ୍ୟ ଏହି ଆଲୋଚନାକୁ ଭିତ୍ତି କରିହିଁ ପରବର୍ତ୍ତୀ ସମୟରେ 'ସବୁଜ ଯୁଗ' ସମ୍ପର୍କିତ ଆଲୋଚନା ଆରମ୍ଭ ହୁଏ ଓ ପରିଣତି ସ୍ୱରୂପ ଓଡ଼ିଆ ସାହିତ୍ୟର ଇତିହାସରେ ସବୁଜ ଯୁଗ ନାମିତ ଓ ସ୍ଥାନିତ ହୁଏ । ଦୀର୍ଘ ୪୩ ବର୍ଷ ମଣିଷର ଜୀବନ ପାଇଁ ଖୁବ୍ ଦୀର୍ଘ ହେଲେ ମଧ୍ୟ ଗୋଟିଏ ଅନୁଷ୍ଠାନ ପାଇଁ ଏ ବୟସ ସୀମା ଅତ୍ୟନ୍ତ ସ୍ୱଳ୍ପ ତଥାପି, ଏଇ ୪୩ ବର୍ଷର ଇତିହାସ ପର୍ଯ୍ୟାଲୋଚନା କଲେ ଆକାଶବାଣୀର ଗୁରୁତ୍ୱପୂର୍ଣ୍ଣ ଭୂମିକା ସମ୍ପର୍କିତ ଅନେକ ପ୍ରସଙ୍ଗ ଆଖି ଆଗକୁ ଆସିବ । ମାତ୍ର ତା'ର ବିଶଦ ବିବରଣୀ ଦେବାର ଅବସର ଏଠାରେ ନାହିଁ । ଓଡ଼ିଶାର ସାମାଜିକ, ସାହିତ୍ୟିକ, ସାଂସ୍କୃତିକ, ରାଜନୈତିକ ଶୈଳ୍ପିକ ଓ ଅର୍ଥନୈତିକ ବିକାଶ କ୍ଷେତ୍ରରେ କଟକ ଆକାଶବାଣୀର ଭୂମିକା ଯେ କେତେ ଗୁରୁତ୍ୱପୂର୍ଣ୍ଣ ତାହା ସାମାନ୍ୟ ଭାବରେ ସୂଚାଇ ଦେବା ପାଇଁ ହିଁ ଏ ଆଲୋଚନାର ଉପାଦ୍‌ଘାତ ।

ଦୀର୍ଘ ୪୩ ବର୍ଷ ମଧ୍ୟରେ ଆକାଶବାଣୀ ବହୁ କଳାକାର, କବି, ଲେଖକ, ଶିଳ୍ପୀ, ଶିକ୍ଷାବିତ୍ ଓ ସଚେତନ ବୁଦ୍ଧିଜୀବୀଙ୍କୁ ସୃଷ୍ଟି କରିଛି ଓ ପ୍ରତିଷ୍ଠା ଦେଇଛି ।

ବିଗତ ବର୍ଷମାନଙ୍କରେ ବହୁ ଅଭିଜ୍ଞ କାର୍ଯ୍ୟକ୍ରମ ପ୍ରଯୋଜକ ଓ ପ୍ରସ୍ତୁତକାରୀ ନାଟକ, ରୂପକ, ସଙ୍ଗୀତ, ପ୍ରଯୋଜନା କରି ଜାତୀୟସ୍ତରରେ ଆକାଶବାଣୀର ବାର୍ଷିକ ପ୍ରତିଯୋଗିତାରେ ପୁରସ୍କୃତ ହୋଇ ରାଷ୍ଟ୍ରୀୟସ୍ତରରେ ଓଡ଼ିଶାର ଗୌରବକୁ ବୃଦ୍ଧି କରିଛନ୍ତି ।

ଓଡ଼ିଶାର ବିଲୁପ୍ତ ପ୍ରାୟ ସାପୁଆକେଳା ସମ୍ପ୍ରଦାୟଙ୍କ ଜୀବନଧାରା ଓ ଜୀବନଚର୍ଯ୍ୟା ଉପରେ ଏକ ତଥ୍ୟଭିତ୍ତିକ ରୂପକ 'ପଦ୍ମରେ ନଲାଗିବ ପଙ୍କ' ରଚନା ଓ ପ୍ରଯୋଜନା କରି ଏହି ଆଲୋଚନାର ଲେଖକ ଗତବର୍ଷ ଆକାଶବାଣୀର ବାର୍ଷିକ

ପ୍ରତିଯୋଗିତା ୧୨ରେ ଜାତୀୟସ୍ତରରେ ପୁରସ୍କୃତ ହୋଇ କଟକ କେନ୍ଦ୍ରର ଗୌରବ ବୃଦ୍ଧିରେ ସହାୟକ ହୋଇ ପାରିଛି ।

'ବହୁଜନ ହିତାୟ' 'ବହୁଜନ ସୁଖାୟ'ର ଅଙ୍ଗୀକାର ନେଇ ଆକାଶବାଣୀ ଆଗାମୀ ବର୍ଷମାନଙ୍କରେ ତା'ର ଭୂମିକାକୁ ଅଧିକ ବ୍ୟାପକ କରି ଶକ୍ତି ଓ ସାମର୍ଥ୍ୟର ବିନିଯୋଗ ଦ୍ୱାରା ରାଜ୍ୟ ଓ ରାଷ୍ଟ୍ରର ସାମୂହିକ ବିକାଶ ଦିଗରେ ଉଲ୍ଲେଖନୀୟ ଯୋଗଦାନ ଦେବାର ଆଶା ସମସ୍ତଙ୍କର ରହିଛି ।

ତେବେ, ପରିଶେଷରେ ଗୋଟିଏ ଦିଗ ପ୍ରତି ସାମାନ୍ୟ ଦୃଷ୍ଟିପାତ କରିବାର ଆବଶ୍ୟକତା ରହିଛି । ବିଂଶ ଶତାବ୍ଦୀର ଏ ଦଶନ୍ଧି ବେଳକୁ ଇଲେକ୍‌ଟ୍ରୋନିକ ମେଡ଼ିଆର ପ୍ରଭାବ ଅଧିକ ହୋଇଥିବାରୁ ପ୍ରିଣ୍ଟିଂ ମେଡ଼ିଆ ସହିତ ଏହାର ଏକ ଶୀତଳ ଯୁଦ୍ଧ ଆରମ୍ଭ ହୋଇଛି ବୋଲି କେହି କେହି ମନ୍ତବ୍ୟ ଦେଉଛନ୍ତି । ସେହିପରି ଦୂରଦର୍ଶନର ଦୃଶ୍ୟ ମାଧ୍ୟମ ଅଧିକ ଆମୋଦଦାୟୀ ଓ ଆକର୍ଷଣୀୟ ହୋଇଥିବାରୁ ଦର୍ଶକମାନଙ୍କର ରୁଚି ଓ ଦୃଷ୍ଟି ବେତାରବିମୁଖୀ ହେଉଛି ବୋଲି ମଧ୍ୟ ମନ୍ତବ୍ୟ ଉଠୁଛି । ଦୂରଦର୍ଶନ ସହିତ ଶୀତଳ ସଂଘର୍ଷ ମଧ୍ୟରେ ବେତାରକୁ ତିଷ୍ଠି ରହିବା ପାଇଁ ସଂଗ୍ରାମର ଆହ୍ୱାନ ମଧ୍ୟ ଦିଆଯାଇଛି ।

ମାତ୍ର ଏ ପ୍ରସଙ୍ଗରେ ଗୋଟିଏ କଥା ସ୍ପଷ୍ଟ କରି ଦିଆଯାଇପାରେ, ଆପାତତଃ ଏହା ସଂଘର୍ଷପରି ବୋଧ ହେଉଥିଲେ ହେଁ ବାସ୍ତବ କ୍ଷେତ୍ରରେ ଟି.ଭି. ରେଡ଼ିଓ ବା ପ୍ରିଣ୍ଟିଂ ମେଡ଼ିଆ ଓ ଇଲେକ୍‌ଟ୍ରୋନିକ୍ ମେଡ଼ିଆ ମଧ୍ୟରେ କୌଣସି ବାସ୍ତବ ସଂଘର୍ଷ ନାହିଁ ବରଂ ସଂହତି ପୂର୍ଣ୍ଣ ସହାବସ୍ଥାନ ରହିଛି ।

ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ ଭାବରେ ସମ୍ବାଦପତ୍ର ଯେପରି ନିଜର ମୌଳିକ ଶୈଳୀରେ ଦାୟିତ୍ୱ ପାଳନ କରୁଛି, ସତ୍ୟ, ଶିବ ଓ ସୁନ୍ଦରର ପ୍ରତିଷ୍ଠା ପାଇଁ ଆଭିମୁଖ୍ୟ ବହନ କରି ଦୂରଦର୍ଶନ ନିଜ ପରିସରରେ ଓ 'ବହୁଜନ ସୁଖାୟ ଓ ବହୁଜନ ହିତାୟ'ର ଲକ୍ଷ୍ୟ ନେଇ ବେତାର ତା'ର କର୍ତ୍ତବ୍ୟ ସମ୍ପାଦନ କରୁଛି ।

ଭବିଷ୍ୟତରେ ଆଧୁନିକତା ଓ ବିଜ୍ଞାନର ଜଗତରେ ଯେତେ ପରିବର୍ତ୍ତନ ଆସିଲେ ମଧ୍ୟ ଚିନ୍ତା ଚେତନାରେ ଯେତେ ଆଲୋଡ଼ନ ସୃଷ୍ଟି ହେଲେ ମଧ୍ୟ, ଗଣମାଧ୍ୟମଗୁଡ଼ିକ ମଧ୍ୟରେ ଆଭ୍ୟନ୍ତରୀଣ ସଂଘର୍ଷ ବା ସଙ୍କଟର ଆଶଙ୍କା ଭିତ୍ତିହୀନ । କୌଣସି ଗଣମାଧ୍ୟମ ମଧ୍ୟ ନିଜର ସ୍ଥିତି ହରାଇ ବସିବାର ପ୍ରଶ୍ନ ଅମୂଳକ । ବରଂ ଏଗୁଡ଼ିକ ଅଧିକ ଦକ୍ଷ, ଅଧିକ ସମର୍ଥ ଓ ଅଧିକ ଦାୟିତ୍ୱବାନ ଭାବରେ ଓ ସଂହତିପୂର୍ଣ୍ଣ ଭାବରେ ରାଷ୍ଟ୍ରର ସାମୂହିକ ପ୍ରଗତିର ନିୟାମକ ଓ ସହାୟକ ହେଉଛନ୍ତି ଓ ହେବେ ।



# କଟକୀ ଭାଷାର ସ୍ୱରୂପ

**ଡଃ ଶ୍ୟାମସୁନ୍ଦର ମିଶ୍ର**

ଉତ୍କଳ ଓଡ଼ିଶାର ମଧ୍ୟାଞ୍ଚଳରେ ଥିବା କଟକ ନଗରର ଭୌଗୋଳିକ ସ୍ଥିତି ବଡ଼ ବିଚିତ୍ର । ମହାନଦୀ ତ୍ରିକୋଣ ଭୂମିର ଶୀର୍ଷ ବିନ୍ଦୁରେ ଥିବା ଏହି ନଗରର ତିନି ପାଖରେ ମହାନଦୀ ଓ ତାହାର ଶାଖା ନଦୀମାନେ ବହୁ ଦୂରବ୍ୟାପୀ ସେମାନଙ୍କର ପ୍ରସାର କରି ଏହାକୁ କୋଳେଇ ଧରିଛନ୍ତି । ଏହାର ପଶ୍ଚିମ ଦିଗରେ ପୂର୍ବ-ଘାଟର କଙ୍କରିଳ ପର୍ବତମାଳା ଓ ପୂର୍ବପଟେ ସମୁଦ୍ରବ୍ୟାପୀ ଦୀର୍ଘ ସମତଳ ସବୁଜ ଶସ୍ୟକ୍ଷେତ୍ର ।

ଭୂଗୋଳ ପରି ଏହାର ଇତିହାସ ମଧ୍ୟ ଅତ୍ୟନ୍ତ ରୋମାଞ୍ଚକର । କଟକର ଆୟୁ ନିର୍ଣ୍ଣୟ କରିବା ଅବଶ୍ୟ ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ, ତେବେ ମାଦଳାପାଞ୍ଜିର ବର୍ଣ୍ଣନା ଅନୁଯାୟୀ ଆଜକୁ ପ୍ରାୟ ହଜାର ବର୍ଷ ତଳେ ଯେତେବେଳେ ଗଙ୍ଗବଂଶ ରାଜା ଚଉଦ୍ୱାରରୁ କଟକକୁ ରାଜଧାନୀ ଘୁଞ୍ଚାଇ ଆଣିଲେ, ସେତେବେଳେ ମହାନଦୀର ଏହି ଦକ୍ଷିଣପଟ ଅଞ୍ଚଳକୁ 'କୋଦଣ୍ଡା ଦଣ୍ଡପାଟ' କୁହାଯାଉଥିଲା ଏବଂ ବିଶ୍ୱେଶ୍ୱର ନାମରେ ଏକ ପ୍ରସିଦ୍ଧ ଶୈବ ପୀଠ ଏଠାରେ ଥିଲା । 'କୋଦଣ୍ଡା'ର ଅର୍ଥ ସମ୍ଭବତଃ ଗୋଚର ଭୂମି ଏବଂ 'ଦଣ୍ଡପାଟ' ସେ ସମୟର ରେଭେନ୍ୟୁ ପ୍ରଶାସନିକ ଅଞ୍ଚଳ । ବୋଧହୁଏ ଏଠାରେ ଏକ ଶୈବପୀଠ ଥିବାରୁ ରାଜା ଅନଙ୍ଗଭୀମ ଏହି ଅଞ୍ଚଳର ନାମ ଦେଲେ ଅଭିନବ ବାରଣସୀ କଟକ । 'ବାରଣସୀ' ଅପଭ୍ରଂଶରେ 'ବିଡ଼ାନାସୀ' ହେବା ଭାଷା ବିଜ୍ଞାନସମ୍ମତ । ତାପରେ ଶବ୍ଦ ଆକାର ସଂକ୍ଷିପ୍ତ ହୋଇ କେବଳ କଟକ ହେଲା । କଟକର ପଶ୍ଚିମ ଦିଗକୁ ଏକ ଗ୍ରାମର ନାମ ବିଡ଼ାନାସୀ ରହିଗଲା ।

କଟକ ଯେତେବେଳେ ଓଡ଼ିଶାର ରାଜଧାନୀର ରୂପ ଗ୍ରହଣ କଲା, ସେତେବେଳେ ଏଠାରେ ପ୍ରଚଳିତ ଭାଷା କଅଣ ଥିଲା ତାହା କଳନା କରିବା କଷ୍ଟ—ସମ୍ଭବତଃ ବୌଦ୍ଧଗାନ ଭାଷାର ପରବର୍ତ୍ତୀ ଗଦ୍ୟ ରୂପ କିଛି । ସଂସ୍କୃତ ଓ ସଦ୍ୟ ଦକ୍ଷିଣରୁ ଆଗତ ଗଙ୍ଗବଂଶୀୟ ରାଜାଙ୍କ କେତେକ ତେଲୁଗୁ ଦାନପତ୍ର ଛଡ଼ା ଏ ସମୟର ଅନ୍ୟ କିଛି ଲିଖିତ ଗଦ୍ୟର ସ୍ୱରୂପ ଏବେ ମଧ୍ୟ ମିଳିନାହିଁ ।

ଗଙ୍ଗବଂଶର ରାଜତ୍ୱ ବେଳକୁ ଓଡ଼ିଶାର ସୀମା ଦ୍ରୁତଗତିରେ ବଢ଼ିବାକୁ ଲାଗିଲା । ସାମ୍ରାଜ୍ୟର ବିଭିନ୍ନ ଅଂଶରୁ ଭିନ୍ନ ଭିନ୍ନ ଭାଷାଭାଷୀ ଲୋକେ ରାଜଧାନୀ କଟକକୁ ଆସିଲେ ବିଭିନ୍ନ କର୍ମ ଉପଲକ୍ଷେ । ହୁଏତ ସେଇମାନଙ୍କ ମିଳିତ ପ୍ରଭାବରୁ ପ୍ରାଚୀନ ଉଡ୍ରଦେଶଭାଷାରୁ ଆଧୁନିକ ଓଡ଼ିଆ ଭାଷାର ସମ୍ବର୍ଦ୍ଧନ ହୋଇଲା ଏବଂ ତା ସଙ୍ଗେ ସଙ୍ଗେ ସୃଷ୍ଟି ହୋଇଲା କଟକ ନଗରର ଭାଷାର କାଞ୍ଚନ୍ ବୈଶିଷ୍ଟ୍ୟ ।

ଉତ୍ତର ଭାରତରେ, ବିଶେଷ କରି ଓଡ଼ିଶାର ଉତ୍ତର ସୀମାରେ ମୁସଲମାନ ଶାସନ ପ୍ରତିଷ୍ଠିତ ହେବାପରେ ସେମାନେ ଓଡ଼ିଶା ଅଧିକାର କରିବାପାଇଁ ବାରମ୍ବାର ଉଦ୍ୟମ କଲେ । ଏହି ଉଦ୍ୟମ ବାରମ୍ବାର ପ୍ରତିହତ ହେଲେ ମଧ୍ୟ ସେହି ସମୟ ମଧ୍ୟରେ ଯାବନିକ ଭାଷାର ପ୍ରଭାବ ଉତ୍ତର ଓଡ଼ିଶାରେ ପଡ଼ୁଥିଲା । ସମଗ୍ର ଓଡ଼ିଶାର ରାଜନୀତିକ ପ୍ରାଣକେନ୍ଦ୍ର ରୂପେ କଟକ ମଧ୍ୟ ସେ ପ୍ରଭାବରୁ ମୁକ୍ତ ରହିବା ସମ୍ଭବ ନଥିଲା । ଏହାଛଡ଼ା ଦକ୍ଷିଣରୁ କନ୍ନଡ଼ ତେଲୁଗୁ ପ୍ରଭାବ ମଧ୍ୟ ଗଙ୍ଗବଂଶର ରାଜତ୍ୱ ସମୟରୁ ଦକ୍ଷିଣ ଓଡ଼ିଶା ଓ କଟକ ଉପରେ ରହିବା ସ୍ୱାଭାବିକ । ସେ ସମୟରେ ସୁନାବ୍ୟା ମହାନଦୀ ପଥ ଦେଇ ଛତିଶଗଡ଼ ଓ ପଶ୍ଚିମ ଭାରତରୁ ବ୍ୟବସାୟୀମାନେ କଟକ ଆସୁଥିଲେ । ତା'ଛଡ଼ା ଉତ୍ତର ଓ ପଶ୍ଚିମ ଅଞ୍ଚଳରୁ ଜଗନ୍ନାଥ ଧାମକୁ ଆସୁଥିବା ଲକ୍ଷ ଲକ୍ଷ ତୀର୍ଥଯାତ୍ରୀଙ୍କ ପାଇଁ ଶ୍ରୀକ୍ଷେତ୍ରକୁ ପ୍ରବେଶର ପଥ ଥିଲା କଟକ । ତେଣୁ ସେସବୁ ଅଞ୍ଚଳର ଭାଷାର ପ୍ରଭାବ ମଧ୍ୟ କଟକ ନଗରବାସୀଙ୍କ ଉପରେ ପଡ଼ୁଥିଲା । ଜଗନ୍ନାଥ ଯେପରି ଭାରତ ଭୂମିରୁ ସୃଷ୍ଟ ସବୁ ଆଧ୍ୟାତ୍ମିକ ମତବାଦର ମିଳିତ ପ୍ରତୀକ, ଓଡ଼ିଶା ସେପରି ଉତ୍ତର ଓ ଦକ୍ଷିଣ ଭାରତୀୟ ସଂସ୍କୃତିର ମିଳନ ପୀଠ । କଟକ ସେହିପରି ଅତି ପ୍ରାଚୀନକାଳରୁ ବିଭିନ୍ନ ଭାଷାଭାଷୀଙ୍କ ସମନ୍ୱିତ ପ୍ରଭାବର କ୍ଷେତ୍ର ହୋଇ ଆସିଛି ।

କଟକ ନଗରର କଥିତ ଭାଷା ଆଉ ଏକ ନୂଆ ରୂପ ଧାରଣ କଲା ଯେତେବେଳେ ଷୋଡ଼ଶ ଶତକର ମଧ୍ୟଭାଗରେ ମୁସଲମାନମାନେ କଟକ ଅଧିକାର କଲେ । ଓଡ଼ିଶାର ରାଜା ଖୋର୍ଦ୍ଧାରେ ଆଶ୍ରୟ ନେଲେ । ଖୋର୍ଦ୍ଧାର ଦକ୍ଷିଣକୁ ସୀମାଚଳ ପର୍ଯ୍ୟନ୍ତ ଅଞ୍ଚଳକୁ କୁହାଗଲା ଓଡ଼ିଶା । ଉତ୍ତର ଓଡ଼ିଶାର ନାମ ହେଲା ମୋଗଲବନ୍ଦୀ ଏବଂ ଏହାର ଶାସନ କେନ୍ଦ୍ର ହେଲା କଟକ । ମୁସଲମାନ ଶାସକ ଓ ସୈନ୍ୟମାନେ ଏଠାରେ ଅବସ୍ଥାନ କଲେ । ମୁସଲମାନ ନାମକରଣ ଥାଇ କେତେକ ବସ୍ତି ମଧ୍ୟ ସେମାନେ ଗଢ଼ିଲେ ଯଥା—ମେହେନ୍ଦି ପୀର, ଶେଖ ବଜାର, ମହମଦିଆ ବଜାର, ବାଖରାବାଦ ଅଲିସା ବଜାର, ଆଜମଖାଁ ବଜାର ଇତ୍ୟାଦି । ଏହାଛଡ଼ା ବିଭିନ୍ନ ମସଜିଦ୍, କଦମ-ରସୁଲ, ଇଦଗା ଓ କବରସ୍ଥାନ ପ୍ରଭୃତି ଇସଲାମି ସଂସ୍କୃତି ଓ ଧର୍ମର ପୀଠମାନ ପ୍ରତିଷ୍ଠିତ ହେଲା । ଇଦ, ମହରମ ପ୍ରଭୃତି ଉତ୍ସବ ପାଳିତ ହେଲା ଓ ସର୍ବୋପରି ପାରସି ରାଜଭାଷାରେ ପରିଣତ ହେଲା । ଶାସନ କ୍ଷେତ୍ରରେ କାମ କରୁଥିବା ପ୍ରତ୍ୟେକ ବ୍ୟକ୍ତିକୁ ଆରବୀ, ପାରଶୀ ପ୍ରଭୃତି ଭାଷା ସହିତ ଘନିଷ୍ଠ ସଂସ୍ପର୍କରେ ଆସିବାକୁ ପଡ଼ିଲା ।

ସେତିକି ବେଳଠାରୁ କେବଳ ଯେ ଓଡ଼ିଆ ଭାଷାରେ ଅନେକ ଯାବନିକ ଶବ୍ଦର ପ୍ରବେଶ ହେଲା ତାହା ନୁହେଁ; କଟକୀ ଓଡ଼ିଆ ଉଚ୍ଚାରଣ ରୀତି ମଧ୍ୟ ଉର୍ଦ୍ଦୁ ଦ୍ୱାରା ପ୍ରଭାବିତ ହେଲା ।

କ୍ରମେ ନଗରର ଅଭିବୃଦ୍ଧି ସାଙ୍ଗକୁ ନିର୍ମାଣ କାର୍ଯ୍ୟରେ ସହଯୋଗ କରିବା ପାଇଁ ବିଭିନ୍ନ ଅଞ୍ଚଳରୁ ଶ୍ରମିକ ଓ କାରିଗରମାନେ ଏଠାରେ ଜମା ହେବାକୁ ଲାଗିଲେ । ସେମାନେ ମଧ୍ୟ ବିଭିନ୍ନ ସାହି ଓ ବସ୍ତି ଗଢ଼ିଲେ । ଏମାନେ ଥିଲେ ମୁଖ୍ୟତଃ ଅଶିକ୍ଷିତ ବା ଅଳ୍ପଶିକ୍ଷିତ ତେଣୁ ମୁସଲମାନ ଶାସକ ବା କର୍ମଚାରୀମାନଙ୍କ ଭାଷାଦ୍ୱାରା ପ୍ରଭାବିତ ହେବା ଅତି ସ୍ୱାଭାବିକ ଥିଲା ।

ଇଂରେଜମାନେ ଓଡ଼ିଶା ଆସିବା ପୂର୍ବରୁ କଟକ ଓ ତାହାର ଆଖପାଖ ଅଞ୍ଚଳ କେତେ ଦଶନ୍ଧିକାଳ ମରହଟ୍ଟାମାନଙ୍କ ଶାସନାଧୀନ ଥିଲା । ଶାସନର ପରିବର୍ତ୍ତନ ହେଲେ ମଧ୍ୟ ପ୍ରଶାସନୀୟ ଭାଷାର କିଛି ପରିବର୍ତ୍ତନ ହେଲାନାହିଁ । ସାଧାରଣ ଜନତା ଉପରେ ଏ ସମୟରେ ମଧ୍ୟ ଆରବୀ ଓ ପାରଶୀ ଭାଷାର ପ୍ରଭାବ କେତେ ଥିଲା ତାହା ଏହି ସମୟରେ ଲିଖିତ 'ସମରତରଙ୍ଗ' ନାମକ କାବ୍ୟରେ ବ୍ୟବହୃତ ଭାଷାରୁ ଜଣାପଡ଼େ । କବି ବ୍ରଜନାଥ ଅନ୍ୟାନ୍ୟ ରୀତିଯୁଗୀୟ କବିମାନଙ୍କ ପରି ଭାବଗମ୍ଭୀର, ସଂସ୍କୃତାନୁସାରୀ, ପାଣ୍ଡିତ୍ୟପୂର୍ଣ୍ଣ କାବ୍ୟକବିତା ଅନେକ ରଚନା କରିଥିଲେ ମଧ୍ୟ କଟକର ମରହଟ୍ଟା ଶାସକ ରାଜାରାମ ପଣ୍ଡିତ ଓ ଢେଙ୍କାନାଳ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କ ମଧ୍ୟରେ ଯୁଦ୍ଧ ବର୍ଣ୍ଣନା ଭିତ୍ତିକ ଏହି କାବ୍ୟର ଅନେକ କ୍ଷେତ୍ରରେ ଲୋକ ପ୍ରଚଳିତ ଭାଷାର ପ୍ରୟୋଗ କରିଛନ୍ତି । ଯଥା—

"ଯାର ଫଉଜ ହେଲେ ତିଆର          ମୁସଦ୍ଦିମୁସା ହେଲେ ବାହାର
ପାଗା ସୁଆର କି ସରଦାର କି ଜମାଦାର ଯେ
ଯେ ଯାହା ମୁରଚିମା ସମ୍ଭାର          ଦୌଲତ ଦେଇ ହେଲେ ହାଜର
ମଜୁରି କରି ହୁକୁମ ପାଇଯାନ୍ତି ସତ୍ୱର ଯେ ।"

ଏଠାରେ ମୁସଦ୍ଦି, ମୁରଚିମା, ଦୌଲତ ପ୍ରଭୃତି ଶବ୍ଦ ଆରବୀ ବା ସେଥିରୁ ଅପଭ୍ରଂଶ ହୋଇଥିବା ବେଳେ ସୁଆର, ସରଦାର, ମଜୁରି ହୁକୁମ ପ୍ରଭୃତି ପାର୍ଶି ଭାଷାରୁ ଆଗତ । ହୁଏତ ଏହା ସାହିତ୍ୟର ଭାଷା ବା କୁଳୀନ ଭାଷାଠାରୁ ଅଲଗା ଥିଲା କିନ୍ତୁ ଥିଲା ସାହିର ବା ବସ୍ତିର ଭାଷା ।

ତାପରେ ଓଡ଼ିଶା ଇଂରେଜ ଅଧୀନକୁ ଗଲା । ଇଂରେଜ ଶାସନରେ ମଧ୍ୟ କିଛି କାଳ ପାରଶୀରେ ଶାସନ କାର୍ଯ୍ୟ ଚାଲିଲା । ପରେ ଇଂରେଜୀ ଭାଷାର ଆଗମନ ହେଲା କିନ୍ତୁ କଟକର ବସ୍ତି ଜୀବନରେ ଯାବନିକ ଭାଷାର ପ୍ରଭାବ ଚିରସ୍ଥାୟୀ ହୋଇ ରହିଗଲା । ବସ୍ତି ଜୀବନକୁ ଆଶ୍ରୟ କରି ଯେଉଁ ଅନୁଷ୍ଠାନମାନ ଗଢ଼ିଉଠିଲା ସେଥିରେ ବିଭିନ୍ନ ଜାତି, ଗୋଷ୍ଠୀ ଓ ଭାଷା ଭାଷୀର ଲୋକେ ମିଳିତ ହୋଇଥିଲେ । ସେଇମାନଙ୍କ

କଥାବାର୍ତ୍ତା ମଧ୍ୟରୁ ସୃଷ୍ଟି ହେଉଥିଲା ନୂତନ ଶବ୍ଦ ଓ ଉଚ୍ଚାରଣ ଭଙ୍ଗୀ । ପ୍ରତି ସାହିରେ ଥିବା ଆଖଡ଼ାଶାଳରେ, ମଦଖଟିରେ, ଉତ୍ସବମାନଙ୍କରେ ବା ସାହି ସଂଘର୍ଷ ମଧ୍ୟରୁ ଅନେକ କଟକୀ ଶବ୍ଦର ସୃଷ୍ଟି ହେଲା । ଯାହାର ଅନେକ ରୂପ ଫତୁରାନନ୍ଦଙ୍କ ବିଭିନ୍ନ ଲେଖାରେ ପାଉ, ଯଥା—ଫୁଲକା (କୁସ୍ତି ପାଇଁ ତିଆରି ନରମ ମାଟିର ବେଦିକା), ଗୁଗୁରପେଞ୍ଚ, ଧୋବେଇ ଫଟ୍, ପଟ୍‌କଣ (କୁସ୍ତିର ବିଭିନ୍ନ କୌଶଳ), ଅଲବତ୍ ବାଙ୍କା (ଅତ୍ୟନ୍ତ ଅସୁଖୀ), କୋଦଣ୍ଡା ନଶାପ (ଅସୁଖୀମଣା ବରୁର), ଭଣ୍ଡୁର ଭୋଗ ଇତ୍ୟାଦି ।

କଟକ ଓ ଆଖପାଖ ଅଞ୍ଚଳରେ ବରୁର ଓ ସେଟଲମେଣ୍ଟ ବିଭାଗରେ ଏ ପର୍ଯ୍ୟନ୍ତ ମଧ୍ୟ ପାରଶୀ ଓ ଆରବୀ ଶବ୍ଦ ପ୍ରୟୋଗର ଅଖଣ୍ଡ ପ୍ରତିପତ୍ତି ରହିଛି । ନଗରର ଚତୁର ବ୍ୟକ୍ତିମାନେ ନଗର ଓ ଗ୍ରାମର ସରଳ ଲୋକମାନଙ୍କ ଠାରେ ଏହିସବୁ ଶବ୍ଦର କୌଶଳପୂର୍ଣ୍ଣ ପ୍ରୟୋଗ କରି ଭଲ ଅର୍ଥ ଉପାର୍ଜନ କରନ୍ତି ଏବଂ ଏହି ବିଭାଗଗୁଡ଼ିକର ବିଜ୍ଞ କର୍ମଚାରୀଗଣ ଏସବୁ ଦୁର୍ବୋଧ ଶବ୍ଦାବଳୀ ଦ୍ୱାରା ବିଭାଗର ଗୌରବ ସୁରକ୍ଷିତ ବୋଲି ମନେକରି ସେଗୁଡ଼ିକର ବ୍ୟାପକ ବ୍ୟବହାର ଏପର୍ଯ୍ୟନ୍ତ କରୁଛନ୍ତି ଓ ସେ ସବୁର ପରିବର୍ତ୍ତନ କରିବାକୁ ପ୍ରସ୍ତୁତ ନୁହନ୍ତି ।

କଟକ ନଗର ବର୍ଷର ଅଧିକାଂଶ ସମୟରେ ଉତ୍ସବ ମୁଖର । ପୂଜା, ଶୋଭାଯାତ୍ରା, ମେଲଣ ପ୍ରଭୃତି ଜାକଜମକରେ ଅନୁଷ୍ଠିତ ହୁଏ । ସେହି ସମ୍ପର୍କୀୟ ଯେଉଁ କେତେକ ବସ୍ତୁ ବା କାର୍ଯ୍ୟର ନାମ ଶୁଣାଯାଏ ସେଗୁଡ଼ିକ ହେଲା, ରୋଷଣି, ବନାଟି, ମଶାଲ, ମହତାପ୍, ଆତସବାଜି, ହାଟବେଲୀ, ଅନାର ଇତ୍ୟାଦି । ବିଶେଷ କରି ଦଶହରା, କାଳୀପୂଜା, ମହରମ୍, ଭାଲୁକୁଣୀ, କାର୍ତ୍ତିକେଶ୍ୱର ପୂଜା ଓ ଭସାଣି ବେଳେ ଏହିପରି ବହୁ ଶବ୍ଦ ଆପେ ଆପେ ଜନତା ମଧ୍ୟରୁ ସୃଷ୍ଟି ହୁଏ । ଉତ୍ସବର ଉତ୍ତେଜନା ମଧ୍ୟରେ ସେଠାରେ ମଣିଷ ଓ ଦେବତା ମଧ୍ୟରେ ପାର୍ଥକ୍ୟ ଦୂର ହୋଇଯାଏ । ଦେବଦେବୀ ସାଧାରଣ ମାନବସ୍ତରକୁ ଓହ୍ଲାଇ ଆସି ଜନତା ସହ ମିଶି ଯାଆନ୍ତି । କଟକର ପଶ୍ଚିମ ଭାଗରେ ଭାଲୁକୁଣୀ ମେଲଣରେ ମୁହାଁମୁହିଁ ହୋଇଥିବା ଦୁଇଦଳ ପରସ୍ପରକୁ ଆକ୍ଷେପ କରି ଗୀତ ଗାଆନ୍ତି—

"ଆମ ଭାଲୁକୁଣୀ ଖାଉଚି ମୁଢ଼ି
ତୁମ ଭାଲୁକୁଣୀ ଧୋକଡ଼ ବୁଢ଼ୀ
ଆମ ଭାଲୁକୁଣୀ ନାଇଚି ଚୁଡ଼ି
ତୁମ ଭାଲୁକୁଣୀ........"

ବେଳେ ବେଳେ ଏହି ମେଲଣମାନଙ୍କରେ ଉତ୍ତେଜନା ବଢ଼ିଯାଇ 'ବୋଲୁଅ' ବା 'ଅସମାନ ଗୋଳି' ଚାଲେ ଏବଂ ବହୁ ଲୋକ 'ଘାଇଲ' ବା 'ଖୁନ୍‌ଖରାପ' ହୁଅନ୍ତି ।

ସମ୍ଭବତଃ ଉର୍ଦ୍ଦୁ ଓ ହିନ୍ଦୁସ୍ଥାନୀ ପ୍ରଭାବରେ କଟକୀ ଭାଷାର ଉଚ୍ଚାରଣ କିଛି ପ୍ରଭାବିତ ହୋଇଛି । ଶବ୍ଦର ଶେଷରେ ଏପରିକି ମଝିରେ ମଧ୍ୟ ସ୍ୱରର ବିଲୋପ ଘଟି

ହଲନ୍ତ ହୋଇଯିବା ଯଥା—କୈଳାସ୍, ବନ୍ଧୁଗଣ୍, ଜୀବନ୍, ପବନ୍ ଇତ୍ୟାଦି । ସମାଜର ନିମ୍ନ ସ୍ତରରେ ଥିବା କେତେକ ନିରକ୍ଷର ବ୍ୟକ୍ତି 'ଲ' କୁ 'ର' ଉଚ୍ଚାରଣ କରନ୍ତି ଯଥା—'ଗୃଭର', 'ନେଭର' ଇତ୍ୟାଦି । ପୁଣି ହାଲକା ଭାବରେ କଥାବାର୍ତ୍ତା କରିବା ବେଳେ କେତେକ ବ୍ୟକ୍ତି 'ଲ' ସ୍ଥାନରେ 'ନ' ଓ 'ନ' ସ୍ଥାନରେ 'ଲ' ଉଚ୍ଚାରଣ କରିଥାନ୍ତି, ଯଥା—

| ପ୍ରକୃତ ଶବ୍ଦ | ଉଚ୍ଚାରିତ ଶବ୍ଦ |
|---|---|
| ନଡ଼ିଆ | ଲଡ଼ିଆ |
| ନସ୍ୱାନା | ଲସ୍ୱାନା |
| ଲଡ଼୍ | ନଡ଼୍ |
| ଲହୁଲୁହାଣ | ନହୁନୁହାଣ |
| ଲଢ଼େଇ | ନଢ଼େଇ |

ମାଲଗୋଦାମ, ଛକବଜାର ବା ଅନ୍ୟ ବିପଣୀ କେନ୍ଦ୍ରମାନଙ୍କରେ ମଧ୍ୟ ବ୍ୟବସାୟ ସଂପୃକ୍ତ କେତେକ ମୌଳିକ ଶବ୍ଦ ଓ ଭାଷା ବ୍ୟବହାର କରାଯାଇଥାଏ ଯଥା—ଘାଟତି, ଘଟିଆମାଲ, କୋଦିଆଚାଳ, ଅଉଲନମ୍ବର ଇତ୍ୟାଦି ।

ଓଡ଼ିଆ ଭାଷାର ବ୍ୟାକରଣ ନିୟମଠାରୁ ବସ୍ତିବାଲାଙ୍କ ବ୍ୟାକରଣ ସମୟ ସମୟେ ଭିନ୍ନ ଥାଏ । ଏକବଚନ ସ୍ଥାନରେ ବହୁବଚନ ଏବଂ ଅଛି ଓ ଥିଲି ସ୍ଥାନରେ ଅଛ, ଥିଲ ପ୍ରୟୋଗ କରାଯାଇଥାଏ, ଯଥା—ଆମେ ଦେଖିଛ, ଆମେ ଯାଇଥିଲ ।

ଇଂରେଜୀ ଭାଷାର ପ୍ରଭାବ ବିଶେଷ କରି କରି ଶ୍ରମଜୀବୀ, କାରିଗର ଓ ମିସ୍ତ୍ରୀ ମାନଙ୍କ ଉପରେ ଯେ ପଡ଼ିଛି ତାହା ସେମାନଙ୍କ ଦ୍ୱାରା ବ୍ୟବହୃତ କେତେକ ଇଂରାଜୀ ଅପଭ୍ରଂଶରୁ ଜଣାଯାଏ, ଯଥା—ପଲସ୍ତର (Plaster), ଲେବୁଲ (Lable) ଓଲମ୍ (oblong) ଚଇନ (chain) ଇତ୍ୟାଦି । ଏହାଛଡ଼ା ଗୁଡ଼ିଉଡ଼ା, ମେଣ୍ଢା ଲଢ଼େଇ, ଷଣ୍ଢ ଲଢ଼େଇ, ଦ୍ୟୁତକ୍ରୀଡ଼ା, ଫର୍ଗୋଡିନମଣ୍ଡଳୀ ପ୍ରତିଯୋଗିତା, ରାମଲୀଳା, ଜାତି ନିଶାପ, ସାହିକନ୍ଦଳ ଇତ୍ୟାଦି ଅସଂଖ୍ୟ ସ୍ଥଳରେ ଯେଉଁ ବିଶେଷ ଧରଣର ଭାଷା ଓ ଶବ୍ଦ ପ୍ରୟୋଗ କରାଯାଏ ସେସବୁ ପ୍ରଦର୍ଶନ ପାଇଁ ଏକ ସ୍ୱତନ୍ତ୍ର ଅଭିଧାନର ବ୍ୟାପକତା ଆବଶ୍ୟକ ।

ବସ୍ତି ମଧ୍ୟରେ ବ୍ୟକ୍ତିଗତ ବା ଗୋଷ୍ଠୀଗତ କଳହ ସମୟରେ ଯେଉଁ ବାକ୍ୟ ସବୁ ପ୍ରୟୋଗ କରାଯାଏ ସେସବୁ ଅଧିକାଂଶ ମୌଳିକ କହିଲେ । ସେଥିରୁ କିଛି ଶ୍ରାବ୍ୟ ଓ ଅଧିକାଂଶ ଅଶ୍ରାବ୍ୟ । କଳହରତ ଯୁବକମାନେ ମନେ କରନ୍ତି ଯେ ଏହିସବୁ ଅଶ୍ରାବ୍ୟ ଶବ୍ଦ ପ୍ରତିପକ୍ଷର ହୃଦୟକୁ ସଫଳଭାବେ ବିଦ୍ଧ କରିବ । କିନ୍ତୁ ଏହା ସବୁଠାରେ ସତ୍ୟ ନୁହେଁ । କେତେ ପ୍ରତିପକ୍ଷଙ୍କ କର୍ଣ୍ଣ ଓ ହୃଦୟ ଏସବୁ ବାକ୍ୟ ପାଇଁ ସମ୍ପୂର୍ଣ୍ଣ ଅଭ୍ୟସ୍ତ । ବରଂ ଏସବୁ ଶୁଣି ସେମାନେ ଦବି ନଯାଇ, ଅଧିକ ପ୍ରମତ୍ତ ହୋଇ ଏକାପରି ବାକ୍ୟ ଅସ୍ତ୍ର ପ୍ରୟୋଗ କରନ୍ତି । ତେବେ ଏହା ଠିକ୍ ଯେ ଏହି ଶବ୍ଦାବଳୀର ଉଚ୍ଚାରଣ ଦ୍ୱାରା

ସଂଗ୍ରାମୀମାନଙ୍କୁ ଅଧିକ ସମସ୍ୟ କଳହ କରିବା ପାଇଁ ଉଦ୍ଦୀପନା, ଉତ୍ସାହ ଓ ସାହସ ମିଳିଥାଏ ।

କଟକର ଆଦିମ ଅଧିବାସୀ ବସ୍ତି ବାଲାଙ୍କ ମଧ୍ୟରୁ ଶତକଡ଼ା ନବେଭାଗ ଶ୍ରମିକ ମିସ୍ତ୍ରୀ ଗ୍ଲେଟକାରିଗର, ଗ୍ଲେଟ ଦୋକାନୀ, ମୁନସିପାଲଟି କର୍ମଚାରୀ ଓ କିଛି ବେକାର ଯୁବକ, ସମସ୍ତେ ଦରିଦ୍ର ବା ନିମ୍ନ ମଧ୍ୟବିତ୍ତଶ୍ରେଣୀୟ । ତା'ଛଡ଼ା ଆଉ କିଛି ଉଚ୍ଚକୁଳର ସମ୍ଭ୍ରାନ୍ତବଂଶୀୟ ମଧ୍ୟ ବହୁକାଳରୁ ଏଠାରେ ବସବାସ କରି ଆସୁଛନ୍ତି । ବର୍ତ୍ତମାନର ପରିବର୍ତ୍ତିତ ପରିସ୍ଥିତିରେ ଏହି ପୁରୁଣା ସମ୍ଭ୍ରାନ୍ତ ପରିବାରଗୁଡ଼ିକ କ୍ରମେ ଲୋପ ପାଇଯାଉଛନ୍ତି । ତେବେ ଆଜକୁ ପ୍ରାୟ ଗୋଟିଏ ପୁରୁଷ ତଳେ ସେମାନେ ସହରର ନେତୃସ୍ଥାନୀୟ ଓ ଅନୁକରଣୀୟ ବୋଲି ଗୃହୀତ ହେଉଥିଲେ । ସେମାନଙ୍କ ଭାଷା ବସ୍ତିର ଅନ୍ୟାନ୍ୟ ବାସିନ୍ଦାଙ୍କଠାରୁ ଭିନ୍ନ । ସେମାନେ ନିଜ ପାରିବାରିକ ଭାଷାର ଶୁଦ୍ଧତା ରକ୍ଷା କରିବାକୁ ଯାଇ ଏପରି କେତେକ ଶବ୍ଦ ବ୍ୟବହାର କରୁଥିଲେ ଯାହା ବର୍ତ୍ତମାନ ପ୍ରାୟ ଅପ୍ରଚଳିତ ହୋଇଗଲଣି, କିନ୍ତୁ ଦିନଥିଲା ସେଇ ଶବ୍ଦାବଳୀର ବ୍ୟବହାର ପାଇଁ ସେଇସବୁ ପରିବାର ଓ ସମାଜରେ ଜୋରଦିଆ ହେଉଥିଲା । ସେଥିରୁ କେତୋଟିର ଉଦାହରଣ—

ସାଧାରଣରେ ପ୍ରଚଳିତ ଶବ୍ଦ—କୁଳୀନ ପରିବାରର ଶବ୍ଦ

ତରକାରି—ତିଅଣ

ମାଂସ—ସାଗୁଆଡ

ଅନେଇବା—ଗୃହିଁବା

ଲୋଟା—ଚାଳ

ତେଲ—ମାଲପା

ଚାଟିଆ ବାଟି—ଗିନା

ବିଗତ ୫୦ ବର୍ଷ ମଧ୍ୟରେ ସହରର ଆକାର ଓ ଲୋକସଂଖ୍ୟାର ଆଶାତୀତ ବିସ୍ତାରଣ ସାଙ୍ଗକୁ ଶିକ୍ଷାର ଅଭିବୃଦ୍ଧି, ଆର୍ଥିକ ଓ ସାମାଜିକ ଭାରସାମ୍ୟର ଓଲଟ ପାଲଟ ଏବଂ ବହୁ ବହିରାଗତଙ୍କ ନିବାସ ଫଳରେ ସହର ବସ୍ତି ଜୀବନରେ ଦ୍ରୁତ ପରିବର୍ତ୍ତନ ଘଟୁଛି । ଫଳରେ ବସ୍ତିମାନଙ୍କରେ ବ୍ୟବହୃତ ମୌଳିକ ଭାଷା ମଧ୍ୟ ବଦଳି ଯାଉଛି । ଆଉ କେତେ ଦଶନ୍ଧି ମଧ୍ୟରେ ହୁଏତ ଏହା ଲୋପ ପାଇ ଇତିହାସରେ ପରିଣତ ହୋଇଯିବ । ତଥାପି ଐତିହାସିକ ଓ ଭାଷାତାତ୍ତ୍ୱିକ ଗୁରୁତ୍ୱ ଦୃଷ୍ଟିରୁ ଏହାର ଅଧିକ ଆଲୋଚନା ଓ ସଂରକ୍ଷଣର ଉଦ୍ୟମ ହେବା ଉଚିତ ।

ଆଜକୁ ଚଉଦ ବର୍ଷ ତଳେ କଟକୀ ଭାଷାର ରୂପ ଏହି ଲେଖକ 'ଧନ୍ଦାଚୌପଟ' ନାମକ ଗଳ୍ପରେ ପ୍ରକାଶ କରିଛି । ଏଠାରେ ପ୍ରବନ୍ଧର ସୀମିତ ଅବୟବ ଦୃଷ୍ଟିରୁ ସେହି ଭାଷାର ଅନ୍ୟ ଏକ କ୍ଷୁଦ୍ରନମୁନା ଦିଆଯାଉଛି—

"ଆବେ ଶଳା ଲଟିଆ କାଲି ରଥବାରେ କୋଉଠି ଲଟ୍ ହେଇ ଥିଲୁବେ । ସତ କହୁଚ ଭାଇ ମାଗୁଣ୍ ମୋ ମୁଣ୍ଡ ଛୁଇଁକି ତେତେ ଆମେ ଯେତେ ଖୋଜିଲୁନା ! ଆମେ ଯାଇଥିଲୁ ଧବଳେଶର ପଟା । ଆମ ମାଷ୍ଟର ଖେନତେଇ ଆଉ ମାଛୁଆବଜାରର ମୁଷା ଯାଇଥିଲେ । ଆଉ ମିଶିରଘର ଟୋକା ଯୁଧିଷ୍ଠିଆନନ୍ଦାକୁ ଭି ସାଙ୍ଗରେ ଟାଣି ନେଇଥିଲୁ । ଗଣେଶଘାଟଠି ବଜରଙ୍ଗୀ ମାଡ଼ୁଆଡ଼ିର ଧରମ୍‌ଶାଳା ବନୁଚି । ବା' ସେଠିକି ଯାଇଥିଲେ କାମକୁ । ମା ଘର ପିଣ୍ଡାରେ ବସି ପକୁଡ଼ି ଭାଜୁଥିଲେ । ଗର୍‌ହାକ ଜମିଥିଲେ । ସେତିକିବେଳେ ପଟାପଟି କରି ତା ଗାଣ୍ଠିଆରୁ ଠନ୍‌ଠନ୍ ଦଶଟିକିଆ ପାଞ୍ଚଟା ଝଟେଇଲି । ବା'କୁ ମାଗିଥିଲେ ତ ଗର୍ଦ୍ଦନ ପକଡ଼ିଥାଆନ୍ତା । ବାଇସ୍‌କଲ ଘଣ୍ଟେ ଘଣ୍ଟେ ଧରି ବୁଲିଲୁ ଚହଟା । ବାଟରେ ଧୁମାଲ୍ ପବନ ହେଲା । ପେଡ଼ାଲ ମାରି ହେଉ ନଥାଏ, ଜୀବନ ଗୁଡ଼ାଲ ନେଇଗ ନାଉଥାଏ । ମୁଁ ତ ହାଇଁଇଗଲି । ଘାଟପାଖେ ଗନ୍ଧିଆ ଦୋକାନ ଦେଇଚି । ବରମ୍ପୁର କୋଳିଆମାଳ ରଖିଚି, ଅଣ୍ଡାଳନମ୍ବର ଚଜ । ମାଗିଲାରୁ ତା' ମା'କୁ···କହିଲା ଏଠି ନଗଦ କେନ୍ଦ୍ର କାରବାର, କାଲିବାସୀ ନାହିଁ । ଟଙ୍କା ପକେଇଦେଲୁ, ବାଛି ବାଛି ଅସଲ କଳା ଧରିଲୁ । ଧବଳଶର ବେଡ଼ା କଣ୍ଡପଟିଆ ଧୂପ ଧରେଇଲୁ । ଶଳା ନୁଉ ବୁଢ଼ିଆ ଯୁଧିଷ୍ଠିଆନନ୍ଦା ଚିଲମ୍‌ର ଗୋଟାଏ ସୋଟା ନେଇ ଝାମ୍ ଖାଇଗଲା । ଆମେ ଧୂମ୍ ମଉଜ ଉଡ଼େଇଲୁ । କରମେ କରମେ ନିଶା ମୁଣ୍ଡକୁ ଉଠିଲା । ଫେରିଲୁ ବେଳକୁ ମଧୁଆଗୁଡ଼ିଆ ଦୋକାନ ପାଖେ ସଞ୍ଜ ହେଲା । ତା' ଦୋକାନକୁ ଉଠିଲୁ । ଶଗଳା ମଣ୍ଡାପିଠା ଦୋରେ ରସଗୋଲା ଦମୁଞ୍ଜା ନେଇଗ ନାହିଦେଲୁ । ମିଞ୍ଜାସ୍ ତର୍‌ଚର ହେଇଗଲା । ତୁ ଯାଇଥିଲେ ନା ପଙ୍ଗତ୍ତା ଝମାଳିଆ ଜମିଥାଆନ୍ତା ।"



# କଟକର କେନ୍ଦ୍ରୀୟ ଧାନଗବେଷଣା ଅନୁଷ୍ଠାନ

**ଡଃ ଶରତ କୁମାର ମହାନ୍ତି**

ପ୍ରତ୍ୟେକ ସଜୀବ ପାଇଁ ଖାଦ୍ୟ ଅପରିହାର୍ଯ୍ୟ ଏବଂ ଖାଦ୍ୟ ବିନା ଜୀବନ ଧାରଣ ଅସମ୍ଭବ । ତେଣୁ ଭାଗବତରେ ଜଗନ୍ନାଥ ଦାସ ଲେଖିଛନ୍ତି, "ଅନ୍ନ ବିହୁନେ ହଂସ ହାନି, ଯୋଗ ସାଧିବ କାହା ଘେନି ?" ଭାରତ ସମେତ ପୃଥିବୀର ପ୍ରାୟ ଦୁଇ ତୃତୀୟାଂଶ ଲୋକଙ୍କର ଭାତ ହେଉଛି ପ୍ରଧାନ ଖାଦ୍ୟ । ଯଦିଓ ସମଗ୍ର ପୃଥିବୀରେ ସବୁଠାରୁ ଭାରତରେ ଅଧିକ ଜମିରେ (୪୨ ନିୟୁତ ହେକ୍ଟର) ଧାନଚାଷ କରାଯାଏ, ତଥାପି ସ୍ୱାଧୀନତା ପ୍ରାପ୍ତି ପୂର୍ବରୁ ଏବଂ ପରେ କୋଟି କୋଟି ବୁଭୁକ୍ଷୁ ଜନତାଙ୍କୁ ଖାଦ୍ୟ ଯୋଗାଇବା ପାଇଁ ଦେଶ କୋଟି କୋଟି ଟଙ୍କାର ଚାଉଳ ବିଦେଶରୁ ଆମଦାନୀ କରୁଥିଲା ।

ଭାରତର ଖାଦ୍ୟ ସମସ୍ୟାରେ ଚାଉଳର ପ୍ରାଧାନ୍ୟକୁ ବିଚାରକୁ ନେଇ ଦେଶରେ ୧୯୨୯ରେ ଜନ୍ମ ନେଇଥିବା ଭାରତୀୟ କୃଷି ଗବେଷଣା ପରିଷଦ (ଭୂତପୂର୍ବ Royal council of Agricultural Research) ଆନୁକୂଲ୍ୟରେ ଦେଶର ବିଭିନ୍ନ ରାଜ୍ୟରେ ଧାନଗବେଷଣା ପାଇଁ ପ୍ରଜନନ ପ୍ରକଳ୍ପମାନ କାର୍ଯ୍ୟକାରୀ କରାଯାଇ ଥିଲା । ଏହା ସତ୍ତ୍ୱେ ମଧ୍ୟ ଦେଶର ଚାହିଦା ମୁତାବକ ଧାନ ଉତ୍ପାଦନ ହୋଇପାରୁ ନଥିଲା । ତେଣୁ ଦେଶରେ ଧାନ ଗବେଷଣାକୁ ତ୍ୱରାନ୍ୱିତ କରିବା ପାଇଁ, ଏକ ସମୟରେ ଭାରତ ସରକାର କେନ୍ଦ୍ରୀୟ ଧାନ କମିଶନ ଗଠନ କରିବା ପାଇଁ ପ୍ରସ୍ତାବ ରଖିଥିଲେ । ଏହି କମିଶନ ସେସ୍‌ଫଣ୍ଡ୍‌ର ଆର୍ଥିକ ସହାୟତାରେ ଧାନ ଉପରେ ସମ୍ବନ୍ଧ ଗବେଷଣା କରିଥାନ୍ତା, କିନ୍ତୁ ଯେହେତୁ ଖାଦ୍ୟ ଫସଲ ଉପରେ ଶୁଳ୍କ ଧାର୍ଯ୍ୟକୁ ଜନ ସମର୍ଥନ ମିଳିବାର ସମ୍ଭାବନା ନଥିଲା ।

କେନ୍ଦ୍ର ସରକାର ଏହି ପରିକଳ୍ପନାକୁ କାର୍ଯ୍ୟକାରୀ କଲେ ନାହିଁ । ତାପରେ ୧୯୪୫ ମସିହାରେ ଭାରତ ସରକାର ନିଜସ୍ୱ ସମ୍ବଳରୁ ଧାନ ଗବେଷଣା ପାଇଁ ଏକ କେନ୍ଦ୍ରୀୟ ଅନୁଷ୍ଠାନ ସ୍ଥାପନ କରିବାକୁ ସିଦ୍ଧାନ୍ତ ନେଲେ । ଏଥିପାଇଁ କୋଇମ୍ବାଟୁରର ପ୍ରସିଦ୍ଧ ପ୍ରଜନନ ବିଜ୍ଞାନୀ ଡକ୍ଟର କେ. ରାମିଆଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠାନ ପାଇଁ ସ୍ଥାନ

ନିରୂପଣ ନିମନ୍ତେ ଏକ କମିଟି ଗଠନ କରିଥିଲେ । ଉକ୍ତ କମିଟି ଭାରତବର୍ଷର ପ୍ରାନ୍ତରେ ଧାନଗବେଷଣ ହେଉଥିବା ଦେଶର ବିଭିନ୍ନ ରାଜ୍ୟମାନ ପରିଦର୍ଶନ କରି ଶେଷରେ ଓଡ଼ିଶାର କଟକ ସହର ନିକଟସ୍ଥ ବିଦ୍ୟାଧରପୁର ଗ୍ରାମ ନିକଟ ଅଞ୍ଚଳରେ ଦେଶର ତଥା ସମଗ୍ର ପୃଥିବୀର ପ୍ରଥମ ଧାନ ଗବେଷଣା ଅନୁଷ୍ଠାନକୁ ପ୍ରତିଷ୍ଠା କରିବାକୁ ସୁପାରିଶ କଲେ ।

କେନ୍ଦ୍ର ସରକାର ତାଙ୍କ ସୁପାରିଶକୁ ଗ୍ରହଣ କରି ୧୯୪୬ ମସିହାରେ କଟକର ବିଦ୍ୟାଧରପୁର ଠାରେ କେନ୍ଦ୍ରୀୟ ଧାନ ଗବେଷଣା ଅନୁଷ୍ଠାନ ପ୍ରତିଷ୍ଠା କରିବାକୁ ଉକ୍ତ କମିଟିଙ୍କୁ ସ୍ପେଶାଲ ଅଫିସର ଭାବରେ ନିଯୁକ୍ତ ଦେବାପରେ ବସ୍ତୁତଃ ଏହି ଅନୁଷ୍ଠାନଟି ଜନ୍ମ ନେଲା । ଅନୁଷ୍ଠାନଟିକୁ ଆରମ୍ଭ କରିବାକୁ ରାଜ୍ୟ ସରକାର ତାଙ୍କର କୃଷି ବିଭାଗ ଅଧୀନରେ ଥିବା ୧୫୦ ଏକର ବିଶିଷ୍ଟ କେନ୍ଦ୍ରୀୟ କୃଷି ଫାର୍ମକୁ କେନ୍ଦ୍ର ସରକାରଙ୍କୁ ହସ୍ତାନ୍ତର କଲେ । ପରବର୍ତ୍ତୀ ଦୁଇ ପର୍ଯ୍ୟାୟରେ ଆଉ ୧୫୦ ଏକର ଜମିକୁ କେନ୍ଦ୍ର ସରକାର କ୍ରୟକରି ବର୍ତ୍ତମାନ ଅନୁଷ୍ଠାନର ଆକାର ୩୦୦ ଏକରକୁ ବୃଦ୍ଧି କରିଛନ୍ତି । ଅନୁଷ୍ଠାନଟି କଟକର ପୂର୍ବାଞ୍ଚଳରେ ଓ: ଏମ୍: ପି: ଛକଠାରୁ ୫ କିଲୋମିଟର ଦୂରରେ କଟକ ପାରାଦ୍ୱୀପ ରାସ୍ତାର ବାମପାର୍ଶ୍ୱରେ ୨୦ ଡ଼ିଗ୍ରୀ ଉତ୍ତର ଅକ୍ଷାଂଶ ଓ ୮୬ ଡ଼ିଗ୍ରୀ ପୂର୍ବ ଦ୍ରାଘିମାରେ ଅବସ୍ଥିତ ।

ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ଉକ୍ତ କେନ୍ଦ୍ରୀୟ ଧାନ ଗବେଷଣା ଅନୁଷ୍ଠାନକୁ ଆନୁଷ୍ଠାନିକ ଭାବରେ ୧୯୫୮ ମସିହା ଏପ୍ରିଲ ମାସ ୧୩ ତାରିଖରେ ଉଦ୍‌ଘାଟନ କରି ସ୍ମୃତି ଫଳକରେ ଲେଖିଥିଲେ—"All good wishes to this Rice Institute—First of it's kind in India in Asia and in the world—May it solve the problems that afflict us in regard to rice." ଅଧୁନା ଏହି ସ୍ମୃତି ଫଳକଟି ଅନୁଷ୍ଠାନର ମୁଖ୍ୟ ପ୍ରବେଶ ଦ୍ୱାରର ମୁଖଶାଳାରେ ବିଦ୍ୟମାନ ।

ସ୍ୱର୍ଗତ ନେହେରୁଙ୍କର ଏହି ଅନୁଷ୍ଠାନ ପ୍ରତି ପ୍ରଗାଢ଼ ଶ୍ରଦ୍ଧା ଥିଲା ଏବଂ ସେ ୧୯୬୨ ମସିହାରେ ପାରାଦ୍ୱୀପ ବନ୍ଦରର ଶୁଭାରମ୍ଭ ଦେବା ଅବସରରେ ପୁନଶ୍ଚ ଏହି ଅନୁଷ୍ଠାନକୁ ପରିଭ୍ରମଣ କରି ଏଠାରେ ମଧ୍ୟାହ୍ନ ଭୋଜନ କରିଥିଲେ । ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ଅନୁଷ୍ଠାନର ଏକ ଅଞ୍ଚଳକୁ "ନେହେରୁ ପାର୍କ" ନାମରେ ନାମିତ କରାଯାଇଛି । ବର୍ତ୍ତମାନ ସେଠାରେ ପ୍ରଜନନ ବିଭାଗ ଦ୍ୱାରା କେତେକ କ୍ଷେତ୍ର ପରୀକ୍ଷା କରାଯାଉଅଛି । କେନ୍ଦ୍ର ସରକାର ୧୯୬୬ ମସିହାରେ ଏହି ଅନୁଷ୍ଠାନକୁ ଭାରତୀୟ କୃଷି ଗବେଷଣା ପରିଷଦକୁ ହସ୍ତାନ୍ତର କରିଛନ୍ତି । ସେହି ଦିନଠାରୁ ଭାରତ ସରକାରଙ୍କର ଭାରତୀୟ କୃଷି ଗବେଷଣା ପରିଷଦ ଅଧୀନରେ ଏହା କାର୍ଯ୍ୟ କରି ଆସୁଅଛି ।

ମୁଖ୍ୟତଃ ଗୁଡ଼ିଏ ଆଭିମୁଖ୍ୟକୁ ନେଇ କେନ୍ଦ୍ରୀୟ ଧାନ ଗବେଷଣା ଅନୁଷ୍ଠାନ ଗଢ଼ି ଉଠିଥିଲା । ସେଗୁଡ଼ିକ ହେଲେ—

(୧) ଧାନ ଫସଲର ସର୍ବୋଚ୍ଚ ଉତ୍ପାଦନ ବୃଦ୍ଧି ପାଇଁ ବିଭିନ୍ନ ବିଷୟରେ ମୌଳିକ ଓ ପ୍ରୟୋଗାତ୍ମକ ଗବେଷଣା କରିବା ।

(୨) ଧାନ ଚାଷୀମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଜ୍ଞାନ କୌଶଳର ସୁପାରିଶ କରିବା ପୂର୍ବରୁ ସେ ସବୁ ବିଷୟରେ ଦେଶର ବିଭିନ୍ନ ଧାନଚାଷ ଅଞ୍ଚଳରେ ପ୍ରୟୋଗାତ୍ମକ ଗବେଷଣା ପାଇଁ ଯୋଜନା ପ୍ରସ୍ତୁତ କରିବା ସହିତ ସମ୍ବାଦ ସରବରାହ କରିବା ।

(୩) ଧାନର କୃଷିକର୍ଷଣ, ଉତ୍ପାଦନ ଓ ସଂରକ୍ଷଣ ବିଷୟରେ ନିଶ୍ଚିତ ସମ୍ବାଦ ସରବରାହ କେନ୍ଦ୍ର ଭାବରେ କାର୍ଯ୍ୟ କରିବା ।

(୪) ଗବେଷକ ଓ କ୍ଷେତ୍ର ସମ୍ପ୍ରସାରଣ କର୍ମଚାରୀମାନଙ୍କୁ ତାଲିମ ଦେବା ।

ଗବେଷଣା ଲବ୍ଧ ଜ୍ଞାନକୁ ସମଗ୍ର ଦେଶରେ ପ୍ରୟୋଗାତ୍ମକ ଗବେଷଣା ପାଇଁ ଆନ୍ଧ୍ରପ୍ରଦେଶର ହାଇଦରାବାଦ ଠାରେ ଜାତୀୟ ସ୍ତର ପାଇଁ **All India coordinated Project on Rice Improvement** ନାମରେ ଏକ ସଂସ୍ଥା ଅନୁଷ୍ଠାନ ଅଧୀନରେ କାର୍ଯ୍ୟ କରୁଥିଲା । ଗତ ୧୯୮୭ ମସିହା ଠାରୁ ତାହା ସ୍ୱାଧୀନ ଭାବେ କାର୍ଯ୍ୟ କରୁଛି ।

ରାଜ୍ୟ ସରକାରଙ୍କ ଠାରୁ ପାଇଥିବା ଗୃହଗୁଡ଼ିକ ବିଭିନ୍ନ ଗବେଷଣାଗାର ପାଇଁ ଯଥେଷ୍ଟ ନଥିବାରୁ ଅନୁଷ୍ଠାନର ନିଜସ୍ୱ ଗୃହ ତିଆରି କରାଯାଇ ୧୯୬୩ ମସିହାରେ ସେଠାକୁ ଗବେଷଣାଗାର ଓ ଅଫିସ ସ୍ଥାନାନ୍ତରିତ କରାଯାଇଥିଲା । ପୁନଶ୍ଚ କାଳକ୍ରମେ ଗବେଷଣାଗାର ଗୁଡ଼ିକର ଅଭିବୃଦ୍ଧି ଓ ଅଫିସର କଳେବର ବୃଦ୍ଧି ହେତୁ ୧୯୮୪ ମସିହାରେ ନିର୍ଦ୍ଦେଶକଙ୍କ ଅଫିସ, ପୁସ୍ତକାଳୟ, ପରିସଂଖ୍ୟାନ, ଅର୍ଥନୀତି, ସମ୍ପ୍ରସାରଣ, ଜୈବରସାୟନ ବିଭାଗଗୁଡ଼ିକ ଓ କ୍ୟାଣ୍ଟିନ୍ ଅନ୍ୟ ଏକ ନୂତନ ଗୃହକୁ ସ୍ଥାନାନ୍ତରିତ ହୋଇଅଛି ।

ପରିବର୍ତ୍ତିତ ପରିସ୍ଥିତିରେ ଡିହଜମି ପାଇଁ ଓ ଜଳମଗ୍ନ ନିମ୍ନ ଜମିପାଇଁ ଧାନଚାଷ ଗବେଷଣା ଉପରେ ଗୁରୁତ୍ୱ ଉପଲବ୍ଧି କରି ଅନୁଷ୍ଠାନ ଡିହଜମି ଧାନ ଗବେଷଣା ପାଇଁ ବିହାରର ହଜାରିବାଗ ଠାରେ ଓ ଜଳମଗ୍ନ ନିମ୍ନଜମି ଧାନ ଗବେଷଣା ପାଇଁ ପଶ୍ଚିମ ବଙ୍ଗଳାର ଖଡ଼ଗପୁର ଠାରେ କେନ୍ଦ୍ରମାନ ସ୍ଥାପନ କରିଛି ।

ଅନୁଷ୍ଠାନରେ କ୍ଷେତ୍ରବିଜ୍ଞାନ, ଉଦ୍ଭିଦ ଶରୀରତତ୍ତ୍ୱ ବିଜ୍ଞାନ, ମୃତ୍ତିକା ଓ ସୂକ୍ଷ୍ମଜୀବତତ୍ତ୍ୱ ବିଜ୍ଞାନ, ଅନୁବଂଶିକ ବିଜ୍ଞାନ ଓ ପ୍ରଜନନ ବିଜ୍ଞାନ, କୀଟତତ୍ତ୍ୱ ବିଜ୍ଞାନ, ଉଦ୍ଭିଦ ନିଦାନ ବିଜ୍ଞାନ, ଜୈବ ରସାୟନ, **Genetic resources**, କୃଷି ଇଞ୍ଜିନିୟରିଙ୍ଗ୍ ଓ ସମ୍ପ୍ରସାରଣ ବିଭାଗଗୁଡ଼ିକ ସହିତ ପରିସଂଖ୍ୟାନ, କୃଷି ଅର୍ଥନୀତି, ଯାନ୍ତ୍ରିକ ବିଭାଗ ଓ ଇଲେକ୍ଟ୍ରୋନିକ ପ୍ରଭୃତି ଉପ ବିଭାଗମାନ ଅଛି । କ୍ଷେତ୍ର ବିଜ୍ଞାନ ଅଧୀନରେ

ଫାର୍ମ ପରିଚାଳିତ ହେଉଅଛି । ପ୍ରତ୍ୟେକ ବିଭାଗରେ କାର୍ଯ୍ୟରତ ବୈଜ୍ଞାନିକମାନଙ୍କର କ୍ଷେତ୍ର ଗବେଷଣା ପାଇଁ ଜମି ଆବଣ୍ଟନ ପରେ ଅବଶିଷ୍ଟ ଜମିକୁ ଫାର୍ମ ଚାଷ କରିଥାଏ ଏବଂ ସେଥିରୁ କେତେକ ଜମିରେ ବିଭିନ୍ନ ରାଜ୍ୟର ଅନୁରୋଧକ୍ରମେ ସେମାନଙ୍କୁ ଉନ୍ନତ କିସମର ଖାଣ୍ଟି ବିହନ ଯୋଗାଇବା ପାଇଁ ଉନ୍ନତ କିସମ ବିହନ ପାଇଁ ମଧ୍ୟ ଚାଷ କରାଯାଉଛି ।

ଏତଦ୍‌ବ୍ୟତୀତ ଅନୁଶାସନକୁ ସୁଚାରୁରୂପେ ପରିଚାଳିତ କରିବା ପାଇଁ ନିର୍ଦ୍ଦେଶକଙ୍କ ଅଫିସରେ ଅନୁଶାସନ-୧, ଅନୁଶାସନ-୨, ଅଡ଼ିଟ୍ ଓ ଏକାଉଣ୍ଟ ବିଭାଗମାନ ଅଛି ।

ଅନୁଷ୍ଠାନରେ ଜଣେ ନିର୍ଦ୍ଦେଶକ ଓ ଜଣେ ଉପନିର୍ଦ୍ଦେଶକଙ୍କ ବ୍ୟତୀତ ୨୦୪ ଜଣ ବୈଜ୍ଞାନିକ ବିଭିନ୍ନ ବିଭାଗରେ କାର୍ଯ୍ୟ କରୁଛନ୍ତି । ବୈଜ୍ଞାନିକମାନଙ୍କ ମଧ୍ୟରେ ତିନି ଶ୍ରେଣୀର ବୈଜ୍ଞାନିକ ଯଥା—ବୈଜ୍ଞାନିକ, ବରିଷ୍ଠ ବୈଜ୍ଞାନିକ ଓ ମୁଖ୍ୟ ବୈଜ୍ଞାନିକମାନେ ଅଛନ୍ତି । ବୈଜ୍ଞାନିକମାନଙ୍କୁ ଗବେଷଣାରେ ସାହାଯ୍ୟ କରିବା ପାଇଁ ଅନୁଷ୍ଠାନରେ ବର୍ତ୍ତମାନ ୧୨୨ ଜଣ ବୈଷୟିକ କର୍ମଚାରୀ ବିଭିନ୍ନ ବିଭାଗରେ କାର୍ଯ୍ୟ କରୁଛନ୍ତି । ଗବେଷଣାଗାର କ୍ଷେତ୍ର ପରିଚାଳନା ଓ ଅଫିସ ପରିଚାଳନାରେ ସାହାଯ୍ୟ କରିବା ପାଇଁ ୨୧୩ଜଣ ସହାୟକ କର୍ମଚାରୀ (Grade IV) କାର୍ଯ୍ୟ କରନ୍ତି ଓ ୨୧ଜଣ ଅନ୍ୟାନ୍ୟ କର୍ମଚାରୀ ମଧ୍ୟ ଅନୁଷ୍ଠାନରେ କାର୍ଯ୍ୟ କରନ୍ତି । ଏତଦ୍ ବ୍ୟତୀତ ପ୍ରାୟ ୩୫୦ଜଣ ସାମୟିକ ଶ୍ରମିକ କୃଷି କର୍ଷଣରେ ଲିପ୍ତ ଅଛନ୍ତି । ଅନୁଷ୍ଠାନର ତଥା ବିଭିନ୍ନ ବିଭାଗ-ଗୁଡ଼ିକର ଅନୁଶାସନ ପାଇଁ ୮୭ ଜଣ କର୍ମଚାରୀ କାର୍ଯ୍ୟରତ ଅଛନ୍ତି ।

ହଜାରିବାଗଠାରେ ଅବସ୍ଥିତ ଡିପ ଜମିରେ ଧାନ ଗବେଷଣା ପାଇଁ ଉଦ୍ଦିଷ୍ଟ ଷ୍ଟେସନରେ ୧୧ ଜଣ ବୈଜ୍ଞାନିକ, ୧୦ ଜଣ ବୈଷୟିକ କର୍ମଚାରୀ, ୫ ଜଣ ସହାୟକ କର୍ମଚାରୀ ଓ ୫ଜଣ ଅଫିସ କର୍ମଚାରୀ କାର୍ଯ୍ୟ କରନ୍ତି । ସେହିପରି ଖଡ଼ଗପୁରଠାରେ ଅବସ୍ଥିତ ଜଳମଗ୍ନ ନିମ୍ନ ଜମିରେ ଧାନ ଗବେଷଣା ପାଇଁ ଥିବା ଷ୍ଟେସନରେ ୪ଜଣ ବୈଜ୍ଞାନିକ, ଜଣେ ବୈଷୟିକ କର୍ମଚାରୀ, ଦୁଇଜଣ ସହାୟକ କର୍ମଚାରୀ ଓ ୫ଜଣ ଅଫିସ କର୍ମଚାରୀ କାର୍ଯ୍ୟ କରୁଛନ୍ତି । କର୍ମଚାରୀମାନଙ୍କର ରହିବା ପାଇଁ କେତେକ ବାସଗୃହ ଯୋଗାଇ ଦିଆଯାଇଛି । ଏହି ଅନୁଷ୍ଠାନରେ ଦେଶର ବିଭିନ୍ନ ରାଜ୍ୟର ଭିନ୍ନଭିନ୍ନ ଭାଷାଭାଷୀ ଲୋକମାନେ ଅଛନ୍ତି ।

ଅନୁଷ୍ଠାନଟି ପ୍ରାରମ୍ଭରୁ ଏକ ତାଲିମକେନ୍ଦ୍ର ଓ ଶିକ୍ଷାକେନ୍ଦ୍ର ଭାବରେ କାର୍ଯ୍ୟକରି ଆସୁଅଛି । ଗବେଷଣା ବ୍ୟତୀତ ଏଠାରେ ପୃଥିବୀର ବିଭିନ୍ନ ଦେଶରୁ ଏବଂ ଦେଶ ମଧ୍ୟରୁ ବିଭିନ୍ନ ରାଜ୍ୟରୁ ଆସୁଥିବା ଗବେଷକ ତଥା ଅଫିସରମାନଙ୍କୁ ଉନ୍ନତ ଧାନ ଚାଷ ପାଇଁ ସମସ୍ତ ପ୍ରକାର ଜ୍ଞାନକୌଶଳ ବିଷୟରେ ତାଲିମ ଦିଆଯାଏ । ଅନୁଷ୍ଠାନରେ ୧୯୫୨ ମସିହାରେ ପ୍ରଥମ ଆନ୍ତର୍ଜାତିକ ତାଲିମ ଅନୁଷ୍ଠିତ ହୋଇଥିଲା । ଏଥିରେ

ଥାଇଲଣ୍ଡ, ଇଣ୍ଡୋନେସିଆ, କୋରିଆ, ମିଶର, ଜାପାନ, ଇରାନ୍, ପଶ୍ଚିମ ଆଫ୍ରିକା, ପାକିସ୍ଥାନ, ଶ୍ରୀଲଙ୍କା ଓ ଲିବିଆ ପ୍ରଭୃତି ଦେଶରୁ ଆସିଥିବା ବୈଜ୍ଞାନିକ ଓ ଗବେଷକ-ମାନଙ୍କୁ ତାଲିମ ଦିଆଯାଇଥିଲା । ତା ପରଠାରୁ ବିଭିନ୍ନ ସମୟରେ ବିଭିନ୍ନ ଦେଶରୁ ବୈଜ୍ଞାନିକ ଓ ଗବେଷକମାନେ ଆସି ତାଲିମ ପାଇ ନିଜ ନିଜ ଦେଶକୁ ଫେରି ଯାଇଛନ୍ତି ।

ଅନ୍ତର୍ଦେଶୀୟ ଗବେଷକମାନେ ବିଭିନ୍ନ ସମୟରେ ଅନୁଷ୍ଠାନକୁ ଭ୍ରମଣ କରି ପ୍ରତ୍ୟକ୍ଷଜ୍ଞାନ ଅର୍ଜନ କରିଛନ୍ତି । ଏତଦ୍‌ବ୍ୟତୀତ ପ୍ରାୟ ପ୍ରତ୍ୟେକ ବର୍ଷ ବିଭିନ୍ନ ରାଜ୍ୟର କୃଷି ବିଶେଷଜ୍ଞମାନେ ଆସି ଏଠାରେ ସର୍ବଶେଷ ଗବେଷଣା ବିଷୟରେ ପ୍ରତ୍ୟକ୍ଷଜ୍ଞାନ କୌଶଳରେ ତାଲିମ ନିଅନ୍ତି । କେତେକ ବ୍ୟାଙ୍କ ସେମାନଙ୍କର ବିଶେଷ ଅଧିକାରୀମାନଙ୍କୁ ପ୍ରତ୍ୟକ୍ଷ ଜ୍ଞାନ କୌଶଳ ବିଷୟରେ ତାଲିମ ପାଇଁ ଅନୁଷ୍ଠାନକୁ ପଠାନ୍ତି । ସେମାନେ ଶିକ୍ଷାପରେ ଚାଷୀମାନଙ୍କୁ ଠିକ୍ ସମୟରେ ଓ ଆବଶ୍ୟକୀୟ ପରିମାଣରେ କୃଷିଋଣ ଆବଣ୍ଟନ କରିବାରେ ଅଧିକ କାର୍ଯ୍ୟଦକ୍ଷ ହୋଇ ପାରିଛନ୍ତି ।

ଓଡ଼ିଶାର କୃଷି ବିଭାଗରେ କାର୍ଯ୍ୟ କରୁଥିବା କ୍ଷେତ୍ର କର୍ମଚାରୀ, ସଂପ୍ରସାରଣ ଅଧିକାରୀ ଓ ଗ୍ରାମସେବକମାନଙ୍କୁ ପ୍ରତ୍ୟେକ ବର୍ଷ ଖରିଫ ଋତୁ ଓ ରବି ଋତୁ ପୂର୍ବରୁ ଅନୁଷ୍ଠାନରେ ନୂତନ ଜ୍ଞାନ କୌଶଳ ଉପରେ ତାଲିମ ଦିଆଯାଏ । ସମୟ ସମୟରେ ମଧ୍ୟ ଦେଶର ବିଭିନ୍ନ କୃଷି କଲେଜ ଶିକ୍ଷକ ଓ ବିଶେଷଜ୍ଞମାନଙ୍କ ପାଇଁ ଗ୍ରୀଷ୍ମକାଳୀନ ତାଲିମକେନ୍ଦ୍ର ଅନୁଷ୍ଠିତ ହୋଇ ସେମାନଙ୍କୁ ଏକ ନିର୍ଦ୍ଦିଷ୍ଟ ବିଷୟରେ ଅତ୍ୟାଧୁନିକ ଜ୍ଞାନ କୌଶଳ ଏବଂ ଗବେଷଣା ଲବ୍ଧ ଫଳ ବିଷୟରେ ଅବଗତ କରାଯାଇଥାଏ । କେନ୍ଦ୍ର ସରକାରଙ୍କର ନିର୍ଦ୍ଦେଶକ୍ରମେ ଅନୁଷ୍ଠାନର ବୈଜ୍ଞାନିକମାନେ ଧାନଚାଷ ସମ୍ବନ୍ଧରେ ବିଭିନ୍ନ ଅଞ୍ଚଳରେ ହେଉଥିବା ସମସ୍ୟାଗୁଡ଼ିକ ଅନୁଧ୍ୟାନ କରି ବିହିତ ପ୍ରତିକାର ପାଇଁ ପଦକ୍ଷେପ ନିଅନ୍ତି ଓ ରାଜ୍ୟମାନଙ୍କୁ ସୁପାରିଶ କରନ୍ତି । ବନ୍ୟା ଓ ବାତ୍ୟାଜନିତ କ୍ଷୟକ୍ଷତିର ସର୍ବେକ୍ଷଣ ପାଇଁ କେନ୍ଦ୍ର ସରକାରଙ୍କର ନିର୍ଦ୍ଦେଶରେ ବୈଜ୍ଞାନିକମାନେ ବିଭିନ୍ନ କମିଟିରେ କାର୍ଯ୍ୟ କରନ୍ତି ।

ଅନୁଷ୍ଠାନ ୧୯୬୨ ମସିହାରୁ ଅତ୍ୟାଧୁନିକ ଗବେଷଣା କେନ୍ଦ୍ର ଭାବରେ ଭାରତ ସରକାର ଓ ରାଜ୍ୟ ସରକାରମାନଙ୍କର ସ୍ୱୀକୃତିଲାଭ କରିଥିବାରୁ ଏଠାରେ ଛାତ୍ରମାନେ ବିଭିନ୍ନ ବୃତ୍ତିପାଇ ଡକ୍ଟର ଅଫ୍ ଫିଲୋସଫି ଓ ଡକ୍ଟର ଅଫ୍ ସାଇନ୍ସ୍ ଡିଗ୍ରୀ ପାଇଁ ଗବେଷଣା କରି ଆସୁଛନ୍ତି । ଶତାଧିକ ଛାତ୍ରଛାତ୍ରୀ ଏଠାରେ ବିଜ୍ଞାନର ବିଭିନ୍ନ ବିଷୟରେ ଗବେଷଣା କରି ବିଭିନ୍ନ ବିଶ୍ୱବିଦ୍ୟାଳୟରୁ ପି. ଏଚ୍. ଡି. ଡିଗ୍ରୀ ପାଇ ସାରିଛନ୍ତି ଏବଂ ବର୍ତ୍ତମାନ ମଧ୍ୟ ପ୍ରାୟ କୋଡ଼ିଏ ଜଣ ଛାତ୍ରଛାତ୍ରୀ ଏଥିପାଇଁ ଗବେଷଣାରତ । ସମଗ୍ର ବିଶ୍ୱରେ ଅନୁଷ୍ଠାନଟି ଏକ ଅତ୍ୟାଧୁନିକ ଗବେଷଣାଗାର ଭାବରେ ଖ୍ୟାତି ଅର୍ଜନ କରିଛି ।

ଅନୁଷ୍ଠାନରେ ଅନେକ ସମୟରେ କୃଷିମେଳା ଓ କୃଷକ ତାଲିମ କେନ୍ଦ୍ର ଅନୁଷ୍ଠିତ ହୋଇ ଶହ ଶହ କୃଷକଙ୍କୁ ଉନ୍ନତ ଧାନଚାଷ ପଦ୍ଧତି ବିଷୟରେ ପ୍ରତ୍ୟକ୍ଷ ତାଲିମ ଦିଆଯାଇଥାଏ । ଦେଶର ବିଭିନ୍ନ ରାଜ୍ୟରୁ ପ୍ରତିବର୍ଷ ହଜାର ହଜାର ଚାଷୀ ଏହି ଅନୁଷ୍ଠାନକୁ ଆସି ଭ୍ରମଣ କରି ସର୍ବଶେଷ ଜ୍ଞାନକୌଶଳ ବିଷୟରେ ଅବଗତ ହୁଅନ୍ତି ଓ ସେମାନଙ୍କ ସମସ୍ୟାଗୁଡ଼ିକ ସମ୍ବନ୍ଧରେ ବୈଜ୍ଞାନିକମାନଙ୍କ ସହିତ ଆଲୋଚନା କରନ୍ତି ।

ଶିକ୍ଷା ନବିସ୍ ଚାଷୀ ଓ ଗବେଷକ ଗ୍ରାହଗ୍ରାହୀମାନଙ୍କର ରହିବା ପାଇଁ ଅନୁଷ୍ଠାନରେ ଅନ୍ତର୍ଜାତୀୟ ଛାତ୍ରାବାସ, କୃଷକ ଛାତ୍ରାବାସ, ବୈଜ୍ଞାନିକ ଆବାସ ଓ ଅତିଥି ଆଳୟ ଅଛି । ବିଭିନ୍ନ ସମୟରେ ଭାରତୀୟ ଅନୁଶାସନ ସେବା ତଥା ବିଭିନ୍ନ ରାଜ୍ୟର ଅନୁଶାସନ ସେବାର ଶିକ୍ଷା ନବିସ୍‌ମାନେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ ପାଇଁ ଅନୁଷ୍ଠାନ ଭ୍ରମଣ କରନ୍ତି ।

ଗବେଷଣା ବ୍ୟତୀତ ଅନୁଷ୍ଠାନର ବୈଜ୍ଞାନିକ ମାନେ "ଅପରେସନାଲ ରିସର୍ଚ୍ଚ ପ୍ରୋଗ୍ରାମ" "ଲାବ ଟୁ ଲାଣ୍ଡ", "ନ୍ୟାସନାଲ ଡ଼ିମନଷ୍ଟ୍ରେସନ" ପ୍ରଭୃତି ପ୍ରକଳ୍ପ ମାଧ୍ୟମରେ ସିଧା ସଳଖ ଚାଷୀମାନଙ୍କ ଜମିରେ ଅଧିକ ଉତ୍ପାଦନ ପାଇଁ ଗବେଷଣା ଲବ୍ଧ ନୂତନ ଜ୍ଞାନକୌଶଳକୁ ପ୍ରଦର୍ଶନ କରନ୍ତି । ଯଦ୍ୱାରା ଚାଷୀମାନେ ଉନ୍ନତ ଧାନଚାଷ ପାଇଁ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବା ସହିତ ସେମାନଙ୍କ ରହିଥିବା କେତେକ ଅନ୍ଧବିଶ୍ୱାସ ଓ ଅଜ୍ଞତାକୁ ଦୂରକରି ପାରନ୍ତି ।

ଅନୁଷ୍ଠାନ ପୃଥିବୀର ଅନ୍ୟାନ୍ୟ ସଂସ୍ଥା, ଗବେଷଣା ଅନୁଷ୍ଠାନ ଓ ଦେଶ ତଥା କୃଷି ବିଶ୍ୱବିଦ୍ୟାଳୟ ସହିତ ମଧ୍ୟ ପାରସ୍ପରିକ ସହ ବୁଝାମଣା ସହିତ କେତେକ ପ୍ରକଳ୍ପରେ ଗବେଷଣା କରି ଆସୁଛନ୍ତି । ଆନ୍ତର୍ଜାତିକ ଧାନଗବେଷଣା ଅନୁଷ୍ଠାନ, ଫିଲପାଇନ୍‌ସ (୧୯୬୨ ରେ ସ୍ଥାପିତ) ଆନ୍ତର୍ଜାତିକ ଖାଦ୍ୟ ଓ କୃଷିସଂସ୍ଥା, ହଲଣ୍ଡ, ଜାପାନ ଓ ଆମେରିକା ପ୍ରଭୃତି ଦେଶମାନଙ୍କ ସହିତ ସହଯୋଗୀ ଭାବରେ ବିଭିନ୍ନ ପ୍ରକଳ୍ପ ଉପରେ ମଧ୍ୟ ଗବେଷଣା କରି ଆସୁଅଛି ।

ଅନୁଷ୍ଠାନରୁ ବୈଜ୍ଞାନିକମାନଙ୍କୁ ମଧ୍ୟ ପୃଥିବୀର ବିଭିନ୍ନ ଦେଶକୁ ତାଲିମ ପ୍ରାପ୍ତି ପାଇଁ ପ୍ରେରଣ କରାଯାଇଥାଏ । ସେମାନେ ସେଠାରୁ ଫେରି ତାଙ୍କର ତାଲିମ-ପ୍ରାପ୍ତ ଜ୍ଞାନକୁ ନୂତନ ଗବେଷଣାରେ ଲଗାଇଥାନ୍ତି ।

ଅନେକ ସମୟରେ ଅନୁଷ୍ଠାନରେ ଅନ୍ତର୍ଜାତୀୟ ଓ ଜାତୀୟ ସେମିନାର ଓ କର୍ମଶାଳାମାନ ଅନୁଷ୍ଠିତ ହୋଇଥାଏ । ଏଥିରେ ପୃଥିବୀର ବିଭିନ୍ନ ଦେଶର ଓ ଦେଶର ବିଭିନ୍ନ ରାଜ୍ୟରୁ ବୈଜ୍ଞାନିକମାନେ ଯୋଗ ଦେଇଥାନ୍ତି । ସେମିନାର ଓ କର୍ମଶାଳା ପାଇଁ ଅନୁଷ୍ଠାନରେ ସୁନ୍ଦର ଅଡ଼ିଟୋରିଅମ ଓ କନ୍‌ଫରେନ୍‌ସ ହଲ ଅଛି ।

ଅନୁଷ୍ଠାନରେ ଗବେଷଣା କରିବା ପାଇଁ ଅନେକ ପ୍ରକାରର ଅତ୍ୟାଧୁନିକ ଯନ୍ତ୍ରପାତି ଯଥା—କମ୍ପ୍ୟୁଟର, ଆଟମିକ ଆବ୍ସରପସନ ସ୍ପେକ୍ଟ୍ରୋମିଟର, ଆଇ. ଆର୍ ସ୍ପେକ୍ଟ୍ରୋମିଟର, ଏ. ଚ୍ ପି. ଏଲ୍. ସି., ଗ୍ୟାସ କ୍ରୋମାଟୋଗ୍ରାଫ୍, ମାସ୍ସ୍ପେକ୍ଟ୍ରୋମିଟର, ଲିକୁଇଡ଼ ସିଣ୍ଟିଲେସନ କାଉଣ୍ଟର, ଅଟୋ ଆନାଲାଇଜର ପ୍ରଭୃତି ଅଛି । ପ୍ରତ୍ୟେକ ବିଭାଗରେ ଗବେଷଣା କରିବା ପାଇଁ ପରୀକ୍ଷାଗାର ଓ ଜାଲଘର ବା ନେଟ୍ହାଉସ ଅଛି । ଜାଲି ଘରେ କୁଣ୍ଡମାନଙ୍କରେ ମାଟି କିମ୍ବା ପୁଷ୍ଟିକାରକ ଦ୍ରବଣରେ ଧାନଗଛ ବଢ଼ାଇ ସେ ଗୁଡ଼ିକ ଉପରେ ପ୍ରତ୍ୟକ୍ଷ ଗବେଷଣା କରାଯାଉଅଛି । ପରୀକ୍ଷାଗାରରେ କରାଯାଇଥିବା ଗବେଷଣାରୁ ମିଳୁଥିବା ଫଳାଫଳକୁ ଜାଲଘରେ କୁଣ୍ଡରେ ଧାନଗଛକରି ସେଗୁଡ଼ିକ ଉପରେ ପରୀକ୍ଷା କରାଯାଇଥାଏ । ତାପରେ ସେଥିରୁ ସୁଫଳ ମିଳିଲେ କ୍ଷେତରେ ଧାନ ବଢ଼ାଇ ଗବେଷଣା କରାଯାଏ । କିନ୍ତୁ ଏପରି କେତେକ ବିଭାଗ ଅଛି ଯଥା—କୃଷିବିଭାଗ ଓ ପ୍ରଜନନ ବିଭାଗ ଯେଉଁଠାରେ ସିଧାସଳଖ କ୍ଷେତରେ ପରୀକ୍ଷା କରାଯାଇଥାଏ । ଅନ୍ୟାନ୍ୟ କେତେକ ବିଭାଗରେ ପରୀକ୍ଷା କରାଯାଉଥିବା ପ୍ରକଳ୍ପରେ ମଧ୍ୟ କ୍ଷେତରେ ସିଧାସଳଖ ପରୀକ୍ଷା କରାଯାଏ ।

ପ୍ରତ୍ୟେକ ବର୍ଷ ଖରିଫ ଋତୁ ପୂର୍ବରୁ ନିର୍ଦ୍ଦେଶକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠାନର ବୈଜ୍ଞାନିକମାନେ ଏକତ୍ର ହୋଇ ପରୀକ୍ଷାରୁ ମିଳିଥିବା ଫଳାଫଳ ବିଷୟରେ ବିଶଦ ଆଲୋଚନା କରନ୍ତି ଏବଂ ପରବର୍ତ୍ତୀ ବର୍ଷପାଇଁ ଗବେଷଣା ପ୍ରକଳ୍ପ ପ୍ରସ୍ତୁତ କରନ୍ତି । ଏହା ବ୍ୟତୀତ ପ୍ରାୟ ପ୍ରତ୍ୟେକ ମାସରେ ନିର୍ଦ୍ଦେଶକ ବିଭାଗୀୟ ମୁଖ୍ୟମାନଙ୍କର ବୈଠକ ଡକାଇ ବିଭିନ୍ନ ଗବେଷଣା ପ୍ରକଳ୍ପର ଅଗ୍ରଗତି ସମ୍ପର୍କରେ ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ବିଷୟରେ ଆଲୋଚନା କରନ୍ତି । ବିଭାଗୀୟ ମୁଖ୍ୟମାନେ ମଧ୍ୟ ବିଭାଗୀୟ ବୈଜ୍ଞାନିକମାନଙ୍କ ସହିତ ଚାଲିଥିବା ଗବେଷଣା ପ୍ରକଳ୍ପଗୁଡ଼ିକ ସମ୍ବନ୍ଧରେ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ବିଷୟ ଉପରେ ଆଲୋଚନା କରନ୍ତି । ବିଭାଗୀୟ ସେମିନାରରେ ଓ ଅନୁଷ୍ଠାନର ସେମିନାରରେ ନୂତନ ଉଦ୍ଭାବିତ ଜ୍ଞାନକୌଶଳ ତଥା ନୂତନ ଧାନ କିସମ ଇତ୍ୟାଦି ବିଷୟରେ ଆଲୋଚନା କରାଯାଇଥାଏ ।

ବିଗତ ୪୬ ବର୍ଷ ଧରି ଅନୁଷ୍ଠାନରେ ଚାଲିଥିବା ବିଭିନ୍ନ ଗବେଷଣା ପ୍ରକଳ୍ପରୁ ଧାନଗଛକୁ ଅଧିକ ଉନ୍ନତରୁ ଉନ୍ନତତର କରି ସେଥିରୁ ଅଧିକ ଅମଳ ପାଇବା ପାଇଁ ଅନେକ ନୂତନ ଧାନକିସମ ଓ ନୂତନ ଜ୍ଞାନ କୌଶଳ ଉଦ୍ଭାବିତ ହୋଇଛି । କୃଷୀମାନେ ଏସବୁ ଅବଲମ୍ବନ କରି ଅଧିକରୁ ଅଧିକ ଅମଳ କରି ପାରୁଛନ୍ତି ।

ଗବେଷଣାର ପର୍ଯ୍ୟାୟକୁ ସାଧାରଣତଃ ଦୁଇଭାଗରେ ବିଭକ୍ତ କରାଯାଇପାରେ । ଅନୁଷ୍ଠାନର ପ୍ରାରମ୍ଭରୁ ୧୯୬୪ ମସିହା ପର୍ଯ୍ୟନ୍ତ ପ୍ରଥମ ପର୍ଯ୍ୟାୟ ଗବେଷଣାରେ ଗୃହୀତ କରାଯାଉଥିବା ବିଭିନ୍ନ କିସମର ଧାନକୁ ସଙ୍କରୀକରଣ ଓ ମ୍ୟୁଟେସନ୍ ପ୍ରଜନନ ପ୍ରକ୍ରିୟାରେ ଉନ୍ନୀତ କରାଯାଇ ସେଥିରୁ କେତେକ ନୂତନ କିସମର ଧାନ ବାହାର

କରାଯାଇ ଥିଲା । ସେଗୁଡ଼ିକ ମଧ୍ୟରେ ମସୁରୀ ଓ ୧୦୧୪ ମୁଖ୍ୟ । କୋଇମ୍ବାଟୁର ପରି ଅନୁଷ୍ଠାନର ପ୍ରାରମ୍ଭରେ ୨୦୦୦ ଧାନ କିସମ ଅଣାଯାଇ ଗବେଷଣା କରାଯାଇ ଥିଲା । ପରେ ଓଡ଼ିଶାର ଜୟପୁର ଠାରୁ "ଜୟପୁର ବଟାନିକାଲ ସର୍ଭେ" ପ୍ରକଳ୍ପ କାର୍ଯ୍ୟକାରୀ କରାଯାଇ ସେଠାରୁ ୧୭୪୫ କିସମର ଧାନ ସଂଗୃହୀତ ହୋଇଥିଲା । ଗବେଷଣାରୁ ଜୟପୁରକୁ ଧାନର "ଦ୍ୱିତୀୟ ଜନ୍ମସ୍ଥାନ" ବୋଲି ଅନୁମାନ କରାଯାଏ । ବର୍ତ୍ତମାନ ଅନୁଷ୍ଠାନରେ ୨୦ ହଜାର କିସମର ଧାନ ସଂଗୃହୀତ ହୋଇ ସଂରକ୍ଷିତ ଅଛି ।

ଇଣ୍ଡିକା-ଜାପୋନିକା ଓ FAO ପ୍ରକଳ୍ପରୁ ବିଶେଷ କିଛି ସୁଫଳ ମିଳି ନଥିଲା । ଚାଷ କରାଯାଉଥିବା ଲମ୍ବା ଧାନ ଗଛଗୁଡ଼ିକ ଅନେକ ସମୟରେ ପଡ଼ି ଯାଉଥିଲେ । ସେଥିରେ ପ୍ରଧାନତଃ ମହିଷା ରୋଗ ଓ କାଣ୍ଡବିନ୍ଧା ପୋକ ଲାଗି ଅନେକାଂଶରେ ଫସଲ ନଷ୍ଟ ହେଉଥିଲା । ଏ କିସମର ଧାନର ଅଧିକ ସାର ଆହରଣ କ୍ଷମତା ନ ଥିବାରୁ ସେଥିରୁ ହେକ୍ଟର ପ୍ରତି ୨ ଟନ୍‌ରୁ ଅଧିକ ଅମଳ ହେଉନଥିଲା । କିନ୍ତୁ ଏସବୁ ଧାନ କିସମରୁ କିପରି ସର୍ବାଧିକ ଅମଳ ମିଳିପାରିବ, ସେଥିପାଇଁ ଗବେଷଣା କରାଯାଇ ଚାଷ କୌଶଳମାନ ବାହାର କରାଯାଇ ଥିଲା ।

୧୯୬୪ ମସିହାରେ ଧାନ ଗବେଷଣା ଏକ ନୂତନ ମୋଡ଼ ନେଲା । ତାଇୱାନରୁ ଅଣାଯାଇଥିବା ତାଇଚୁଙ୍ଗ ଜାତୀୟ ଧାନ କିସମକୁ ଉପଯୋଗ କରି ଦେଶରେ "ସବୁଜ ବିପ୍ଳବ"ର ସୃଷ୍ଟି ହେଲା । ଏହି ଜାତୀୟ ଧାନ କିସମ ବାଙ୍ଗର ଜାତୀୟ ଓ ଅଧିକ ଖତସାର ଉପଯୋଗ କରି ଏଥିରୁ ହେକ୍ଟର ପ୍ରତି ୭।୮ ଟନ୍ ଅମଳ କରାଯାଇପାରେ । କିନ୍ତୁ ଏସବୁ କିସମର ଧାନର ରୋଗ ପୋକ ଆକ୍ରମଣକୁ ସହ୍ୟ କରିବାର ଶକ୍ତି ଖୁବ୍ କମ । ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରଜନନ ବିଜ୍ଞାନୀମାନେ ଏସବୁ କିସମ ଧାନ ସହିତ ଶଙ୍କରୀକରଣ କରି ଅନେକ କିସମର ନୂଆ ଧାନ ବାହାର କଲେଣି । ଅନୁଷ୍ଠାନରୁ ଏ ପର୍ଯ୍ୟନ୍ତ ୪୩ ନୂତନ କିସମର ଧାନ ବାହାର କରାଯାଇ ସାରା ଦେଶରେ ଚାଷ କରାଯାଉଛି । ସେମାନଙ୍କ ମଧ୍ୟରେ ରତ୍ନା, ସାବର୍ଣ୍ଣୀ, ପାଣିଧାନ, ସମଲେଇ, ତୁଳସୀ, ଉତ୍କଳପ୍ରଭା, ବାଳା, କୃଷ୍ଣା, ହୀରା, ମାଳା, ଉଦୟ ଇତ୍ୟାଦି ଅନ୍ତର୍ଭୁକ୍ତ ।

ଦେଶ ଖାଦ୍ୟ ଉତ୍ପାଦନରେ ସ୍ୱାବଲମ୍ବୀ ହେବାପରେ, ପରବର୍ତ୍ତିତ ପର୍ଯ୍ୟାୟରେ ନିମ୍ନ ଜଳମଗ୍ନ ଜମି, ଢିପ ଜମି ଓ ପଡ଼ିତ ଜମିରେ ଧାନ ଚାଷ ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ତେଣୁ ଅନୁଷ୍ଠାନର ବୈଜ୍ଞାନିକମାନେ ଏସବୁ ସମସ୍ୟା ବହୁଳ ଜମିରେ ସଫଳତାର ସହିତ ଧାନଚାଷ କରାଯାଇ କିପରି ଖାଦ୍ୟ ଉତ୍ପାଦନ ଆହୁରି ଅଧିକ ବୃଦ୍ଧି ପାଇବ ସେଥିପାଇଁ ଅହରହ ଗବେଷଣା କରି ଚାଲିଛନ୍ତି । ବର୍ତ୍ତମାନ ପ୍ରତ୍ୟେକ କିସମର ଜମି ପାଇଁ ବା ଦେଶର ପ୍ରତ୍ୟେକ ଅଞ୍ଚଳ ପାଇଁ ସୁଯୋଗ୍ୟ ଧାନ କିସମ ଓ ସେଗୁଡ଼ିକର ଉତ୍ପାଦନ ଚାଷ କୌଶଳ ଅନୁଷ୍ଠାନର ବୈଜ୍ଞାନିକମାନେ

ବାହାର କରିଛନ୍ତି । ସେ ସବୁ ଧାନ କିସମ ଓ ଉତ୍ପାଦନ ଜ୍ଞାନ କୌଶଳ ଅବଲମ୍ବନ କରି ଚାଷୀମାନେ ଉତ୍ପାଦନ ବୃଦ୍ଧି କରି ପାରୁଛନ୍ତି । ଅନୁଷ୍ଠାନରେ ୭୦ରୁ ୧୭୦ ଦିନ ମଧ୍ୟରେ ଅମଳ ହୋଇ ପାରୁଥିବା ଅତିସହଳ, ସହଳ, ମଧ୍ୟମ ସହଳ ମଧ୍ୟମ, ବିଳମ୍ବିତ ଓ ଅତି ବିଳମ୍ବିତ କିସମର ଧାନ ବିହନ ଚାଷୀ ଓ ବିଭିନ୍ନ ରାଜ୍ୟମାନଙ୍କୁ ସେମାନଙ୍କ ଚାହିଦା ମୁତାବକ ଦିଆଯାଇ ପାରୁଛି ।

କୃଷି ବୈଜ୍ଞାନିକମାନଙ୍କ ମତରେ ଧାନ ଉତ୍ପାଦନ କ୍ଷେତ୍ରରେ ଏକର ପ୍ରତି ଅମଳ କରାଯାଉଥିବା ଓ ଅମଳକ୍ଷମତା ମଧ୍ୟରେ ଅନେକ ପାର୍ଥକ୍ୟ ଅଛି । ଉପଯୁକ୍ତ ଖତସାରର ବ୍ୟବହାର ଦ୍ୱାରା ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି କରି ଉପଯୁକ୍ତ ପ୍ରଣାଳୀରେ ଫସଲରେ ରୋଗ ଓ ପୋକ ଦମନ କରି, ଉପଯୁକ୍ତ କିସମ ଧାନବିହନ ବ୍ୟବହାର କରି, ଉପଯୁକ୍ତ ସମୟରେ ଚାଷ ଓ ଅମଳ କରାଯାଇ ଏ ବ୍ୟବଧାନକୁ ହ୍ରାସ କରାଯାଇ ପାରିବ । ଅଧିକରୁ ଅଧିକ ଆମଦାନୀ ପାଇଁ ବୈଜ୍ଞାନିକମାନେ ବାଇଓଟେକ୍ନୋଲୋଜି, ହିସ୍ପୁକଲ୍‌ଚର୍, ସମନ୍ୱିତ ଖତସାର ବ୍ୟବହାର ଓ ସମନ୍ୱିତ ରୋଗପୋକ ନିରାକରଣ ପଦ୍ଧତି ଉପରେ ଅଧିକ ଗବେଷଣାମାନ କରୁଛନ୍ତି ।

ପରିବେଶ ବିଜ୍ଞାନୀମାନଙ୍କ ମତରେ ଧାନଚାଷ ହେଉଥିବା ଜମି ଜଳମଗ୍ନ ରହୁଥିବାରୁ ସେଥିରେ ଥିବା ଜୈବ ପଦାର୍ଥ ଓ ଯବକ୍ଷାରଜାନର ଅପଘଟନ ହୋଇ ଅଙ୍ଗାରକାମ୍ଳ, ମିଥେନ୍ ଓ ନାଇଟ୍ରସ୍ ଅକ୍‌ସାଇଡ୍ ବାଷ୍ପ ବାହାରି ବାୟୁମଣ୍ଡଳକୁ ଦୂଷିତ କରୁଛି । କିନ୍ତୁ ଖାଦ୍ୟ ପାଇଁ ଧାନଚାଷ ତ କରିବାକୁ ହିଁ ପଡ଼ିବ । ତେଣୁ ମୃତ୍ତିକା ବିଜ୍ଞାନୀ ଓ ସୂକ୍ଷ୍ମଜୀବ ତତ୍ତ୍ୱ ବିଜ୍ଞାନୀମାନେ ଭାରସାମ୍ୟ ରକ୍ଷାକରି ଧାନଚାଷ ଦ୍ୱାରା ପରିବେଶ କିପରି ଦୂଷିତ ନହେବ କିମ୍ବା କମ୍ ଦୂଷିତ ହେବ ସେଥିପାଇଁ ଗବେଷଣାମାନ ଚଳାଇଛନ୍ତି ।

ବର୍ତ୍ତମାନ ଦେଶରେ ଧାନ ଉତ୍ପାଦନ ୭୪ ନିୟୁତ ଟନ୍‌ରେ ପହଞ୍ଚିଛି । ଯାହାକି ତିନି ଦଶନ୍ଧି ପୂର୍ବରୁ ଥିଲା ସ୍ୱପ୍ନ । କିନ୍ତୁ ଦେଶର କ୍ରମବର୍ଦ୍ଧନଶୀଳ ଜନ ସମାଜକୁ ଖାଦ୍ୟ ଯୋଗାଇବା ପାଇଁ ଦେଶକୁ ଏ ଶତାବ୍ଦୀର ଶେଷ ବେଳକୁ ୯୪ ନିୟୁତ ଟନ୍ ଧାନ ଉତ୍ପାଦନ କରିବାକୁ ପଡ଼ିବ । ଏଥିପାଇଁ ବର୍ତ୍ତମାନ ପୃଥିବୀର ଦ୍ୱିତୀୟ ବୃହତ୍ତମ ଧାନ ଗବେଷଣା ଅନୁଷ୍ଠାନ ଓ ସମଗ୍ର ଦେଶପାଇଁ ଏକ ଜ୍ଞାନ ଦୀପ ଓଡ଼ିଶାର କଟକସ୍ଥିତ ଏହି ଧାନ ଗବେଷଣା ଅନୁଷ୍ଠାନର ଅନେକ ଗୁରୁଦାୟିତ୍ୱ ରହିଛି । କିନ୍ତୁ ଦୁଃଖର କଥା ପୃଥିବୀ ପ୍ରସିଦ୍ଧ ଏହି ଗବେଷଣା ଅନୁଷ୍ଠାନକୁ "ଧାନଚାଲ ଅଡ୍ଡାର" ପରି କେତେଜଣ ବୁଝିଆ ଜାଣିଛନ୍ତି ?

# କଟକରେ ଗୋପାଳନ

ଡଃ ଗୁରୁପ୍ରସାଦ ମହାନ୍ତି

ମାନବ ସଭ୍ୟତା ସହିତ ଗୋପାଳନ କାଳେ କାଳେ ଓତଃପ୍ରୋତ ଭାବରେ ଜଡ଼ିତ । ପୁରାତନ ପ୍ରସ୍ତର ଯୁଗରେ ମଣିଷ ବଣଜଙ୍ଗଲରେ ପଶୁଭଳି ବାସ କରୁଥିଲା । ଫଳମୂଳ ଓ କଞ୍ଚାମାଂସ ଖାଇ କ୍ଷୁଧା ନିବାରଣ କରୁଥିଲା । ନୂତନ ପ୍ରସ୍ତର ଯୁଗରେ ସେ ଅଗ୍ନିର ବ୍ୟବହାର ଜାଣିଲା । ଗଛପତ୍ର ଓ ବଳ୍କଳକୁ ପରିଧାନ କରି ଶିଖିଲା । ତା'ଛଡ଼ା ଗାଈ-ଗୋରୁ, ଛେଳି-ମେଣ୍ଢା ଆଦି ପଶୁମାନଙ୍କୁ ପାଳନ କରିବାକୁ ଚେଷ୍ଟା କଲା । କ୍ରମେ ଏହି ଗୋମହିଷାଦି ପଶୁମାନଙ୍କୁ ମଣିଷ ନିଜସ୍ୱ ବୋଲି ଗ୍ରହଣ କରି ପଶୁପାଳନରେ ବ୍ରତୀ ହେଲା । ପ୍ରତିକୂଳପାଗ ବା ଋତୁରେ ଗୋମେଷାଦି ପଶୁମାନଙ୍କ ଲାଗି ଚାରଣଭୂମିର ଅନୁସନ୍ଧାନରେ ବୁଲି ବୁଲି ସଭ୍ୟମଣିଷ ପ୍ରଥମ କରି ଭାରତଭୂମିରେ ପାଦ ଦେଲା । ଏ ଦେଶର ସୈନ୍ଧବଗାଙ୍ଗେୟ ସମତଳ ଭୂମିରେ ସୃଷ୍ଟି ହେଲା ଆର୍ଯ୍ୟସଭ୍ୟତା । ମହେଞ୍ଜୋଦାରୋ ଓ ହରପ୍ପାର ପ୍ରତ୍ନତାତ୍ତ୍ୱିକ ଗବେଷଣାରୁ ଜଣାଯାଏ ଯେ, ଗୋପାଳନ ଥିଲା ପୁରାତନ ଭାରତୀୟ ସଭ୍ୟତାର ଏକ ମୁଖ୍ୟ ଅବଲମ୍ବନ । ଉତ୍ତର ଭାରତରେ ଆର୍ଯ୍ୟସଭ୍ୟତାର ପ୍ରସାର ହେବା ସଙ୍ଗେ ସଙ୍ଗେ ଦ୍ରାବିଡ଼ସାମ୍ରାଜ୍ୟ ଦକ୍ଷିଣ ଭାରତକୁ ହଟିଗଲା । ବିନ୍ଧ୍ୟ ପର୍ବତର ଦକ୍ଷିଣକୁ ଦ୍ରାବିଡ଼ ସଭ୍ୟତା ଓ ଉତ୍ତରରେ ଆର୍ଯ୍ୟ ସଭ୍ୟତା ପ୍ରାଧାନ୍ୟ ଲାଭ କଲା । ମାତ୍ର ଏ ଦୁଇ ସଭ୍ୟତାର ମିଳନସ୍ଥଳ ହେଲା ପୁଣ୍ୟଭୂମି ଉତ୍କଳ । ଗଙ୍ଗା, ଯମୁନା, ସରସ୍ୱତୀଙ୍କର ତ୍ରିବେଣୀଠାରେ ସଙ୍ଗମ ହେଲାଭଳି ଆର୍ଯ୍ୟ, ଅନାର୍ଯ୍ୟ ଓ ଦ୍ରାବିଡ଼ମାନଙ୍କର ଧର୍ମ, ସଂସ୍କୃତି ଓ ସଭ୍ୟତାର ସମାହାର ହେଲା ଏଇଠି ।

ଓଡ଼ିଶାର ପ୍ରାଚୀନତମ ଇତିହାସ ସମ୍ପର୍କରେ କୌଣସି ସଠିକ ତଥ୍ୟ ପାଇବା ସହଜସାଧ୍ୟ ନହେଲେ ମଧ୍ୟ ଭାରତର ପୂର୍ବ ଉପକୂଳରେ କଳିଙ୍ଗ ବା ଉତ୍କଳ ଯେ ଏକ ସମୃଦ୍ଧିଶାଳୀ ରାଜ୍ୟ ଭାବରେ ଖ୍ୟାତିଲାଭ କରିଥିଲା ତା'ର ପ୍ରମାଣ ଅଶୋକଙ୍କର କଳିଙ୍ଗ ଅଭିଯାନରୁ ସ୍ପଷ୍ଟ ଭାବେ ଜଣାପଡ଼େ । ଏହା ବିଗତ ବାଇଶିଶହ ବର୍ଷ ତଳର କଥା । ଉତ୍କଳବାସୀଙ୍କର ଧନଧାନ୍ୟ, ଶିକ୍ଷାଦୀକ୍ଷା, ଶୌର୍ଯ୍ୟ ବୀର୍ଯ୍ୟର ଗରିମା ତତ୍କାଳୀନ ଉତ୍ତରାଞ୍ଚଳର ନରପତିମାନଙ୍କୁ ଲୋଭାସକ୍ତ କରିଥିଲା । ମାତ୍ର କଳିଙ୍ଗବାସୀ-

ମାନଙ୍କର ଯୁଦ୍ଧ ନୈପୁଣ୍ୟ ତଥା ବୀରତ୍ୱର ପରମ୍ପରା ଯୋଗୁଁ ଏ ରାଜ୍ୟକୁ ଆକ୍ରମଣ କରିବାର ସାହସ ଅନ୍ୟମାନଙ୍କର ନଥିଲା ।

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ବୀର ଚଣ୍ଡାଶୋକ କଳିଙ୍ଗ ଆକ୍ରମଣ କଲେ ଓ ଏହି ଯୁଦ୍ଧରେ ଲକ୍ଷ ଲକ୍ଷ ଓଡ଼ିଆ ପାଇକ ପ୍ରାଣବଳି ଦେଲେ । ମାତ୍ର ଏହି ବୀରପୁରୁଷମାନଙ୍କର ଉତ୍ତର ଦାୟାଦମାନେ ପରବର୍ତ୍ତୀ ଶତାବ୍ଦୀରେ ମହାମେଘବାହନ କଳିଙ୍ଗାଧିପତି ଖାରବେଳଙ୍କ ଛତ୍ରଚ୍ଛାୟା ତଳେ ସଂଗଠିତ ହୋଇ ଆକୁମାରୀ ହିମାଚଳ ପର୍ଯ୍ୟନ୍ତ ବିଶାଳ ଓଡ଼ିଶା ସାମ୍ରାଜ୍ୟ ଗଠନ କରିଥିଲେ । ଖାରବେଳଙ୍କ ଉତ୍ତରାଧିକାରୀମାନଙ୍କର ଅକର୍ମଣ୍ୟତାର ସୁଯୋଗ ପାଇ ଆନ୍ଧ୍ର ସାତବାହନ ବଂଶୀୟ ରାଜାମାନେ ଓଡ଼ିଶାରେ ରାଜ୍ୟ ସ୍ଥାପନ କଲେ ଓ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଆ ପାଇକମାନଙ୍କର ଆନୁଗତ୍ୟ ଲାଭ କରି ଓଡ଼ିଶାରେ ରାଜତ୍ୱ କଲେ ।

ଅଶୋକଙ୍କ ସମୟଠାରୁ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ଦୀର୍ଘ ଆଠଶହ ବର୍ଷ ଧରି ଓଡ଼ିଶାରେ ବୌଦ୍ଧ ଓ ଜୈନଧର୍ମ ପ୍ରଭାବ ବିସ୍ତାର କଲା । ମାତ୍ର ଷଷ୍ଠ ଶତାବ୍ଦୀରେ ଗୌଡ଼ରାଜ ଶଶାଙ୍କ, ସପ୍ତମ ଶତାବ୍ଦୀରେ ଶୈଳୋଦ୍ଭବ ରାଜବଂଶ ତଥା ଅଷ୍ଟମ ଶତାବ୍ଦୀରେ ଭୌମକର ବଂଶୀ ରାଜାମାନେ ଶୈବ ଓ ଶାକ୍ତ ଧର୍ମର ପ୍ରଚଳନ କରାଇଥିଲେ । ଦଶମ ଶତାବ୍ଦୀରେ କେଶରୀ ବଂଶୀୟ ନରପତିମାନେ ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମର ପୃଷ୍ଠପୋଷକତା କରି ଓଡ଼ିଶାରେ ବହୁତ ଧର୍ମପୀଠର ପ୍ରତିଷ୍ଠା କରିଥିଲେ । କଳିଙ୍ଗ ସାମ୍ରାଜ୍ୟକୁ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ କରି ରାଜ୍ୟରେ ଧନଧାନ୍ୟ, କଳାସ୍ଥାପତ୍ୟ, କୃଷି ବାଣିଜ୍ୟ ଓ ଶୌର୍ଯ୍ୟବୀର୍ଯ୍ୟର ସମୃଦ୍ଧି ଘଟାଇବା ଦିଗରେ ଓଡ଼ିଆମାନେ ଶତାବ୍ଦୀ ଶତାବ୍ଦୀ ଧରି ନିଷ୍ଠାର ସହିତ ଉଦ୍ୟମ କରି ଆସିଛନ୍ତି ।

ଓଡ଼ିଶାର ଶେଷ ହିନ୍ଦୁ ରାଜା ମୁକୁନ୍ଦଦେବଙ୍କ ପତନ ପରେ ହିଁ ବାହ୍ୟଶକ୍ତିମାନେ ଏ ରାଜ୍ୟ ମଧ୍ୟକୁ ପ୍ରବେଶ କରିବାଲାଗି ସୁଯୋଗ ପାଇଲେ । ଏହା ମାତ୍ର ବିଗତ ଚାରି ଶହ ବର୍ଷର କଥା । ମାତ୍ର ପୂର୍ବବର୍ତ୍ତୀ କାଳରେ ଓଡ଼ିଆମାନଙ୍କର ବୀରତ୍ୱ ସମଗ୍ର ଜମ୍ବୁଦ୍ୱୀପରେ ପ୍ରଖ୍ୟାତ ହୋଇଥିଲା । ଏପରିକି, ମହାଭାରତ ଯୁଦ୍ଧରେ ପ୍ରବଳ ପରାକ୍ରମୀ ଓଡ଼ିଆମାନେ ଅଂଶଗ୍ରହଣ କରିଥିଲେ । ଭଉଣୀ ସୁଭଦ୍ରାଙ୍କୁ ଓଡ଼ିଶାର ରାଜା ଶିଶୁପାଳଙ୍କ ସହିତ ବିବାହ କରାଇବାଲାଗି ବଡ଼ଭାଇ ବଳରାମ ଉଦ୍ୟମ କରୁଥିବା ବେଳେ କୃଷ୍ଣଙ୍କ ଇଙ୍ଗିତରେ ପାଣ୍ଡବ ବୀର ଅର୍ଜ୍ଜୁନ ସୁଭଦ୍ରାଙ୍କୁ ଅପହରଣ କରିନେଲେ । ରାଜା ଶିଶୁପାଳଙ୍କ ବାସସ୍ଥାନ ସମ୍ବନ୍ଧରେ ଭିନ୍ନମତ ଥିଲେ ମଧ୍ୟ ଭୁବନେଶ୍ୱର ନିକଟସ୍ଥ ଶିଶୁପାଳଗଡ଼ର ଭଗ୍ନାବଶେଷକୁ ପ୍ରତ୍ନତାତ୍ତ୍ୱିକମାନେ ଶିଶୁପାଳଙ୍କର ରାଜଧାନୀ ବୋଲି ମତପୋଷଣ କରନ୍ତି ।

ଏସବୁ ଐତିହାସିକ ତଥ୍ୟାବଳୀକୁ ବିଚାର କଲେ ଓଡ଼ିଆ ଜାତି ଏକ ଯୁଦ୍ଧପ୍ରିୟ ଜାତି ବୋଲି ପ୍ରମାଣିତ ହୁଏ । ତେବେ ଏହି ବୀରତ୍ୱ ପଛରେ ବଳକାରକ ଖାଦ୍ୟର

ଭୂମିକା ଯେ ପ୍ରଚ୍ଛନ୍ନ ଭାବେ ନିହିତ ଅଛି ତାହା କେହି ଚିନ୍ତା କରେନା । ରାଜାଙ୍କର ସୈନ୍ୟସାମନ୍ତମାନଙ୍କୁ ପ୍ରଚୁର ଭୂସମ୍ପତ୍ତି ଜାଗିର ସୂତ୍ରରେ ଦିଆଯାଇଥିଲା ଓ ବର୍ଷସାରା ସେମାନେ କୃଷି ଓ ପଶୁପାଳନ ଦିଗରେ ନିୟୋଜିତ ରହି ଗ୍ରାମାଞ୍ଚଳରେ ନିୟମିତ ସମରାଭ୍ୟାସ କରୁଥିଲେ । କେବଳ ଯୁଦ୍ଧ ସମୟରେ ସୈନ୍ୟମାନଙ୍କୁ ଡାକରା ଆସୁଥିଲା ।

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଦୁର୍ଗମାନ ପ୍ରତିଷ୍ଠା କରାଯାଇ ତନ୍ମଧ୍ୟରେ ରହୁଥିବା ରାଜକୀୟ ସେନାବାହିନୀର ଦଳପତି ବା କରଦରାଜାମାନେ ଶତ୍ରୁମାନଙ୍କର ପ୍ରତିରୋଧ କରୁଥିଲେ । ଦୁର୍ଗଗୁଡ଼ିକର ଚତୁଃପାର୍ଶ୍ୱରେ ଥିବା ପୁରପଲ୍ଲୀମାନଙ୍କରେ ଖଣ୍ଡାୟତ, କ୍ଷତ୍ରିୟ ବା ପାଇକ ବସ୍ତିରେ ଥିବା ପାଇକ ଆଖଡ଼ାମାନଙ୍କରେ ଯୁଦ୍ଧବିଦ୍ୟା ଶିକ୍ଷା ଦିଆଯାଉଥିଲା । ଏସବୁ ଆଖଡ଼ାରେ ତାଲିମପ୍ରାପ୍ତ ଓଡ଼ିଆ ବୀରମାନେ ଭାରତର ଯେ କୌଣସି ରାଜ୍ୟର ଯୋଦ୍ଧାମାନଙ୍କଠାରୁ ଅଧିକ ପରାକ୍ରମୀ ଥିଲେ ।

କେତୁ ଏହା ବିଚାର କରିବାକୁ ହେବ ଯେ, ଯେଉଁ ପରାକ୍ରମ ତଥା ଶୌର୍ଯ୍ୟ-ବୀର୍ଯ୍ୟ ମୂଳରେ ପୁଷ୍ଟିକର ସାରବାନ ଖାଦ୍ୟର ପ୍ରାଚୁର୍ଯ୍ୟ ନିହିତ ଭାବରେ ପର୍ଯ୍ୟବେଶିତ ହୋଇଛି । ସେ କାଳରେ ଦେଶସାରା ଘନଜଙ୍ଗଲରେ ଆଚ୍ଛାଦିତ ହୋଇ ନାନା ପ୍ରକାର ପଶୁପକ୍ଷୀ ଅରଣ୍ୟାଞ୍ଚଳରେ ଭରି ରହିଥିଲେ । ଶିକାର କରିବା ଏକ କ୍ଷତ୍ରିୟୋଚିତ ଆମୋଦ ଭାବେ ଗଣ୍ୟ ହେଉଥିଲା । ତେଣୁ ମାଂସ ସେ କାଳର ଯୋଦ୍ଧାମାନଙ୍କର ପ୍ରିୟ ଖାଦ୍ୟ ହୋଇଥିବ । ତେବେ ପ୍ରତିଦିନ ଶିକାର କରି ମାଂସ ଖାଇବା ସର୍ବଦା ସମ୍ଭବପର ନୁହେଁ । ସେଥିଲାଗି ଛାଗ ଓ ମେଷ ପାଳନ ଉପରେ ସେ କାଳରେ ଜୋର ଦିଆଯାଉଥିବ । ତଥାପି ସବୁ ଖାଦ୍ୟ ମଧ୍ୟରେ ଦୁଗ୍ଧଜାତ ଦ୍ରବ୍ୟର ବହୁଳ ବ୍ୟବହାର ଏକ ସୁସ୍ଥସମୃଦ୍ଧ ସମାଜ ଗଠନର ପରିଚାୟକ । ମେଧାଶକ୍ତି ବୃଦ୍ଧି କରିବା ଦିଗରେ ଦୁଗ୍ଧର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ଏବଂ ଦେହ ଗଠନ ତଥା ପୁଷ୍ଟିସାଧନ ଦିଗରେ ମାଂସ ତୁଳନାରେ ଦୁଗ୍ଧ ଅଧିକ ଉପାଦେୟ । ଏସବୁ ଦୃଷ୍ଟିରୁ ବିଚାରକଲେ ସେ ସମୟରେ ଯେ ଉନ୍ନତ ଗୋପାଳନ କରାଯାଉଥିଲା, ଏହା ନିଃସନ୍ଦେହ ।

ଧର୍ମ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ, ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହେବାପରେ ବୌଦ୍ଧଧର୍ମ ହିଁ ସେକାଳର ରାଜଧର୍ମ ହେଲା । ଜୀବହିଂସା ଓ ପଶୁବଧ ବିରୋଧରେ ଜନମତ ସୃଷ୍ଟି କରିବା ଦିଗରେ ରାଜା ତାଙ୍କର ଚେଷ୍ଟା ଅବ୍ୟାହତ ରହିଲା । ରାଜଧର୍ମ ରକ୍ଷା ଦିଗରେ ସୈନିକମାନେ ସାଧାରଣତଃ ଅଧିକ ସହନଶୀଳ ହୁଅନ୍ତି । ତେଣୁ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀଠାରୁ ଓଡ଼ିଶାରେ ନିରାମିଷ ଖାଦ୍ୟର ଅଧିକ ପ୍ରଚଳନ ହୋଇଥିବ । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀରେ କଳିଙ୍ଗ ସମ୍ରାଟ ଖାରବେଳ ଜୈନଧର୍ମ ପ୍ରଚାର ଦିଗରେ ବ୍ରତୀ ହେଲେ । ବୌଦ୍ଧମାନଙ୍କ ପରି ଜୈନମାନେ ମଧ୍ୟ ଅହିଂସାର ଅନୁଗାମୀ ଅଟନ୍ତି । ତେଣୁ ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀଠାରୁ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀ ପର୍ଯ୍ୟନ୍ତ ଖାରବେଳଙ୍କ ପରବର୍ତ୍ତୀ ରାଜାମାନେ ଜୈନଧର୍ମାବଲମ୍ବୀ ଥିବାରୁ

ଓଡ଼ିଶାରେ ନିରାମିଷ ଖାଦ୍ୟର ଅଧିକ ପ୍ରଚଳନ ଯୋଗୁଁ ଗୋପାଳନ ଓ ଦୁଗ୍ଧଉତ୍ପାଦନ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିବାର ଅନୁମିତ ହୁଏ । ରାଜ୍ୟରେ ଯଥେଷ୍ଟ ପରିମାଣରେ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟ ମିଳୁଥିବା ଯୋଗୁଁ ଉତ୍କଳୀୟମାନେ ହୃଷ୍ଟପୁଷ୍ଟ, ମେଧାବୀ, ଜ୍ଞାନୀ, ଗୁଣୀ ଓ ଧନବାନ୍ ଥିଲେ ।

ଏବେ ବାଣିଜ୍ୟ ବ୍ୟାବସାୟିକ ଦିଗରୁ ବିଚାର କରି ଦେଖିଲେ ଜଣାଯାଏ ଯେ, ଦକ୍ଷିଣପୂର୍ବ ଏସିଆରେ ବ୍ୟବସାୟ କରି ଓଡ଼ିଆ ସାଧବମାନେ ପ୍ରଚୁର ଧନରତ୍ନ ବହି ଆଣୁଥିଲେ । କାର୍ତ୍ତିକପୂର୍ଣ୍ଣିମା ଠାରୁ ବାଲି, ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଆଦି ଦ୍ୱୀପପୁଞ୍ଜକୁ ଶହ ଶହ ବୋଇତ ଓଡ଼ିଶାରୁ ନାନାଦି ପଣ୍ୟଦ୍ରବ୍ୟ ବହନକରି ଯାତ୍ରା କରୁଥିଲେ । ପ୍ରତିଦିନ କାର୍ତ୍ତିକ ପୂର୍ଣ୍ଣିମାଠାରୁ ଆରମ୍ଭ କରି ପାଞ୍ଚ ସାତଦିନବ୍ୟାପୀ କଟକର ଗଡ଼ଗଡ଼ିଆ ମହାଦେବଙ୍କ ମନ୍ଦିର ନିକଟବର୍ତ୍ତୀ ମହାନଦୀ ପାର୍ଶ୍ୱସ୍ଥ ପଡ଼ିଆରେ ଯେଉଁ ବାଲିଯାତ୍ରା ଉତ୍ସବ ଅନୁଷ୍ଠିତ ହୁଏ ତାହାହିଁ ଉକ୍ତ ବାଣିଜ୍ୟଯାତ୍ରାର ସ୍ମାରକୀ । କଳିଙ୍ଗର ସାଧବମାନଙ୍କ ବୋଇତରେ ସମ୍ରାଟ ଧର୍ମାଶୋକଙ୍କ ପ୍ରେରିତ ବୌଦ୍ଧଭିକ୍ଷୁମାନେ ଜାଭା, ସୁମାତ୍ରା, ଜାପାନ, ଚୀନ, କୋରିଆ, ଫିଲିପାଇନ୍ସ ଆଦି ପୂର୍ବଏସିଆର ବିଭିନ୍ନ ଦେଶକୁ ଯାଇ ସେଠାରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ଏସବୁ ଦ୍ୱୀପପୁଞ୍ଜର ସାମାଜିକ ଜୀବନ ଉପରେ ଓଡ଼ିଆ ଭାଷା ଓ ସଂସ୍କୃତିର ଯେଉଁ ପ୍ରଭାବ ପଡ଼ିଥିଲା ତାର ଆଭାସ ଏବେ ମଧ୍ୟ ସ୍ପଷ୍ଟ ହୋଇ ରହିଛି । ତେଣୁ ଏସବୁ ତଥ୍ୟରୁ ଅନୁମିତ ହୁଏ ଯେ, କଟକନଗରୀ ସେକାଳର ବାଣିଜ୍ୟିକ କେନ୍ଦ୍ରସ୍ଥଳୀ ଥିଲା ।

କଟକ କହିଲେ ସେ ସମୟରେ ବାରାଣସୀ କଟକ ବା ବିଦ୍ୟାନାସୀ କଟକକୁ ବୁଝାଉଥିଲା । ତାତ୍କାଳୀକ ମହାନଦୀ ଥିଲା ଗଭୀର ଓ ସୁନାବ୍ୟ । ସେଥିଲାଗି ସାମୁଦ୍ରିକ ଜୁଆରର ପ୍ରଭାବ କଟକ ପର୍ଯ୍ୟନ୍ତ ଅନୁଭୂତ ହେଉଥିଲା । ଲେଖକ ଅନୁଭୂତିରୁ ଜଣାଯାଏ ଯେ, ବିଗତ ୩୦।୪୦ ବର୍ଷ ତଳେ ସମୁଦ୍ର ଜୁଆର କଟକଠାରୁ ମାତ୍ର ୩୫।୩୦ କିଲୋମିଟର ପର୍ଯ୍ୟନ୍ତ ଆସୁଥିଲା । ଏବେ ତାହା ଆହୁରି ତଳକୁ ଖସିଗଲାଣି । ଏହାର କାରଣ ହେଉଛି ନଦୀମାନଙ୍କର ମୁହାଣ ପୋତି ହୋଇ ସମୁଦ୍ର ସ୍ରୋତକୁ ବାଧା ଦେଉଛି । ସାଧାରଣତଃ ପୂର୍ଣ୍ଣିମା ଓ ଅମାବାସ୍ୟାରେ ସମୁଦ୍ରରେ ପ୍ରବଳ ଜୁଆର ଉଠେ ଓ ସେହି ଜୁଆର ପ୍ରଭାବରେ ଦୁଇଦିନ ଧରି ମହାନଦୀରେ ଜଳର ଗଭୀରତା ବୃଦ୍ଧି ପାଏ । ଏଥିଯୋଗୁଁ ନୌଚାଳନାରେ ସୁବିଧା ହେବା ସ୍ୱାଭାବିକ । ଏଥିସହିତ ଅନୁକୂଳପାଗ, ପବନ ଓ ନୌଚାଳନାର ସୁବିଧା ଅନୁଯାୟୀ କାର୍ତ୍ତିକ ପୂର୍ଣ୍ଣିମାରେ ଗଡ଼ଗଡ଼ିଆ ଘାଟରୁ ବୋଇତ ମେଲିବାର ସହସ୍ରାଧିକ ବର୍ଷର ବ୍ୟବସ୍ଥା ଏବେକାର ବାଲିଯାତ୍ରା ପର୍ବ ମଧ୍ୟରେ ଆତ୍ମଗୋପନ କରିଛି ।

ଗ୍ରାମାଞ୍ଚଳରେ ସାଧବପୁଅର ବାଲିଦ୍ୱୀପ ଯାତ୍ରାର ସ୍ମାରକୀ ସ୍ୱରୂପ ଝିଅ ବୋହୂ କାର୍ତ୍ତିକ ପୂର୍ଣ୍ଣିମା ଦିନ ପାହାନ୍ତାରୁ ଉଠି ଗାଧୋଇସାରି କଦଳୀ ଡଙ୍ଗାରେ ପାନ ଗୁଆ,

କର୍ପୂର, ଘିଅବଣ୍ଟା ଆଦି ସ୍ଥାପନ କରି ଫୁଲଦୁଲ ଦେଇ ବନ୍ଦାପନା କରିବାର ପୁରୁଷାନୁକ୍ରମିକ ରୀତି ତାତ୍କାଳୀକ ନୌବାଣିଜ୍ୟର ସୂଚନା ଦିଏ । କ୍ୱଏତ ସେ ସମୟରେ ସାଧବପୁଅ ଓଡ଼ିଶାରୁ ପାନ, ଗୁଆ, କର୍ପୂର, ଗୋଲମରିଚ, ମୃଗନାଭି କସ୍ତୁରୀ, ଘିଅ, ମହୁ ଆଦି ପଣ୍ୟଦ୍ରବ୍ୟ ନେଇ ପୂର୍ବ ଏସିଆରେ ବାଣିଜ୍ୟ ବ୍ୟବସାୟ କରୁଥିବେ । ଏବେମଧ୍ଯ ଭାରତର ବିଭିନ୍ନ ପ୍ରଦେଶ ତଥା ବାହାର ଦେଶମାନଙ୍କୁ ଓଡ଼ିଶାରୁ ପାନ ରପ୍ତାନି ହେଉଛି । ତାତ୍କାଳୀକ କଳିଙ୍ଗ ବା ଉତ୍କଳର ଶିକ୍ଷାଦୀକ୍ଷା, ବାଣିଜ୍ୟ ବ୍ୟବସାୟ ଓ ଶୌର୍ଯ୍ୟବୀର୍ଯ୍ୟ ଆଦି ସୃଷ୍ଟି କରିବା ମୂଳରେ ସୁଖାଦ୍ୟର ପ୍ରାଚୁର୍ଯ୍ୟ ଯେ ନିହିତ ଥିଲା ଏହା ନିଃସନ୍ଦେହ । ଏହି ସୁଖାଦ୍ୟ ବା ପୁଷ୍ଟିକର ଖାଦ୍ୟ ଭାବରେ ଦୁଧ, ଦହି, ଛେନା, ଘିଅ ଆଦିର ବହୁଳ ପ୍ରଚଳନ ସେ ସମୟରେ ନିଶ୍ଚିତ ଭାବରେ ଥିବ ।

ଜଳବାୟୁ ଦୃଷ୍ଟିରୁ ବିଚାର କଲେ ଦୁଗ୍ଧ ଉତ୍ପାଦନ ଲାଗି ପାର୍ବତ୍ୟ ଅଞ୍ଚଳ ବା ମାଳଭୂମି ତୁଳନାରେ ସମତଳ ଅଞ୍ଚଳରେ ଗୋପାଳନ ଅଧିକ ଲାଭଦାୟକ ହୋଇଥାଏ । ପୃଥିବୀର ଯେକୌଣସି ଦେଶର ସମତଳ ଅଞ୍ଚଳରେ ହିଁ ଅଧିକ ଦୁଗ୍ଧବତୀ ଗୋରୁଗାଈ ପାଳିତ ହୁଅନ୍ତି । ତେଣୁ ଓଡ଼ିଶାର ଉପକୂଳବର୍ତ୍ତୀ ସମତଳ ଅଞ୍ଚଳରେ ଅଧିକ ଦୁଗ୍ଧ ଉତ୍ପାଦନକ୍ଷମ ଗୋରୁଗାଈ ପାଳିତ ହେବା ସ୍ୱାଭାବିକ । ତଦନୁଯାୟୀ କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାର ଉପକୂଳ ଅଞ୍ଚଳମାନଙ୍କରେ ଅଧିକ ଦୁଧିଆଳି ଗାଈ ପାଳିତ ହେଉଥିବାର ଅନୁମାନ କରାଯାଏ ।

ଓଡ଼ିଶାର ନଦୀମାନଙ୍କ ମଧ୍ୟରେ ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ବୁଢ଼ାବଳଙ୍ଗ, ସୁବର୍ଣ୍ଣରେଖା ଓ ଋଷିକୁଲ୍ୟା ଆଦି ନଦୀମାନେ ଯେଉଁ ଅବବାହିକା ବା ତ୍ରିକୋଣଭୂମି-ମାନ ସୃଷ୍ଟି କରିଛନ୍ତି ସେସବୁ ହେଉଛି ଗୋପାଳନର ପ୍ରକୃଷ୍ଟ କ୍ଷେତ୍ର । ତନ୍ମଧ୍ୟରେ ମହାନଦୀ ତ୍ରିକୋଣଭୂମି ହେଉଛି ବୃହତ୍ତମ । ଏହି ତ୍ରିକୋଣଭୂମିର ଶୀର୍ଷବିନ୍ଦୁରେ କଟକ ଅବସ୍ଥିତ । କଟକର ଦକ୍ଷିଣ ପାର୍ଶ୍ୱରେ କାଠଯୋଡ଼ି ଓ ବାମ ପାର୍ଶ୍ୱରେ ମହାନଦୀ । ପୁରାତନ କଟକ ସହରର ଅନେକାଂଶ ଏହି ଦୁଇ ନଦୀର ଗର୍ଭରେ ବିଲୀନ ହୋଇଯାଇଛି । କାଠ କେତେଖଣ୍ଡ ଯୋଡ଼ିଦେଇ ଯେଉଁ ନଦୀକୁ ପାର ହୋଇ ପାରୁଥିଲି ସେ ନଦୀ କାଳକ୍ରମେ କଟକ ସହରକୁ ଉଦରସ୍ଥକରି କାୟା ବିସ୍ତାର କରିଛି ।

ସୁବର୍ଣ୍ଣ ଯୁଗରେ ଏସବୁ ନଦୀ ସୁଗଭୀର ଓ କୃଶତନୁ ହୋଇ ପ୍ରବାହିତ ହେଉ-ଥିଲେ ଓ ମହାନଦୀରୁ ଆହୁରି ଅନେକ ଚିରସ୍ରୋତା ଶାଖା ନଦୀ ସମୁଦ୍ରାଭିମୁଖୀ ହୋଇ ପ୍ରବାହିତ ହେଉଥିଲେ । ତନ୍ମଧ୍ୟରୁ ପ୍ରାଚୀ ଓ ଅଳକା ନଦୀ ଦୁଇଟି ଉଲ୍ଲେଖଯୋଗ୍ୟ । ପ୍ରାଚୀ ନଦୀର ଧାରେ ଧାରେ ଅନେକ ମୁନିଋଷିମାନଙ୍କର ଆଶ୍ରମ ଥିବାର ପ୍ରବାଦ ଅଛି । ସେସବୁ ଆଶ୍ରମରେ ଗୋପାଳନ ବା ଗୋପାଳନର ବ୍ୟବସ୍ଥା ଥିଲା । ସେହିପରି ଅଳକା

ଥିଲା ଅନ୍ୟଏକ ସୁନାବ୍ୟା ନଦୀ । ୧୭୦୩ ମସିହାରେ ଇଂରେଜମାନେ ମହାନଦୀର ମୁହାଣଠାରୁ ଅଲକାନଦୀ ବାଟେ ଆସି କଟକଠାରୁ ୪୦ କିଲୋମିଟର ତଳେ ଜଗତ୍‌ସିଂହପୁରଠାରେ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ । ବଡ଼ ବଡ଼ ଜାହାଜ ସବୁ ଅଲକା ନଦୀରେ ଯାତାୟାତ କରୁଥିଲା । ମାତ୍ର କାଳକ୍ରମେ ଅଲକା ନଦୀ ପୋତିହୋଇ ପଡ଼ିବା ଯୋଗୁଁ ଜଗତସିଂହପୁରସ୍ଥ ଇଂରେଜ ବାଣିଜ୍ୟ କୋଠି ବନ୍ଦ ହୋଇ ଯାଇଥିଲା । ସେହି ସ୍ଥାନକୁ ଫିରିଂକୁଦ କୁହାଯାଏ । ଏହି କୁଦ ଉପରେ ଜଗତ୍‌ସିଂହପୁର ଶ୍ରୀକୃଷ୍ଣ ଏକାଡେମୀ ସ୍ଥାପିତ ହୋଇଅଛି ।

ସେହିଭଳି ମହାନଦୀର ଅନ୍ୟତମ ଶାଖା ଚିତ୍ରୋତ୍ପଳା ନଦୀ ତୀରରେ ଅନେକ ମୁନିଋଷିଙ୍କର ଆଶ୍ରମ ଥିଲା । ଆଶ୍ରମବାସୀମାନଙ୍କର ଭୋଜନ ତଥା ହୋମ ଯଜ୍ଞାଦି କାର୍ଯ୍ୟରେ ବ୍ୟବହାର କରିବା ପାଇଁ ଘିଅ ଉତ୍ପାଦନ କରିବା ନିମନ୍ତେ ଆଶ୍ରମମାନଙ୍କରେ ଗୋପାଳନର ବ୍ୟବସ୍ଥା ଥିଲା । ମହାନଦୀ ତଥା ଅନ୍ୟ ନଦୀମାନଙ୍କର ଅବବାହିକା ଓ ତ୍ରିକୋଣଭୂମି ଅଞ୍ଚଳରେ ଘାସ ଚରର ପ୍ରାଚୁର୍ଯ୍ୟ ତଥା ବର୍ଷସାରା ଗୋମହିଷାଦି ପଶୁମାନଙ୍କ ଲାଗି ପ୍ରଚୁର ଜଳ ସମ୍ପଦର ନିଶ୍ଚିତ ପ୍ରତ୍ୟୟ ସମଗ୍ର ମହାନଦୀ ଅବବାହିକାକୁ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟରେ ଭରପୂର କରି ରଖିଥିଲା । ଏହି ସ୍ଥାନରୁ ଭୁବନେଶ୍ୱର, ଖୋର୍ଦ୍ଧା, ଢେଙ୍କାନାଳ, ବଡ଼ମ୍ବା, ତିଗିରିଆ, କେନ୍ଦୁଝର ଆଦି ରଜା ରାଜୁଡ଼ା ଅଞ୍ଚଳ ବା ଦୁର୍ଗମାନଙ୍କୁ ଘିଅ ପଠାଯାଇ ପାରୁଥିଲା । ଦୁଧ, ଦହି, ଘିଅ, ଛେନା, ଲହୁଣୀ ଆଦି ଦୁଗ୍ଧଜାତ ଦ୍ରବ୍ୟ ଭିତରେ ଘିଅକୁ କେବଳ ମାସ ମାସ ଧରି ରଖାଯାଇପାରେ । ତେଣୁ ଗୋଶାଳାମାନଙ୍କରୁ ଘିଅ ସଂଗ୍ରହ କରାଯାଇ ନଦୀ ପଥରେ ଡଙ୍ଗା ବା ନାଆରେ ବିକ୍ରୀ କେନ୍ଦ୍ରମାନଙ୍କୁ ପଠାଯାଉଥିଲା । ସେ ସମୟରେ ଓଡ଼ିଶାର ପ୍ରଧାନ ବିକ୍ରୟକେନ୍ଦ୍ର ଯେ ବିଡ଼ାନାସୀ କଟକ ଥିଲା, ଏଥିରେ କୌଣସି ସନ୍ଦେହ ନଥାଇ ପାରେ । କାରଣ ମହାନଦୀର ଶାଖାନଦୀ ଓ ଉପନଦୀମାନଙ୍କ ଜରିଆରେ ଉପକୂଳବର୍ତ୍ତୀ ସମତଳ ଅଞ୍ଚଳରୁ ବହୁ ପରିମାଣରେ କୃଷିଲବ୍ଧ ପଦାର୍ଥ ଓ ଦୁଗ୍ଧଜାତ ଦ୍ରବ୍ୟ କଟକକୁ ଅଣାଯାଇ ଏହି ସ୍ଥାନରୁ ସାଧବପୁଅମାନଙ୍କ ବୋଇତରେ ଦେଶବିଦେଶକୁ ନିଆଯାଉଥିବ ।

ସପ୍ତମ ଶତାବ୍ଦୀରେ ଶୈଳୋଦ୍ଭବ ବଂଶୀୟ ରାଜା ଶୈଳେନ୍ଦ୍ର ବୋଇତ ଯୋଗେ ଦକ୍ଷିଣପୂର୍ବ ଏସିଆର ଦ୍ୱୀପପୁଞ୍ଜମାନଙ୍କୁ ଯାଇ ସେଠାରେ ସଭ୍ୟତାର ବିକାଶ କରିବା ସହିତ କଳିଙ୍ଗ ସହିତ ସେ ସବୁ ଦେଶମାନଙ୍କର ବାଣିଜ୍ୟ ସମ୍ପର୍କରେ ଅଭିବୃଦ୍ଧି କରିଥିଲେ । ଅଷ୍ଟମ ଶତାବ୍ଦୀରେ ଭୌମବଂଶୀ ରାଜାମାନେ ଓଡ଼ିଶାରେ ରାଜତ୍ୱ କରୁଥିଲେ । ଭୌମ ରାଜା ଶିବକର ଉନ୍ମତ୍ତସିଂହ ତାଙ୍କର ରାଜଧାନୀ ଯାଜପୁର ନିକଟସ୍ଥ ଗୁହଦେବ ପାଟକ ବା ଗୁହେଶ୍ୱର ପାଟକଠାରେ ସ୍ଥାପନ କରିଥିଲେ । ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ଏହି ଭୌମକରବଂଶୀ ରାଜାମାନଙ୍କ ସମୟରେ ବିଡ଼ାନାସୀ କଟକଠାରେ ସ୍ଥାପିତ ହୋଇଥିଲା । ଭୌମରାଜାମାନଙ୍କୁ ପରାସ୍ତ କରି ସୋମବଂଶୀ ରାଜାମାନେ ଓଡ଼ିଶାରେ ରାଜତ୍ୱ କଲେ ।

ବିଖ୍ୟାତ ଯଯାତି ମହାଶିବ ଗୁପ୍ତ ଯାଜପୁରଠାରେ ଯଯାତି ନଗର ସ୍ଥାପନ କରି ଦଶାଶ୍ୱମେଧ ଯଜ୍ଞ ଅନୁଷ୍ଠିତ କଲେ । ଏଥିଲାଗି କାନ୍ୟକୁବ୍‌ଜରୁ ଦେବଜ୍ଞ ବ୍ରାହ୍ମଣମାନଙ୍କୁ ଅଣାଯାଇ ଯାଜପୁରଠାରେ ରଖାଗଲା । ଏଥିସହିତ ଦେଶର ପଶ୍ଚିମାଞ୍ଚଳରୁ ଦୁଧିଆଳି ଗାଈମାନଙ୍କୁ ଅଣାଯାଇ ପାଳନ କରାଗଲା । କିମ୍ବଦନ୍ତୀରୁ ଜଣାଯାଏ ଯେ ସେ କାଳର ସ୍ଥାନୀୟ ଗାଈମାନେ ମଧ୍ୟ ପଶ୍ଚିମାଞ୍ଚଳରୁ ଆନୀତ ଗାଈମାନଙ୍କ ଭଳି ବେଶ୍ ଉତ୍ପାଦନକ୍ଷମ ଥିଲେ । କଥାରେ ଅଛି "ପଶ୍ଚିମା ଗାଈ, ଓଡ଼ିଆ ମାଈ" ।

ଓଡ଼ିଶାର ସ୍ଥାନୀୟ ଗୋରୁଗାଈଙ୍କ ସହିତ ପଶ୍ଚିମାଞ୍ଚଳର ଦୁଧିଆଳୀ ଗୋଜାତିର ମିଶ୍ରଣ ଫଳରେ ଯାଜପୁର ଅଞ୍ଚଳରେ ଅଧିକ ଉତ୍ପାଦନକ୍ଷମ ଗୋରୁ ଗାଈଙ୍କର ସୃଷ୍ଟି ହେଲା । ଏବେ ମଧ୍ୟ ସେ ଅଞ୍ଚଳର ଗୋରୁଗାଈ ଓଡ଼ିଶାର ଅନ୍ୟ ଗୋରୁମାନଙ୍କ ତୁଳନାରେ ଅଧିକ ଉତ୍ପାଦନକ୍ଷମ ଓ ଆଖିଦୃଶିଆ ଦେଖାଯାଆନ୍ତି । ଏମାନଙ୍କୁ "ବିଞ୍ଝାର ପୁରୀ" ଜାତିର ବୋଲି କୁହାଯାଏ ।

ଦଶାଶ୍ୱମେଧ ଯଜ୍ଞ ସ୍ଥଳୀରେ ଯେଉଁ ପ୍ରକାଣ୍ଡ ଘୃତକୁଣ୍ଡ ଅଛି ସେଥିରେ ଏକା-ବେଳକେ ଶହଶହ ମହଣ ଘିଅ ରଖାଯାଇ ପାରୁଥିଲା । ଏତେ ପରିମାଣର ଘିଅ ଯେ କେବଳ ଯାଜପୁର ଅଞ୍ଚଳରୁ ମିଳୁଥିଲା ତାହା ନୁହେଁ; ହୁଏତ ଘିଅ ଆମଦାନୀର ମୁଖ୍ୟ କେନ୍ଦ୍ର କଟକଠାରେ ଥିଲା । ମହାନଦୀର ଉପକୂଳବର୍ତ୍ତୀ ଚଡ଼ାମାନଙ୍କରେ ଘାସପତ୍ରର ପ୍ରାଚୁର୍ଯ୍ୟ ବହୁସଂଖ୍ୟକ ଗାଈ ଓ ମଇଁଷି ପାଳନ ଲାଗି ଉପଯୁକ୍ତ କ୍ଷେତ୍ର । ଏବେ ମଧ୍ୟ ଏରସମା ଥାନାର ହରିଶପୁର, ମରିଚପୁର, ଗୋଡ଼ା, କଅଁଳା ଆଦି ଅଞ୍ଚଳ ଦୁଧ ଦହି ଘିଅ ପାଇଁ ପ୍ରସିଦ୍ଧ । ପ୍ରାଚୀ ନଦୀ ତୀରସ୍ଥ ବନମାଳିପୁର ଅଞ୍ଚଳ ତଥା ପୁରୀ ଜିଲ୍ଲାର ଅସ୍ତରଙ୍ଗ ଅଞ୍ଚଳର କାଠଯୋଡ଼ି ନଦୀ ମଧ୍ୟଦେଇ ବିଭିନ୍ନ କୃଷିଜାତ ଦ୍ରବ୍ୟ ଓ ଦୁଗ୍ଧଜାତ ପଦାର୍ଥମାନ ନାଆରେ କଟକ ଅଣାଯାଇ ସେଠାରୁ ଓଡ଼ିଶାର ବିଭିନ୍ନ ଅଞ୍ଚଳକୁ ପଠାଯାଏ ।

କେଶରୀ ବଂଶର ରାଜାମାନେ ଶୈବ ଥିଲେ ଓ ଜଣକପରେ ଜଣେ ରାଜା ବିଭିନ୍ନ ଶିବ ମନ୍ଦିର ସ୍ଥାପନ କରିଥିଲେ । ସପ୍ତମ ଶତାବ୍ଦୀଠାରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଭୁବନେଶ୍ୱରରେ ଅସଂଖ୍ୟ ଶିବମନ୍ଦିର ନିର୍ମିତ ହୋଇଥିଲା । ତେବେ ଏହା ପୂର୍ବରୁ ଷଷ୍ଠ ଶତାବ୍ଦୀରେ ଗୌଡ଼ରାଜା ଶଶାଙ୍କ ତ୍ରିଭୁବନେଶ୍ୱର ମନ୍ଦିର ତୋଳାଇ ଏହି କ୍ଷେତ୍ରକୁ ଏକାମ୍ର କ୍ଷେତ୍ର ନାମରେ ଅଭିହିତ କରିଥିଲେ । ଏହାପରେ ଶୈଳୋଦ୍‌ଭବ ରାଜାମାନଙ୍କ ଦ୍ୱାରା ପର୍ଶୁରାମେଶ୍ୱର ମନ୍ଦିର ନିର୍ମିତ ହେଲା । ଅଷ୍ଟମ ଶତାବ୍ଦୀରେ ବିନ୍ଦୁସାଗର ଖୋଳାଯାଇ ଏହାର ଚତୁଃପାର୍ଶ୍ୱରେ ବିଭିନ୍ନ ଶିବ ମନ୍ଦିର ପ୍ରତିଷ୍ଠା କରାଗଲା । ପ୍ରଥମ ଯଯାତି ମୁକ୍ତେଶ୍ୱର ମନ୍ଦିର ନିର୍ମାଣ କରାଇଥିଲେ । ଏହାପରେ ଇନ୍ଦ୍ରେଶ୍ୱର ମନ୍ଦିର ଓ ରାଜାରାଣୀ ମନ୍ଦିର ନିର୍ମିତ ହେଲା । ବିରଜା କ୍ଷେତ୍ରର ପ୍ରତିଷ୍ଠାତା ବିଖ୍ୟାତ ଯଯାତି ୧୦୬୦ ଖ୍ରୀଷ୍ଟାବ୍ଦରେ ବିଶ୍ୱପ୍ରସିଦ୍ଧ ଲିଙ୍ଗରାଜ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ ଓ ତାଙ୍କର ପୁତ୍ର

ଉଦ୍ୟୋତକେଶରୀ ଏହି କାର୍ଯ୍ୟ ଶେଷ କରିଥିଲେ । ଏସବୁ ଇତିହାସ ପର୍ଯ୍ୟାଲୋଚନା କରିବାର ଉଦ୍ଦେଶ୍ୟ ହେଉଛି, ସେକାଳର ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟର ଚାହିଦା ବିଷୟରେ ସଂକଳିତ ତଥ୍ୟର ଅବତାରଣା କରିବା । ପ୍ରତି ଶିବ ମନ୍ଦିର ପ୍ରତିଷ୍ଠା ଓ ସେବାପୂଜା ଲାଗି ପ୍ରଚୁର ଗାଈଦୁଧ ଓ ଲହୁଣୀର ଆବଶ୍ୟକତା ଥିଲା । ରୁଦ୍ରାଭିଷେକ ପରି ଶିବ ପୂଜାରେ ମହଣ ମହଣ ସଦ୍ୟ ଦୁଗ୍ଧ ଓ ଲହୁଣୀର ଆବଶ୍ୟକତା ବିଭିନ୍ନ ଶିବ ମନ୍ଦିରରେ ବର୍ଷର ବିଭିନ୍ନ ସମୟରେ ଲାଗି ରହିଥିବାରୁ ସେ ସମୟରେ ଏକାମ୍ର କ୍ଷେତ୍ରର ପାଖାପାଖି ଅଞ୍ଚଳରେ ଯେତେ ଦୁଗ୍ଧ ଉତ୍ପାଦିତ ହେଉଥିବ ତାହା ପ୍ରଣିଧାନଯୋଗ୍ୟ । ଏହି ଅଞ୍ଚଳ ଯେ କଟକ ଛଡ଼ା ଆଉ କେଉଁଠି ନୁହେଁ ତାହା ପଶୁପାଳନବିତ୍‌ମାନେ ନିଶ୍ଚିତ ଭାବେ କହି ପାରିବେ ।

ଚୌଦ୍ୱାର କଟକଠାରୁ ବିଡ଼ାନାସୀ କଟକ ଯାଏଁ ମହାନଦୀ, ବିରୂପା ଓ କାଠଯୋଡ଼ିର ସନ୍ଧିସ୍ଥଳରେ ପ୍ରଶସ୍ତ ପଠାମାନ ଥିବାଯୋଗୁଁ ତହିଁରେ ଉନ୍ନତ ଗାଈ-ଗୋରୁ ପାଳିତ ହେଉଥିଲେ । ଦକ୍ଷିଣରେ ଏକାମ୍ର କ୍ଷେତ୍ର ଓ ଉତ୍ତର ପୂର୍ବରେ ବିରଜା କ୍ଷେତ୍ର ମଧ୍ୟରେ ପ୍ରଚୁର ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟର ଆବଶ୍ୟକତା ମେଣ୍ଟାଇବା ଲାଗି କଟକ ହିଁ ଥିଲା ଏକମାତ୍ର ଯୋଗାଣ କେନ୍ଦ୍ର । ସେକାଳର ରାସ୍ତାଘାଟର ଘୋର ଅଭାବ ଯୋଗୁଁ ଜଳପଥ ହିଁ ଗମନାଗମନ ତଥା ପରିବହନର ଏକମାତ୍ର ଆଶ୍ରୟ ଥିଲା । ମହାନଦୀ ତ୍ରିକୋଣଭୂମି ଶଯ୍ୟାରେ ବହୁସଂଖ୍ୟକ ନଦୀର ଜାଲିକା ସୃଷ୍ଟି ହୋଇଥିବା ଯୋଗୁଁ ସମୁଦ୍ରକୂଳିଆ ଅଞ୍ଚଳ ଓ ନଦୀଗୁଡ଼ିକର ଦୁଇ ତୀରରେ ଥିବା ଗ୍ରାମାଞ୍ଚଳରୁ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟମାନ ସଂଗୃହୀତ ହୋଇ ବିଭିନ୍ନ ଦେବଦେବୀଙ୍କ ମନ୍ଦିର, ରାଜପ୍ରାସାଦ, ପାରିଷଦ, ସୈନ୍ୟସାମନ୍ତ ତଥା ସାରଙ୍ଗଗଡ଼, ଯାଜପୁର, ଅମରାବତୀ, ଚୌଦ୍ୱାର, ଚୂଡ଼ଙ୍ଗ ଗଡ଼ ପ୍ରଭୃତି ବିଭିନ୍ନ ଦୁର୍ଗକୁ ଯୋଗାଇ ଦିଆଯାଉଥିଲା । କଟକ ସହିତ ଓଡ଼ିଶାର ଚେଲିତାଲୋ, ପାଲୁର, ତାମ୍ରଲିପ୍ତି ଓ ଦନ୍ତପୁର ଆଦି ମଧ୍ୟଯୁଗୀୟ ବନ୍ଦରଗୁଡ଼ିକ ମହାନଦୀ, ବିରୂପା, ବ୍ରାହ୍ମଣୀ, ବୈତରଣୀ ଆଦି ନଦୀଦ୍ୱାରା ସଂଯୁକ୍ତ ହୋଇଥିବାରୁ ଏସବୁ ପଣ୍ୟ ଦ୍ରବ୍ୟର ବ୍ୟବସାୟ ଲାଗି କଟକ ହିଁ ପ୍ରକୃଷ୍ଟ କେନ୍ଦ୍ର ଥିବାର ଅନୁମିତ ହୁଏ ।

ଶତାବ୍ଦୀ ଶତାବ୍ଦୀ ଧରି କଟକର ଏହି ସୁବିଧା ଥିବାର ଉପଲବ୍ଧି କରି କେଶରୀ ବଂଶୀୟ ରାଜା ନୃପକେଶରୀ ୯୮୯ ଖ୍ରୀଷ୍ଟାବ୍ଦରେ ବିଡ଼ାନାସୀ କଟକଠାରେ ନିଜର ରାଜଧାନୀ ସ୍ଥାପନ କଲେ । ତାଙ୍କ ପରେ ମର୍କତକେଶରୀ ଓ ପରେ ଗଙ୍ଗବଂଶୀ ରାଜା ଅନନ୍ତ ବର୍ମା ଚୋଡ଼ଗଙ୍ଗଦେବ ଦ୍ୱାଦଶ ଶତାବ୍ଦୀର ପ୍ରାରମ୍ଭରେ ଉତ୍କଳ ଅଧିକାର କରିବା ପରେ ଦାକ୍ଷିଣାତ୍ୟର ମୁଖଲିଙ୍ଗମ୍‌ଠାରୁ ତାଙ୍କ ରାଜଧାନୀକୁ କଟକକୁ ସ୍ଥାନାନ୍ତରିତ କରିଥିଲେ ଏବଂ ପୁରୁଷ ପୁରୁଷ ଧରି ତାଙ୍କ ବଂଶଧରମାନେ ଓଡ଼ିଶାର ଶାସକ ହୋଇ ରହିଲେ । ଗଙ୍ଗବଂଶ ରାଜତ୍ୱରେ ଓଡ଼ିଶାରେ ବୈଷ୍ଣବ ଧର୍ମ ବିସ୍ତାର ଲାଭ କଲା ।

ଅତଏବ ଉପରୋକ୍ତ ଐତିହାସିକ ବିବରଣୀରୁ ଜଣାଯାଏ ଯେ, ଅଷ୍ଟମ ଶତାବ୍ଦୀଠାରୁ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାୟ ସାତଶହ ବର୍ଷ ଧରି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଶାକ୍ତ, ଶୈବ ଓ ବୈଷ୍ଣବ ପୀଠମାନ ଗଢ଼ିଉଠିଥିଲା । ଏସବୁ ପୀଠର ପୂଜାଅର୍ଚ୍ଚନା ସଙ୍ଗେ ସଙ୍ଗେ ପ୍ରବଳ ପରାକ୍ରମୀ ଓଡ଼ିଆ ପାଇକ, ରାଉତ, ନାୟକ, ସାମନ୍ତ, ବାହୁବଳେନ୍ଦ୍ର, ଭୁଜବଳ, ଦକ୍ଷିଣକବାଟ, ଉତ୍ତରକବାଟ, ପାତ୍ର, ମନ୍ତ୍ରୀ, ଅମାତ୍ୟମାନଙ୍କର ସୁଖାଦ୍ୟ ଗୃହିଦା ମେଣ୍ଟାଇବାକୁ ଓଡ଼ିଶାର ତ୍ରିକୋଣଭୂମି ଅଞ୍ଚଳରେ ଅଧିକ ଦୁଗ୍ଧ ଉତ୍ପାଦନକ୍ଷମ ଗୋରୁଗାଈ ପାଳିତ ହେଉଥିବାର ଅନୁମାନ କରାଯାଏ । ତେବେ ରାଜଧାନୀ କଟକ ସହର ଏହି କ୍ଷେତ୍ରରେ ନିଶ୍ଚିତ ଭାବରେ ଶୀର୍ଷସ୍ଥାନ ଅଧିକାର କରିବା କଥା । ବାରବାଟୀ ଦୁର୍ଗର ପରିସର ମଧ୍ୟରେ ହୁଏତ ରାଜକୀୟ ଗୋଶାଳା ଥାଇପାରେ । ଏତଦ୍ ବ୍ୟତୀତ କଟକ ସହରର ଦକ୍ଷିଣାଞ୍ଚଳରେ ଥିବା ଝାଡ଼ଜଙ୍ଗଲ ଅଞ୍ଚଳ ସ୍ଥାନ ତଥା ନଈପଠାମାନଙ୍କରେ ପାଳିତ ହେଉଥିବା ଗୋରୁଗୋଠମାନଙ୍କରୁ ସୈନ୍ୟ, ସାମନ୍ତ ଓ ସହରବାସୀଙ୍କ ପାଇଁ ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟମାନ ଯୋଗାଇ ଦିଆଯାଉଥିବ ।

ଓଡ଼ିଶାର ଶେଷ ହିନ୍ଦୁ ରାଜା ମୁକୁନ୍ଦଦେବଙ୍କ ପରେ ମୁସଲମାନମାନେ ବାରମ୍ବାର ଓଡ଼ିଶା ଆକ୍ରମଣ କରି ଗୋରୁଗାଈ, ଛେଳିମେଣ୍ଢା ଆଦି ଗୃହପାଳିତ ପଶୁମାନଙ୍କୁ ମାରିଦେବା, ଛଡ଼େଇନେବା କିମ୍ବା ପାଳନକାରୀ ପରିବାରର ଲୋକଙ୍କୁ ମୃତାହତ କରିବା ଫଳରେ କୃଷି ଓ ଗୋପାଳନ କ୍ଷେତ୍ରରେ ସମସ୍ୟା ସୃଷ୍ଟି ହେଲା । ବିଭିନ୍ନ ଦେବଦେବୀଙ୍କର ସେବାପୂଜାରେ ବ୍ୟାଘାତ ଜନ୍ମିଲା । ପାରମ୍ପରିକ ପୂଜାବିଧି ତଥା ଧର୍ମାନୁଷ୍ଠାନମାନ କରିବା ଅସମ୍ଭବ ହୋଇ ପଡ଼ିଲା ।

୧୫୬୮ ଖ୍ରୀଷ୍ଟାବ୍ଦରୁ ୧୭୪୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଦୁଇ ଶତାବ୍ଦୀ ଧରି ଆଫଗାନ୍, ମୋଗଲ ଓ ପୂର୍ବବଙ୍ଗୀୟ ମୁସଲମାନ ରାଜାମାନେ ଲୁହାକୁହୁହା ଓଡ଼ିଶା ଆକ୍ରମଣ କରି ରାଜ୍ୟବାସୀମାନଙ୍କ ଉପରେ ପ୍ରବଳ ଅତ୍ୟାଚାର କଲେ । ଅଧିକାଂଶ ମୁସଲମାନ ଆକ୍ରମଣକାରୀଙ୍କର ଲକ୍ଷ୍ୟସ୍ଥଳ ଥିଲା କଟକ । ସେମାନେ କଟକରେ ଅବସ୍ଥାନ କରି ବିଭିନ୍ନ ସମୟରେ ଲାଲ୍‌ବାଗ, ଦେୱାନ ବଜାର, କଦମରସୁଲ, ଜାମି ମସ୍‌ଜିଦ, ଓ ବାରବାଟୀ କିଲା ମସ୍‌ଜିଦ ଆଦି ନିର୍ମାଣ କଲେ । ଓଡ଼ିଶାର ସମସ୍ତ ହିନ୍ଦୁ ମନ୍ଦିର ଉପରେ ଆକ୍ରମଣ ହେଲା । କୋଣାର୍କ, ପୁରୀ, ବିରଜା, ଶାରଳାପୀଠ, କ୍ଷୀରଚୋରା ଗୋପୀନାଥ, ଭଗବତୀ ଓ ରାମଚଣ୍ଡୀ ଆଦି ବିଭିନ୍ନ ଦେବଦେବୀଙ୍କ ମନ୍ଦିର ଉପରେ ଚଢ଼ାଉ କରି ଦେବମୂର୍ତ୍ତିମାନ ଭାଙ୍ଗିଦେବା ଓ ସେସବୁ ସ୍ଥାନରେ ମସ୍‌ଜିଦ ନିର୍ମାଣ କରିବା ସେକାଳର ମୁସଲମାନ ନବାବ, ସୁବାଦାର, ନାଏବ, ନାଜିମମାନଙ୍କର ବ୍ୟସନାତ୍ମକ ତଥା ଧାର୍ମିକ କାର୍ଯ୍ୟ ଥିଲା ।

ଏଥି ସହିତ ଗୋଜାତି ଉପରେ ମଧ୍ୟ ପ୍ରବଳ ଅତ୍ୟାଚାର ହେଲା । ଗୋପାଳକମାନଙ୍କ ଘରୁ ଦୁଧିଆଳି ଗାଈମାନଙ୍କୁ ବାନ୍ଧିନେବା ଓ ମହାଦେବଙ୍କ ବାହନ ବୋଲି

ଥିବା ହୃଷ୍ଟପୁଷ୍ଟ ଷଣ୍ଢମାନଙ୍କୁ ହାଣିମାରି ଦେଇ ହିନ୍ଦୁମାନଙ୍କର ଧାର୍ମିକ ଚେତନାକୁ ଆହତ କରିବା ଥିଲା ସେହି ରାଜାମାନଙ୍କର ସଉକ । ଶାସ୍ତ୍ରରେ ଅଛି-"ବୃଷଭର୍ତ୍ତି ଗୋଟୁଳେର ମୁଖ୍ୟ ।" ଉନ୍ନତ ଷଣ୍ଢ ବିନା ଗୋଜାତିର ଅଧୋପତନ ହୁଏ । ତେଣୁ ଦୁଇଶହ ବର୍ଷର ମୁସଲମାନ ରାଜତ୍ୱରେ କଟକ ତଥା ସମଗ୍ର ଓଡ଼ିଶାର ଗୋଜାତି ଧ୍ୱସ୍ତବିଧ୍ୱସ୍ତ ହୋଇଗଲା ।

ପାଟନାର ନାଏବ ନଜମ୍ ଆଲବର୍ଦ୍ଦି ଖାଁ ଓଡ଼ିଶା ଆକ୍ରମଣ କରି ତତ୍କାଳୀନ ଶାସକ ମୁର୍ଶିଦକୁଲି ଖାଁଙ୍କୁ କଟକରୁ ବିତାଡ଼ିତ କରି ବାରବାଟୀ ଦୁର୍ଗରୁ ତାଙ୍କର ସମସ୍ତ ଧନରତ୍ନ ଅପହରଣ କରିନେବା ଯୋଗୁଁ ପ୍ରତିଶୋଧପରାୟଣ ମୁର୍ଶିଦକୁଲି ଖାଁ ନାଗ-ପୁରର ମରହଟ୍ଟା ଶାସକ ରଘୁଜୀ ଭୋନ୍‌ସଲାଙ୍କର ଶରଣାପନ୍ନ ହେଲେ । ଫଳରେ ୧୭୪୧ ଖ୍ରୀଷ୍ଟାବ୍ଦରେ ମରହଟ୍ଟାମାନେ ଓଡ଼ିଶା ଆକ୍ରମଣ କଲେ । ବେଢ଼ି ଉପରେ କୋରଡ଼ା ମାଡ଼ ବସିଲାପରି ମୁସଲମାନ ଆକ୍ରମଣ ପରେ ମରହଟ୍ଟାମାନଙ୍କର ଉତ୍ପୀଡ଼ନ ଓଡ଼ିଶାର ଜନସାଧାରଣଙ୍କୁ ଅତିଷ୍ଠ କରିଦେଲା । ବାଲେଶ୍ୱର, ଯାଜପୁର, ଚୌଦ୍ୱାର, କଟକ, ଭୁବନେଶ୍ୱର, ଖୋର୍ଦ୍ଧା, କାଳୁପଡ଼ା, ମୋଟରି, ଘୋରଡ଼ିଆ ପ୍ରଭୃତି ଅଞ୍ଚଳର ଅଧିବାସୀମାନେ ଘରଦ୍ୱାର କରି ରହିବା ପାଇଁ ନିରାପଦ ମଣୁ ନଥିଲେ ।

ବର୍ଗୀମାନେ ବର୍ଷକୁ ବର୍ଷ ଓଡ଼ିଶା ଆକ୍ରମଣ କରି ଧନରତ୍ନ, ଶସ୍ୟସାମଗ୍ରୀ ସହିତ ଉନ୍ନତ ଗୋରୁଗାଈଙ୍କୁ ଅପହରଣ କରି ନେଉଥିଲେ । ଜୀବନ ବଞ୍ଚାଇବା ଲାଗି ଓଡ଼ିଶାର ସାଧାରଣ ଜନତା ଘରଦ୍ୱାର ଛାଡ଼ି ବଣଜଙ୍ଗଲରେ ଆଶ୍ରୟ ନେବାକୁ ବାଧ୍ୟ ହେଉଥିଲେ । ଏପରି ସ୍ଥଳେ ଗାଈଗୋରୁଙ୍କୁ ବୁଝୁଥିବ କିଏ ? ଏପରି ଭାବେ ନିରାପତ୍ତା ଅଭାବରୁ ଓଡ଼ିଶାର ଉନ୍ନତ ଗୋସମ୍ପଦ ଧ୍ୱଂସ ପାଇଗଲା ।

ଅଷ୍ଟାଦଶ ଶତାବ୍ଦୀର ଶେଷ ଆଡ଼କୁ ଇଂରେଜମାନେ ଓଡ଼ିଶାକୁ ବଙ୍ଗଳା ଓ ବିହାର ସହିତ ମିଶାଇ ଏକ ଶାସନତାନ୍ତ୍ରିକ ନିୟନ୍ତ୍ରଣ ଆରମ୍ଭ କଲେ । କ୍ରମେ ପ୍ରଜାଉତ୍ପୀଡ଼ନ ବନ୍ଦ ହେଲା । ମାତ୍ର ସେତେବେଳକୁ ରାଜ୍ୟର ଜନସାଧାରଣ ନିଃସ୍ୱ ହୋଇ ଯାଇଥିଲେ । କୃଷି, ଗୋପାଳନ ଓ କୁଟୀରଶିଳ୍ପ ଆଦିର ମୂଳୋତ୍ପାଟିତ ହୋଇଥିଲା । ଦୁଧ, ଘିଅ ଆଦି ସ୍ୱପ୍ନ ହୋଇ ଯାଇଥିଲା । ତିନିଶହ ବର୍ଷ ଧରି ଉନ୍ନତ ଷଣ୍ଢମାନଙ୍କ ବଂଶ ଲୋପ ଘଟିବା ଯୋଗୁଁ ରାଜ୍ୟର ଗୋରୁ ଗାଈଙ୍କର ଉତ୍ପାଦନ କ୍ଷମତା ହ୍ରାସ ପାଇ ସାରିଥିଲା । ୧୯୩୬ ମସିହା ଏପ୍ରିଲ ମାସରେ ଉତ୍କଳଜନନୀ ଆତ୍ମପ୍ରକାଶ କଲା ନୂତନ ଓଡ଼ିଶା ପ୍ରଦେଶ ରୂପରେ । କଟକ ହେଲା ଓଡ଼ିଶାର ରାଜଧାନୀ । ଓଡ଼ିଆ ଲୋକେ ନିଜ ରାଜ୍ୟର ଭଲମନ୍ଦ ବୁଝିବାର ସୁବିଧା ପାଇଲେ ଓ ଶାସନ ଦୃଷ୍ଟିରୁ ବିଭିନ୍ନ ବିଭାଗର ସୃଷ୍ଟି ହେଲା । ଡେଭେଲପ୍‌ମେଣ୍ଟ ଡ଼ିପାର୍ଟମେଣ୍ଟ ବା ଉନ୍ନୟନ ବିଭାଗ ଅଧୀନରେ କୃଷି, ପଶୁପାଳନ, ଜଙ୍ଗଲ, ମତ୍ସ୍ୟ ଓ ସମବାୟ ଉପବିଭାଗମାନ ରହିଲା ।

ଗୋଜାତିର ଉନ୍ନତି ଲାଗି ପୁନର୍ବାର ଦେଶୀ ମାଷଣ୍ଢମାନଙ୍କୁ ବ୍ୟବହାର କରିବାର ଯୋଜନା ହେଲା । ଦ୍ୱିତୀୟ ମହାଯୁଦ୍ଧ ପରବର୍ତ୍ତୀ ସମୟରେ କଟକର ଖପୁରିଆଠାରେ ମିଲିଟାରି ଦୁଗ୍ଧ ଯୋଗାଣ କେନ୍ଦ୍ର ସ୍ଥାପିତ ହୋଇ ରେଡ଼୍‌ସିନ୍ଧି ଓ ହରିଆନା ଜାତୀୟ ଗୋରୁମାନଙ୍କୁ ରଖାଗଲା ଓ ସେହି ଫାର୍ମରୁ ଷଣ୍ଢ ଉତ୍ପାଦନ କରାଯାଇ ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରଜନନାତ୍ମକ କାର୍ଯ୍ୟକ୍ରମମାନ ଆରମ୍ଭ ହେଲା । କଟକ ବକ୍ସିବଜାରସ୍ଥ ମୁଖ୍ୟ ପଶୁ ଚିକିତ୍ସାଳୟ ପରିସର ମଧ୍ୟରେ ଥିବା ଶୁକ୍ର ସଂଗ୍ରହ କେନ୍ଦ୍ର ଥିଲା ରାଜ୍ୟର ବୃହତ୍ତମ ଉନ୍ନତ ଗୋ ପ୍ରଜନନ ଷଣ୍ଢ ଫାର୍ମ । ଏହି ସ୍ଥାନରୁ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଥିବା ଗୋ ପ୍ରଜନନ କେନ୍ଦ୍ରମାନଙ୍କୁ ରେଡ୍‌ସିନ୍ଧି ଓ ହରିଆନା ଶୁକ୍ର ପଠାଯାଉଥିଲା ଏବଂ ଓଡ଼ିଶାର ଉପାନ୍ତ ଅଞ୍ଚଳମାନଙ୍କୁ ପ୍ରାକୃତିକ ପ୍ରଜନନ ଲାଗି ସିନ୍ଧି ଓ ହରିଆନା ଷଣ୍ଢମାନଙ୍କୁ ପଠାଯାଉଥିଲା ।

ମାତ୍ର ତିନିଦଶନ୍ଧି ଧରି ଏହି କାର୍ଯ୍ୟକ୍ରମ ଚାଲିବା ପରେ ଚଳିତ ଶତାବ୍ଦୀର ସପ୍ତମଦଶକ ପ୍ରାରମ୍ଭରୁ ସ୍ଥାନୀୟ ଗୋରୁଗାଈମାନଙ୍କର ଉତ୍ପାଦନ କ୍ଷମତାକୁ ଆହୁରି ଉନ୍ନତ କରିବାଲାଗି ବିଦେଶୀ ଷଣ୍ଢମାନଙ୍କୁ ପ୍ରଜନନ କ୍ଷେତ୍ରରେ ନିୟୋଜିତ କରାଯାଉଛି । କଟକର ଖପୁରିଆଠାରେ ସ୍ଥାପିତ ହୋଇଛି ଘନୀଭୂତ ଶୁକ୍ର କେନ୍ଦ୍ର ।



# କଟକରେ ସରକାରୀ ମୁଦ୍ରଣାଳୟ

**ଶ୍ରୀ କୃଷ୍ଣଚନ୍ଦ୍ର ବଶ୍ୱାଳ**

ଓଡ଼ିଶା ସରକାରୀ ପ୍ରେସ ଏବେ ଏକ ବିରାଟ ରୂପ ଧାରଣ କରିଛି । କଟକରେ ତ ମୁଖ୍ୟ ପ୍ରେସ ରହିଛି । ପୁଣି ଭୁବନେଶ୍ୱର ଓ କେତେକ ଜିଲ୍ଲାରେ ଶାଖା ପ୍ରେସମାନ ଅଛି । ସେଥିରେ କୋଟି କୋଟି ଟଙ୍କାର ଯନ୍ତ୍ରପାତି ଓ ଆସବାବମାନ ରହିଛି ଏବଂ ହଜାର ହଜାର ଲୋକ କାମ କରୁଛନ୍ତି । ମାଣ୍ଟନମ୍ବର ଜାତୀୟ ରାଜପଥରୁ ଚାହିଁଲେ ଦେଖାଯାଏ, ମୁଖ୍ୟ ପ୍ରେସ କଟକ ଶିଳ୍ପାଞ୍ଚଳର ଏକ ବ୍ୟାପକ ସ୍ଥାନରେ ତା'ର ଅଙ୍ଗ ପ୍ରତ୍ୟଙ୍ଗ ବିସ୍ତାର କରିଛି ।

କିନ୍ତୁ ଏହାର ପୂର୍ବ ଦୟନୀୟ ଅବସ୍ଥା, ଦୁଃଖ ଜନ୍ମ କାହାଣୀ ମନେ ପଡ଼ିଲେ ଅନେକଙ୍କୁ ଆଶ୍ଚର୍ଯ୍ୟ ଲାଗେ । ୧୯୩୬ ମସିହାରେ ଯେତେବେଳେ ବିହାର ଓଡ଼ିଶା ପ୍ରଦେଶରୁ ଅଲଗା ହୋଇ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା ସେତେବେଳେ ଭାଇ ଭାଗ ହିସାବରେ ପାଟନା ସେକ୍ରେଟାରିଏଟ୍‌ରୁ ଗୋଟିଏ ଟୁକୁରା କଟକ ଆସିଲା । ତା' ସାଙ୍ଗରେ ଆସିଲା ଗୁଲ୍‌ଜାରବାଗରୁ ଏକପ୍ରକାର ଗୋଟିଏ ପକେଟ୍ ପ୍ରେସ, ଓଡ଼ିଶା ସରକାରୀ ପ୍ରେସ ନାମରେ । କ'ଣ ବା ଥିଲା ସେଥିରେ ? ଗୋଟେ ଦୁଇଟା ହାଣ୍ଡପ୍ରେସ, କେତେଟା ଟ୍ରେଡ୍‌ଲ ମେସିନ୍ ଆଉ କେତେଜଣ କର୍ମଚାରୀ । ସେହି କର୍ମଚାରୀମାନଙ୍କ ମଧ୍ୟରେ ଥିଲେ ଆମ ଓଡ଼ିଶାର କେତେଜଣ ଲୋକ ଯେଉଁମାନେ ଗୁଲ୍‌ଜାରବାଗ ପ୍ରେସରେ କାମ କରୁଥିଲେ । ସେମାନଙ୍କ ସାଙ୍ଗରେ ଆସିଥିଲେ ବିହାରର ନାଜମୁଦ୍ଦିନ ବୋଲି ଜଣେ ସେକ୍‌ସନ ହୋଲ୍‌ଡର୍ ଏବଂ ମିଷ୍ଟନ ମନ ବୋଲି ଜଣେ ଆଙ୍ଗ୍ଲୋଇଣ୍ଡିଆନ ଓଭରସିର୍ ।

ଏହି ତଥାକଥିତ ଓଡ଼ିଶା ସେକ୍ରେଟେରିଏଟ୍ ଓ ସରକାରୀ ପ୍ରେସ ଆସି ବର୍ତ୍ତମାନ ଯେଉଁଠି ସିଟି ହସପିଟାଲ ହୋଇଛି ସେହି କୋଠାରେ ତାଙ୍କ କାମ ଆରମ୍ଭ କଲେ । କେତେ ଦିନ ପରେ ବାରବାଟୀ କିଲ୍ଲାରେ କରାଯାଇଥିବା ଅସ୍ଥାୟୀ ଘରମାନଙ୍କୁ ସେକ୍ରେଟାରିଏଟ୍ ଉଠିଗଲା ଏବଂ ପ୍ରେସ ଗଲା ବକ୍‌ସିବଜାରସ୍ଥ ଏକ ଭଡ଼ାଘର, ପୁରୁଣା ବନ୍ଦୋବସ୍ତ ଅଫିସ (Old Cadestral Survey Building)କୁ ।

ତା'ପରେ ମିଷ୍ଟର ସି. ଆର୍. ବାଟରସ୍ ବି (C R Battersby) ବୋଲି ଜଣେ ସାହେବ ଆସିଲେ ପ୍ରେସର ସୁପରିନ୍‌ଟେଣ୍ଡେଣ୍ଟ ହୋଇ । ସେ ମାତ୍ର କେତେ ମାସ ରହି ଚାଲିଗଲେ । ତା'ପରେ ତତ୍କାଳୀନ ମାନ୍ଦ୍ରାଜ ସରକାରୀ ପ୍ରେସରୁ ମିଷ୍ଟର ସିଦ୍ଦିକ୍ ଆସିଲେ ଓଡ଼ିଶା ସରକାରୀ ପ୍ରେସର ସୁପରିନ୍‌ଟେଣ୍ଡେଣ୍ଟ ଭାବରେ । ସେ ବି ବେଶିଦିନ ଏଠାରେ ରହି ପାରିଲେନି । ତା'ପରେ ୧୯୪୦ ମସିହାରେ ଆସିଲେ ଶ୍ରୀଯୁକ୍ତ ସାମୁସୁଲ ହୁଦା ଖାଁ ସୁପରିନ୍‌ଟେଣ୍ଡେଣ୍ଟ ହୋଇ । ତାଙ୍କ ଜେଜେ ବାପା ଶ୍ରୀଯୁକ୍ତ କରମ୍‌ବକ୍‌ସିଂ ଖାଁ କଲିକତାରେ ଗୋଟିଏ ପ୍ରେସ୍ କରିଥାନ୍ତି । ଶ୍ରୀଯୁକ୍ତ ଖାଁ ବାଲ୍ୟରେ ମୁଦ୍ରଣ ଶିଳ୍ପରେ ଶିକ୍ଷା ପାଇ ସେହି କରମ୍ ବକ୍‌ସ ପ୍ରେସରେ କାମ କରୁଥିଲେ । ସେ ଏଠାକୁ ସୁପରିନ୍‌ଟେଣ୍ଡେଣ୍ଟ ହୋଇ ଆସିବା ପରେ ଓଡ଼ିଶା ସରକାରୀ ପ୍ରେସ ଇତିହାସରେ ଦ୍ୱିତୀୟ ଅଧ୍ୟାୟ ଆରମ୍ଭ ହେଲା ଏବଂ ପ୍ରେସ କ୍ରମେ ବଢ଼ିବାରେ ଲାଗିଲା ।

ପୂର୍ବରୁ ଫର୍ମ ସବୁ ବିହାରର ସରକାରୀ ପ୍ରେସରେ ଛପା ଯାଉଥିଲା । ସେସବୁ ଓଡ଼ିଶା ସରକାରୀ ପ୍ରେସରେ ଛପାଗଲା । ମିତବ୍ୟୟିତା ଦୃଷ୍ଟିରୁ ସେହି ଫର୍ମମାନଙ୍କର ଆକାର ପୁନଃନିର୍ଦ୍ଧାରଣ (Revision) କରାଗଲା । କ୍ରମେ ଛପାକାମର ପରିମାଣ ବଢ଼ିଲା । କିନ୍ତୁ ସେ ସବୁ ଛାପିବାକୁ ଆବଶ୍ୟକ ଯନ୍ତ୍ରପାତି ନଥିଲା । ଗଡ଼ଜାତମାନଙ୍କର ଓଡ଼ିଶାରେ ମିଶ୍ରଣ ହେବାରୁ ସେଠାରେ ଥିବା ରଜା ରାଜୁଡ଼ାଙ୍କ ଠାରୁ କେତେକ ପ୍ରେସର ମେସିନ୍ ଆଦି ଏଠାକୁ ଆସିଲା ।

ପୁଣି ପ୍ରେସର ସୁପରିଚାଳନା ପାଇଁ ଅଧିକ ଅଫିସର ଦରକାର ପଡ଼ିଲେ । କିନ୍ତୁ ଓଡ଼ିଶାରେ ତ ସେତେବେଳେ ମୁଦ୍ରଣ ଶିଳ୍ପରେ ପାରଙ୍ଗମ ହୋଇଥିବା ଉଚ୍ଚ ଶିକ୍ଷିତ ବ୍ୟକ୍ତିଙ୍କର ଅଭାବ ଥିଲା । ତେଣୁ କପରି ଭାବରେ ଏହାର ସମାଧାନ କରାଯିବ ସେ କଥା ଚିନ୍ତା ପଡ଼ିଲା । ଦେଖାଗଲା ଯେ ସେତେବେଳେ ଭାରତ ସରକାର ତାଙ୍କ ପ୍ରେସରେ ଉଚ୍ଚ ଶିକ୍ଷିତ ଯୁବକମାନଙ୍କୁ ଶିକ୍ଷାନବିସ (Apprentice) ଭାବରେ କେତେ ବର୍ଷ ତାଲିମ ଦେଇ ତାଙ୍କୁ ଅଫିସର ଭାବରେ ନିଯୁକ୍ତି ଦେଉଥିଲେ । ସେହି ଅନୁସାରେ ଆମ ଓଡ଼ିଶା ସରକାରୀ ପ୍ରେସର ଦୁଇ ଜଣ ଶିକ୍ଷାନବିସ ନେବାକୁ ଏକ ଯୋଜନା ତିଆରି କଲେ । ଶ୍ରୀଯୁକ୍ତ ଶକ୍ତି ପ୍ରସାଦ ମିଶ୍ର ଓ ଶ୍ରୀଯୁକ୍ତ ବାଗେଶ୍ୱର ଦାସ ଚୌଧୁରୀ ଏହି ଶିକ୍ଷାନବିସ ଆସିଷ୍ଟାଣ୍ଟ ସୁପରିନ୍‌ଟେଣ୍ଡେଣ୍ଟ ପଦ ପାଇଁ ମନୋନୀତ ହେଲେ । ଏଥି ମଧ୍ୟରେ ପ୍ରେସର ବିଭିନ୍ନ ବିଭାଗରେ କୁଶଳୀ କାରିଗର ଅଭାବ ପଡ଼ିବାରୁ ଶିକ୍ଷିତ ଯୁବକମାନଙ୍କୁ ମୁଦ୍ରଣ ଶିଳ୍ପରେ ତାଲିମ ଦେବାପାଇଁ School of Printing and Allied Trades ବୋଲି ଏକ ଶିକ୍ଷାନୁଷ୍ଠାନ ୧୯୪୫ ମସିହାରେ ପ୍ରତିଷ୍ଠା, ସରକାରୀ ପ୍ରେସ ଭିତରେ କରାଯାଇଥିଲା । କେତେ ବର୍ଷ ଚାଲିବା ପରେ ସରକାର ତାକୁ ବନ୍ଦ କରି ଦେଇଥିଲେ କିନ୍ତୁ ପରେ ସେ ପୁଣି ଚାଲୁ ହେଲା ।

ସେତେବେଳେ ସରକାରୀ ପ୍ରେସର ବିଶେଷ ସମସ୍ୟା ଥିଲା ସ୍ଥାନାଭାବ । ଏହି ସମୟରେ ଓଡ଼ିଶା ସରକାର ସେ କାଳର ଖପୁରିଆ ଅଞ୍ଚଳ ଏବେ ଯାହାକି ମଧୁପାଟଣା କୁହାଯାଉଛି, ସେଠାରେ ଶିଳ୍ପାଞ୍ଚଳ (Industrial Estate) ସ୍ଥାପନ କରିବାର ନିଷ୍ପତ୍ତି କଲେ । ସେତେବେଳେ ସରକାରୀ ପ୍ରେସ ତ ସରକାରଙ୍କର ଏକ ପ୍ରଧାନ ଶିଳ୍ପ ଥିଲା । ତେଣୁ ପ୍ରେସ ସେଠାକୁ ଉଠି ଆସିବାର ସ୍ଥିର କରାଗଲା ଏବଂ କାଠଯୋଡ଼ି କୂଳରେ ସେଥିପାଇଁ ଯାଗା ମିଳିଲା ।

ମିଷ୍ଟର ଖାଁ ଥିଲେ ସଚ୍ଚୋଟ ଓ ହୃଦୟବାନ ଅଫିସର । ତାଙ୍କର ସହଯୋଗୀ ଅଫିସର ଶ୍ରୀ ଉଦୟନାଥ ମିଶ୍ରଙ୍କ ଚେଷ୍ଟାରେ ପ୍ରେସ ବିଲଡ଼ିଂ ଏବଂ ଅଫିସର ଓ କର୍ମଚାରୀଙ୍କ ରହିବା ଘର ଆଦିର ବିସ୍ତୃତ ପ୍ଲାନ ପ୍ରସ୍ତୁତ ହୋଇଗଲା । ସେ ଯାହାହେଉ ପ୍ରେସର କେତେକ କୋଠାବାଡ଼ି ଓ ରହିବା ପାଇଁ କିଛି ଘର ତିଆରି ହୋଇ ଯିବାରୁ ବକ୍ସିବଜାରରୁ ମୁଖ୍ୟ ପ୍ରେସର ଯନ୍ତ୍ରପାତି ଏଠାକୁ ଅଣାଗଲା ଏବଂ ଏଠାରେ ଅଫିସ ଖୋଲିଲା । ପୁରୁଣା ଜଗନ୍ନାଥ ସଡ଼କର ପୂର୍ବକୁ ପ୍ରାୟ ୪୪ ଏକର ଜମି ଆକ୍ୟୁଆର କରାଯାଇ ସେଠାରେ ୨୦୦ ଛୋଟ ଛୋଟ କ୍ୱାର୍ଟରସ୍ ତିଆରି ହୋଇଥିଲା । କିନ୍ତୁ ଫର୍ମସ୍ ପ୍ରେସ ତଥାପି ବକ୍ସିବଜାରରେ ରହିଥାଏ । ସେ ପ୍ରେସ ପାଇଁ ସ୍ୱତନ୍ତ୍ର କୋଠାବାଡ଼ି ତିଆରି କରିବାର ଯୋଜନା ଚାଲିଥାଏ । ସେହି ଫର୍ମସ୍ ପ୍ରେସ ଶେଷରେ ୧୯୭୬ ମସିହାରେ ମୁଖ୍ୟ ପ୍ରେସ ପାଖକୁ ଉଠି ଆସିଥିଲା ।

ବୋଧହୁଏ ୧୯୬୧ ମସିହାରେ ପ୍ରଥମ ଥର ପାଇଁ ଓଡ଼ିଶାରେ ଭୋଟ କାଗଜ (Ballot Paper) ଛପିବାର କଥା ଉଠିଲା । ଏହି ଭୋଟ କାଗଜ ଛପିବାରେ ଯେଉଁ ଅସୁବିଧା ସବୁ ଦେଖାଗଲା ତାହାର ନିରାକରଣ ପାଇଁ ପ୍ରେସକୁ ପ୍ରସାରିତ ଓ ସର୍ବାଙ୍ଗ ସୁନ୍ଦର ଭାବରେ ଗଢ଼ି ତୋଳିବାର ବ୍ୟାପକ ଯୋଜନା ଚାଲିଲା । ସେତେବେଳକୁ ପଞ୍ଚବାର୍ଷିକ ଯୋଜନାସବୁ କାର୍ଯ୍ୟକାରୀ ହେଉଥାଏ । ସେଥିରେ ପ୍ରେସ ପାଇଁ ଟଙ୍କା ମଞ୍ଜୁର କରାଇ ବହୁ ନୂଆ ନୂଆ ମେସିନ ଓ ଅନ୍ୟାନ୍ୟ ଯନ୍ତ୍ରପାତି କଣାଗଲା ଏବଂ ଅନେକ ନୂଆ କର୍ମଚାରୀ ନିଯୁକ୍ତ ହେଲେ । ବିଭିନ୍ନ ଦାମିକା କାଗଜ ଓ ରଙ୍ଗିନ କାଳି ଆଦି କଣାଯାଇ ବହୁପ୍ରକାର ଉଚ୍ଚମାନର ଛପାଛପି କରାଗଲା ।

ପ୍ରେସ ବିଭାଗୀୟ ମୁଖ୍ୟ ଦପ୍ତର (Head of Depentnent) ହେଲା ଏବଂ ଏହାକୁ (Directerete of Printing, Stationery and Publication) ନାମ ଦେବାର ପ୍ରସ୍ତାବ ସରକାରଙ୍କୁ ପଠାଗଲା । ପ୍ରେସରେ ଗୋଟିଏ ୱାର୍କସପ୍ ଖୋଲାଯାଇ ତାହାକୁ ଜଣେ ଇଞ୍ଜିନିୟରଙ୍କ ଦାୟିତ୍ୱରେ ରଖାଗଲା । ଦୁଇଜଣ ଏକାଉଣ୍ଟସ୍ ଅଫିସର ଓ ଜଣେ ଲେବର ଅଫିସର ରହିଲେ । ବିଭିନ୍ନ ଆସବାବ କଣାଗଲା ଏବଂ ବିଭିନ୍ନ ବିଭାଗର ପ୍ରସାରଣ ଓ ଉନ୍ନତି ଘଟିଲା । କର୍ମଚାରୀମାନଙ୍କ ଚିତ୍ତବିନୋଦନ ପାଇଁ ଖେଳାଖେଳି ଓ ନାଟକ ପରିବେଷଣ ଆଦିର ବ୍ୟବସ୍ଥା ହେଲା । ନୂଆପଡ଼ା ଅଞ୍ଚଳରେ

ଥିବା ପ୍ରେସ କଲୋନୀରେ ଅଧିକ ବାସଗୃହ କରିବାର ବ୍ୟବସ୍ଥା କରାଗଲା । ସେଠାରେ ଏକ କ୍ଲବ୍‌ଘର ତିଆରି ହେଲା ଏବଂ ଏକ ପ୍ରାଥମିକ ସ୍କୁଲ ଆରମ୍ଭ କରାଗଲା । ଏହି ପ୍ରାଥମିକ ବିଦ୍ୟାଳୟର କ୍ରମ ଉନ୍ନତି ଘଟିଲା, ଏବେ ଏକ ଅପ୍‌ଗ୍ରେଡ଼େଡ଼ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଏବଂ ଏକ ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ସ୍ଥାପିତ ହୋଇଛି ।

ଏହାତ ଗଲା ପ୍ରେସର କୋଠାବାଡ଼ି ଓ ଅନ୍ୟାନ୍ୟ କଥା । ଓଡ଼ିଶାର ମୁଦ୍ରଣ ଶିଳ୍ପ ସମ୍ବନ୍ଧୀୟ ବୈଷୟିକ କୌଶଳ (Technology)ର ଉନ୍ନତି ସମ୍ପର୍କରେ କିଛି କହିବା କଥା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ବେଳକୁ ଏଠାକାର ଘରୋଇ ଛାପାଖାନା ସବୁ ବିଶେଷ ଉନ୍ନତି କରିପାରି ନଥିଲେ । ଭଲ ଅକ୍ଷର ତିଆରି ହେଉନଥିଲା । ଓଡ଼ିଆରେ ମନୋ-ମେସିନ, ଲାଇନୋ ମେସିନ ଆଦି ନଥିଲା । ଏପରିକି ଓଡ଼ିଆ ଟାଇପ ରାଇଟରଟିଏ ବି ନଥିଲା । ତେଣୁ ଓଡ଼ିଆରେ ଭଲ କରି ଅକ୍ଷର ତିଆରି କରିବାକୁ ସରକାରୀ ପ୍ରେସ ତରଫରୁ ଚେଷ୍ଟା ହେଲା । ୧୯୬୨ ମସିହାରେ ରାଜ୍ୟରେ ପ୍ରଚଳିତ ସମସ୍ତ ପ୍ରାଥମିକ ପାଠ୍ୟ ପୁସ୍ତକ ସରକାରୀ ଜାତୀୟକରଣ କରି ପ୍ରେସରେ ଛାପିବାର ନିଷ୍ପତ୍ତି ନେଇଥିଲେ । ୧୯୬୪ ମସିହାରେ ସରକାର ଉତ୍କଳ ପ୍ରସଙ୍ଗ ଓ ଓଡ଼ିଶା ରିଭ୍ୟୁ ପତ୍ରିକା ଦୁଇଟି ପୁନଶ୍ଚ ପ୍ରେସରେ ଛାପିବାର ନିଷ୍ପତ୍ତି ନେଲେ । ସେ ପର୍ଯ୍ୟନ୍ତ ତାହା ବିଷ୍ଣୁଭାଷା ପ୍ରେସରେ ଛପା ଯାଉଥିଲା । ୧୯୬୯ ମସିହାରେ କଳିଙ୍ଗ ଫିଲଟ୍ରି କାରଖାନା ପାଇଁ ତାରକସୀ କାମରେ ଚମତ୍କାର 'ଡବଲ କ୍ୟାଟଲଗ୍' ଛାପି ପ୍ରେସ ସାରା ପୃଥିବୀରେ ଅଧିକ ପରିଚିତ କରାଇବା ଓ ଅଧିକ ବିକ୍ରି କରାଇ ପାରିବାରେ ସାହାଯ୍ୟ କରିଛି । ୧୯୮୧ ମସିହାରେ ଭାରତୀୟ ସମ୍ବିଧାନର ଓଡ଼ିଆ ଅନୁବାଦକୁ ଭାରତ ସରକାରଙ୍କ ପାଇଁ ନିର୍ଭୁଲ ଓ ସୁନ୍ଦର ଭାବେ ଛାପି ସେ ପର୍ଯ୍ୟନ୍ତ ଛପା ଯାଇଥିବା ଭିନ୍ନ ଭାରତୀୟ ଭାଷାର ସମ୍ବିଧାନଗୁଡ଼ିକ ତୁଳନାରେ ଅଧିକ ପ୍ରଶଂସିତ ହୋଇ ପାରିଛି ।

ବର୍ତ୍ତମାନ ମୁଦ୍ରଣ ଶିଳ୍ପର ଦ୍ରୁତ ବିକାଶ ଘଟୁଛି । ସେ କାଳରେ ଚାହିଦାକୁ ଚାହିଁ ଯେଉଁ ପ୍ରେସ ତିଆରି କରାଯାଇଛି ଏବଂ ସେଥିରେ ଯେଉଁ ମୂଲ୍ୟବାନ ଯନ୍ତ୍ରପାତି ଖଞ୍ଜା ଯାଇଛି ଓ ଏବେ ବି ଖଞ୍ଜା ଯାଉଛି ସେ ସବୁର ଆବଶ୍ୟକତା ପରେ କେତେଦୂର ରହିବ ଏବଂ ସେମାନେ କେତେକାଳ ସରକାରଙ୍କ ମୁଦ୍ରଣ ଚାହିଦା ମେଣ୍ଟାଇ ପାରିବେ ତାହା ଏବେ ଠିକ୍ ଭାବରେ କହିବା ସମ୍ଭବ ନୁହେଁ । ହୁଏତ କାଳକ୍ରମେ ସେଥିରୁ କେତେକ ଅନାବଶ୍ୟକ ହୋଇ ପଡ଼ିବ । ଏବେତ କାଗଜ ବ୍ୟବହାର ନକରି କେବଳ କମ୍ପ୍ୟୁଟର ସାହାଯ୍ୟରେ ଅଫିସ କାମ ଚଳାଇବାର ଚେଷ୍ଟା ଚାଲିଲାଣି । କମ୍ପ୍ୟୁଟର ପ୍ରିଣ୍ଟ୍ ମଧ୍ୟ ଖୁବ୍ ଜୋରସୋରରେ ଆରମ୍ଭ ହେଉଛି । ପରେ ପୁଣି କ'ଣ କ'ଣ ଘଟିବ ତାହା ସଠିକ୍ ଭାବରେ କୁହାଯାଇ ନପାରେ । ଏକଥା କିନ୍ତୁ ସତ ଯେ, ଆମର ଏ ବିରାଟ ସରକାରୀ ପ୍ରେସ୍ ବର୍ତ୍ତମାନ ସଗୌରବେ ଚାଲିଛି ଏବଂ ବହୁକାଳ ଏପରି ଚାଲିଥିବ ।

# ଓଡ଼ିଶାର ଉଚ୍ଚ ନ୍ୟାୟାଳୟ

ଶ୍ରୀ ଭୀମଚରଣ ପଣ୍ଡା

ଓଡ଼ିଶାରେ ଯେଉଁ ଉଚ୍ଚ ନ୍ୟାୟାଳୟ ବା ହାଇକୋର୍ଟ ଆମେ ଦେଖୁଛେ ତାହା ଭାରତବର୍ଷ ସ୍ୱାଧୀନତା ଲାଭ କଲାପରେ ପ୍ରତିଷ୍ଠିତ ହୋଇଛି । ଆମ ଓଡ଼ିଶାର ଉଚ୍ଚନ୍ୟାୟାଳୟ ସମ୍ପର୍କୀୟ ମାମଲା ମାନ କଲିକତା ଓ ପାଟଣା ହାଇକୋର୍ଟରେ ବିଚାର ହେଉଥିଲା । ପକ୍ଷମାନେ ମୋକଦ୍ଦମା କରିବାପାଇଁ ପାଟଣା ଓ କଲିକତା ଉଚ୍ଚ ନ୍ୟାୟାଳୟକୁ ଯାଉଥିଲେ । ସମୟକ୍ରମେ ଭାଗ୍ୟ ଫେରିଲା । ସେଠାକାର ବିଚାରପତିମାନେ ଆସି କଟକରେ ମୋକଦ୍ଦମାମାନ ବିଚାର କଲେ । ସନ ୧୯୧୬ ମସିହା ମେ ମାସ ୧୬ ତାରିଖ ସୋମବାର ଦିନ ପ୍ରଥମେ କଟକରେ ସର୍କିଟକୋର୍ଟର ଶୁଭାରମ୍ଭ ହେଲା । ସେହି ଉତ୍ସବରେ ଦୁଇଜଣ ବିଚାରପତି ଉପସ୍ଥିତ ଥିଲେ । ଜଣେ ହେଲେ ମୁଖ୍ୟ ବିଚାରପତି ମିଃ ଗ୍ରିମିଅର ଏବଂ ଅନ୍ୟଜଣକ ହେଲେ ବିଚାରପତି ସରଫୁଦ୍ଦିନ୍ ।

କିଛିଦିନ ସର୍କିଟକୋର୍ଟ ଚାଲିଲା । ମୋକଦ୍ଦମାଗୁଡ଼ିକର ବିଚାରହେଲା । କିନ୍ତୁ ଲୋକେ ଚାହିଁଲେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଉ । ଆମ ଓଡ଼ିଶା ପାଇଁ ସ୍ୱତନ୍ତ୍ର ଉଚ୍ଚ-ନ୍ୟାୟାଳୟ ହେଉ । ଓଡ଼ିଶାର ଦାବୀ ଗ୍ରହଣ ହେଲା । ତା ୧ । ୪ । ୧୯୩୬ ରିଖରେ ଓଡ଼ିଶା, ଭାରତବର୍ଷର ଏକ ପ୍ରଦେଶରୂପେ ପରିଗଣିତ ହେଲା ।

ଯେତେବେଳେ ବିଚାରପତିମାନେ ପାଟଣାରୁ ଆସି ଏଠାରେ ସର୍କିଟକୋର୍ଟ କରି ମୋକଦ୍ଦମା ଗୁଡ଼ିକର ବିଚାର କରୁଥିଲେ ସେତେବେଳେ ମଧୁସୂଦନଦାସ ଥିଲେ ବାରର ସଭାପତି । ସେଦିନ ମୁଖ୍ୟ ବିଚାରପତି ଭାଷଣ ପ୍ରସଙ୍ଗରେ କହିଥିଲେ ଭାରତର ସର୍କିଟକୋର୍ଟ ପ୍ରଣାଳୀ ପ୍ରଥମେ ଓଡ଼ିଶାରେ ଆରମ୍ଭହେଲା । ବିଚାରପତିମାନେ ଓଡ଼ିଶାରେ ସର୍କିଟକୋର୍ଟ କରିବାକୁ ସମ୍ମତିପ୍ରଦାନ କରିଥିଲେ ।

କିଛିଦିନ ଅତିବାହିତ ହେଲା । ଓଡ଼ିଶାବାସୀ ଉପଲବ୍ଧି କଲେ ଯେ, ଓଡ଼ିଶାରେ ଉଚ୍ଚନ୍ୟାୟାଳୟ ପ୍ରତିଷ୍ଠା କରାଯାଉ କାରଣ ମୋକଦ୍ଦମାରହାର ବଢ଼ିବାରେ ଲାଗିଛି । ଉଚ୍ଚ ନ୍ୟାୟାଳୟ ପ୍ରତିଷ୍ଠା ପାଇଁ ସେତେବେଳର ପାରଳାଖେମୁଣ୍ଡି ମନ୍ତ୍ରୀମଣ୍ଡଳ ଗୋଟିଏ ପ୍ରସ୍ତାବ ଗ୍ରହଣ କରି ତା ୧୫ । ୮ । ୧୯୪୨ ରିଖରେ ଗୋଟିଏ କମିଟୀ ଗଠନ କଲେ । ଏଥିରେ ତଦାନିନ୍ତନ ଆଡ଼ଭୋକେଟ ଜେନେରାଲ ଶ୍ରୀଯୁକ୍ତ ବି: କେ:

ରାୟ ଅଧକ୍ଷ ରହିଲେ । ପ୍ରଥମେ ଓଡ଼ିଶା ଉଚ୍ଚନ୍ୟାୟାଳୟ ୧୯୪୮ ମସିହା ଜୁଲାଇ ୨୬ ତାରିଖରେ ପ୍ରତିଷ୍ଠା ହେଲା । ତା ୧ । ୧ । ୧୯୪୯ ଶିଖରେ ମୟୂରଭଞ୍ଜ ଷ୍ଟେଟର ମିଶ୍ରଣ ହେଲା ଏବଂ ମିଶ୍ରଣପରେ ୧୩ଟି ଜିଲ୍ଲାକୁ ନେଇ ଓଡ଼ିଶାପ୍ରଦେଶ ଗଠିତ ହେଲା ।

ଏକ ମନୋଜ୍ଞ ପରିବେଶ ମଧ୍ୟରେ ଯେଉଁଦିନ ଓଡ଼ିଶା ଉଚ୍ଚନ୍ୟାୟାଳୟକୁ ଉଦ୍‌ଘାଟନ କରିଥିଲେ ଭାରତର ଫେଡ଼େରାଲ କୋର୍ଟର ପ୍ରଧାନ ବିଚାରପତି ହିରାଲାଲ କାନିଆ । ୨୩-୧୧-୧୯୫୧ରେ ଏକ ବିଜ୍ଞାପନ ବଳରେ ଭାରତର ତଦାନିନ୍ତନ ରାଷ୍ଟ୍ରପତି ସମ୍ବିଧାନର ୧୧୬ ଧାରା ଅନୁଯାୟୀ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ସର୍ବାଧିକ ବିଚାରପତିଙ୍କ ସଂଖ୍ୟା ମୁଖ୍ୟ ବିଚାରପତିଙ୍କୁ ମିଶାଇ ସାତ ରହିବ ବୋଲି ଆଦେଶ ଦେଲେ ।

ପ୍ରଥମେ ଓଡ଼ିଶା ଉଚ୍ଚ ନ୍ୟାୟାଳୟ ଚାରିଜଣ ବିଚାରପତିଙ୍କୁ ନେଇ କାର୍ଯ୍ୟ ଆରମ୍ଭ କଲା । ସ୍ୱତନ୍ତ୍ର ଓଡ଼ିଶା ଉଚ୍ଚ ନ୍ୟାୟାଳୟର ପ୍ରଥମ ମୁଖ୍ୟ ବିଚାରପତି ଭାବେ ପାଟଣା ହାଇକୋର୍ଟର ବିଚାରପତି ରୂପେ କାର୍ଯ୍ୟ କରୁଥିବା ଶ୍ରୀଯୁକ୍ତ ବୀରକିଶୋର ରାୟଙ୍କୁ ନିଯୁକ୍ତ ଦିଆଗଲା । ତେଣୁ ଜଷ୍ଟିସ ବି:କେ: ରାୟ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ପ୍ରଥମ ମୁଖ୍ୟ ଓଡ଼ିଆ ବିଚାରପତି ରୂପେ କାର୍ଯ୍ୟଭାର ଗ୍ରହଣ କଲେ । ଅନ୍ୟ ତିନିଜଣ ବିଚାରପତି ହେଲେ ମାନ୍ଦ୍ରାଜ ଉଚ୍ଚ ନ୍ୟାୟାଳୟର ଓକିଲ ଶ୍ରୀବାଚୁ ଜଗନ୍ନାଥ ଦାସ, ଓଡ଼ିଶା ଉଚ୍ଚନ୍ୟାୟାଳୟର ଆଡ଼ଭୋକେଟ ଜେନେରାଲ ଶ୍ରୀଯୁକ୍ତ ଲିଙ୍ଗରାଜ ପାଣିଗ୍ରାହୀ, ଜଣେ ତାମିଲିଆ ଆଇ:ସି:ଏସ ଅଫିସର ଶ୍ରୀଯୁକ୍ତ ଆର୍:ଏଲ୍: ନରସିଂହମ୍ । ଏହି ବିଚାରପତିମାନେ ହିଁ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ସ୍ଥାନ ଅଳଂକୃତ କରିପାରିଥିଲେ । ଆମ ଉଚ୍ଚ ନ୍ୟାୟାଳୟର ବିଚାରପତି ଆର୍: ଏଲ୍: ନରସିଂହମ୍ ପାଟଣା ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଭାବେ ନିଯୁକ୍ତି ପାଇଥିଲେ । ଶ୍ରୀଯୁକ୍ତ ବାଚୁ ଜଗନ୍ନାଥ ଦାସ ସୁପ୍ରିମକୋର୍ଟର ବିଚାରପତି ରୂପେ ନିଯୁକ୍ତି ପାଇଥିଲେ ।

ଏତଦ୍‌ବ୍ୟତୀତ ବହୁ ବିଦ୍ୱାନ ବିଚାରବନ୍ତ ବ୍ୟକ୍ତି ଓଡ଼ିଶା ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଆସନ ଗ୍ରହଣ କରିଛନ୍ତି । ସେମାନେ ହେଲେ ଜଷ୍ଟିସ ଖଲିଲ ଅହମ୍ମଦ, ଜଷ୍ଟିସ ବର୍ମନ, ଜଷ୍ଟିସ ଶିବନାରାୟଣ ଶଙ୍କର, ଜଷ୍ଟିସ ଗମ୍ଭୀରଧର ପାଠକ, ଜଷ୍ଟିସ ରଙ୍ଗନାଥ ମିଶ୍ର, ଜଷ୍ଟିସ ଗତିକୃଷ୍ଣ ମିଶ୍ର, ଜଷ୍ଟିସ ସୁକାନ୍ତ କିଶୋର ରାୟ, ଜଷ୍ଟିସ ହରିଲାଲ ଅଗ୍ରୱାଲ, ଜଷ୍ଟିସ ବନୱାରୀଲାଲ ହଂସାରିଆ । ବର୍ତ୍ତମାନ ଶ୍ରୀଯୁକ୍ତ ଗିରିଶ ଠାକୁରଲାଲ୍ ନାନାବତି ମୁଖ୍ୟ ବିଚାରପତି ଆସନ ଅଳଂକୃତ କରିଅଛନ୍ତି । ଓଡ଼ିଶା ଉଚ୍ଚ ନ୍ୟାୟାଳୟର ଓକିଲମାନଙ୍କ ମଧ୍ୟରୁ ଶ୍ରୀଯୁକ୍ତ ଏସ୍:ସି: ଚାଟାର୍ଜି ଓ ଶ୍ରୀଯୁକ୍ତ ହରିହର ମହାପାତ୍ର ଅନ୍ୟ ରାଜ୍ୟର ବିଚାରପତି ରୂପେ ନିଯୁକ୍ତି ପାଇଥିଲେ ।

ଅନେକ ଖ୍ୟାତନାମା ବିଚାରପତି ଓଡ଼ିଶାର ସର୍କିଟ କୋର୍ଟରେ ବିଚାରପତି ରୂପେ କାର୍ଯ୍ୟ କରି ଯାଇଛନ୍ତି । ସେମାନଙ୍କ ମଧ୍ୟରୁ ପାଟଣା ହାଇକୋର୍ଟର ବିଚାରପତି ଡାଉସନ ମିଲର, ସାର୍ କଟନେ ଟେରେଲ, ଏ:ଟି: ହସାନ, ମିଃ ଫଜଲ ଅଲ୍ଲୀ, ଜଷ୍ଟିସ ବି:ପି: ସିହ୍ନା, ଜଷ୍ଟିସ ଏସ୍:କେ: ଦାସ ସର୍କିଟ କୋର୍ଟରେ କାର୍ଯ୍ୟ କରିଥିଲେ ।

ଓଡ଼ିଶା ଉଚ୍ଚ ନ୍ୟାୟାଳୟର ମଧ୍ୟ କେତେକ ବିଚାରପତି ଅନ୍ୟ ରାଜ୍ୟର ବିଚାରପତି ଭାବେ କାର୍ଯ୍ୟ କରି ସୁନାମ ଅର୍ଜ୍ଜନ କରିଛନ୍ତି । ସେମାନଙ୍କ ମଧ୍ୟରେ ଜଷ୍ଟିସ

ହରେକୃଷ୍ଣ ମହାନ୍ତି ଓଡ଼ିଶା ଉଚ୍ଚ ନ୍ୟାୟାଳୟରୁ ଯାଇ ସିକିମ ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତିଭାବେ କାର୍ଯ୍ୟ କରିଥିଲେ । ଡକ୍ଟର ବ୍ରଜନାଥ ମିଶ୍ର ଓଡ଼ିଶା ହାଇକୋର୍ଟରୁ ଆହ୍ଲାବାଦ ଉଚ୍ଚ ନ୍ୟାୟାଳୟକୁ ଯାଇ ପୁଣି ସିକିମ ହାଇକୋର୍ଟର ମୁଖ୍ୟ ବିଚାରପତି କାର୍ଯ୍ୟ କରିଥିଲେ । ଆମ ଉଚ୍ଚ ନ୍ୟାୟାଳୟରୁ ସ୍ୱର୍ଗତ ଜଷ୍ଟିସ ରାଧାଚରଣ ପଟ୍ଟନାୟକ ସୁପ୍ରିମକୋର୍ଟର ବିଚାରପତିଭାବେ ନିଯୁକ୍ତ ପାଇଥିଲେ । ଆମ ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଶ୍ରୀଯୁକ୍ତ ବନୱାରୀ ଲାଲ ହଂସାରିଆ ଉନ୍ନୀତ ହୋଇ ବର୍ତ୍ତମାନ ଉଚ୍ଚତମ ନ୍ୟାୟାଳୟର ବିଚାରପତି ରୂପେ ଅବସ୍ଥାପିତ ହୋଇଛନ୍ତି । ଆମ ଓଡ଼ିଶା ଉଚ୍ଚ ନ୍ୟାୟାଳୟର ବିଚାରପତି ଶ୍ରୀଯୁକ୍ତ ଅନଙ୍ଗ ପଟ୍ଟନାୟକ ବର୍ତ୍ତମାନ ଗୌହାଟୀ ଉଚ୍ଚ ନ୍ୟାୟାଳୟରେ ବିଚାରପତି ରୂପେ ନିଯୁକ୍ତ ପାଇଛନ୍ତି ।

ଓଡ଼ିଶା ଉଚ୍ଚ ନ୍ୟାୟାଳୟର କାର୍ଯ୍ୟ ବଢ଼ିବା ସଙ୍ଗେ ସଙ୍ଗେ ମୋକଦ୍ଦମା ସଂଖ୍ୟା ମଧ୍ୟ ବଢ଼ିଲା । ଫଳରେ ବିଚାରପତିମାନଙ୍କ ସଂଖ୍ୟା ବଢ଼ିଚାଲିଲା । ବର୍ତ୍ତମାନ ସୁଦ୍ଧା ଓଡ଼ିଶା ଉଚ୍ଚ ନ୍ୟାୟାଳୟରେ ୧୩ ଜଣ ବିଚାରପତି କାର୍ଯ୍ୟ କରୁଅଛନ୍ତି । କେତେକ ବିଚାରପତିଙ୍କ ସ୍ଥାନ ଖାଲି ପଡ଼ିଛି । ବର୍ତ୍ତମାନ ଯେଉଁ ବିଚାରପତିମାନେ ଓଡ଼ିଶା ଉଚ୍ଚ ନ୍ୟାୟାଳୟରେ କାର୍ଯ୍ୟ କରୁଅଛନ୍ତି ସେମାନେ ହେଲେ—

| | |
|---|---|
| ୧—ଗିରିଶ ଠାକୁରଲାଲ୍ ନାନାବଟି, | ମୁଖ୍ୟ ବିଚାରପତି |
| ୨—ଜଷ୍ଟିସ୍ ପୂର୍ଣ୍ଣଚନ୍ଦ୍ର ମିଶ୍ର, | ବିଚାରପତି |
| ୩—ଜଷ୍ଟିସ ଗୋପାଳବଲ୍ଲଭ ପଟ୍ଟନାୟକ | ,, |
| ୪—ଜଷ୍ଟିସ ଦେବପ୍ରିୟ ମହାପାତ୍ର | ,, |
| ୫—ଜଷ୍ଟିସ ଶରତଚନ୍ଦ୍ର ମହାପାତ୍ର | ,, |
| ୬—ଜଷ୍ଟିସ ଲିଙ୍ଗରାଜ ରଥ | ,, |
| ୭—ଜଷ୍ଟିସ ଶ୍ରୀମତି ଅମିୟ କୁମାରୀ ପାଢ଼ୀ | ,, |
| ୮—ଜଷ୍ଟିସ ଅରିଜିତ ପଶାୟତ | ,, |
| ୯—ଜଷ୍ଟିସ କେ: ସି: ଜଗଦେବରାୟ | ,, |
| ୧୦—ଜଷ୍ଟିସ ଏସ୍: କେ: ମହାନ୍ତି | ,, |
| ୧୧—ଜଷ୍ଟିସ ଡି: ଏମ୍: ପଟ୍ଟନାୟକ | ,, |
| ୧୨—ଜଷ୍ଟିସ ବି: ଏନ୍: ଦାସ | ,, |
| ୧୩—ଜଷ୍ଟିସ ଆର: କେ: ପାତ୍ର | ,, |

ଓଡ଼ିଶା ଉଚ୍ଚ ନ୍ୟାୟାଳୟରେ ମୋକଦ୍ଦମାର ସଂଖ୍ୟା ଦିନକୁ ଦିନ ଅସଂଖ୍ୟ ଭାବରେ ବଢ଼ିବାରେ ଲାଗିଛି । ପ୍ରଶାସନିକ ଟ୍ରିବ୍ୟୁନାଲ ହେଲେ ସୁଦ୍ଧା ମୋକଦ୍ଦମା ଗୁଡ଼ିକର ବିଚାର ନ ହୋଇ ପଡ଼ିରହିଛି । ଆଉ ଦଶଜଣ ବିଚାରପତି ନିଯୁକ୍ତ କରାଗଲେ ମୋକଦ୍ଦମା ଗୁଡ଼ିକ ଫଇସଲା କରାଯାଇ ପାରିବ ବୋଲି ଆଶା ।

●

# କଟକର ସ୍ମରଣୀୟ ପ୍ରତିଭା

**ଡଃ ଶ୍ରୀଚରଣ ଦାସ**

କଟକ ଓଡ଼ିଶାର ପ୍ରାଣକେନ୍ଦ୍ର । ଏହାର ଇତିହାସ ଅତ୍ୟନ୍ତ ମହାନ୍ । ପ୍ରାକୃତିକ ପରିବେଶ, ଭୌଗୋଳିକ ଅବସ୍ଥିତି ଏବଂ ବଳିଷ୍ଠ ସାମାଜିକ ପରମ୍ପରାକୁ ନେଇ ଏହା ଯେପରି ସର୍ବଦା ପ୍ରଶଂସିତ ହୋଇଛି ସେହିପରି ସେ ଅନେକ ପୁତ୍ରକନ୍ୟା-ମାନଙ୍କୁ ଜନ୍ମ ଦେଇ ହୋଇଛି ଧନ୍ୟ ।

କଟକ ନଗରରେ ପ୍ରାୟ ଏକହଜାର ବର୍ଷ ମଧ୍ୟରେ କୋଟି କୋଟି ନରନାରୀ ଜନ୍ମଗ୍ରହଣ କରି ମୃତ୍ୟୁବରଣ କରିଛନ୍ତି । ସମସ୍ତଙ୍କର ବିବରଣୀ ଇତିହାସ ରଖିପାରିନି । ରଖିବା ମଧ୍ୟ ସମ୍ଭବ ନୁହେଁ । ତଥାପି କଟକ ମାଟିରେ ସେମାନଙ୍କ ସତ୍ତା ମିଶି, ପାଇଛି ଅସୀମ ଶାନ୍ତି । ଗୋଟିଏ ବାପାର ଅନେକ ପୁତ୍ର କନ୍ୟାଙ୍କ ମଧ୍ୟରୁ ନାଁ କରନ୍ତି ମାତ୍ର ଜଣେ କିମ୍ବା ଦୁଇଜଣ । କ୍ୱଚିତ୍ ସମସ୍ତେ ଯୋଗ୍ୟ ହୋଇଥିବା ଶୁଣାଯାଏ । ସେହି ଦୁଇଜଣଙ୍କୁ ପାଇ ପିତୃତ୍ୱ ହୁଏ ଧନ୍ୟ । ସେମାନେ ହୁଅନ୍ତି ପରିବାରର ଆଗୁଆ ମଣିଷ ।

ପରିବର୍ତ୍ତନଶୀଳ ସଂସାରରେ ଜାତି, ବଂଶ ଓ ଦେଶର ଉନ୍ନତି ସାଧନ କରି ମୃତ୍ୟୁ ପରେ ସେମାନେ ହୁଅନ୍ତି ମୃତ୍ୟୁଞ୍ଜୟୀ ତଥା ଅମର । ମହାକାଳ ତାଙ୍କ ଯଶ ପ୍ରାଣକୁ ନେଇପାରେ ନାହିଁ । ସେହି ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଏହି ବିସ୍ତୃତ ସମୟ ମଧ୍ୟରେ କଟକ ସହରରେ ବି କମ୍ ସଂଖ୍ୟକ ମହନୀୟ ପ୍ରତିଭାମାନଙ୍କର ଜନ୍ମ ହୋଇନି ।

ଏହାର କୋଳରେ ଅନେକ ସନ୍ତାନ ଜନ୍ମହୋଇ ଆଜୀବନ କଟାଇଛନ୍ତି । ଅନେକଙ୍କୁ ପାଳନ କରି ସେ ବାହାରକୁ ପଠାଇ ଦେଇଛି ଏବଂ ସେହିପରି ଅନେକ ବିଭିନ୍ନ ସ୍ଥାନରୁ ଆସି ଏଠାରେ ଶିକ୍ଷାଲାଭପୂର୍ବକ ସ୍ଥାୟୀ ବାସିନ୍ଦା ହୋଇ ଖ୍ୟାତିଲାଭ କରିଛନ୍ତି । ଆହୁରି କେତେକ ସେମାନଙ୍କ କାର୍ଯ୍ୟ ଶେଷକରି ଏଠାରୁ ଚାଲିଯାଇଛନ୍ତି । ଅନେକ ପ୍ରତିଷ୍ଠା ସମ୍ପନ୍ନ ପୁତ୍ରକନ୍ୟାଙ୍କୁ ସେ ତା'ର ମାଟି ପାଣିପବନରେ ବଢ଼ାଇଛି । ଶିକ୍ଷାରେ ସହଯୋଗ କରିଛି ଏବଂ କର୍ମକ୍ଷେତ୍ର ବି ଯୋଗାଇ ଦେଇଛି ।

ଏହି ସୁରଣୀୟ ପ୍ରତିଭାମାନଙ୍କ ମଧ୍ୟରେ ଅଛନ୍ତି ଅନେକ ଶିକ୍ଷାବିତ୍, ଆଇନଜ୍ଞ, ସମାଜସେବକ, ନେତା, ବାଗ୍ମୀ, ରାଜନୀତିଜ୍ଞ, ବୈଜ୍ଞାନିକ, ସଂସ୍କାରକ, ସାମ୍ବାଦିକ, ସାହିତ୍ୟିକ, କବି, ଲେଖକ, ପୁସ୍ତକ ପ୍ରକାଶକ, ଧର୍ମ ପ୍ରଚାରକ, ଶିଳ୍ପପତି ଓ ବ୍ୟବସାୟୀ । କଟକକୁ ସର୍ବତୋଭାବେ ସେମାନେ ପ୍ରାଣଭରି ଭଲ ପାଇଛନ୍ତି । ଏଠାରେ କଟକ ନଗରର କେତେକ ମହନୀୟ କୃତୀସମ୍ପନ୍ନ ପ୍ରତିଭାଙ୍କର ବର୍ଣ୍ଣମାଳା କ୍ରମରେ ସଂକ୍ଷେପ ପରିଚୟ ପ୍ରଦାନ କରାଗଲା ।

## ଅନନ୍ତ ପଟ୍ଟନାୟକ :

ଅନନ୍ତ ପଟ୍ଟନାୟକ ୧୯୧୨ ମସିହା ଜୁନ୍ ମାସ ୧୧ ତାରିଖରେ ପୁରୀଜିଲ୍ଲାର ଚଣାହଟା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଜୟକୃଷ୍ଣ ପଟ୍ଟନାୟକ ଓ ମାତାଙ୍କ ନାମ ମହାଦେଈ ଦେବୀ ।

ବାଲ୍ୟକାଳରୁ ସେ ନିଜର ପିତାମାତାଙ୍କୁ ହରାଇ ଥିବାରୁ ମାମୁଁଘରେ ରହି ଲାଳିତପାଳିତ ହୋଇଥିଲେ । ୧୯୩୧ ମସିହାରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ସେ ପନ୍ଦର ଦିନ ପାଇଁ କାରାବରଣ କରିଥିଲେ । ଏଣୁ ମାଟ୍ରିକ୍ ପାଶ୍ କରିବା ପାଇଁ ତାଙ୍କୁ ବହୁତ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । କଟକକୁ ସେ ନିଜର କର୍ମକ୍ଷେତ୍ର ଭାବେ ବାଛି ନେଇଥିଲେ । ବହୁ ସଂଘର୍ଷ ମଧ୍ୟ ଦେଇ ଗତିକରି ୧୯୩୫ ମସିହାରେ ସେ ରେଭେନ୍ସା କଲେଜରୁ ବି: ଏ: ପାଶ୍ କଲେ ।

ରେଭେନ୍ସା କଲେଜରେ ପଢ଼ୁଥିବାବେଳେ ଅନନ୍ତ ପଟ୍ଟନାୟକ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପ୍ରଭାବିତ ହୋଇଥିଲେ । ୧୯୩୦ ମସିହାର ଲବଣ ସତ୍ୟାଗ୍ରହ ଏବଂ ୧୯୩୭-୩୮ ମସିହାର ଗଡ଼ଜାତ ଆନ୍ଦୋଳନରେ ଯୋଗଦେଇ ସେ କାରାବରଣ କଲେ । ଭଗବତୀ ଚରଣ ପାଣିଗ୍ରାହୀଙ୍କ ଦ୍ୱାରା ପ୍ରତିଷ୍ଠିତ 'ନବଯୁଗ ସାହିତ୍ୟ ସଂସଦ'ର ଅନ୍ୟତମ ପ୍ରାଣ ପ୍ରତିଷ୍ଠାତା ଭାବେ ଅନନ୍ତ ପଟ୍ଟନାୟକ ସୁବିଦିତ । ୧୯୨୨ ମସିହାର ସଂଗ୍ରାମ ତଥା ବିପ୍ଳବ ମଧ୍ୟରୁ ତାଙ୍କ କବି ଜୀବନ ଆତ୍ମପ୍ରକାଶ କରେ ।

ଇଂରେଜ ସରକାରର କୁଶାସନ, ରାଜା ଓ ଜମିଦାରମାନଙ୍କର ନିରୀହ ପ୍ରଜାମାନଙ୍କୁ ଶୋଷଣ ଓ ଲାଞ୍ଛନା ପ୍ରଭୃତି ତାଙ୍କ ଭାବନାରେ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ଏକ ଶ୍ରେଣୀହୀନ ଶୋଷଣମୁକ୍ତ ସମାଜ ଗଠନ କରିବା ଥିଲା ତାଙ୍କ ଲେଖାର ଆଭିମୁଖ୍ୟ । ପ୍ରଥମ ଛାତ୍ର ସମ୍ମିଳନୀର ସଭାପତି ଭାବେ ସେ ଛାତ୍ରମାନଙ୍କୁ ସଙ୍ଗଠିତ କରି ଇଂରେଜ ଶାସନର ଉପସଂହାର ପାଇଁ ବିଭିନ୍ନ ପଦକ୍ଷେପ ନେଇ-ଥିଲେ ।

ଆଧୁନିକ ପ୍ରଗତିବାଦ ସାହିତ୍ୟର ବିଶିଷ୍ଟ କବି ଅନନ୍ତ ପଟ୍ଟନାୟକ ନିଜ କବିତା ମାଧ୍ୟମରେ ସାମ୍ୟବାଦ ଚିନ୍ତାଧାରାକୁ ପ୍ରକାଶ କରି ଲେଖକମାନଙ୍କ ପାଇଁ ସୃଷ୍ଟି କଲେ ଏକ ନୂତନ ଯୁଗ । ସେ 'କୃଷକ' ଓ 'ମୁକ୍ତି ପୁଣି' ପତ୍ରିକାର ସମ୍ପାଦକ

ଥିଲେ ଏବଂ 'ସତ୍ୟବାଦୀ' ଓ 'ସମାଜ'ର ସମ୍ପାଦନା ମଣ୍ଡଳୀରେ କିଛିଦିନ କାର୍ଯ୍ୟ କରିଥିଲେ । ୧୯୫୦ ମସିହା ପର୍ଯ୍ୟନ୍ତ ସେ ନିରବଚ୍ଛିନ୍ନ ଭାବେ ରାଜନୀତିରେ ସକ୍ରିୟ ଭାବେ ଅଂଶଗ୍ରହଣ କରିଥିଲେ । ପରେ ସେ ଏଥିରୁ ସଂପୂର୍ଣ୍ଣ ଅବ୍ୟାହତି ନେଲେ ସତ କିନ୍ତୁ ତାଙ୍କ ଲେଖନୀ ମୃତ୍ୟୁ ପର୍ଯ୍ୟନ୍ତ ଥିଲା ଗତିଶୀଳ । ନବଭାରତ, ଆଧୁନିକ, ଉତ୍କଳ ସାହିତ୍ୟ, ଦିଗନ୍ତ, ଆସନ୍ତାକାଲି ଓ ଝଙ୍କାର ପ୍ରଭୃତି ସାହିତ୍ୟ ପତ୍ରିକାର ସେ ଜଣେ ନିୟମିତ ଲେଖକ ।

ତାଙ୍କ ଲିଖିତ ରକ୍ତଶିଖା, ତର୍ପଣ କରେ ଆଜି, ଘୁଇର ଛୁଟୀ, ଅଲେଉଡ଼ା ଘୋଡ଼ା ଓ କଣ୍ଢେଇ ଆଦି କବିତା ପୁସ୍ତକ ଓଡ଼ିଆ ସାହିତ୍ୟରେ ବେଶ୍ ଲୋକପ୍ରିୟତା ଅର୍ଜନ କରିଛି । ବିଖ୍ୟାତ ଔପନ୍ୟାସିକ ଗର୍କୀଙ୍କର 'ଦି ମଦର' ଉପନ୍ୟାସକୁ ଓଡ଼ିଆରେ 'ମା' ନାମରେ ଅନୁବାଦ କରି ୧୯୬୫ ମସିହାରେ ସୋଭିଏତ୍‌ଲ୍ୟାଣ୍ଡ ନେହେରୁ ପୁରସ୍କାର ପାଇଛନ୍ତି । ଜଣେ ଶିଶୁ ସାହିତ୍ୟିକ ଭାବେ 'ଛବିଟିଏ କୁ ଗପଟିଏ', କୁନ୍‌ମୁନ୍, କାଠର ଘୋଡ଼ା ପ୍ରଭୃତି ତାଙ୍କର ଉଲ୍ଲେଖଯୋଗ୍ୟ କୃତି । 'ଅବାନ୍ତର' କବିତା ପୁସ୍ତକ ପାଇଁ ସେ ୧୯୮୧ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିଲେ ।

ଏକାଧାରରେ ସେ ଜଣେ ଲେଖକ, କବି, ସାମ୍ବାଦିକ, ଗାଳ୍ପିକ ଓ ଶିଶୁ ସାହିତ୍ୟିକ । ଫାସିବାଦ ଓ ଯୁଦ୍ଧ ବିରୁଦ୍ଧରେ କବିତା ଲେଖି ଅନନ୍ତ ପଟ୍ଟନାୟକ ଏକ ନୂତନ ପୃଥିବୀ ପାଇଁ ଉଦ୍ୟମ କରିଥିଲେ । ଅନ୍ଧବିଶ୍ୱାସ ଓ ଅତ୍ୟାଚାର ବିରୁଦ୍ଧରେ ସେ କବିତା ରଚନା କରି ଆଧୁନିକ ବଂଶଧରମାନଙ୍କ ପାଇଁ ଆଦର୍ଶର ଏକ ଅଭିନବ ମାର୍ଗ ଉନ୍ମୋଚନ କଲେ । ଏତଦ୍‌ବ୍ୟତୀତ ସେ ଜାତୀୟକରଣ ପାଠ୍ୟପୁସ୍ତକ ସଂସ୍ଥାର ସମ୍ପାଦକ ଥିଲେ ଏବଂ ଓଡ଼ିଶାରେ ମଧ୍ୟ ଏହି ପାଠ୍ୟପୁସ୍ତକ ପ୍ରକାଶ କରିଥିଲେ । ଏହିଭଳି ଏକ ମହାନ୍ ବ୍ୟକ୍ତିତ୍ୱର ଅବସାନ ଘଟିଲା ୧୯୮୭ ମସିହା ଜୁନ୍ ମାସ ୨୫ ତାରିଖରେ ।

## ଅନନ୍ତ ପ୍ରସାଦ ପଣ୍ଡା :

ଅନନ୍ତ ପ୍ରସାଦ ପଣ୍ଡା ୧୯୦୬ ମସିହା ଜୁଲାଇ ମାସ ୧୮ ତାରିଖରେ ବାଲେଶ୍ୱର ଜିଲ୍ଲାର ସୋର ନିକଟବର୍ତ୍ତୀ କଲ୍ୟାଣୀ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ଅନେକ ଘାତ ପ୍ରତିଘାତ ମଧ୍ୟ ଦେଇ ତାଙ୍କ ଜୀବନ ଥିଲା ଗତିଶୀଳ । ସେ ରେଭେନ୍‌ସା କଲେଜରୁ ବି. ଏ ପାଶ୍ କରିଥିଲେ । ଇଂରେଜରେ ଏମ୍. ଏ. ପାଶ୍ କରି ସାରିବା ପରେ ସେ ସମବାୟ ବିଭାଗରେ ଜଣେ ବରିଷ୍ଠ ଅଫିସର ପଦବୀରେ ନିଯୁକ୍ତି ପାଇଲେ । ଅନେକ ବଡ଼ ବଡ଼ ଚାକିରିକୁ ପ୍ରତ୍ୟାଖ୍ୟାନ କରି ସେ ଏହାକୁ ଅଧିକ ପସନ୍ଦ କରିଥିଲେ ।

ସମବାୟ ସଂସ୍ଥା ମାଧ୍ୟମରେ ସମାଜ ଓ ଦେଶକୁ ଆର୍ଥିକ ଦୃଷ୍ଟିକୋଣରୁ ଆଗେଇ ନେବା ତାଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ ଥିଲା । ଜଣେ ଲେଖକ ଭାବେ ପ୍ରଥ

ଜୀବନରୁ ସେ ଲେଖାଲେଖି ଆରମ୍ଭ କରିଥିଲେ । ତାଙ୍କ ଲେଖାର ମୂଳଲକ୍ଷ୍ୟ ଥିଲା ସହଯୋଗ । ସହଯୋଗ ଦ୍ୱାରା ସବୁ ଅସମ୍ଭବ ସମ୍ଭବ ହୁଏ, ଜାତି ବଳିଷ୍ଠ ହୁଏ ଏବଂ ଦେଶ ହୁଏ ପ୍ରଗତିଶୀଳ ତଥା ସମୃଦ୍ଧ । ଏହା ତାଙ୍କର ଅଭିମତ । ତାଙ୍କ ରଚନାବଳୀ-ମାନଙ୍କ ମଧ୍ୟରେ ସଭ୍ୟତାର ଉଦୟ, ମନୋରଞ୍ଜନ, କୈଶୋରଦଶା, ଭାଗ୍ୟଚକ୍ର ଓ ନୂଆଦୁନିଆଁ ପ୍ରଭୃତି ଅନ୍ତର୍ଭୁକ୍ତ । ଏତଦ୍‌ବ୍ୟତୀତ ଅନେକ ସାଂସ୍କୃତିକ, ସାହିତ୍ୟିକ ଏବଂ ସମାଜସେବା ଅନୁଷ୍ଠାନ ସହିତ ସେ ଜଡ଼ିତ ଥିଲେ । ସେ ମଧ୍ୟ ତାଙ୍କ ଆତ୍ମଜୀବନୀ ଲେଖିଛନ୍ତି । ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ଲେଖନୀ ଥିଲା ଚଳଚଞ୍ଚଳ । ୧୯୮୯ ମସିହା ଡ଼ିସେମ୍ବର ମାସ ୧୫ ତାରିଖରେ ସେ ମୃତ୍ୟୁବରଣ କଲେ ।

## ଅନନ୍ତ ମିଶ୍ର :

ଅନନ୍ତ ମିଶ୍ର ଓଡ଼ିଶାର ଜଣେ ଖ୍ୟାତନାମା ପୁସ୍ତକ ପ୍ରକାଶକ ଭାବେ ପରିଚିତ । ସେ ୧୯୧୨ ମସିହା ଜନୁଆରୀ ୨୩ ତାରିଖରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନରୁ ସେ ଥିଲେ ଅଧ୍ୟବସାୟୀ, ସମୟାନୁବର୍ତ୍ତୀ ଓ ଶୃଙ୍ଖଳିତ । ଦୈନନ୍ଦିନ କାର୍ଯ୍ୟକୁ ସେ ଶୃଙ୍ଖଳିତ ତଥା ଆଗ୍ରହର ସହିତ ସମ୍ପାଦନ କରୁଥିଲେ । ୧୯୩୫ ମସିହାରେ ମାସିକ ମାତ୍ର ୨୦ ଟଙ୍କା ବେତନରେ ସେ 'ଷ୍ଟୁଡେଣ୍ଟସ ଷ୍ଟୋର'ରେ ଚାକିରି କଲେ । କିନ୍ତୁ ତାଙ୍କର କର୍ତ୍ତବ୍ୟନିଷ୍ଠା, ପରିଶ୍ରମ ଓ ଅସାଧାରଣ ବ୍ୟାବସାୟିକ ପ୍ରତିଭା ଯୋଗୁ ସେ ଏହି ସଂସ୍ଥାର ପ୍ରୋପ୍ରାଇଟର ହୋଇ ପାରିଥିଲେ ।

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ଓଡ଼ିଶାର ଏକ ଲୋକପ୍ରିୟ ପୁସ୍ତକ ପ୍ରକାଶନ ସଂସ୍ଥା । ଓଡ଼ିଶାର ଜନତାଙ୍କୁ ଶିକ୍ଷିତ କରିବାରେ ଏବଂ ଓଡ଼ିଆ ଜାତିକୁ ଅଗ୍ରଣୀ କରିବାରେ ଏହି ସଂସ୍ଥାର ପ୍ରୋପ୍ରାଇଟର ଭାବରେ ଅନନ୍ତ ମିଶ୍ରଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ସେ ଓଡ଼ିଆ ଭାଷାରେ ଅନେକ ଗ୍ରନ୍ଥାବଳୀ, ଉପନ୍ୟାସ, ନାଟକ, କ୍ଷୁଦ୍ରଗଳ୍ପ, କାବ୍ୟ କବିତା, ରମ୍ୟରଚନା, ଜୀବନୀ, ଧର୍ମପୁସ୍ତକ, ପୁରାଣ, ସମାଲୋଚନା, ବିଜ୍ଞାନପୁସ୍ତକ ଓ ଶିଶୁ ଉପଯୋଗୀ ବହି ପ୍ରକାଶ କରିଛନ୍ତି । ଏହା ଓଡ଼ିଶାର ଲେଖକମାନଙ୍କୁ ଯେପରି ଅସାଧାରଣ ଭାବେ ଉତ୍ସାହିତ କରିଛି ପାଠକ, ଗବେଷକ ଓ ଛାତ୍ରଛାତ୍ରୀମାନଙ୍କର ଅଭାବ ପୂରଣରେ ଅନୁରୂପ ସହାୟତା ଦେଇଛି ।

## ଅଶ୍ୱିନୀ କୁମାର ଘୋଷ :

ଓଡ଼ିଆ ନାଟ୍ୟଜଗତର ସ୍ରଷ୍ଟା ଅଶ୍ୱିନୀ କୁମାର ଘୋଷ ୧୮୯୨ ମସିହାରେ ଏକ ବୁନିୟାଦିଶୀଳ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ମେଧାବୀ ଛାତ୍ରଥିଲେ । ଗଣିତରେ ଏମ୍. ଏ. ପାଶ କରି ସେ କଟକ ପ୍ୟାରୀମୋହନ ଏକାଡେମୀରେ ନିଯୁକ୍ତି ପାଇଲେ । ପରବର୍ତ୍ତୀ ସମୟରେ ସେ ପ୍ରଧାନ ଶିକ୍ଷକ ପଦକୁ ଉନ୍ନୀତ ହେଲେ । ତାଙ୍କର କର୍ତ୍ତବ୍ୟନିଷ୍ଠା ତଥା ଶାସନ ଦକ୍ଷତାହିଁ ତାଙ୍କୁ ଜଣେ ଲୋକପ୍ରିୟ ତଥା ଛାତ୍ରବତ୍ସଳ ଶିକ୍ଷକ ଭାବେ ପରିଚିତ କରିଥିଲା ।

୧୯୩୨ ମସିହାରେ ପି. ଏମ୍. ଏକାଡେମୀର ପରିଚାଳନା କମିଟି ସହିତ ତାଙ୍କର ଅମେଳ ହେବାରୁ ସେ ଚାକିରି ଛାଡ଼ିଦେଇ ଥିଲେ । ଛାତ୍ରାବସ୍ଥାରୁ ନାଟକ ପ୍ରତି ତାଙ୍କର ଗଭୀର ଆକର୍ଷଣ ଥିଲା । ୧୯୧୫ ମସିହାରୁ ସେ ନାଟକ ଲେଖା ଆରମ୍ଭ କରିଥିଲେ ଏବଂ ସେହି ବର୍ଷ ତାଙ୍କର ପ୍ରଥମ ନାଟକ ଅଭିନୀତ ହେଲା । ଓଡ଼ିଆ ଭାଷାରେ ତିରିଶହରୁ ଊର୍ଦ୍ଧ୍ୱ ନାଟକ ଓ ପ୍ରହସନ ରଚନା କରି ସେ ଓଡ଼ିଶାର ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରି ପାରିଛନ୍ତି ।

ଯୁଗରୁଚି ସହିତ ତାଳ ମିଶାଇ ସେ ମୁଖ୍ୟତଃ ସାମାଜିକ, ଐତିହାସିକ ଓ ପୌରାଣିକ ଏହିପରି ତିନି ଶ୍ରେଣୀର ନାଟକ ରଚନା କରିଛନ୍ତି । ତାଙ୍କର ନାଟକମାନଙ୍କ ମଧ୍ୟରେ କୃଷ୍ଣ, ସାବିତ୍ରୀ, ସାଲବେଗ, ଦାସିଆବାଉରି, ରଘୁ ଅରକ୍ଷିତ, ତ୍ୟାଗୀ ରାମଦାସ, ବନ୍ଧୁ ମହାନ୍ତି, ଶ୍ରୀମନ୍ଦିର, ଚଣ୍ଡୀକୁମାରୀ, ଚକ୍ଷାଝିଅ, ସେଓଡ଼ା, ମାମଲତକାର, ସାକ୍ଷୀଗୋପାଳ, କଳାପାହାଡ଼, ଗୋବିନ୍ଦ ବିଦ୍ୟାଧର, ଉତ୍କଳ ଗୌରବ, କେଶରୀଗଙ୍ଗା, କୋଣାର୍କ, ଓଡ଼ିଆ ଝିଅ, ସମଲେଶ୍ୱରୀ, କପିଳେନ୍ଦ୍ର ଦେବ, ଯାଇକରୁଅ, ତାଜମହଲ, ହିନ୍ଦୁ ରମଣୀ, ମାଷ୍ଟର ବାବୁ, ଭାଇ, ଶ୍ରୀଲୋକନାଥ, ସୁନାଭଉଜ ଆଦି ଉଲ୍ଲେଖଯୋଗ୍ୟ । କାଇଁଚ, ରିଫର୍ମ ଲେଡ଼ି ଓ ପ୍ରେମିକ କ୍ଲବ ତାଙ୍କର ଗୋଟିଏ ଗୋଟିଏ ପ୍ରହସନମୂଳକ ନାଟକ ।

ଏହା ତତ୍କାଳୀନ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ରଙ୍ଗମଞ୍ଚମାନଙ୍କରେ ଅଭିନୀତ ହୋଇ ସହସ୍ରାଧିକ ଦର୍ଶକଙ୍କୁ ଅନେକ ରାତି ପର୍ଯ୍ୟନ୍ତ ଅନିଦ୍ରା ରଖିଥିଲା । ଅଭିନୟ ପ୍ରଦର୍ଶନ ପାଇଁ "ବାସନ୍ତୀ ଥିଏଟର" ନାମକ ଏକ ସଂସ୍ଥା ସେ ପ୍ରତିଷ୍ଠା କରିଥିଲେ । ତାଙ୍କର ନାଟକ ସାଧନାର ସିଦ୍ଧି ସ୍ୱରୂପ ସେ ନାଟ୍ୟ ରତ୍ନାକର, ନାଟ୍ୟ ଭାରତୀ ଓ ନାଟ୍ୟ ସମ୍ରାଟ ଉପାଧିରେ ଭୂଷିତ ହୋଇଥିଲେ । କଟକର ସନ୍‌ସାଇନ୍ ଫିଲଡ୍ ପାଖରେ ଥିବା ତାଙ୍କ ସ୍ଥାୟୀ ଗୃହରେ ସେ ଅବସ୍ଥାନ କରିଥିଲେ । ସେ ଚାହିଁଥିଲେ ଜୀବନରେ ବହୁ ବଡ଼ ବଡ଼ ପଦବୀରେ ରହିପାରିଥାନ୍ତେ । କିନ୍ତୁ ସବୁକୁ ସେ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ୧୯୭୨ ମସିହା ପବିତ୍ର ବୁଦ୍ଧ ପୂର୍ଣ୍ଣିମା ତିଥିରେ ସେ ସ୍ୱର୍ଗାରୋହଣ କଲେ ।

## ଅଚଳ ବିହାରୀ ଆଚାର୍ଯ୍ୟ :

ଅଚଳ ବିହାରୀ ଆଚାର୍ଯ୍ୟ ୧୮୮୭ ମସିହାରେ ଜନ୍ମଗ୍ରହଣ କରିଥିଲେ । ଜଣେ ଜାତୀୟତାବାଦୀ ତଥା ସ୍ୱାଧୀନତା ସଂଗ୍ରାମୀ ଭାବେ ସେ ପରିଚିତ । ଇଂରେଜ ଶାସନ ବିରୁଦ୍ଧରେ ବିପ୍ଳବ କରି ସେ ୧୯୦୭ ମସିହାରେ କାରାବରଣ କରିଥିଲେ । ତଥାପି ତାଙ୍କ ମନରୁ ଜାତି ପ୍ରତି ମମତାର ହ୍ରାସ ଘଟିନଥିଲା । ମହାତ୍ମାଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନ ଏବଂ ଆଇନ ଅମାନ୍ୟ ଆନ୍ଦୋଳନରେ ସେ ଭାଗ ନେଇଥିଲେ ।

ଜନନୀ ଓ ଜନ୍ମଭୂମିକୁ ସ୍ୱାଧୀନତାର ନୂତନ ସୂର୍ଯ୍ୟାଲୋକ ଦେଖାଇବା ଥିଲା ତାଙ୍କ ଜୀବନର ଲକ୍ଷ୍ୟ । ଦୁଃସ୍ଥ, ଦରିଦ୍ର ଜନତାର ସେବାକୁ ସେ ନିଜ ଜୀବନର

ବ୍ରତ ଭାବରେ ଗ୍ରହଣ କରିଥିଲେ । ସେ ସାରାଜୀବନ କଂଗ୍ରେସର ଜଣେ ନିଷ୍ଠାପର କର୍ମୀ ଥିଲେ । କଟକର 'ନୟାସଡ଼କ'ରେ 'ସ୍ୱଦେଶୀ ମେଡ଼ିକାଲ ହଲ' ନାମରେ ଗୋଟିଏ ଔଷଧ ଦୋକାନ ଖୋଲି ସ୍ୱାଧୀନତା ସଂଗ୍ରାମୀ, ଦରିଦ୍ର ଓ ଅବହେଳିତମାନଙ୍କ ସେବାପାଇଁ ଉନ୍ମୁକ୍ତ ରଖିଥିଲେ । ୧୯୭୧ ମସିହାରେ ଅଟଳ ବିହାରୀ ଆଚାର୍ଯ୍ୟ ସ୍ୱର୍ଗାରୋହଣ କଲେ ।

## ଅଭିନ୍ନ ଚନ୍ଦ୍ର ରାଓ :

ଅଭିନ୍ନ ଚନ୍ଦ୍ର ରାଓ ୧୮୯୮ ମସିହା ନଭେମ୍ବର ମାସ ୧୭ ତାରିଖରେ ଜନ୍ମ ହୋଇଥିଲେ । ପିଲାଦିନରୁ ହୋମିଓପାଥିକ ବିଦ୍ୟା ପ୍ରତି ସେ ଆସକ୍ତ ଥିଲେ । ଏମ୍ଭେ ଓଡ଼ିଶା ତଥା ସର୍ବଭାରତୀୟ ସ୍ତରରେ ଜଣେ ବିଶିଷ୍ଟ ହୋମିଓପ୍ୟାଥି ଡାକ୍ତର ଭାବେ ସେ ପ୍ରସିଦ୍ଧି ଲାଭ କଲେ । ଆନ୍ତଃଭାରତୀୟ ହୋମିଓପ୍ୟାଥିକ ଡାକ୍ତରମାନଙ୍କ ସଭାପତି ଭାବେ ସେ ଏହାକୁ ଆହୁରି ଅଧିକ ଲୋକପ୍ରିୟ କରିବା ପାଇଁ ଉଦ୍ୟମ କରିଥିଲେ । ତେଣୁ ତାଙ୍କର ପୁଅ, ପୁତୁରା ତଥା ସମ୍ପର୍କୀୟମାନଙ୍କୁ ହୋମିଓପାଥିକ ପଢ଼ିବା ପାଇଁ ସେ ପରାମର୍ଶ ଦେଉଥିଲେ । କଟକ ମ୍ୟୁନିସିପାଲିଟିର କାଉନସିଲର ଭାବେ ସେ ଅନେକ ଦିନ କାର୍ଯ୍ୟ କରିଥିଲେ । ୧୯୭୬ ମସିହା ମଇମାସ ୫ ତାରିଖରେ ଡ଼ାଃ ଅଭିନ୍ନ ଚନ୍ଦ୍ର ରାଓଙ୍କର ମୃତ୍ୟୁ ହେଲା ।

## ଅଜୟ କୁମାର ଭୂୟାଁ :

ଅଜୟ କୁମାର ଭୂୟାଁ ଓଡ଼ିଶାର ଜଣେ ବିଶିଷ୍ଟ ଆଇନଜୀବି, ଶିକ୍ଷାବିତ୍ ଓ ଶିଳ୍ପ ବିଶାରଦ ଭାବେ ପରିଚିତ । ସେ ୧୯୩୫ ମସିହା ଅକ୍ଟୋବର ମାସରେ ଜନ୍ମଗ୍ରହଣ କରିଥିଲେ । ଇତିହାସରେ ଏମ୍. ଏ. ପାଶ କରି ସାରିବା ପରେ ସେ ଓକିଲାତି ପଢ଼ିଲେ । ବହୁ ଚାକିରୀକୁ ପ୍ରତ୍ୟାଖ୍ୟାନ କରି ଆଇନ ବ୍ୟବସାୟକୁ ସେ ଅଧିକ ପସନ୍ଦ ମନେ କରିଥିଲେ । ଶିକ୍ଷା ବିଭାଗ ପ୍ରତି ତାଙ୍କର ଅଧିକ ଆଗ୍ରହ ଥିଲା ।

ବହୁବର୍ଷ ଧରି ଉତ୍କଳ ବିଶ୍ୱବିଦ୍ୟାଳୟର ସେ ସିନେଟ୍ ଓ ସିଣ୍ଡିକେଟ ସଭ୍ୟ ଥିଲେ । ୧୯୬୯ ମସିହାରେ ସେ ଇଜିପଟ ଓ ବେଲଜିୟମ ଯାଇଥିଲେ । ଶିଳ୍ପ କ୍ଷେତ୍ରରେ ତାଙ୍କର ଅଧିକ ଦକ୍ଷତା ଥିବାରୁ ସେ ଓଡ଼ିଶା କ୍ଷୁଦ୍ରଶିଳ୍ପ ସଂସ୍ଥାର ସେକ୍ରେଟାରୀ ଭାବେ ଗୋଟିଏ ବର୍ଷ ଏବଂ ପାଞ୍ଚବର୍ଷ ପାଇଁ ସଭାପତି କାର୍ଯ୍ୟ ତୁଲାଇଥିଲେ । ଭାରତର ଜାତୀୟ କଂଗ୍ରେସର ପ୍ରତିନିଧି ଭାବେ ଶ୍ରୀ ଭୂୟାଁ ପୃଥିବୀର ବିଭିନ୍ନ ଦେଶ ପରିଭ୍ରମଣରେ ଯାଇଥିଲେ । ବହୁ କ୍ରୀଡ଼ା ସଙ୍ଗଠନ ତଥା ଧାର୍ମିକ, ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ୧୯୬୨ ମସିହାରେ ସେ କିଛିଦିନ ପାଇଁ ଭାରତର ଆକାଶ ବାହିନୀରେ ପାଇଲଟ୍ ଥିଲେ । ଅଜୟ କୁମାର ଭୂୟାଁ ୧୯୮୫ ମସିହା ଜୁନ ୭ ତାରିଖରେ ସ୍ୱର୍ଗାରୋହଣ କଲେ ।

## ଅର୍ଜ୍ଜୁନ ଭୂୟାଁ :

କଟକର ବରପୁତ୍ରମାନଙ୍କ ମଧ୍ୟରେ ଅର୍ଜ୍ଜୁନ ଭୂୟାଁଙ୍କ ନାମ ଉଲ୍ଲେଖଯୋଗ୍ୟ । ଜଣେ ଦକ୍ଷ ଇଞ୍ଜିନିୟର ଏବଂ ସମାଜ ସେବକ ଅର୍ଜ୍ଜୁନ ଭୂୟାଁଙ୍କର ଜନ୍ମ ହୁଏ ୧୮୭୭ ମସିହାରେ । ରେଭେନ୍‌ସା କଲିଜିଏଟ୍ ସ୍କୁଲରୁ ମାଟ୍ରିକ ପାଶ୍ କରି ସାରିବା ପରେ ଉଚ୍ଚଶିକ୍ଷା ପାଇଁ ରେଭେନ୍‌ସା କଲେଜରେ ନାମ ଲେଖାଇଥିଲେ । ସେ ତାଙ୍କ ପରିବାର ସହିତ କଟକରେ ଅବସ୍ଥାନ କରୁଥିଲେ । ରେଭେନ୍‌ସା କଲେଜରୁ ୧୮୯୫ ମସିହାରେ ଏଫ୍: ଏ: ପାଶ୍ କରି ଶିବପୁର ଇଞ୍ଜିନିୟରିଂ କଲେଜରୁ ସ୍ନାତକ ଉପାଧି ଲାଭ କଲେ ।

ଜଣେ ଇଞ୍ଜିନିୟର ଭାବେ ନିଯୁକ୍ତ ହୋଇ ସେ ସୁନାମ ଅର୍ଜନ କରିଲେ । ସତ୍ ସାଧୁ ତଥା ନିଷ୍ଠାପର କର୍ମଚାରୀରୂପେ ସେ ଓଡ଼ିଶାର ବିଭିନ୍ନ ସ୍ଥାନରେ କାର୍ଯ୍ୟ କରିଥିଲେହେଁ ମୟୂରଭଞ୍ଜର ସର୍ବବିଧ ଉନ୍ନତି ସାଧନ ପାଇଁ ତାଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ଏଥିପାଇଁ ସେ ତତ୍କାଳୀନ ମୟୂରଭଞ୍ଜ ରାଜାଙ୍କର ଖୁବ୍ ନିକଟବର୍ତ୍ତୀ ହୋଇ ପାରିଥିଲେ । ଟେଲିଫୋନ୍ ବ୍ୟବସ୍ଥା, ରାସ୍ତା ତଥା ଅଟ୍ଟାଳିକା ନିର୍ମାଣ, ବିଦ୍ୟୁତଯୋଗାଣ ଓ ଜଳସେଚନ ପ୍ରଭୃତିରେ ତାଙ୍କର ଅସାଧାରଣ ଜ୍ଞାନ ଥିଲା । ସମାଜର ଗରିବ ଓ ଅବହେଳିତ ମଣିଷକୁ ସାହାଯ୍ୟ କରିବା ଥିଲା ତାଙ୍କର ଧର୍ମ । ସେ ସର୍ବଦା ଅନ୍ୟ ସାଂସାରିକ ଚିନ୍ତା ଠାରୁ ଦୂରରେ ରହି ତାଙ୍କ ଅଧ୍ୟବସାୟ ଏବଂ ଈଶ୍ୱର ଭାବନାରେ ସର୍ବଦା ମଗ୍ନ ରହୁଥିଲେ ।

## ଅଶୋକ ଦାସ :

ଅଶୋକ ଦାସ ଥିଲେ ଜଣେ ଆଦର୍ଶ ପିତାର ଆଦର୍ଶ ସନ୍ତାନ । ଯୋଗଜନ୍ମା ଯୁଗପୁରୁଷ ତଥା ସତ୍ୟବାଦୀ ଯୁଗର ଖ୍ୟାତନାମା ବ୍ୟକ୍ତିତ୍ୱ ନୀଳକଣ୍ଠ ଦାସଙ୍କର ପୁତ୍ର ଅଶୋକ ଦାସ ୧୯୧୨ ମସିହା ଜୁଲାଇ ମାସ ୨୮ ତାରିଖରେ ଜନ୍ମଗ୍ରହଣ କଲେ । ତୁଳସୀ ଦୁଇ ପତ୍ରରୁ ବାସିଲା ଭଳି ସେ ଛାତ୍ରାବସ୍ଥାରୁ ଥିଲେ ବିପ୍ଳବୀ । ଜଣେ ଅଧ୍ୟବସାୟୀ ଓ ଉତ୍ତମ ଛାତ୍ର ଭାବେ ସେ ବେଶ୍ ଜଣାଶୁଣା ।

ଓଡ଼ିଶାର ଜଣେ ବିଶିଷ୍ଟ ଆଇନଜ୍ଞ ଭାବେ ତାଙ୍କ ନାମ ଶୁଣାଯାଏ । ରେଭେନ୍‌ସା କଲେଜରେ ପାଠ ପଢ଼ୁଥିବା ସମୟରେ ସେ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିଲେ । ରେଭେନ୍‌ସା କଲେଜର ପାଠପଢ଼ା ଶେଷ କରି ସେ କଲିକତା ପଢ଼ିଲେ । ତାଙ୍କର ଛାତ୍ରଜୀବନ ଥିଲା ଗୋଟାଏ ଘଟଣାବହୁଳ ବିପ୍ଳବୀ ଜୀବନ । ବିଦ୍ରୋହୀ ମନୋବୃତ୍ତି ଯୋଗୁଁ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ପଢ଼ୁଥିବା ବେଳେ ତାଙ୍କୁ ବହିଷ୍କୃତ କରାଯାଇ ଥିଲା । କଲିକତାରେ ଆଇ:ଏସ୍:ସି ପଢୁଥିବା ବେଳେ ସେ ବନ୍ଦୀ ହୋଇ ହଜାରିବାଗ ଜେଲରେ କାରାଜୀବନ କଟାଇଥିଲେ । କଲିକତାରୁ ଆଇ: ଏସ: ସି: ପାଶ୍ କରି ସେ ରେଭେନ୍‌ସା କଲେଜରେ ବି: ଏସ: ସି: ପଢ଼ୁଥିବା ସମୟରେ ପୁନର୍ବାର ବିପ୍ଳବୀ

ହୋଇ ଉଠିଥିଲେ । ଏହି ସମୟରେ ସେ ଅନନ୍ତ ପଟ୍ଟନାୟକ, ଭଗବତୀ ଚରଣ ପାଣିଗ୍ରାହୀ ଓ ବୈଦ୍ୟନାଥ ରଥ ପ୍ରଭୃତିଙ୍କ ସହିତ ମିଶି କାର୍ଯ୍ୟ କରିଥିଲେ ।

ସେ କଟକରେ ଥିବା ତାଙ୍କ ସ୍ଥାୟୀ ଗୃହରେ ରହୁଥିଲେ । କଟକକୁ ସେ ଏତେ ଭଲ ପାଉଥିଲେ ଯେ ତାଙ୍କର ଶେଷ ଇଚ୍ଛାନୁଯାୟୀ ସେ ଦିଲ୍ଲୀରେ ମୃତ୍ୟୁବରଣ କରି-ଥିଲେହେଁ ତାଙ୍କ ମର ଶରୀରକୁ କଟକ ଅଣାଯାଇ ସତ୍କାର କରାଯାଇଥିଲା । ସେ ଜଣେ ଦକ୍ଷ ସଙ୍ଗଠକ ଭାବେ ପ୍ରସିଦ୍ଧ । ଦେଶକୁ ଇଂରେଜ ଶାସନରୁ ମୁକ୍ତ କରିବା ପାଇଁ ସେ ବହୁବାର ଜେଲ ଯାଇଥିଲେ । ୧୯୩୯ ମସିହାରେ ହୋଇଥିବା ମେଡ଼ିକାଲ ସ୍କୁଲ ଷ୍ଟ୍ରାଇକ ଆନ୍ଦୋଳନରେ ସେ ଥିଲେ ସକ୍ରିୟ ନେତା । ଢେଙ୍କାନାଳ ଗାନ୍ଧୀସେବା ସଦନର ମୁଖ୍ୟ ଭାବେ କାର୍ଯ୍ୟ ସମ୍ପାଦନ କରି ଗାନ୍ଧି ଚିନ୍ତାଧାରାର ଆଦର୍ଶକୁ ଅନ୍ୟମାନଙ୍କ ନିକଟରେ ପହଞ୍ଚାଇବାରେ ସେ ହେଉଛନ୍ତି ଅଗ୍ରଗଣ୍ୟ ।

ଅଶୋକ ଦାସ ଫର୍ୱାର୍ଡ଼ ବ୍ଲକରେ ଯୋଗ ଦେଇଥିଲେ ଏବଂ ନାଗପୁରଠାରେ ଆନ୍ଦୋଳନରେ ଯୋଗ ଦେଇ ୧୯୪୧ ମସିହାରେ ସେ ପୁନର୍ବାର ବନ୍ଦୀ ହେଲେ । ଜେଲରୁ ମୁକ୍ତ ହୋଇ ଆସିବା ପରେ ସେ ଆଇନ ବ୍ୟବସାୟ ଆରମ୍ଭ କଲେ । ଓଡ଼ିଶା ହାଇକୋର୍ଟର ଆଡ୍‌ଭୋକେଟ ରୂପେ କାର୍ଯ୍ୟ କରି ସେ ବେଶ୍ ଲୋକପ୍ରିୟ ହୋଇ ପାରିଥିଲେ । ଅଶୋକ ନିଜ ପିତା ନୀଳକଣ୍ଠ ଦାସଙ୍କୁ ରାଜନୀତି ତଥା ଅନ୍ୟାନ୍ୟ କାର୍ଯ୍ୟରେ ସାହାଯ୍ୟ କରିଥିଲେ । ୧୯୮୬ ମସିହା ମଇମାସ ୧୧ ତାରିଖରେ ସେ ମୃତ୍ୟୁପଥର ଯାତ୍ରୀ ହେଲେ ।

## ଅନସୂୟା ପ୍ରସାଦ ପାଠକ :

ଅନସୂୟା ପ୍ରସାଦ ପାଠକ କଟକର ଅଧିବାସୀ ନୁହଁନ୍ତି ଅଥବା ଓଡ଼ିଶାର ଲୋକ ବି ନୁହନ୍ତି । ତାଙ୍କର ଜନ୍ମ ହୁଏ ୧୯୦୮ ମସିହାରେ ଉତ୍ତର ପ୍ରଦେଶର ଅଲ୍ଲାବାଦରେ । ସେ ଜଣେ ସୁଲେଖକ ଥିଲେ । ୧୯୩୨ ମସିହାରେ ପାଟଣା ଜେଲରୁ ମୁକ୍ତିଲାଭ କରି ଓଡ଼ିଶା ଆସିଥିଲେ । ଓଡ଼ିଶାରେ ରହଣିକାଳ ମଧ୍ୟରେ ସେ କଟକରେ ଅନେକ ଦିନ ରହିଛନ୍ତି । ଜଣେ ସ୍ୱାଧୀନତା ସଂଗ୍ରାମୀ ତଥା ଦେଶପ୍ରେମୀ ଭାବେ ସେ ଅତ୍ୟନ୍ତ ଲୋକପ୍ରିୟ । ୧୯୭୦ ମସିହା ଜାନୁୟାରୀ ମାସ ୨୦ ତାରିଖରେ ତାଙ୍କର ମହାପ୍ରୟାଣ ହୋଇଥିଲା ।

## ଅଦ୍ୱୈତବଲ୍ଲଭ ରାୟ :

ଅଦ୍ୱୈତବଲ୍ଲଭ ରାୟ ୧୯୧୦ ମସିହା ଅକ୍ଟୋବର ମାସ ୪ ତାରିଖରେ ଜନ୍ମ ଗ୍ରହଣ କରି ୧୯୮୦ ମସିହା ଡିସେମ୍ବର ମାସ ୪ ତାରିଖରେ ସ୍ୱର୍ଗାରୋହଣ କରିଥିଲେ । ଦୀର୍ଘ ସତୁରି ବର୍ଷବ୍ୟାପୀ ଜୀବନକାଳ ତାଙ୍କ ପାଇଁ ଥିଲା ଘଟଣାବହୁଳ । ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବେ ବହୁଳଭାବରେ ଅଂଶଗ୍ରହଣ କରି ବହୁବାର କାରାବରଣ କରିଥିଲେ ।

ଜଣେ ଖ୍ୟାତନାମା ସାମ୍ବାଦିକ ଏବଂ ଦେଶସେବକ ଭାବେ ସେ ସୁପରିଚିତ । ସେତେବେଳେ ଦୁଇଜଣ ବିପ୍ଳବୀ କବି ବାଞ୍ଛାନିଧି ମହାନ୍ତି ଏବଂ ଜାଜପୁର କବି ବୀରକିଶୋର ଦାସ ଓଡ଼ିଶାରେ ବେଶ୍ ଲୋକପ୍ରିୟତା ଅର୍ଜନ କରିଥିଲେ । ତାଙ୍କ କବିତା ଓଡ଼ିଶାର ବିଭିନ୍ନ ସ୍ଥାନରେ ଗାନ କରାଯାଇ ଉତ୍କଳୀୟ ଜନତାଙ୍କ ମନରେ ବୈପ୍ଳବିକ ବହ୍ନି ଓ ଦେଶପ୍ରେମର ସ୍ରୋତ ପ୍ରବାହିତ କରଉଥିଲା । ପ୍ୟାରୀମୋହନ ଏକାଡେମୀରେ ଏକାଦଶ ଶ୍ରେଣୀରେ ପଢ଼ୁଥିବା ବେଳେ ଅଦ୍ୱୈତବାବୁଙ୍କ ସ୍ୱାଧୀନତା ସଂଗ୍ରାମ ମଧ୍ୟକୁ ଝାସ ଦେଇଥିଲେ । କନିକାର ଶରତ ଦାସ ଓ ରାଜକିଶୋର ମହାନ୍ତିଙ୍କ ଆନ୍ଦୋଳନ ବିରୁଦ୍ଧରେ ଲୋକମାନଙ୍କୁ ସଙ୍ଗଠିତ କରି ୧୯୪୨ ମସିହାରେ ହଜାରୀବାଗ ଜେଲରେ ବନ୍ଦୀ ହେଲେ । ଏ ଜାତି ପାଇଁ ତାଙ୍କ ପ୍ରାଣ ସର୍ବଦା କାନ୍ଦି ଉଠୁଥିଲା ।

## ଅଦ୍ୱୈତ ଚରଣ ଦାସ :

ଅଦ୍ୱୈତ ଚରଣ ଦାସ ୧୯୨୩ ମସିହାରେ ଓଡ଼ିଶାର ଇତିହାସ ପ୍ରସିଦ୍ଧ କଟକ ଜିଲ୍ଲାର ତିର୍ତ୍ତୋଲ ଥାନା ଅନ୍ତର୍ଗତ ବଡ଼ସାହେବଲା ଗ୍ରାମରେ ଜନ୍ମଲାଭ କରିଥିଲେ । ସେ ପ୍ରାରମ୍ଭରୁ ଜଣେ ହୋମିଓପ୍ୟାଥିକ ଚିକିତ୍ସକ । କନକପୁର ହାଇସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ସେ ଓଡ଼ିଶାର ଗରିବ, ନିଃସ୍ୱ ଏବଂ ଅବହେଳିତ ଜନତାଙ୍କ କଥା ସବୁବେଳେ ଚିନ୍ତା କରୁଥିଲେ ।

ଏହି ଗରିବ ଲୋକମାନଙ୍କୁ ଖୁବ୍ କମ୍ ଖର୍ଚ୍ଚରେ କିପରି ରୋଗମୁକ୍ତ କରିହେବ ଏହା ତାଙ୍କର ଚିନ୍ତାର ବିଷୟ ଥିଲା । ଏଥିପାଇଁ ହୋମିଓପ୍ୟାଥିକ ହିଁ ପ୍ରକୃତ ସହାୟକ । ଏଣୁ ସେ ଏହି ଔଷଧ ଏବଂ ଚିକିତ୍ସାର ପ୍ରଚାର ଓ ପ୍ରସାର ଘଟାଇବା ପାଇଁ ପ୍ରବଳ ଉଦ୍ୟମ କରିଥିଲେ । ବିଦ୍ୟାଳୟରେ ବିଦ୍ୟାଦାନ ସହିତ ଘରୋଇ ଭାବେ ଚିକିତ୍ସା କରି ସେ ଖ୍ୟାତନାମା ହୋଇ ପାରିଥିଲେ । ସର୍ବଭାରତୀୟସ୍ତରରେ ମଧ୍ୟ ଜଣେ ହୋମିଓପ୍ୟାଥିକ ଚିକିତ୍ସକ ଭାବେ ପ୍ରସିଦ୍ଧ । ସେ ନିଜର ପୁଅ, ଭଣଜା ଓ ସମ୍ପର୍କୀୟମାନଙ୍କୁ ଏହି ପାଠ ପଢ଼ିବାକୁ ଉତ୍ସାହିତ କରୁଥିଲେ । ୧୯୭୫ ମସିହାରେ ତାଙ୍କର ମୃତ୍ୟୁ ହୋଇଥିଲା ।

## ଅବଦୁଲ୍ ହମିଦ୍ :

ଅବଦୁଲ୍ ହମିଦ୍ ଜଣେ ଗୃହିଣୀ କବି ଭାବେ ପ୍ରସିଦ୍ଧି ଅର୍ଜନ କରିଥିଲେ । ହାସ୍ୟରସିକ ହମିଦ୍ ବହୁ ଗଳ୍ପ କବିତା ରଚନା କରି କଟକର ବିଭିନ୍ନ ଗଳି କନ୍ଦିକୁ ଯାଇ ଗୀତବୋଲି ସେଗୁଡ଼ିକ ବିକ୍ରୟ କରୁଥିଲେ । ତାଙ୍କ ରଚନାଗୁଡ଼ିକକୁ ସେ ଅଧିକ ପଇସାରେ ବିକ୍ରୟ ନକରି ଏକ ପଇସାରୁ ଏକଅଣା ମଧ୍ୟରେ ସୀମିତ ରଖିଥିଲେ । ସମାଜର ବିଶିଷ୍ଟ ଘଟଣାବଳୀ ଥିଲା ତାଙ୍କ ସୃଷ୍ଟିର ଉପାଦାନ ମଧ୍ୟରେ ଅନ୍ତର୍ଭୁକ୍ତ । ସଠିକଭାବେ ତାଙ୍କ ରଚନାବଳୀର ସଂଖ୍ୟା ନିର୍ଣ୍ଣୟ କରାଯାଇ ନପାରୁଥିଲେ ମଧ୍ୟ ସେଗୁଡ଼ିକ ଏକ ହଜାରରୁ ଊର୍ଦ୍ଧ୍ୱ ବୋଲି ଅନୁମିତ ହୁଏ ।

## ଅଧିରାଜ ମୋହନ ସେନାପତି :

ଅଧିରାଜ ମୋହନ ସେନାପତିଙ୍କର ଜନ୍ମ ହୁଏ ୧୮୯୩ ମସିହା ଜୁଲାଇ ମାସ ୭ ତାରିଖରେ ବାଲେଶ୍ୱର ଜିଲ୍ଲାର ମଞ୍ଚିକାଶପୁରରେ । ୧୯୧୭ ମସିହାରେ ରେଭେନ୍‌ସା କଲେଜରୁ ବି. ଏ ପାଶ୍ କରି ସେ ଭଦ୍ରଖ ହାଇସ୍କୁଲରେ ଶିକ୍ଷକତା କଲେ । ଏହା ପୂର୍ବରୁ କୃଆଁପାଳ ମଧ୍ୟଇଂରାଜୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାବେ ସେ ନିଯୁକ୍ତି ପାଇଥିଲେ । ସେ କଟକରେ ରହୁଥିଲେ । ସ୍କୁଲ ଛାତ୍ରଛାତ୍ରୀଙ୍କ ପାଇଁ ସେ ବହୁ ପୁସ୍ତକ ରଚନା କରିଥିଲେ । ଓଡ଼ିଆ ସାହିତ୍ୟର ଜଣେ ସୁଲେଖକ ଭାବେ ଅଧିରାଜ ପ୍ରଥିତଯଶା । ୧୯୬୭ ମସିହା ଏପ୍ରିଲ ମାସ ୧୯ ତାରିଖରେ ସେ ଶେଷନିଃଶ୍ୱାସ ତ୍ୟାଗ କରିଥିଲେ ।

## ଅପର୍ଣ୍ଣା ଦେବୀ :

ଅପର୍ଣ୍ଣା ଦେବୀ ଓଡ଼ିଆ ସାହିତ୍ୟର ଜଣେ ଅପ୍ରତିଦ୍ୱନ୍ଦୀ ନାରୀ କବି । ସେ ୧୮୯୮ ମସିହାରେ ଜନ୍ମ ହୋଇ ୧୯୬୩ ମସିହାରେ ସ୍ୱର୍ଗାରୋହଣ କରିଥିଲେ । ତତ୍କାଳୀନ ସାମାଜିକ ବାଲ୍ୟ ବିବାହ ପ୍ରଥା ଅନୁଯାୟୀ ଅପର୍ଣ୍ଣା ମାତ୍ର ସାତ ବର୍ଷ ବୟସରେ ବିବାହ କରିଥିଲେ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ଅଧିକ ନଥିଲେ କିନ୍ତୁ ପ୍ରଖର ସ୍ମୃତିଶକ୍ତି ଓ ଅସାଧାରଣ ମେଧାଯୋଗୁ ସେ ବହୁ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି କରିପାରିଥିଲେ । ତାଙ୍କର କାବ୍ୟ କବିତାମାନଙ୍କ ମଧ୍ୟରେ ଇନ୍ଦୁମତୀ, ଚନ୍ଦ୍ରା, ଦଶକୁମାର ଚରିତ, ଦଶକୁମାରୀ ଚରିତ, କବିତାଞ୍ଜଳି, ଶତଦଳ, ଦେବୀବାଣୀ ଓ ବାରମାସୀ ଅନ୍ୟତମ୍ । ଏହି କବିତାମାନଙ୍କର ଭାଷା ଯେଉଁଳି ସହଜ ଓ ସରଳ, ଶୈଳୀ ତଦନୁରୂପ ଅଭିନବ । ଜଣେ ନାରୀ କବି ଭାବେ ସେ ସର୍ବମାନ୍ୟ ଆସନର ଅଧିକାରୀ । ନାରୀକୁ ସମାଜରେ ଆଗୁଆ କରିବା ଦିଗରେ ତାଙ୍କର ଅନୁକୂଳମତ ବେଶ୍ ସ୍ୱାଗତ ଯୋଗ୍ୟ ।

## ଅଖିଳ ମୋହନ ପଟ୍ଟନାୟକ :

ଅଖିଳ ମୋହନ ପଟ୍ଟନାୟକ ଜଣେ ଆଇନ୍‌ଜୀବୀ ଭାବରେ ଓଡ଼ିଶାରେ ଯେତେ ପରିଚିତ ନୁହନ୍ତି ତଦପେକ୍ଷା ଜଣେ ସାହିତ୍ୟିକ ଭାବେ ବେଶ୍ ଲୋକପ୍ରିୟ । ୧୯୨୭ ମସିହା ଡିସେମ୍ବର ମାସ ୧୮ ତାରିଖରେ ସେ ଖୋର୍ଦ୍ଧାରେ ଜନ୍ମଗ୍ରହଣ କରିଥିଲେ କିନ୍ତୁ କଟକକୁ ସେ ନିଜର କର୍ମଭୂମି ରୂପେ ବାଛି ନେଇଥିଲେ । କଟକରୁ ଆଇନ୍ ପାଶ୍ କରି କଟକରେ ହିଁ ସେ ଆଇନ୍ ବ୍ୟବସାୟ ଆରମ୍ଭ କଲେ ।

ଛାତ୍ର ଆନ୍ଦୋଳନରେ ନେତୃତ୍ୱ ନେଇ ଅଖିଳ ମୋହନ କଟକ ଜେଲରେ ବନ୍ଦୀ ଥିବା ଅବସ୍ଥାରେ ହିଁ ସାହିତ୍ୟ ସୃଷ୍ଟି ପ୍ରତି ଆଗ୍ରହ ସୃଷ୍ଟି କରିଥିଲେ । ଜଣେ ସାହିତ୍ୟିକ ଭାବେ ସେ ଅନେକ ପୁସ୍ତକର ରଚୟିତା । ତାଙ୍କ ଗଳ୍ପ ପୁସ୍ତକମାନଙ୍କ ମଧ୍ୟରେ ଝଡ଼ର ଇଗଲ, ଧରଣୀର କୃଷ୍ଣସାର, ଅନ୍ଧଗଳି, ଅନାହତ ଫାଲ୍‌ଗୁନ, ନଈର ନାମ ଚଣ୍ଡୀଚନ୍ଦ୍ର, ପ୍ରଥମ ଓ ଶେଷ, ବ୍ୟାଘ୍ରରାଣୀ ଖଇରୀ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

'ଅନ୍ଧଗଳି' ପାଇଁ ସେ ଓଡ଼ିଆ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ତାଙ୍କର ଗଳ୍ପ ରଚନାର ଶୈଳୀ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଧରଣର । ଅଜଣା ଅତୀତ ପ୍ରତି ଏକ ଅବ୍ୟକ୍ତ ମୋହ ଏବଂ ଭବିଷ୍ୟତ ପ୍ରତି ଏକ ଅଜ୍ଞାତ ମମତା ମଧ୍ୟରେ ସେ ମଣିଷର ବର୍ତ୍ତମାନର ସ୍ମୃତିର ଆବିଷ୍କାର କରିବାଲାଗି ଅଧିକ ଆଗ୍ରହୀ । ସେ ଓଡ଼ିଶା ଗ୍ରନ୍ଥ ସଂସଦର ସଭାପତି ମଧ୍ୟ ଥିଲେ । କଳା ତାଙ୍କୁ ଦୀର୍ଘଜୀବୀ କରିପାରିଲା ନାହିଁ । ଫଳରେ ଅଖିଳ ରୋଗାକ୍ରାନ୍ତ ହୋଇ ୧୯୮୨ ମସିହା ନଭେମ୍ବର ମାସରେ ପ୍ରାଣତ୍ୟାଗ କଲେ ।

## ଅମିନୁଲ ଇସ୍‌ଲାମ :

ଅମିନୁଲ ଇସଲାମ ୧୯୦୦ ମସିହା ଅଗଷ୍ଟ ମାସ ୫ ତାରିଖରେ କଟକର ବୁଢ଼ୀ ହାଟରେ ଜନ୍ମ ହୋଇଥିଲେ । ମୁସଲମାନ୍ ପରିବାରରେ ଜନ୍ମ ହୋଇଥିଲେ ସୁଦ୍ଧା ତାଙ୍କର ଧର୍ମ ନିରପେକ୍ଷ ମତିହିଁ ତାଙ୍କୁ ସମ୍ମାନନୀୟ କରି ପାରିଛି । ଜଣେ ଇସଲାମ୍ ଧର୍ମର ଲୋକ ଓଡ଼ିଆ ଜାତି ପାଇଁ ଯଦି ସବୁଠାରୁ ଅଧିକ କାମ କରିଥାଏ ତେବେ ସେ ହେଉଛନ୍ତି ଅମିନୁଲ ଇସ୍‌ଲମ । ୧୯୩୫ ମସିହାରେ ଅମିନୁଲ ଇସଲାମ କୋହିନୂର ପ୍ରେସ ପ୍ରତିଷ୍ଠା କରି ହିନ୍ଦୁ ଓ ମୁସଲମାନମାନଙ୍କର ପର୍ବପର୍ବାଣି ଓ ଯାନିଯାତ୍ରାର ଏକ ମିଶ୍ରିତ ପଞ୍ଜିକା ପ୍ରକାଶ କରିଥିଲେ । ସେ ବହୁ ପୁସ୍ତକର ରଚୟିତା । ଅନେକ ଲେଖା ତାଙ୍କର ଅପ୍ରକାଶିତ ଓ ଦୁଷ୍ପ୍ରାପ୍ୟ । ପ୍ରକାଶିତ ରଚନାବଳୀମାନଙ୍କ ମଧ୍ୟରେ ଜଗନ୍ନାଥ ସ୍ତୁତି, ଜଗନ୍ନାଥ ଜଣାଣ, ଲକ୍ଷ୍ମୀ ସ୍ତୁତି, ସରସ୍ୱତୀ ସ୍ତୁତି, ଧ୍ରୁବସ୍ତୁତି, ପ୍ରହ୍ଲାଦ ସ୍ତୁତି, ରଙ୍ଗପୁର ପ୍ରଜାମେଳ, ଦାଣ୍ଡି ଯାତ୍ରା, ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟ, ବାମଗୋବିନ୍ଦ ଚଉତିଶା, ବନ୍ଦୋବସ୍ତ ଆଇନ, ଜଗନ୍ନାଥଙ୍କର ଗୁଣ୍ଡିଚା ଯାତ୍ରା, ଗରିବ ଝିଅର ବାହାଘର, ଲଗ୍ନ ବତିଶିମଳ, ଜଗନ୍ନାଥଙ୍କର ବାହୁଡ଼ା ଯାତ୍ରା, ରାମାୟଣ, ମହାଭାରତ, ଭାଗବତ ପ୍ରଭୃତି ଅନ୍ତର୍ଭୁକ୍ତ । ସ୍ତ୍ରୀଲୋକମାନଙ୍କ ପାଇଁ ମଧ୍ୟ ସେ ଅନେକ ଗୀତ ରଚନା କରିଥିଲେ ।

କେବଳ ସେତିକି ନୁହେଁ ସେ ବହୁ ଗରିବ ବ୍ରାହ୍ମଣ ପିଲଙ୍କ ବ୍ରତୋପନୟନ ପାଇଁ ଆର୍ଥିକ ସାହାଯ୍ୟ ଦେଉଥିଲେ ଏବଂ ଗରିବ ବ୍ରାହ୍ମଣଙ୍କ ସାହାଯ୍ୟାର୍ଥେ ମୁକ୍ତିମଣ୍ଡପ ପଣ୍ଡିତ ସଭାରେ ଗୋଟିଏ ପାଣ୍ଠି ଖୋଲିଥିଲେ । ସେ ହିନ୍ଦୁ ଓ ମୁସଲମାନଙ୍କୁ ସମାନ ଦୃଷ୍ଟିରେ ଦେଖୁଥିବାରୁ ଏବଂ ଜଗନ୍ନାଥୈକ ପ୍ରାଣଭାବେ ତାଙ୍କ ମୃତ୍ୟୁରେ ପୁରୀର ମୁକ୍ତିମଣ୍ଡପର ପଣ୍ଡିତ ସଭା ଗଭୀର ଶୋକ ପ୍ରକାଶ କରିଥିଲେ । ଏଭଳି ଏକ ମହାନ ବ୍ୟକ୍ତିତ୍ୱର ଅବସାନ ହେଲା ୧୯୮୨ ମସିହା ନଭେମ୍ବର ମାସ ୨୯ ତାରିଖରେ ।

## ଅବଦୁଲ୍ ମଜିଦ :

ଓଡ଼ିଶାର ଜଣେ ବିଶିଷ୍ଟ କ୍ରୀଡ଼ାପ୍ରେମୀ ଏବଂ କଟକ ସହରକୁ କ୍ରୀଡ଼ା ଦିଗରେ ଅଗ୍ରଣୀ କରିବାରେ ଅବଦୁଲ ମଜିଦ୍‌ଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ସେ ରେଭେନ୍‌ସା

କଲେଜରୁ ବି.ଏ. ପାଶ୍ କରି ପୋଲିସ ବିଭାଗରେ ଚାକିରି କରିଥିଲେ । ଛାତ୍ର ଅବସ୍ଥାରୁ ଖେଳପ୍ରତି ତାଙ୍କର ପ୍ରବଳ ଆଗ୍ରହ ଥିଲା । ସମ୍ବଲପୁର ସେମିନାରୀ ସ୍କୁଲରେ ପଢ଼ୁଥିବା ବେଳେ ସେ ଫୁଟବଲ ଖେଳୁଥିଲେ । ଫୁଟବଲ ଖେଳରେ ସେ ବେଶ୍ ଖ୍ୟାତି ଅର୍ଜନ କରିଥିଲେ । ରେଭେନ୍‌ସା କଲେଜ ଏବଂ ଓଡ଼ିଶା ତରଫରୁ ସେ ଭାରତର ବିଭିନ୍ନ ସ୍ଥାନରେ ପ୍ରତିନିଧିତ୍ୱ କରିଥିଲେ । କଲିକତାର ପ୍ରସିଦ୍ଧ ମୋହନବାଗାନ ଦଳର କ୍ୟାପଟେନ ଭାବେ ସେ ଖୁବ୍ ସୁନାମ ଅର୍ଜନ କରିଥିଲେ । ପ୍ରତ୍ୟେକ ଫୁଟବଲ ଖେଳାଳି ମନରେ ତାଙ୍କର ଥିଲେ ଅତି ଆଦର୍ଶର । ପୁଲିସ ବିଭାଗର ସୁପରିଣ୍ଟେଣ୍ଡେଣ୍ଟ ପର୍ଯ୍ୟନ୍ତ ସେ ଉନ୍ନୀତ ହୋଇଥିଲେ ।

## ଆଚାର୍ଯ୍ୟ ହରିହର :

ସତ୍ୟବାଦୀ ଗୋଷ୍ଠୀର ଅନ୍ୟତମ ବ୍ୟକ୍ତିତ୍ୱ ଆଚାର୍ଯ୍ୟ ହରିହର ପୁରୀ ଜିଲ୍ଲାର ଶ୍ରୀରାମଚନ୍ଦ୍ରପୁର ଶାସନରେ ୧୮୭୨ ମସିହାରେ ଜନ୍ମଗ୍ରହଣ କରିଥିଲେ । ଜଣେ ଆଦର୍ଶ ଶିକ୍ଷକ ଭାବରେ ସେ ସର୍ବଜନ ପରିଚିତ । ପୁରୀ ଜିଲ୍ଲା ସ୍କୁଲ, ରେଭେନ୍‌ସା କଲେଜିଏଟ ସ୍କୁଲ, ମିଶନ ହାଇସ୍କୁଲ, ଖଲିକୋଟ ହାଇସ୍କୁଲ, ପି. ଏମ୍. ଏକାଡେମୀ ଏବଂ ସତ୍ୟବାଦୀ ସ୍କୁଲ ପ୍ରଭୃତିରେ ସେ ଶିକ୍ଷକତା କରିଥିଲେ । କିନ୍ତୁ ସତ୍ୟବାଦୀ ସ୍କୁଲରେ ତାଙ୍କ ବ୍ୟକ୍ତିତ୍ୱର ଚରମ ବିକାଶ ଘଟିଥିଲା ।

ଜଣେ ଛାତ୍ର ପ୍ରେମୀ, କର୍ତ୍ତବ୍ୟନିଷ୍ଠ ତଥା ଆଦର୍ଶବାଦୀ ଶିକ୍ଷକ ଭାବେ ସେ ସତ୍ୟବାଦୀର ଛାତ୍ରମାନଙ୍କ ନିକଟରେ ପ୍ରସିଦ୍ଧି ଅର୍ଜନ କରିଥିଲେ । ସେବା, ସହାନୁଭୂତି, ଆଚରଣ ଏବଂ ଐକାନ୍ତିକ ନିଷ୍ଠାର ସେ ଥିଲେ ଜୀବନ୍ତ ପ୍ରତିମୂର୍ତ୍ତି । ଭୂଦାନ ଆନ୍ଦୋଳନରେ ଆଚାର୍ଯ୍ୟ ହରିହର ନିଜକୁ ସାମିଲ କରିଥିଲେ । ଜଣେ ଲେଖକ ଭାବେ ସେ ଶ୍ରୀମଦ୍ ଭଗବଦ୍ ଗୀତା ଏବଂ ବହୁ ଉପନିଷଦର ଅନୁବାଦ କରିଥିଲେ । ସ୍ୱାଧୀନତା ଆନ୍ଦୋଳନ ଏବଂ ଲବଣ ସତ୍ୟାଗ୍ରହ ପ୍ରଭୃତିରେ ଯୋଗଦେଇ ହରିହର ଗୁରିଥର କାରାବରଣ କରିଥିଲେ । ଛାତ୍ରଛାତ୍ରୀମାନଙ୍କର ଇଂରେଜି ଜ୍ଞାନର ଅଭିବୃଦ୍ଧି ପାଇଁ 'Child easy First Grammar' ହେଉଛି ତାଙ୍କର ସର୍ବଶ୍ରେଷ୍ଠ କୃତି ।

ଏହା ଓଡ଼ିଆ ଭାଷାର ମଧୁବର୍ଣ୍ଣବୋଧ ସହିତ ତୁଳନୀୟ । ଗୋପବନ୍ଧୁଙ୍କ ସହିତ ହରିହର ବନ୍ୟା ଓ ମରୁଡ଼ି ସମୟରେ ଦେଶବାସୀଙ୍କ ନିକଟକୁ ଯାଇ ସାହାଯ୍ୟ ଏବଂ ସେବାଦ୍ୱାରା ଜନତାକୁ ମୁଗ୍ଧ କରି ପାରିଥିଲେ । ଏହି ମହାନ୍ ବ୍ୟକ୍ତିତ୍ୱର ଅବସାନ ଘଟିଲା ୧୯୭୧ ମସିହାରେ କିନ୍ତୁ ସେ ଦେଶବାସୀଙ୍କ ମାନସରେ ଏକ ଅନିର୍ବାପିତ ଦୀପଶିଖାପରି ସବୁଦିନ ପାଇଁ ରହିଗଲେ ।

## ଆର୍ତ୍ତବଲ୍ଲଭ ମହାନ୍ତି :

ଓଡ଼ିଆ ସାହିତ୍ୟର ଗର୍ବ ଓ ଗୌରବ ଆର୍ତ୍ତବଲ୍ଲଭ ମହାନ୍ତି ୧୮୮୭ ମସିହାରେ ଜନ୍ମଗ୍ରହଣ କରିଥିଲେ । ଛାତ୍ରାବସ୍ଥାରୁ ସେ ସାହିତ୍ୟ ପ୍ରତି ପ୍ରଗାଢ଼ ଅନୁରାଗ ପ୍ରଦର୍ଶନ

କରୁଥିଲେ । ମିତ୍ରଅରେ ଏମ୍. ଏ. ପାଶ୍ କରି ଅର୍ତ୍ତବଲ୍ଲଭ ରେଭେନ୍ସା କଲେଜରେ ଅଧ୍ୟାପକ ରହିଲେ । ଭାଷା, ସାହିତ୍ୟ ଓ ସଂସ୍କୃତିର ଗବେଷଣାରେ ସେ ଥିଲେ ନିରଳସ । ପ୍ରାଚୀନ ଗ୍ରନ୍ଥମାନଙ୍କୁ ଉଦ୍ଧାର କରି ସେଗୁଡ଼ିକୁ ଲୋକପ୍ରିୟ କରାଇବା ପାଇଁ ତାଙ୍କ ଉଦ୍ୟମରେ 'ପ୍ରାଚୀ ସମିତି' ନାମକ ଏକ ଅନୁଷ୍ଠାନ ପ୍ରତିଷ୍ଠିତ ହେଲା । ଏହାର ମହାନ୍ ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ ଚରିତାର୍ଥ କରିବା ପାଇଁ ଏହି ସମିତି ତରଫରୁ 'ପ୍ରାଚୀ' ନାମକ ଏକ ଗବେଷଣାମୂଳକ ପତ୍ରିକା ଇଂରେଜୀ ଭାଷାରେ କିଛି କାଳ ପ୍ରକାଶ ପାଇଥିଲା ।

ଅର୍ତ୍ତବଲ୍ଲଭ ସାହିତ୍ୟର ମହାନ୍ ବ୍ୟକ୍ତିତ୍ୱ ଭାବେ ବହୁ ସଂସ୍ଥା ସହିତ ଜଡ଼ିତ ଥିଲେ । ସେମାନଙ୍କ ମଧ୍ୟରୁ ଉତ୍କଳ ସାହିତ୍ୟ ସମାଜ, ବିହାର ଓଡ଼ିଶାର ସଂସ୍କୃତ ସଂଘ, କେନ୍ଦ୍ର ସାହିତ୍ୟ ଏକାଡେମୀ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରଭୃତି ଉଲ୍ଲେଖଯୋଗ୍ୟ । ୧୯୫୫ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଲାଭ କରିଥିଲେ । ଭାରତ ସରକାର ପଦ୍ମଶ୍ରୀ ଉପାଧିରେ ତାଙ୍କୁ ଭୂଷିତ କରିଥିଲେ । ମାଟିର ମହାକବି ତଥା ଉତ୍କଳର ବରପୁତ୍ର ସାରଳା ଦାସଙ୍କର ଅଠର ପର୍ବବିଶିଷ୍ଟ ମହାଭାରତର ସମ୍ପାଦନା ଅର୍ତ୍ତବଲ୍ଲଭଙ୍କର ମହାନ୍ କୃତି । ଏହିଭଳି ଏକ ମହାନ୍ ବ୍ୟକ୍ତି ୧୯୬୩ ମସିହାରେ ସ୍ୱର୍ଗାରୋହଣ କଲେ ।

## ଆକୁଳ ମିଶ୍ର :

ଆକୁଳ ମିଶ୍ର ଜଣେ ଦକ୍ଷ ପୁସ୍ତକ ପ୍ରକାଶକ ଭାବେ ପରିଚିତ । ଲୋକପ୍ରିୟ ଖ୍ୟାତନାମା ଡାକ୍ତର କୁଳମଣି ମିଶ୍ରଙ୍କର ସେ ହେଉଛନ୍ତି ଅଗ୍ରଜ । କଟକରେ ସେ ଆକୁଳ ପଣ୍ଡିତ ନାମରେ ସର୍ବଜନ ଜଣାଶୁଣା । ୧୮୮୯ ମସିହା ନଭେମ୍ବର ମାସ ୨୪ ତାରିଖରେ ଆକୁଳ ମିଶ୍ର କଟକ ଜିଲ୍ଲାର ଖଣ୍ଡସାହି ଗ୍ରାମରେ ଜନ୍ମ ହୋଇଥିଲେ । ୧୯୦୪ ମସିହାରେ ମାଇନର ପାଶ୍ କରି ସାରିବା ପରେ ସେ କଟକ ଜିଲ୍ଲାର ମୂଳବସନ୍ତ ସଂସ୍କୃତ ଟୋଲରେ ନାମ ଲେଖାଇଲେ । କାବ୍ୟତୀର୍ଥ ପାଶ୍ କରି ୧୯୦୯ରେ ପଣ୍ଡିତ କଟକ ଆସିଲେ । ଚାକିରି ନକରି ଗୃହଶିକ୍ଷକ ହେଲେ । ରାମକୃଷ୍ଣ ସେବକ ସମ୍ପ୍ରଦାୟ ଓ ଶ୍ରୀରାମକୃଷ୍ଣ କୁଟୀର ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ରାମକୃଷ୍ଣ କୁଟୀରରେ ଥିବାବେଳେ ବନ୍ଧୁମାନଙ୍କ ଠାରୁ ଅର୍ଥ ସଂଗ୍ରହ କରି ସେ ଗୋଟିଏ କମ୍ପାନୀ ଗଠନ କଲେ । ଏହାର ନାମ ରଖାଗଲା କଟକ ଟ୍ରେଡ଼ିଂ କମ୍ପାନୀ ।

ବାଲୁବଜାରର ଏକ ଭଡ଼ା ଘରେ ଏହି ବହି ଦୋକାନ ଖୋଲିଲା ଏବଂ ପଣ୍ଡିତ ଏହାର ମ୍ୟାନେଜର ଭାବେ କାର୍ଯ୍ୟ କଲେ । ଖୁବ୍ କମ୍ ଦିନ ମଧ୍ୟରେ ଟ୍ରେଡ଼ିଂ କମ୍ପାନୀ ଲୋକପ୍ରିୟ ହୋଇ ଉଠିଲା । ବହୁ ଅପ୍ରକାଶିତ ପୁସ୍ତକ ପ୍ରକାଶ କରି ଲୋକ-ଲୋଚନକୁ ଆଣିବା ଏବଂ ପାଠ୍ୟପୁସ୍ତକ ପ୍ରକାଶ ଦିଗରେ ତାଙ୍କର ସାଧୁ ଉଦ୍ୟମ ଅତ୍ୟନ୍ତ ପ୍ରଶଂସାର୍ହ । ବେଲେଙ୍ଗା ବଜାରରେ ତାଙ୍କ ଦ୍ୱାରା ନିର୍ମିତ ନୂତନ ଗୃହରେ ସେ

ପରିବାରରେ ଅବସ୍ଥାନ କରୁଥିଲେ । ୧୯୫୯ ମସିହା ମଇ ମାସ ୩୦ ତାରିଖରେ ତାଙ୍କର ମୃତ୍ୟୁ ହେଲା । ନିରବଚ୍ଛିନ୍ନ ଭାବରେ ପୁସ୍ତକ ପ୍ରକାଶ କରି ବହୁ ଅଧ୍ୟାପକ, ଲେଖକ ଓ ପ୍ରଫେସରମାନଙ୍କର ବୌଦ୍ଧିକ ବିକାଶରେ ସହାୟକ ହୋଇ ପାରିଥିଲେ ।

## ଆମସ୍ ସଟନ୍ :

ଆମସ୍ ସଟନ୍ ଜଣେ ମିଶନାରୀ ପାଦ୍ରୀ । ଓଡ଼ିଶାରେ ବିଦ୍ୟାଳୟ ପ୍ରତିଷ୍ଠା କରିବାରେ ମିଶନାରୀମାନଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ସଟନ୍ ଜଣେ ମିଶନାରୀ ଯିଏ ପ୍ରଥମେ ଓଡ଼ିଆ ଭାଷାରେ ପାଠ୍ୟ ପୁସ୍ତକ ରଚନା କରିଥିଲେ । ସେ ୧୮୩୧ ଖ୍ରୀଷ୍ଟାବ୍ଦରେ ପ୍ରଥମେ ଇଂରେଜୀରେ ଓଡ଼ିଆ ବ୍ୟାକରଣ ରଚନା କଲେ ଓ ୧୮୪୧ ଖ୍ରୀଷ୍ଟାବ୍ଦରେ ଏକ ଅଭିଧାନ ସଂକଳନ କଲେ । ୧୮୩୨ ଖ୍ରୀଷ୍ଟାବ୍ଦରେ ପଦାର୍ଥ ବିଦ୍ୟାସାର ଏବଂ ୧୮୩୯ରେ ଇତିହାସ ନାମକ ଦୁଇଟି ଓଡ଼ିଆ ପୁସ୍ତକ ସହିତ ନୀତିକଥା, ସ୍ତୋତ୍ର ପୁସ୍ତକ ଓ ଭୂଗୋଳ ମଧ୍ୟ ଓଡ଼ିଆ ବିଦ୍ୟାଳୟଗୁଡ଼ିକରେ ପାଠ୍ୟ ହେବାଲାଗି ସେ ରଚନା କରିଥିଲେ । ଆମସ୍ ସଟନ୍ କିଛି ବର୍ଷ କଟକରେ ଅବସ୍ଥାନ କରିଥିଲେ ଏବଂ ୧୮୫୪ ମସିହାରେ ଇଂଲଣ୍ଡ ପ୍ରତ୍ୟାବର୍ତ୍ତନ କଲେ ।

## ଉପେନ୍ଦ୍ର କିଶୋର ଦାସ :

ଉପେନ୍ଦ୍ର କିଶୋର ୧୯୦୧ ମସିହା ଫେବୃୟାରୀ ମାସ ୨୧ ତାରିଖରେ କଟକ ଜିଲ୍ଲାର କୁମୁଣ୍ଡା ଜୟପୁରର ଏକ ଜମିଦାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ରାୟବାହାଦୁର ରାଜ କିଶୋର ଦାସଙ୍କର ସେ ହେଉଛନ୍ତି ତୃତୀୟ ପୁତ୍ର କିନ୍ତୁ ତାଙ୍କର ପିଉସୀ ଉତ୍କଳଗୌରବ ମଧୁସୂଦନ ଦାସଙ୍କର କନିଷ୍ଠ ଭ୍ରାତା ଗୋପାଳବଲ୍ଲଭ ଦାସ ତାଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ଜଣେ ମେଧାବୀ ଛାତ୍ର ଭାବରେ ରେଭେନ୍ସା ମହାବିଦ୍ୟାଳୟରେ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କରୁଥିବା ବେଳେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ଛାତ୍ର ଜୀବନରୁ ସେ ସବୁଦିନ ପାଇଁ ଅବ୍ୟାହତି ନେଇଥିଲେ ।

ଛାତ୍ର ଅବସ୍ଥାରୁ ଲେଖାଲେଖି ପ୍ରତି ତାଙ୍କର ପ୍ରବଳ ଉଦ୍ୟମ ଥିଲା । ସେ ଏକାଧାରରେ ଥିଲେ ଜଣେ ଔପନ୍ୟାସିକ, ଗାଳ୍ପିକ, କବି, ଶିଶୁ ସାହିତ୍ୟିକ ଏବଂ ସୂକ୍ଷ୍ମ ଚିନ୍ତକ । ତାଙ୍କ ଦ୍ୱାରା ରଚିତ ଏକମାତ୍ର ଉପନ୍ୟାସ 'ମଲାଜହ୍ନ' ଉପନ୍ୟାସ ଜଗତର ଏକ ମାଇଲ ଖୁଣ୍ଟ, ଯାହା ସାମାଜିକ ସ୍ତରରେ ଏକ ସଂସ୍କାରବାଦୀ ମନୋବୃତ୍ତିର ବଳିଷ୍ଠ ପରିଚୟ ପ୍ରଦାନ କରିଥାଏ । 'ବାରୁଣୀ' ନାମକ ଏକ ପତ୍ରିକାର ପରିଚାଳନା ଦାୟିତ୍ୱ ସେ ବହନ କରିଥିଲେ । ସେ ଜଣେ ନିୟମିତ ଲେଖକ । ତାଙ୍କର ବହୁ ଶିଶୁ ଉପଯୋଗୀ ଲେଖା ଏବଂ କ୍ଷୁଦ୍ର ଗଳ୍ପ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଛନ୍ତି ସତ କିନ୍ତୁ ସଂକଳିତ ହୋଇ ନପାରିବା ବଡ଼ ଦୁର୍ଭାଗ୍ୟର ବିଷୟ । ୧୯୭୨

ମସିହା ଏପ୍ରିଲ ମାସ ୨୦ ତାରିଖରେ କଟକ ଭୁଲମୀପୁରସ୍ଥ ବାସଭବନରେ ତାଙ୍କର ମୃତ୍ୟୁ ହେଲା ।

## ଉମାଚରଣ ମହାନ୍ତି :

କଟକ ଜିଲ୍ଲାର ବଣ୍ଡରେ ୧୯୦୮ ମସିହାରେ ଉମାଚରଣଙ୍କର ଜନ୍ମ । ରେଭେନ୍‌ସା କଲେଜରେ ପଢୁଥିବା ବେଳେ ସେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ଆତୁଲ ମିଶ୍ରଙ୍କ ସହିତ ଦୀର୍ଘ ୧୨ ବର୍ଷକାଳ କଟକ ଟ୍ରେଡ଼ିଂ କମ୍ପାନୀରେ କାର୍ଯ୍ୟ କଲାପରେ ଉମାଚରଣ 'ପବ୍ଲିଶିଂ ହାଉସ୍' ନାମକ ଏକ ପ୍ରକାଶନ ସଂସ୍ଥା ଆରମ୍ଭ କଲେ । ପାଠ୍ୟପୁସ୍ତକ ପ୍ରକାଶ କରିବା ଥିଲା ତାଙ୍କର ମୂଳ ଲକ୍ଷ୍ୟ । ସେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ରାମକୃଷ୍ଣ କଟେଜରେ ରହୁଥିଲେ । ୧୯୮୦ ମସିହା ଜୁଲାଇ ମାସ ୧୦ ତାରିଖରେ ତାଙ୍କର ମୃତ୍ୟୁ ହେଲା । ଜଣେ ବଦାନ୍ୟ ବ୍ୟକ୍ତି ଭାବରେ ସେ ଗରିବ ଛାତ୍ରମାନଙ୍କୁ ସାହାଯ୍ୟ କରିଛନ୍ତି ।

## କମଳାକାନ୍ତ ଦାସ :

ଆଧୁନିକ ଯୁଗର ଜଣେ ବରିଷ୍ଠ ଔପନ୍ୟାସିକ କମଳାକାନ୍ତ ଦାସ ୧୯୦୬ ମସିହାରେ ଜଗତସିଂହପୁରରେ ଜନ୍ମ ହୋଇ ୧୯୮୨ ମସିହାରେ ଇହଲୀଳା ସାଙ୍ଗ କରିଥିଲେ । ଜୀବନର ଅର୍ଦ୍ଧାଧିକ ସମୟ କଟକରେ ରହି ସେ ସାହିତ୍ୟ ସାଧନାରେ ବ୍ରତୀ ଥିଲେ । ୨୫ରୁ ଊର୍ଦ୍ଧ୍ୱ ଉପନ୍ୟାସ, ଆଠଟି ଗଳ୍ପ ପୁସ୍ତକ ଓ ୬ଟି ଜୀବନୀର ରଚୟିତା ଭାବେ ସେ ଅତ୍ୟନ୍ତ ଲୋକପ୍ରିୟ । ତାଙ୍କ ରଚିତ ଉପନ୍ୟାସଗୁଡ଼ିକ ମଧ୍ୟରେ ମଣିଷର ଦାବୀ, ଭାଉଜ ବୋହୂ, ବୋଉ, ସରଘାନାମି, ମନବେଗୁଣୀ, ମଦଭାଟୀ, ସହର ମଫସଲ, ବନାନୀର ନିଦ୍ରାଭଙ୍ଗ, ଆଶ୍ରିତ, ମନରଦାଉ, ମିଳନ ସନ୍ଧ୍ୟା, ଦୀପଶିଖା ପ୍ରଭୃତି ପ୍ରଧାନ ।

## କରୁଣାକର କର :

ଓଡ଼ିଆ ଭାଷା ସାହିତ୍ୟର ଜଣେ ଖ୍ୟାତନାମା ଗବେଷକ ତଥା ସୁସାହିତ୍ୟିକ କରୁଣାକର କର ୧୮୯୫ ମସିହାରେ କଟକ ଜିଲ୍ଲାର ମୂଳବସନ୍ତ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସାହିତ୍ୟ ବିଭାଗରେ ଉଚ୍ଚଶିକ୍ଷା ଲାଭ କରି ସେ ସଂସ୍କୃତ ଓ ଓଡ଼ିଆ ଉଭୟ ବିଭାଗର ପ୍ରଫେସର ଭାବେ ରେଭେନ୍‌ସା କଲେଜରେ ଅବସ୍ଥାପିତ ହେଲେ । ସେ 'ସାହିତ୍ୟ ଦର୍ପଣ' ଗ୍ରନ୍ଥର ପାଣ୍ଡିତ୍ୟପୂର୍ଣ୍ଣ ସମ୍ପାଦନା କରିଛନ୍ତି । 'ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ' ନାମକ ଏକ ଗବେଷଣାତ୍ମକ ପୁସ୍ତକ ପ୍ରକାଶ କରି ଶ୍ରୀକର ଉତ୍କଳ ବିଶ୍ୱବିଦ୍ୟାଳୟରୁ ସର୍ବୋଚ୍ଚ ଡିଲିଟ୍ ଉପାଧି ପାଇଛନ୍ତି । ପୁରୀ ସଂସ୍କୃତ କଲେଜର ଅଧ୍ୟକ୍ଷ ଭାବେ ସେ ଅନେକ ଦିନ କାର୍ଯ୍ୟ କରିଥିଲେ । ତାଙ୍କର ରଚନାବଳୀମାନଙ୍କ ମଧ୍ୟରେ ଶଙ୍କରାଚାର୍ଯ୍ୟ, ବୁଦ୍ଧଦେବ, ଚକଡ଼ା କଳ୍ପଦ୍ରୁମ, ଓଡ଼ିଆ ସାହିତ୍ୟ ଇତିହାସର

ସମାଲୋଚନା ଏବଂ ରୁଦ୍ର ସୁଧାନିଧିର ସମ୍ପାଦନା ପ୍ରଭୃତି ଉଲ୍ଲେଖଯୋଗ୍ୟ । ସେ ୧୯୭୮ ମସିହା ମାର୍ଚ୍ଚ ମାସ ୩୧ ତାରିଖରେ ସ୍ୱର୍ଗଗାମୀ ହେଲେ ।

## କପିଳେନ୍ଦ୍ର ଦେବ :

ଓଡ଼ିଶାର ଜନଶ୍ରୁତି ଓ କମ୍ବଦନ୍ତୀ କୁହେ ଯେ, ଚତୁର୍ଥ ଭାନୁଦେବ ନିଃସନ୍ତାନ ଥିବାରୁ ତାଙ୍କର ଜନୈକ ମନ୍ତ୍ରୀ କପିଳେଶ୍ୱର ରାଉତରାୟଙ୍କୁ ଓଡ଼ିଶାର ରାଜସିଂହାସନ ଲାଗି ପସନ୍ଦ କରିଥିଲେ । ସେ ଥିଲେ ଓଡ଼ିଶାର ବରିଷ୍ଠ କବି ସାରଳା ଦାସଙ୍କର ସମକାଳୀନ । କପିଳେନ୍ଦ୍ର ଦେବ ୧୪୩୫ ଖ୍ରୀଷ୍ଟାବ୍ଦରୁ ୧୪୬୭ ପର୍ଯ୍ୟନ୍ତ ଦୀର୍ଘ ୩୦ ବର୍ଷ କାଳ ଓଡ଼ିଶାର ରାଜସିଂହାସନ ଅଳଂକୃତ କରିଥିଲେ । ସେ ଜଣେ ବିଦ୍ୟୋତ୍ସାହୀ ନରପତି ଥିଲେ ଏବଂ ତାଙ୍କ ପୃଷ୍ଠପୋଷକତାରେ ଓଡ଼ିଆ ସାହିତ୍ୟର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ତାଙ୍କର ନାମାନୁସାରେ ପୁରୀର କପିଳେଶ୍ୱରପୁର ଶାସନ ନାମିତ ହୋଇଛି । ଜଣେ ଲେଖକ ଭାବେ ସେ ସଂସ୍କୃତରେ 'ପରଶୁରାମ ବିଜୟ' ନାଟକ ରଚନା କରିଥିଲେ, ଯେଉଁଥିରେ ଓଡ଼ିଆରେ ଗୀତ ଲିପିବଦ୍ଧ ହୋଇଥିବା ଦେଖିବାକୁ ମିଳେ ।

## କାଳନ୍ଦୀ ଚରଣ ପାଣିଗ୍ରାହୀ :

କାଳନ୍ଦୀ ଚରଣ ପାଣିଗ୍ରାହୀ ୧୯୦୧ ମସିହା ଜୁଲାଇ ମାସ ୨ ତାରିଖ ଦିନ ପୁରୀ ଜିଲ୍ଲାର ବିଶ୍ୱନାଥପୁର ଶାସନରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟ ସମୟରୁ ସେ ଥିଲେ ସାହିତ୍ୟ ପ୍ରତି ଅନୁରାଗୀ । ସ୍କୁଲରେ ପଢ଼ିଲା ବେଳେ 'ଗ୍ରାମ ଦର୍ପଣ' ନାମକ ହସ୍ତଲିଖିତ ପତ୍ରିକା ପ୍ରକାଶ କରୁଥିଲେ । ଓଡ଼ିଆ ସାହିତ୍ୟର ସେ ହେଉଛନ୍ତି ଜଣେ ନକ୍ଷତ୍ର ତାରକା । ରେଭେନ୍‌ସା କଲେଜରେ ପଢ଼ୁଥିବା ସମୟରେ ସେ ପୁରୀ ଛାତ୍ରାବାସରେ ରହୁଥିଲେ । ସେଠାରେ ସେ ତାଙ୍କର ବନ୍ଧୁ ବୈକୁଣ୍ଠନାଥ ପଟ୍ଟନାୟକ, ହରିହର ମହାପାତ୍ର, ଶରତ ଚନ୍ଦ୍ର ମୁଖାର୍ଜି ଏବଂ ଅନ୍ନଦାଶଙ୍କର ରାୟ ପ୍ରମୁଖଙ୍କ ସହ ନନ୍‌ସେନ୍‌ସ କ୍ଲବ ଗଠନ କରି ସବୁଜଯୁଗ ନାମକ ଏକ ନୂତନ ଯୁଗର ସୂତ୍ରପାତ କଲେ ।

ସାହିତ୍ୟରେ ବିପ୍ଳବ ସୃଷ୍ଟି କରିବା ଥିଲା ଏହି ଗୋଷ୍ଠୀର ମୂଳଲକ୍ଷ୍ୟ । ଏହି ଦଳର ନଅଜଣ ଲେଖକ ଲେଖିକା ଧାରାବାହିକ ଭାବରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ 'ବାସନ୍ତୀ' ନାମକ ଏକ ଉପନ୍ୟାସ ପ୍ରକାଶ କରୁଥିଲେ । ସବୁଜ ସାହିତ୍ୟ ଗୋଷ୍ଠୀର ମୁଖପତ୍ର ଭାବେ 'ଯୁଗବୀଣା' ତାରୁଣ୍ୟର ଭାବ ଓ ଚେତନାକୁ ନେଇ ପ୍ରକାଶିତ ହେଉଥିଲା । କାଳନ୍ଦୀ ଚରଣ ବାରିପଦାରୁ ପ୍ରକାଶ ପାଉଥିବା ଭଞ୍ଜପ୍ରଦୀପ ଓ ମୟୂରଭଞ୍ଜ ଇତିହାସର ସମ୍ପାଦକ ଥିଲେ ।

ହିନ୍ଦୀ ସାହିତ୍ୟର କଥା ସମ୍ରାଟ ପ୍ରେମଚନ୍ଦଙ୍କ ସମ୍ପାଦିତ 'ହଂସ' ନାମକ ମାସିକ ପତ୍ରିକାର ସେ ଥିଲେ ସହଯୋଗୀ ସମ୍ପାଦକ । ସେ ଏକାଧାରରେ ଜଣେ କବି,

ଔପନ୍ୟାସିକ, ନାଟ୍ୟକାର, ଗାଳ୍ପିକ ଓ ପ୍ରାବନ୍ଧିକ । କାଳନ୍ଦୀ ଚରଣ ଲୁହାର ମଣିଷ, ମାଟିର ମଣିଷ, ଆଜିର ମଣିଷ, ମୁକ୍ତାଗଡ଼ର କ୍ଷୁଧା, ଅମରଚାଟା ପ୍ରଭୃତି ଉପନ୍ୟାସର ରଚୟିତା । କିନ୍ତୁ 'ମାଟିର ମଣିଷ' ତାଙ୍କର ଔପନ୍ୟାସିକ ପ୍ରତିଭାର ସର୍ବଶ୍ରେଷ୍ଠ ପ୍ରତିନିଧି । ଏହା ଏକ ସାମାଜିକ ଉପନ୍ୟାସ ଭାବେ ଭାରତୀୟ ସାହିତ୍ୟରେ ପ୍ରସିଦ୍ଧି ଲାଭ କରିଛି । ଭାରତର ବହୁଳ ଭାଷାରେ ଅନୁଦିତ ହୋଇ ବେଶ୍ ଲୋକପ୍ରିୟ ହୋଇ ପାରିଛି ।

ତାଙ୍କର ପ୍ରକାଶିତ କବିତା ସଙ୍କଳନମାନଙ୍କ ମଧ୍ୟରେ ଛୁରୀଟିଏ ଲୋଡ଼ା, ମୋ କବିତା, ମହାଦୀପ, କ୍ଷଣିକ ସତ୍ୟ, ମନେ ନାହିଁ ପ୍ରଭୃତି ଉଲ୍ଲେଖଯୋଗ୍ୟ । ପ୍ରିୟଦର୍ଶୀ, ସୌମ୍ୟା, ପଦ୍ମା ପ୍ରଭୃତି ନାଟକ ଭକ୍ତକବି ମଧୁସୂଦନ ଓ କର୍ମଯୋଗୀ ଗୌରୀଶଙ୍କର ଜୀବନୀଗ୍ରନ୍ଥ ତଥା 'ସାହିତ୍ୟ ସମାଲୋଚନା, ସାହିତ୍ୟିକା ନେତୃତ୍ୱ ଓ ନେତୃତ୍ୱ ପ୍ରଭୃତି ପ୍ରକାଶିତ ପ୍ରବନ୍ଧ ପୁସ୍ତକ ତାଙ୍କର ସାହିତ୍ୟିକ କୃତି ମଧ୍ୟରେ ଅନ୍ତର୍ଭୁକ୍ତ । 'ଯାହା ଅଙ୍ଗେ ନିଭାଇଛି' ତାଙ୍କର ବହୁ ପଠିତ ଆତ୍ମଜୀବନ ଚରିତ । 'ମଥୁରାମଙ୍ଗଳ'ର ସମାଲୋଚନା ଲେଖି ସେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଦ୍ୱାରା ବହୁ ପ୍ରଶଂସିତ ହୋଇଥିଲେ । ସେ ଗାନ୍ଧୀବାଦ ଓ ମାର୍କ୍ସବାଦ ଦ୍ୱାରା ଅନୁପ୍ରାଣିତ ହୋଇ କବିତା ଲେଖିଥିଲେ ଯାହା ତତ୍କାଳୀନ ଆନ୍ଦୋଳନରେ ପଠିତ ହୋଇ ଜନମାନସରେ ବୈପ୍ଲବିକ ଚେତନା ସୃଷ୍ଟି କରୁଥିଲା । ସେ ଜୀବନରେ ବହୁ ସଂସ୍ଥାଦ୍ୱାରା ପୁରସ୍କୃତ ହୋଇଥିଲେ ଏବଂ ଭାରତ ସରକାରଙ୍କ ଠାରୁ ପଦ୍ମଶ୍ରୀ ଉପାଧି ମଧ୍ୟ ଲାଭ କରିଥିଲେ । ବହୁବର୍ଷ ପର୍ଯ୍ୟନ୍ତ ଅସୁସ୍ଥ ରହିବା ପରେ କାଳନ୍ଦୀ ଚରଣ ୯୦ ବର୍ଷ ବୟସରେ ୧୯୯୧ ମସିହା ମଇ ମାସ ୨୪ ତାରିଖରେ ଇହଧାମ ତ୍ୟାଗ କଲେ । ତାଙ୍କ ମୃତ୍ୟୁରେ ଓଡ଼ିଆ ସାହିତ୍ୟରେ ଏକ ଦୀର୍ଘ ଶୂନ୍ୟସ୍ଥାନ ସୃଷ୍ଟି କଲା ।

## କାଳୀଚରଣ ପଟ୍ଟନାୟକ :

କବିଚନ୍ଦ୍ର କାଳୀଚରଣ ଓଡ଼ିଶାର ଜଣେ ନାଟ୍ୟକାର ଓ ସଙ୍ଗୀତଜ୍ଞ ଭାବେ ପ୍ରସିଦ୍ଧ । ୧୮୯୮ ମସିହା ଡିସେମ୍ବର ମାସ ୨୩ ତାରିଖରେ କଟକ ଜିଲ୍ଲାର ବଡ଼ମ୍ବାରେ ତାଙ୍କର ଜନ୍ମ । ବାଲ୍ୟାବସ୍ଥାରୁ ନାଟକ ପ୍ରତି ତାଙ୍କର ସୃଷ୍ଟି ହୋଇଥିଲା ଦୁର୍ବାର ମୋହ । ବହୁ ଘାତପ୍ରତିଘାତ ମଧ୍ୟଦେଇ ସେ ଖୋର୍ଦ୍ଧାରୁ ମାଟ୍ରିକ ପାଶ୍ କରି ରେଭେନ୍ସା କଲେଜରେ ନାମ ଲେଖାଇଲେ । ସେଠାରୁ ସେ ଆଇ ଏ. ପାଶ୍ କଲେ କିନ୍ତୁ ନାନା ଅସୁବିଧାର ଶରବ୍ୟ ହୋଇ ବି. ଏ ପରୀକ୍ଷା ଦେଇ ପାରିନଥିଲେ । ଓଡ଼ିଶାରେ 'ରାସଲୀଳା'କୁ ଲୋକପ୍ରିୟ କରିବାପାଇଁ ଗୋବିନ୍ଦଶୂର ଦେଓଙ୍କ ସହିତ ୧୯୧୭ ମସିହାରେ ସେ ଗଠନ କଲେ ରାସଦଳ । ୧୯୨୨-୨୩ରେ ସେ ମୟୂରଭଞ୍ଜ ଷ୍ଟେଟରେ ଚାକିରୀ କରିଥିଲେ ।

୧୯୨୬ ମସିହାରେ ତାଙ୍କର କର୍ମକ୍ଷେତ୍ର ଥିଲା ପୁରୀ କିନ୍ତୁ ୧୯୩୦ରୁ ସେ ସ୍ଥାୟୀ-ଭାବେ କଟକରେ ରହିଲେ । ପୁରୀ ରାଜବାଟୀରେ ଚାକିରୀ କରୁଥିବା ବେଳେ ସେ

'ପୁରବାସୀ' ଓ 'ସଙ୍ଗୀତପ୍ରଭା' ନାମକ ଦୁଇଟି ପତ୍ରିକା ସମ୍ପାଦନା କରିଥିଲେ । ନାଟକର ଉନ୍ନତି ପାଇଁ ସେ ସର୍ବଦା ଯତ୍ନଶୀଳ ଥିଲେ । ତାଙ୍କର ନାଟକଗୁଡ଼ିକର ଅଭିନୟ ପାଇଁ କାଳିଚରଣ ୧୯୩୯ ମସିହାରେ କଟକର ବାଙ୍କା ବଜାରରେ ପ୍ରତିଷ୍ଠା କଲେ 'ଓଡ଼ିଶା ଥିଏଟର୍ସ' । ସେ ଏକାଧାରରେ ଐତିହାସିକ, ପୌରାଣିକ ଓ ସାମାଜିକ କଥାବସ୍ତୁକୁ ଆହରଣ କରି ଉଚ୍ଚକୋଟୀର ଅଭିନୟ ପ୍ରଧାନ ନାଟକ ରଚନା କରୁଥିଲେ । କାଳୀଚରଣଙ୍କର ଅଭିଯାନ, ଭକ୍ତ, ଜୟଦେବ, ରକ୍ତମାଟି, ଫଟାଭୂଇଁ, ଗାର୍ଲ୍‌ସ୍କୁଲ୍, ଚକ୍ରୀ, ଜଗନ୍ନାଥ ଦାସ, ସାରଳା ଦାସ, ରକ୍ତମନ୍ଦାର ପ୍ରଭୃତି ନାଟକାବଳୀ ପେଶାଦାରୀ ରଙ୍ଗମଞ୍ଚରେ ବହୁବର୍ଷ ପର୍ଯ୍ୟନ୍ତ ଅଭିନୀତ ହୋଇ ବିଶେଷ ଆଲୋଡ଼ନ ସୃଷ୍ଟି କରିଥିଲା । ସେଥିପାଇଁ ଉତ୍କଳ ସାହିତ୍ୟସମାଜ ତାଙ୍କୁ କବିଚନ୍ଦ୍ର ଉପାଧିରେ ଭୂଷିତ କରିଥିଲା । କଳଙ୍କ ଭଞ୍ଜନ, ସୁଦାମା, ବାଂଶୀ ହର୍ଲାଦ, ମିଳନମାଧୁରୀ, ମାନଲୀ, ମୃଗୟା ଓ ଶକୁନ୍ତଳା ପ୍ରଭୃତି ନାଟକ ପୁରୀରେ ଥିବାବେଳେ ରଚନା କରିଥିଲେ ।

୧୯୫୭ ମସିହାରେ ସେ ପ୍ରଥମ ନୃତ୍ୟନାଟିକା 'ସାକ୍ଷୀଗୋପାଳ' ରଚନା କଲେ ଏବଂ ଏହା ଦିଲ୍ଲୀରେ ଅଭିନୀତ ହୋଇଥିଲା । ସେ ସମ୍ମାନ ସୂଚକ ଉଚ୍ଚତରେ ଉପାଧି ପାଇଥିଲେ କିନ୍ତୁ 'ପଦ୍ମଶ୍ରୀ' ଉପାଧିକୁ ପ୍ରତ୍ୟାଖ୍ୟାନ କରିଥିଲେ । 'କୁମ୍ଭାରଚକ' ତାଙ୍କର ଆତ୍ମଜୀବନୀ, ଯାହା ତାଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଆଣି ଦେଇଥିଲା । ଓଡ଼ିଶୀ ନୃତ୍ୟକୁ ଭାରତ ନୃତ୍ୟ ମଞ୍ଚରେ ସ୍ଥାନ ଦେବାରେ ତାଙ୍କର ଉଦ୍ୟମ ଥିଲା ସର୍ବପ୍ରଧାନ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ୧୯୭୮ ମସିହାରେ ମୃତ୍ୟୁବରଣ କରିଥିଲେ ।

## କାଙ୍ଗାଳୀ ଚରଣ ପତି :

ଜଣେ ପ୍ରଧାନ ଶ୍ରୀମା ଓ ଅରବିନ୍ଦଙ୍କର ଭକ୍ତ ଥିଲେ । ଦର୍ଶନ ବିଭାଗର ଅଧ୍ୟାପକ ପଦବୀରୁ ଇସ୍ତଫା ଦେଇ ସେ ପଣ୍ଡିଚେରୀ ଚାଲିଯାଇଥିଲେ । ସେଠାରେ ତାଙ୍କ ନାମ ପ୍ରଚାରୀ ହେଲା । ଅରବିନ୍ଦ ଦର୍ଶନ ଉପରେ ସେ ଓଡ଼ିଶାର ପିଲାମାନଙ୍କୁ ଶିକ୍ଷା ଦେବାପାଇଁ ସ୍କୁଲ ପ୍ରତିଷ୍ଠା କରିଥିଲେ । ଭାରତର ସ୍ୱରୂପ, ସ୍ୱଧର୍ମ ଏବଂ ସାଧନା ପ୍ରଭୃତି ବହୁ ପୁସ୍ତକର ରଚୟିତା ଭାବେ ସେ ପ୍ରସିଦ୍ଧ ।

## କୁନ୍ତଳା କୁମାରୀ ସାବତ :

ଉତ୍କଳଭାରତୀ ଡ଼ାଃ କୁନ୍ତଳା କୁମାରୀ ସାବତଙ୍କ ଜୀବନ ଥିଲା ଦୁର୍ଘଟଣା ପରିପୂର୍ଣ୍ଣ । ଜୀବନରେ ବହୁ ଅଭାବ, ଅନାଟନ, ଝଡ଼ଝଞ୍ଜା ଓ ଖାଦ୍ୟାଭାବର ସେ ଶିକାର ହୋଇଥିଲେ । ୧୯୦୧ ମସିହା ଫେବୃୟାରୀ ମାସ ୮ ତାରିଖରେ ତାଙ୍କର ଜନ୍ମ । ପିତା ଡ଼ାଃ ଡାନିଏଲ୍ ସାବତ ଡାକ୍ତରୀ ବ୍ୟବସାୟ ପାଇଁ ସ୍ତ୍ରୀ ଏବଂ କନ୍ୟାଙ୍କ ସହିତ ବର୍ମା ଚାଲିଯାଇଥିଲେ । କିନ୍ତୁ ସେଠାରେ ସେମାନେ ଅଧିକ କାଳ ରହିନପାରି ଓଡ଼ିଶା ଫେରି ଆସିଥିଲେ । କୁନ୍ତଳା କୁମାରୀ ୧୯୧୮ ମସିହାରେ କଟକ ମେଡ଼ିକାଲ ସ୍କୁଲରେ ଯୋଗ

ହେଲେ । ଶୈଶବରୁ ତାଙ୍କର ଓଡ଼ିଆ, ଇଂରେଜୀ, ହିନ୍ଦୀ, ବଙ୍ଗଳା, ବର୍ମିଜ ପ୍ରଭୃତି ଭାଷାରେ ଗଭୀର ପ୍ରବେଶ ଥିଲା ।

ତାଙ୍କର ପିତା ଖ୍ରୀଷ୍ଟିୟାନ ଥିଲେ ସତ କିନ୍ତୁ କୁନ୍ତଳାଙ୍କର ହିନ୍ଦୁଧର୍ମ ପ୍ରତି ପ୍ରବଳ ଆଗ୍ରହ ଥିଲା । ଓଡ଼ିଶାର ଜଣେ ଗୀତିକବି ଭାବେ ତାଙ୍କର ପ୍ରତିଭା ଅବିସ୍ମରଣୀୟ । ଅଞ୍ଜଳୀ, ଅର୍ଚ୍ଚନା, ଉଚ୍ଛ୍ୱାସ, ଭ୍ରାନ୍ତି, ପରଶମଣି, କାଳବୋହୂ ପ୍ରଭୃତିରେ ସ୍ୱଦେଶ ପ୍ରୀତି ଓ ମାନବିକତାର ଅନନ୍ତମହିମା ବର୍ଣ୍ଣିତ । ୧୯୨୫ ମସିହାରେ ମହିଳା ବନ୍ଧୁ ସମିତି କୁନ୍ତଳାଙ୍କୁ ଉତ୍କଳଭାରତୀ ଉପାଧିରେ ଭୂଷିତ କଲେ । ଜଗନ୍ନାଥ ମୁକ୍ତିମଣ୍ଡପରେ ପଣ୍ଡିତସଭା କୁନ୍ତଳାଙ୍କ ପରି ଜଣେ ଖ୍ରୀଷ୍ଟିୟାନ ମହିଳାଙ୍କୁ ସମ୍ମାନିତ କରିଥିଲା । ୧୯୨୮ ମସିହାରେ କୁନ୍ତଳା ଦିଲ୍ଲୀରେ ନାରାୟଣ ସ୍ୱାମୀଙ୍କ ଉପସ୍ଥିତିରେ ଶୁଦ୍ଧ ହୋଇ ହିନ୍ଦୁ ହୋଇଥିଲେ ।

ନାରୀ ଜାତିର ସେବାରେ ତାଙ୍କର ଡାକ୍ତରୀ ବିଦ୍ୟାକୁ ସେ ନିୟୋଜିତ କରିଥିଲେ । ଜୀବନରେ ଜଣେ ବ୍ରହ୍ମଚାରୀଙ୍କୁ ବିବାହ କରି ସେ ଠକିଗଲେ । ନାରୀ-ମାନଙ୍କର ସାମାଜିକ, ସାଂସ୍କୃତିକ ଓ ଆର୍ଥିକ ଉନ୍ନତି ପାଇଁ ତାଙ୍କର ସଂଗ୍ରାମ ଥିଲା ଅବ୍ୟାହତ । ୧୯୨୭ ମସିହାରେ ସରକାରୀ ଚାକିରିରୁ ଇସ୍ତଫା ଦେଇ ସେ ଦିଲ୍ଲୀରେ ଅବସ୍ଥାନ କଲେ । ବହୁ ସଂସ୍ଥା ସହିତ ସେ ଜଡ଼ିତ ଥିଲେ । ଆହ୍ଲାବାଦ ଏବଂ ବନାରସ ବିଶ୍ୱବିଦ୍ୟାଳୟ ତରଫରୁ ସେ ବହୁଥର ନିମନ୍ତ୍ରିତ ହୋଇଥିଲେ । କୁନ୍ତଳା କୁମାରୀ ସାବତ ଥିଲେ କ୍ଷଣଜନ୍ମା । ମାତ୍ର ୩୮ ବର୍ଷ ବୟସରେ ୧୯୩୭ ମସିହାରେ ସେ ଇହଧାମ ତ୍ୟାଗ କଲେ ।

## କୃଷ୍ଣଚନ୍ଦ୍ର ପାଣିଗ୍ରାହୀ :

କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ୧୯୧୨ ମସିହାରେ ମୟୂରଭଞ୍ଜର ଖିଚିଂଠାରେ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ତାଙ୍କ ପିତାଙ୍କର ନବମ ସନ୍ତାନ । ପିଲାଦିନରୁ ନିଜ ପିତାମାତାଙ୍କୁ ହରାଇ ପାଣିଗ୍ରାହୀ ଜୀବନରେ ବହୁ ସଂଗ୍ରାମ କରିଥିଲେ । ଜଣେ ଉତ୍ତମ ଛାତ୍ର ହୋଇଥିବାରୁ ସେ ସ୍କୁଲ ଜୀବନରେ ବୃତ୍ତିପାଇ ଏବଂ ପରବର୍ତ୍ତୀ ସମୟରେ ତତ୍କାଳୀନ ମୟୂରଭଞ୍ଜର ରାଜା ପ୍ରତାପଚନ୍ଦ୍ର ଭଞ୍ଜଦେଓଙ୍କ ସାହାଯ୍ୟକ୍ରମେ ସେ ୧୯୩୫ ମସିହାରେ ରେଭେନ୍ସା କଲେଜରୁ ଅନର୍ସ ସହିତ ବି. ଏ ପାଶ୍ କରି କଲିକତା ବିଶ୍ୱବିଦ୍ୟାଳୟରୁ ଇତିହାସରେ ଏମ୍ ଏ ପାଶ୍ କରିଥିଲେ ।

ପରେ ଡଃ ପାଣିଗ୍ରାହୀ ମହାରାଜାଙ୍କର ଅନୁଗ୍ରହ ଓ ଅନୁଦାନ ଲାଭ କରି ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ ରାମପ୍ରସାଦ ଚନ୍ଦଙ୍କର ସହକାରୀ ରୂପେ ମାସିକ ୭୦ ଟଙ୍କା ଭତ୍ତାରେ ନିଜର କର୍ମମୟ ଜୀବନ ଆରମ୍ଭ କରିଥିଲେ । ପ୍ରତ୍ନତତ୍ତ୍ୱ ବିଷୟରେ ଉଚ୍ଚଶିକ୍ଷା ଲାଭ ପାଇଁ ମହାରାଜା ତାଙ୍କୁ ମାସିକ ୧୦୦ ଟଙ୍କା ଭତ୍ତାଦେଇ ପାଟନା ପଠାଇ ଥିଲେ । ସେହି ସମୟରେ ସେ ଦୀର୍ଘ ୭ ବର୍ଷ ଧରି ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣ ପୂର୍ବକ

ପ୍ରତ୍ନତତ୍ତ୍ୱ ବିଷୟରେ ଗବେଷଣା କରି ଉଚ୍ଚକୋଟୀର ପ୍ରବନ୍ଧମାନ ରଚନା କଲେ । ନିଜର କାର୍ଯ୍ୟଦକ୍ଷତା ଯୋଗୁ ସେ ପ୍ରତ୍ନତତ୍ତ୍ୱ ବିଭାଗର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଏବଂ ପରେ ସୁପରିଣ୍ଟେଣ୍ଡେଣ୍ଟ ହୋଇ ପାରିଥିଲେ । ଓଡ଼ିଶା ମ୍ୟୁଜିୟମର କ୍ୟୁରେଟର ରୂପେ କାର୍ଯ୍ୟକରି ମ୍ୟୁଜିୟମର ପ୍ରଭୂତ ଉନ୍ନତି କରିଥିଲେ । ୧୯୪୪ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଭାବେ ନିଯୁକ୍ତି ପାଇଲେ । ପରେ ସେ ଏହି ବିଭାଗର ରିଡ଼ର ଓ ପ୍ରଫେସର ପଦବୀକୁ ଉନ୍ନୀତ ହୋଇଥିଲେ । ବିଶ୍ୱବିଦ୍ୟାଳୟର ଅନୁଦାନ କମିଶନଙ୍କ ଦ୍ୱାରା ମାସିକ ୭୫୦ ଟଙ୍କା ଭତ୍ତାପାଇ ସେ ରେଭେନସା କଲେଜର ଇତିହାସ ବିଭାଗର ଅନର୍ସ ଅଧ୍ୟାପନା ସହିତ ସଂଯୁକ୍ତ ହୋଇଥିଲେ । ଜଣେ ପ୍ରସିଦ୍ଧ ଐତିହାସିକ ଏବଂ ଉଚ୍ଚକୋଟୀର ପ୍ରାବନ୍ଧିକ ଭାବେ ଓଡ଼ିଶାରେ ଲୋକପ୍ରିୟ । ତାଙ୍କ ପ୍ରବନ୍ଧଗୁଡ଼ିକ ସାଂସ୍କୃତିକ, ଐତିହାସିକ ଓ ସାହିତ୍ୟ ସମାଲୋଚନା ମୂଳକ ଏହିପରି ତିନିଶ୍ରେଣୀରେ ବିଭକ୍ତ । 'ଇତିହାସ ଓ କିମ୍ବଦନ୍ତୀ', ପ୍ରବନ୍ଧମାନସ, ସାରଳା ମହାଭାରତରେ ଐତିହାସିକ ଚିତ୍ର, ମୋ ସମୟର ଓଡ଼ିଶା ପ୍ରଭୃତି ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ଜନ୍ମଭୂମି, ପ୍ରସ୍ତରପଟରେ ବର୍ଷାବରଣ, କନ୍ୟାକୁମାରୀ, ସ୍ୱର୍ଣ୍ଣାଦ୍ରିରେ ସ୍ୱପ୍ନ ଓ ନଟରାଜ ଆଦି ପ୍ରବନ୍ଧଗୁଡ଼ିକ ଡକ୍ଟର ପାଣିଗ୍ରାହୀଙ୍କର ଗବେଷଣାଧର୍ମୀ ସାହିତ୍ୟର ପ୍ରବନ୍ଧ ।

ତାଙ୍କର ସାରସ୍ୱତ ସାଧନା ପାଇଁ ସେ ୧୯୭୫ ମସିହା ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ମାନିତ ହୋଇଥିଲେ । ସେହିପରି ୧୯୭୬ ମସିହାରେ ପ୍ରଜାତନ୍ତ୍ର ପ୍ରଚାର ସମିତି ତରଫରୁ ତାଙ୍କୁ ସମ୍ମାନିତ କରାଯାଇଥିଲା । 'ମୋ' ସମୟର ଓଡ଼ିଶା ପାଇଁ ସେ ପୁନର୍ବାର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ । ଓଡ଼ିଶା ଇତିହାସ ଏବଂ ଭୁବନେଶ୍ୱରର ପ୍ରାଚୀନ ସ୍ଥାପତ୍ୟ ସମ୍ପର୍କରେ ତାଙ୍କର ଉଚ୍ଚକୋଟୀର ଗବେଷଣା ଏକାନ୍ତ ସ୍ମରଣୀୟ । ସେ ଓଡ଼ିଶାର ବିଭିନ୍ନ ସାହିତ୍ୟିକ, ସାଂସ୍କୃତିକ ଏବଂ ଐତିହାସିକ ଅନୁଷ୍ଠାନ ସହିତ ସମ୍ପୃକ୍ତ ଥିଲେ ।

## କୃଷ୍ଣପ୍ରସାଦ ପଟ୍ଟନାୟକ :

କୃଷ୍ଣପ୍ରସାଦ ପଟ୍ଟନାୟକ ୧୯୨୩ ମସିହା ଫେବୃୟାରୀ ମାସ ୧୧ ତାରିଖରେ ବାଙ୍କୀରେ ଜନ୍ମ ହୋଇଥିଲେ । ତାଙ୍କ ପିତା ନିମାଇଁ ଚରଣ ପଟ୍ଟନାୟକ ଜଣେ ସରକାରୀ କର୍ମଚାରୀ ଥିଲେ । ମାଟ୍ରିକ୍ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ସେ ଅଧିକ ପଢ଼ିବା ପାଇଁ ରେଭେନ୍‌ସା କଲେଜ ଆସିଲେ । କୃଷ୍ଣପ୍ରସାଦ ଇତିହାସରେ ଅନର୍ସ ରଖି ରେଭେନ୍‌ସା କଲେଜରୁ ବି. ଏ. ପାଶ୍ କରି ପାଟଣା ବିଶ୍ୱବିଦ୍ୟାଳୟରୁ ଇତିହାସରେ ଏମ୍ ଏ. ପାଶ୍ କଲେ । ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇ ସେ କାରାବରଣ କରିଥିଲେ ।

ପରେ ଖ୍ରୀଷ୍ଟ କଲେଜରେ ଇତିହାସ ବିଭାଗରେ ଅଧ୍ୟାପକ ଭାବେ ଯୋଗ ଦେଲେ । କଟକ ଜେଲରେ ବନ୍ଦୀ ଥିବାବେଳେ କୃଷ୍ଣପ୍ରସାଦ ପଟ୍ଟନାୟକ ୪୮ ଦିନ

ପର୍ଯ୍ୟନ୍ତ ଅନାହାରରେ ଥିଲେ ଏବଂ ଜେଲରୁ ମୁକ୍ତ ହେବା ପରେ ଅନେକ ଦିନ ପର୍ଯ୍ୟନ୍ତ ଅନ୍ତର୍ଦ୍ଧାନ ହୋଇ ଯାଇଥିଲେ । ସେ ଜଣେ ଦକ୍ଷ ଭଲ ଖେଳାଳୀ ଥିଲେ ଏବଂ କଟକର ସୱାରଜଗରେ ଥିବା ତାଙ୍କ ଘରେ ରହୁଥିଲେ । ସେ ବହୁ ପୁସ୍ତକର ଅନୁବାଦକ ଭାବେ ପରିଚିତ । ଜଣେ ନିର୍ଭୀକ ସାମ୍ବାଦିକ ରୂପେ ତାଙ୍କର ସୁନାମ ଥିଲା । କୃଷ୍ଣପ୍ରସାଦ ୧୯୮୪ ମସିହା ଅପ୍ରେଲ ମାସ ୧୭ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

## କୃଷ୍ଣଚନ୍ଦ୍ର ସେନ୍‌ଗୁପ୍ତ :

ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ ଲେଖକ ଭାବେ କୃଷ୍ଣଚନ୍ଦ୍ର ସେନ୍‌ଗୁପ୍ତ ଖ୍ୟାତନାମା । ତାଙ୍କର ଲେଖାମାନଙ୍କ ମଧ୍ୟରେ ବ୍ରହ୍ମଚର୍ଯ୍ୟ, ରାମକୃଷ୍ଣ ପରମହଂସ, ମୋ ବାଇଧନ, ରାମକୃଷ୍ଣ କୋଇଲି ଆଦି ପ୍ରଧାନ ।

## କେ ଏସ୍ ଆର ମୂର୍ତ୍ତି :

ଜଣେ ସ୍ୱାଧୀନତା ସଂଗ୍ରାମୀ ଓ ଜାତୀୟତାବାଦୀ ନେତା । ରାମମୂର୍ତ୍ତି ପଦାର୍ଥ ବିଜ୍ଞାନରେ ଏମ୍ ଏସ୍ ସି· ପାଶ୍ କରିଥିଲେ । ସେ ଛାତ୍ର ଜୀବନରୁ କମ୍ୟୁନିଷ୍ଟ ଚିନ୍ତାଧାରା ଦ୍ୱାରା ଅଧିକ ପ୍ରଭାବିତ ହୋଇଥିଲେ । ବହୁ କମ୍ୟୁନିଷ୍ଟ ଏବଂ ସୋସାଲିଷ୍ଟ ଆନ୍ଦୋଳନରେ ଅଂଶ ଗ୍ରହଣ କରି ତାଙ୍କର ଓଜସ୍ୱିନୀ ଭାଷଣ ଦ୍ୱାରା ସମସ୍ତ ଜନତାଙ୍କୁ ଉତ୍ତେଜିତ କରି ଦେଉଥିଲେ । ବିଜ୍ଞାନ, ସଂସ୍କୃତି ଏବଂ ସମାଜ ବିଷୟରେ ରାମମୂର୍ତ୍ତିଙ୍କର ପ୍ରଗାଢ଼ ଜ୍ଞାନ ଥିଲା । ବାବା ଭୈରବାନନ୍ଦ ମହାବିଦ୍ୟାଳୟର ଅଧ୍ୟକ୍ଷ ଥିବାବେଳେ ସେ ତାଙ୍କର ଗବେଷଣାକୁ ଲୋକଲୋଚନକୁ ଆଣିଥିଲେ । ଆନ୍ତର୍ଜାତୀୟ ସମ୍ମିଳନୀରେ ଯୋଗ ଦେବାକୁ ଯାଇ ସେ ଦିଲ୍ଲୀଠାରେ ପ୍ରାଣତ୍ୟାଗ କଲେ ।

## କାହ୍ନୁ ଚରଣ ଦାସ :

କାହ୍ନୁ ଚରଣ ଦାସ ୧୯୦୪ ମସିହାରେ ଜନ୍ମ ହୋଇ ୧୯୯୨ ମସିହା ଅକ୍ଟୋବର ମାସ ୨୦ ତାରିଖରେ କଟକର ବାଙ୍କିସାହି ବାସଭବନରେ ପରଲୋକ ଗମନ କରିଥିଲେ । ସେ ୧୯୨୮ ମସିହାରେ ରେଭେନ୍‌ସା କଲେଜରୁ ଅର୍ଥଶାସ୍ତ୍ରରେ ବି ଏ. ପାଶ୍ କରି ଟ୍ରେନିଂ କଲେଜରୁ ବି ଏଡ୍ ପାଶ୍ କଲେ । ୧୯୩୦ ମସିହାରେ ସ୍କୁଲ ଇନ୍‌ସପେକ୍ଟର ଉପ-ନିର୍ଦ୍ଦେଶକ ଭବନରେ ତାଙ୍କର ଚାକିରି ଆରମ୍ଭ ହେଲା । ସେ ବହୁ ବର୍ଷ ଧରି ରେଲବାଇ ହାଇସ୍କୁଲ, କଲିଜିଏଟ୍ ସ୍କୁଲ, ପ୍ରାକ୍ଟିସିଙ୍ଗ୍ ସ୍କୁଲ ଏବଂ ପି ଏମ୍ ଏକାଡେମୀରେ ଶିକ୍ଷାଦାନ କରିଥିଲେ । ଗଣିତ ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । 'ମାନସାଙ୍କ ସମାଧାନ' ପୁସ୍ତକ ଗଣିତ ମୌଳିକ ଶିକ୍ଷାର ଏକ ବଳିଷ୍ଠ ରଚନା ।

## କମଳଲୋଚନ ମହାନ୍ତି :

ଓଡ଼ିଶାର ଲବ୍ଧପ୍ରତିଷ୍ଠିତ ସାହିତ୍ୟିକ ତଥା ଖ୍ୟାତନାମା ନାଟ୍ୟକାର କମଳଲୋଚନ ମହାନ୍ତି କଟକ ଜିଲ୍ଲାର ବାଲିକୁଦା ଥାନା ଅନ୍ତର୍ଗତ ଗଡ଼େଇ ଗ୍ରାମରେ

୧୯୨୧ ମସିହା ବୁଦ୍ଧ ପୂର୍ଣ୍ଣିମା ଦିନ ଜନ୍ମଗ୍ରହଣ କରିଥିଲେ । ସରକାରୀ ଚାକିରୀ କରିଥିଲେ ମଧ୍ୟ ସାହିତ୍ୟ ସାଧନା ଥିଲା ତାଙ୍କ ଜୀବନର ମୂଳ ଲକ୍ଷ୍ୟ । ଓଡ଼ିଶାର ନାଟ୍ୟ ସାହିତ୍ୟ ପ୍ରତି ତାଙ୍କର ଅବଦାନ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଜଣେ ନାଟ୍ୟକାର ଭାବରେ କରଣୀ, ଡାକବଙ୍ଗଳା, ଭାଇଭଉଣୀ, ସ୍ୱାମୀସ୍ତ୍ରୀ, ମଣିଷ, ଗାଁ ମାଟି, ସନ୍ତାନ, ଅଭ୍ୟୁଦୟ, ମଣିକାଞ୍ଚନ ଇତ୍ୟାଦି ସେ ରଚନା କରିଛନ୍ତି । ସମାଜରୁ ଉଚ୍ଚନୀଚ ଭେଦଭାବ ଦୂରକରି ଏକ ନୂତନ ସମାଜ ଗଠନ ଥିଲା ତାଙ୍କ ନାଟକମାନଙ୍କର ମୁଖ୍ୟ ବିଷୟବସ୍ତୁ । ମହତାବ ପରିକ୍ରମା, କାହ୍ନୁଚରଣ ପରିକ୍ରମା, ଲକ୍ଷ୍ମୀଧର ପରିକ୍ରମା, କବିଚନ୍ଦ୍ର ପରିକ୍ରମା, ନିତ୍ୟାନନ୍ଦ ପରିକ୍ରମା ଏବଂ ସୁରେନ୍ଦ୍ର ପରିକ୍ରମା ପ୍ରଭୃତି ପୁସ୍ତକ ପ୍ରକାଶ କରି ଶ୍ରୀ ମହାନ୍ତି ସାହିତ୍ୟ ଗବେଷଣା କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଅଛନ୍ତି ।

ଭୁବନେଶ୍ୱର ଏକାମ୍ର ଥିଏଟରସର ସେ ହେଉଛନ୍ତି ପ୍ରାଣ ପ୍ରତିଷ୍ଠାତା । ତାଙ୍କର ୭୫ରୁ ଊର୍ଦ୍ଧ୍ୱ ପୁସ୍ତକ ପ୍ରକାଶିତ ହୋଇଛି । ୧୯୭୩ ମସିହାରେ ତାଙ୍କର ସାହିତ୍ୟକୃତି ପାଇଁ ସେ ବିଷୁବ ପୁରସ୍କାର ପାଇଥିଲେ । ଏତଦ୍‌ବ୍ୟତୀତ ୧୯୮୦ ମସିହାରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ପୁରସ୍କାର । ୧୯୮୩ଏବଂ ୧୯୮୭ ମସିହାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ଏବଂ ୧୯୮୭ ମସିହାରେ ସାରଳା ସାହିତ୍ୟ ପ୍ରଭୃତି ପୁରସ୍କାର ତାଙ୍କୁ ମିଳିଥିଲା । ବହୁ ସାହିତ୍ୟ ଏବଂ ନାଟ୍ୟସଂସ୍ଥା ସହିତ ତାଙ୍କର ସମ୍ପର୍କ ଥିଲା । ୧୯୯୧ ମସିହା ନଭେମ୍ବର ମାସ ୮ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ଗୋଲୋକ ବିହାରୀ ଧଳ :

ଜଣେ ବିଶିଷ୍ଟ ଭାଷାତତ୍ତ୍ୱବିତ୍, ଧ୍ୱନିତତ୍ତ୍ୱବିତ୍, ଉଚ୍ଚକୋଟୀର ପ୍ରାବନ୍ଧିକ ରୂପେ ଗୋଲୋକ ବିହାରୀ ଧଳ ସର୍ବଜନ ପରିଚିତ । ୧୯୨୧ ମସିହା ଡିସେମ୍ବର ମାସ ୧୫ ତାରିଖରେ ଢେଙ୍କାନାଳର ଗଞ୍ଜେଇଡ଼ିହ ଗ୍ରାମରେ ତାଙ୍କର ଜନ୍ମ । ସେ ଥିଲେ ମେଧାବୀ ଓ ଅଧ୍ୟବ୍ୟସାୟୀ । ୧୯୩୯ ମସିହାରେ ଶ୍ରୀ ଧଳ ଢେଙ୍କାନାଳର ବଡ଼ଜେନା ହାଇସ୍କୁଲରୁ ମାଟ୍ରିକ୍ ପାଶ୍ କରି ଉଚ୍ଚ ଶିକ୍ଷା ପାଇଁ ରେଭେନ୍‌ସା କଲେଜରେ ନାମ ଲେଖାଇଲେ ଏବଂ ୧୯୪୩ ମସିହାରେ ସଂସ୍କୃତ ଅନର୍ସ ସହିତ ପ୍ରଥମ ଶ୍ରେଣୀରେ ବି.ଏ. ପାଶ୍ କଲେ । ବିହାର ବିଶ୍ୱବିଦ୍ୟାଳୟରୁ କୃତିତ୍ୱ ସହ ସଂସ୍କୃତରେ ଏମ୍.ଏ ପାଶ୍ କରି ସାମନ୍ତ ଚନ୍ଦ୍ରଶେଖର କଲେଜରେ ସେତେବେଳେ ଏକକ ଥିବା ଓଡ଼ିଆ ଓ ସଂସ୍କୃତ ବିଭାଗର ଅଧ୍ୟାପକ ରୂପେ ଯୋଗଦେଲେ । ଭାଷା ଶାସ୍ତ୍ର ଏବଂ ଧ୍ୱନି ବିଜ୍ଞାନ ଉପରେ ତାଙ୍କର ପ୍ରଗାଢ଼ ଅଧ୍ୟବସାୟ ଥିବାରୁ ଏହି ବିଷୟରେ ଉଚ୍ଚତର ଅଧ୍ୟୟନ କରିବାଲାଗି ସେ ବିଳାତ ଯାତ୍ରା କରିଥିଲେ । ଇଂଲଣ୍ଡ ଏବଂ ଆମେରିକାରେ କିଛି ବର୍ଷ ଗବେଷଣା କରି ସେ ୧୯୪୧ ମସିହାରେ ପୁଣି ସାମନ୍ତଚନ୍ଦ୍ର କଲେଜକୁ ପ୍ରତ୍ୟାବର୍ତ୍ତନ କଲେ । ୧୯୫୫ ମସିହାରୁ ୧୯୫୮ ମସିହା ପର୍ଯ୍ୟନ୍ତ ଗୋଲୋକ ବିହାରୀ ଧଳ ଆଗ୍ରା ବିଶ୍ୱବିଦ୍ୟାଳୟର ଧ୍ୱନି ବିଜ୍ଞାନ ଅଧ୍ୟାପକ ଭାବେ କାର୍ଯ୍ୟ କରିଥିଲେ ।

ଧ୍ୱନିତତ୍ତ୍ୱ ବିଶାରଦ ରୂପେ ପୃଥିବୀର ବହୁଦେଶ ଭ୍ରମଣ କରିବାର ସୁଯୋଗ ତାଙ୍କୁ ମିଳିଥିଲା । ଆଗ୍ରା ବିଶ୍ୱବିଦ୍ୟାଳୟରୁ ଫେରିବା ପରେ ସେ ରେଭେନ୍‌ସା କଲେଜରେ ଓଡ଼ିଆ ବିଭାଗର ଅଧ୍ୟାପକ ଭାବେ ନିଯୁକ୍ତି ପାଇଲେ । ୧୯୫୧ ମସିହାରେ ଶ୍ରୀ ଧଳ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଫୋନେଟିକସ୍ ଉପରେ ସ୍ନାତକୋତ୍ତର ଡ଼ିଗ୍ରୀ ହାସଲ କରିଥିଲେ ।

ଏଥିପାଇଁ ତାଙ୍କୁ ବହୁ ଝଡ଼ ଝଞ୍ଜାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଅଧ୍ୟାପନାର ନିଷ୍ଠା, କର୍ତ୍ତବ୍ୟ ପରାୟଣତା ଏବଂ ଗୁଣବିସ୍ତାରତା ହିଁ ତାଙ୍କୁ ପ୍ରଫେସର ପଦବୀ ପର୍ଯ୍ୟନ୍ତ ଉନ୍ନୀତ କରିଥିଲା । ସେ ଥିଲେ ଜଣେ ଉଚ୍ଚକୋଟୀର ପ୍ରାବନ୍ଧିକ । ସମାଜ, ସଂସ୍କୃତି, ଶିକ୍ଷା ରାଜନୀତି, ଭାଷା, ସାହିତ୍ୟ ବିଷୟକ ବହୁ ପ୍ରବନ୍ଧ ନିୟମିତଭାବେ ଝଙ୍କାର, ସହକାର, ନବରବି ଓ ଆସନ୍ତା କାଲି ପ୍ରଭୃତି ପତ୍ରିକାରେ ପ୍ରକାଶିତ ହୋଇ ଅତ୍ୟନ୍ତ ଲୋକପ୍ରିୟ ହୋଇ ପାରିଥିଲା । ଆମେରିକା ଅନୁଭୂତି, ଲଣ୍ଡନ ଚିଠି ଓ ରାଜମହଲର ଦେଶେ ପ୍ରଭୃତି ଭ୍ରମଣ କାହାଣୀ ତାଙ୍କ ବିଦେଶ ଗସ୍ତ କାଳୀନ ଚରମ ଅନୁଭୂତିର ଅଭିବ୍ୟକ୍ତି । ଶିଶୁ ସାହିତ୍ୟିକ ଭାବେ ଅମର ପାର୍ଶୀ, ଅମର ମଣିଷ, ଶିଶୁଶିକ୍ଷା କଥାମାଳା, ଗଳ୍ପ ପାଖୁଡ଼ା, ଅମର କାହାଣୀ, ଶବ୍ଦ ରଙ୍ଗରେ ଅମର ଜୀବନ ପ୍ରଭୃତି ତାଙ୍କର ମହାନ କୃତି ।

ଜଣେ ସଫଳ ଅନୁବାଦକ ଭାବେ ସେ ହିନ୍ଦୀ ସାହିତ୍ୟର ବିଶିଷ୍ଟ କଥାକାର ପ୍ରେମଚାନ୍ଦଙ୍କର ଗୋଦାନ, ଗବନ, ପ୍ରେମାଶ୍ରମ, ପ୍ରତିଜ୍ଞା ଓ ପ୍ରେମଚାନ୍ଦଙ୍କ ଗଳ୍ପମାଳା ଓଡ଼ିଆରେ ଅନୁବାଦ କରିଛନ୍ତି । ତାଙ୍କର ଅନ୍ୟାନ୍ୟ ଅନୂଦିତ ଗ୍ରନ୍ଥଗୁଡ଼ିକ ହେଲା, ଗାନ୍ଧିଜୀଙ୍କ ସହିତ ଏକ ସପ୍ତାହ, ଆମ ସଂସ୍କୃତି, ପୃଥିବୀର ନାରୀ, ବନ୍ଦୀ ନେହେରୁ, ଭାରତ ମୋର ଘର, କେନେଡ଼ିଙ୍କ ଜୀବନୀ ଓ ବିସ୍ମୃତିର ଶବ୍ଦ । ଭାଷା ଶାସ୍ତ୍ର ଓ ଧ୍ୱନି ବିଜ୍ଞାନ ଉପରେ ଆଧାରିତ ପୁସ୍ତକମାନଙ୍କ ମଧ୍ୟରେ ମଣିଷର ଭାଷା, ସହଜ ଇଂରାଜୀ ଉଚ୍ଚାରଣ ଶିକ୍ଷା, ଧ୍ୱନି ବିଜ୍ଞାନ ଓ ଭାଷା ଶାସ୍ତ୍ର ପରିଚୟ ପ୍ରଭୃତି ପ୍ରଧାନ ।

୧୯୬୩ରୁ ୭୪ ମସିହା ମଧ୍ୟରେ ସେ ପୁନା, ଡେରାଡୁନ, ମହୀଶୂର ଓ ଦରଭଙ୍ଗାର ପ୍ରଭୃତି ଗ୍ରୀଷ୍ମ ସ୍କୁଲମାନଙ୍କୁ ନିମନ୍ତ୍ରିତ ହୋଇ ଭାଷାତତ୍ତ୍ୱ ଉପରେ ଶିକ୍ଷା ଦେଇଥିଲେ । ଆହୁରି ମଧ୍ୟ ସେ ଲିଙ୍ଗୁଇଷ୍ଟିକ କମିଟି, ଭାରତ ସରକାରଙ୍କର ଲିପି ସଂସ୍କରଣ କମିଟି ତଥା ଭାରତର ଧ୍ୱନିବିଜ୍ଞାନ କମିଟିର ସଭ୍ୟ ଥିଲେ । ଏଭଳି ଜଣେ ସାହିତ୍ୟିକ, ସୁବକ୍ତା, ପ୍ରାବନ୍ଧିକ, ଧ୍ୱନିତତ୍ତ୍ୱବିତ୍ ଗୋଲକ ବିହାରୀ ଧଳ ଗୁରୁକୁଳରେ ଅବସ୍ଥାପିତ ଥିବା ସମୟରେ ୧୯୭୪ ମସିହା ଜୁନ୍ ମାସରେ ଇହଧାମ ତ୍ୟାଗ କଲେ ।

## ଗୋପବନ୍ଧୁ ଦାସ .

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ଯଥାର୍ଥରେ ଥିଲେ ଉତ୍କଳର ଗୋଟିଏ ବହୁମୂଲ୍ୟ ମଣି । ସେ ଏକାଧାରରେ ଜଣେ କବି, ନେତା, ବାଗ୍ମୀ, ଦେଶସେବକ,

ସଙ୍ଗଠକ ତଥା ବିପ୍ଳବୀ ଭାବେ ନିଜ ଅସୀମ ପ୍ରତିଭାର ପରିଚୟ ଦେଇଛନ୍ତି । ବାସ୍ତବରେ ସେ ହେଉଛନ୍ତି ଓଡ଼ିଆ ଜାତିର ଗର୍ବ ଓ ଗୌରବ । ୧୮୭୭ ମସିହା ଅକ୍ଟୋବର ମାସ ୯ ତାରିଖରେ ପୁରୀ ଜିଲ୍ଲାର ସତ୍ୟବାଦୀ ନିକଟସ୍ଥ ସୁଆଣ୍ଡୋ ଗ୍ରାମରେ ତାଙ୍କର ଜନ୍ମ । ତାଙ୍କର ପିତାଙ୍କ ନାମ ଦୈତାରୀ ଦାସ ଓ ମାତା ସ୍ୱର୍ଣ୍ଣମୟୀ ଦେବୀ ଥିଲେ । ୧୮୯୯ ମସିହାରେ ପୁରୀ ଜିଲ୍ଲା ସ୍କୁଲରୁ ମାଟ୍ରିକ ପାଶ୍‌କରି ଗୋପବନ୍ଧୁ ରେଭେନ୍‌ସା କଲେଜରେ ପଢ଼ୁଥିବା ବେଳେ ତାଙ୍କର ଜନସେବା ପ୍ରତି ଆଗ୍ରହ ସୃଷ୍ଟି ହୋଇଥିଲା ।

ଶ୍ରେଣୀର ଗରିବ ଓ ଦୁଃସ୍ଥ ଛାତ୍ରମାନଙ୍କୁ ସାହାଯ୍ୟ କରିବା ପାଇଁ ସେ ବନ୍ଧୁ ବ୍ରଜସୁନ୍ଦର ଦାସ ଓ ଆଚାର୍ଯ୍ୟ ହରିହରଙ୍କ ସହିତ ବୁଲି ପାଣ୍ଠି ସଂଗ୍ରହ କରୁଥିଲେ । ୧୯୦୨ ମସିହାରେ ଗୋପବନ୍ଧୁ ଏଫ୍.ଏ. ପାଶ କଲେ ଏବଂ ବ୍ରହ୍ମପୁରଠାରେ ନବନିର୍ମିତ ଉତ୍କଳ ସମ୍ମିଳନୀରେ ଯୋଗଦେଲେ । ୧୯୦୪ ମସିହାରେ ସେ ବି. ଏ. ପାଶ୍ କରିବାର ଖବର ପାଇବାମାତ୍ରେ ତାଙ୍କର ପୁତ୍ରର ମୃତ୍ୟୁ ଏହି ଆନନ୍ଦର ମୁହୂର୍ତ୍ତକୁ ଧୋଇ ନେଇଥିଲା । "ବନ୍ୟା ମରୁଡ଼ି ସମୟରେ ଉତ୍କଳ ଜନତାଙ୍କୁ ସେବା କରିବାରେ ତାଙ୍କ ଜୀବନ ଥିଲା ଉତ୍ସର୍ଗୀକୃତ । କଲିକତାରୁ ଆଇନ ପରୀକ୍ଷା ଦେଇ କଟକରେ ଥିବାବେଳେ ଏକଦା ପରୀକ୍ଷାରେ କୃତକାର୍ଯ୍ୟ ହେବାର ସମ୍ବାଦ ଶୁଣିବା ସଙ୍ଗେ ସଙ୍ଗେ ପତ୍ନୀଙ୍କର ଅକାଳ ବିୟୋଗ ବାର୍ତ୍ତା ମଧ୍ୟ ପାଇଥିଲେ । ୧୯୦୨ ମସିହାରେ ଗୋପବନ୍ଧୁ, ଆଚାର୍ଯ୍ୟ ହରିହର ଓ ପଣ୍ଡିତ ନୀଳକଣ୍ଠଙ୍କ ସହିତ ଗାଁ ଗାଁ ବୁଲି ସ୍ୱଦେଶ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିଥିଲେ ।

ସେ ଜଣେ ସଂଗ୍ରାମୀ ବ୍ୟକ୍ତିଥିଲେ । କର୍ମମୟ ଜୀବନରେ ସେ ନୀଳଗିରି ହାଇସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱ ନେଲେ ଏବଂ ବହୁ ସ୍ଥାନରେ ଓକିଲାତି କରିଥିଲେ ହେଁ ତାହା ତାଙ୍କୁ ସନ୍ତୁଷ୍ଟ କରିପାରିନଥିଲା । ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀ ଅଧିବେଶନରେ ସେ ଓଜସ୍ୱିନୀ ଭାଷଣ ଦେଇଥିଲେ । ୧୯୦୯ ମସିହାରେ ସେ ସାକ୍ଷୀ ଗୋପାଳର ବନବିଦ୍ୟାଳୟ ସ୍ଥାପନ କରିଥିଲେ । ଏହି ବିଦ୍ୟାଳୟରେ ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର ଓ ଗୋଦାବରୀଶ ପ୍ରମୁଖ ଶିକ୍ଷକଥିଲେ ।

ସେମାନେ ସମସ୍ତେ ଥିଲେ ଜାତୀୟତାବାଦୀ । ଜାତିର ଉନ୍ନତି ସାଧନ ସମସ୍ତଙ୍କର ଗୋଟିଏ ଲକ୍ଷ୍ୟଥିଲା । ୧୯୧୭ ମସିହାରେ ଗୋପବନ୍ଧୁ ବିହାର-ଓଡ଼ିଶା ବିଧାନସଭାକୁ ଓଡ଼ିଶାର ପୌରସଂସ୍ଥା ଗୁଡ଼ିକର ପ୍ରତିନିଧିଭାବେ ଯାଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ଓଡ଼ିଆମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ, ସ୍ଥାୟୀବନ୍ୟା ନିରୋଧ, ଲବଣ ଆମଦାନୀ ଉପରୁ କଟକଣା ଓ ଶୁଳ୍କ ଲୋପ ଏବଂ ସତ୍ୟବାଦୀ ବନବିଦ୍ୟାଳୟ ଢାଞ୍ଚାରେ ଓଡ଼ିଶା ସାରା ଶିକ୍ଷା ପ୍ରସାର କରିବା ପାଇଁ ଦାବୀ ଉପସ୍ଥାପନ କରିଥିଲେ । ୧୯୧୭ ରୁ ୧୯୨୦ ମସିହା ପର୍ଯ୍ୟନ୍ତ ଗୋପବନ୍ଧୁ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ । ବହୁ ସରକାରୀ ଓ ବେସରକାରୀ ସଂସ୍ଥା ସହିତ ତାଙ୍କର ସମ୍ପର୍କଥିଲା ।

୧୯୧୫ ମସିହାରେ ଓଡ଼ିଆ ସାହିତ୍ୟର ବିକାଶ ଲାଗି ସାକ୍ଷୀଗୋପାଳରୁ ସତ୍ୟବାଦୀ ନାମକ ପତ୍ରିକା ପ୍ରକାଶ କଲେ । ୧୯୧୯ ମସିହାରେ ତାଙ୍କ ସମ୍ପାଦନାରେ ସାପ୍ତାହିକ 'ସମାଜ' ଆତ୍ମ ପ୍ରକାଶ କଲା । ଓଡ଼ିଶାର ଶିକ୍ଷା, ଭାଷା ଓ ସଂସ୍କୃତିର ବିକାଶ ଲାଗି ଗୋପବନ୍ଧୁ ସିଂହଭୂମି, ଭୂମିଝର, ତରଲା, ଚିକାଲ, କଲିକତା ପ୍ରଭୃତି ଅଞ୍ଚଳରେ ଓଡ଼ିଆ ସ୍କୁଲମାନ ପ୍ରତିଷ୍ଠା କରିଥିଲେ । ୧୯୨୦ ମସିହାରେ ଓଡ଼ିଶାରେ ପ୍ରଥମେ ଗଠିତ ହୋଇଥିବା ପ୍ରଦେଶ କଂଗ୍ରେସ କମିଟିର ସଭାପତି ଭାବେ ସେ ନିର୍ବାଚିତ ହେଲେ । ଗୋପବନ୍ଧୁ ଅସହଯୋଗ ଆନ୍ଦୋଳନରେ ପୂର୍ଣ୍ଣପ୍ରାଣରେ ଯୋଗଦେଇ ଇଂରେଜ ସରକାରଙ୍କର କ୍ରୁଦ୍ଧ ଦୃଷ୍ଟିରେ ପଡ଼ିଥିଲେ । ରାଜଦ୍ରୋହ ଅପରାଧରେ ତାଙ୍କୁ ୧୯୨୨ ମସିହା ଜୁନ୍‌ଠାରୁ ୧୯୨୪ ମସିହା ଜୁନ ପର୍ଯ୍ୟନ୍ତ ଦୁଇବର୍ଷ କାରାଦଣ୍ଡ ଭୋଗିବାକୁ ପଡ଼ିଥିଲା । ଏଥିପାଇଁ କାରାଦଣ୍ଡକୁ ସେ ପବିତ୍ର ପ୍ରଭୁପ୍ରସାଦ ଭାବେ ପ୍ରକାଶ କରିଥିଲେ ।

"ମିଳେ ଯଦି କାହାଭାଗ୍ୟେ କାରାବାସ

କାର ନୁହଇଁ ସେ ପବିତ୍ର ପ୍ରଭାସ ।"

ଗୋପବନ୍ଧୁ ଜଣେ ଜାତୀୟତାବାଦୀ ନେତା ଥିଲେ ତଦନୁରୂପ ଜଣେ କବି, ସାହିତ୍ୟିକ ଓ ପ୍ରାବନ୍ଧିକ ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ଜାତିର ଉନ୍ନତି ପାଇଁ ସହଜ, ସରଳ ଭାଷାରେ କବିତା ଲେଖି ଅତ୍ୟନ୍ତ ଲୋକପ୍ରିୟ ହେବାରେ ସେ ବୋଧହୁଏ ଅଗ୍ରଗଣ୍ୟ । ତାଙ୍କର କବିତା ପୁସ୍ତକ ଗୁଡ଼ିକ ହେଉଛି ଧର୍ମପଦ, ବନ୍ଦୀର ଆତ୍ମକଥା, କାରାକବିତା, ଅବକାଶ ଚିନ୍ତା, ଗୋମାହାତ୍ମ୍ୟ, ନଚିକେତା ଉପାଖ୍ୟାନ । ଜାତୀୟ ଜୀବନ ଗଠନ ପାଇଁ ଏବଂ ଜାତିକୁ ଯଥାସମ୍ଭବ ଦିଗ୍‌ଦର୍ଶନ ଦେବାପାଇଁ ତାଙ୍କ ସାହିତ୍ୟର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ପଦ୍ୟ ସାହିତ୍ୟ ପରି ଗଦ୍ୟ ସାହିତ୍ୟର ସ୍ରଷ୍ଟା ଭାବେ ସେ ବେଶ ପରିଚିତ । ଭାଷା ଭିତ୍ତିରେ ପ୍ରଦେଶ ଗଠନ ପାଇଁ ସେ ଅନେକ ପ୍ରବନ୍ଧ ପ୍ରକାଶ କରିଥିଲେ ।

ଭାଷା ଓ ଜାତୀୟତା ତନ୍ମଧ୍ୟରୁ ଅନ୍ୟତମ । ଦେଶ, ଭାଷା, ଜାତୀୟ ସାହିତ୍ୟ, ଜାତୀୟ ଜୀବନ ସମ୍ପର୍କରେ ସେ ଯାହା ଚିନ୍ତା କରୁଥିଲେ ତାହାକୁ ଗଦ୍ୟ ରୂପରେ ଦେଉଥିଲେ । "ସତ୍ୟବାଦୀ"ର ବିଭିନ୍ନ ସମ୍ପାଦକୀୟରେ ତାଙ୍କର ପ୍ରାବନ୍ଧିକ ପ୍ରତିଭାର ପରିଚୟ ମିଳେ । ସତ୍ୟବାଦୀର ପ୍ରାଣପ୍ରତିଷ୍ଠାତା ଜାତିପ୍ରାଣକବି ଜାତିର ଅଭିବୃଦ୍ଧି ପାଇଁ ସର୍ବସ୍ୱ ତ୍ୟାଗକରି ୧୯୨୮ ମସିହା ଜୁନ୍ ୧୭ ତାରିଖରେ ପରଲୋକ ଗମନ କଲେ ।

## ଗୋଲକ ବିହାରୀ ବାନାର୍ଜୀ :

ଜଣେ ପ୍ରସିଦ୍ଧ ବତ୍ସଳ ଅଧ୍ୟାପକ ତଥା ଶିକ୍ଷାବିତ୍ ଭାବେ ଗୋଲକ ବିହାରୀ ବାନାର୍ଜୀ ବେଶ ଜଣାଶୁଣା । ଏମ୍. ଏସ୍. ସି. ପାଶ କରି ସେ ରେଭେନ୍‌ସା କଲେଜରେ ପଦାର୍ଥ ବିଜ୍ଞାନର ଅଧ୍ୟାପକଭାବେ ଯୋଗଦେଲେ ଏବଂ ଏହି କଲେଜରେ ଅଧକ୍ଷ ଥିବାବେଳେ ତାଙ୍କର ମୃତ୍ୟୁ ହୋଇଥିଲା । ସେ କର୍ତ୍ତବ୍ୟନିଷ୍ଠ, ଏବଂ ସମୟାନୁବର୍ତ୍ତୀ ଥିଲେ । ତାଙ୍କ କଡ଼ା ନୀତିନିୟମ ରେଭେନ୍‌ସା କଲେଜରେ ଗୋଟାଏ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲା ।

ଯାହା ମତ ସେଥିରୁ ସେ ଟିକେ ହେଲେ ଟଳିକୁ ଘୁଞ୍ଚୁ ନଥିଲେ । ଆଇନ୍ ନିକଟରେ ଭାଇ, ବନ୍ଧୁ ତଥା ମନ୍ତ୍ରୀଙ୍କର କଥାକୁ ସେ ପ୍ରତ୍ୟାଖ୍ୟାନ କରି ଦେଉଥିଲେ । ଦକ୍ଷ ପରିଚାଳନା ଯୋଗୁ ସମ୍ବଲପୁର ଗଙ୍ଗାଧର ମେହେର କଲେଜ ଏବଂ ସାମନ୍ତ ଚନ୍ଦ୍ର ଶେଖର କଲେଜ ପୁରୀର ଅଧ୍ୟକ୍ଷ ଭାବେ ସେ କିଛି ଦିନ କାମ କରିଥିଲେ । ତାଙ୍କର କଠୋର ମତ ଓ ଆଦର୍ଶ ଯୋଗୁ ଅନେକ ତାଙ୍କୁ ସମାଲୋଚନା କରୁଥିଲେ, ଭୁଲ୍ ବୁଝୁଥିଲେ ଏବଂ ଅନେକଙ୍କ ସହିତ ସମ୍ପର୍କ ମଧ୍ୟ କଟିଯାଇଥିଲା । କିନ୍ତୁ ସେଥିପ୍ରତି ସେ ଭ୍ରୂକ୍ଷେପ କରୁନଥିଲେ ।

## ଗଣେଶ ପ୍ରସାଦ ଭଗତ :

ଗଣେଶ ପ୍ରସାଦ ଭଗତ କଟକର କଳା ଓ ସଂସ୍କୃତିର ଜଣେ ପ୍ରଧାନ ପୃଷ୍ଠ-ପୋଷକ ଥିଲେ । ତାଙ୍କ ପିତାଙ୍କ ନାମ ବଳି ଭଗତ । କଟକର ଯାତ୍ରାକୁ ବଞ୍ଚାଇ ରଖିବାପାଇଁ ତାଙ୍କର ଉଦ୍ୟମ ଅପ୍ରତିହତ ଥିଲା । ସେ ଅନେକ ଦିନ ପର୍ଯ୍ୟନ୍ତ କଟକ ମ୍ୟୁନିସପାଲିଟିର କାଉନ୍‌ସିଲର ଥିଲେ । ଶିଳ୍ପିଗୋଷ୍ଠୀକୁ ସକ୍ରିୟ କରିବାପାଇଁ ସେ ବହୁ ସାହାଯ୍ୟ କରିଥିଲେ । ତାଙ୍କ ନାମରେ ଭଗତଙ୍କ ସ୍ତ୍ରୀ ଏକ ଛାତ୍ରାବାସ ପ୍ରତିଷ୍ଠା କରିଥିଲେ । ୧୯୫୪ ମସିହା ସେପ୍‌ଟେମ୍ବର ମାସ ୨୪ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ଗୋପାଳ ଚନ୍ଦ୍ର ମିଶ୍ର :

ଡଃ ଗୋପାଳ ଚନ୍ଦ୍ର ମିଶ୍ର ଜଣେ ବିଜ୍ଞବର, ସୁସାହିତ୍ୟିକ ଓ ପ୍ରାବନ୍ଧିକ ଭାବେ ପରିଚିତ । ସେ ୧୯୨୫ ମସିହାରେ ରଣପୁରରେ ଜନ୍ମଗ୍ରହଣ କରିଥିଲେ । କଟକର କଲ୍ୟାଣ ନଗରରେ ରହି ସେ ରେଭେନ୍‌ସା କଲେଜରେ ଅଧ୍ୟୟନ କଲେ । ସେ ରେଭେନ୍‌ସା କଲେଜରୁ ଏମ୍. ଏ ପାଶ୍ କରିଥିଲେ । ରଣପୁର ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗଦେଇ ଏହି ଆନ୍ଦୋଳନକୁ ଫଳବତୀ କରାଇବାରେ ସେ ବହୁ ଉଦ୍ୟମ କଲେ । ପରେ ରଣପୁର ଷ୍ଟେଟର କିଛିଦିନ ପ୍ରଧାନମନ୍ତ୍ରୀ ହୋଇଥିଲେ ।

ଜଣେ ଶିକ୍ଷକ ଭାବେ ସେ ତାଙ୍କର ଚାକିରି ଆରମ୍ଭ କଲେ ଏବଂ ଜଣେ ପ୍ରଫେସର ଭାବେ ଚାକିରିରୁ ଅବସର ନେଲେ । ସେ ବହୁ ଅନୁଷ୍ଠାନରେ ଶିକ୍ଷକତା କରିଥିଲେ । ପରେ ଓଡ଼ିଆ ବିଭାଗର ଅଧ୍ୟାପକ ହୋଇ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ପ୍ରଫେସର ହୋଇ ପାରିଥିଲେ । ସେ ଥିଲେ ଜଣେ ଉଚ୍ଚକୋଟୀର ସାହିତ୍ୟିକ । "ଭାରତୀୟ ସାହିତ୍ୟର ଇତିହାସ" ତାଙ୍କର ଏକ ବିଶିଷ୍ଟ କୃତି । ତାଙ୍କର ସାହିତ୍ୟିକ ସାଧନାର ଆରମ୍ଭ ହୋଇଥିଲା କବିତାରୁ । କାକଳୀ, ପାଟଶାଣି, ସେପାରେ ପ୍ରିୟାର ଗାଆଁ, ଖରୁ ଯୂଥିକା, ବିଦ୍ରୋହୀ ଦିବାକର, କପୋତ ଡେଣାର ଛାଇ ପ୍ରଭୃତି ମିଶ୍ରଙ୍କର ଲୋକପ୍ରିୟ କବିତା ଗ୍ରନ୍ଥ । ଟଲଷ୍ଟୟ ଓ ଗାନ୍ଧୀ ସମ୍ବାଦପତ୍ରେ, ଊନବିଂଶ ଶତାବ୍ଦୀର ଓଡ଼ିଶା ଓ ଆଧୁନିକ ସାହିତ୍ୟର ଗତିପଥ ପ୍ରଭୃତି ତାଙ୍କର ଆଲୋଚନାଧର୍ମୀ ଗଦ୍ୟ ରଚନା ମଧ୍ୟରେ ଅନ୍ତର୍ଭୁକ୍ତ ।

ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ସମ୍ପର୍କରେ ଇଂରେଜୀରେ ସେ ବହୁ ପ୍ରବନ୍ଧ ରଚନା କରିଥିଲେ । ସୋଭିଏତ୍ ପଦାବଳୀ, ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଜୀବନୀ, ଗୋପବନ୍ଧୁଙ୍କ ସାହିତ୍ୟ ଓ ଜୀବନ ଦର୍ଶନ ତାଙ୍କର ଗୋଟିଏ ଗୋଟିଏ ଗବେଷଣାଧର୍ମୀ ପୁସ୍ତକ । ସେ ୧୯୯୦ ମସିହାରେ ମୃତ୍ୟୁବରଣ କରିଥିଲେ ।

## ଗୋପାଳବଲ୍ଲଭ ଦାସ :

କୁଳବୃଦ୍ଧ ମଧୁସୂଦନ ଦାସଙ୍କର କନିଷ୍ଠଭ୍ରାତା ଗୋପାଳବଲ୍ଲଭ ଦାସ କଟକ ଜିଲ୍ଲାର ସତ୍ୟଭାମାପୁରରେ ୧୮୬୦ ମସିହାରେ ଜନ୍ମ ହୋଇଥିଲେ । ମଧୁସୂଦନଙ୍କ ଅନୁରୂପ ସେ ଥିଲେ ଦେଶପ୍ରାଣ ଓ ଓଡ଼ିଶାର ଜାତୀୟ ଉନ୍ନତିର ଅଗ୍ରଦୂତ । କଟକରେ ସେ ତାଙ୍କ ପରିବାର ସହିତ ସ୍ଥାୟୀ ଭାବରେ ଅବସ୍ଥାନ କରୁଥିଲେ । ସେ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠାତାମାନଙ୍କ ମଧ୍ୟରୁ ଥିଲେ ଏକତମ । ଜମିଦାର ପରିବାରରେ ତାଙ୍କର ଜନ୍ମ ସତ୍ତ୍ୱେ କିନ୍ତୁ ଉତ୍କଳର ସର୍ବାଙ୍ଗୀନ ଉନ୍ନତି ପାଇଁ ତାଙ୍କ ଜୀବନ ଉତ୍ସର୍ଗୀକୃତ ଥିଲା । ସେ ଓଡ଼ିଶାର ଜଣେ କବି ଓ ଔପନ୍ୟାସିକ ଭାବେ ପରିଚିତ । ସେ 'ଭୀମାଭୂୟାଁ' ନାମକ ଉପନ୍ୟାସ ରଚନା କରି ଓଡ଼ିଶାର ଭୂୟାଁ ନାମକ ଆଦିବାସୀ ସମ୍ପ୍ରଦାୟର ଜୀବନଚରିତ ନିଖୁଣଭାବେ ଉପସ୍ଥାପନ କରି ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଛନ୍ତି । ତାଙ୍କର କବିତା ପୁସ୍ତକମାନଙ୍କ ମଧ୍ୟରେ କବିତାମଞ୍ଜୁଷା, ପ୍ରୀତିସୁଧାକର, ଚୌପଦୀ ଚମ୍ପୂ ଆଦି ପ୍ରଧାନ । ସେ ୧୯୧୪ ମସିହାରେ ମୃତ୍ୟୁବରଣ କଲେ ।

## ଗୋପାଳ ମହାରଣା :

ଓଡ଼ିଶା ତଥା ସର୍ବଭାରତୀୟ ସ୍ତରରେ ଜଣେ ଦକ୍ଷ କାଠ ଶିଳ୍ପୀ ଭାବରେ ସେ ପ୍ରସିଦ୍ଧ । ସେ ୧୯୧୩ ମସିହାରେ କଟକର ବାଲୁବଜାର ସାହିରେ ଜନ୍ମଗ୍ରହଣ କରିଥିଲେ । ସେ ଖୁବ୍ ଗରିବ ଥିଲେ । କିନ୍ତୁ ତାଙ୍କ ଶିଳ୍ପ କଳା ଓ କାଠ ଖୋଦେଇ ଥିଲା ଖୁବ୍ ଚମତ୍କାର । କାଠରେ ସେ ବିଭିନ୍ନ କବିତା ମଧ୍ୟ ଖୋଦେଇ କରୁଥିଲେ । କାଠ ସାମଗ୍ରୀ ବିକ୍ରୟ କରି ସେ ଜୀବିକା ନିର୍ବାହ କରୁଥିଲେ । ସେ ଓଡ଼ିଶାର ଜଙ୍ଗଲ ନିଗମରେ କାଷ୍ଠଖୋଦନ ଗୁରୁଭାବେ କାମକରିଥିଲେ । ତାଙ୍କର କାଠ ଶିଳ୍ପ କାର୍ଯ୍ୟ ଭାରତ ବାହାରେ ମଧ୍ୟ ପ୍ରସିଦ୍ଧିଲାଭ କରିଥିଲା । ଜର୍ମାନୀର ଯାଦୁଘରେ ତାଙ୍କର ଅନେକ ଶିଳ୍ପ ଖୋଦେଇ ସଂରକ୍ଷିତ । ସେ ୧୯୮୮ ମସିହା ଅଗଷ୍ଟ ୧୬ ତାରିଖରେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

## ଗୋପାଳ ଚନ୍ଦ୍ର ପ୍ରହରାଜ :

କଟକର ସ୍ମରଣୀୟ ପ୍ରତିଭାମାନଙ୍କ ମଧ୍ୟରୁ ରାୟ ବାହାଦୂର ଗୋପାଳଚନ୍ଦ୍ର ପ୍ରହରାଜଙ୍କ ନାମ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ଜଣେ ବିଶିଷ୍ଟ ଆଇନଜୀବି ଓ ବଳିଷ୍ଠ ସାହିତ୍ୟିକ ଭାବେ ସେ ସ୍ୱାଗତଯୋଗ୍ୟ । ୧୮୭୨ ମସିହାରେ କଟକ ଜିଲ୍ଲାର ସିଦ୍ଧେଶ୍ୱର-ପୁରରେ ତାଙ୍କର ଜନ୍ମ । ୧୮୯୧ ମସିହାରେ ଏଣ୍ଟ୍ରାନ୍ସ ପାଶ କରି ସେ ୧୮୯୫ ମସିହାରେ ରେଭେନ୍ସା କଲେଜରେ ଏଫ୍. ଏ ପଢ଼ିଲେ । ଶିବପୁରର ଇଞ୍ଜିନିୟରିଂ କଲେଜରେ ନାମ ଲେଖାଇ ଥିଲେ ମଧ୍ୟ ଏହା ତାଙ୍କୁ ସନ୍ତୁଷ୍ଟ କରିପାରି ନଥିଲା ।

ତାହାପରେ ସେ ୧୮୯୮ ମସିହାରେ ବି. ଏ. ପାଶ କଲେ । ରେଭେନ୍ସା କଲେଜର ସଂସ୍କୃତ ବିଭାଗ ଅଧ୍ୟାପକ ଭାବେ ନିଯୁକ୍ତ ପାଇ ସେ କିଛିଦିନ ଚାକିରି କଲେ । ଏଥିରେ ମଧ୍ୟ ସେ ଖୁସୀ ହୋଇ ପାରିଲେନି । ୧୯୦୨ ମସିହାରେ ବି. ଏଲ୍. ପାଶ କରି ସେ ଆଇନ ବ୍ୟବସାୟ ଆରମ୍ଭ କଲେ । ଓକିଲାତିକୁ ସେ ଜୀବିକାର୍ଜନର ପ୍ରଧାନ ପନ୍ଥାଭାବରେ ଗ୍ରହଣ କରିନେଇଥିଲେ ସତ କିନ୍ତୁ ସାହିତ୍ୟସାଧନା ଥିଲା ତାଙ୍କ ଜୀବନର ପରମବ୍ରତ । "ଲୋକ କାହାଣୀ ସଂଗ୍ରହ ହେଉଛି ତାଙ୍କ ପ୍ରତିଭାର ଆଦ୍ୟ ପରିଚୟ ।

ଓଡ଼ିଶାର ଜଣେ ସଫଳ ଗଦ୍ୟ ଶିଳ୍ପୀ ଭାବରେ ସେ ଅପ୍ରତିଦ୍ୱନ୍ଦୀ । ରମ୍ୟ ରଚନା, ପ୍ରବନ୍ଧ ଓ ଆଲୋଚନା ରଚନା ହିଁ ତାଙ୍କର ସାହିତ୍ୟ ସୃଷ୍ଟିର ସର୍ବଶ୍ରେଷ୍ଠ ଦିଗ । ରାଜନୀତି, ଧର୍ମ, ସଂସ୍କୃତି, ଶିକ୍ଷା, ବ୍ୟବସାୟ, ବିଚାର ପଦ୍ଧତି, ନିର୍ବାଚନ ରୀତି ଆଦି ବିଭିନ୍ନ କଥାକୁ ସେ ସରଳ ଭାଷାରେ ଅଥଚ ଶାଣିତ, ତାତ୍ପର୍ଯ୍ୟକ, ବ୍ୟଙ୍ଗାତ୍ମକ ଶୈଳୀରେ ପ୍ରକାଶ କରି ଜଣେ ସଫଳ ତଥା ସାର୍ଥକଧର୍ମୀ ଗଦ୍ୟ ଶିଳ୍ପୀର ଗୌରବ ଅର୍ଜନ କରିଛନ୍ତି । ତାଙ୍କର ଭାଗବତ ଟୁଙ୍ଗୀରେ ସନ୍ଧ୍ୟା, ବାଇମହାନ୍ତି ପାଞ୍ଜି । ଆମ ଘରର ହାଲଚାଲ, ନନାଙ୍କ ବସ୍ତାନି, ବାଇ ନାମଙ୍କ ବୁଜୁଲି, ଦୁନିଆଁର ରୀତି ଏ ଏବଂ ମିଆଁ ସାହେବଙ୍କ ରୋଜାନାମଚା ପ୍ରଭୃତି ବିଶିଷ୍ଟ ସାହିତ୍ୟ କୃତି ମଧ୍ୟରେ ଅନ୍ତର୍ଭୁକ୍ତ । 'ଧୋରେ ବାୟା ଧୋ' ତପାୟ ଶିଶୁସାହିତ୍ୟ ପ୍ରତିଭାର ବଳିଷ୍ଠତମ ଦିଗ । ଜଣେ ଲୋକସାହିତ୍ୟର ସ୍ରଷ୍ଟା ଭାବେ ସେ ଅନେକ ଲୋକ କାହାଣୀ ଓ ଢଗ ଢମାଳୀକୁ ସଂକଳିତ କରିଛନ୍ତି । ତାଙ୍କ ଦ୍ୱାରା ସୃଷ୍ଟ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ପ୍ରହରାଜଙ୍କର ପ୍ରଜ୍ଞାତପୂର୍ଣ୍ଣ ପ୍ରତିଭାର ସର୍ବଶ୍ରେଷ୍ଠ ଅବଦାନ ।

ଏଭଳି ଏକ ଗ୍ରନ୍ଥ ଓଡ଼ିଆ ସାହିତ୍ୟରେ ବିରଳ । ଏହାର ରଚୟିତା ଭାବେ ସେ ନିଶ୍ଚିତ ଭାବେ ଓଡ଼ିଆ ଜାତିର ଗର୍ବ ଓ ଗୌରବ ତଥା ସର୍ବମାନ୍ୟ ଆସନର ଅଧିକାରୀ । ସାହିତ୍ୟଗତ ଅଶୁଦ୍ଧି ପ୍ରତି ସେ ବେଶ ସଚେତନ ଥିଲେ । ସେ ଥିଲେ ସତ୍ୟଧର୍ମୀ । ନିର୍ଭୀକ ଭାବେ ସତ୍ୟ ପ୍ରକାଶ ଥିଲା ପ୍ରହରାଜଙ୍କ ସାହିତ୍ୟ ସୃଷ୍ଟିର ଅନନ୍ୟତମ ଦିଗ । ତାଙ୍କର ପ୍ରବନ୍ଧମାନଙ୍କୁ ମୁଖ୍ୟତଃ ରମ୍ୟରଚନା ଶ୍ରେଣୀର ଅନ୍ତର୍ଭୁକ୍ତ କରାଯାଇଥାଏ । ସେ ଉତ୍କଳ ସାହିତ୍ୟ ସମାଜର ସଭାପତି ଥିଲେ ଏବଂ ଉତ୍କଳ ସାହିତ୍ୟରେ ତାଙ୍କର ଅନେକ ଲେଖା ପ୍ରକାଶ ପାଇଥିଲା । ସେ ଇଂରେଜ ସରକାରଙ୍କ ଠାରୁ ରାୟ ବାହାଦୁର ଉପାଧି ଲାଭ କରିଥିଲେ । ଏପରି ମହାନ୍ ବ୍ୟକ୍ତିତ୍ୱର ଅବସାନ ଘଟିଲା ୧୯୪୫ ମସିହାରେ ।

## ଗଦାଧର ଦତ୍ତ :

ଜଣେ ସ୍ୱାଧୀନତା ସଂଗ୍ରାମୀ ଏବଂ ବିଶିଷ୍ଟ ନେତା ଭାବେ ଗଦାଧର ଦତ୍ତ ଲୋକପ୍ରିୟ । ସେ ପ୍ରଥମେ ସମବାୟ ବିଭାଗରେ ଚାକିରି କରିଥିଲେ । ୧୯୨୪ ମସିହାରେ

ସମବାୟ ବିଭାଗରୁ ଇସ୍ତଫା ଦେଇ ସେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ। ୧୯୩୦ ଓ ୧୯୩୨ ମସିହାରେ ସେ ଦୁଇଥର ବନ୍ଦୀ ହୋଇ କଟକ ଓ ପାଟଣା ଜେଲରେ ରହିଲେ। ସେ ଜଣେ କଂଗ୍ରେସର ଅଗ୍ରଣୀନେତା ଥିଲେ ଏବଂ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ।

## ଗୋଦାବରୀଶ ମହାପାତ୍ର :

ଗୋଦାବରୀଶ ମହାପାତ୍ର ଥିଲେ ସତ୍ୟବାଦୀ ଗୋଷ୍ଠୀର ସର୍ବଶ୍ରେଷ୍ଠ ପରି-ପ୍ରକାଶ। ଜଣେ ସ୍ୱାଧୀନତା ସଂଗ୍ରାମୀ, କବି, ସାମ୍ବାଦିକ, ସମାଲୋଚକ, ସାହିତ୍ୟିକ, ଗାଳ୍ପିକ, ଔପନ୍ୟାସିକ ଓ ଶିଶୁ ସାହିତ୍ୟିକ ଭାବେ ସେ ବହୁମୁଖୀ ପ୍ରତିଭାର ଅଧିକାରୀ। ୧୮୯୮ ମସିହା ଅକ୍ଟୋବର ମାସରେ ପୁରୀ ଜିଲ୍ଲାର ବାଣପୁର ନିକଟରେ ସେ ଜନ୍ମ ଗ୍ରହଣ କରିଥିଲେ। ଛାତ୍ର ଜୀବନରୁ ସେ ଥିଲେ ବିପ୍ଳବୀ।

ସତ୍ୟବାଦୀ ବନ ବିଦ୍ୟାଳୟରେ ପଢ଼ୁଥିବା ବେଳେ ଗୋଦାବରୀଶ ୧୯୨୧ ମସିହାରେ ଅସହଯୋଗ ଆନ୍ଦୋଳନରେ ଝାସ ଦେଇଥିଲେ। ପୂର୍ବ ୫୦ ବର୍ଷରୁ ଊର୍ଦ୍ଧ୍ୱ କାଳଧରି ସେ ଲେଖନୀ ଚାଳନା କରିଥିଲେ। ତାଙ୍କ ଜୀବନୀ ଯଥାର୍ଥରେ ହେଉଛି ଏ ଜାତିର ଅର୍ଦ୍ଧଶତାବ୍ଦୀର ଇତିହାସ। ତାଙ୍କ ଲେଖାରେ ତିର୍କିଶାଳ ଠାରୁ ଢେଙ୍କାନାଳ ପର୍ଯ୍ୟନ୍ତ ପ୍ରତ୍ୟେକ ବିଷୟ ସ୍ଥାନ ଲାଭ କରିଥିଲା। ଓଡ଼ିଆ ସାହିତ୍ୟର ସର୍ବପ୍ରଥମ ସମାଲୋଚନାଧର୍ମୀ ପତ୍ରିକା ନିଆଁଖୁଣ୍ଟାର ସେ ଥିଲେ ପ୍ରତିଷ୍ଠାତା ଓ ସମ୍ପାଦକ। ଏହି ପତ୍ରିକାରେ ତତ୍କାଳୀନ ଓଡ଼ିଶାର ସାହିତ୍ୟ, ରାଜନୀତି, ସମାଜ ଓ ସଂସ୍କୃତିର ଘଟଣାମାନ ଶାଣିତ ବ୍ୟଙ୍ଗ, ହାସ୍ୟ ଓ ବିଦ୍ରୂପ ମାଧ୍ୟମରେ ଗଳ୍ପ, କବିତା, ରମ୍ୟରଚନା ଆକାରରେ ପ୍ରକାଶ ପାଇ ଲୋକଜୀବନରେ ଏକ ରୋମାଞ୍ଚମୟ କୌତୂହଳୀ ସୃଷ୍ଟି କରିଥିଲା।

ତାଙ୍କର ପ୍ରଥମ କବିତା ପୁସ୍ତକ 'ବାଣପୁର' ୧୯୧୪ ମସିହାରେ ପ୍ରକାଶିତ ହେଲା। ସେ ଥିଲେ ସର୍ବତୋଭାବେ ଜଣେ ନିର୍ଭୀକ ଓ ସ୍ପଷ୍ଟବାଦୀ ବ୍ୟକ୍ତିତ୍ୱ। ସତ୍ୟବାଦୀ ଗୋଷ୍ଠୀର ସାଧକ ତଥା ଶିକ୍ଷକମାନଙ୍କ ଅନୁରୂପ ଗୋଦାବରୀଶ ମହାପାତ୍ର ଥିଲେ ଜଣେ ଜାତୀୟତାବାଦୀ ଲେଖକ ଓ କବି। ତାଙ୍କର ପ୍ରଥମ କ୍ଷୁଦ୍ରଗଳ୍ପ ମେଲଣ୍ଡିହ ୧୯୨୩ ମସିହାରେ ପ୍ରକାଶିତ ହୋଇଥିଲା। ତାଙ୍କର ଉପନ୍ୟାସମାନଙ୍କ ମଧ୍ୟରେ ରକ୍ତପାତ, ବନ୍ଦୀରମାତ୍ମା, ବିଦ୍ରୋହ ଓ ବୀର ଯୁବକଆଦି ସର୍ବପ୍ରଧାନ। ଏବେ ମଧ ବାଞ୍ଛା, ମାଳମାଷ୍ଟ୍ରାଣୀ ଓ ମୁଁ ହେଲେ ମନ୍ତ୍ରୀ ଥିଲି ଗଳ୍ପ ସଂକଳନରେ ଗୋଦାବରୀଶଙ୍କର ୫୦ରୁ ଊର୍ଦ୍ଧ୍ୱ ଗଳ୍ପ ସ୍ଥାନ ଲାଭ କରିଛି। 'କଣ୍ଟାଫୁଲ' 'ବଙ୍କା ଓ ସିଧା' କବିତା ଗ୍ରନ୍ଥଲାଗି ସେ ଉଭୟ ଓଡ଼ିଆ ସାହିତ୍ୟ ଏକାଡେମୀ ଏବଂ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ।

ପୂର୍ବ ୨୫ ବର୍ଷ ଧରି ନିଆଁଖୁଣ୍ଟାକୁ ସେ ସମ୍ପାଦନା କରିଥିଲେ। ସେ ତତ୍କାଳୀନ ସମୟର ଜଣେ ଶ୍ରେଷ୍ଠ ସାଟାୟରିଷ୍ଟ ଭାବେ ପରିଚିତ। କଟକରେ ସେ

ଅବସ୍ଥାନ କରୁଥିଲେ ଏବଂ ବହୁ ସାହିତ୍ୟିକ ଓ ସାଂସ୍କୃତିକ ସଂସ୍ଥା ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ନିଆଁଖୁଣ୍ଟା ମାଧ୍ୟମରେ ସେ ଯେଉଁ ସମ୍ବାଦ ପରିବେଷଣ କରୁଥିଲେ ତାହା ତତ୍କାଳୀନ ସରକାରୀ କର୍ମଚାରୀ, ମନ୍ତ୍ରୀ, ନେତା, ଶିକ୍ଷକ, ଛାତ୍ର ବ୍ୟବସାୟୀ, ଚୋରବେପାରୀ ଓ ଅପ୍ରମିତ୍ରଙ୍କାରୀ ସମସ୍ତେ ଶରବ୍ୟ ହେଉଥିଲେ । ଓଡ଼ିଆ ଜାତିର ସେ ଯେପରି ଥିଲେ ଜଣେ ଆଦର୍ଶର ଗୌରୀଶଙ୍କର । ସେ ୧୯୬୫ ମସିହାରେ ସ୍ୱର୍ଗାରୋହଣ କରିଥିଲେ ।

## ଗୁରୁଚରଣ ମହାନ୍ତି :

ଗୁରୁଚରଣ ମହାନ୍ତି କଟକର ରେଭେନ୍‌ସା କଲେଜରେ ଅଧ୍ୟୟନ କରିଥିଲେ । ରସାୟନ ବିଜ୍ଞାନରେ କଲିକତା ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଉପାଧି ଲାଭ କରି ସେ ରେଭେନ୍‌ସା କଲେଜର ରସାୟନ ବିଭାଗର ଅଧ୍ୟାପକ ଭାବେ ନିଯୁକ୍ତି ପାଇଲେ । ପରେ ସେ ରିଡ଼ର ଓ ପ୍ରଫେସର ପଦବୀକୁ ଉନ୍ନୀତ ହୋଇ ପାରିଥିଲେ । ସେ ଜଣେ ସ୍ନେହୀ, ପରୋପକାରୀ ଓ ବଦାନ୍ୟ ବ୍ୟକ୍ତିଭାବେ ପରିଚିତ ଥିଲେ । ଜଣେ ଶିକ୍ଷାବିତ୍ ଭାବେ ସେ ସମ୍ବଲପୁର କଲେଜର ନିର୍ମାତା ଏବଂ ବହୁଦିନ ପର୍ଯ୍ୟନ୍ତ ଏହାର ପରିଚାଳନା କମିଟିର ସଭାପତି ଥିଲେ । ଶିକ୍ଷା ବିଭାଗର ବହୁ ସ୍ତରରେ ତାଙ୍କର ଖ୍ୟାତିଥିଲା ଏବଂ ସେ କଟକରେ ପ୍ରାଣତ୍ୟାଗ କଲେ ।

## ଗଙ୍ଗାଧର ଷଡ଼ଙ୍ଗୀ :

ଗଙ୍ଗାଧର ଷଡ଼ଙ୍ଗୀ ଜନ୍ମ ହୁଅନ୍ତି ୧୮୭୩ ମସିହାରେ । ସେ ଜଣେ ନିର୍ଭୀକ ତଥା ସ୍ପଷ୍ଟବାଦୀ ବ୍ୟକ୍ତିତ୍ୱ ଥିଲେ । ସେ ଓଡ଼ିଶାର ପ୍ରଥମ ଓଡ଼ିଆ ବ୍ୟକ୍ତି ଯିଏ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ବାଇବେଲ ଅଧ୍ୟୟନରେ ସେ ବହୁ ସମୟ ଅତିବାହିତ କରୁଥିଲେ ।

## ଗିରିଜା ଶଙ୍କର ରାୟ :

ଗିରିଜା ଶଙ୍କର ରାୟ ଇଂରେଜୀ ବିଭାଗର ଅଧ୍ୟାପକ ଭାବେ ରେଭେନ୍‌ସା କଲେଜରେ ନିଯୁକ୍ତି ପାଇଥିଲେ । ସେ ଅନେକ ଦିନ ପର୍ଯ୍ୟନ୍ତ ସାମନ୍ତଚନ୍ଦ୍ର ଶେଖର କଲେଜ ପୁରୀର ଅଧ୍ୟକ୍ଷ ଭାବେ କାର୍ଯ୍ୟକରି ରେଭେନ୍‌ସା କଲେଜକୁ ପୁଣି ଫେରି ଆସିଲେ । ରେଭେନ୍‌ସା କଲେଜର ପ୍ରଫେସର ଥିବାବେଳେ ସେ କାର୍ଯ୍ୟରୁ ଅବସର ନେଲେ । ତାଙ୍କ ସମୟର ସଫଳବାଦୀ ପ୍ରାବନ୍ଧିକଙ୍କ ମଧ୍ୟରୁ ଗିରିଜାଶଙ୍କର ରାୟ ଥିଲେ ଅନ୍ୟତମ । ତାଙ୍କର ସାରଳା ଭାଷାତତ୍ତ୍ୱ, ରଚନା ବିଚାର ଓ ଓଡ଼ିଆ ନାଟ୍ୟକଳା ପ୍ରଭୃତି ଗୋଟିଏ ଗୋଟିଏ ବହୁମୂଲ୍ୟ ସାହିତ୍ୟ କୃତି ।

## ଜ୍ଞାନୀନ୍ଦ୍ର ବର୍ମା :

ଜ୍ଞାନୀନ୍ଦ୍ର ବର୍ମା ୧୯୧୮ ମସିହାରେ କଟକ ଜିଲ୍ଲାର କୁସୁପୁରରେ ଜନ୍ମଗ୍ରହଣ କରିଥିଲେ । ସେ ଏକାଧାରରେ ଥିଲେ ଜଣେ କବି, ସାମ୍ବାଦିକ ଓ ଐତିହାସିକ ।

ଦୈନିକ ଆଶା, ସମାଜ, କଳିଙ୍ଗ ପ୍ରଭୃତି ସମ୍ବାଦପତ୍ରଗୁଡ଼ିକରେ ସାମ୍ବାଦିକତା କରି ସେ ଜୀବିକା ନିର୍ବାହ କରୁଥିଲେ । କଟକରେ ତାଙ୍କର ଅନେକ ବର୍ଷ କଟିଥିଲା । ଏହିଠାରେ ମଧ୍ୟ ତାଙ୍କ ସାହିତ୍ୟିକ ଜୀବନର ଚରମ ବିକାଶ ଘଟିଥିଲା ।

ତାଙ୍କର କାବ୍ୟ ଓ କାବ୍ୟନାଟିକାଗୁଡ଼ିକ ମଧ୍ୟରେ ବୋଲେଣ୍ଟ୍ରିଟି, କଲେରିର ଫୁଲ, ଏକଗଣି, ମେଘଦୂତ, ଏକ ଶ୍ରେଷ୍ଠ ସହରର କାହାଣୀ, ପ୍ରେମିକାର ମୃତ୍ୟୁ, ଦୁଇଟି ମୂର୍ତ୍ତିର ଜୀବନୀ, ସ୍ୱର୍ଣ୍ଣଯୁଗର ସନ୍ଧ୍ୟା, ସ୍ୱର୍ଗର ଲୋକ, ପ୍ରମିକାର ମୃତ୍ୟୁ ପ୍ରଭୃତି ପ୍ରଧାନ । ନୀଳଘୋଡ଼ା, ଶତାବ୍ଦୀର ସ୍ୱପ୍ନଭଙ୍ଗ, ଅନେକଟି ହୃଦୟର କାହାଣୀ, ଜୀବନ ଛନ୍ଦ ଓ ଭୂମିକା ପ୍ରଭୃତି ତାଙ୍କର ବିଶିଷ୍ଟ ଉପନ୍ୟାସ ଭାବେ ଗ୍ରହଣୀୟ । ରେନାସା ଓ ଡେକାଡେନସ୍‌ର ଏପିକ୍‌ରୁ ତାଙ୍କର ବାସ୍ତବବାଦୀ ଦୃଷ୍ଟିକୋଣର ପରିଚୟ ମିଳେ । ସେ ଅନେକ ମୌଳିକ ଉପନ୍ୟାସ ରଚନା କରିବା ସହିତ ବିଶ୍ୱପ୍ରସିଦ୍ଧ ଏମିଲ୍ ଜୋଲାଙ୍କ ଉପନ୍ୟାସକୁ ଓଡ଼ିଆରେ ଅନୁବାଦ କରିଥିଲେ । କବି ଟି. ଏସ୍. ଇଲିୟଟ, ଏଜରାପାଉଣ୍ଡ ଏବଂ ହୁଇଟ୍ ମେନଙ୍କ କବିତାର ଜଣେ ସଫଳବାଦୀ ଅନୁବାଦକ ଭାବେ ସେ ଲୋକପ୍ରିୟ ହୋଇପାରିଛନ୍ତି ।

## ଗୋବିନ୍ଦ ରଥ :

ଗୋବିନ୍ଦ ରଥ ୧୮୪୮ ମସିହାରେ କଟକ ଜିଲ୍ଲାର ବାଙ୍କୀ ନିକଟସ୍ଥ ପଦ୍ମନାଭପୁରଠାରେ ଜନ୍ମଗ୍ରହଣ କରିଥିଲେ । ବାଙ୍କୀର ଜଣେ ବିଶିଷ୍ଟ ପଣ୍ଡିତ ଭାବେ ସେ ପରିଚିତ । ବହୁ ଗ୍ରନ୍ଥର ସମ୍ପାଦନା ଓ ସଙ୍କଳନ କାର୍ଯ୍ୟରେ ସେ ନିଜକୁ ବିନିଯୋଗ କରିଥିଲେ । ସେ ବହୁତ ଶ୍ରେଷ୍ଠ ବଡ଼ ପୁସ୍ତକର ରଚୟିତା । ତାଙ୍କ ପୁସ୍ତକର ସଂଖ୍ୟା ଦୁଇଶହରୁ ଊର୍ଦ୍ଧ୍ୱ । 'ସତ୍ୟେଶ୍ୱର' ତାଙ୍କର ଏକମାତ୍ର ଗଦ୍ୟ ପୁସ୍ତକ ଯାହା ୧୮୭୫ ମସିହାରେ ଆତ୍ମପ୍ରକାଶ କରିଥିଲା । ତାଙ୍କର ପଦ୍ୟ ସଙ୍କଳନମାନଙ୍କ ମଧ୍ୟରେ କବିତା କଳାପ, କରତାଳ, ମହାମେଳା ଦର୍ଶନ, କୁସୁମ କଳିକା, କଟକନଗରୀ ଓ ଫୁଟର ସାହେବ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ମଧୁସୂଦନଙ୍କ 'ବର୍ଣ୍ଣବୋଧ' ରଚନା ପୂର୍ବରୁ ଗୋବିନ୍ଦ ରଥ 'ବର୍ଣ୍ଣବୋଧକ' ନାମରେ ଏକ ପ୍ରାଥମିକ ସ୍ତରର ପାଠ୍ୟପୁସ୍ତକ ଲେଖିଥିଲେ । ସେ ଜଣେ ସ୍ପଷ୍ଟବାଦୀ ଓ ନିର୍ଭୀକମନା ବ୍ୟକ୍ତିତ୍ୱ ଥିଲେ । ଉତ୍କଳ ସମ୍ମିଳନୀର ଜଣେ ପ୍ରତିଷ୍ଠିତ ସଭ୍ୟଭାବେ ସେ ଏହାର ଅନେକ ଅଧିବେଶନରେ ଯୋଗ ଦେଇଥିଲେ । ୧୯୧୮ ମସିହାରେ ତାଙ୍କର ମୃତ୍ୟୁ ହୋଇଥିଲା ।

## ଗୋପୀନାଥ ମହାନ୍ତି :

ଗୋପୀନାଥ ମହାନ୍ତି ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠିତ ସାହିତ୍ୟିକ । ଓଡ଼ିଶା ଆଡ଼ମିନିଷ୍ଟ୍ରେଟିଭ ସର୍ଭିସରେ ସେ ଯେତେ ଖ୍ୟାତି ଅର୍ଜନ କରିନାହାନ୍ତି ତଦପେକ୍ଷା ଅଧିକ ନାଁ କମେଇଛନ୍ତି ଜଣେ କଥାଶିଳ୍ପୀ, ଔପନ୍ୟାସିକ ଓ ପ୍ରାବନ୍ଧିକ ଭାବରେ । ତ୍ରିକଣ୍ଠ

ତାଙ୍କ ପାଇଁ ଥିଲ ହେବନାହିଁ । ଏକ ଇତିହାସ ପ୍ରସିଦ୍ଧ ସମୟରେ ତାଙ୍କର ଜନ୍ମ । ଦେଶ ବିଶ୍ୱଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଥିବା ବେଳେ ୧୯୧୪ ମସିହା ଅପ୍ରେଲ ମାସ ୨୦ ତାରିଖରେ କଟକ ସହରଠାରୁ ମାତ୍ର ୬ ମାଇଲ ଦୂରରେ ନାଗବାଲି ଗ୍ରାମରେ ଗୋପୀନାଥ ମହାନ୍ତି ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ସୂର୍ଯ୍ୟମଣି ମହାନ୍ତି ଓ ମାତାଙ୍କ ନାମ ଥିଲା ଦୁର୍ଗାବତୀ ଦେବୀ । ବାଲ୍ୟକାଳରୁ ସେ ସାହିତ୍ୟାନୁରାଗୀ ଥିଲେ । ୧୯୩୬ ମସିହାରେ ଗୋପୀନାଥ ଇଂରେଜୀ ସାହିତ୍ୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍. ଏ ପାଶ୍ କରିଥିଲେ । ୧୯୩୯ ମସିହାରେ ସେ ଓଡ଼ିଶା ଆଡ଼ମିନ୍‌ଷ୍ଟ୍ରେଟିଭ ସର୍ଭିସରେ ଯୋଗ ଦେଲେ ।

ଜୟପୁର ଓ ମାଲକାନାଗିରି ପ୍ରଭୃତି ଅଞ୍ଚଳରେ ସେ ତହସିଲ୍‌ଦାର ଥିଲେ । ଜୀବନର ଅର୍ଦ୍ଧାଧିକ ସମୟ ତାଙ୍କର କଟିଥିଲା ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ । ଗୋପୀନାଥ ରେଭେନ୍‌ସା କଲେଜରେ ପଢ଼ୁଥିବା ବେଳେ ଲେଖାଲେଖି ଆରମ୍ଭ କରିଥିଲେ । ଏ ଦେଶର ଆଦିବାସୀ, ଗିରିଜନ, ପରଜା, ଶବର, କନ୍ଧ, କୋହ୍ଲ ପ୍ରଭୃତି ଉପଜାତିମାନଙ୍କ ପାଇଁ ତାଙ୍କ ଲେଖନୀ ଥିଲା ଚଳଚଞ୍ଚଳ । ସେମାନଙ୍କ ଜୀବନ ଶୈଳୀକୁ ନେଇ ମୁଖ୍ୟତଃ ଗୋପୀନାଥ ଉପନ୍ୟାସ ରଚନା କରୁଥିଲେ । ଉପନ୍ୟାସ ଲେଖକ ଭାବେ ଗୋପୀନାଥ ଅପ୍ରତିଦ୍ୱନ୍ଦୀ । ଦାଦିବୁଢ଼ା, ଶିବୁଭାଇ, ପରଜା, ଅମୃତର ସନ୍ତାନ, ଅପହଞ୍ଚ ପ୍ରଭୃତି ଉପନ୍ୟାସ ଆଦିବାସୀ ଜୀବନ ଶୈଳୀକୁ ନେଇ ସମୃଦ୍ଧ । ୧୯୫୬ ମସିହାରେ 'ଅମୃତର ସନ୍ତାନ' ପାଇଁ ତାଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେମୀ ସମ୍ମାନ ମିଳିଥିଲା । 'ହରିଜନ' ଉପନ୍ୟାସ ମେହେନ୍ତରମାନଙ୍କ ଜୀବନ ଶୈଳୀ ଉପରେ ରଚିତ । ଏତଦ୍‌ବ୍ୟତୀତ ଗୋପୀନାଥ ଦାନାପାଣି, ରାହୁରଛାୟା, ଲୟବିଲୟ, ମାଟିମଟାଳ, ପ୍ରେମର ନିୟତି, ପୋଡ଼ାକପାଳ, ସପନମାଟି, ମନଗହୀରର ଚାଷ, ଦୁଇପଟ, ଶରତ ବାବୁଙ୍କ ଗଳି, ଅନଲନଳ ପ୍ରଭୃତି ସାମାଜିକ ଉପନ୍ୟାସ ରଚନା କରିଛନ୍ତି ।

୧୯୭୪ ମସିହାରେ 'ମାଟିମଟାଳ' ଉପନ୍ୟାସ ପାଇଁ ସେ ବିଶିଷ୍ଟ ସାହିତ୍ୟିକ ସମ୍ମାନ 'ଜ୍ଞାନପୀଠ' ପାଇଥିଲେ । ଏହି ପୁରସ୍କାର ଲାଭ କରିବାରେ ସେ ଥିଲେ ପ୍ରଥମ ଓଡ଼ିଆ ବ୍ୟକ୍ତି । ଜଣେ ଗାଳ୍ପିକ ଭାବେ ତାଙ୍କର ପୋଡ଼ାକପାଳ, ନବବଧୂ, ଛୁରି ଓ ଆଲୁଅ, ଗୁପ୍ତଗଙ୍ଗା, ଘାସଫୁଲ ଆଦି ଗଳ୍ପ ସଂକଳନ ଉଲ୍ଲେଖଯୋଗ୍ୟ । ବାଇଆକକା, ଭଙ୍ଗାଗ୍ରାଡ, ପଥର ଚକ, ତାଧିନ୍‌ଧିନ୍ନା, ଲେକହସା, କଳାଶକ୍ତି, କୁଆଁତାରା, କାତୁଣୀ, ବନ୍ଧାଖୋଲ, ଏପାରି ସେପାରି, ଶାରଦୀୟ ଗୁଇ, ଶେଷ ଅଙ୍କ, କମ୍ପୁଟ, ନାଲିସଡ଼କର ଡିମା, ଶିଳ୍ପୀ ଓ ମଣିଷ ପ୍ରଭୃତି ସତରଗୋଟି ପ୍ରବନ୍ଧ ରଚନା କରି ସେ ପ୍ରସିଦ୍ଧି ଲାଭ କରିଥିଲେ । ପଣ୍ଡିତ ଗୋପବନ୍ଧୁଙ୍କ ଜୀବନୀ ଅନୁସରଣରେ ତାଙ୍କର 'ଉତ୍କଳମଣି' ଲିଖିତ । ଏହାର ଗଦ୍ୟଶୈଳୀ ଅତ୍ୟନ୍ତ ବଳିଷ୍ଠ ।

ସେତେବେଳେ ଭାରତର ସ୍ୱାଧୀନତା ଆନ୍ଦୋଳନ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଏବଂ ଓଡ଼ିଶାର ଗୌରବ ବୃଦ୍ଧି ଥିଲା ଛାତ୍ର ଓ ଯୁବକମାନଙ୍କର ପ୍ରଧାନ କର୍ତ୍ତବ୍ୟ ।

ଗୋପୀନାଥ ଏଥିରୁ ବାଦ୍ ଯାଇନଥିଲେ । ରେଭେନ୍‌ସା କଲେଜର ଛାତ୍ର ଥିବାବେଳେ ସେ ଆନ୍ଦୋଳନରେ ଭାଗ ନେଇଥିଲେ । ଏପରି ଏକ ଯୋଗଜନ୍ମା ବ୍ୟକ୍ତିଙ୍କ ୧୯୯୧ ମସିହା ଅଗଷ୍ଟ ମାସ ୨୦ ତାରିଖରେ ସ୍ୱର୍ଗାରୋହଣ କଲେ ।

## ଗିରିଧାରୀ ମହାପାତ୍ର :

ଗିରିଧାରୀ ମହାପାତ୍ର ୧୯୦୭ ମସିହା ଜାନୁୟାରୀ ମାସ ୯ ତାରିଖରେ କେନ୍ଦୁଝର ଜିଲ୍ଲାର ଆନନ୍ଦପୁରଠାରେ ଜନ୍ମ ହୋଇଥିଲେ । କଟକରେ ସେ ରହୁଥିଲେ । ଜଣେ ମେଧାବୀ ଛାତ୍ରଭାବେ ୧୯୨୬ ମସିହାରେ ରେଭେନ୍ସା କଲେଜିଏଟ୍ ସ୍କୁଲରୁ ମାଟ୍ରିକ ପାଶ୍ କଲେ । ୧୯୩୧ ମସିହାରେ ବିହାର-ଓଡ଼ିଶା ମେଡ଼ିକାଲ ବୋର୍ଡ଼ରୁ ଏଲ୍. ଏମ୍. ପି ଡ଼ିଗ୍ରୀ ଲାଭ କରି ସର୍ଜରୀ ଓ ମେଡ଼ିସିନ୍‌ରେ ତାଙ୍କର ସଫଳତା ପାଇଁ ସ୍ୱର୍ଣ୍ଣ ପଦକର ଅଧିକାରୀ ହୋଇପାରିଥିଲେ ।

ପ୍ରଥମେ ତାଙ୍କର କାର୍ଯ୍ୟ ଆରମ୍ଭ ହୋଇଥିଲା କେନ୍ଦୁଝରରେ । ପରେ ସେ ସରକାରୀ ଚାକିରୀ ପାଇ ଫୁଲବାଣୀରେ କାର୍ଯ୍ୟ କରିଥିଲେ । ୧୯୩୭ରେ ସେ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ଆସିଲେ । ୧୯୩୭ ମସିହାରେ ସେ ଏମ୍. ବି. ବି.ଏସ୍. ପାଶ୍ କରି ୧୯୫୪ ମସିହାରେ ପୃଥିବୀ ସ୍ୱାସ୍ଥ୍ୟ ସଂସ୍ଥାର ବୃତ୍ତିଲାଭକରି ଡେନ୍‌ମାର୍କ ଗଲେ । ସେଠାରେ ସେ ସବୁ ଦେଶର ଡାକ୍ତରଙ୍କ ଠାରୁ ଆଗରେ ରହି ଏକ ରେକର୍ଡ ସୃଷ୍ଟି କରିଥିଲେ । ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ 'ଫ୍ଲାନ୍ଟେଥିସିଓଲୋଜି' ବିଭାଗ ପ୍ରତିଷ୍ଠା କରିବାରେ ସେ ଥିଲେ ପ୍ରଧାନ ବ୍ୟକ୍ତି । ଉଭୟ ଡାକ୍ତରୀ ଏବଂ ହୋମିଓପ୍ୟାଥିରେ ତାଙ୍କର ବେଶ୍ ଦକ୍ଷତା ଥିଲା ।

ସେତେବେଳେ କଟକ ଡାକ୍ତରଖାନାର ଜଣେ ଖ୍ୟାତନାମା ଚିକିତ୍ସକରୂପେ ସେ ବହୁ ସୁନାମର ଅଧିକାରୀ ହୋଇପାରିଥିଲେ । ଚିକିତ୍ସା ବିଜ୍ଞାନରେ ବିଭିନ୍ନ ପରିବର୍ତ୍ତନ ଆଣିବାରେ ତାଙ୍କର ଉଦ୍ୟମ ଉଲ୍ଲେଖନୀୟ । ସେ ଜଣେ ଉତ୍ତମ ପଶା ଖେଳାଳୀ ଥିଲେ ଏବଂ ସ୍ନେହୀ, ଭଦ୍ର ତଥା ସରଳ ଜୀବନଯାପନକୁ ଅଧିକ ପସନ୍ଦ କରୁଥିଲେ । ୧୯୯୧ରେ ତାଙ୍କର ମୃତ୍ୟୁ ହେଲା ।

## ଗୋପାଳଚନ୍ଦ୍ର ପଟ୍ଟନାୟକ :

କଟକର ଖ୍ୟାତନାମା ବ୍ୟକ୍ତିମାନଙ୍କ ମଧ୍ୟରୁ ଗୋପାଳଚନ୍ଦ୍ର ପଟ୍ଟନାୟକ ଅନ୍ୟତମ । ସେ କଟକର ସ୍ଥାୟୀ ଅଧିବାସୀ ଭାବେ ପରିଚିତ । ତାଙ୍କର ଜନ୍ମ ୧୯୦୩ ମସିହା ମଇମାସ ୨୩ ତାରିଖରେ । ପାଟଣା ମେଡ଼ିକାଲ କଲେଜରେ ସେ ଅଧ୍ୟୟନ କରି ଜଣେ ଦକ୍ଷ ଚିକିତ୍ସକ ଭାବେ ଖ୍ୟାତି ଅର୍ଜନ କରିଥିଲେ । ବିଶେଷତଃ ସେ ଜଣେ ସ୍ତ୍ରୀରୋଗ ବିଶେଷଜ୍ଞ । ତାଙ୍କର ଅଧ୍ୟାପନା ଛାତ୍ରମାନଙ୍କୁ ଯେତିକି ମୁଗ୍ଧ କରୁଥିଲା ସରଳ ଓ ନିଷ୍କପଟ ବ୍ୟବହାର ସହକର୍ମୀମାନଙ୍କୁ ସେତିକି ନିକଟବର୍ତ୍ତୀ କରିଥିଲେ ।

ସେ କଟକର ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଅଧକ୍ଷ ତଥା କଟକ ଜେଲର ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ବିଜ୍ଞାନ ବିଦ୍ୟାପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ତେଣୁ ବିଜ୍ଞାନ ସମ୍ପର୍କୀୟ ଅନେକ ଲେଖା ଭାରତର ବିଭିନ୍ନ ପତ୍ରିକାରେ ସ୍ଥାନ ପାଇ ତାଙ୍କୁ ଲୋକପ୍ରିୟ କରିପାରି ଥିଲା । ସେ ଥିଲେ "ବିଜ୍ଞାନ ପ୍ରଚାର ସମିତି"ର ପ୍ରତିଷ୍ଠାତା । ଆହୁରି ଅନେକ ବିଜ୍ଞାନ ଅନୁଷ୍ଠାନ ସହିତ ସେ ସମ୍ପର୍କ ରଖିଥିଲେ । ସମାଜର ଅନ୍ଧବିଶ୍ୱାସ ଓ ଧର୍ମଧାରଣା ପ୍ରତି ତାଙ୍କର ଘୃଣାଭାବ ଅତୁଟ ଥିଲା । ୧୯୮୫ ମସିହା ନଭେମ୍ବର ମାସ ୧୧ ତାରିଖରେ ସେ ଇହଧାମ ତ୍ୟାଗ କଲେ ।

## ଗୋବିନ୍ଦ ଚନ୍ଦ୍ର ମିଶ୍ର :

ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କର ଜନ୍ମ ଦଶପଲ୍ଲାରେ । ସେ ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବେ ପରିଚିତ । ଗୋବିନ୍ଦ ମିଶ୍ର ଶିକ୍ଷାଲାଭ ପାଇଁ ୧୯୧୦ରେ କଟକ ଆସିଥିଲେ । ଏଇଠାରେ ତାଙ୍କ ବୈପ୍ଳବିକ ଜୀବନର ଆରମ୍ଭ ହେଲା । ତାଙ୍କ ଆତ୍ମଜୀବନୀରେ ସେ ଦୁର୍ଦ୍ଦିନ ଜୀବନର ଅନେକ କଥା ଲିପିବଦ୍ଧ କରିଛନ୍ତି । ସ୍ୱାଧୀନତା ଆନ୍ଦୋଳନରେ ଅଂଶଗ୍ରହଣ କରି ଗୋବିନ୍ଦ ମିଶ୍ର କାରାବରଣ କରିଥିଲେ । ଭାରତର ରାଜ୍ୟ ସଭାର ସଭ୍ୟ ଥାଇ ସେ ଅନେକ ଲୋକହିତକର କାର୍ଯ୍ୟ ପାଇଁ ଯୋଜନା ପ୍ରସ୍ତୁତ କରିଥିଲେ ।

## ଗୌରାଙ୍ଗ ଚରଣ ଦାସ :

ଗୌରାଙ୍ଗ ଚରଣ ଦାସ ଯଥାର୍ଥରେ ହେଉଛନ୍ତି ବାଇଶିମୌଜାର ବରପୁତ୍ର । ସେ ୧୮୯୯ ମସିହାରେ କଟକ ଜିଲାର ଜଗତସିଂହପୁର ଥାନା ଅନ୍ତର୍ଗତ ନଦୀ ପରିବେଷ୍ଟିତ ଏକ ଦ୍ୱୀପାଞ୍ଚଳ ବାଇଶିମୌଜାର ବାଗଲପୁରରେ ଜନ୍ମ ହୋଇଥିଲେ । ତାଙ୍କ ଭଳି ଏକ ବ୍ୟକ୍ତିତ୍ୱ ଆବିର୍ଭୂତ ହୋଇ ନଥିଲେ ଏ ଦ୍ୱୀପାଞ୍ଚଳର ଅବସ୍ଥା ଶୋଚନୀୟ ହୋଇ ପଡ଼ିଥାନ୍ତା । ଜଣେ ସଂସ୍କାରକ, ସଙ୍ଗଠକ, ସ୍ୱାଧୀନତା ସଂଗ୍ରାମୀ ଓ ନେତାଭାବେ ସେ ଅପ୍ରତିଦ୍ୱନ୍ଦୀ । ତାଙ୍କର ଗୋଟିଏ ହାତ ଅଧା ଥିଲା । ତେଣୁ ସେ ଖଣ୍ଡି ଗଉଡ଼ା ନାମରେ ପରିଚିତ ଥିଲେ । ଗୌରାଙ୍ଗ ଦାସ ତାଙ୍କ ପିତାଙ୍କ ସହିତ ଗାଙ୍ଗପୁରରେ ରହୁଥିଲେ । ୧୩ ବର୍ଷ ବୟସରେ ସେ ପାଠପଢ଼ା ଛାଡ଼ି ଗ୍ରାମାଞ୍ଚଳର ଉନ୍ନତିପାଇଁ ମନବଳାଇଲେ । ଜୀବିକା ନିର୍ବାହ ପାଇଁ କୁଜଙ୍ଗ ସେଟଲମେଣ୍ଟରେ ଚାକିରୀ କରିଥିଲେ ମଧ୍ୟ ଏହା ତାଙ୍କୁ ଶାନ୍ତି ଦେଲା ନାହିଁ । ସାମାଜିକ ନ୍ୟାୟ ସପକ୍ଷରେ ସେ ସ୍ୱର ଉତ୍ତୋଳନ କରୁଥିଲେ ।

୧୯୨୧ ମସିହାର ଅସହଯୋଗ ଆନ୍ଦୋଳନରେ ସାମିଲ ହୋଇଥିଲେ । ୧୯୩୦ ମସିହାର ଲବଣ ସତ୍ୟାଗ୍ରହର ପ୍ରଥମ ସତ୍ୟାଗ୍ରହୀ ରୂପେ ଇଞ୍ଚୁଡ଼ିଠାରେ ସତ୍ୟାଗ୍ରହ କରି ସେ ଗୋଟିଏ ବର୍ଷ ପାଇଁ ଜେଲ୍ ଯାଇଥିଲେ । ଦ୍ୱିତୀୟବାର ବନ୍ଦୀ ହେଲେ ୧୯୩୨ ମସିହାରେ । ଓଡ଼ିଶାର ଗ୍ରାମାଞ୍ଚଳର ଉନ୍ନତି ପାଇଁ ସେ କୃଷକମାନଙ୍କୁ ସଙ୍ଗଠିତ କରିଥିଲେ । ୧୯୪୦ ମସିହାରେ ଗୌରାଙ୍ଗ ଦାସ କଟକ ସଦର ଲୋକାଲ୍ ବୋର୍ଡ଼ର

ସଭ୍ୟ ହେଲେ । ଜମିଦାରୀ ଓ ବେଠି ପ୍ରଥା ବିରୁଦ୍ଧରେ ସେ ସଂଗ୍ରାମ କରିଥିଲେ । ତାଙ୍କ ନେତୃତ୍ୱରେ ଢେଙ୍କାନାଳର ପ୍ରଜା ଆନ୍ଦୋଳନ ଉଗ୍ରଙ୍କର ରୂପ ନେଇଥିଲା ।

୧୯୪୭ ମସିହାରେ କଟକ ଜିଲ୍ଲା କଂଗ୍ରେସ କମିଟିର ସଭାପତି ହୋଇଥିଲେ । ଭୂଦାନ ଆନ୍ଦୋଳନରେ ଯୋଗଦେଇ ଜନସାଧାରଣଙ୍କୁ ପ୍ରଭାବିତ କରିବାରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଅଗଷ୍ଟ ବିପ୍ଳବରେ ଯୋଗ ଦେଇ ଗୌରାଙ୍ଗ ବାବୁ ବ୍ରହ୍ମପୁର ଜେଲରେ ବନ୍ଦୀ ହୋଇଥିଲେ । ତାଙ୍କ ନେତୃତ୍ୱରେ ତାଙ୍କ ଗ୍ରାମରେ ଥିବା ଦଧିବାମନ-ଜୀଉ ମନ୍ଦିର ଭିତରକୁ ହରିଜନ ପ୍ରବେଶ କରିଥିଲେ । ସେ ଗୋବିନ୍ଦପୁର ନିର୍ବାଚନ ମଣ୍ଡଳୀରୁ ଅପ୍ରତିଦ୍ୱନ୍ଦ୍ୱୀ ଭାବେ ନିର୍ବାଚିତ ହୋଇଥିଲେ ।

୧୯୬୧ ମସିହାରୁ ୧୯୬୭ ମସିହା ପର୍ଯ୍ୟନ୍ତ କଟକ ଜିଲ୍ଲା ପରିଷଦର ଚେୟାରମ୍ୟାନ ଥାଇ ସେ ଜିଲ୍ଲାର ସର୍ବାଙ୍ଗୀନ ଉନ୍ନତି ପାଇଁ କାର୍ଯ୍ୟ କଲେ । ଅନେକ ସଙ୍ଗଠନର ସେ ଥିଲେ ଜଣେ ସକ୍ରିୟ ସଭ୍ୟ । ଜିଲ୍ଲାର ଜନହିତ ପାଇଁ ତାଙ୍କର ଜୀବନ ସତେ ଯେପରି ଥିଲା ଉତ୍ସର୍ଗୀକୃତ । ୧୯୬୭ ମସିହାରେ ଗୌରାଙ୍ଗ ଦାସ ଲୋକସଭା ସଦସ୍ୟ ଭାବେ ନିର୍ବାଚିତ ହୋଇ ୧୯୭୨ ମସିହାରେ ସ୍ୱର୍ଗାରୋହଣ କରିଥିଲେ ।

## ଗୌରୀଶଙ୍କର ରାୟ :

ଓଡ଼ିଶାର ପ୍ରସିଦ୍ଧ ନାଟ୍ୟକାର ରାମଶଙ୍କର ରାୟଙ୍କର ଅଗ୍ରଜ ଗୌରୀଶଙ୍କର ରାୟ ୧୯୩୮ ମସିହା ଜୁଲାଇ ମାସରେ କଟକ ଜିଲ୍ଲାର ଅସୁରେଶ୍ୱର ଥାନାର ପାଣିକୋଇଲି ପଡ଼ାରେ ଜନ୍ମଗ୍ରହଣ କରିଥିଲେ । ସେ କର୍ମଯୋଗୀ ଗୌରୀଶଙ୍କର ଭାବେ ସର୍ବତ୍ର ପରିଚିତ । ମାଟ୍ରିକ୍ ପାଶ୍ କରି ଗୌରୀଶଙ୍କର ହୁଗୁଳିରେ କଳାବିଦ୍ୟା ପଢ଼ିଥିଲେ । ବାଲେଶ୍ୱରରେ କଳାବିଦ୍ୟା ଶିକ୍ଷା କରିଥିଲେ ମଧ୍ୟ ଏହା ତାଙ୍କୁ ଶାନ୍ତି ଦେଇ ପାରିଲା ନାହିଁ ।

୧୮୫୯ ମସିହାରେ କଟକ ପ୍ରତ୍ୟାବର୍ତ୍ତନ କରି ଲୋକସେବାରେ ନିଜକୁ ନିୟୋଗ କଲେ । ସାହିତ୍ୟର ସଙ୍ଗଠନ କାର୍ଯ୍ୟ ମଧ୍ୟ କର୍ମଯୋଗୀ ଗୌରୀଶଙ୍କର ନିରବଚ୍ଛିନ୍ନ କର୍ମଧାରା ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା । ତେଣୁ ସେ କଟକ ପ୍ରିଣ୍ଟିଂ କମ୍ପାନୀ ପ୍ରତିଷ୍ଠା କରି 'ଉତ୍କଳ ଦୀପିକା' ପ୍ରକାଶ କରିଥିଲେ । ସାହିତ୍ୟର ବିଭିନ୍ନ ଦିଗରେ ଲେଖନୀ ଚାଳନା କରିଥିଲେ । ରାମଶଙ୍କରଙ୍କ ଅନୁରୂପ ସେ ଥିଲେ ନାଟକ ଓ ସଙ୍ଗୀତ ପ୍ରିୟ । କଟକ ମ୍ୟୁନିସିପାଲିଟିର ପ୍ରଥମ ଚେୟାରମ୍ୟାନ ଭାବରେ ସେ ପରିଚିତ । ଇଂରେଜ ସରକାରଙ୍କ ଅଧୀନରେ ଜଣେ ସାଧାରଣ କିରାଣୀ ଭାବେ କାର୍ଯ୍ୟ କରିଥିଲେ ହେଁ ତାଙ୍କର କର୍ମକ୍ଷେତ୍ର ଥିଲା ବହୁମୁଖୀ । ୧୯୧୭ ମସିହାରେ ସେ ପ୍ରାଣତ୍ୟାଗ କଲେ ।

## ଗୋପବନ୍ଧୁ ଚୌଧୁରୀ :

ଗୋପବନ୍ଧୁ ଚୌଧୁରୀଙ୍କ ଜନ୍ମ ହୁଏ ୧୮୯୫ ମସିହାରେ । ଜଣେ ବରିଷ୍ଠ ନେତା ଏବଂ ସ୍ୱାଧୀନତା ସଂଗ୍ରାମୀ ଭାବେ ତାଙ୍କର ପ୍ରସିଦ୍ଧି ଥିଲା । ଦେଶ ମୁକ୍ତି

ନିକଟରେ ସ୍ୱକୀୟ ତଥା ଚାକିରିବାକିର ମୋହକୁ ସେ ତୁଚ୍ଛ ମନେ କରୁଥିଲେ । ୧୯୦୮ ମସିହାରେ ରେଭେନ୍‌ସା କଲେଜିଏଟ୍ ସ୍କୁଲରୁ ଏନ୍‌ଟ୍ରାନ୍‌ସ ପାଶ୍ କରି ୧୯୧୦ ମସିହାରେ ରେଭେନ୍‌ସା କଲେଜରେ ଆଇ. ଏ. ଶ୍ରେଣୀରେ ନାମ ଲେଖାଇଲେ । ରେଭେନ୍‌ସାରୁ ବି. ଏ. ପାଶ୍ କରି ଏମ୍. ଏ. ପଢ଼ିବା ପାଇଁ ଗୋପବନ୍ଧୁ କଲିକତା ବିଶ୍ୱବିଦ୍ୟାଳୟ ଯାଇଥିଲେ ।

୧୯୧୪ ମସିହାରେ ଏମ୍. ଏ. ପାଶ୍ କରି ସେ ଡେପୁଟି କଲେକ୍ଟର ପଦବୀରେ ନିଯୁକ୍ତ ହୋଇଲେ । କିନ୍ତୁ ଦେଶ ନିକଟରେ ଏହା ଥିଲା ନଗଣ୍ୟ । ଅସହଯୋଗ ଆନ୍ଦୋଳନରେ ଯୋଗ ଦେବାପାଇଁ ସେ ଏହି ପଦବୀରୁ ଇସ୍ତଫା ଦେଇଥିଲେ । ଗୋପବନ୍ଧୁ ଥିଲେ ଦେଶପ୍ରେମୀ ଏବଂ ଜାତୀୟତାବାଦୀ । ସେ ତାଙ୍କ ପରିବାରବର୍ଗଙ୍କ ସହିତ ଜାତୀୟ ଆନ୍ଦୋଳନରେ ସକ୍ରିୟ ଭାବରେ ଅଂଶଗ୍ରହଣ କରି ବହୁଥର ଜେଲ୍ ଯାଇଥିଲେ । ସେ ସରଳ, ନିଷ୍କପଟ, ମଧୁରଭାଷୀ ତଥା ପରୋପକାରୀ ବ୍ୟକ୍ତିଭାବରେ ବେଶ୍ ଲୋକପ୍ରିୟ । କଟକ ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ ଥିଲେ ଏବଂ ଜୟପ୍ରକାଶ ଓ ବିନୋବାଙ୍କ ସହିତ ଭୂଦାନ ଆନ୍ଦୋଳନରେ ଭାଗ ନେଇଥିଲେ । ଜଣେ ଲେଖକ ଭାବେ ଗୋପବନ୍ଧୁ ଅନେକ ପୁସ୍ତକ ରଚନା କରିଛନ୍ତି । ତାଙ୍କ ପୁସ୍ତକମାନଙ୍କ ମଧ୍ୟରେ 'ଗାନ୍ଧୀ ଓ ଉତ୍କଳ', 'ଗାନ୍ଧିଜୀଙ୍କ ଗୀତାବୋଧ', 'ଆତ୍ମଜୀବନୀ', 'ସପ୍ତ ମହାଭାରତ', 'ବର୍ଣ୍ଣାଶ୍ରମ ଧର୍ମ' ପ୍ରଭୃତି ପ୍ରଧାନ । ୧୯୫୮ ମସିହାରେ ତାଙ୍କର ଦେହାନ୍ତ ହେଲା ।

## ଗୋଦାବରୀଶ ମିଶ୍ର :

ଉତ୍କଳର ସତ୍ୟବାଦୀ ଗୋଷ୍ଠୀର ଅନ୍ୟତମ ବରେଣ୍ୟ ପ୍ରତିଭା ହେଉଛନ୍ତି ପଣ୍ଡିତ ଗୋଦାବରୀଶ ମିଶ୍ର । ଦେଶର ମଙ୍ଗଳବିଧାନ ପାଇଁ ତାଙ୍କର ଜୀବନ ଥିଲା ଉତ୍ସର୍ଗୀକୃତ । ସେ ପୁରୀ ଜିଲ୍ଲାର ବାଣପୁରରେ ୧୮୮୬ ମସିହାରେ ଜନ୍ମଗ୍ରହଣ କରିଥିଲେ ।

ଜଣେ ଜାତୀୟତାବାଦୀ, କବି, ଲେଖକ, ସାହିତ୍ୟିକ ଓ ଶିକ୍ଷାବିତ୍ ଭାବେ ସେ ଲୋକପ୍ରିୟ । ତାଙ୍କର ବୈଚିତ୍ର୍ୟମୟ ଜୀବନ ମଧ୍ୟରେ ଗୋଦାବରୀଶ, ଗୋପବନ୍ଧୁଙ୍କ ସହ ସ୍ୱାଧୀନତା ଆନ୍ଦୋଳନରେ ସାମିଲ ହେବା, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଦାବୀ ଏବଂ ସୀମା ଆନ୍ଦୋଳନରେ ଅଂଶଗ୍ରହଣ କରିବା ଥିଲା ଉଲ୍ଲେଖଯୋଗ୍ୟ । ଗୋଦାବରୀଶ ବାସ୍ତବରେ ଜଣେ ଖ୍ୟାତନାମା ରାଜନୀତିଜ୍ଞ ଥିଲେ । ତାଙ୍କର ବହୁମୁଖୀ ପ୍ରତିଭା ମଧ୍ୟରୁ ସାହିତ୍ୟ ଓ ରାଜନୀତି ଦୁଇଟି ପ୍ରଧାନ ବିଭାଗ । ସେ ତତ୍କାଳୀନ ରାଜନୀତିରେ ସକ୍ରିୟ ଭାବେ ଜଡ଼ିତ ହୋଇ ରହିଥିବାରୁ ତାଙ୍କର ସାହିତ୍ୟ ସୃଷ୍ଟିଗୁଡ଼ିକ ରାଜନୈତିକ ଚିନ୍ତାଚେତନା ଓ ତତ୍କାଳୀନ ସମୟ ସମାଜର ବାଣ୍ଟାଠାରୁ ଦୂରରେ ରହି ପାରି ନ ଥିଲା ।

ଗୋଦାବରୀଶଙ୍କ ରାଜନୈତିକ ଜୀବନ ଆରମ୍ଭ ହୁଏ ବିହାର ଓଡ଼ିଶା କାଉନ୍‌ସିଲର ସଭ୍ୟ ଭାବେ ୧୯୨୬ ମସିହାରୁ । ୧୯୪୧ ମସିହାରେ ସେ ଓଡ଼ିଶାର ଶିକ୍ଷାମନ୍ତ୍ରୀ ହୋଇଥିଲେ ।

୧୯୫୨ ମସିହାରେ ସ୍ୱାଧୀନ ସଭ୍ୟ ଭାବରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସେ ଥିଲେ ଜଣେ ଶିକ୍ଷକ ଓ ଶିକ୍ଷାପ୍ରେମୀ । ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାରେ ତାଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ବାଣପୁର ହାଇସ୍କୁଲର ପ୍ରତିଷ୍ଠାତା ଭାବେ ଗୋଦାବରୀଶ ଚିରସ୍ମରଣୀୟ । ଲେଖା ମାଧ୍ୟମରେ ଦେଶବାସୀଙ୍କ ମନରେ ଜାତୀୟ ଭାବ ସୃଷ୍ଟି କରିବା ଥିଲା ତାଙ୍କ ସାହିତ୍ୟିକ ଜୀବନର ମୂଳ ଲକ୍ଷ୍ୟ । ଏକାଧାରରେ ଜଣେ କବି, ପ୍ରାବନ୍ଧିକ, ସମାଲୋଚକ, ଔପନ୍ୟାସିକ, ନାଟ୍ୟକାର ଓ ଶିଶୁ ସାହିତ୍ୟିକ ଭାବେ ତାଙ୍କ ପ୍ରତିଭା ଥିଲା ବହୁମୁଖୀ ।

ପରାଧୀନ ଦେଶବାସୀଙ୍କୁ ଜାତୀୟ ଭାବରେ ଉଦ୍‌ବୁଦ୍ଧ କରିବା ନିମିତ୍ତ 'ପୁରୁଷୋତ୍ତମ ଦେବ' ଓ 'ମୁକୁନ୍ଦଦେବ' ନାଟକ ଦୁଇଟିର ସୃଷ୍ଟି । ତାଙ୍କ ଦ୍ୱାରା ରଚିତ ଚାରୋଟି ଉପନ୍ୟାସ ହେଉଛି; ଯୁଗାନ୍ତର, ଅଭାଗିମା, ୧୮୧୭ ଓ ନିର୍ବାସିତ । ଏତଦ୍ ବ୍ୟତୀତ ବହୁ ଗୀତିକବିତା, କ୍ଷୁଦ୍ରଗଳ୍ପ, ପ୍ରବନ୍ଧ ଓ ଶିଶୁ କବିତା ସୃଷ୍ଟି ମାଧ୍ୟମରେ ସାହିତ୍ୟିକ ଜୀବନ ସମୁଜ୍ଜ୍ୱଳ । "ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ" ଆତ୍ମଜୀବନୀ ପାଇଁ ତାଙ୍କୁ ମରଣୋତ୍ତର କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ମିଳିଥିଲା ।

ତାଙ୍କର କାଳିଜାଈ, ଅଭିରାମ ସିଂହ, ଧରଣୀଧର ପ୍ରଭୃତି ଗାଥା କବିତା ଓ କାଶୀଯାତ୍ରା, ନିଦାଘସରସୀ, ସଞ୍ଜୋଇଷ୍ଟରେ ସକାଳ ଏବଂ କଳିକା (୧୯୨୧) ଓ କିଶଳୟ (୧୯୨୭)ରେ ସଙ୍କଳିତ ଗୀତିକବିତା ବେଶ୍ ସୁଖପାଠ୍ୟ । ସୁପ୍ରିମ କୋର୍ଟର ଅବସରପ୍ରାପ୍ତ ମୁଖ୍ୟ ବିଚାରପତି ରଙ୍ଗନାଥ ମିଶ୍ର ତାଙ୍କ ପୁଅ । ୧୯୫୬ରେ ସେ ମୃତ୍ୟୁବରଣ କଲେ ।

## ଗଗନ ବିହାରୀ ଜେନା :

ଗଗନ ବିହାରୀ ଜେନା କଟକ ଜିଲ୍ଲାର ଏକ ପ୍ରସିଦ୍ଧ ଗ୍ରାମ ମୂଳବସନ୍ତରେ ୧୯୨୧ ମସିହା ମାର୍ଚ୍ଚ ମାସ ୯ ତାରିଖରେ ଜନ୍ମଗ୍ରହଣ କରିଥିଲେ । ସେ ଛାତ୍ରାବସ୍ଥାରୁ ଥିଲେ ଜାତୀୟତାବାଦୀ । ରେଭେନ୍‌ସା କଲେଜରେ ପଢ଼ୁଥିବା ବେଳେ ଗଗନ ବିହାରୀ ଜାତୀୟତାବାଦୀ ଆନ୍ଦୋଳନରେ ଯୋଗ ଦେଇଥିଲେ । 'ଗଙ୍ଗଦ' ନାମରେ ସେ ସମସ୍ତଙ୍କ ନିକଟରେ ବେଶ୍ ଜଣାଶୁଣା । ଜଣେ ବିପ୍ଳବୀ ଭାବେ ସେ ବହୁବାର କାରାବରଣ କରିଥିଲେ ।

କମ୍ୟୁନିଷ୍ଟ ପାର୍ଟିର ଜଣେ ନିଷ୍ଠାପର କର୍ମୀ, ସଙ୍ଗଠକ ଏବଂ ପରବର୍ତ୍ତୀ ସମୟରେ ସେକ୍ରେଟାରୀ ହେବାର ଗୌରବ ତାଙ୍କୁ ମିଳିଥିଲା । କଟକ ଥିଲା ତାଙ୍କର କର୍ମକ୍ଷେତ୍ର । ଗୋଟିଏ ପ୍ରେସ୍ ବସାଇ ଗଗନ ବିହାରୀ ବହୁ ପୁସ୍ତକ ପ୍ରକାଶ କରିଥିଲେ । ବହୁ ଲୋକହିତକର ତଥା ସାଂସ୍କୃତିକ ସଂସ୍ଥା ସହିତ ତାଙ୍କର ସମ୍ପର୍କ ଥିଲା । ସମାଜର ପତିତ, ଦଳିତ, ଅବହେଳିତ ଓ ନିପୀଡ଼ିତ ମଣିଷମାନଙ୍କୁ ସାହାଯ୍ୟ କରି ସେ

ଲୋକପ୍ରିୟ ହୋଇ ପାରିଥିଲେ । 'ଦ ସୁଜାଭର୍ସ' ଏବଂ ଆହୁରି ଅନେକ ସାହିତ୍ୟ ସଂଗ୍ରହ ସହିତ ଗଗନବାବୁ ଜଡ଼ିତ ଥିଲେ ଏବଂ ତାଙ୍କର ମୃତ୍ୟୁ ହେଲା ୧୯୯୦ ମସିହା ମଇ ମାସ ୨୨ ତାରିଖରେ ।

## ଘନଶ୍ୟାମ ଦାଶ :

ପ୍ରଫେସର ଘନଶ୍ୟାମ ଦାଶଙ୍କର ଜନ୍ମ ହୋଇଥିଲା ସମ୍ବଲପୁରରେ ୧୯୦୨ ମସିହାରେ । ବରପାଲିର ବରପୁତ୍ରମାନଙ୍କ ମଧ୍ୟରୁ ସେ ଥିଲେ ଅନ୍ୟତମ । ସମ୍ବଲପୁରରେ ଜନ୍ମ ହୋଇଥିଲେ ହେଁ କଟକ ବାସ୍ତବରେ ତାଙ୍କର କର୍ମକ୍ଷେତ୍ର ରୂପେ ପରିଚିତ । ଘନଶ୍ୟାମ ଦାଶ ରେଭେନ୍ସା କଲେଜରୁ ବି. ଏ. (ଅନର୍ସ) ପାଶ୍ କରି ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଇତିହାସରେ ଏମ୍. ଏ. ପାଶ୍ କଲେ । ତାଙ୍କର ଅଧ୍ୟାପନାର ଦକ୍ଷତା ଓ ପାଣ୍ଡିତ୍ୟପୂର୍ଣ୍ଣ ଗବେଷଣା ପାଇଁ ସେ ଓଡ଼ିଶା ଇତିହାସରେ ସ୍ମରଣୀୟ ।

ସମ୍ବଲପୁର ଗଙ୍ଗାଧର ମେହେର କଲେଜ ଏବଂ ଫକୀର ମୋହନ କଲେଜର ଅଧ୍ୟକ୍ଷ ଭାବେ ସେ ଅନେକ ବର୍ଷ କାର୍ଯ୍ୟ କରିଥିଲେ ମଧ୍ୟ ଜୀବନର ବହୁ ସମୟ ଅତିବାହିତ ହୋଇଥିଲା ରେଭେନ୍ସା କଲେଜରେ । ସେ ଯେଉଁକି ଥିଲେ ଜଣେ ଲୋକ ବତ୍ସଳ ଅଧ୍ୟାପକ ତଦନୁରୂପ ଅନୁସନ୍ଧିତ୍ସୁ ଗବେଷକ ଭାବେ ପ୍ରସିଦ୍ଧ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ସଭ୍ୟ ଥିବାବେଳେ ପ୍ରାଚୀ ଉପତ୍ୟକା ସଭ୍ୟତା ବିଷୟରେ ଅନୁସନ୍ଧାନ ଚଲାଇ ନୂତନ ତଥ୍ୟାବଳୀ ଆବିଷ୍କାର କରିଥିଲେ । ସେ ଇତିହାସ ବିଭାଗର ପ୍ରଫେସର ଥାଇ କାର୍ଯ୍ୟରୁ ଅବସର ନେଲେ ଏବଂ ରାଜନୀତିରେ ଯୋଗ ଦେଲେ । ୧୯୬୯ ମସିହା ଜାନୁୟାରୀ ୧୪ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ଘନଶ୍ୟାମ ମହାନ୍ତି :

କଟକ ଜିଲ୍ଲାର ଯାଜପୁର ଅନ୍ତର୍ଗତ ମଲ୍ଲିକାଶପୁରରେ ୧୯୧୧ ମସିହାରେ ଜନ୍ମ ହୋଇ ୧୯୮୪ ମସିହାରେ ମୃତ୍ୟୁବରଣ କରିଥିଲେ । କଟକର ଅଧିବାସୀ ଭାବେ ସେ ପ୍ରସିଦ୍ଧ । ସେ ଥିଲେ ଜଣେ କବି ଓ ଔପନ୍ୟାସିକ, 'ବୈଶ୍ୟାଗ ସାଗା', 'ସୁନା ଭଉଣୀ ମୋର 'ଦଶହରା ଭେଟି', 'ଉଠରେ ଉଠରେ ଓଡ଼ିଆ ପାଇକ' 'ଧର୍ମ ହିଅ'ର ୧ମ ଭାଗ ଓ ୨ୟ ଭାଗ ପିଲାଙ୍କ ବାଦୁଳା ପ୍ରଭୃତି ତାଙ୍କର ରଚନାବଳୀ ମଧ୍ୟରେ ଅନ୍ତର୍ଭୁକ୍ତ ।

## ଚନ୍ଦ୍ରମଣି ଆଚାର୍ଯ୍ୟ :

ଚନ୍ଦ୍ରମଣି ଆଚାର୍ଯ୍ୟ ୧୮୯୧ ମସିହାରେ କଟକ ଜିଲ୍ଲାର ପୁରୁଣାହାଟ ଶାସନରେ ଜନ୍ମ ହୋଇଥିଲେ । କଟକରେ ସେ ଜୀବନର ବହୁ ସମୟ ଅତିବାହିତ କରିଥିଲେ । ଜଣେ ଦକ୍ଷ ଆଇନଜ୍ଞ, ଶିକ୍ଷାବିତ୍ ଓ ସାହିତ୍ୟିକ ଭାବେ ସେ ପରିଚିତ । କଟକ ଆଇନ

କଲେଜର ଅଧ୍ୟାପକ, ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ତଥା ଦକ୍ଷ ପୌରିକର୍ତ୍ତାଙ୍କର ଭୂମିକାରେ ସେ ଥିଲେ ସିଦ୍ଧହସ୍ତ ।

୧୯୬୬ ମସିହାର ରାଜ୍ୟ ପୁନର୍ଗଠନରେ ସେ ମୁଖ୍ୟ ଭୂମିକା ନେଇଥିଲେ । ଉତ୍କଳଗୌରବ ମଧୁସୂଦନଙ୍କର ଆଦର୍ଶ ତାଙ୍କୁ ବିଶେଷଭାବେ ପ୍ରଭାବିତ କରିଥିଲା । ଜଣେ ଧର୍ମଭାବାପନ୍ନ ବ୍ୟକ୍ତିଭାବେ ଚିନ୍ତାମଣି ଆଚାର୍ଯ୍ୟ ନିଷ୍ଠାପର ଜୀବନ ଯାପନ କରୁଥିଲେ । ତାଙ୍କ ସାହିତ୍ୟିକ ଜୀବନ ସୁବିସ୍ତୃତ । ଓଡ଼ିଶାର ବିଭିନ୍ନ ପତ୍ରିକାରେ ସ୍ୱାଭିମତ ଲେଖମାଳା ଲେଖିକରି ସେ ଗୌରବ ଅର୍ଜନ କରିଛନ୍ତି । କବିତ୍ୱବିନ୍ଦୁ ପାଇଁ ମାସିକ ପତ୍ରିକା ଝଙ୍କାରର ସମ୍ପାଦକ ଏବଂ ଉତ୍କଳ ସାହିତ୍ୟ ସମାଜର ସଭାପତି ଥାଇ ଶ୍ରୀଆଚାର୍ଯ୍ୟ ଓଡ଼ିଆ ସାହିତ୍ୟର ପ୍ରଭୂତ ଉନ୍ନତି କରିଥିବା ଲକ୍ଷ୍ୟ କରାଯାଏ ।

ତାଙ୍କ ସାହିତ୍ୟିକ କୃତିମାନଙ୍କ ମଧ୍ୟରେ ଜଗନ୍ନାଥ ଧାମ, ଇତିହାସ ପ୍ରସଙ୍ଗ, କଟକ, ଭୁବନେଶ୍ୱର, ଶ୍ରୀକୃଷ୍ଣ, ମଙ୍ଗଳସ୍ତୁତି, ଶ୍ରୀମଦ୍ ଭାଗବତ ଓ ଗୋପାଳନ ପ୍ରଭୃତି ପ୍ରଧାନ । ଏହିପରି ଏକ ମହାନ୍ ବ୍ୟକ୍ତିତ୍ୱର ଅବସାନ ଘଟିଲା ୧୯୫୭ ମସିହାରେ ।

## ଚକ୍ରଧର ମହାପାତ୍ର :

୧୯୦୮ ମସିହାରେ କଟକ ଜିଲ୍ଲାର ନରସିଂହପୁରଠାରେ ଜନ୍ମ । ଓଡ଼ିଶାର ଜଣେ କବି, ଔପନ୍ୟାସିକ ଓ ଗବେଷକ ଭାବେ ସେ ସୁପରିଚିତ । ତାଙ୍କ ରଚନାମାନଙ୍କ ମଧ୍ୟରେ ଅପୂର୍ଣ୍ଣପ୍ରେମ, ବଙ୍ଗାଳୀ, ରଣମାଧୁରୀ, ଗୋବରଗୋଟେଇ, ଡେଙ୍ଗା ବକ୍ସି ପ୍ରଭୃତି ଉପନ୍ୟାସ ଓ କଳାକାଇଁଚ, ପାଇକଭାଇ, କଣେଶ୍ୱରୀ, ଗଡ଼ଜାତ କୃଷକ ପ୍ରଭୃତି କବିତା ଗ୍ରନ୍ଥ ଅନ୍ତର୍ଭୁକ୍ତ । ଓଡ଼ିଶାର ଲୁପ୍ତ ହୋଇ ଯାଉଥିବା ପ୍ରାଚୀନ ଲୋକସାହିତ୍ୟ, କିମ୍ବଦନ୍ତୀ, ପ୍ରହେଳିକା ଏବଂ ଲୋକଗୀତ ସଂଗ୍ରହ ଏବଂ ପ୍ରକାଶ କରିବାରେ ତାଙ୍କ ଅସାଧାରଣ ବ୍ୟକ୍ତିତ୍ୱର ପରିଚୟ ମିଳେ । ତାଙ୍କ ରଚନାବଳୀରେ ମୁଖ୍ୟତଃ ଜାତିପ୍ରୀତି ଓ ମାନବିକତାର ପ୍ରତିଫଳନ ଘଟିଥିବା ଲକ୍ଷ୍ୟ କରାଯାଏ । 'ଓଡ଼ିଶା ଇତିହାସର ଏକ ଅଜ୍ଞାତ ଅଧ୍ୟାୟ' ଚକ୍ରଧର ମହାପାତ୍ରଙ୍କର ଐତିହାସିକ ଆଲୋଚନା ସମ୍ପର୍କୀୟ ଏକ ପ୍ରଧାନ କୃତି । 'କୁନ୍ତଳା କୁମାରୀ ଜୀବନ ଚରିତ' ତାଙ୍କର ଏକ ବିଶିଷ୍ଟ ଗବେଷଣା ମୂଳକ ଗ୍ରନ୍ଥ । 'ପଦ୍ମମଣି ଗ୍ରନ୍ଥାବଳୀର' ପ୍ରକାଶକ ଭାବେ ସେ ପରିଚିତ । ୧୯୮୨ ମସିହାରେ ଚକ୍ରଧର ମହାପାତ୍ରଙ୍କର ଦେହାନ୍ତ ହେଲା ।

## ଚନ୍ଦ୍ରମଣି ଦାସ :

ଚନ୍ଦ୍ରମଣି ଦାସ ୧୯୧୮ ମସିହାରେ କଟକଠାରେ ଜନ୍ମ ଲାଭ କରିଥିଲେ । ଓଡ଼ିଶାର ଜଣେ ସଫଳବାଦୀ ଔପନ୍ୟାସିକ ଭାବରେ ସେ ବହୁ ଯୁବପାଠକମାନଙ୍କ ନିକଟରେ ପରିଚିତ । ଡିଟେକ୍ଟିଭ କଥାବସ୍ତୁ ଅବଲମ୍ବନରେ ତାଙ୍କ ଉପନ୍ୟାସ ରଚନାର ଧାରା ସମ୍ପୂର୍ଣ୍ଣ ନୂତନ ଧରଣର ଥିଲା । ଭୁଲ କାହାର, ସେ ଓ ମୁଁ,

ହାଇଫେନ୍, ନରବଳି, ସାତପର, ପ୍ରେତପୁରୀର ଗନ୍ତାଘର, ଧର୍ମସ୍ୱର୍ଗ, ଅନାଥାଶ୍ରମ, ମୋକ୍ଷଣ, ଜୁଆର ଭଟ୍ଟା, ପୂର୍ଣ୍ଣଚ୍ଛେଦ, ପୁରୀ ଏକ୍ସପ୍ରେସ, ପାନ୍ଥନିବାସ, ଜନ୍ମ ଜନ୍ମାନ୍ତର, ମଲକଣ୍ଟିଅ ଗୌରୀ, ମାୟାପୁରୀ ପ୍ରଭୃତି ଉପନ୍ୟାସ ରଚନା କରି ସେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ପାରିଛନ୍ତି ।

## ଚନ୍ଦ୍ରମଣି ଦାସ :

ଚନ୍ଦ୍ରମଣି ଦାସ କଟକର କୁମୁଣ୍ଡା ଜୟପୁରରେ ୧୮୯୧ ମସିହାରେ ଜନ୍ମ ହୋଇ ୧୯୫୭ ମସିହାରେ ସ୍ୱର୍ଗାରୋହଣ କରିଥିଲେ । ବ୍ୟାସ ସରୋବର ତାଙ୍କର ଏକ ପ୍ରଧାନ କାବ୍ୟ । 'ବ୍ରଜନପଲ୍ଲୀ'ର ଅନୁବାଦକ ଭାବେ ସେ ବେଶ୍ ଲୋକପ୍ରିୟ । ତାଙ୍କ କାବ୍ୟ କବିତାର ଶୈଳୀ ଅତ୍ୟନ୍ତ ମନୋମୁଗ୍ଧକର ।

## ଚକ୍ରଧର ମିଶ୍ର :

ଚକ୍ରଧର ମିଶ୍ର ୧୮୯୭ ମସିହାରେ ଢେଙ୍କାନାଳରେ ଜନ୍ମ ହୋଇଥିଲେ କିନ୍ତୁ କଟକର ମଙ୍ଗଳାବାଗରେ ତାଙ୍କ ବସାଘରେ ରହୁଥିଲେ । ଜଣେ ବିଶିଷ୍ଟ ବ୍ୟବସାୟୀ ଭାବେ ସେ ପ୍ରସିଦ୍ଧ । ପ୍ରଥମେ ଚକ୍ରଧର ମିଶ୍ର ଶିକ୍ଷାବିଭାଗର ପରିଦର୍ଶକ ଥିଲେ କିନ୍ତୁ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ୧୯୨୧ ମସିହାରେ ଚାକିରିରୁ ଇସ୍ତଫା ଦେଲେ ।

ଓଡ଼ିଶାରେ ପ୍ରଥମ ବସ ସର୍ଭିସ ତାଙ୍କର ଅବଦାନ । ନୂଆପାଟଣା ଠାରୁ ଅନୁଗୁଳ ଏବଂ ପରେ ସମ୍ବଲପୁର, ଯାଜପୁରରୋଡ଼ ଏବଂ ଚନ୍ଦ୍ରାଲୁ ସେ ବସ ଚଳାଇ ଥିଲେ । ଜଣେ ହୋମିଓପ୍ୟାଥି ଚିକିତ୍ସକ ଭାବେ ସେ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯିଏ ଓଡ଼ିଶାରେ ପ୍ରଥମେ ହୋମିଓପ୍ୟାଥିକ ବୋର୍ଡ଼ ଗଠନ କରିଥିଲେ । ଜଣେ ସମାଜସେବୀ ଓ ପରୋପକାରୀ ବ୍ୟକ୍ତି ଭାବେ ତାଙ୍କର ବ୍ୟକ୍ତିତ୍ୱ ବହୁ ଊର୍ଦ୍ଧ୍ୱରେ । ଓଡ଼ିଶାରେ ଭ୍ରାମ୍ୟମାଣ ଚଳଚ୍ଚିତ୍ର ପ୍ରଦର୍ଶନ କରିବା ବ୍ୟବସ୍ଥାର ସେ ହେଉଛନ୍ତି ଅନ୍ୟତମ ବ୍ୟକ୍ତି । ଶେଷ ଅବସ୍ଥାରେ ରୋଗଗ୍ରସ୍ତ ହୋଇ ଚକ୍ରଧର ମିଶ୍ର ୧୯୮୭ ମସିହା ଅପ୍ରେଲ ମାସ ୯ ତାରିଖରେ ମୃତ୍ୟୁବରଣ କରିଥିଲେ ।

## ଚିନ୍ତାମଣି ପତି :

ଜଣେ ଧର୍ମପରାୟଣ ବ୍ୟକ୍ତି ଭାବେ ଚିନ୍ତାମଣି ପତି ସ୍ୱାମୀ ଶିବାନନ୍ଦଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଜୀବନର ପ୍ରାଥମିକ ପର୍ଯ୍ୟାୟରୁ ଶ୍ରୀପତି ସେବାପରାୟଣ ଥିଲେ । ସମାଜ ସେବା ଥିଲା ତାଙ୍କ ଜୀବନର ପ୍ରଧାନ ବ୍ରତ । ବନ୍ୟା, ବାତ୍ୟା ଏବଂ ମରୁଡ଼ି ସମୟରେ ଜନତାଙ୍କୁ ସବୁମତେ ସାହାଯ୍ୟ କରିବାରେ ସେ ଅପାର ଆନନ୍ଦ ପାଉଥିଲେ । ଶିକ୍ଷକତା କରି ପତି ଅତ୍ୟନ୍ତ ଲୋକପ୍ରିୟ ହେଲେ । ଉତ୍କଳମଧୁ ବିଦ୍ୟାପୀଠରେ ପ୍ରଧାନ ଶିକ୍ଷକ ଥିବାବେଳେ ସେ ଛାତ୍ର, ଶିକ୍ଷକ ଓ ଅଭିଭାବକଙ୍କ ଦ୍ୱାରା ବେଶ୍ ଆଦୃତ ହୋଇ

କାରିଥିଲେ । ତାଙ୍କ ଜୀବନର ସାଙ୍ଗଠନିକ ଚିନ୍ତାଧାରା, ଶୃଙ୍ଖଳାପ୍ରତି ଶ୍ରଦ୍ଧା ଓ ସମୟାନୁ-ବର୍ତ୍ତିତା ଅନ୍ୟମାନଙ୍କର ଅନୁକରଣୀୟ ଥିଲା । କଟକର ତୁଳସୀପୁରଠାରେ ସେ ଶିବାନନ୍ଦଙ୍କର ଗୋଟିଏ ଆଶ୍ରମ ପ୍ରତିଷ୍ଠା କରିଥିଲେ ।

## ଚିନ୍ତାମଣି ମିଶ୍ର :

ଚିନ୍ତାମଣି ମିଶ୍ରଙ୍କର ଜନ୍ମ ହୁଏ ୧୯୦୪ ମସିହା ନଭେମ୍ବର ମାସ ୨୯ ତାରିଖରେ । ଜଣେ ଜାତୀୟତାବାଦୀ, ସ୍ୱାଧୀନତା ସଂଗ୍ରାମୀ, ସାହିତ୍ୟିକ ଏବଂ ସମ୍ବାଦପତ୍ର ନୀଳକଣ୍ଠଙ୍କର ସହକର୍ମୀ ଭାବେ ସେ ଆଜୀବନ ଅନେକ ପ୍ରକାରର ଅଧିକାରୀ । ସେ କଟକରେ ରହୁଥିଲେ । 'ନବଜୀବନ' ପ୍ରେସ ବସାଇ ଶ୍ରୀ ମିଶ୍ର ନବଜୀବନ ନାମକ ଏକ ମାସିକ ପତ୍ରିକା ପ୍ରକାଶ କଲେ ।

ଭାରତର ସ୍ୱାଧୀନତା ଆନ୍ଦୋଳନରେ ଭାଗନେଇ ସେ କାରାବରଣ କରିଥିଲେ । ନୀଳକଣ୍ଠଙ୍କର ନବଭାରତ ପ୍ରକାଶରେ ଚିନ୍ତାମଣି ତାଙ୍କୁ ସହଯୋଗ କରିଥିଲେ । ଜଣେ ସୁସାହିତ୍ୟିକ ଏବଂ ଅନର୍ଗଳ ଲେଖକ ଭାବେ ସେ ପ୍ରସିଦ୍ଧ । ବହୁ ଉପନ୍ୟାସ ଓ ଆତ୍ମଜୀବନୀର ରଚୟିତା । ତାଙ୍କ ରଚନାମାନଙ୍କ ମଧ୍ୟରେ ଦେବଦେବୀଙ୍କ ଦୁର୍ଗତି, ଦେବୀ ଓ ଦୁର୍ଲୋଟା, ମଞ୍ଜରୀ, ହତଭାଗ୍ୟ, କଳାର ନିଷ୍ପତ୍ତି, ମହାତ୍ମାଗାନ୍ଧୀଙ୍କ ଜୀବନୀ, ଆମ ଦୁର୍ଗତିର ଦୁର୍ଦ୍ଦିନ ଆଦି ପ୍ରଧାନ । ୧୯୮୦ ମସିହା ଅଗଷ୍ଟ ମାସରେ ତାଙ୍କର ମୃତ୍ୟୁ ହେଲା ।

## ଜଗନ୍ମୋହନ ଲାଲ୍ :

ଜଗନ୍ମୋହନ ଲାଲ୍ କଟକ ଜିଲ୍ଲାର ମାହାଙ୍ଗାରେ ୧୮୩୮ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ଇଂରେଜ ଶାସନର ପ୍ରଥମ ପର୍ଯ୍ୟାୟରେ ସେ ଡେପୁଟି କଲେକ୍ଟର ହୋଇଥିଲେ । ଓଡ଼ିଶାର ଜାତୀୟ ଜୀବନ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଥମ ନାଟ୍ୟକାର ହେଉଛନ୍ତି ଜଗନ୍ମୋହନ ଲାଲ୍ । ସେ କଟକରେ ପ୍ରଥମ ମୁଦ୍ରଣାଳୟ 'କଟକ ପ୍ରିଣ୍ଟିଂ କମ୍ପାନୀ' ବସାଇ ବହୁ ପୁସ୍ତକ ପ୍ରକାଶ କରିଥିଲେ ।

ତାଙ୍କ ରଚିତ ଓଡ଼ିଆ ସାହିତ୍ୟର ପ୍ରଥମ ନାଟକ 'ବାବାଜୀ' ୧୮୭୭ ମସିହାରେ ପ୍ରକାଶିତ ହୋଇଥିଲା । 'ସତୀ ଏବଂ ଓଡ଼ିଶା ବିଜୟ' ନାମକ ଅନ୍ୟ ଦୁଇଟି ନାଟକ ମଧ୍ୟ ତାଙ୍କର ଅମୂଲ୍ୟ କୃତି । ନାଟ୍ୟକଳାର ଅଭିବୃଦ୍ଧି ପାଇଁ ଶ୍ରୀ ଲାଲ୍ ନିଜ ଗ୍ରାମ ମାହାଙ୍ଗାରେ ରାଧାକାନ୍ତ ରଙ୍ଗମଞ୍ଚ ନାମକ ଏକ ସ୍ଥାୟୀ ରଙ୍ଗମଞ୍ଚ ନିର୍ମାଣ କରିଥିଲେ । ନାଟ୍ୟକାର ଭାବେ ସେ ଓଡ଼ିଆ ନାଟକର ପଥ ପ୍ରଦର୍ଶକ ନିଶ୍ଚୟ । 'ଭ୍ରମଭଞ୍ଜନ' ତାଙ୍କର ଏକମାତ୍ର ଉଲ୍ଲେଖଯୋଗ୍ୟ କାବ୍ୟ ଯାହା ବୈଦେଶିକ କଥାବସ୍ତୁ ଅବଲମ୍ବନରେ ରଚିତ । ନାଟକ ସୃଷ୍ଟିରେ ତାଙ୍କର ପ୍ରାଥମିକ ଉଦ୍ୟମକୁ ଅନୁକରଣ କରି ଓଡ଼ିଆ ନାଟ୍ୟ ସାହିତ୍ୟ ସମୃଦ୍ଧି ପଥରେ ଆଗେଇ ଚାଲିଛି । ୧୯୧୩ ମସିହାରେ ଏହି ମହାନ୍ ବ୍ୟକ୍ତିଙ୍କର ଦେହାନ୍ତ ହେଲା ।

## ଜଗତ୍ବନ୍ଧୁ ମହାପାତ୍ର :

ଜଗତ୍‌ବନ୍ଧୁ ମହାପାତ୍ର ପୁରୀରେ ଜନ୍ମ ହୋଇଥିଲେ କିନ୍ତୁ କଟକରେ ଶିକ୍ଷାଲାଭ କରି ସେ କର୍ମ କ୍ଷେତ୍ରରେ ପ୍ରବେଶ କରିଥିଲେ । ଜଣେ ସୁଲେଖକ ଭାବେ ସେ ଖ୍ୟାତନାମା । ଓଡ଼ିଆ ଉପନ୍ୟାସ ସାହିତ୍ୟ ସମୃଦ୍ଧିରେ ତାଙ୍କ ଭୂମିକା ଉଲ୍ଲେଖଯୋଗ୍ୟ । ତାଙ୍କ ଉପନ୍ୟାସମାନଙ୍କ ମଧ୍ୟରେ ସମର୍ପଣ (୧୯୮୩) ବିସର୍ଜନ (୧୯୮୩), ଭଙ୍ଗା ସଂସାର, ମଣିକାଞ୍ଚନ, ଧଡ଼ିଆ ବାବାଜୀ, ପକେଟମାରୁ, ରସଗଳ୍ପଂ ଅପଂ ଅପଂ ଆଦି ପ୍ରଧାନ । ସେ ଶ୍ରୀମଦ୍‌ଭଗବତ୍ ଗୀତା ଓ ତୁଳସୀ ରାମାୟଣର ମଧ୍ୟ ଅନୁବାଦ କରିଥିଲେ । ତାଙ୍କ ଜୀବନ ଥିଲା ସଂଘର୍ଷମୟ ଓ ଦୁଃଖପୂର୍ଣ୍ଣ ।

## ଜାନକୀନାଥ ବୋଷ :

ଜାନକୀନାଥ ବୋଷ ଥିଲେ ପୃଥିବୀର ଖ୍ୟାତନାମା ବ୍ୟକ୍ତିତ୍ୱ ସୁବାଷ ଚନ୍ଦ୍ର ବୋଷଙ୍କର ପିତା । ସେ କଲିକତାରେ ଜନ୍ମ ହୋଇଥିଲେ କିନ୍ତୁ କଟକରେ ଆଇନ୍ ବ୍ୟବସାୟ କରି ପ୍ରସିଦ୍ଧ ହେଲେ । ତାଙ୍କର କଟକ ଓଡ଼ିଆ ବଜାରରେ ଥିବା ସ୍ଥାୟୀ ଗୃହରେ ସେ ରହୁଥିଲେ । ଯାହା ବର୍ତ୍ତମାନ "ନେତାଜୀ ସେବା ସଦନ" ନାମରେ ପରିଚିତ । ସେ ଜଣେ ଜାତୀୟତାବାଦୀ, ପରୋପକାରୀ ଏବଂ ମିଷ୍ଟଭାଷୀ ବ୍ୟକ୍ତି ଥିଲେ ।

## ଜନ୍ ବିମସ :

ଜଣେ ଇଂରେଜ ଅଫିସର ଜନବୀମସ୍ ୧୮୬୩ ଖ୍ରୀଷ୍ଟାବ୍ଦରେ କଟକର କଲେକ୍ଟର ହୋଇ ୧୮୭୮ ମସିହା ପର୍ଯ୍ୟନ୍ତ ଏହି ପଦବୀରେ ଥିଲେ । ସେ ଓଡ଼ିଆ ଭାଷା, ସାହିତ୍ୟ, କଳା ଓ ସଂସ୍କୃତିର ପୃଷ୍ଠପୋଷକ ଭାବେ ପରିଚିତ । କଟକ ସହରର ଉପକଣ୍ଠ ଗୃଉଳଆଗଞ୍ଜରେ ସେ ଅବସ୍ଥାନ କରୁଥିଲେ । କଟକରେ ଅବସ୍ଥାନ କରୁଥିବା ସମୟରେ ବହୁ ଲୋକହିତକର କାର୍ଯ୍ୟ କରି ଯାଇଛନ୍ତି । ଓଡ଼ିଆ ଭାଷା ବିଲୋପ ଆନ୍ଦୋଳନର ସେ ତୀବ୍ର ବିରୋଧୀ ଥିଲେ ଏବଂ ଅନୁଷ୍ଠାନମାନଙ୍କରେ ଓଡ଼ିଆ ଭାଷା ପ୍ରଚଳନ କରାଇବାରେ ତାଙ୍କ ଉଦ୍ୟମ ଅବିସ୍ମରଣୀୟ । କଟକର ଅଧିବାସୀମାନଙ୍କ ସହିତ ତାଙ୍କର ଯେପରି ମଧୁର ସମ୍ପର୍କ ଥିଲା, କଟକର ପର୍ବପର୍ବାଣି ତଥା ସାଂସ୍କୃତିକ ଅନୁଷ୍ଠାନ ସହିତ ତଦନୁରୂପ ସେ ଅଙ୍ଗୀଭୂତ ହୋଇ ଯାଇଥିଲେ ।

## ଜର୍ଜ ପଟ୍ଟନାୟକ :

କଟକରେ ଜନ୍ମ ହୋଇଥିବା ବରପୁତ୍ରମାନଙ୍କ ମଧ୍ୟରୁ ଜର୍ଜ ପଟ୍ଟନାୟକ ଅନ୍ୟତମ । ସେ ୧୯୧୧ ମସିହା ସେପ୍‌ଟେମ୍ବର ମାସ ୨୪ ତାରିଖରେ ତୁଳସୀପୁରରେ ଜନ୍ମ ଗ୍ରହଣ କରିଥିଲେ । ନାରାୟଣ ପଟ୍ଟନାୟକଙ୍କର ସେ ହେଉଛନ୍ତି ଜ୍ୟେଷ୍ଠ ପୁତ୍ର । ତାଙ୍କର ଅନ୍ୟ ଦୁଇପୁତ୍ର ବିଜୁପଟ୍ଟନାୟକ ଓ ସିଜୁ ପଟ୍ଟନାୟକ ଭାରତର ଲୋକପ୍ରିୟ ବ୍ୟକ୍ତିତ୍ୱ । ନାରାୟଣ ପଟ୍ଟନାୟକ ଯଥାର୍ଥରେ ଯୋଗଜନ୍ମା ସନ୍ତାନମାନଙ୍କୁ ଜନ୍ମଦେଇ ନିଜ ଜୀବନକୁ ଧନ୍ୟ କରିଛନ୍ତି । ଜର୍ଜ ପଟ୍ଟନାୟକ ଥିଲେ ନିର୍ଭୀକ ଓ ଦୁଃସାହାସୀ ।

ସେ ଜଣେ ଦକ୍ଷ ଖେଳାଳୀ ଓ କ୍ରୀଡ଼ା ପ୍ରେମୀ ଥିଲେ । ରେଭେନ୍‌ସା କଲେଜିଏଟ୍ ସ୍କୁଲରୁ ମାଟ୍ରିକ୍ ପାଶ୍ କରି ରେଭେନ୍‌ସା କଲେଜରେ କିଛିଦିନ ଅଧ୍ୟୟନ କରିଥିଲେ । ଫୁଟବଲ, ଟେନିସ୍, କ୍ରିକେଟ ଏବଂ ସାଇକେଲ ରେସରେ ତାଙ୍କର ବେଶ୍ ଦକ୍ଷତା ଥିଲା । ବାରବାଟୀ ଷ୍ଟାଡ଼ିୟମର ପ୍ରତିଷ୍ଠା କରି କ୍ରୀଡ଼ା ଜଗତରେ ଏକ ନୂତନ ଅଧ୍ୟାୟର ଉନ୍ମୋଚନ କରିଥିଲେ । ରାଜ୍ୟ ସ୍ପୋର୍ଟସର ମୁଖ୍ୟ ରହି ସେ ଓଡ଼ିଶାର ନାମକୁ ଭାରତର କ୍ରୀଡ଼ାରେ ବେଶ୍ ଆଗେଇ ନେଲେ । ତାଙ୍କର ରୁଚିଥିଲା ଭିନ୍ନ ଧରଣର । ଅନ୍ଧବିଶ୍ୱାସ ଓ କୁସଂସ୍କାରଠାରୁ ସେ ବହୁ ଦୂରରେ ରହୁଥିଲେ । ତାଙ୍କର ଆକସ୍ମିକ ବିୟୋଗ ଘଟିଲା ୧୯୯୦ ମସିହାରେ । କଟକ ହରାଇଲା ଏକ ମହାନ ପ୍ରତିଭାକୁ ।

## ଜଗନ୍ନାଥ ରଥ :

ଜଗନ୍ନାଥ ରଥ ୧୯୩୨ ମସିହା ନଭେମ୍ବର ମାସ ୧୫ ତାରିଖରେ ଗଞ୍ଜାମ ଜିଲ୍ଲାର ଦୁର୍ଗାମାଧବ ପୁରୁଣା ଶାସନରେ ଜନ୍ମ ହୋଇ ୧୯୮୪ ମସିହା ମଇମାସ ୧୬ ତାରିଖରେ କଟକରେ ସ୍ୱର୍ଗାରୋହଣ କରିଥିଲେ । ଜଣେ ବିଶିଷ୍ଟ ପୁସ୍ତକ ପ୍ରକାଶକ ଭାବେ ସେ ଲୋକପ୍ରିୟ । ବ୍ୟବସାୟ ଲକ୍ଷ୍ୟ ନେଇ ଜଗନ୍ନାଥ ରଥ କଟକ ଆସି କଟକରେ 'ଜଗନ୍ନାଥ କମ୍ପାନି' ନାମକ ଏକ ପ୍ରକାଶନ ସଂସ୍ଥା ପ୍ରତିଷ୍ଠା କରିଥିଲେ । ଓଡ଼ିଆ ଭାଷାରେ ୧୦୦ ଖଣ୍ଡରୁ ଊର୍ଦ୍ଧ୍ୱ ପୁସ୍ତକ ପ୍ରକାଶ କରି ସେ ବହୁ ନୂତନ ଓ ଅଭିଜ୍ଞ ଲେଖକଙ୍କୁ ସାହାଯ୍ୟ କରିଥିଲେ । ସେ ନିଜେ ମଧ୍ୟ ଜଣେ ଲେଖକ । ବିଚିତ୍ର ଦେଶର ଅଶୋକ, ଭାରତ ଭ୍ରମଣ, ନେତାଜୀଙ୍କ ଅନ୍ତର୍ଦ୍ଧାନ ରହସ୍ୟ ଓ ସ୍ୱପ୍ନର ରହସ୍ୟ ଇତ୍ୟାଦି ସେ ରଚନା କରିଥିଲେ ।

## ଜୟକୃଷ୍ଣ ମିଶ୍ର :

ଓଡ଼ିଶାର ଜଣେ ପ୍ରସିଦ୍ଧ ଲେଖକ, ଗବେଷକ ଓ ପ୍ରାବନ୍ଧିକ ଭାବରେ ଜୟକୃଷ୍ଣ ମିଶ୍ର ସୁପରିଚିତ । ସେ ୧୯୧୪ ମସିହାରେ କଟକ ଜିଲ୍ଲାର ତିଗିରିଆରେ ଜନ୍ମ ହୋଇଥିଲେ । ଜୟକୃଷ୍ଣ ୧୯୩୩ ଖ୍ରୀଷ୍ଟାବ୍ଦରେ ବାଙ୍କୀ ରମାଦେବୀ ସ୍କୁଲରୁ ମାଟ୍ରିକ ପାଶ କରି ୧୯୩୭ ମସିହାରେ ରେଭେନ୍‌ସା କଲେଜରୁ ଇଂରେଜି ଅନର୍ସ ସହିତ ବି.ଏ. ପାଶ୍ କଲେ ।

୧୯୩୭ ମସିହାରୁ ୧୯୪୨ ପର୍ଯ୍ୟନ୍ତ ସେ ଆଠଗଡ଼ ହାଇସ୍କୁଲରେ ଶିକ୍ଷକ ଥିଲେ । ୧୯୪୪ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଏମ ଏ ପାଶ କରି ରେଭେନ୍‌ସା କଲେଜର ଅଧ୍ୟାପକ ଭାବେ ଯୋଗ ଦେଲେ । ସେ ଜଣେ ଗ୍ରନ୍ଥବିତ୍ରଣ ଅଧ୍ୟାପକ ଥିଲେ । ୧୯୫୮ ମସିହାରୁ ୬୮ ମସିହା ପର୍ଯ୍ୟନ୍ତ ଶିକ୍ଷା ବିଭାଗର ପରିଦର୍ଶକ ହେଲେ । ପରେ ବଡ଼ମ୍ବା ମୋହନ ସୁବୁଦ୍ଧି କଲେଜର ଅଧ୍ୟକ୍ଷ ଭାବେ ନିଯୁକ୍ତି ପାଇଲେ ।

ଜଣେ ସୁଲେଖକ ଭାବରେ ସେ ସଂସ୍କୃତ "ମାତୃମୁକ୍ତାବଳୀ ମାହାତ୍ମ୍ୟ" ରଚନା କରିଥିଲେ । ଅଂଶୁପା, ମାଳ୍ୟଗିରି, ମଞ୍ଜୁଳା, ମଣିମାଳିନୀ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜ

ଏବଂ ଆହୁରି ଅନେକ ଅପ୍ରକାଶିତ ପୁସ୍ତକ ମଧ୍ୟ ତାଙ୍କର ରଚନାବଳୀ ମଧ୍ୟରେ ଅନ୍ତର୍ଭୁକ୍ତ । ତାଙ୍କ "ମାତୃମୁକ୍ତାବଳୀ"ର ମୁଖବନ୍ଧ ଲେଖିଥିଲେ ଡଃ ସର୍ବପଲ୍ଲୀ ରାଧାକୃଷ୍ଣନ । ଓଡ଼ିଆ ସାହିତ୍ୟକୁ ତାଙ୍କର ଦାନ ଅତୁଳନୀୟ । ବହୁ ପ୍ରବନ୍ଧ ଲେଖି ସେ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧି ପଥରେ ଆଗେଇ ନେବାରେ ସହାୟକ ହୋଇ ପାରିଛନ୍ତି । ଜଣେ ଅନର୍ଗଳ ବକ୍ତା ଭାବେ ସେ ସଭାସମିତି ଏବଂ ଶ୍ରେଣୀ ଗୃହରେ ସମସ୍ତଙ୍କୁ ମୁଗ୍ଧ କରିଦେଉଥିଲେ । ୧୯୭୯ ମସିହା ଡିସେମ୍ବର ୧୦ ତାରିଖରେ ତାଙ୍କର ଦେହାନ୍ତ ହେଲା ।

## ଜଗଦାନନ୍ଦ ମହାନ୍ତି :

ଜଗଦାନନ୍ଦ ମହାନ୍ତିଙ୍କ ଜନ୍ମ ହୁଏ ୧୯୧୦ ମସିହା ଜାନୁୟାରୀ ମାସ ୧୪ ତାରିଖରେ ବ୍ରହ୍ମପୁରରେ । ମାନ୍ଦ୍ରାଜର ଖ୍ରୀଷ୍ଟିୟାନ୍ କଲେଜ ଏବଂ କଲିକତାର ପ୍ରେସିଡେନ୍‌ସି କଲେଜରେ ସେ ଶିକ୍ଷାଲାଭ କରିଥିଲେ । ଇତିହାସରେ ଏମ୍. ଏ. ପାଶ୍ କରି ଜଗଦାନନ୍ଦ ରେଭେନ୍‌ସା କଲେଜର ଅଧ୍ୟାପକ ଭାବରେ ଯୋଗଦେଲେ । ପାରଳାଖେମୁଣ୍ଡି ଏବଂ ପୁରୀ କଲେଜରେ ସେ କିଛିଦିନ ଅଧ୍ୟାପନା କରିଥିଲେ । ସେ ଜଣେ ଖ୍ରୀଷ୍ଟିୟାନ୍ ଥିଲେ । କିନ୍ତୁ ଧର୍ମନିରପେକ୍ଷତା ତାଙ୍କ ଜୀବନର ଆଦର୍ଶ ଥିଲା । ୧୯୫୭ରେ ଆମେରିକା ଯାଇଥିଲେ । ସେ ତାଙ୍କ ଦେଉଳସାହିର ବାସଭବନରେ ୧୯୮୧ ମସିହା ମାର୍ଚ୍ଚ ମାସ ୨୧ ତାରିଖରେ ମୃତ୍ୟୁବରଣ କଲେ ।

## ଦେବେନ୍ଦ୍ର ମହାନ୍ତି :

ଓଡ଼ିଶାର ଜଣେ ଲବ୍ଧ ପ୍ରତିଷ୍ଠିତ ସାହିତ୍ୟିକ, ପ୍ରାବନ୍ଧିକ ଓ ସମାଲୋଚକ ଦେବେନ୍ଦ୍ର ମହାନ୍ତି ୧୯୩୪ ମସିହାରେ କଟକ ଜିଲ୍ଲାର ଗୋହିରାରେ ଜନ୍ମ ହୋଇ ୧୯୯୧ ମସିହା ଫେବୃୟାରୀ ୨୮ ତାରିଖରେ କଟକରେ ଦେହତ୍ୟାଗ କରିଥିଲେ । ଶ୍ରୀ ମହାନ୍ତି ରେଭେନ୍‌ସା କଲେଜରୁ ଓଡ଼ିଆରେ ଏମ୍.ଏ. ପାଶ୍ କରି ଖ୍ରୀଷ୍ଟ କଲେଜର ଅଧ୍ୟାପକ ଓ ପରେ ଶେଷରେ ଅଧ୍ୟକ୍ଷ ହୋଇ କାର୍ଯ୍ୟରୁ ଅବସର ନେଲେ । ସେ ଥିଲେ ପ୍ରାଚୀନ ଓ ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ବିଶିଷ୍ଟ ସମାଲୋଚକ । ତାଙ୍କ ସାହିତ୍ୟ କୃତିମାନଙ୍କ ମଧ୍ୟରେ ପ୍ରାଚୀନ ସାହିତ୍ୟ, ପଞ୍ଚସଖା ସାହିତ୍ୟ, ଆଧୁନିକ ସାହିତ୍ୟ ସନ୍ଦର୍ଶନ, ସାହିତ୍ୟର ଗତି ଓ ପ୍ରକୃତି । ଯୁଗଜ୍ୟୋତି ରାଧାନାଥ, ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରଭୃତି ପ୍ରଧାନ । ପ୍ରାଚୀନ କାବ୍ୟକବିତାର ଶୁଦ୍ଧ ସଂସ୍କରଣ ଓ ସମ୍ପାଦନାରେ ସେ ସିଦ୍ଧହସ୍ତ ଥିଲେ । ଜଣେ ଉତ୍ସାହୀ, ସ୍ନେହୀ ଓ କୌତୁହଳୀପ୍ରିୟ ବ୍ୟକ୍ତିତ୍ୱ ଭାବେ ତାଙ୍କର ପ୍ରସିଦ୍ଧି ଥିଲା ।

## ଦୀନବନ୍ଧୁ ସାହୁ :

କଟକର ସୁଯୋଗ୍ୟ ସନ୍ତାନମାନଙ୍କ ମଧ୍ୟରୁ ଦୀନବନ୍ଧୁ ସାହୁ ଅନ୍ୟତମ । ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । କଟକ ଜିଲ୍ଲା ଅନ୍ତର୍ଗତ କେନ୍ଦ୍ରାପଡ଼ାରେ ୧୯୧୦

ମସିହା ଅକ୍ଟୋବର ମାସ ୧୦ ତାରିଖରେ ତାଙ୍କର ଜନ୍ମ । ସେ ତାଙ୍କ କଟକର ବଙ୍ଗାଳୀ ସାହି ଗୃହରେ ରହୁଥିଲେ । ରେଭେନ୍‌ସା କଲେଜରୁ ଅର୍ଥଶାସ୍ତ୍ରରେ ଏମ୍ ଏ ପାସ୍ କରି ୧୯୩୪ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟରୁ ଆଇନ୍‌ରେ ଡିଗ୍ରୀଲାଭ କଲେ ।

ଭାରତର ଖ୍ୟାତନାମା ଅର୍ଥଶାସ୍ତ୍ରଜ୍ଞ ପ୍ରଫେସର ଜ୍ଞାନଚାନ୍ଦଙ୍କର ସେ ଜଣେ ପ୍ରିୟ ଛାତ୍ର ଥିଲେ । ଫୌଜଦାରୀ ଆଇନ୍‌ରେ ତାଙ୍କର ଗଭୀର ଦକ୍ଷତା ଥିଲା । ଏଣୁ ସେ ଜଣେ ବରିଷ୍ଠ ଆଇନଜ୍ଞ ଭାବେ ପ୍ରତିଷ୍ଠା ଲାଭ କଲେ । ବହୁ ବର୍ଷ ପର୍ଯ୍ୟନ୍ତ ଓଡ଼ିଶାର ଆଡ୍‌ଭୋକେଟ୍ ଜେନେରାଲ ପଦବୀରେ ରହି ସେ ଅତ୍ୟନ୍ତ ଲୋକପ୍ରିୟ ହୋଇ ପାରିଥିଲେ । ଅସହଯୋଗ ଆନ୍ଦୋଳନ ରାଜ୍ୟର ପ୍ରଜା ଆନ୍ଦୋଳନର ଜଣେ ବଳିଷ୍ଠ ବ୍ୟକ୍ତିତ୍ୱ ଭାବେ ସେ କାର୍ଯ୍ୟ କରିଥିଲେ । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ଧନବନ୍ଧୁଙ୍କ ଜୀବନର ପ୍ରଧାନ ଲକ୍ଷ୍ୟଥିଲା । ଓଡ଼ିଶାର ନିର୍ଭୀକ ଓ ସ୍ପଷ୍ଟବାଦୀ ବ୍ୟକ୍ତି ବିଶେଷଙ୍କ ମଧ୍ୟରୁ ସେ ଏକତମ । ବୁଦ୍ଧି, ଜ୍ଞାନ, ସ୍ନେହ ଓ ମମତାର ଗନ୍ତାଘର ଭାବେ ସେ ପ୍ରସିଦ୍ଧ । ଶିଳ୍ପ ପ୍ରତି ତାଙ୍କର ପ୍ରଗାଢ଼ ଅନୁରାଗ ଥିଲା ।

ଓଡ଼ିଶାର ରାଜନୀତିରେ ଭାଗନେଇ ସେ ଶିଳ୍ପମନ୍ତ୍ରୀ ହୋଇଥିଲେ ଏବଂ ଶିଳ୍ପର ଅଭିବୃଦ୍ଧି ପାଇଁ ତାଙ୍କର ଉଦ୍ୟମ ବେଶ୍ ଉଲ୍ଲେଖଯୋଗ୍ୟ । ସେ ଯଥାର୍ଥରେ ହେଉଛନ୍ତି ନୂତନ ଶିଳ୍ପନୀତିର ଜନକ । ତାଙ୍କ ଜୀବନ ବହୁ ଘାତ ପ୍ରତିଘାତ ମଧ୍ୟଦେଇ ଗତି କରିଥିଲା । ସେ କଟକ ରୋଟାରୀ କ୍ଲବର ସଭାପତି ଏବଂ ଉତ୍କଳ ସଙ୍ଗୀତ ସମାଜର ଉପ ସଭାପତି ଭାବେ କାର୍ଯ୍ୟ କରିଥିଲେ । କେନ୍ଦ୍ରାପଡ଼ା କଲେଜ ପ୍ରତିଷ୍ଠାରେ ତାଙ୍କ ଉଦ୍ୟମ ସ୍ମରଣଯୋଗ୍ୟ । ଦେଶରେ ଆଇନର ଉପଯୁକ୍ତ ମାନବୃଦ୍ଧି ପାଇଁ ମଧ୍ୟ ସେ ଉଦ୍ୟମ କରିଥିଲେ । ସମାଜର ନିମ୍ନସ୍ତରର ଲୋକେ ଯେପରି ଠିକ୍ ଆଇନ ପାଇବେ ଏଥିପାଇଁ ସେ ଯତ୍ନ କରୁଥିଲେ । ଏହିପରି ଏକ ମହାନ ବ୍ୟକ୍ତିତ୍ୱର ଅବସାନ ହେଲା ୧୯୮୦ ମସିହା ଅକ୍ଟୋବର ୭ ତାରିଖରେ ।

## ଦାମୋଦର ଦାସ :

ଦାମୋଦର ଦାସ ୧୮୯୪ ମସିହା ଜୁଲାଇ ମାସ ୧୨ ତାରିଖରେ କଟକ ଜିଲ୍ଲା ଜଗତସିଂହପୁର ଅନ୍ତର୍ଗତ ବାରଙ୍ଗ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ମାଟ୍ରିକ ଫେଲ୍ ହୋଇଥିଲେ ମଧ୍ୟ ପୋଲିସ ବିଭାଗର ସର୍ବନିମ୍ନ କର୍ମଚାରୀ କନେଷ୍ଟବଲରୁ ଏସ.ପି ପର୍ଯ୍ୟନ୍ତ ଉନ୍ନୀତ ହୋଇପାରିଥିଲେ । ଏଥିପାଇଁ ତାଙ୍କର ଅସାଧାରଣ ବୁଦ୍ଧି, ଗଭୀର ରକ୍ଷା କୌଶଳ, କର୍ତ୍ତବ୍ୟନିଷ୍ଠା ହିଁ ଅତ୍ୟନ୍ତ ପ୍ରଶଂସାର୍ହ । ସେ ୧୯୫୨ ମସିହାରେ ସି. ଆଇ ଓ ଭାବେ କାର୍ଯ୍ୟରୁ ଅବସର ନେଲେ ।

ସେ ମଧ୍ୟ ଜଣେ ଲେଖକ ଭାବେ ପରିଚିତ । ଅପରାଧ ସମସ୍ୟା, ମୋ ଡାଇରୀ, Investigating officers Pocket [moffisil law Guide ତାଙ୍କ ରଚନାମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ । ସେ ୧୯୬୭ ମସିହା ଜୁଲାଇ ମାସ ୭ ତାରିଖରେ

ମୃତ୍ୟୁବରଣ କରିଥିଲେ । ତାଙ୍କ ଜୀବନର ଏକ ଉଲ୍ଲେଖଯୋଗ୍ୟ ଘଟଣା ଯେ ସେ ଯେଉଁ ମାସ ଯେଉଁ ତାରିଖରେ ଜନ୍ମ ହୋଇଥିଲେ ସେଇ ମାସ ସେହି ତାରିଖରେ ମଲେ ।

## ଦୀନବନ୍ଧୁ ଦାସ :

ଆକାଶବାଣୀର ବିଶିଷ୍ଟ କଳାକାର ଦୀନବନ୍ଧୁ ଦାସ ମଙ୍ଗୁଳିଭାଇ ନାମରେ ଲୋକପ୍ରିୟ । ୧୯୧୯ ମସିହା ଡିସେମ୍ବର ମାସ ୧୪ ତାରିଖରେ ପୁରୀ ଜିଲ୍ଲା ବାଲିପାଟଣା ଥାନା ଅନ୍ତର୍ଗତ ଚଣାହାଟ ଗ୍ରାମରେ ତାଙ୍କର ଜନ୍ମ ହୋଇଥିଲା । ସେ ମାତ୍ର ଚାଟଶାଳୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ତାଙ୍କର ଜନ୍ମ ହୋଇଥିଲା ଗୋଟିଏ ଗରିବ ପରିବାରରେ ।

ବାଲ୍ୟକାଳରୁ ସେ କଳାପ୍ରିୟ ଥିଲେ ଏବଂ ତାଙ୍କ ଗ୍ରାମର କୀର୍ତ୍ତନମଣ୍ଡଳୀର ପ୍ରଧାନ ଗାୟକ ହୋଇ ସେ ବିଭିନ୍ନ ସ୍ଥାନରେ କୀର୍ତ୍ତନ ଗାଇଲେ । ୧୯୨୫ ମସିହାରେ ସେ ଯାତ୍ରାଦଳରେ ଯୋଗଦେଇ ବାଳଗୋପାଳ ଭୂମିକାରେ ଅଭିନୟ କରି କେନ୍ଦୁଝର, ପାରଳାଖେମୁଣ୍ଡି ଆଦି ଓଡ଼ିଶାର ବହୁ ସ୍ଥାନରେ ଅଭିନୟ କରି ହଜାର ହଜାର ଦର୍ଶକଙ୍କ ମନୋମୁଗ୍ଧ କରି ପାରିଥିଲେ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ଓଡ଼ିଶା ଥିଏଟର୍‌ର ସୁନାମକୁ ବହୁ ଗୁଣରେ ବୃଦ୍ଧି କରିବାରେ ଦୀନବନ୍ଧୁଙ୍କ ଭୂମିକା ଥିଲା ଗୁରୁତ୍ୱ । 'ଚିମା' ମଧ୍ୟ ତାଙ୍କର ଅନ୍ୟ ଏକ ଲୋକପ୍ରିୟ ନାମ । ଅନ୍ନପୂର୍ଣ୍ଣା ଥିଏଟରର ଏ ଗ୍ରୁପ୍ ଏବଂ ବି ଗ୍ରୁପ୍‌ରେ ମଧ୍ୟ ସେ ଅଭିନୟ କରିଥିଲେ ।

୧୯୫୩ ମସିହାରେ ସେ ତାଙ୍କ ବନ୍ଧୁ କୃଷ୍ଣଚରଣ ପାଣ୍ଡେଙ୍କ ସହିତ ଆକାଶବାଣୀରେ ଯୋଗ ଦେଲେ । ଆକାଶବାଣୀର କୃଷିସଂସାର କାର୍ଯ୍ୟକ୍ରମରେ କୃଷ୍ଣଚନ୍ଦ୍ର ପାଣ୍ଡେ 'ମଉସା' ଓ ଦୀନବନ୍ଧୁ 'ମଙ୍ଗୁଳିଭାଇ' ରୂପେ ପରିଚିତ ଥିଲେ । ଏହି କାର୍ଯ୍ୟକ୍ରମକୁ ସରସ, ସୁନ୍ଦର ଓ ରସିକ କରିବାରେ ତାଙ୍କର ଭୂମିକା ସର୍ବପ୍ରଧାନ । ଏତଦ୍‌ବ୍ୟତୀତ ଶ୍ରୀ ଲୋକନାଥ, ନୂଆବୋଉ, ଧରିତ୍ରୀ, ଘରସଂସାର, ମାଣିକଯୋଡ଼ି, ନବଜନ୍ମ, ଶେଷଶ୍ରାବଣ ଏବଂ ସୁବର୍ଣ୍ଣସୀତା ଆଦି ଚଳଚ୍ଚିତ୍ରରେ ସେ ଅଭିନୟ କରି ଲୋକପ୍ରିୟତା ଅର୍ଜନ କରିଥିଲେ ।

୧୯୮୭ ମସିହାରେ ସେ କାର୍ଯ୍ୟରୁ ଅବସର ନେଲେ । ବିଶିଷ୍ଟ କଳାକାର ଭାବରେ ଦୀନବନ୍ଧୁ ପଞ୍ଚସଖା ପିକ୍‌ଚର, ଓଡ଼ିଶା ସଙ୍ଗୀତ ଏକାଡେମୀ ଓ ଉତ୍କଳ ପାଠକ ସଂସଦ ତରଫରୁ ସମ୍ମାନିତ ହୋଇଥିଲେ । ୧୯୯୨ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ନନ୍ଦକିଶୋର ଦାସ :

ନନ୍ଦକିଶୋର ଦାସ ୧୮୪୫ ମସିହାରେ ଜନ୍ମଗ୍ରହଣ କରିଥିଲେ । ସେ ଏଣ୍ଟ୍ରାନ୍‌ସ ପରୀକ୍ଷା ପାଶ୍ କରିବା ପରେ ସ୍କୁଲ ବିଭାଗର ପରିଦର୍ଶକ ଭାବେ ନିଯୁକ୍ତି ପାଇଲେ କିନ୍ତୁ ତାଙ୍କ କାର୍ଯ୍ୟଦକ୍ଷତା ଯୋଗୁଁ ସେ ରେଭେନ୍ୟୁ ବିଭାଗର ଜଣେ ବରିଷ୍ଠ ଅଫିସର ହୋଇପାରିଥିଲେ । ୧୮୮୭ ମସିହାରେ ମରୁଡ଼ିର ମୁକାବିଲା କରି ସେ ନିଜ

ବ୍ୟକ୍ତିତ୍ୱର ବିକାଶ କରିଥିଲେ । ଡେପୁଟି କମିଶନର ହୋଇ ନନ୍ଦକିଶୋର କାର୍ଯ୍ୟରୁ ଅବସର ନେଲେ । ଆଦିବାସୀ ଭାଷା ମୁଖ୍ୟତଃ କନ୍ଧ ଓ କୁଅଇ ଉପଭାଷାର ବହୁ ପୁସ୍ତକ ରଚନା କରି ସେଗୁଡ଼ିକ ଇଂରାଜୀରେ ଅନୁବାଦ କରିଥିଲେ । ସାମାଜିକ ନୀତି, ନିୟମ ଓ ଜାତିପ୍ରଥାର ସେ ଥିଲେ ଘୋର ବିରୋଧୀ । ୧୯୧୪ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ନନ୍ଦକିଶୋର ବଳ :

ନନ୍ଦକିଶୋର ବଳ ୧୮୭୫ ମସିହା ଡିସେମ୍ବର ମାସ ୨୨ ତାରିଖରେ କଟକ ଜିଲ୍ଲା ମାହାଙ୍ଗାଥାନାର କୁସୁମପୁର ଗ୍ରାମରେ ଏକ ଖଣ୍ଡାୟତ ପରିବାରରେ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଭଜନାନନ୍ଦ ଜେନା ଏବଂ ନନ୍ଦକିଶୋରଙ୍କ ପ୍ରାଥମିକ ନାମ ରସାନନ୍ଦ ଥିଲା । ସେ ଖୁବ୍ କମ୍ ବୟସରୁ ଆଲମଗିରିଗଡ଼ର ବଳ ବଂଶୀୟ ଜମିଦାର ଘରକୁ ପିଉସୀ ଜାନକୀ ଦେବୀଙ୍କର ପୋଷ୍ୟପୁତ୍ର ହୋଇ ଆସିବା ପରେ ନନ୍ଦକିଶୋର ବଳରେ ପରିଣତ ହେଲେ । ନନ୍ଦକିଶୋର ଜଣେ ମେଧାବୀ ଛାତ୍ର ଥିଲେ ।

୧୮୯୦ ମସିହାରେ ଉଚ୍ଚ ପ୍ରାଥମିକ ବୃତ୍ତି ପରୀକ୍ଷାରେ ସମଗ୍ର କଟକ ଜିଲ୍ଲାରେ ସେ ପ୍ରଥମ ସ୍ଥାନ ଅଧିକାର କରି ବୃତ୍ତିଲାଭ କରିଥିଲେ । ନନ୍ଦକିଶୋର କୁସୁପୁରରୁ ମାଇନର ପାଶ୍ କରି ଭକ୍ତମଧୁବିଦ୍ୟାପୀଠରେ ନାମ ଲେଖାଇଲେ । ଏହି ସମୟରେ ସେ ଭକ୍ତକବି ମଧୁସୂଦନ ଓ ବିଶ୍ୱନାଥ କରଙ୍କ ସଂସ୍ପର୍ଶରେ ଆସିଥିଲେ । ୧୮୯୯ ମସିହାରେ ସେ ରେଭେନ୍‌ସା କଲେଜରୁ ବି. ଏ. ପାଶ୍ କରି ତତ୍କାଳୀନ ଟାଉନସ୍କୁଲ (ବର୍ତ୍ତମାନର ଭକ୍ତମଧୁବିଦ୍ୟାପୀଠ)ରେ ଶିକ୍ଷକ ଭାବରେ ନିଯୁକ୍ତ ପାଇଲେ । ପରେ ନନ୍ଦକିଶୋର କଟକ ଜିଲ୍ଲା ବୋର୍ଡ଼ ଅଧୀନରେ ସ୍କୁଲ ସବ୍‌ଇନ୍‌ସପେକ୍ଟର, କଟକ ଟ୍ରେନିଂ ସ୍କୁଲର ସହକାରୀ ଶିକ୍ଷକ, ସମ୍ବଲପୁର ଓ ବାଲେଶ୍ୱର ଜିଲ୍ଲାସ୍କୁଲର ପ୍ରଧାନ ଶିକ୍ଷକ, ଜିଲ୍ଲାସ୍କୁଲ ସମୂହର ଡେପୁଟି ଇନ୍‌ସପେକ୍ଟର ପ୍ରଭୃତି ବିଭିନ୍ନ ପଦ ପଦବୀରେ କାର୍ଯ୍ୟକରି ୧୯୧୫ ମସିହାରେ ଓଡ଼ିଶା ଶିକ୍ଷା ବିଭାଗର ଆସିଷ୍ଟାଣ୍ଟ ଇନସ୍‌ପେକ୍ଟର ପଦକୁ ଉନ୍ନୀତ ହୋଇଥିଲେ ।

ତାଙ୍କର କାର୍ଯ୍ୟଦକ୍ଷତା ତତ୍କାଳୀନ ଇଂରେଜ ସାହେବଙ୍କୁ ବେଶ୍ ସନ୍ତୁଷ୍ଟ କରିପାରିଥିଲା । ଫଳରେ ସେ ୧୯୨୪ ମସିହାରେ ତାଙ୍କୁ 'ରାୟସାହେବ' ଉପାଧିରେ ଭୂଷିତ କରିଥିଲେ । ନନ୍ଦକିଶୋରଙ୍କ କର୍ମମୟ ଜୀବନ ପରି ସାହିତ୍ୟିକ ଜୀବନ ଥିଲା ବହୁମୁଖୀ । ସେ କାବ୍ୟ, କବିତା, ଉପନ୍ୟାସ, ପ୍ରବନ୍ଧ ଓ ସମାଲୋଚନା ଇତ୍ୟାଦି ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଥିଲେ । ଓଡ଼ିଆ ସାହିତ୍ୟରେ ନନ୍ଦକିଶୋର 'ପଲ୍ଲୀକବି' ଭାବେ ପରିଚିତ । ତାଙ୍କର ରଚନାମାନଙ୍କ ମଧ୍ୟରେ ବସନ୍ତ କୋକିଳ, ନାନାବାୟା ଗୀତ, ପଲ୍ଲୀଗୀତ, ନିର୍ଝରିଣୀ, କୃଷ୍ଣାକୁମାରୀ, ଶର୍ମିଷ୍ଠା, ଗ୍ରହଚିତ୍ର, ଜନ୍ମଭୂମି, କନକଲତା, ସନ୍ଧ୍ୟା ସଙ୍ଗୀତ ପ୍ରଭୃତି ପ୍ରଧାନ । ୧୯୨୭ ମସିହାରେ ସେ

ବହ୍ମୂତ୍ର ରୋଗରେ ଆକ୍ରାନ୍ତ ହୋଇ ଏହାର ବର୍ଷକ ପରେ ୧୯୨୮ ମସିହା ଜୁଲାଇ ମାସ ପହିଲାରେ ମାତ୍ର ୫୨ ବର୍ଷ ବୟସରେ ପରଲୋକ ଗମନ କରିଥିଲେ ।

## ନନ୍ଦକିଶୋର ରଥ :

ନନ୍ଦକିଶୋର ରଥ ଜଣେ ମଧୁରଭାଷୀ, ସ୍ନେହୀ ଓ ପରୋପକାରୀ ବ୍ୟକ୍ତିଭାବେ ପରିଚିତ । କଟକ ଚକ୍ରବର୍ତ୍ତୀ ତେଲେଙ୍ଗାପେଣ୍ଠରେ ତାଙ୍କର ଜନ୍ମ । ଜଣେ ଶିଶୁସାହିତ୍ୟିକ ଭାବରେ ତାଙ୍କର ଗ୍ରନ୍ଥମାଳା 'ନୂଆ ପଢ଼ା' ବେଶ୍ ସୁଖପାଠ୍ୟ ।

## ନାରାୟଣ ମୋହନ ଦେ :

ନାରାୟଣ ମୋହନ ଦେ ୧୮୮୯ ମସିହାରେ ଭଦ୍ରଖର 'ବଉଦପୁର'ରେ ଜନ୍ମ ହୋଇଥିଲେ । ଛାତ୍ର ଅବସ୍ଥାରୁ ସେ ମେଧାବୀ ଥିଲେ ଏବଂ ରେଭେନ୍‌ସା କଲେଜରେ ପାଠ ପଢ଼ି ସେହି କଲେଜର ଅଧ୍ୟାପକ ଭାବେ ନିଯୁକ୍ତି ପାଇଲେ । ଓଡ଼ିଆ ଭାଷାରେ ଅନେକ ପୁସ୍ତକ ସେ ରଚନା କରି ପାଠ୍ୟ ପୁସ୍ତକର ଅଭାବ ଦୂରୀକରଣ ପାଇଁ ଉଦ୍ୟମ କରିଥିଲେ । ତାଙ୍କ ରଚନାମାନଙ୍କ ମଧ୍ୟରେ ଜୟନ୍ତୀ, ବୈଜୟନ୍ତୀ, ବାରମାସୀ, ସାହିତ୍ୟ ଓ ସମାଲୋଚନାର ୧ମ ଭାଗ ଓ ୨ୟ ଭାଗ ଆଦି ପ୍ରଧାନ । ୧୯୬୩ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ନାରାୟଣ ମିଶ୍ର :

ଓଡ଼ିଶାର ଜଣେ ବିଶିଷ୍ଟ ଶିକ୍ଷାବିତ୍ ଓ କ୍ରୀଡ଼ାପ୍ରେମୀ ନାରାୟଣ ମିଶ୍ରଙ୍କର ଜନ୍ମ ହୋଇଥିଲା ୧୮୮୯ ମସିହା ଅକ୍ଟୋବର ୩୦ ତାରିଖରେ । ଶ୍ରୀ ମିଶ୍ର ୧୯୧୪ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ପଦାର୍ଥ ବିଜ୍ଞାନରେ ଏମ୍. ଏସ. ସି. ପାଶ୍ କରି ରେଭେନ୍‌ସା କଲେଜର ପଦାର୍ଥ ବିଜ୍ଞାନ ଅଧ୍ୟାପକ ଭାବରେ ଯୋଗ ଦେଲେ । ସେ କଟକରେ ସ୍ଥାୟୀ ଭାବରେ ଅବସ୍ଥାନ କରୁଥିଲେ ।

ଜଣେ ସ୍ନେହୀ ତଥା ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ଅଧ୍ୟାପନା କରିବା ସହିତ କ୍ରୀଡ଼ାଜଗତରେ ସେ ବେଶ୍ ସୁନାମ ଅର୍ଜନ କରିଥିଲେ । ହକି ଓ କ୍ରିକେଟ ଖେଳର ସେ ଥିଲେ ଜଣେ ଦକ୍ଷ ଖେଳାଳୀ । କଲେଜ ଜୀବନରେ ସେ କଲେଜର ଏଗାର ଜଣ ବଛା ଖେଳାଳୀଙ୍କ ମଧ୍ୟରୁ ଥିଲେ ଅନ୍ୟତମ । ଜଣେ ଦକ୍ଷ ବୋଲର ଭାବରେ ବହୁଦିନ ପର୍ଯ୍ୟନ୍ତ ତାଙ୍କର ଖ୍ୟାତିଥିଲା ।

ତାଙ୍କର ଗବେଷଣା ଅତ୍ୟନ୍ତ ଉଚ୍ଚମାନର । ପଦାର୍ଥ ବିଜ୍ଞାନ ଉପରେ ଗବେଷଣାତ୍ମକ ଲେଖା ସାରାଭାରତର ପଦାର୍ଥ ବିଜ୍ଞାନୀମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ସେ ଓଡ଼ିଶାର ବହୁ ସରକାରୀ କଲେଜର ଅଧ୍ୟକ୍ଷ ଥିଲେ । ତାଙ୍କର ଭଦ୍ରୋଚିତ ବ୍ୟବହାର ଛାତ୍ର, ଶିକ୍ଷକ ଏବଂ ଅଭିଭାବକ ସମସ୍ତଙ୍କୁ ମୁଗ୍ଧ କରୁଥିଲା । ତାଙ୍କ

ନାମରେ କଟକରେ ଏକ ରାସ୍ତା ନାମିତ ହୋଇଛି । ଏଠାରେ ଏକ ବ୍ୟକ୍ତିତ୍ୱର ଅବସାନ ହେଲା ୧୯୭୭ ମସିହା ମଇ ମାସ ୨୮ ତାରିଖରେ ।

## ନାରାୟଣ ପଣ୍ଡା :

ନାରାୟଣ ପଣ୍ଡା ୧୮୯୯ ମସିହା ସେପ୍ଟେମ୍ବର ମାସ ୨୫ ତାରିଖରେ କଟକ ଜିଲ୍ଲାର ବଡ଼ମ୍ବା ମୌଜା ଅନ୍ତର୍ଗତ 'ଡଇନ୍‌କଣା' ଗ୍ରାମରେ ଜନ୍ମ ହୋଇ ୧୯୮୩ ମସିହା ଡିସେମ୍ବର ମାସ ୨୧ ତାରିଖରେ ସ୍ୱର୍ଗାରୋହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଭାଗବତ ପଣ୍ଡା ଓ ମାତାଙ୍କ ନାମ ଅଗଣି ଦେବୀ । ଜଣେ ଆଦର୍ଶବାଦୀ ଶିକ୍ଷକ ଭାବେ ତାଙ୍କର ପ୍ରସିଦ୍ଧି ଥିଲା ।

୧୯୨୯ ମସିହାରେ ରେଭେନ୍‌ସା କଲେଜରୁ ବି. ଏ. ପାଶ୍ କରି ଶିକ୍ଷକତା ଆରମ୍ଭ କରିଥିଲେ । ସେ ଜଣେ ମେଧାବୀ ଛାତ୍ର ଥିଲେ । ଏଠାରେ ସମୟାନୁବର୍ତ୍ତୀ ଥିଲେ ସେ ପାଠପଢ଼ା ସମୟରେ ସେ ଗୋଟିଏ ମୁହୂର୍ତ୍ତ ମଧ୍ୟ ନଷ୍ଟ କରୁନଥିଲେ । ଗଣିତ ବିଦ୍ୟାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ ବହୁ ସରକାରୀ ସ୍କୁଲରେ ଶିକ୍ଷକ ଏବଂ ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟକରି ୧୯୫୭ ମସିହାରେ କାର୍ଯ୍ୟରୁ ଅବସର ନେଲେ । ଅବସର ପରେ ମଧ୍ୟ ଶ୍ରୀ ପଣ୍ଡା ୧୯୬୯ ମସିହା ପର୍ଯ୍ୟନ୍ତ ଦେପାଳସ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବେ କାର୍ଯ୍ୟ କରିଥିଲେ ।

## ନିମାଇଁ ଚରଣ ହରିଚନ୍ଦନ :

ଓଡ଼ିଶାର ଜଣେ ବିଖ୍ୟାତ ସଙ୍ଗୀତଜ୍ଞ ଓ କଣ୍ଠଶିଳ୍ପୀ ଭାବରେ ନିମାଇଁଚରଣ ହରିଚନ୍ଦନଙ୍କ ସ୍ଥାନ ଯଥେଷ୍ଟ ଊର୍ଦ୍ଧ୍ୱରେ । କଟକ ଆକାଶବାଣୀର ଜଣେ ସଙ୍ଗୀତଶିଳ୍ପୀ ଭାବେ ସେ ପ୍ରସିଦ୍ଧ । ୧୯୨୫ ମସିହା ଠାରୁ କେବଳ ପ୍ରାଚୀନ କବିତା, ଚମ୍ପୂ, ଭଜନ ଓ ଜଣାଣ ନିରବଚ୍ଛିନ୍ନ ଭାବରେ ସେ ଗାଉଥିଲେ । ଜଗନ୍ନାଥଙ୍କ ଜଣାଣ ଗାଇବାରେ ସେ ଓଡ଼ିଶାରେ ଅଦ୍ୱିତୀୟ ଓ ଅତୁଳନୀୟ । ତାଙ୍କର ଲଳିତ କଣ୍ଠସ୍ୱର ପାଇଁ ସେ ବାଣୀକଣ୍ଠ ଉପାଧିରେ ଭୂଷିତ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କ ବାହୁଡ଼ାଯାତ୍ରାରେ ଭଜନ ବୋଲୁଥିବା ବେଳେ ସେ ପୁରୀରେ ଦେହତ୍ୟାଗ କଲେ ।

## ନିତାଇ ପାଲିତ :

ଜଣେ ଚଳଚିତ୍ର ନିର୍ଦ୍ଦେଶକ ଓ ନିର୍ମାତା ଭାବରେ ନିତାଇ ପାଲିତଙ୍କର ନାମ ଲୋକପ୍ରିୟ । ସେ ୧୯୨୩ ମସିହାରେ ଜନ୍ମଗ୍ରହଣ କରିଥିଲେ । ଦୀର୍ଘ ୪୦ ବର୍ଷ ପର୍ଯ୍ୟନ୍ତ ନିତାଇ ପାଲିତ ଥିଲେ ଓଡ଼ିଆ ଚଳଚ୍ଚିତ୍ର ଜଗତର ଅଦ୍ୱିତୀୟ ସମ୍ରାଟ । ଭାରତ ନାଟକ ରାଜ୍ୟରେ ସେ ମଧ୍ୟ ଏକଦା ଶୃଙ୍ଖଳା ସୃଷ୍ଟି କରିଥିଲେ । ଆକାଶବାଣୀ, ଦୂରଦର୍ଶନ ଏବଂ ଚଳଚ୍ଚିତ୍ର ନିଗମର ଉପଦେଷ୍ଟା ଭାବରେ ସେ ଏହାର ଅଭିବୃଦ୍ଧି ତଥା ଲୋକପ୍ରିୟତା ପାଇଁ ବହୁ ପରାମର୍ଶ ଦେଉଥିଲେ ।

ତାଙ୍କ ଦ୍ୱାରା ନିର୍ମିତ ଚଳଚ୍ଚିତ୍ରମାନଙ୍କ ମଧ୍ୟରୁ କେଦାରଗୌରୀ, ଭାଇ ଭାଇ ଓ ମଲାଜହ୍ନ ପୁରସ୍କାର ଲାଭ କରିଥିଲା । ଦୂରଦର୍ଶନର ଚିତ୍ର ଗ୍ରହଣଶୈଳୀ ଏବଂ ଭାଷା ଅତ୍ୟନ୍ତ ଆକର୍ଷଣୀୟ । ବର୍ତ୍ତମାନର ପ୍ରାୟ ବହୁ ଚଳଚ୍ଚିତ୍ର ନିର୍ମାତା ଓ ନିର୍ଦ୍ଦେଶକ ତାଙ୍କର ଛାତ୍ର । ଆଦର୍ଶମାନର ଚଳଚ୍ଚିତ୍ର କରିବାକୁ ଯାଇ ପାଳଚିତ ଆର୍ଥିକ ସଙ୍କଟର ସମ୍ମୁଖୀନ ହୋଇଥିଲେ । ଫଳରେ ରହିଥିବା ଅରକ୍ଷିତ ଏବଂ କେତେ ସ୍ୱପ୍ନ ଓ କେତେ ଆଶାକୁ ସେ ସମ୍ପୂର୍ଣ୍ଣ କରିପାରି ନଥିଲେ । ଓଡ଼ିଶାର ଦର୍ଶକମାନଙ୍କର ସେ ଅତ୍ୟନ୍ତ ପ୍ରିୟ ଥିଲେ । ସେ ୧୯୮୨ ମସିହାରେ ଜୟଦେବ ପୁରସ୍କାର ଏବଂ ୧୯୮୪ ମସିହାରେ ମୋହନ ସୁନ୍ଦର ଦେବ ଗୋସ୍ୱାମୀ ପୁରସ୍କାର ପାଇଥିଲେ । ୧୯୯୦ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ନୀଳକଣ୍ଠ ଦାସ :

ନୀଳକଣ୍ଠ ଦାସ ଥିଲେ ସତ୍ୟବାଦୀ ଗୋଷ୍ଠୀର ପ୍ରଚଣ୍ଡ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ । ଏକାଧାରରେ ଜଣେ ସାଧକ, ପଣ୍ଡିତ, ବାଗ୍ମୀ, ଦାର୍ଶନିକ, ସଂସ୍କାରକ, ରାଜନୀତିଜ୍ଞ, ଶିକ୍ଷାବିତ୍, ଦେଶସେବକ, ସଂଗ୍ରାମୀ, ସାହିତ୍ୟିକ, ସମାଲୋଚକ ଏବଂ କବି କହିଲେ କେବଳ ନୀଳକଣ୍ଠଙ୍କୁ ହିଁ ବୁଝାଏ । ଏହି ମହାନ୍ ବ୍ୟକ୍ତି ୧୮୮୪ ମସିହା ଅଗଷ୍ଟ ମାସ ୫ ତାରିଖରେ ସତ୍ୟବାଦୀ ନିକଟବର୍ତ୍ତୀ ରାମଚନ୍ଦ୍ରପୁର ବ୍ରାହ୍ମଣ ଶାସନରେ ଭୂମିଷ୍ଠ ହୋଇଥିଲେ । ତୁଳସୀ ଦୁଇପତ୍ରରୁ ବାସିଲାପରି ବାଲ୍ୟକାଳରୁ ତାଙ୍କର ପ୍ରତିଭାର ବିକାଶ ହୋଇଥିଲା ।

ସେ ଜଣେ ଉତ୍ତମ ଛାତ୍ର ଥିଲେ । ଓଡ଼ିଆ, ଇଂରେଜୀ ଏବଂ ସଂସ୍କୃତ ଇତ୍ୟାଦି ଭାଷା ସାହିତ୍ୟରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । କଲିକତା ସ୍କଟିସ୍ କଲେଜରୁ ଦର୍ଶନ ବିଭାଗରେ ଏମ୍. ଏ. ପାସ୍ କରି ନୀଳକଣ୍ଠ ୧୯୨୦ ମସିହାରେ କଲିକତା ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗର ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲେ । ଏହା ପୂର୍ବରୁ ୧୯୧୧ ମସିହାରୁ ସେ ସତ୍ୟବାଦୀ ସ୍କୁଲର ପ୍ରଧାନ ଶିକ୍ଷକଭାବେ ୮ ବର୍ଷ କାର୍ଯ୍ୟ କରିଥିଲେ ।

୧୯୨୧ ମସିହାରେ ସେ ଲବଣ ସତ୍ୟାଗ୍ରହରେ ଯୋଗ ଦେଲେ । ତାଙ୍କର ରାଜନୀତିକ ଜୀବନ ମଧ୍ୟରେ ନୀଳକଣ୍ଠ ୧୯୨୨ ମସିହାରେ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଏବଂ ବିଧାନସଭାର ବାଚସ୍ପତି ହୋଇଥିଲେ । ଦେଶର ସ୍ୱାଧୀନତା ସଂଗ୍ରାମର ଜଣେ ବିପ୍ଳବୀଭାବେ ୧୯୨୨ରୁ ୧୯୩୪ ପର୍ଯ୍ୟନ୍ତ ପାଞ୍ଚଥର କାରାବରଣ କରିଥିଲେ । ସମ୍ବଲପୁରରେ ଜାତୀୟ ବିଦ୍ୟାଳୟ ଗଠନ କରି 'ସେବା' ନାମକ ଏକ ପତ୍ରିକାର ସମ୍ପାଦନା କଲେ । ସତ୍ୟବାଦୀ ବନବିଦ୍ୟାଳୟର ଶିକ୍ଷକ କବି ଭାବରେ ସେ ପରିଚିତ । ସେତେବେଳେ ଏହି ବିଦ୍ୟାଳୟ ସାମାଜିକ, ସାହିତ୍ୟିକ ଏବଂ ସଂସ୍କାରଧର୍ମୀ ଆନ୍ଦୋଳନର ଥିଲା ପ୍ରାଣକେନ୍ଦ୍ର । ସମାଜରେ ପୂରି ରହିଥିବା କୁସଂସ୍କାର ଓ ଅନ୍ଧ

ବିଶ୍ୱାସକୁ ମୂଲ୍ୟାୟନ କରିବା ପାଇଁ ନୀଳକଣ୍ଠଙ୍କ ଲେଖନୀ ଥିଲା ଚଳଚଞ୍ଚଳ । 'ମୋ ନଶ' ପ୍ରବନ୍ଧ ମାଧ୍ୟମରେ ସେ ବ୍ୟଙ୍ଗ ବିଦ୍ରୂପର ଶାଣିତ ଖଡ୍ଗ ପ୍ରୟୋଗ କରି ଏହି ସଂସ୍କାର ଆନ୍ଦୋଳନକୁ ଏକ ବ୍ୟାପକ ଭିତ୍ତିଭୂମି ଯୋଗାଇଥିଲେ । ଏହି ନଶ ଆନ୍ଦୋଳନରେ ମୋ ନଶ (୧୯୧୧) ପ୍ରବନ୍ଧ ସହିତ 'ଅଙ୍କୁ ଓ ନେହରୁ' ପ୍ରତିଭା ପୂଜା ଓ ପ୍ରତିମାପୂଜା (୧୯୧୦) ଆମ୍ଭର ଥିଲ ଓ କାରଣ ଥାଇପାରେ ପ୍ରଭୃତି ପ୍ରବନ୍ଧ ରଚନା ମାଧ୍ୟମରେ ସଂସ୍କାରବାଦୀ ଚିନ୍ତାଧାରାର ପରିଚୟ ଦେଇଥିଲେ ।

ସେ ଯଥାର୍ଥରେ ଥିଲେ ଶୃଙ୍ଖଳା ଓ ନୀତିର ଶ୍ରେଷ୍ଠ ପୂଜାରୀ । ଜଣେ କବି ଭାବରେ ସେ ସୃଷ୍ଟି କରିଛନ୍ତି କୋଣାର୍କେ, ଖାରବେଳ, ଦାସ ନାୟକ ଓ ପ୍ରଣୟିନୀ କାବ୍ୟ । ସଂସ୍କୃତ ଓ ସଂସ୍କୃତି, ଓଡ଼ିଆ ସାହିତ୍ୟର କ୍ରମ ପରିଣାମ, ଓଡ଼ିଆ ଭାଷା ଓ ସାହିତ୍ୟ ତାଙ୍କର ସମାଲୋଚନାଧର୍ମୀ ପୁସ୍ତକଭାବେ ପରିଚିତ । ସେ ଜଣେ ସ୍ୱାଧୀନଚେତା ନିର୍ଭୀକ ବ୍ୟକ୍ତି ଥିଲେ । ତାଙ୍କର ଆତ୍ମଜୀବନୀ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲା । ସେ ଶିଶୁମାନଙ୍କ ପାଇଁ ବହୁ କବିତା ଲେଖିଥିଲେ । ୧୯୩୪ରେ ନୀଳକଣ୍ଠ ନବଭାରତ ପ୍ରେସ ସ୍ଥାପନା କରି 'ନବଭାରତ' ପତ୍ରିକା ପ୍ରକାଶ କଲେ । ବହୁ ସାହିତ୍ୟ ଓ ସାଂସ୍କୃତିକ ସଂସ୍ଥା ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ତାଙ୍କର ନିର୍ଭୀକ ତଥା ଅପ୍ରତିଦ୍ୱନ୍ଦ୍ୱୀ ବ୍ୟକ୍ତିତ୍ୱ ପାଇଁ ସେ ଭାରତ ସରକାରଙ୍କଠାରୁ ପଦ୍ମଭୂଷଣ ଉପାଧି ଲାଭ କରିଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋଭାଇନ୍ ସେଲରଭାବେ ଅବସ୍ଥାପିତ ହୋଇ ସେ ଏହାର ସମୃଦ୍ଧି ପାଇଁ ଉଦ୍ୟମ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ମଧ୍ୟ ତାଙ୍କୁ ସମ୍ମାନସୂଚକ ଡକ୍ଟରେଟ ଉପାଧିରେ ଭୂଷିତ କରିଥିଲା । ପଣ୍ଡିତ ନୀଳକଣ୍ଠ ଦାସ ୧୯୬୭ ମସିହା ନଭେମ୍ବର ୭ ତାରିଖରେ ଇହଧାମ ତ୍ୟାଗକଲେ ।

## ନିର୍ମଳା ଦେବୀ :

୧୯୦୭ ମସିହାରେ ନିର୍ମଳା ଦେବୀ ଜନ୍ମ ହୋଇଥିଲେ । ଜଣେ ନାରୀ କବି ଭାବରେ ସେ ପରିଚିତ । ତାଙ୍କ କାବ୍ୟ କବିତାରେ ରୋମାଣ୍ଟିକ ଚେତନାର ସ୍ୱର ପରିଲକ୍ଷିତ ହୁଏ । ବନାନ୍ତେ ଓ ସୀମନ୍ତୀ ପ୍ରଭୃତି କବିତାର କବି ଭାବରେ ସେ ଜଣାଶୁଣା ।

## ନୀଳମଣି ବିଦ୍ୟାରତ୍ନ :

ନୀଳମଣି ବିଦ୍ୟାରତ୍ନ ୧୮୬୭ ମସିହାରେ ବାଙ୍କୀରେ ଜନ୍ମଗ୍ରହଣ କରିଥିଲେ । କଟକରେ ତାଙ୍କର ବହୁବର୍ଷ ଅତିବାହିତ ହୋଇଥିଲା । ଉତ୍କଳ ସମ୍ମିଳନୀର ପ୍ରତିଷ୍ଠାତାମାନଙ୍କ ମଧ୍ୟରୁ ସେ ଥିଲେ ଏକତମ । ଜଣେ ସାମ୍ବାଦିକ, ସାହିତ୍ୟିକ ଓ ବାଗ୍ମୀ ଭାବରେ ତାଙ୍କର ପ୍ରତିଭା ଥିଲା ଅପ୍ରତିହତ । ସାମ୍ବାଦିକ ତଥା ସମ୍ପାଦକ ଭାବରେ

ନୀଳମଣି ବିଦ୍ୟାରତ୍ନ ରମ୍ଭାରୁ ପ୍ରଜାବନ୍ଧୁ, ବାମଣ୍ଡାରୁ ହିତୈଷିଣୀ, ବଡ଼ଖେମଣ୍ଡିରୁ 'ଗଞ୍ଜାମ ଗୁଣ ଦର୍ପଣ ସମ୍ପାଦନା କରୁଥିଲେ । 'ଉତ୍କଳ ଦୀପିକା'ର ସମ୍ପାଦକ ଭାବେ ମଧ୍ୟ ସେ କର୍ତ୍ତୃତ୍ୱ କାର୍ଯ୍ୟ କରିଥିଲେ । ପଚିଶ ଖଣ୍ଡରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରି ନୀଳମଣି ବିଦ୍ୟାରତ୍ନ ଯଶସ୍ୱୀ ହୋଇଛନ୍ତି । କୃଷିଠାରୁ ଆରମ୍ଭ କରି ଶିକ୍ଷା, ରାଜନୀତି, ଅର୍ଥନୀତି ଏବଂ ସାହିତ୍ୟ ପର୍ଯ୍ୟନ୍ତ ପୁସ୍ତକ ରଚନା କରିବା ତାଙ୍କ ସୃଷ୍ଟିର ବିଶେଷତ୍ୱ । ସେ ୧୯୨୪ ମସିହାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

## ନିକୁଞ୍ଜ କିଶୋର ଦାସ :

ନିକୁଞ୍ଜ କିଶୋର ଦାସ ୧୯୦୦ ମସିହାରେ ଗୋଟିଏ ସମ୍ଭ୍ରାନ୍ତ ପରିବାରରେ ଜନ୍ମ ହୋଇଥିଲେ । ଛାତ୍ର ଜୀବନରୁ ସେ ଥିଲେ ସାହିତ୍ୟାନୁରାଗୀ । ପାଠ ପଢ଼ା ସହିତ କବିତା ଓ କ୍ଷୁଦ୍ରଗଳ୍ପ ଲେଖିବା ଏବଂ ପତ୍ରିକା ସମ୍ପାଦନା କରିବା ତାଙ୍କର ମୁଖ୍ୟ-କାର୍ଯ୍ୟ ଥିଲା । ସେ ରେଭେନ୍‌ସା କଲେଜରୁ ଇଂରେଜୀ ଅନର୍ସ ସହିତ ବି.ଏ.ପାଶ କରିଥିଲେ । ରେଭେନ୍‌ସା କଲେଜର ଛାତ୍ର ଥିବା ବେଳେ ଶ୍ରୀ ଦାସ ଉର୍ମି ଏବଂ ବାରୁଣୀର (୧୯୨୩-୨୫) ସମ୍ପାଦନା କରିଥିଲେ । ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ଜଣେ ଲେଖକ ଭାବରେ ସେ ଗୌତମ ବୁଦ୍ଧ, ଅଶୋକ, କପିଳେନ୍ଦ୍ର-ଦେବ, କୈବଲ୍ୟ ପ୍ରଭୃତି ନାଟକ ଏବଂ ଅନେକ ସଙ୍ଗୀତ ଓ ପ୍ରାର୍ଥନା ରଚନା କରିଥିଲେ ।

ଐତିହାସିକ ନାଟକ ଭାବେ 'ଗୌତମ ବୁଦ୍ଧ'ର ଭାଷା ଓ ଶୈଳୀ ଥିଲା ଉଚ୍ଚକୋଟୀର । ଜଣେ ସ୍ୱାଧୀନ ସଭ୍ୟଭାବେ ନିକୁଞ୍ଜ କିଶୋର ଦାସ ୧୯୨୯ରୁ ୩୫ ମସିହା ପର୍ଯ୍ୟନ୍ତ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ ଏବଂ ୧୯୩୫ ମସିହାରୁ ୧୯୩୯ ମସିହା ପର୍ଯ୍ୟନ୍ତ ସେ କଟକ ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ ହେଲେ । ସେ ହେଉଛନ୍ତି ଭାରତୀୟ ଗ୍ରନ୍ଥ ମନ୍ଦିରର ପ୍ରତିଷ୍ଠାତା । କଟକ ମୋଟର ସଂଘ, ଉତ୍କଳ ଟ୍ୟାନେରୀ, ସମ୍ବଲପୁର ବିଦ୍ୟୁତ ଯୋଗାଣ କମ୍ପାନୀ ପ୍ରଭୃତିର ଜଣେ ସକ୍ରିୟ ସଭ୍ୟ ଥିଲେ । 'ଓମର ଖୟାମ' ଏବଂ ଶ୍ରୀମଦ୍ ଭଗବତ୍ ଗୀତା ଅନୁବାଦ କରିଥିଲେ । ସେ ଜଣେ ପ୍ରଧାନ ଅରବିନ୍ଦ ଭକ୍ତ ଭାବରେ ପରିଚିତ । ୧୯୬୭ ମସିହାରେ ତାଙ୍କର ଦେହାନ୍ତ ହେଲା ।

## ନଳିନୀ ଦେବୀ ରାଉତରାୟ :

ନଳିନୀ ଦେବୀ ରାଉତରାୟଙ୍କ ଘର ବାଲେଶ୍ୱରରେ । ସେ ୧୯୨୬ ମସିହା ସେପ୍‌ଟେମ୍ବର ୭ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଜଣେ ମହିଳା ଭାବେ ସେ ଥିଲେ ବହୁ ପ୍ରତିଭାର ଅଧିକାରିଣୀ । କଟକରେ ସେ ଶିକ୍ଷାଲାଭ କରିଥିଲେ । ଓଡ଼ିଶାର ବରିଷ୍ଠ ରାଜନୀତିଜ୍ଞ ତଥା ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କ ସହିତ ତାଙ୍କର ବିବାହ ହୋଇଥିଲା । କବି ନଜରୁଲ ଇସଲାମଙ୍କର ଉଚ୍ଚ ପ୍ରଶଂସକମାନଙ୍କ

ମଧ୍ୟରୁ ଥିଲେ ଅନ୍ୟତମ । ଇସଲାମଙ୍କର ବହୁ କବିତାକୁ ଓଡ଼ିଆରେ ଅନୁବାଦ କରି ସେ 'ନଜରୁଲସଞ୍ଚୟନ' ନାମରେ ନାମିତ କରିଥିଲେ । 'ମନୁଷ୍ଟାର୍ଥ' ନାମକ ଏକ ମାସିକ ସାହିତ୍ୟ ପତ୍ରିକା ତାଙ୍କ ସମ୍ପାଦନାରେ ଆତ୍ମପ୍ରକାଶ କରିଥିଲା । ବହୁ ଯୁବ ଲେଖକ, କର୍ମୀ ଓ ସମାଜ ସେବକମାନଙ୍କର ସେ ଥିଲେ ପ୍ରେରଣା ଦାତ୍ରୀ ।

ତତ୍କାଳୀନ ମୁଖ୍ୟମନ୍ତ୍ରୀଙ୍କର ପତ୍ନୀ ଭାବରେ ସେ ଅନେକ ସାଂସ୍କୃତିକ, ସାହିତ୍ୟିକ ଏବଂ ସାମାଜିକ ସଂସ୍ଥାର ସଭ୍ୟ ଥିଲେ । ଏତଦ୍‌ବ୍ୟତୀତ ରାଜ୍ୟ ସମାଜ-ମଙ୍ଗଳ ବୋର୍ଡ, ଶିଶୁକଲ୍ୟାଣ ପରିଷଦ ଓ ପାଠ୍ୟ ପୁସ୍ତକ ପ୍ରଣୟନ ସଂସ୍ଥାର ଜଣେ ସକ୍ରିୟ କର୍ମକର୍ତ୍ତ୍ରୀ ଭାବେ ସେ ପରିଚିତ । ସମସ୍ତଙ୍କ ପାଇଁ ତାଙ୍କ କୋଠରୀ ଉନ୍ମୁକ୍ତ ଥିଲା । ଯିଏ ଯେତେବେଳେ ଯେଉଁ ସାହାଯ୍ୟ ପାଇଁ ଆସିଛି ସେ କେବେ ଶୂନ୍ୟ ହୋଇ ତାଙ୍କ ନିକଟରୁ ଫେରିଯିବା ଦେଖା ଯାଇନାହିଁ । ଏପରି ଏକ ମହୀୟସୀ ମହିଳାଙ୍କର ମୃତ୍ୟୁ ହେଲା ୧୯୭୩ ମସିହା ଫେବୃଆରୀ ମାସ ୨୭ ତାରିଖରେ ।

## ନୀଳମଣି ସେନାପତି

କଟକର ସ୍ମରଣୀୟ ପ୍ରତିଭାମାନଙ୍କ ମଧ୍ୟରୁ ନୀଳମଣି ସେନାପତି ଅନ୍ୟତମ । ସେ ୧୮୯୮ ମସିହାରେ ପୁରୀ ଜିଲ୍ଲାର ଗାଡ଼ପାଞ୍ଚଣରେ ଜନ୍ମଲାଭ କରିଥିଲେ । ଓଡ଼ିଶାରୁ ସର୍ବପ୍ରଥମେ ଯେଉଁ ଦୁଇଜଣ ଆଇ. ସି. ଏସ୍. (I.C.S) ପାଇଥିଲେ ତନ୍ମଧ୍ୟରୁ ନୀଳମଣି ସେନାପତି ଥିଲେ ଅନ୍ୟତମ । କଟକରେ ସେ ଅନେକ ବର୍ଷ ଜଣେ ଖ୍ୟାତନାମା ଅଫିସର ପଦବୀରେ ଚାକିରି କରିଥିଲେ । ତାଙ୍କର ଆତ୍ମଜୀବନୀ ପୌରୁଷ ପତ୍ରିକାରେ କ୍ରମାନ୍ୱୟରେ ପ୍ରକାଶିତ ହୋଇଥିଲା ।

ସେ ଓଡ଼ିଶା ଗେଜେଟ୍‌ର ସମ୍ପାଦକ ଥିଲେ ଏବଂ ବହୁ ସରକାରୀ ଓ ବେସରକାରୀ ସଂସ୍ଥା ସହିତ ତାଙ୍କର ସମ୍ପର୍କ ଥିଲା । ପୁରୁଣା ଭୁବନେଶ୍ୱରର ଟଙ୍କପାଣି ରାସ୍ତାରେ ଥିବା ତାଙ୍କ ବାସଭବନରେ ୧୯୮୪ ମସିହାରେ ସେ ମୃତ୍ୟୁ ବରଣ କଲେ ।

## ନବକୃଷ୍ଣ ଚୌଧୁରୀ :

ନବକୃଷ୍ଣ ଚୌଧୁରୀ କେବଳ କଟକ ଜିଲ୍ଲାର କାହିଁକି ସମଗ୍ର ଓଡ଼ିଶାର ଜଣେ ପ୍ରତିଭାଶାଳୀ ବ୍ୟକ୍ତିତ୍ୱ ଥିଲେ । ସେ ୧୯୦୧ ମସିହା ସେପ୍ଟେମ୍ବର ମାସ ୨୩ ତାରିଖରେ କଟକ ଜିଲ୍ଲାର ଜଗତ୍‌ସିଂହପୁର ଥାନାର ଖେରସରେ ଜନ୍ମ ହୋଇଥିଲେ । ଜଣେ ସମାଜବାଦୀ ଚିନ୍ତାନାୟକ, ସ୍ୱାଧୀନତା ସଂଗ୍ରାମୀ, ଭୂଦାନ ଆନ୍ଦୋଳନର ନେତା ଭାବରେ ସେ ଭାରତରେ ପ୍ରସିଦ୍ଧ । ସେ କଟକରେ ତାଙ୍କ ପିତାଙ୍କର ସ୍ଥାୟୀ ଗୃହରେ ଅବସ୍ଥାନ କରୁଥିଲେ । ରେଭେନ୍ସା କଲେଜରେ ବି. ଏ. ପଢ଼ୁଥିବା ବେଳେ ତାଙ୍କ ବିପ୍ଳବୀ ଜୀବନର ଆରମ୍ଭ ହେଲା । ୧୯୨୧ ମସିହାରେ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଲେ ।

୧୯୨୭ ମସିହାରେ ଶାନ୍ତିନିକେତନଠାରେ ମାଳତୀ ଦେବୀଙ୍କ ସହିତ ତାଙ୍କର ବିବାହ ହେଲା । ସେ ମଧ୍ୟ ଜଣେ ଖ୍ୟାତନାମା ନାରୀନେତ୍ରୀ ଓ ବିପ୍ଳବୀ ଥିଲେ । ନବକୃଷ୍ଣ ଚୌଧୁରୀଙ୍କ ସଂଗ୍ରାମୀ ଜୀବନରେ ସେ ବହୁବାର ଜେଲ ଯାଇଥିଲେ । ୧୯୩୦ ମସିହାର ଲବଣ ସତ୍ୟାଗ୍ରହ ଓ ୧୯୩୨ ମସିହାର ଆନ୍ଦୋଳନରେ ନେତୃତ୍ୱନେଇ ସେ ବନ୍ଦୀହେଲେ । ସେ ଥିଲେ ସୋସାଲିଷ୍ଟମାନଙ୍କର ନେତା ।

୧୯୩୩ ମସିହାରେ ଓଡ଼ିଶାରେ ସୋସାଲିଷ୍ଟ ଆନ୍ଦୋଳନର ସେ ପ୍ରଧାନ ନେତୃତ୍ୱ ନେଇଥିଲେ । 'ସାରଥୀ' ନାମକ ଏକ ସାପ୍ତାହିକ ପତ୍ରିକାର ସେ ସମ୍ପାଦକ ଥିଲେ । ନବକୃଷ୍ଣ ଚୌଧୁରୀ ୧୯୩୪ ମସିହାରେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସାଧାରଣ ସମ୍ପାଦକ ହୋଇ ୧୯୩୭ ମସିହାରେ କଂଗ୍ରେସ ଟିକେଟରୁ ଓଡ଼ିଶା ବିଧାନ-ସଭାକୁ ନିର୍ବାଚିତ ହେଲେ । ଗଡ଼ଜାତ ପ୍ରଜା ଆନ୍ଦୋଳନର ସେ ମୁଖ୍ୟ ଭୂମିକା ନେଇଥିଲେ । ବ୍ରିଟିଶ ଶାସନର ପ୍ରତ୍ୟକ୍ଷ ଅଞ୍ଚଳ ଅନୁଗୁଳରେ ନବକୃଷ୍ଣ "ବାଜି ରାଉତ ଛାତ୍ରାବାସ" ନାମକ ଏକ ନୂତନଗୃହ ନିର୍ମାଣ କରି ସେଠାରେ ସ୍ୱାଧୀନତା ସଂଗ୍ରାମୀ-ମାନଙ୍କୁ ସଙ୍ଗଠିତ ପୂର୍ବକ ସଂଗ୍ରାମ ପରିଚାଳନା କଲେ । ଫଳରେ ୧୯୪୧ ମସିହାରେ ତାଙ୍କୁ ଜେଲ ଯିବାକୁ ପଡ଼ିଥିଲା ।

୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇ ନବବାବୁ ପୁନର୍ବାର କାରାବରଣ କଲେ । ୧୯୪୬ ମସିହାର ବିଧାନ ସଭା ନିର୍ବାଚନରେ ବିଜୟ ଲାଭ କରି ସେ ରାଜସ୍ୱ ମନ୍ତ୍ରୀ ହୋଇଥିଲେ । ତାଙ୍କର ଏକମାତ୍ର ପୁତ୍ରର ମୃତ୍ୟୁ ହେଲା ୧୯୪୮ ମସିହାରେ । ଏଣୁ ସେ ମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ପୁନର୍ବାର କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ହୋଇ ଶ୍ରୀ ଚୌଧୁରୀ ୧୯୫୦ ମସିହାରେ ଓଡ଼ିଶାର ମୁଖ୍ୟ-ମନ୍ତ୍ରୀ ହେଲେ । ଓଡ଼ିଶାରୁ ଜମିଦାରୀ ପ୍ରଥାର ଉଚ୍ଛେଦ ପାଇଁ ସେ ଅକ୍ଲାନ୍ତ ଉଦ୍ୟମ କରିଥିଲେ ।

ଭାରତର ମହାନ୍ ବ୍ୟକ୍ତିତ୍ୱ ଜୟପ୍ରକାଶ ନାରାୟଣ, ପ୍ରଫୁଲ୍ଲ ଚନ୍ଦ୍ର ଘୋଷ ଏବଂ ଜବାହାରଲାଲ ନେହେରୁଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ସେ ଜଣେ ସମାଜ-ବାଦୀ ନେତା ଭାବରେ ସୁପରିଚିତ । ନାଗାଲାଣ୍ଡ, ରାଉରକେଲା ଓ କାଶ୍ମୀରରେ ପ୍ରଜାତନ୍ତ୍ର ଗଠନ କରି ଶାନ୍ତିପୂର୍ଣ୍ଣ ବାତାବରଣର ଦୀର୍ଘ ସ୍ଥାୟିତ୍ୱ ପାଇଁ ଉଦ୍ୟମ କରିଥିଲେ । ଭାରତର ସୀମା ସମସ୍ୟା ସମ୍ପର୍କରେ ଭାରତ ସରକାରଙ୍କ ସହିତ ତାଙ୍କର ମତାନ୍ତରାମାଳିନ୍ୟ ହେବାରୁ ୧୯୬୭ ମସିହାରେ ନିର୍ବାଚନରେ କଂଗ୍ରେସକୁ ବିରୋଧ କଲେ । ୧୯୭୪ ମସିହାରେ ଜୟ ପ୍ରକାଶଙ୍କ ସମ୍ପୂର୍ଣ୍ଣ କ୍ରାନ୍ତି ବିପ୍ଳବକୁ ସଫଳ କରିବାରେ ସାହାଯ୍ୟ କରି ଗିରଫ ହୋଇଥିଲେ । ୧୯୮୪ ମସିହା ଜୁନ୍‌ମାସ ୨୪ ତାରିଖରେ ଅନୁଗୁଳରେ ତାଙ୍କର ମୃତ୍ୟୁ ହେଲା ।

## ନିଶାମଣି ଖୁଣ୍ଟିଆ :

ନିଶାମଣି ଖୁଣ୍ଟିଆଙ୍କ ଜନ୍ମ ଡେଣ୍ଡୋଲରେ କିନ୍ତୁ କଟକରେ ଶିକ୍ଷା ଲାଭକରି ସେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ଜଣେ ଦକ୍ଷ ବିଧାୟକ ଏବଂ ଟାଣୁଆ ନେତା ଭାବରେ ସେ ଓଡ଼ିଶାରେ ଅତ୍ୟନ୍ତ ଲୋକପ୍ରିୟ । ଓଡ଼ିଶା ବିଧାନ ସଭାକୁ ସେ ଅନେକ ଥର ନିର୍ବାଚିତ ହୋଇଥିଲେ । ସୋସାଲିଷ୍ଟ ପାର୍ଟିର ସମ୍ପାଦକ ଭାବରେ ଶ୍ରୀ ଖୁଣ୍ଟିଆ ବହୁବର୍ଷ କାର୍ଯ୍ୟ କରିଥିଲେ ।

ଶ୍ରମିକ ସଙ୍ଗଠନ ଓ ବଣିକ ସଂଘର ନେତା, ପାରାଦ୍ୱୀପ ବନ୍ଦର ଏବଂ ଡକ୍ କର୍ମଚାରୀ ସଂଘର ସଭାପତି ଓ ସମଗ୍ର ଭାରତ ବର୍ଷର ବନ୍ଦର ଡକ୍ କର୍ମଚାରୀ ସଂଘର ଉପସଭାପତି ଭାବରେ ସେ ଖ୍ୟାତନାମା । ତାଙ୍କର ରାଜନୈତିକ ଜୀବନର ସର୍ବଶ୍ରେଷ୍ଠ ଅବଦାନ ହେଉଛି ଦଇତାରୀରୁ ପାରାଦ୍ୱୀପକୁ ରେଳପଥ ସଂଯୋଗ କରିବା । ହିନ୍ଦ୍ ମଜଦୁର ସଂଘର ମଧ୍ୟ ସେ ନେତା ଥିଲେ । ଏକ ମର୍ମନ୍ତୁଦ ଦୁର୍ଘଟଣାରେ ତାଙ୍କର ପ୍ରାଣହାନୀ ଘଟିଲା । ପାରାଦ୍ୱୀପଠାରେ ତାଙ୍କର ଏକ ପ୍ରସ୍ତରମୂର୍ତ୍ତି ସ୍ଥାପନ କରାଯାଇଛି ।

## ନିତ୍ୟାନନ୍ଦ କାନୁନ୍‌ଗୋ :

ନିତ୍ୟାନନ୍ଦ କାନୁନ୍‌ଗୋ କଟକ ଜିଲ୍ଲା ଜଗତସିଂହପୁର ସବ୍‌ଡିଭିଜନ ଅନ୍ତର୍ଗତ ବାଲିକୁଦାରେ ୧୯୦୦ ମସିହାରେ ଜନ୍ମଗ୍ରହଣ କରିଥିଲେ । ଓଡ଼ିଶାର ଜଣେ କଂଗ୍ରେସ ନେତା ଏବଂ ରାଜନୀତିଜ୍ଞ ଭାବରେ ସେ ପ୍ରସିଦ୍ଧ । କଟକରେ ପାଠପଢ଼ା ଶେଷକରି ଓକିଲାତି ପଢ଼ିବା ପାଇଁ ଶ୍ରୀ କାନୁନ୍‌ଗୋ କଲିକତା ଯାଇଥିଲେ । କଟକରେ ଓକିଲାତି କରୁଥିବା ସମୟରେ ସେ ୧୯୩୦ ମସିହାରେ କଂଗ୍ରେସରେ ଯୋଗଦେଲେ । ୧୯୩୭ ମସିହା ଏବଂ ୧୯୪୬ ମସିହାର ବିଧାନସଭା ନିର୍ବାଚନରେ ସେ ଦୁଇଥର ଯାକ ବିଧାନ ସଭାକୁ ନିର୍ବାଚିତ ହୋଇ ମନ୍ତ୍ରୀ ହୋଇଥିଲେ । ୧୯୫୪ ମସିହାରେ କେନ୍ଦ୍ରରେ ଶିଳ୍ପ ଓ ବାଣିଜ୍ୟର ଉପମନ୍ତ୍ରୀ ଏବଂ ୧୯୫୭ ମସିହାରେ ରାଜ୍ୟପାହ୍ୟା ମନ୍ତ୍ରୀଭାବରେ କେନ୍ଦ୍ରରେ ଥିଲେ । ବିହାର ଓ ଗୁଜୁରାଟର ରାଜ୍ୟପାଳ ଭାବରେ କାର୍ଯ୍ୟକରି ନିତ୍ୟାନନ୍ଦ କାନୁନ୍‌ଗୋ ୧୯୮୮ ମସିହାରେ ସ୍ୱର୍ଗଗାମୀ ହେଲେ ।

## ପ୍ୟାରୀମୋହନ ଆଚାର୍ଯ୍ୟ :

ପ୍ୟାରୀମୋହନ ଆଚାର୍ଯ୍ୟ ଥିଲେ ଉତ୍କଳର ଜଣେ ସୁଯୋଗ୍ୟ ବରପୁତ୍ର । କଟକ ଜିଲ୍ଲା ଅନ୍ତର୍ଗତ ମାହାଙ୍ଗା ଥାନାର ପଣ୍ଡିଲୁଣ୍ଡା (କୁଆଁପାଳ) ଗ୍ରାମରେ ୧୮୫୧ ମସିହା ଅଗଷ୍ଟ ମାସ ୫ ତାରିଖରେ ସେ ଜନ୍ମଗ୍ରହଣ କରିଥିଲେ । ମାତ୍ର ୩୦ ବର୍ଷ ବୟସରେ ୧୮୮୧ ମସିହା ଡିସେମ୍ବର ୨୮ ତାରିଖରେ ସେ ସ୍ୱର୍ଗାରୋହଣ କଲେ । ପ୍ୟାରୀମୋହନଙ୍କର ଏହି ସୀମିତ ଜୀବନ କାଳ ଘଟଣାବଳୀରେ ପରିପୂର୍ଣ୍ଣ ଥିଲା ।

ସେ ଉତ୍କଳ ସମ୍ମିଳନୀର ସୂତ୍ରପାତ କରିଥିଲେ କିନ୍ତୁ ଏହାର ଉପଯୁକ୍ତ ଦାୟାଦ ମଧୁସୂଦନ ଓଡ଼ିଶା ପ୍ରତ୍ୟାବର୍ତ୍ତନ ପୂର୍ବରୁ ତାଙ୍କର ଦେହାନ୍ତ ହୋଇଯାଇଥିଲା ।

ପ୍ୟାରୀମୋହନଙ୍କ ସମୟରେ ଓଡ଼ିଶାର ଭାଷା, ସଂସ୍କୃତି, ଧର୍ମ, ଅର୍ଥନୀତି, ଭୌଗୋଳିକ ସ୍ଥିତି ଏବଂ ଜାତୀୟ ଜୀବନ ଥିଲା ସଙ୍କଟାପନ୍ନ । ପ୍ୟାରୀମୋହନ ଏହାର ମୁକାବିଲା କରିବା ପାଇଁ ଆଗେଇ ଆସିଥିଲେ । ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଯେଉଁମାନେ କାର୍ଯ୍ୟ ଓ ସଙ୍ଗଠିତ ହୋଇଥିଲେ ସେମାନଙ୍କ ମଧ୍ୟରେ ଅଗ୍ରଣୀ ପ୍ୟାରୀମୋହନ ଅଗ୍ରଗଣ୍ୟ । ଭାଷା ଆନ୍ଦୋଳନ, ଧର୍ମବିରୋଧୀ ପ୍ରଚାର, ଆର୍ଥିକ ସଙ୍କଟ ଓ ଜାତୀୟ ସମସ୍ୟାର ସମାଧାନ ପାଇଁ ସେ ୧୮୭୧ ମସିହାରେ ପାକ୍ଷିକ ପତ୍ର "ଉତ୍କଳପୁତ୍ର" ପ୍ରକାଶ କରିଥିଲେ । ଏଥିରେ ତାଙ୍କୁ ସହାୟତା କରିଥିଲେ କର୍ମବୀର ଗୌରୀଶଙ୍କର ଏବଂ ଭକ୍ତକବି ମଧୁସୂଦନ । ଶିକ୍ଷାର ପ୍ରସାର ପାଇଁ ସେ କଟକ ଏକାଡେମୀ ପ୍ରତିଷ୍ଠା କଲେ । ଯାହା ପରେ ତାଙ୍କ ନାମରେ ନାମିତ ହୋଇଥିଲା । ଓଡ଼ିଶାର ପ୍ରାଚୀନ ଇତିହାସ ଓଡ଼ିଆ ଭାଷାରେ ପ୍ରସ୍ତୁତ କରି ସେ ବହୁ ତଥ୍ୟ ଇଂରେଜ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଧର୍ମର ପ୍ରସାର ଏବଂ ଧର୍ମରେ ସଂସ୍କାର ଆଣିବା ପାଇଁ ପ୍ୟାରୀମୋହନ ରାଜା ରାମମୋହନ ରାୟଙ୍କ ପ୍ରତିଷ୍ଠିତ ବ୍ରାହ୍ମ ସମାଜକୁ ଓଡ଼ିଶାକୁ ଆଣି ତାର ବାର୍ତ୍ତା ପ୍ରଚାର କରିବାରେ ସେ ଥିଲେ ଅଗ୍ରଗାମୀ ।

ସେ ରେଭେନ୍ସା କଲେଜରେ ପାଠପଢ଼ିଥିଲେ । ସେ ଜଣେ ଉତ୍ତମ ଗ୍ରନ୍ଥ ଥିଲେ ସତ କିନ୍ତୁ ବିପ୍ଳବୀ, ନିର୍ଭୀକ ଓ ସ୍ପଷ୍ଟବାଦୀ ଥିଲେ । [ଜଣେ ବିଶିଷ୍ଟ ସାମ୍ବାଦିକ ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ଇଂରେଜ ସରକାର ତାଙ୍କୁ ଡେପୁଟୀ ମାଜିଷ୍ଟ୍ରେଟ ଚାକିରୀ ପାଇଁ ମନୋନୀତ କରିଥିଲେ ହେଁ, ସେ ତାକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ଦେଶରୁ ସମ୍ପୂର୍ଣ୍ଣ ଇଂରେଜ ଶାସନର ଅବସାନ ଘଟାଇବା ଥିଲା ତାଙ୍କ ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ ।

## ପ୍ୟାରୀଶଙ୍କର ରାୟ :

ପ୍ୟାରୀଶଙ୍କର ରାୟ ୧୯୧୩ ମସିହା ଅକ୍ଟୋବର ମାସ ୨୨ ତାରିଖରେ କଟକ ଜିଲ୍ଲାର ଅସୁରେଶ୍ୱରରେ ଜନ୍ମଗ୍ରହଣ କରିଥିଲେ । ଜଣେ ମହାନ୍ ବିପ୍ଳବୀ ନେତା ଏବଂ ସଙ୍ଗଠକ ଭାବରେ ସେ ଖ୍ୟାତନାମା । ସ୍ୱାଧୀନତା ଆନ୍ଦୋଳନରେ ଭାଗ ଦେଇ ୧୯୩୦ରୁ ୧୯୪୦ ମସିହା ପର୍ଯ୍ୟନ୍ତ ସେ ଚାରି ବର୍ଷରୁ ଊର୍ଦ୍ଧ୍ୱକାଳ ବନ୍ଦୀ ହୋଇଥିଲେ । ଜାତିର ସମ୍ମାନକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ତାଙ୍କର ଉଦ୍ୟମ ଅବ୍ୟାହତ ଥିଲା । ଓଡ଼ିଶାର ଜଣେ ଶକ୍ତିଶାଳୀ ନେତା ଭାବରେ ୧୯୩୭ ମସିହାରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ ଥିଲେ । ତାଙ୍କର ଓଜସ୍ୱିନୀ ବକ୍ତୃତା ଏବଂ ସାଙ୍ଗଠନିକ କାର୍ଯ୍ୟକ୍ରମ ଦ୍ୱାରା ବହୁ ଯୁବକ ଉତ୍ସାହିତ ହୋଇଥିଲେ । କଟକ ଥିଲା ତାଙ୍କର ମହାନ୍ କର୍ମକ୍ଷେତ୍ର । କଟକରେ ରହି ସେ ବହୁ ସଂସ୍ଥା ସହିତ ସମ୍ପୃକ୍ତ ଥିଲେ । ଓଡ଼ିଶା ଫୁଟବଲ ସଂଘର ସେକ୍ରେଟାରୀ ଭାବରେ ସେ ଅନେକ ବର୍ଷ ରହିଥିଲେ । ଦିଲ୍ଲୀରେ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ଭାବରେ ତାଙ୍କର ଯଥେଷ୍ଟ ସୁନାମ ଥିଲା । ଏହି ମହାନ ବ୍ୟକ୍ତିଙ୍କର ଜୀବନର ଅବସାନ ଘଟିଲା ୧୯୭୯ ମସିହା ମଇମାସ ୧୪ ତାରିଖରେ ।

## ପରମାନନ୍ଦ ଆଚାର୍ଯ୍ୟ :

ପରମାନନ୍ଦ ଆଚାର୍ଯ୍ୟ ଓଡ଼ିଶାର ଜଣେ ପ୍ରସିଦ୍ଧ ପ୍ରତ୍ନତତ୍ତ୍ୱ ବିଶାରଦ । ସେ ୧୮୯୩ ମସିହାରେ ମୟୂରଭଞ୍ଜରେ ଜନ୍ମ ହୋଇଥିଲେ । ଇତିହାସ ବିଭାଗର ଛାତ୍ରଭାବେ ସେ କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ୧୯୩୦ ମସିହାରୁ ୧୯୪୧ ମସିହା ମଧ୍ୟରେ ପରମାନନ୍ଦ ଖିଚିଂ ମନ୍ଦିର ଉପରେ ଗବେଷଣା ଚଳାଇ ସଫଳତା ଅର୍ଜନ କଲେ । ସେ ପ୍ରତ୍ନତତ୍ତ୍ୱ ବିଭାଗରେ କାର୍ଯ୍ୟଦକ୍ଷତାର ପରିଚୟ ଦେଇଥିଲେ । ମାଟିତଳୁ ବହୁ ଅନାବିଷ୍କୃତ ମୂର୍ତ୍ତି, ମନ୍ଦିର ଏବଂ ତଥ୍ୟାବଳୀ ଉଦ୍‌ଘାଟନ କରି ସେ ଉଚ୍ଚ ପ୍ରଶଂସିତ ହୋଇଥିଲେ ।

କଟକରେ ବହୁ ବର୍ଷ ପର୍ଯ୍ୟନ୍ତ ଅବସ୍ଥାନ କରି ନିଜର କର୍ମର ପରିସର ନିର୍ଦ୍ଧାରଣ କଲେ । ଜଣେ ଲେଖକ ଭାବରେ ଭୁବନେଶ୍ୱରର ଶିଳାଲିପି, ସମ୍ବଲପୁର ଯାତ୍ରା ଏବଂ ବିଶ୍ୱନାଥଙ୍କ ଅନନ୍ୟ ପ୍ରତିଭା ପ୍ରଭୃତି ତାଙ୍କର ପ୍ରଧାନ ରଚନା । ଏତଦ୍‌ବ୍ୟତୀତ ତାଙ୍କର ଅନେକ ତଥ୍ୟପୂର୍ଣ୍ଣ ପ୍ରବନ୍ଧ ଭାରତର ବହୁ ଐତିହାସିକ ପତ୍ରିକାରେ ପ୍ରକାଶିତ ହୋଇ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କରିଥିଲା । ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଗବେଷଣା ପାଇଁ ଭାରତ ସରକାର ତାଙ୍କୁ ପଦ୍ମଶ୍ରୀ ଉପାଧିରେ ଭୂଷିତ କରିଥିଲେ । ୧୯୭୧ ମସିହାରେ ତାଙ୍କର ମହାପ୍ରୟାଣ ହେଲା ।

## ପ୍ରାଣକୃଷ୍ଣ ସାମଲ :

ଓଡ଼ିଶାର ଜଣେ ବିଶିଷ୍ଟ ଔପନ୍ୟାସିକ ତଥା ସାହିତ୍ୟିକ ଭାବରେ ପ୍ରାଣକୃଷ୍ଣ ସାମଲଙ୍କ ନାମ ଉଲ୍ଲେଖଯୋଗ୍ୟ । ୧୯୧୨ ମସିହାରେ କଟକ ଜିଲ୍ଲାର କଳାଅନ୍ତ ଗ୍ରାମରେ ତାଙ୍କର ଜନ୍ମ । ତାଙ୍କର ସାହିତ୍ୟିକ ପ୍ରତିଭାର ଆଦ୍ୟ ଉନ୍ମେଷ ଘଟିଥିଲା 'ଆରତି' ପତ୍ରିକାରେ । ଏହି ମାସିକ ସାହିତ୍ୟ ପତ୍ରିକାରେ ତାଙ୍କର ପ୍ରଥମ କବିତା ପ୍ରକାଶ ପାଇ ତାଙ୍କୁ ଲେଖନୀ ଚାଳନା ପାଇଁ ଉତ୍ସାହ ଦେଇଥିଲା ।

ଓଡ଼ିଶାର ପାଠକମାନଙ୍କ ନିକଟରେ ସେ ମଧ୍ୟ ଜଣେ କବି ଭାବେ ପରିଚିତ । ତାଙ୍କ କବିତା ସଙ୍କଳନ ମଧ୍ୟରେ ଜ୍ୟୋତ୍ସ୍ନା, ରଜପଟ, ଭିନ୍ନ ଦୃଷ୍ଟି ଇତ୍ୟାଦି ପ୍ରଧାନ । ଏତଦ୍ ବ୍ୟତୀତ ସେ କଟକରେ ଅବସ୍ଥାନ କରି ଅନେକଗୁଡ଼ିଏ ଉପନ୍ୟାସ ରଚନା କରିଥିଲେ । ତାଙ୍କ ଉପନ୍ୟାସ ମଧ୍ୟରେ ନୀଳକମଳ, ସହଯାତ୍ରିଣୀ, ହାଣ୍ଡିକା ଦାନ୍ତ, ପଲ୍ଲୀ ଜୀବନ ଓ ପ୍ରେମ ପ୍ରଭୃତି ଉଲ୍ଲେଖଯୋଗ୍ୟ । ତାଙ୍କର ଉପନ୍ୟାସଗୁଡ଼ିକରେ ମୁଖ୍ୟତଃ ସାମାଜିକ କଥାବସ୍ତୁ ଉପରେ ପର୍ଯ୍ୟବସିତ ଏବଂ ସମାଜ ସଂସ୍କାରକ ହିଁ ଲେଖକଙ୍କର ମୂଳ ଲକ୍ଷ୍ୟ । କବିତା କ୍ଷେତ୍ରରେ ତାଙ୍କର ସବୋଚ୍ଚଶ୍ରେଷ୍ଠ କୃତିତ୍ୱ ଲକ୍ଷ୍ୟ କରାଯାଏ । କସ୍ତୁରିକା, କାବ୍ୟ ନାଟିକାରେ ପ୍ରାଣମୟ, ଆବେଗପୂର୍ଣ୍ଣ ଓ ମମତାସ୍ନେହ ପରିବେଷଣ ରୀତି ପାଠକଙ୍କୁ ଯଥେଷ୍ଟ ଆନନ୍ଦ ଦିଏ । ଏହି ମହାନ ବ୍ୟକ୍ତି ୧୯୫୯ ମସିହାରେ ପ୍ରାଣତ୍ୟାଗ କଲେ ।

## ପ୍ରାଣକୃଷ୍ଣ ପଡ଼ିହାରୀ :

ପ୍ରାଣକୃଷ୍ଣ ପଡ଼ିହାରୀ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ଜାତୀୟତାବାଦୀ ଏବଂ ସଙ୍ଗଠକ ଭାବରେ ପରିଚିତ । ସେ ୧୮୮୩ ମସିହା ଜାନୁୟାରୀ ମାସ ୨୧ ତାରିଖରେ କଟକ ଜିଲ୍ଲାର ଜଗତ୍ସିଂହପୁର ଉପକଣ୍ଠ ଜୟଗଡ଼ରେ ଜନ୍ମଗ୍ରହଣ କରି ୧୯୫୮ ମସିହା ଅଗଷ୍ଟ ମାସ ୮ ତାରିଖରେ କଟକ ସହର ଉପକଣ୍ଠ ଗୌରୀଶଙ୍କର ପାର୍କ ନିକଟରେ ଏକ ମର୍ମନ୍ତୁଦ ଦୁର୍ଘଟଣାରେ ପ୍ରାଣ ହରାଇଥିଲେ । କଟକ ଥିଲା ତାଙ୍କର ପ୍ରଧାନ କର୍ମସ୍ଥଳୀ । ସେ ରେଭେନ୍ସା କଲେଜରୁ ଶିକ୍ଷା ଲାଭ କରି ଜଗତ୍ସିଂହପୁର ଟ୍ରେନିଂ ସ୍କୁଲରେ ନିଯୁକ୍ତ ପାଇଲେ କିନ୍ତୁ ୧୯୨୧ ମସିହାରେ ଟ୍ରେନିଂ ସ୍କୁଲର ହେଡ଼ପଣ୍ଡିତ ପଦରୁ ଇସ୍ତଫା ଦେଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଲେ ।

ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବରେ ଇଂରେଜମାନଙ୍କ ବିରୁଦ୍ଧରେ ବିପ୍ଳବ କରି ଏବଂ ଆନ୍ଦୋଳନର ନେତୃତ୍ୱ ନେଇ ସେ ୯ ଥର କାରାବରଣ କରିଥିଲେ । ତାଙ୍କର ଶାନ୍ତ ସରଳ ବ୍ୟବହାର, ସେବାମନୋବୃତ୍ତି, ମଧୁରପୂର୍ଣ୍ଣ ବ୍ୟବହାର ଅନେକଙ୍କୁ ମୁଗ୍ଧ କରୁଥିଲା । ଅଲକା ଆଶ୍ରମ ସହିତ ତାଙ୍କର ସମ୍ପର୍କ ଥିଲା । ଜେଲରେ ଥିବାବେଳେ ମଧ୍ୟ ସେ ବାନରସେନା ବାହିନୀର ଦାୟିତ୍ୱରେ ଥିଲେ । ତାଙ୍କ ମୃତ୍ୟୁ ସ୍ଥାନରେ ଓଡ଼ିଶା ସରକାର ଏକ ପାଠାଗାର ନିର୍ମାଣ କରି ତାଙ୍କ ନାମରେ ନାମିତ କରିଛନ୍ତି ।

## ପ୍ରାଣକୃଷ୍ଣ ପରିଜା :

ପ୍ରାଣକୃଷ୍ଣ ପରିଜା ଭାରତର ଜଣେ ଉଦ୍ଭିଦ ବିଜ୍ଞାନୀ ଓ ବିଶିଷ୍ଟ ଶିକ୍ଷାବିତ୍ ଭାବରେ ସୁନାମଧନ୍ୟ ହୋଇପାରିଛନ୍ତି । ସେ ୧୮୯୧ ମସିହାରେ କଟକ ଜିଲ୍ଲାର ବାଲିକୁଦା ଥାନା ଅନ୍ତର୍ଗତ ଇଚ୍ଛାପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ୧୯୧୩ ମସିହାରେ କଲିକତାର ପ୍ରେସିଡେନ୍ସି କଲେଜରୁ ଗଣିତରେ ବି.ଏ.ସି. ପାଶ୍ କରି ଭାରତ ସରକାରଙ୍କଠାରୁ ଶିକ୍ଷା ବୃତ୍ତି ପାଇ ଡଃ ପରିଜା ଇଂଲଣ୍ଡରେ ଉଦ୍ଭିଦ ଓ ପ୍ରକୃତି ବିଜ୍ଞାନ ବିଷୟରେ ଅଧ୍ୟୟନ କରିବା ପାଇଁ ୧୯୧୪ ମସିହାରେ ଇଂଲଣ୍ଡ ଯାତ୍ରା କଲେ । ଇଂଲଣ୍ଡରେ ୭ ବର୍ଷ ଅଧ୍ୟୟନ କରି ବିଭିନ୍ନ ବୃତ୍ତି ଓ ପୁରସ୍କାର ମଧ୍ୟ ସେ ଲାଭକଲେ । ୧୯୨୧ ମସିହାରେ ରେଭେନ୍ସା କଲେଜରେ ଉଦ୍ଭିଦ ବିଜ୍ଞାନର ଅଧ୍ୟାପକ ଭାବରେ ନିଯୁକ୍ତ ପାଇଲେ । ଜଣେ ଖ୍ୟାତନାମା ଅଧ୍ୟାପକ ଭାବରେ ସେ ଛାତ୍ର ଓ ଅଧ୍ୟାପକମାନଙ୍କ ମଧ୍ୟରେ ଅତ୍ୟନ୍ତ ଆଦରଣୀୟ ହୋଇ ପାରିଥିଲେ । ୧୯୩୦ ମସିହାରେ ସେ ଆହ୍ଲାବାଦ ବିଜ୍ଞାନ କଂଗ୍ରେସର ସଭାପତି ହୋଇଥିଲେ ।

୧୯୫୨ ମସିହା ନିର୍ବାଚନରେ ଓଡ଼ିଶା ବିଧାନସଭାର ସଭ୍ୟ ହେଲେ । ୧୯୪୩ ମସିହା ଏବଂ ୧୯୫୫ ମସିହାରେ ଦୁଇଥର ଡଃ ପରିଜା ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ତାଙ୍କର ଦୀର୍ଘ କାର୍ଯ୍ୟକାଳ ମଧ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟର

ପ୍ରଭୃତି ଉନ୍ନତ ହୋଇଥିଲା । ଓଡ଼ିଶା ଗେଜେଟ୍ ପ୍ରକାଶନର ସଭ୍ୟ ଏବଂ କୃଷିବିଭାଗର ପ୍ରଥମ ନିର୍ଦ୍ଦେଶକ ଭାବେ କାର୍ଯ୍ୟକରି ବେଶ୍ ଲୋକପ୍ରିୟତା ଅର୍ଜନ କଲେ ।

ତାଙ୍କର ଅସାଧାରଣ ମେଧା, ଶିକ୍ଷା ଦିଗରେ ସତ୍‌ଅଭୁ ଅବଦାନ, ତଥା ବିଜ୍ଞାନରେ ଗମ୍ଭୀର ଅଧ୍ୟବସାୟ ପାଇଁ ସେ ଭାରତ ସରକାରଙ୍କଠାରୁ ପଦ୍ମଭୂଷଣ ଉପାଧି ଲାଭ କରିଥିଲେ । ତାଙ୍କର ଗବେଷଣାମୂଳକ ଅନେକ ପ୍ରବନ୍ଧ ଦେଶ ବିଦେଶର ବିଜ୍ଞାନ ପତ୍ରିକାମାନଙ୍କରେ ପ୍ରକାଶିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଥିଲା । ସାରା ପୃଥିବୀର ଉଦ୍ଭିଦ ବୈଜ୍ଞାନିକମାନଙ୍କ ମଧ୍ୟରୁ ସେ ଅନ୍ୟତମ । ତେଣୁ ତାଙ୍କୁ ଆନ୍ତର୍ଜାତୀୟ ଉଦ୍ଭିଦ କଂଗ୍ରେସର ଉପସଭାପତିର ସମ୍ମାନ ମିଳିଥିଲା । ସେ ଜଣେ ଲୋକପ୍ରିୟ ସାହିତ୍ୟିକ ଏବଂ ଦକ୍ଷ ପ୍ରଶାସକ ଥିଲେ । ସେତେବେଳେ ସମଗ୍ର ଭାରତର ଉଦ୍ଭିଦ ବିଜ୍ଞାନରେ ସେ ଏକ ଚହଳ ପକାଇ ଦେଇଥିଲେ । ଏପରି ଏକ ବିଶ୍ୱପ୍ରସିଦ୍ଧ ବରପୁତ୍ରଙ୍କର ମୃତ୍ୟୁ ହେଲା ୧୯୭୮ ମସିହାରେ ।

## ପୁରୁଷୋତ୍ତମଦେବ :

ଓଡ଼ିଶାର ନରପତିମାନଙ୍କ ମଧ୍ୟରୁ ପୁରୁଷୋତ୍ତମଦେବ ଅନ୍ୟତମ । ସେ ୧୪୬୭ ମସିହାରୁ ୧୪୯୭ ମସିହା ପର୍ଯ୍ୟନ୍ତ ଦୀର୍ଘ ୩୦ ବର୍ଷ କାଳ ଓଡ଼ିଶାର ରାଜ-ସିଂହାସନ ଅଳଂକୃତ କରିଥିଲେ । କଟକର ବାରବାଟୀ ଦୁର୍ଗରେ ଅବସ୍ଥାନ କରି ସେ ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ସେ ଜଣେ ସାହିତ୍ୟପ୍ରିୟ ବ୍ୟକ୍ତି ଥିଲେ ଏବଂ ତାଙ୍କର ରଚନାମାନଙ୍କ ମଧ୍ୟରେ ମୁକ୍ତି ଚିନ୍ତାମଣି, ଗୋପାଳାର୍ଚ୍ଚନ ପଦ୍ଧତି, ନାମମାଳିକା ଓ ଅଭିନବ ଗୀତଗୋବିନ୍ଦ ପ୍ରଧାନ ।

## ପ୍ରତାପରୁଦ୍ରଦେବ :

ଓଡ଼ିଶାର ବିଶିଷ୍ଟ ଶାସକ ପ୍ରତାପରୁଦ୍ର ଦେବ ୧୪୯୭ ଖ୍ରୀଷ୍ଟାବ୍ଦରୁ ୧୫୪୦ ପର୍ଯ୍ୟନ୍ତ ରାଜସିଂହାସନ ଅଳଂକୃତ କରିଥିଲେ । ତାଙ୍କ ଶାସନ କାଳରେ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଓ ରାଜନୀତିରେ ଅଭୂତପୂର୍ବ ପରିବର୍ତ୍ତନ ଘଟିଥିଲା । ପଞ୍ଚସଖାଙ୍କର ଅଭ୍ୟୁଦୟ, ଶ୍ରୀଚୈତନ୍ୟଙ୍କର ଓଡ଼ିଶା ଆଗମନ ଏବଂ ବୈଷ୍ଣବ ଧର୍ମର ବହୁଳ ପ୍ରସାର ଏହି ଶାସକଙ୍କର ରାଜତ୍ୱ ସମୟରେ ସମ୍ଭବ ହୋଇଥିଲା । ଶ୍ରୀଚୈତନ୍ୟ ପ୍ରତାପରୁଦ୍ରଙ୍କୁ ବୈଷ୍ଣବ ଧର୍ମରେ ଦୀକ୍ଷିତ କଲେ ଏବଂ ଏହା ତତ୍କାଳୀନ ଓଡ଼ିଶାର ରାଜଧର୍ମ ରୂପେ ଗ୍ରହଣୀୟ ହେଲା । ଗଜପତି ପ୍ରତାପରୁଦ୍ରଦେବ କଳା ଓ ସଂସ୍କୃତିର ଥିଲେ ବଳିଷ୍ଠ ପୃଷ୍ଠପୋଷକ । ଜଣେ ବିଶିଷ୍ଟ ପଣ୍ଡିତ ଭାବରେ ସେ ସରସ୍ୱତୀ କଣ୍ଠାଭରଣ, ପ୍ରତାପ ମାର୍ତ୍ତଣ୍ଡ ଏବଂ କୌତୁକ ଚିନ୍ତାମଣି ପ୍ରଭୃତି ରଚନା କରିଥିଲେ । ତାଙ୍କ ପୃଷ୍ଠପୋଷକତାରେ ପଞ୍ଚସଖାଙ୍କର ସାହିତ୍ୟ ଓ ଧର୍ମର ପ୍ରସାର ଘଟିଥିଲା ।

## ପ୍ରଫୁଲ୍ଲ ଚନ୍ଦ୍ର ରାୟ :

କଟକର ଜଣେ ଖ୍ୟାତନାମା ଡାକ୍ତର ଭାବରେ ସେ ପ୍ରତିଷ୍ଠାର୍ଜନ କରିଥିଲେ । ଡାକ୍ତରୀ ବିଦ୍ୟାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସ୍ତ୍ରୀରୋଗ ବିଶେଷଜ୍ଞ ଭାବରେ

ସେ ବିଶେଷ ରୂପେ ପରିଚିତ ଥିଲେହେଁ ଅନ୍ୟାନ୍ୟ ରୋଗର ନିଦାନ କରୁଥିବାରେ ବି ଥିଲେ ସିଦ୍ଧହସ୍ତ । ସମାଜ ସେବାକୁ ସେ ଜୀବନର ବ୍ରତ ଭାବରେ ବାଛି ନେଇଥିଲେ ।

## ପଦ୍ମଚରଣ ଦାସ :

ଓଡ଼ିଶାରେ କୁସ୍ତି ଏବଂ ବ୍ୟାୟାମର ଜଣେ ବିଶେଷ ଅନୁରାଗୀ ପଦ୍ମଚରଣ ଦାସ 'ଉତ୍କଳ ଭୀମ' ନାମରେ ପରିଚିତ । କଟକ ବ୍ୟାୟାମର ସେ ହେଉଛନ୍ତି ପ୍ରାଣ ପ୍ରତିଷ୍ଠାତା । ମହାତ୍ମା ଗାନ୍ଧୀ କଟକ ଆସିଥିବା ବେଳେ ସେ ତାଙ୍କ ସହିତ ତୌଲିଙ୍ଗା ପେଣ୍ଠରେ ରହିଥିଲେ । ଓଡ଼ିଶାରେ କୁସ୍ତି ସଙ୍ଗଠନ ପାଇଁ ସେ ବିଶେଷ ସ୍ମରଣୀୟ ।

## ପଦ୍ମଚରଣ ପଟ୍ଟନାୟକ :

ପଦ୍ମଚରଣ ପଟ୍ଟନାୟକ ୧୮୮୫ ମସିହାରେ ଭୁବନେଶ୍ୱର ନିକଟବର୍ତ୍ତୀ ମାଞ୍ଚିଆଁରେ ଜନ୍ମଗ୍ରହଣ କରିଥିଲେ । ଆଧୁନିକ ଯୁଗର ଜଣେ ବିଶିଷ୍ଟ ଗୀତିକବି କହିଲେ ପଦ୍ମଚରଣ ପଟ୍ଟନାୟକଙ୍କୁ ବୁଝାଏ । ସେ ବହୁବର୍ଷ ପର୍ଯ୍ୟନ୍ତ କଟକରେ ରହିଥିଲେ ଏବଂ ଏଠାରେ ତାଙ୍କର ସାହିତ୍ୟିକ ଜୀବନର ଅଭ୍ୟୁଦୟ ହୋଇଥିଲା । ତାଙ୍କ ରଚିତ ପୁସ୍ତକମାନଙ୍କ ମଧ୍ୟରେ ସ୍ୱର୍ଣ୍ଣରେଣୁ, ପଦ୍ମପାଖୁଡ଼ା, ସୂର୍ଯ୍ୟମୁଖୀ, ଆଶାମଞ୍ଜରୀ, ସୁନାର ଦେଶ ଆଦି ପ୍ରଧାନ । ତାଙ୍କ ରଚିତ 'ଧଉଳ ପାହାଡ଼' କବିତା ଏକ ଉଚ୍ଚକୋଟୀର ଦେଶପ୍ରେମ ଭାବ ସମ୍ବଳିତ ରଚନା ରୂପେ ସ୍ୱୀକୃତ । ସେ ୧୯୫୭ ମସିହାରେ ପ୍ରାଣତ୍ୟାଗ କରିଥିଲେ ।

## ପ୍ରମୋଦ ପତି :

ପ୍ରମୋଦ ପତି ଭାରତର ଜଣେ ଚଳଚ୍ଚିତ୍ର ବିଶାରଦ । ତାଙ୍କର ଜନ୍ମ ୧୯୩୨ ମସିହା ଜାନୁୟାରୀ ମାସ ୧୫ ତାରିଖରେ । ୧୯୫୦ ମସିହାରେ ରେଭେନ୍ସା କଲେଜରୁ ବି. ଏସ୍. ସି. ପାଶ୍ କରି ବାଙ୍ଗାଲୋରରେ ଚଳଚ୍ଚିତ୍ରରେ ଡିପ୍ଲୋମା କଲେ । ସେଠାରୁ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ସେ ଭାରତ ସରକାରଙ୍କର ଚଳଚ୍ଚିତ୍ର ବିଭାଗରେ ଯୋଗ ଦେଲେ ।

ଓଡ଼ିଶାକୁ ଆନ୍ତର୍ଜାତୀୟ ଚଳଚ୍ଚିତ୍ର ମଧ୍ୟରେ ଅନ୍ତର୍ଭୁକ୍ତ କରିବାରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସେ ୧୯୬୮ ମସିହାରେ ପ୍ରଯୋଜକ ହୋଇଥିଲେ । ବର୍ଲିନରେ ଅନୁଷ୍ଠିତ ହୋଇଥିବା ଆନ୍ତର୍ଜାତୀୟ ଚଳଚ୍ଚିତ୍ର ଉତ୍ସବରେ ଶ୍ରୀ ପତି ୧୯୭୨ ମସିହାରେ ଯୋଗ ଦେଇଥିଲେ । ବ୍ୟଙ୍ଗ ଚଳଚ୍ଚିତ୍ରରେ ଅଧିକ ଶିକ୍ଷା ଅର୍ଜନ କରିବା ପାଇଁ ସେ ଚେକୋସ୍ଲୋଭାକିଆ ଯାଇଥିଲେ ।

ଚନ୍ଦ୍ରିକା, ବିନୋବାଙ୍କର ପଦଯାତ୍ରା ଓ ଗାନ୍ଧିଜୀଙ୍କ ଦର୍ଶନ ଉପରେ ସେ ଚଳଚ୍ଚିତ୍ର ନିର୍ମାଣ କରିଥିଲେ । ତାଙ୍କୁ ଜଣେ ବିଶିଷ୍ଟ ଚଳଚ୍ଚିତ୍ର ପ୍ରଦର୍ଶକ ଭାବରେ ୧୯୬୮, ୧୯୬୯, ୧୯୭୦ ଏବଂ ୧୯୭୭ ମସିହାରେ ପୁରସ୍କୃତ କରାଯାଇଥିଲା ।

ଦୁର୍ଭାଗ୍ୟ କର୍କଟ ରୋଗରେ ୧୯୭୫ ମସିହା ଜାନୁୟାରୀ ୨୦ ତାରିଖରେ ମାତ୍ର ୪୩ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା ।

## ପ୍ରାଣନାଥ ମହାନ୍ତି :

ପ୍ରାଣନାଥ ମହାନ୍ତି ୧୯୧୭ ମସିହାରେ ପୁରୀ ଜିଲ୍ଲାର ବେଣ୍ଟପୁରରେ ଜନ୍ମଗ୍ରହଣ କରିଥିଲେ ଏବଂ ତାଙ୍କର ମୃତ୍ୟୁହେଲା ୧୯୯୧ ମସିହା ସେପ୍ଟେମ୍ବର ମାସ ୨୯ ତାରିଖରେ । ଭାରତ ପ୍ରଶାସନିକ ସେବାର ସେ ଥିଲେ ଜଣେ ବରିଷ୍ଠ ଅଫିସର । ପୁରୀ ଜିଲ୍ଲା ସ୍କୁଲରୁ ମାଟ୍ରିକ ପାଶ୍ କରି ପ୍ରାଣନାଥ କଟକ ରେଭେନ୍‌ସା କଲେଜରେ ନାମ ଲେଖାଇ ଥିଲେ । ରେଭେନ୍‌ସା କଲେଜରୁ ଏମ୍. ଏ. ପାଶ୍ କରି ସେ ଲଣ୍ଡନ ଗଲେ ଏବଂ ସେଠାରୁ ଆଇ. ସି. ଏସ୍. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଭାରତର ପ୍ରଶାସନିକ ସେବାର ଜଣେ ଉଚ୍ଚପଦସ୍ଥ ଅଫିସର ଭାବରେ ନିଯୁକ୍ତି ପାଇଲେ ।

ତାଙ୍କର କାର୍ଯ୍ୟଦକ୍ଷତା ଯୋଗୁଁ ସେ ବେଶ୍ ଲୋକପ୍ରିୟ ହୋଇ ପାରିଥିଲେ । ଓଡ଼ିଆ ଓ ସଂସ୍କୃତ ଭାଷାର ଜଣେ ବିଶିଷ୍ଟ ପଣ୍ଡିତ ଭାବରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ସେ ପୁରସ୍କୃତ ହୋଇଥିଲେ । ଚାକିରିରୁ ଅବସର ନେଲା ପରେ ମଧ୍ୟ ସେ ସଂସ୍କୃତ ଓ ଜ୍ୟୋତିଷ ଅଧ୍ୟୟନରେ ମନୋନିବେଶ କରିଥିଲେ । ପାତଞ୍ଜଳୀଙ୍କ ଯୋଗ ଦର୍ଶନ ଏବଂ ଭାରତୀୟ ଆର୍ଯ୍ୟ ସଂସ୍କୃତି ପୁସ୍ତକ ତାଙ୍କୁ ବେଶ୍ ଲୋକପ୍ରିୟ କରିପାରିଥିଲା ।

## ପ୍ରତାପ ଚନ୍ଦ୍ର ମହାନ୍ତି :

ପ୍ରତାପ ଚନ୍ଦ୍ର ମହାନ୍ତି ଜଣେ ପ୍ରବୀଣ ରାଜନୀତିଜ୍ଞ, ନେତା ଓ ସଙ୍ଗଠକ ଭାବରେ ବେଶ୍ ଲୋକପ୍ରିୟ । ୧୯୨୩ ମସିହା ଅକ୍ଟୋବର ମାସ ୨୦ ତାରିଖରେ କଟକ ଜିଲ୍ଲା ତିର୍ତ୍ତୋଲ ଥାନା ଅନ୍ତର୍ଗତ କନକପୁରରେ ତାଙ୍କର ଜନ୍ମ । ତାଙ୍କର ଜୀବନକାଳ ମଧ୍ୟରେ ସେ ୪ ଥର ବିଧାନସଭାକୁ ନିର୍ବାଚିତ ହୋଇ ୩ ଥର ମନ୍ତ୍ରୀ ହୋଇଥିଲେ । ରାଜ୍ୟ ଯୋଜନା ବୋର୍ଡ଼ ଅଧ୍ୟକ୍ଷ, କଟକ ଜିଲ୍ଲା କଂଗ୍ରେସ କମିଟିର ସଭାପତି ଏବଂ ସାରଳା ଦେବୋତ୍ତର ଟ୍ରଷ୍ଟର ସଭାପତି ଭାବରେ ସେ ବହୁବର୍ଷ କାର୍ଯ୍ୟ କରିଥିଲେ । ଜଣେ ବିଶିଷ୍ଟ ସମାଜସେବୀ ଏବଂ ଦକ୍ଷ ପ୍ରଶାସକ ରୂପେ ସେ ଖୁବ୍ ଲୋକପ୍ରିୟତା ଅର୍ଜନ କରିଥିଲେ । ୧୯୯୩ ମସିହା ମାର୍ଚ୍ଚ ମାସ ୧୫ ତାରିଖରେ ୭୦ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା ।

## ଫକୀର ମୋହନ ସେନାପତି :

ଫକୀର ମୋହନ ସେନାପତି ଓଡ଼ିଶାର ଜଣେ ଅପ୍ରତିଦ୍ୱନ୍ଦ୍ୱୀ ବ୍ୟକ୍ତିତ୍ୱ । ୧୮୪୩ ମସିହା ଜାନୁୟାରୀ ମାସ ୧୩ ତାରିଖ ପବିତ୍ର ମକର ସଂକ୍ରାନ୍ତିରେ ସେ ବାଲେଶ୍ୱର ଜିଲ୍ଲାର ମଲ୍ଲିକାଶପୁରରେ ଭୂମିଷ୍ଠ ହୋଇଥିଲେ । ସଂକ୍ରାନ୍ତି ତିଥିରେ ଜନ୍ମ ହୋଇଥିବାରୁ ସେ ଯଥାର୍ଥରେ ସଂକ୍ରାନ୍ତି ପୁରୁଷ ଭାବରେ ପରିଚିତ । ତାଙ୍କ ପିତାଙ୍କ ନାମ ଲକ୍ଷ୍ମଣ

ଚରଣ ସେନାପତି ଓ ମାତା ତୁଳସୀ ଦେବୀ ଥିଲେ । ବାଲ୍ୟକାଳରୁ ସେ ତାଙ୍କ ପିତାମାତାଙ୍କୁ ହରାଇ ଥିଲେ । ତାଙ୍କର ପିତାମହୀ କୁଚିଳା ଦେଇ ଫକୀରମୋହନଙ୍କର ଲାଳନ ପାଳନର ଦାୟିତ୍ୱ ନେଲେ ।

ତାଙ୍କର ବାଲ୍ୟକାଳୀନ ନାମ ଥିଲା ବ୍ରଜମୋହନ । ପିଲାଦିନେ ସେ ଭୟଙ୍କର ବାତବେଗରେ ଆକ୍ରାନ୍ତ ହୋଇ ପଡ଼ିଥିବାରୁ ତାଙ୍କୁ ପୀରଙ୍କ ନିକଟରେ ସମର୍ପଣ କରିଯାଇଥିଲା । ତେଣୁ ବ୍ରଜମୋହନଙ୍କ ନାମ ଫକୀରମୋହନରେ ପରିଣତ ହେଲା । ବୃନ୍ଦଶାଳୀ ଓ ପାର୍ଶୀ ଶିକ୍ଷା ତାଙ୍କ ପାଇଁ ଯଥେଷ୍ଟ ନ ହେବାରୁ ସେ ବାଲେଶ୍ୱରର ବାରବାଟୀ ସ୍କୁଲରେ ଦୁଇବର୍ଷ ପଢ଼ିଲେ । ତାଙ୍କର ଅସାଧାରଣ ପ୍ରଜ୍ଞା ଏବଂ ଅହେତୁକ ବୌଦ୍ଧିକ ବିକାଶ ଯୋଗୁ ମାତ୍ର ଦୁଇବର୍ଷ ମଧ୍ୟରେ ବାଲେଶ୍ୱର ମିଶନ୍ ସ୍କୁଲର ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତ ହୋଇଲେ । ୧୮୭୧ ମସିହାରୁ ୧୮୯୬ ମସିହା ମଧ୍ୟରେ ଫକୀରମୋହନ ନୀଳଗିରି, ଡୋମପଡ଼ା, ଢେଙ୍କାନାଳ, ଦଶପଲ୍ଲା, ପାଲଲହଡ଼ା, କେନ୍ଦୁଝର ପ୍ରଭୃତି ରାଜ୍ୟର ଦେୱାନ୍ ଭାବରେ କାର୍ଯ୍ୟ କରିଥିଲେ । ବାଲେଶ୍ୱରରେ ଶିକ୍ଷକ ଥିବାବେଳେ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ ନାମକ ଜନୈକ ବଙ୍ଗାଳୀ ଯୁବକ କେତେକ ବଙ୍ଗାଳୀଙ୍କ ସହିତ ମିଶି ଓଡ଼ିଶାର କୋର୍ଟ, କଚେରୀ ଓ ବିଦ୍ୟାଳୟମାନଙ୍କରୁ ଓଡ଼ିଆ ଭାଷା ଉଠାଇ ଦେବା ପାଇଁ ପ୍ରବଳ ଚେଷ୍ଟା ଚଳାଇ ଥିଲେ । ଓଡ଼ିଆ ଭାଷାକୁ ଚଣ୍ଡିଚପି ମାରିଦେବାର କୁଟଚକ୍ରାନ୍ତ ଓ ଷଡ଼ଯନ୍ତ୍ର ଚାଲିଥିବାବେଳେ ଫକୀର-ମୋହନଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱ ଓ ପ୍ରତିଭା ବଳରେ ସେଇ ଇଂରେଜ ଅଫିସରମାନଙ୍କୁ ପ୍ରଭାବିତ କରି ଓଡ଼ିଆ ଭାଷାର ସୁରକ୍ଷା ସହିତ ମର୍ଯ୍ୟାଦାର ଅଭିବୃଦ୍ଧି ଘଟାଇବାରେ ସହାୟକ ହୋଇ ପାରିଲେ । ଜନ୍ ବୀମ୍ସଙ୍କ ଯୋଗୁ ଫକୀରମୋହନଙ୍କର ଉଭନ୍ନ ପଦୋନ୍ନତି ହୋଇଥିଲା ।

ଫକୀର ମୋହନ ଥିଲେ ଆଧୁନିକ ଓଡ଼ିଆ ସାହିତ୍ୟର ଜଣେ ବିଶିଷ୍ଟ ସ୍ରଷ୍ଟା । ଓଡ଼ିଆ ଭାଷାରେ ଉପନ୍ୟାସ ଓ କ୍ଷୁଦ୍ରଗଳ୍ପ ରଚନା କରିବା ଆଦ୍ୟ ଗୌରବ ହେଉଛି ଫକୀର ମୋହନଙ୍କର । ସେ ଚାରୋଟି ଉପନ୍ୟାସର ରଚୟିତା । ତାଙ୍କର ସାମାଜିକ ଉପନ୍ୟାସ ଭାବରେ 'ଛମାଣ ଆଠଗୁଣ୍ଠ' (୧୯୦୨), ମାମୁଁ (୧୯୧୩), ପ୍ରାୟଶ୍ଚିତ୍ତ (୧୯୧୫) ଉଲ୍ଲେଖଯୋଗ୍ୟ । ଲଛମା (୧୯୧୪) ହେଉଛି ଫକୀର ମୋହନଙ୍କର ଏକମାତ୍ର ଐତିହାସିକ ଉପନ୍ୟାସ ଯାହା ତତ୍କାଳୀନ ମରହଟ୍ଟା ଶାସନର ଏକ ଅବିସ୍ମୃତ ଅଧ୍ୟାୟକୁ ନେଇ ସମୃଦ୍ଧ । ସେ ମଧ୍ୟ ଜଣେ ପ୍ରତିଭାଶାଳୀ କବି ଥିଲେ । ୧୯୦୯ ମସିହାରେ ତାଙ୍କର ବୌଦ୍ଧାବତାର କାବ୍ୟ ରଚିତ ହୋଇଥିଲା । ତାଙ୍କର କବିତା ସଂକଳନମାନଙ୍କ ମଧ୍ୟରେ ପୁଷ୍ପମାଳା (୧୮୯୪), ଅବସରବାସରେ (୧୯୦୮) ପୂଜାଫୁଲ (୧୯୧୨) ଓ ଧୂଳି (୧୯୨୭) ଅନ୍ତର୍ଭୁକ୍ତ । ବାଲ୍ମୀକି ରାମାୟଣ ଓ ସଂସ୍କୃତ ମହାଭାରତର ମଧ୍ୟ ସେ ପଦ୍ୟାନୁବାଦ କରିଥିଲେ । ସେ ଯଥାର୍ଥରେ ଥିଲେ ଓଡ଼ିଆ କ୍ଷୁଦ୍ରଗଳ୍ପର ଜନକ । ତାଙ୍କର କୋଡ଼ିଏରୁ ଊର୍ଦ୍ଧ୍ୱ କ୍ଷୁଦ୍ରଗଳ୍ପ, ଗଳ୍ପ ସ୍ୱଳ୍ପର ପ୍ରଥମ ଭାଗ ଏବଂ ଦ୍ୱିତୀୟଭାଗରେ ସଂକଳିତ ହୋଇଥିବା ଦେଖିବାକୁ ମିଳେ ।

ଏତଦ୍‌ବ୍ୟତୀତ ତାଙ୍କର ଅନେକ ପ୍ରବନ୍ଧ ଓ ଆଲୋଚନାରେ ଉତ୍କଳର ବାଣୀଭଣ୍ଡାର ସମୃଦ୍ଧ ହୋଇ ଯାଇଛି । ସେ ପ୍ରକୃତରେ ଓଡ଼ିଆ ଜାତିର ଜାଗ୍ରତ ପ୍ରହରୀ । ଓଡ଼ିଆ ଭଳି ଏକ ଅବହେଳିତ ଜାତିକୁ ସମଗ୍ର ବିଶ୍ୱନିକଟରେ ପରିଚିତ କରାଇବାରେ ତାଙ୍କ ଉଦ୍ୟମ ବେଶ୍ ପ୍ରଶଂସନୀୟ । ତାଙ୍କର ଆତ୍ମଜୀବନୀ ଖଣ୍ଡିକ ହେଉଛି ଏ ଜାତିର ଜୀବନ୍ତ ବେଦ ସ୍ୱରୂପ । ସେ ସମୟରେ ଦେଶମିଶ୍ରଣ ଆନ୍ଦୋଳନର ମଧ୍ୟ ଫକୀରମୋହନ ଜଣେ ସଫଳୀକୃତ ବ୍ୟକ୍ତିତ୍ୱ ଥିଲେ । ବାଲେଶ୍ୱରରେ ପ୍ରଥମକରି ଛାପାଖାନା ସେ ପ୍ରତିଷ୍ଠା କରିଥିଲେ । ସେତେବେଳେ ଇଂରେଜ ଭାଷାପ୍ରତି ଯେଉଁ ଆକର୍ଷଣ ଏବଂ ଓଡ଼ିଆ ଭାଷାର ଅନାଦରକୁ ଲକ୍ଷ୍ୟକରି ଫକୀର ମୋହନ ଉତ୍କଳ ଭ୍ରମଣରେ ଲେଖିଛନ୍ତି—

"ପଢ଼ ଇଙ୍ଗରେଜୀ କେହି ମନାକରୁ ନାହିଁ
କିନ୍ତୁ ବାପା କାମକର ଜାତିକୁଳ ରହି ।
ଘୃଣା କରୁଅଛ ମାତୃଭାଷା ପଢ଼ିବାକୁ
ହାୟ ହାୟ ଲାଜକଥା କହିବି କାହାକୁ ।"

କରୁଣ ରସ ଥିଲା ଫକୀର ମୋହନଙ୍କର ଶିଳ୍ପ ସୃଷ୍ଟିର ପ୍ରାଣକେନ୍ଦ୍ର । ତଥାପି ହାସ୍ୟରସ ମାଧ୍ୟମରେ ବ୍ୟକ୍ତିକୁ ସମାଜ ସଚେତନ କରାଇବା ପାଇଁ ସେ ପ୍ରାଣମୂର୍ଚ୍ଛା ଉଦ୍ୟମ ଚଳାଇଥିଲେ । ୧୯୧୮ ମସିହା ଜୁନ୍ ମାସରେ ଫକୀର ମୋହନଙ୍କର ମୃତ୍ୟୁ ହେଲା ।

## ବୀର କିଶୋର ଦାସ :

ବୀର କିଶୋର ଦାସ ଓଡ଼ିଶାର ଜାତୀୟ କବି ଭାବରେ ଅତ୍ୟନ୍ତ ଲୋକପ୍ରିୟ । ଦେଶର ସ୍ୱାଧୀନତା ଆନ୍ଦୋଳନରେ ମୁଖ୍ୟଭୂମିକା ଗ୍ରହଣ କରି ବହୁବାର କାରାବରଣ କରିଥିଲେହେଁ ଜାତିର ମଙ୍ଗଳସାଧନ ଥିଲା ତାଙ୍କ ଜୀବନର ସର୍ବପ୍ରଧାନ ଲକ୍ଷ୍ୟ । ବୀର କିଶୋର ୧୮୯୬ ମସିହା ନଭେମ୍ବର ମାସ ୨୩ ତାରିଖ ଦିନ କଟକ ଜିଲ୍ଲା ଜଗତ୍‌ସିଂହ-ପୁରଠାରୁ ମାତ୍ର ୪ କିଲୋମିଟର ଦୂର ପୁନଙ୍ଗ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଜୀବନ ଥିଲା ସଂଘର୍ଷମୟ ।

କଟକର ଭିକ୍ଟୋରିଆ ସ୍କୁଲରେ ପଢ଼ୁଥିବା ସମୟରେ ଉତ୍କଳଗୌରବ ମଧୁସୂଦନଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା । ମଧୁସୂଦନ ହିଁ ଯଥାର୍ଥରେ ଥିଲେ ତାଙ୍କର କାବ୍ୟଗୁରୁ । ମାଟ୍ରିକ୍ ପାସ୍ କରି, ରେଭେନ୍‌ସା କଲେଜରେ ନାମ ଲେଖାଇବାର ମାତ୍ର କିଛିଦିନ ପରେ ପାଠପଢ଼ା ଛାଡ଼ି ଓକିଲାତିରେ ଯୋଗଦେଲେ । କିନ୍ତୁ ସରକାରୀ ଓକିଲାତି କରି ମଧ୍ୟ ଓକିଲାତିର ମୋହ ତାଙ୍କୁ ବାନ୍ଧି ପାରିନଥିଲା । ସେ ୧୯୨୧ରେ ଅସହଯୋଗ ଆନ୍ଦୋଳନରେ ଝାସଦେଇ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ଆଶ୍ରମ ଜୀବନଯାପନ କଲେ । ୧୯୨୪ ମସିହାରେ ବୀର କିଶୋର କଟକ ଜିଲ୍ଲା ଲୋକାଲ-ବୋର୍ଡ଼ର ଚେୟାରମ୍ୟାନ ହେଲେ ।

୧୯୩୯ ମସିହାର ଅଇନ୍ ଅମାନ୍ୟ ଅନ୍ଦୋଳନ ଏବଂ ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ଉଗ୍ରଜାତୀୟତା-ବାଦର ପରିପ୍ରେକ୍ଷୀରେ ଲାଗି ସେ ବହୁ ବିପ୍ଳବାତ୍ମକ କବିତା ରଚନା କରିଥିଲେ । ରଣଦୁନ୍ଦୁଭି, ରଣଭେରୀ, ବିଦ୍ରୋହୀ ବୀଣା, ଅଉ ଫେରି ନାଇ, ଯୁଦ୍ଧ ସରନାହିଁ, ମୋହନବଂଶୀ ପ୍ରଭୃତି ପୁସ୍ତକଗୁଡ଼ିକ ହେଉଛି ତାଙ୍କର ସଂଗ୍ରାମୀ ଜୀବନର ଚରମ ଅଭିବ୍ୟକ୍ତି । ବନ୍ଦୁବର ବାଞ୍ଛାନିଧି ବୀର କିଶୋରଙ୍କୁ 'ରଣଦୁନ୍ଦୁଭି' ପାଇଁ ୨ ବର୍ଷ, ରଣଭେରୀ ଲାଗି ୨ ବର୍ଷ ଏବଂ ବିଦ୍ରୋହୀ ବୀଣା ପାଇଁ ଏକବର୍ଷ କାରାଦଣ୍ଡ ଭୋଗିବାକୁ ପଡ଼ିଥିଲା । ଇଂରେଜ ସରକାର ବୀର କିଶୋରଙ୍କୁ ବହୁ ନିର୍ଯ୍ୟାତନା ଦେଇଥିଲେ ମଧ୍ୟ ବୀରକିଶୋରଙ୍କର ସେଥିପ୍ରତି ଆଦୌ ଭ୍ରୂକ୍ଷେପ ନଥିଲା ।

ସେ କହିଥିଲେ—"ସୁଲତାନ୍ ମାମୁଦ ୧୭ ଥର ଭାରତ ଆକ୍ରମଣ କରିଥିଲା କିନ୍ତୁ ବ୍ରିଟିଶ୍ ସରକାର ୧୯ ଥର ମୋ ଘର ଖାନ୍ତଲାସ କରି ନିରାଶ ହୋଇଛି ।" ପାଠ୍ୟପୁସ୍ତକ ଜାତୀୟକରଣରେ ସେ ମୁଖ୍ୟ ଭୂମିକା ନେଇଥିଲେ ଏବଂ ୧୯୬୧ ମସିହାରେ ପାଠ୍ୟପୁସ୍ତକ ସିଲାବସର ସମ୍ପାଦକ ଦାୟିତ୍ୱରେ ଥିଲେ । ୧୯୫୯ ମସିହାରେ ବୀରକିଶୋର ଓଡ଼ିଶାର ବିଧାନସଭାକୁ ନିର୍ବାଚିତ ହୋଇଲେ । ପଣ୍ଡିତ ନୀଳକଣ୍ଠଙ୍କର ମୃତ୍ୟୁରେ ସେ ରଚନା କରିଥିଲେ "ବକୁଳବନର ଗୁରୁ" କବିତା । 'ସମରଯୁଗର ଅସର ସଙ୍ଗୀତ' ଜାତୀୟ କବି ବୀର କିଶୋରଙ୍କର ଶେଷ କାବ୍ୟକୃତି ଯାହା ୧୯୭୨ ମସିହାରେ ପ୍ରକାଶ ପାଇଥିଲା । ଯଥାର୍ଥରେ ସେ ଥିଲେ ଜାତୀୟତାବାଦୀ କବି ଓ ନେତା । ଦେଶପାଇଁ ତାଙ୍କର ଜୀବନ ଯେପରି ଉତ୍ସର୍ଗୀକୃତ ଥିଲା ଜାତିଲାଗି ତାଙ୍କର କବିତ୍ୱ ତଦନୁରୂପ ଥିଲା ଚଳଚଞ୍ଚଳ ।

ସେ ଇଂରେଜ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ କରି ଜାତିକୁ ମୁକ୍ତ କରିବା ପାଇଁ ପ୍ରବଳ ଉଦ୍ୟମ କରିଥିଲେ । ବୀରକିଶୋରଙ୍କର ମହାପ୍ରୟାଣ ହେଲା ୧୯୭୩ ମସିହା ଅପ୍ରେଲ ମାସ ୨୮ ତାରିଖରେ । ତାଙ୍କର ସ୍ମୃତିରକ୍ଷା ପାଇଁ କଟକର ଏକ ସରକାରୀ ମହାବିଦ୍ୟାଳୟକୁ ବୀର କିଶୋରଙ୍କର ନାମରେ ନାମିତ କରାଯାଇଅଛି ।

## ବିଚିତ୍ରାନନ୍ଦ କର :

ବିଚିତ୍ରାନନ୍ଦ କର ଏକାଧାରରେ ଥିଲେ ଜଣେ ତ୍ୟାଗପୂତ ସାହିତ୍ୟିକ, ସତ୍ତ୍ୱ ସାମ୍ବାଦିକ ଏବଂ ନିର୍ଭୀକ ସମ୍ପାଦକ । ଓଡ଼ିଶାର ଖ୍ୟାତନାମା ସାହିତ୍ୟିକ ବାଲକୃଷ୍ଣ କରଙ୍କର ଉପଯୁକ୍ତ ଦାୟାଦ ଭାବରେ ସେ ନିଜର ପରିଚୟ ପ୍ରଦାନ କରିଥିଲେ । ଏହି ମହାନ୍ ସାଧକ ବିଚିତ୍ରାନନ୍ଦ କର ୧୯୨୮ ମସିହା ଆଶ୍ୱିନ ମାସ ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ସାଲେପୁର ଥାନାର ଖିରବନ୍ଧା ଗ୍ରାମରେ ଜନ୍ମ ହୋଇଥିଲେ । ବାଲ୍ୟକାଳରୁ ସେ ତାଙ୍କ ପିତାଙ୍କ ସହିତ କଟକ ସହରର ଦରଘାବଜାରରେ ଥିବା ତାଙ୍କ ନିଜଘର "ପାରିଜାତଭବନ"ରେ ଅବସ୍ଥାନ କରୁଥିଲେ ।

କଟକ ପ୍ୟାରୀମୋହନ ଏକାଡେମୀରୁ ମାଟ୍ରିକ୍ ପାସ୍ କରି ସେ ରେଭେନ୍ସା କଲେଜରେ ନାମ ଲେଖାଇଲେ । ରେଭେନ୍ସା କଲେଜରୁ ଓଡ଼ିଆରେ ଏମ୍. ଏ. ପାସ୍ କରିବା ପରେ ତାଙ୍କ ନିକଟରେ ବହୁ ସରକାରୀ ଚାକିରୀ ଓ ଉଚ୍ଚ ପଦପଦବୀର ମୋହ ଦେଖା ଦେଇଥିଲା । ସେ ସବୁକୁ ପ୍ରତ୍ୟାଖ୍ୟାନ କରି ଶ୍ରୀ କର ଆଜୀବନ ସାହିତ୍ୟସେବାରେ ନିଜ ଜୀବନକୁ ଉତ୍ସର୍ଗ କଲେ । ସାମ୍ବାଦିକତା ଓ ସାହିତ୍ୟ ସେବାପାଇଁ ସେ ନିଜ ପିତାଙ୍କ ପାଖେ ପାଖେ ରହି ତାଲିମ ପାଇଥିଲେ । 'ମାତୃଭୂମି'ର ସହ ସମ୍ପାଦକ, ଯୁଗ୍ମ ସମ୍ପାଦକ ଓ ପରେ ପରେ ସମ୍ପାଦକ ଦାୟିତ୍ୱ ଗ୍ରହଣ କରି ସେ ନିର୍ଭୀକ ଓ ନିରପେକ୍ଷ ଭାବରେ ଲେଖନୀ ଚାଳନା କଲେ ।

ବହୁଘାତ ପ୍ରତିଘାତ, ଭ୍ରାତୃତ୍ୱବାଦ, ମାଲିମୋକଦ୍ଦମା, ପ୍ରେସ୍ ଶ୍ରମିକଙ୍କର ଧର୍ମଘଟ ଓ କାର୍ଯ୍ୟବନ୍ଦ ଇତ୍ୟାଦି ସମସ୍ୟାର ସମ୍ମୁଖୀନ ହୋଇ ସ୍ଥିତପ୍ରଜ୍ଞ ଭାବେ ମାତୃଭୂମିର ସ୍ୱାଭିମାନ ରକ୍ଷା କରିବା ପାଇଁ ସେ ପ୍ରାଣମୁର୍ଚ୍ଛା ଉଦ୍ୟମ ଚଳାଇଥିଲେ । ସେ ଥିଲେ ମାସିକ ସାହିତ୍ୟ ପତ୍ରିକା ସହକାରର ସମ୍ପାଦକ । ଝଙ୍କାରର ବିଷ୍ଣୁ ମିଳନ ଅନୁରୂପ ସହକାର ଓ ମାତୃଭୂମିର ମକର ମିଳନ ତାଙ୍କଦ୍ୱାରା ସୃଷ୍ଟ ଏକ ଅଭିନବ ସାରସ୍ୱତ ଅଭିନନ୍ଦନ ଉତ୍ସବ । ଶ୍ରୀ କର ୧୯୭୪ ମସିହାରେ କଟକ ସଦର ବିଧାନସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଦଳର ପ୍ରାର୍ଥୀ ଭାବେ ପ୍ରତିଦ୍ୱନ୍ଦ୍ୱିତା କରି ପରାଜିତ ହୋଇଥିଲେ । ବିଚକ୍ଷଣାନନ୍ଦ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ଓଡ଼ିଶାର ବହୁ ସାଂସ୍କୃତିକ, ରାଜନୈତିକ, ସାମାଜିକ ତଥା ଜନହିତକର ସଂସ୍ଥା ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ଉତ୍କଳ ସାହିତ୍ୟ ସମାଜର ସଭାପତି, ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ସଦସ୍ୟ, ଲୋକ ଭାଷା ପ୍ରଚାର ସମିତିର କାର୍ଯ୍ୟକାରୀ ସଭାପତି, ନିଖିଳ ଭାରତ ସାମାଜିକ ସଂଘର ସଦସ୍ୟ ସମେତ ଅନେକ ସାଂସ୍କୃତିକ ଓ ଶିକ୍ଷାନୁଷ୍ଠାନ ପରିଚାଳନା ସମିତିର କର୍ମକର୍ତ୍ତା ରହି ସେ ନିଜ କୃତିତ୍ୱ ଓ ବିଦ୍ୱତ୍ତାର ପରିଚୟ ପ୍ରଦାନ କରିଥିଲେ । ଜଣେ ସାମ୍ବାଦିକ ଭାବରେ ସେ ବିଦେଶର ବହୁ ଦେଶ ପରିଭ୍ରମଣ କରିଥିଲେ । ୧୯୬୯ ମସିହାରେ ସୋଭିଏତ୍ ରୁଷ ଏବଂ ୧୯୮୪ ମସିହାରେ ଚୀନ ଯାତ୍ରା କରି ସେ ଯଥେଷ୍ଟ ଅଭିଜ୍ଞତା ଅର୍ଜନ କଲେ ।

ଜଣେ ସାହିତ୍ୟିକ ଭାବରେ ସେ ବହୁ କ୍ଷୁଦ୍ର ଗଳ୍ପର ରଚୟିତା । ମାତୃଭୂମି ଓ ସହକାରର ସମ୍ପାଦକୀୟ ଲେଖାରୁ ତାଙ୍କର ସାହିତ୍ୟିକ ପ୍ରତିଭାର ଯଥେଷ୍ଟ ପରିଚୟ ମିଳେ । ଏହି ମହାନ୍ ବ୍ୟକ୍ତିତ୍ୱର ଅବସାନ ଘଟିଲା ୧୯୮୭ ମସିହା ଅକ୍ଟୋବର ମାସ ୩୧ ତାରିଖରେ ।

## ବିଶ୍ୱନାଥ କର :

ବିଶ୍ୱନାଥ କର ଓଡ଼ିଶାର ଜଣେ ନିଷ୍ଠାପର ସାହିତ୍ୟ ସାଧକ । ୧୮୬୪ ମସିହାରେ କଟକ ଜିଲ୍ଲାର ମୁକୁନ୍ଦ ବସନ୍ତରେ ସେ ଜନ୍ମଗ୍ରହଣ କରିଥିଲେ । ଛାତ୍ର ଜୀବନରୁ

ସେ ଥିଲେ ନିର୍ଭୀକ ଓ ସ୍ୱାଧୀନଚେତା । ସେ ଶିକ୍ଷାଲାଭ କରିବା ପାଇଁ କଷ୍ଟକ ଭୋଗି-ଥିଲେ । ରେଭେନ୍‌ସା କଲେଜରେ ସେ ଅଧ୍ୟୟନ କଲେ । କୁଆଁପାଳ ପ୍ରାଇମେରୀ ସ୍କୁଲ୍, ପି. ଏମ୍ ଏକାଡେମୀ ଏବଂ ମିଶନ ସ୍କୁଲରେ ଶିକ୍ଷକତା କରିଥିଲେ । ପରେ ମିଶନ ସ୍କୁଲର ପ୍ରଧାନ ଶିକ୍ଷକ ହୋଇଥିଲେ । ବିଶ୍ୱନାଥ କରଙ୍କର ମାନସରେ ତତ୍କାଳୀନ ଗ୍ରାମ୍ୟଜୀବନ, କୁସଂସ୍କାର ଧର୍ମରେ ପୂରି ରହିଥିବା ତାମସିକତା ଦୁର୍ନୀତି ଓ ଜାତିଭେଦର କଳୁଷ ବିରୁଦ୍ଧରେ ଏକ ମୁକ୍ତିକାମୀ ଚିନ୍ତାଧାରାର ଉଦ୍ରେକ ହୋଇଥିଲା ।

ସେ କପିଳେଶ୍ୱର ବିଦ୍ୟାଭୂଷଣ, ଶ୍ୟାମସୁନ୍ଦର ମୋହନ ଆଚାର୍ଯ୍ୟ ଓ ମଧୁସୂଦନ ରାଓଙ୍କର ସମ୍ପର୍କରେ ଆସି ନିଜ ଜୀବନ ଓ ଚରିତ୍ରକୁ ଏକ ଆଦର୍ଶମୟ ପଥରେ ପରିଚାଳିତ କରି ପାରିଥିଲେ । ସଂସ୍କାରକ ନାମକ ଏ ପତ୍ରିକାର ସେ ଥିଲେ ସମ୍ପାଦକ । ବିଶ୍ୱନାଥ ବ୍ରାହ୍ମଧର୍ମ ଦ୍ୱାରା ପ୍ରଭାବିତ ହୋଇ ୧୮୯୭ ମସିହାରେ ଉତ୍କଳ ସାହିତ୍ୟ ପ୍ରେସ ଗଠନ କରି 'ଉତ୍କଳ ସାହିତ୍ୟ' ନାମକ ପତ୍ରିକା ପ୍ରକାଶ କଲେ । ଏହା ନୂତନ ଲେଖକମାନଙ୍କୁ ସୃଷ୍ଟି କରିବାରେ ଯଥେଷ୍ଟ ସହାୟକ ହୋଇଥିଲା । ବିଭିନ୍ନ ଅନୁଷ୍ଠାନ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ତାଙ୍କର କର୍ମ ଜୀବନରେ ସେ ଉତ୍କଳ ସାହିତ୍ୟ ସମାଜର ସଭାପତି, ଉତ୍କଳ ସମ୍ମିଳନୀର ସଭ୍ୟ ଏବଂ ବିହାର ଓଡ଼ିଶା ବ୍ୟବସ୍ଥାପକ ସଭାର ପ୍ରତିନିଧି ଥିଲେ । ବିଶ୍ୱନାଥ କରଙ୍କର 'ବିବିଧ ପ୍ରବନ୍ଧ' ସାହିତ୍ୟ, ସଂସ୍କୃତି, ଧର୍ମ, ସଭ୍ୟତା ଇତ୍ୟାଦି ଯାବତୀୟ ବିଷୟରେ ବିଭିନ୍ନ ସମୟରେ ରଚିତ ଏବଂ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ ପ୍ରବନ୍ଧାବଳୀର ଏକ ସଂକଳନ । ୧୯୩୧ ମସିହାରେ ତାଙ୍କୁ ରାୟସାହେବ ଉପାଧି ପ୍ରଦାନ କରାଯାଇଥିଲେହେଁ ସେ ଏହାକୁ ପ୍ରତ୍ୟାଖ୍ୟାନ କରିଥିଲେ । ୧୯୩୪ ମସିହାରେ ସେ ସ୍ୱର୍ଗାରୋହଣ କଲେ ।

## ବୈକୁଣ୍ଠନାଥ ପଟ୍ଟନାୟକ :

ଓଡ଼ିଶାର ଜଣେ ବିଶିଷ୍ଟ କବି ତଥା ସବୁଜ ଗୋଷ୍ଠୀର ଅନ୍ୟତମ ସାରଥୀ ବୈକୁଣ୍ଠନାଥ ପଟ୍ଟନାୟକ ୧୯୦୪ ମସିହା ସେପ୍ଟେମ୍ବର ମାସ ୧୪ ତାରିଖରେ ବଡ଼ମ୍ବାରେ ଜନ୍ମଗ୍ରହଣ କରିଥିଲେ । ସତ୍ୟବାଦୀ ବନବିଦ୍ୟାଳୟରୁ ମାଟ୍ରିକ୍ ପାଶ୍ କରି ବୈକୁଣ୍ଠନାଥ ୧୯୨୧ ମସିହାରେ ରେଭେନ୍‌ସା କଲେଜରେ ନାମ ଲେଖାଇଲେ ।

ସତ୍ୟବାଦୀ ବିଦ୍ୟାଳୟରେ ପଢ଼ୁଥିବା ବେଳେ ତାଙ୍କର କବିତା ଲେଖା ଆରମ୍ଭ ହୋଇଥିଲା । ଛାତ୍ରାବସ୍ଥାରୁ ସେ ରବୀନ୍ଦ୍ରନାଥଙ୍କ ରଚନାବଳୀ ଦ୍ୱାରା ପ୍ରଭାବିତ ହୋଇଥିଲେ । ବି. ଏ. ପାଶ୍ କରିବାପରେ ଟ୍ରେନିଂ ନେଇ ବୈକୁଣ୍ଠନାଥ ଶିକ୍ଷକତା କଲେ ଏବଂ ପରେ ରେଭେନ୍‌ସା କଲେଜରୁ ଓଡ଼ିଆରେ ଏମ୍.ଏ. ପାଶ୍ କରିଥିଲେ । ଶିକ୍ଷକ, ପ୍ରଧାନ ଶିକ୍ଷକ ଓ ସ୍କୁଲ ପରିଦର୍ଶକ ଭାବରେ କାର୍ଯ୍ୟ କରି ସେ ୧୯୫୯ ମସିହାରେ କାର୍ଯ୍ୟରୁ ଅବସର ଗ୍ରହଣ କଲେ ଏବଂ ୧୯୭୯ ମସିହାରେ ତାଙ୍କର

ଦେହାନ୍ତ ହେଲା । ରେଭେନ୍‌ସା କଲେଜରେ ପଢ଼ୁଥିବା ବେଳେ ସେ କାଳନ୍ଦୀ ଚରଣ ପାଣିଗ୍ରାହୀ, ଅନ୍ନଦାଶଙ୍କର ରାୟ, ଶରତ ଚନ୍ଦ୍ର ମୁଖାର୍ଜୀ ପ୍ରଭୃତି ବନ୍ଧୁମାନଙ୍କ ସହିତ ମିଶି **'Non Sense-Club'** ଗଠନ କରି ଏହି ଅନୁଷ୍ଠାନ ଆନୁକୂଲ୍ୟରେ 'ଅବକାଶ' ନାମକ ଏକ ହାତଲେଖା ପତ୍ରିକା ପ୍ରକାଶ କରୁଥିଲେ । ତାଙ୍କଦ୍ୱାରା ସୃଷ୍ଟ ସବୁଜ ସାହିତ୍ୟ ସମିତି ଥିଲା ପ୍ରଗତିଶୀଳ ସାହିତ୍ୟ ସଙ୍ଗଠନ । 'କାବ୍ୟ ସଞ୍ଚୟନ ଏବଂ ଉତ୍ତରାୟଣ ତାଙ୍କର ଦୁଇଖଣ୍ଡି ଲୋକପ୍ରିୟ କବିତା ଗ୍ରନ୍ଥ । 'ଉତ୍ତରାୟଣ' କବିତା ପୁସ୍ତକ ଲାଗି ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ ।

## ବାମାଚରଣ ମିତ୍ର :

ଓଡ଼ିଶାର ଜଣେ ସଫଳ ଔପନ୍ୟାସିକ, ଗାଳ୍ପିକ ଓ ରମ୍ୟରଚନାକାର ଭାବରେ ବାମାଚରଣ ମିତ୍ର ସୁପ୍ରତିଷ୍ଠିତ । ସେ ୧୯୧୫ ମସିହା ଡିସେମ୍ବର ମାସ ୧୧ ତାରିଖରେ କଟକ ଜିଲ୍ଲାର ରଘୁନାଥପୁର ଗ୍ରାମରେ ଜନ୍ମ ହୋଇଥିଲେ । ଶିକ୍ଷାସମାପ୍ତି ପରେ ଓଡ଼ିଶା ସରକାରଙ୍କ ଅଧୀନରେ ଉଚ୍ଚପଦସ୍ଥ ଅଫିସର ଭାବରେ ନିଯୁକ୍ତି ପାଇଲେ । ସାହିତ୍ୟ ସେବା ଥିଲା ତାଙ୍କ ଜୀବନର ପ୍ରଧାନବ୍ରତ । ଏପରିକି ଚାକିରିରୁ ଅବସର ନେବାପରେ ମଧ୍ୟ ଲେଖାଲେଖି ରୁ ବିରତ ହୋଇ ନଥିଲେ । ମନୁଷ୍ୟର ସ୍ଖଳନ, ଅନ୍ୟାୟ, ଓ ଅନାଚାରକୁ ରମ୍ୟ ରଚନା ମଧ୍ୟରେ ପ୍ରକାଶ କରିବା ଥିଲା ତାଙ୍କ ସାହିତ୍ୟ ସୃଷ୍ଟିର ଆଭିମୁଖ୍ୟ । 'ଏଣୁତେଣୁ ତେଣୁଏଣୁ' ରମ୍ୟରଚନା ପୁସ୍ତକ ପାଇଁ ସେ ଓଡ଼ିଆ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ ।

ବୌଦ୍ଧଯୁଗୀୟ ଏକ କିମ୍ବଦନ୍ତୀମୂଳକ କଥାବସ୍ତୁକୁ ଆଧାର କରି ରଚନା କରିଛନ୍ତି 'ଚନ୍ଦ୍ର ଓ ଚମ୍ପା' ଉପନ୍ୟାସ । ତାଙ୍କର ପ୍ରକାଶିତ ଗଳ୍ପ ପୁସ୍ତକଗୁଡ଼ିକ ମଧ୍ୟରେ ପରାଗ, ନିରଞ୍ଜନ, କାର୍ତ୍ତିକେୟ, ପାଷାଣର ପ୍ରାଣ, ସ୍ୱପ୍ନ ସିନ୍ଧୁ, ଅସୀମ, ବଟମହାପୁରୁଷ ପ୍ରଭୃତି ପ୍ରଧାନ । ବାମାଚରଣ ୧୯୭୭ ମସିହା ଫେବୃୟାରୀ ମାସ ୨୧ ତାରିଖରେ ଇହଲୀଳା ସମ୍ବରଣ କରିଥିଲେ ।

## ବାଳକୃଷ୍ଣ କର :

କଟକର ବରପୁତ୍ରମାନଙ୍କ ମଧ୍ୟରୁ ବାଳକୃଷ୍ଣକର ଅନ୍ୟତମ । ଜଣେ ବହୁମୁଖୀ ପ୍ରତିଭା ଭାବରେ ତାଙ୍କର ବ୍ୟକ୍ତିତ୍ୱ ବହୁତ ଉର୍ଦ୍ଧ୍ୱରେ । ସେ ୧୮୮୭ ମସିହା ଅପ୍ରେଲ ମାସ ୧୬ ତାରିଖରେ କଟକଜିଲ୍ଲାର ସାଲେପୁର ନିକଟସ୍ଥ କଜିନ୍‌ଦାଟପୁରରେ ଜନ୍ମଲାଭ କରିଥିଲେ । ୧୯୧୪ ମସିହାରେ ବି. ଏ. ପାଶ କରି ସେ ଓକିଲାତି ପଢ଼ିଲେ । ଆଇନ ଛାତ୍ର ଥିବା ସମୟରେ ତାଙ୍କର ସଂଗ୍ରାମୀ ଜୀବନ ଆରମ୍ଭ ହେଲା । ଏହି ସମୟରୁ ସେ ଉତ୍କଳ ସମ୍ମିଳନୀରେ ଯୋଗ ଦେଇଥିଲେ । ସେ ପ୍ରାଥମିକ ଅବସ୍ଥାରେ ଜଣେ ଶିକ୍ଷକ ଥିଲେ ।

୧୯୩୭ ମସିହାରେ ବାଳକୃଷ୍ଣଙ୍କର ସାରସ୍ଵତ ପ୍ରେସ ଗଠନ କରି ୧୯୪୭ ମସିହାଠାରୁ ପାକ୍ଷିକ ମାତୃଭୂମି, ସମ୍ବାଦ ପତ୍ରିକା ପ୍ରକାଶ କଲେ । ଏହା ୧୯୫୦ ମସିହାରେ ସାପ୍ତାହିକ ଏବଂ ୧୯୫୨ ମସିହାରେ ଦୈନିକ ସମ୍ବାଦ ପତ୍ରିକାରେ ପରିଣତ ହେଲା । ସେ ଥିଲେ ଜଣେ ବିଶିଷ୍ଟ ସାରସ୍ଵତ ସାଧକ ଓ ବଳିଷ୍ଠ ଶିଶୁସାହିତ୍ୟିକ । ତାଙ୍କର ନାଟକ ଓ ଶିଶୁସାହିତ୍ୟ ଅତ୍ୟନ୍ତ ଉଚ୍ଚକୋଟୀର । 'ଶିଶୁ ସଞ୍ଜାଳୀ' ଶିଶୁ ସାହିତ୍ୟକୁ ତାଙ୍କର ସର୍ବଶ୍ରେଷ୍ଠ ଦାନ । ଆହୁରି ମଧ୍ୟ ସେ ମାସିକ ସାହିତ୍ୟ ପତ୍ରିକା ସହକାରର ପ୍ରତିଷ୍ଠାତା ଓ ସମ୍ପାଦକ ଥିଲେ । ସେତେବେଳେ ବାଳକୃଷ୍ଣ କର ଏହାକୁ ସୃଷ୍ଟି କରି ବହୁ ସାହିତ୍ୟିକ ଓ ଲେଖକ ସୃଷ୍ଟି କରିବାରେ ଏକ ଅଭିନବ ଅଧ୍ୟାୟ ଉନ୍ମୋଚନ କଲେ । ଏହାପୂର୍ବରୁ ସହକାର ଲକ୍ଷ୍ମୀନାରାୟଣ ସାହୁଙ୍କ ସମ୍ପାଦନାରେ ପ୍ରକାଶିତ ହେଉଥିଲା ।

ସେ ବହୁ ଦରିଦ୍ର ଶ୍ରେଣୀର ଲୋକ ଏବଂ ମୁଖ୍ୟତଃ ଲେଖକମାନଙ୍କୁ ଆର୍ଥିକ ସାହାଯ୍ୟ ଦେଉଥିଲେ । "ଜହ୍ନମାମୁଁ" ତାଙ୍କର ଏକ ଲୋକପ୍ରିୟ ଶିଶୁ ସାହିତ୍ୟ ପତ୍ରିକା । ଚନ୍ଦ୍ରଗୁପ୍ତ ଓ ଶିବଦାସ ତାଙ୍କର ଦୁଇଟି ପ୍ରସିଦ୍ଧ ନାଟକ । ଓଡ଼ିଆ ଉପନ୍ୟାସର ଅଭିବୃଦ୍ଧି ଲାଗି ସେ "ଆନନ୍ଦଲହରୀ" ଉପନ୍ୟାସମାଳା ପ୍ରକାଶ କରିଥିଲେ । ୧୯୫୭ ମସିହା ଅଗଷ୍ଟ ମାସ ୫ ତାରିଖରେ ତାଙ୍କର ମୃତ୍ୟୁ ହେଲା । ମୃତ୍ୟୁପରେ ସାରସ୍ଵତ ପ୍ରେସ ନିକଟସ୍ଥ ରାସ୍ତା ତାଙ୍କ ନାମରେ ନାମିତ ହୋଇଅଛି ।

## ବ୍ରଜାନନ୍ଦ ମହାନ୍ତି :

ବ୍ରଜାନନ୍ଦ ମହାନ୍ତି ୧୮୯୪ ମସିହା ସେପଟେମ୍ବର ପହିଲାରେ ବ୍ରହ୍ମପୁରରେ ଜନ୍ମଗ୍ରହଣ କରିଥିଲେ । ଛାତ୍ରାବସ୍ଥାରେ ତାଙ୍କର ବ୍ୟକ୍ତିତ୍ଵର ବିକାଶ ଘଟିଥିଲା । ଜଣେ ମେଧାବୀ ଛାତ୍ରଭାବରେ ମାନ୍ଦ୍ରାସ ବିଶ୍ଵବିଦ୍ୟାଳୟରୁ ଇଂରେଜୀରେ ଏମ୍. ଏ ପାଶ କରିବାପରେ ସେ ୧୯୧୯ ମସିହାରେ ଆଇନରେ ସ୍ନାତକ ଉପାଧି ଲାଭକଲେ । କଲିକତାରେ ଅଧ୍ୟାପକ ଭାବରେ ଯୋଗଦେଲେ । ପରେ ତାହାଛାଡ଼ି ବ୍ରଜାନନ୍ଦ କିଛିଦିନ ବ୍ରହ୍ମପୁରରେ ଓକିଲାତି କଲେ । ସେ ଥିଲେ ଖ୍ରୀଷ୍ଟଧର୍ମାବଲମ୍ବୀ । ଏହି ଧର୍ମ ପ୍ରଚାର ପାଇଁ ୧୯୩୧ ମସିହାରେ ସେ ଭାରତର ବିଭିନ୍ନ ସ୍ଥାନ ଯାଇଥିଲେ ।

୧୯୪୪ ମସିହାରେ ଖ୍ରୀଷ୍ଟକଲେଜ ପ୍ରତିଷ୍ଠା ହେଲା ଏବଂ ୧୯୪୫ ମସିହାରେ ସେ ଏହାର ଅଧ୍ୟକ୍ଷ ଭାବରେ ଯୋଗ ଦେଲେ । ଏହି କଲେଜରେ ୧୮ ବର୍ଷ ଚାକିରି କରି ବ୍ରଜାନନ୍ଦ ୧୯୬୨ ମସିହାରେ ଅବସରପ୍ରାପ୍ତ କଲେ । ସେ ଥିଲେ କଠୋର ନୀତିବାଦୀ ତଥା କଡ଼ା ପ୍ରକୃତିର । ପ୍ରାର୍ଥନା ଏବଂ ଧର୍ମ ଉପରେ ତାଙ୍କର ପ୍ରଗାଢ଼ ବିଶ୍ଵାସ ଥିଲା । ସେ ବାଇବେଲକୁ ଗମ୍ଭୀର ଭାବରେ ଅଧ୍ୟୟନ କରି ତାହାର ବାଣୀକୁ ଦୈନନ୍ଦିନ ଜୀବନରେ ବ୍ୟବହାର କରୁଥିଲେ ।

୧୯୬୩ ମସିହାରେ ସେ ପବ୍ଲିକ୍ ସର୍ଭିସ କମିଶନର ସଭ୍ୟ ହେଲେ । ଓଡ଼ିଆ ଭାଷାକୁ ବ୍ରଜାନନ୍ଦ ପ୍ରାଣଭରି ଭଲ ପାଉଥିଲେ । କଟକରେ ସେ ସ୍ଥାୟୀ ଭାବରେ

ଅବସ୍ଥାନ କଲେ । ଏହିଭଳି ଏକ ମହାନ୍ ବ୍ୟକ୍ତିତ୍ୱର ଅବସାନ ହେଲା ୧୯୮୪ ମସିହା ଜୁଲାଇ ମାସ ୩୧ ତାରିଖରେ ।

## ବିଶ୍ୱନାଥ ମିଶ୍ର :

ଓଡ଼ିଶାର ବରପୁତ୍ର ବିଶ୍ୱନାଥ ମିଶ୍ର ୧୮୭୮ ମସିହାରେ ପୁରୀ ଜିଲ୍ଲା ସତ୍ୟବାଦୀ ଥାନା ସାକ୍ଷୀଗୋପାଳ ଅନ୍ତର୍ଗତ ସୋମେଶ୍ୱରପୁର ବ୍ରାହ୍ମଣ ଶାସନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା କୁଳମଣି ମିଶ୍ର ଥିଲେ ଜଣେ ଧର୍ମପରାୟଣ ବ୍ୟକ୍ତି । ପୁରୀ ଜିଲ୍ଲା ସ୍କୁଲରୁ ମାଟ୍ରିକ ପାଶ୍ କରି ସାରିବା ପରେ ସେ ଉଚ୍ଚଶିକ୍ଷା ନିମନ୍ତେ ରେଭେନ୍ସା କଲେଜରେ ନାମ ଲେଖାଇଲେ । ବିଶ୍ୱନାଥ ଦାରିଦ୍ର୍ୟ ଓ ଅଭାବ ଅନାଟନ ସହିତ ସଂଗ୍ରାମ କରି ପାଠ ପଢ଼ିଥିଲେ । ରେଭେନ୍ସା କଲେଜରେ ପଢ଼ୁଥିବାବେଳେ ସେ ଉତ୍କଳ ସମ୍ମିଳନୀ ସହିତ ଓତଃପ୍ରୋତ ଭାବରେ ଜଡ଼ିତ ହୋଇଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଯଥେଷ୍ଟ ସହାୟତା କରିଥିଲେ ।

୧୯୦୬ ମସିହାରେ ଶ୍ରୀ ମିଶ୍ର ମାଡ୍ରାସରୁ ଓକିଲାତି ପାଶ୍ କରି ମଧୁବାବୁଙ୍କ ସଙ୍ଗେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ଗଠନମୂଳକ କାର୍ଯ୍ୟକ୍ରମରେ ସାମିଲ ହେଲେ । ସେତେବେଳେ ଓଡ଼ିଶାର ହୃତ୍ପିଣ୍ଡ ଗଞ୍ଜାମ ଜିଲ୍ଲା ମାଡ୍ରାସ ପ୍ରଦେଶରେ ମିଶି ରହିଥିଲା । ମଧୁବାବୁଙ୍କ ପରାମର୍ଶ କ୍ରମେ ସେ କଟକ ଓ ପୁରୀ ଜିଲ୍ଲାମାନଙ୍କରୁ ଓକିଲାତି ଆଖଡ଼ାରେ ରହି ନିଜର ଓକିଲାତି ସହ ବିଚ୍ଛିନ୍ନାଞ୍ଚଳ ଆନ୍ଦୋଳନ ଆରମ୍ଭ କଲେ । ସେ ଥିଲେ ଜଣେ ଖ୍ୟାତନାମା ଓକିଲ ଏବଂ ଓଡ଼ିଶାର ପ୍ରଥମ ବାରିଷ୍ଟର । ସେ ବାରିଷ୍ଟରୀ ପଢ଼ିବା ପାଇଁ ବିଲାତ ଯାଇଥିଲେ । ସେଠାରେ ପଢ଼ୁଥିବା ବେଳେ ସତ୍ୟବାଦୀରେ ଥିବା ଗୋପବନ୍ଧୁଙ୍କ ସହିତ ସେ ସମ୍ପର୍କ ରଖିଥିଲେ ।

ବିଲାତରୁ ଫେରି ଆସିବାର ଏକବର୍ଷ ପରେ ନିଜର ସାର୍ଟିଫିକେଟ ପାଇଁ ଦ୍ୱିତୀୟ ଥର ସେ ବିଲାତଯାତ୍ରା କରିଥିଲେ । କିନ୍ତୁ ଏହି ଯାତ୍ରା ତାଙ୍କପାଇଁ ଥିଲା ବିପଦସଙ୍କୁଳ । ସେତେବେଳକୁ ପ୍ରଥମ ମହାସମର ଏବଂ ସମୁଦ୍ରବକ୍ଷରେ ଜର୍ମାନୀର ରଣହୁଙ୍କାର । ତେଣୁ ତାଙ୍କୁ ଉତ୍ତମାଶା ଅନ୍ତରୀପ ଦେଇ ଫେରିବାକୁ ପଡ଼ିଥିଲା । ବିଶ୍ୱନାଥ ମିଶ୍ର ବାରିଷ୍ଟର ହୋଇ ଆସିବାପରେ କଲିକତା ହାଇକୋର୍ଟର ବିଚାରପତି ହେଲେ । ପରେ ପାଟନା ହାଇକୋର୍ଟର ବିଚାରପତି ଭାବରେ କିଛିଦିନ କାମ କରିବା ପରେ କଟକ ପ୍ରତ୍ୟାବର୍ତ୍ତନ କରି ଆଇନ୍ ବ୍ୟବସାୟ ଆରମ୍ଭ କଲେ । ରକ୍ଷଣଶୀଳ ପରିବାରର କୁପ୍ରଥାର ବିଲୋପ ସାଧନ କରିବା ଥିଲା ତାଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ । ମହିଳାମାନଙ୍କୁ ପିତୃସମ୍ପତ୍ତିରେ ଅଗ୍ରାଧିକାର ଦେବାପାଇଁ ସେ ଲଢ଼େଇ କରିଥିଲେ ।

୧୯୨୨ ମସିହାରେ ବିଶ୍ୱନାଥ ବିହାର ଓଡ଼ିଶା ବିଧାନ ପରିଷଦର ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ୧୯୩୦ ମସିହାରେ ସେ ଭାରତୀୟ ବ୍ୟବସ୍ଥା ସଭାକୁ ସଭ୍ୟ ଭାବରେ ନିର୍ବାଚିତ ହେଲେ । ବହୁ ସାଂସ୍କୃତିକ ସଂସ୍ଥା ସହିତ ସେ ଜଡ଼ିତ

ଥିଲେ । ତାଙ୍କର ମହାନ୍‌ବାଣୀ ଥିଲା ଏକଜାତି ଗୃହ ନିଷ୍ଠସ୍ୱ ଆଗେଇ ଯିବ । ଏହିଭଳି ଏକ ଯୋଗଜନ୍ମା ମହାପୁରୁଷ ବିଶ୍ୱନାଥ ମିଶ୍ର ଭାରତୀୟ ବ୍ୟବସ୍ଥା ସଭା ବୈଠକରେ ଯୋଗଦେବାକୁ ଯାଇ ୧୯୩୭ ମସିହା ସେପ୍‌ଟେମ୍ବର ମାସ ୮ରିଖ, ମହାଳୟା ତିଥିରେ ଇହଧାମ ତ୍ୟାଗ କରିଥିଲେ ।

## ବ୍ରଜ ବିହାରୀ ମହାନ୍ତି :

ବ୍ରଜବିହାରୀ ମହାନ୍ତି ଓଡ଼ିଶାର ଜଣେ ଖ୍ୟାତନାମା ପ୍ରାବନ୍ଧିକ । ତାଙ୍କର ବହୁ ପ୍ରବନ୍ଧ ଅନେକ ଓଡ଼ିଆ ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେ ସରକାରୀ ଚାକିରି କରିଥିଲେ ଏବଂ ପରେ ବିଶ୍ୱର ବିଭାଗରେ ନିଯୁକ୍ତି ପାଇଲେ । ଦାର୍ଶନିକ ଚିନ୍ତାଧାରାର ପୃଷ୍ଠଭୂମି ଉପରେ ତାଙ୍କର ପ୍ରବନ୍ଧଗୁଡ଼ିକ ଗତିଶୀଳ । ଲକ୍ଷ୍ମୀନାରାୟଣ ସାହୁ ତାଙ୍କ ପ୍ରବନ୍ଧଗୁଡ଼ିକ ଇଂରେଜୀରେ ଅନୁବାଦ କରି ଆମେରିକାର ଇଲିନୟସ୍ ବିଶ୍ୱବିଦ୍ୟାଳୟକୁ ପଠାଇଥିଲେ ଏବଂ ସେଠାରେ ଶ୍ରୀ ମହାନ୍ତିଙ୍କୁ ଡ଼ି ଫିଲ୍ ଉପାଧି ପ୍ରଦାନ କରାଯାଇଥିଲା । "ଚିନ୍ତା ଓ ସାଧନା" ତାଙ୍କର ଏକ ପ୍ରଧାନ ପ୍ରବନ୍ଧ ପୁସ୍ତକ ।

## ବାଳକୃଷ୍ଣ ମହାନ୍ତି :

ବାଳକୃଷ୍ଣ ମହାନ୍ତି ୧୯୦୦ ମସିହାରେ କଟକ ଜିଲ୍ଲା ଜଗତ୍‌ସିଂହପୁର ଥାନା ଅନ୍ତର୍ଗତ ପଳାଶୋଳ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ସବୁଜ ନାଟୁଆ ବାଳକୃଷ୍ଣ ନାମରେ ପରିଚିତ । କଟକ ଥିଲା ତାଙ୍କର କର୍ମସ୍ଥଳୀ । ଖୁବ୍ କମ୍ ବୟସରୁ ସେ ଗୀତିନାଟ୍ୟ ରଚନା କରିଥିଲେ । ୪୦ରୁ ଊର୍ଦ୍ଧ୍ୱ ଗୀତିନାଟ୍ୟ ଲେଖି ବାଳକୃଷ୍ଣ ଓଡ଼ିଆ ନାଟ୍ୟ ସାହିତ୍ୟକୁ ସମୃଦ୍ଧ କରି ଯାଇଛନ୍ତି । ଓଡ଼ିଶାର ସମସ୍ତ ଅଞ୍ଚଳରେ ତାଙ୍କର ଗୀତିନାଟ୍ୟଗୁଡ଼ିକ ଅଭିନୀତ ହୋଇ ଲୋକପ୍ରିୟତା ଅର୍ଜନ କରିଛି । ତାଙ୍କର ପୁସ୍ତକମାନଙ୍କ ମଧ୍ୟରେ କେଦାରଗୌରୀ, ମୋହନ ସୁନ୍ଦର, ଅମର ବିଳାସ, ସୁଦାମା, ମୁଚୁକୁନ୍ଦ ମୋକ୍ଷ, ଘଟୋତ୍କଚ ପ୍ରଭୃତି ପ୍ରଧାନ । ୧୯୬୮ ମସିହାରେ ସେ ପ୍ରାଣତ୍ୟାଗ କଲେ ।

## ବନମାଳୀ ଦଳାଇ :

ବନମାଳୀ ଦଳାଇଙ୍କ ଜନ୍ମ ୧୮୭୨ ମସିହାରେ । ସେ କଟକର ଗଞ୍ଜକଉଡ଼ିରେ ବନା ପହିଲମାନ ନାମରେ ପ୍ରସିଦ୍ଧ । ସମଗ୍ର ଭାରତରେ ସେ ଥିଲେ ଜଣେ ପହିଲମାନ । କୁସ୍ତି, ପ୍ରତିଯୋଗିତାର ଯୋଦ୍ଧାଭାବରେ ସେ ପ୍ରତିବର୍ଷ ଲାହୋର ଯାଉଥିଲେ । ସେ ଓଡ଼ିଶାରେ କୁସ୍ତି ପ୍ରତିଯୋଗିତାର ଆୟୋଜନ କରି ସମଗ୍ର ଭାରତର ଯୋଦ୍ଧାମାନଙ୍କୁ ଆମନ୍ତ୍ରଣ କରୁଥିଲେ । ସେ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ସମତା ଆଣିବାର ଏକ ବଳିଷ୍ଠ ପ୍ରତିନିଧି । କଟକର ଚୌଧୁରୀ ବଜାରରେ ତାଙ୍କର ଏକ ଦୋକାନ ଅଛି । ୧୯୪୫ ମସିହା ଡିସେମ୍ବର ମାସ ୨୯ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ବ୍ରଜସୁନ୍ଦର ଦାସ :

ବ୍ରଜସୁନ୍ଦର ଦାସ ଓଡ଼ିଶାର ଜଣେ ସୁନାମଧନ୍ୟ ସାହିତ୍ୟିକ ଓ ସ୍ୱାଧୀନତା ସଂଗ୍ରାମୀଭାବେ ପରିଚିତ । ସେ ୧୮୭୮ ମସିହାରେ ଜନ୍ମଗ୍ରହଣ କରି ୧୯୪୪ ମସିହା ସେପ୍ଟେମ୍ବର ମାସ ୭ ତାରିଖରେ ସ୍ୱର୍ଗାରୋହଣ କଲେ । 'ମୁକୁର' ପତ୍ରିକାର ସମ୍ପାଦକ ରୂପେ ସେ ବିଶେଷ ଲୋକପ୍ରିୟ ହୋଇପାରିଥିଲେ । ଓଡ଼ିଆ ଜାତୀୟ ସାହିତ୍ୟ ବିକାଶରେ 'ମୁକୁର'ର ଭୂମିକା ଥିଲା ଉଲ୍ଲେଖଯୋଗ୍ୟ । ସତ୍ୟବାଦୀ ଯୁଗର ସାହିତ୍ୟ ସ୍ରଷ୍ଟାମାନେ ଏହି 'ମୁକୁର' ମାଧ୍ୟମରେ ସାହିତ୍ୟସାଧନା ଆରମ୍ଭ କରିଥିଲେ । ତାଙ୍କର ଅନେକ କବିତା 'ମୁକୁର'ରେ ପ୍ରକାଶିତ ହୋଇଥିଲା ।

ସେହି କବିତାଗୁଡ଼ିକ ପରେ ସଂକଳିତ ହୋଇ 'ବ୍ରଜସୁନ୍ଦର କବିତା ସଂକଳନ' ନାମରେ ଆତ୍ମପ୍ରକାଶ କଲା । ଉତ୍କଳସମ୍ମିଳନୀର ଜାତୀୟ ଆନ୍ଦୋଳନ ସହିତ ସେ ନିବିଡ଼ଭାବେ ସଂପୃକ୍ତ ଥିଲେ । ଓଡ଼ିଶା ପ୍ରଦେଶ ଗଠନରେ ତାଙ୍କର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଗୋପବନ୍ଧୁ ଓ ମଧୁସୂଦନଙ୍କର ସହକର୍ମୀ ରୂପେ ସେ ପରିଚିତ । ସମ୍ପାଦକ ଭାବରେ ତାଙ୍କର ସାଙ୍ଗଠନିକ ଶକ୍ତି ଓ ସମ୍ପାଦନା କୌଶଳ ସମସାମୟିକ ସାହିତ୍ୟିକମାନଙ୍କୁ ବେଶ୍ ଆତ୍ମସନ୍ତୋଷ ଦେଇଥିଲା । 'ମୁକୁର' ଯଥାର୍ଥରେ ଥିଲା ତତ୍କାଳୀନ ସାହିତ୍ୟ, ସମାଜ ଓ ସଂସ୍କୃତିର ମୁକୁର ସ୍ୱରୂପ । ସେ ମଧ୍ୟ ଓଡ଼ିଶା ବିଧାନସଭାର ସଭ୍ୟ ହୋଇଥିଲେ । ଗୋଟିଏ ଜମିଦାର ପରିବାରରେ ତାଙ୍କର ଜନ୍ମ ହୋଇଥିଲା ସତ କିନ୍ତୁ ସେ ସବୁକୁ ସେ ଦାନ କରି ଦେଇଥିଲେ ।

## ବାଳକୃଷ୍ଣ ପଟ୍ଟନାୟକ :

ବାଳକୃଷ୍ଣ ପଟ୍ଟନାୟକ ୧୮୭୩ ମସିହାରେ କଟକ ଜିଲ୍ଲାର ବେଲଗାଡ଼ିରେ ଜନ୍ମ ହୋଇଥିଲେ ସତ କିନ୍ତୁ ଆଠଗଡ଼ରେ ସ୍ଥାୟୀ ଭାବରେ ରହିଥିଲେ । କଟକ ଥିଲା ତାଙ୍କର ସାରସ୍ୱତ ସାଧନାର ସ୍ଥଳୀ । କଟକରେ ରହି ସେ ଅନେକ ପୁସ୍ତକ ରଚନା କରିଥିଲେ ଏବଂ ବହୁ ନୂତନ ଲେଖକମାନଙ୍କୁ ଲେଖିବା ପାଇଁ ପ୍ରେରଣା ଦେଇଥିଲେ । ସେ ଜଣେ ଉଗ୍ର ଜାତୀୟତାବାଦୀ ଥିଲେ । ତାଙ୍କର ରଚନାବଳୀମାନଙ୍କ ମଧ୍ୟରେ ଫୁଲ ବଉଳବେଣୀ, ଗୁରୁଳବଙ୍ଗଲତା ଏବଂ ଚିରଜହର ଆଦି ପ୍ରଧାନ । ତାଙ୍କ ରଚନାର ଭାଷା ସରଳ ଏବଂ ଶୈଳୀ ରମଣୀୟ ହୋଇଥିବାରୁ ଗାଁ ଗହଳରେ ଅତ୍ୟନ୍ତ ଲୋକପ୍ରିୟ ହୋଇ ପାରିଥିଲା । ୧୯୭୦ ମସିହାରେ ୯୭ ବର୍ଷ ବୟସରେ ବାଳକୃଷ୍ଣ କଟକରେ ପ୍ରାଣତ୍ୟାଗ କଲେ ।

## ବିଚିତ୍ରାନନ୍ଦ ଦାସ :

ବିଚିତ୍ରାନନ୍ଦ ଦାସ ଓଡ଼ିଶାର ଆଦିନେତା ଭାବେ ପରିଚିତ ଥିଲେ । ୧୮୭୮ ମସିହାରେ କଟକ ଜିଲ୍ଲାର କଣ୍ଟାବଣିଆଁ ଗ୍ରାମରେ ତାଙ୍କର ଜନ୍ମ । ସେ କଟକ କଲେକ୍ଟରିଏଟରେ ଜଣେ ସିରସ୍ତାଦାର ଥିଲେ । ସ୍ୱାଧୀନତା ଆନ୍ଦୋଳନ ଏବଂ ଓଡ଼ିଶା

ବଙ୍କବର ସେ ମୁଖ୍ୟ ନେତୃତ୍ୱ ନେଇଥିଲେ । ସେ ମଧ୍ୟ ଜଣେ ସୁ-ଲେଖକ । କୃଷିବିଜ୍ଞାନ ଉପରେ ତାଙ୍କର ବହୁ ଲେଖା ପ୍ରତିଷ୍ଠାଲାଭ କରିଥିଲା । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ଓଡ଼ିଆ ଭାଷାର ପ୍ରତିଷ୍ଠା ପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ । ୧୮୭୫ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ବିଶ୍ୱନାଥ ଦାସ :

ଓଡ଼ିଶାର ଦକ୍ଷିଣାଞ୍ଚଳରେ ଜନ୍ମହୋଇ କଟକରେ ପ୍ରତିଷ୍ଠାସମ୍ପନ୍ନ ହୋଇଥିବା ବ୍ୟକ୍ତିତ୍ୱମାନଙ୍କ ମଧ୍ୟରୁ ବିଶ୍ୱନାଥ ଦାସ ଅନ୍ୟତମ । ସେ ୧୮୮୮ ମସିହାରେ ଗଞ୍ଜାମ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ଏବଂ ସେତେବେଳେ କଟକ ଥିଲା ଏହାର ପ୍ରଧାନ କାର୍ଯ୍ୟାଳୟ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବା ପୂର୍ବରୁ ବିଶ୍ୱନାଥ ଦାସ ବିହାର ବିଧାନ ପରିଷଦର ସଭ୍ୟଥିଲେ । ସେ ମଧ୍ୟ ଥିଲେ ଗଞ୍ଜାମ କୃଷକ ଆନ୍ଦୋଳନର ନେତା । ରାଜନୈତିକ ଷଡ଼ଯନ୍ତ୍ରର ଶିକାର ହୋଇ ସେ ନିଜ ମୁଖ୍ୟମନ୍ତ୍ରୀ ପଦବୀରୁ ଇସ୍ତଫା ଦେଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ କାରାବରଣ କରିଥିଲେ । ପୁନର୍ବାର ତାଙ୍କୁ ମୁଖ୍ୟମନ୍ତ୍ରୀଭାବରେ ନିର୍ବାଚିତ କରାଯାଇଥିଲା । ସେ ଉତ୍ତର ପ୍ରଦେଶର ରାଜ୍ୟପାଳ ଏବଂ ସର୍ବଭାରତୀୟ ଲୋକସେବକ ମଣ୍ଡଳର ସଭାପତି ଥିଲେ । ଲୋକ ସାହିତ୍ୟ ଉପରେ ସେ ଅନେକ ଲେଖାଲେଖି କରିଛନ୍ତି । ଏପରି ଏକ ମହାନ୍ ବ୍ୟକ୍ତି ୧୯୮୪ ମସିହାରୁ ଭୂପୃଷ୍ଠରୁ ଅନ୍ତର୍ହିତ ହେଲେ ।

## ବିନୋଦ କାନୁନ୍‌ଗୋ :

ବିନୋଦ କାନୁନ୍‌ଗୋ ୧୯୧୨ ମସିହାରେ କଟକ ଜିଲ୍ଲାର କଣନ୍ ନଗର ଅନ୍ତର୍ଗତ 'ମଛିପୁର' ଗ୍ରାମରେ ଜନ୍ମ ହୋଇଥିଲେ । ସେ ମଛିପୁର ଗ୍ରାମର ଜନୈକ ଗୃହଶିକ୍ଷକଙ୍କ ଅଧୀନରେ ପାଠପଢ଼ା ଆରମ୍ଭ କରିଥିଲେ । ଦଶବର୍ଷ ବୟସରେ ତାଙ୍କର ପିତୃବିୟୋଗ ହେଲା । ସେ ଜଣେ ମେଧାବୀ ଛାତ୍ର ଥିଲେ । ରାଣୀହାଟ ମଧ୍ୟଇଂରାଜୀ ବିଦ୍ୟାଳୟ ଏବଂ ରେଭେନ୍ସା କଲେଜିଏଟ୍ ସ୍କୁଲରେ ପଢ଼ୁଥିବାବେଳେ ସେ ବୃତ୍ତି ପାଉଥିଲେ । ଦଶମ ଶ୍ରେଣୀରେ ପଢ଼ୁଥିବା ବେଳେ ତାଙ୍କର ପାଠପଢ଼ାରେ ଡୋରି ବନ୍ଧାହେଲା ।

୧୯୩୦ ମସିହାରେ ଦଶମ ଶ୍ରେଣୀର ଛାତ୍ର ଥିବାବେଳେ ମହାତ୍ମାଗାନ୍ଧିଙ୍କ ଭାଷଣରେ ଅତ୍ୟନ୍ତ ଉତ୍ସୁକ ହୋଇ ପାଠପଢ଼ା ଛାଡ଼ି ସେ ଲବଣ ସତ୍ୟାଗ୍ରହରେ ଯୋଗଦେଲେ । ଏଥିପାଇଁ ତାଙ୍କୁ ଅନେକବାର କାରାବରଣ କରିବାକୁ ପଡ଼ିଥିଲା । ଗାନ୍ଧିଜୀଙ୍କ ପଦଯାତ୍ରାରେ ସେ ଅଂଶଗ୍ରହଣ କରିଥିଲେ । "ଓଡ଼ିଶାରେ ଗାନ୍ଧିଜୀଙ୍କ ପଦଯାତ୍ରା" ତାଙ୍କର ଏକ ଲୋକପ୍ରିୟ ରଚନା । ଜଣେ ସଚ୍ଚୋଟ ସାମ୍ବାଦିକ, ସମାଜ-ବାଦୀ ଏବଂ ଗାନ୍ଧୀବାଦୀ ନେତା ଭାବରେ ସେ ପ୍ରସିଦ୍ଧ । ଓଡ଼ିଆ ଭାଷାରେ ତାଙ୍କର

ସବୁଠାରୁ ବଡ଼ କୃତିତ୍ୱ ହେଉଛି ଓଡ଼ିଆ ଜ୍ଞାନକୋଷ 'ଜ୍ଞାନମଣ୍ଡଳ'ର ସଂକଳନ ଓ ସମ୍ପାଦନା । ଏ ଦିଗରେ ନିରବଚ୍ଛିନ୍ନ ଶ୍ରମ ସାଧନା ଓ ଉଦ୍ୟମ ବେଶ ଉଲ୍ଲେଖଯୋଗ୍ୟ ।

୧୯୪୦ ମସିହାରେ ତାଙ୍କର ପ୍ରଥମ ପୁସ୍ତକ 'ସପ୍ତଶୀଳା' ପ୍ରକାଶିତ ହେଲା । 'ଶିଶୁସମ୍ପଦ' ଓ 'କୃଷକ' ଦୁଇଟି ପତ୍ରିକା ସେ ସମ୍ପାଦନା କରୁଥିଲେ । ଓଡ଼ିଆ ଭାଷାରେ ୪୨ ଖଣ୍ଡ ଜ୍ଞାନମଣ୍ଡଳ ସେ ରଚନା କରିଛନ୍ତି । କିନ୍ତୁ ତାହା ସମ୍ପୂର୍ଣ୍ଣ ହୋଇ ପାରିଲାନି । ୧୯୯୦ ମସିହାରେ ତାଙ୍କୁ ମହାକାଳ କବଳିତ କଲା । ଗୋଟାଏ ଜାତିସୁ ଅଭାବକୁ ସେ ପୂରଣ କରିପାରିଲେନି । ଏତଦ୍‌ବ୍ୟତୀତ ଜଣେ ପ୍ରସିଦ୍ଧ ଶିଶୁସାହିତ୍ୟିକ ଭାବରେ ପିଲାମାନଙ୍କ ପାଇଁ ସେ ୫୦ ଖଣ୍ଡରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରିଛନ୍ତି । 'ସ୍ୱରାଚରଣୋଧ' ତାଙ୍କର ଆତ୍ମଜୀବନୀ । 'ପାଠ ପଢ଼େ ପଢ଼େ ଅପାଠୁଆ' ଶ୍ରୀ କାନୁନ୍‌ଗୋଙ୍କର ଏକ ନୂତନ ଧରଣର ପୁସ୍ତକ ।

ଆଧୁନିକ ଯୁଗର ଜଣେ ବଶିଷ୍ଟ ଗଦ୍ୟ ଲେଖକ ଭାବରେ ସେ ସୁନାମ ଅର୍ଜନ । ଭାରତ ସରକାରଙ୍କ ଠାରୁ ସେ ପଦ୍ମଶ୍ରୀ ଉପାଧିଲାଭ କରିଥିଲେ । ଭାଷା ଏବଂ ସାହିତ୍ୟ ମାଧ୍ୟମରେ ଜାତିସୁ ସଂହତି ପ୍ରତିଷ୍ଠା କରିବା ଥିଲା ତାଙ୍କର ମୂଳଲକ୍ଷ୍ୟ । ତାଙ୍କର ମୃତ୍ୟୁରେ ଏଦେଶର ଗୋଟାଏ ମହାନ୍ ଫାଙ୍କ ସୃଷ୍ଟି ହେଲା ଏବଂ ତାଙ୍କର ଅନେକ ପରିକଳ୍ପିତ ଯୋଜନା ମଧ୍ୟ ଅପୂର୍ଣ୍ଣ ରହିଗଲା ।

## ବିହାରୀଲାଲ ପଣ୍ଡିତ :

ବିହାରୀଲାଲ ପଣ୍ଡିତଙ୍କ ଜନ୍ମ କଟକର ଗୁରୁଦାସପୋଖରୀରେ । ସେ ଜଣେ ବିରାଟ ଜମିଦାର ଥିଲେ । ଜଣେ ନୈଷ୍ଠିକ ବ୍ରାହ୍ମଣ ଭାବରେ ତାଙ୍କର ବେଶ୍ ଦକ୍ଷତା ଥିଲା । ଶ୍ରୀମଦ୍‌ଭଗବତ୍ ଗୀତାର ବୃହତ୍ ବ୍ୟାଖ୍ୟା, ସଂସ୍କରଣ ସେ କରିଥିଲେ । ଏତଦ୍‌ଭିନ୍ନ 'ବିହାରୀ କର୍ମକାଣ୍ଡ' ଓ 'କଟଶାସ୍ତ୍ର କର୍ମକାଣ୍ଡ' ତାଙ୍କର ଦୁଇଟି ଲୋକପ୍ରିୟ ରଚନା । ଏହା ଓଡ଼ିଶାର ବ୍ରାହ୍ମଣ ସଂପ୍ରଦାୟ ପ୍ରତି ତାଙ୍କର ଏକ ବଶିଷ୍ଟ ଅବଦାନ ।

## ବାନାମ୍ବର ଆଚାର୍ଯ୍ୟ :

ବାନାମ୍ବର ଆଚାର୍ଯ୍ୟ ଓଡ଼ିଶାର ଜଣେ ବଶିଷ୍ଟ ପଣ୍ଡିତ, ଗବେଷକ ଏବଂ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ ଭାବରେ ପରିଚିତ । ସେ ୧୯୦୧ ମସିହାରେ କଟକ ଜିଲ୍ଲାର ବେଣ୍ଟକାରରେ ଜନ୍ମ ହୋଇଥିଲେ । ତାଙ୍କର ରଚନାବଳୀଗୁଡ଼ିକ ହେଲା, ରସକଳ୍ପଦ୍ରୁମ ସଙ୍ଗୀତ ମୁକ୍ତାବଳୀ, ଭଞ୍ଜ ମହୋଦୟ, ଭକ୍ତିବିନୋଦ, ଅଶ୍ୱଶାସ୍ତ୍ର, ଅମ୍ବିକା ବିଳାସ, ରସମୁକ୍ତାବଳୀ, ରାମଗାଥା, ସହୃଦୟାନନ୍ଦ ଓ ଭରତ ନାଟ୍ୟଶାସ୍ତ୍ର । ତାଙ୍କର ଗଦ୍ୟଶୈଳୀ ଅତ୍ୟନ୍ତ ଉଚ୍ଚକୋଟୀର । ଅନେକ ପ୍ରବନ୍ଧ ରଚନା କରି ସେ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ସମୃଦ୍ଧ କରି ଯାଇଛନ୍ତି । ୧୯୭୮ ମସିହାରେ ତାଙ୍କର ଦେହାନ୍ତ ହୋଇଛି ।

## ବିମଳକୃଷ୍ଣ ପାଲ୍ :

ବିମଳକୃଷ୍ଣ ପାଲଙ୍କର ଜନ୍ମ ୧୯୦୯ ମସିହାରେ । କଟକରେ ଶିକ୍ଷାଲାଭ କରି ସେ ଓକିଲାତି ଆରମ୍ଭ କରିଥିଲେ । କଟକର ଜଣେ ଦେଶପ୍ରେମୀ ଓକିଲ ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ସେ ବିଭିନ୍ନ ସାଂସ୍କୃତିକ ଏବଂ ସାମାଜିକ ସଂସ୍ଥା ସହିତ ଜଡ଼ିତ ଥିଲେ । ଜଣେ ଲେଖକ ଭାବରେ ଶ୍ରୀ ଜଗନ୍ନାଥ, ଭାରତୀୟ ସଂସ୍କୃତି, ସ୍ୱଦେଶ ଓ ସଂସ୍କୃତି ପ୍ରଭୃତି ତାଙ୍କର ମହନୀୟ କୃତି ମଧ୍ୟରେ ଅନ୍ତର୍ଭୁକ୍ତ । କଟକରେ ସେ ଥିଲେ ବହୁ ପରିଚିତ ବ୍ୟକ୍ତି । ୧୯୮୩ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ବିପିନ ବିହାରୀ ରାୟ :

ବିପିନ ବିହାରୀ ରାୟ ୧୮୮୭ ମସିହାରେ ଜନ୍ମ ହୋଇ ୧୯୭୫ ମସିହାରେ ମୃତ୍ୟୁବରଣ କରିଥିଲେ । ସେ ଥିଲେ ଜଣେ ଉଚ୍ଚ ଚିନ୍ତାଧାରାର ମଣିଷ । ରେଭେନ୍‌ସା କଲେଜରୁ ଶିକ୍ଷାଲାଭ କରି ସେ ଦର୍ଶନ ଶାସ୍ତ୍ରର ଅଧ୍ୟାପକ ଭାବେ ନିଯୁକ୍ତି ପାଇଲେ । ତାଙ୍କର ଚିନ୍ତାଧାରାରେ ସମ୍ପୂର୍ଣ୍ଣ ମୌଳିକତା ଲକ୍ଷ୍ୟ କରାଯାଇଥାଏ । ଓଡ଼ିଆ ସାହିତ୍ୟରେ ସେ ଅନେକ ପ୍ରବନ୍ଧର ରଚୟିତା । ତାଙ୍କର ଅନେକ ପ୍ରବନ୍ଧ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା । ପ୍ରବନ୍ଧ ସୋପାନ ଏବଂ ସାମାଜିକ ପ୍ରବନ୍ଧ ତାଙ୍କର ଦୁଇଟି ମହାନ୍ କୃତି ଭାବରେ ପରିଚିତ ।

## ବୈଷ୍ଣବ ପାଣି :

ବୈଷ୍ଣବ ପାଣି ଜଣେ ବିଶିଷ୍ଟ ଗୀତିନାଟ୍ୟ ଲେଖକ ଭାବେ ସୁପରିଚିତ । ଜଣେ ସଂଗ୍ରାମୀ ବ୍ୟକ୍ତିତ୍ୱ ରୂପେ ସେ ଅନେକ ବିପ୍ଲବରେ ଅଂଶଗ୍ରହଣ କରିଥିଲେ । ୧୮୯୮ ମସିହାରେ କଟକ ଜିଲ୍ଲାର ମାହାଙ୍ଗାଥାନା ଅନ୍ତର୍ଗତ କୋଠପଦା ଗ୍ରାମରେ ତାଙ୍କର ଜନ୍ମ । ବାଲ୍ୟ କାଳରୁ ନୃତ୍ୟ ଗୀତ ପ୍ରତି ତାଙ୍କର ଯଥେଷ୍ଟ ଆଦର ଥିଲା । କୋଠପଦା ମହନ୍ତଙ୍କ ସାହଚର୍ଯ୍ୟରେ ପ୍ରଥମେ ସେ ଯାତ୍ରା ଦଳ ଗଠନ କରିଥିଲେ । ଦାରିଦ୍ର୍ୟ ଥିଲା ତାଙ୍କ ଜୀବନର ବିରାଟ ପ୍ରତିବନ୍ଧକ । ସେ କଟକରେ ଦୀର୍ଘଦିନ ଅବସ୍ଥାନ କରିଥିଲେ । ବାଲ୍ୟକାଳରୁ ସେ ଶିକ୍ଷାଲାଭର ବିଶେଷ କିଛି ସୁଯୋଗ ପାଇନଥିଲେ । ସେ ଅନେକ ଗୀତିନାଟ୍ୟର ରଚୟିତା ଭାବରେ ସୁପ୍ରସିଦ୍ଧ । ତାଙ୍କର ଗୀତିନାଟ୍ୟଗୁଡ଼ିକ ମଧ୍ୟରେ ପୌରାଣିକ ବିଷୟବସ୍ତୁର ସଂଖ୍ୟା ସର୍ବାଧିକ । ତଥାପି ଐତିହାସିକ, ଜାତୀୟ ଭାବଧାରା ମୂଳକ ଏବଂ କିମ୍ବଦନ୍ତୀକୁ ଆଶ୍ରୟ କରି ଲେଖିଥିବା ଗୀତିନାଟ୍ୟର ସଂଖ୍ୟା କିଛି କମ୍ ନୁହେଁ ।

ତାଙ୍କର ଗୀତିନାଟ୍ୟଗୁଡ଼ିକ ଓଡ଼ିଶାର ସର୍ବତ୍ର ପ୍ରଚରିତ ହୋଇ ଲୋକପ୍ରିୟତା ଅର୍ଜନ କରିଥିଲା । ବୈଷ୍ଣବ ପାଣି ଜଣେ ରଜକ ମହିଳାକୁ ବିବାହ କରିଥିବାରୁ ତାଙ୍କୁ ଜାତିରୁ ବାରିଦ କରାଯାଇଥିଲା । ତାଙ୍କର ଅପେରାର ସଂଖ୍ୟା ୭୦୦ରୁ ଊର୍ଦ୍ଧ୍ୱ । ସେ ବହୁତ ଋଣଗ୍ରସ୍ତ ଥିଲେ ଏବଂ ଅନାହାରରେ ବହୁତ ସମୟ କଟାଉଥିଲେ । ଏଥିପାଇଁ

ବହୁ ଗୀତିନାଟ୍ୟ ପାଣ୍ଡୁଲିପି ତାଙ୍କୁ ବିଦଗ୍ଧ କରିବାକୁ ପଡ଼ିଥିଲା । ୧୯୭୩ ମସିହାରେ ତାଙ୍କର ଦେହାନ୍ତ ହେଲା ।

## ବନବିହାରୀ ପଟ୍ଟନାୟକ :

ବନବିହାରୀ ପଟ୍ଟନାୟକ ୧୮୮୯ ମସିହାରେ କଟକ ଜିଲ୍ଲାର ବାର୍ଙ୍କୀରେ ଜନ୍ମ ଲାଭ କରି କଟକରେ ଉଚ୍ଚ ଶିକ୍ଷାଲାଭ କଲେ । କଟକର ଶ୍ରୀ ରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ପ୍ରଧାନ ବିଭାଗର ଡାକ୍ତର ଭାବରେ ସେ ଅନେକ ଦିନ କାର୍ଯ୍ୟ କରିଥିଲେ । ତେଲେଙ୍ଗାପେଣ୍ଠରେ ତାଙ୍କର ଘର ଥିଲା । ଚିକିତ୍ସକ ଜଣେ ଖ୍ୟାତନାମା ସାହିତ୍ୟ ପ୍ରତି ତାଙ୍କର ସତେଅଷ୍ଟ ଅନୁରାଗ ଥିଲା । ଗୀତା, ମହାଭାରତ, ଆମ ଦେଶ, ବସନ୍ତ, ବମୂଚିକା, ଶିଶୁସ୍ୱାସ୍ଥ୍ୟ, ଛନ୍ଦଭଙ୍ଗ, ଚାନ୍ଦାଶ୍ରୁ, ନାଗ୍ନମଙ୍ଗଳ ଇତ୍ୟାଦି ପୁସ୍ତକର ସେ ରଚୟିତା । ତାଙ୍କର ସେବାଗତ ଜୀବନରେ ସେ ଅନେକ ସଂସ୍ଥା ସହିତ ଜଡ଼ିତ ଥିଲେ । ବହୁଦିନ ରୋଗଗ୍ରସ୍ତ ହୋଇ ପଡ଼ିବା ପରେ ୧୯୭୧ ମସିହା ଜୁଲାଇ ମାସ ପହିଲାରେ କଟକରେ ତାଙ୍କର ମୃତ୍ୟୁ ହେଲା ।

## ବାଞ୍ଛାନିଧି ଚରଣ ପଟ୍ଟନାୟକ :

ବାଞ୍ଛାନିଧି ଚରଣ ପଟ୍ଟନାୟକ ଆଧୁନିକ ଯୁଗର ଜଣେ ପ୍ରଧାନ ସାହିତ୍ୟିକ । ୧୯୦୧ ମସିହା ଜାନୁଆରୀ ମାସ ୨୧ ତାରିଖରେ ଖୋର୍ଦ୍ଧା ଅନ୍ତର୍ଗତ 'ଜାଆଁଳା' ଗ୍ରାମରେ ତାଙ୍କର ଜନ୍ମ । ଭଞ୍ଜ ସାହିତ୍ୟରେ ତାଙ୍କର ଗଭୀର ଦକ୍ଷତା ଥିଲା । ଭଞ୍ଜ ସାହିତ୍ୟର ଜଣେ ଗବେଷକ ଭାବରେ ସେ ଲୋକପ୍ରିୟ ।

ବାଞ୍ଛାନିଧି ଚରଣ ପଟ୍ଟନାୟକ ୧୯୪୫ ମସିହାରେ 'କଳିଙ୍ଗ ଭାରତୀ' ଏବଂ ୧୯୪୩ ମସିହାରେ 'ଉତ୍କଳ ଯୁବ ସାହିତ୍ୟ ସମାଜ' ଗଠନ କଲେ । କଳିଙ୍ଗ ଭାରତୀ ଅନୁଷ୍ଠାନ ମାଧ୍ୟମରେ ସେ ପ୍ରାଚୀନ ସାହିତ୍ୟ ଓ ସଂସ୍କୃତି ସହିତ ଭଞ୍ଜ ସାହିତ୍ୟର ପ୍ରଚାର ଓ ପ୍ରସାର ଦିଗରେ ନିସ୍ୱାପର ଉଦ୍ୟମ କରିଥିଲେ । ତାଙ୍କର ରଚନାମାନଙ୍କ ମଧ୍ୟରେ ଭାବାମ୍ବ-ଭବନ, ଭଞ୍ଜପ୍ରଭା, କବିତା କୁମୁଦ, ଗୌରଚରଣ ପଦାବଳୀ, କବି ସମ୍ରାଟ ସ୍ମରଣିକା, ଓଡ଼ିଆ ସାହିତ୍ୟର ଇତିହାସ ଏବଂ ବହୁ ଜଗନ୍ନାଥ ଭଜନ ଓ ଜଣାଣ ଅନ୍ତର୍ଭୁକ୍ତ । 'ପ୍ରାଚୀ' ନାମକ ଏକ ଇଂରେଜ ପତ୍ରିକାର ମଧ୍ୟ ସେ ସମ୍ପାଦନା କରୁଥିଲେ । ବାଞ୍ଛାନିଧି ଚରଣ ତାଙ୍କର ମୃତ୍ୟୁ ହେଲା, ୧୯୭୧ ମସିହା ଜାନୁଆରୀ ମାସ ୧୪ ତାରିଖରେ ।

## ବିଜୟ ଚନ୍ଦ୍ର ଦାସ :

ବିଜୟ ଚନ୍ଦ୍ର ଦାସଙ୍କର ଜନ୍ମ ହୋଇଥିଲା ବ୍ରହ୍ମପୁରରେ । ସେ ଆନ୍ଧ୍ର ବିଶ୍ୱ-ବିଦ୍ୟାଳୟରୁ ଅର୍ଥନୀତି ଅନର୍ସ ସହିତ ବି. ଏ. ପାଶ୍ କରିଥିଲେ । ସେ ଥିଲେ ଜଣେ ସଂଗ୍ରାମୀ ଏବଂ ବିଶିଷ୍ଟ ରାଜନୀତିଜ୍ଞ । ପ୍ରଥମେ ସେ ଭାରତୀୟ ଜାତୀୟ କଂଗ୍ରେସରେ ଯୋଗ ଦେଇଥିଲେ ଏବଂ ପରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ ।

କଟକରେ ଆଇନ୍ ପଢ଼ିଲା ବେଳେ ସେ ଛାତ୍ର ଆନ୍ଦୋଳନରେ ମୁଖ୍ୟ ଭୂମିକା ନେଇଥିଲେ । ସର୍ବଭାରତୀୟ ଛାତ୍ର ସଂଗଠନ ଓଡ଼ିଶା ଶାଖାର ସେ ଥିଲେ ଜଣେ ବିଶିଷ୍ଟ ନେତା ଏବଂ ମେଡ଼ିକାଲ ଷ୍ଟ୍ରାଇକରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । କମ୍ୟୁନିଷ୍ଟ-ପାର୍ଟିର କର୍ମୀଭାବରେ ସେ ଅନେକବାର କାରାବରଣ କରିଥିଲେ ।

୧୯୫୨ ମସିହାରେ ସେ ଲୋକସଭାର ସଦସ୍ୟ ହେଲେ । କମ୍ୟୁନିଷ୍ଟପାର୍ଟି ସହିତ ମତଭେଦ ହେବାରୁ ବିଜୟ ଚନ୍ଦ୍ର କଂଗ୍ରେସରେ ଯୋଗଦେଲେ । ସେ ଥିଲେ ଜଣେ ନୀତିବାନ୍ ମଣିଷ । ଛାତ୍ର ଆନ୍ଦୋଳନର ଇତିହାସ, ଲାଲ ନେପୋଲିଅନ ଏବଂ 'ସାମ୍ୟବାଦର ଦେଶ'ର ତାଙ୍କର ପ୍ରଧାନ ରଚନା । ସେ ଥିଲେ ନିର୍ଭୀକ ଓ ସ୍ପଷ୍ଟବାଦୀ । କଲିକତାରେ ସେ ମୃତ୍ୟୁବରଣ କଲେ ।

## ବିଚିତ୍ରାନନ୍ଦ ଦାସ :

ବିଚିତ୍ରାନନ୍ଦ ଦାସ ସର୍ବତ୍ର ସ୍ୱାମୀ ବିଚିତ୍ରାନନ୍ଦ ଭାବେ ପରିଚିତ । ଓଡ଼ିଶାର ଜଣେ ଲୋକପ୍ରିୟ ଆଇନଜୀବୀ ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ସେ ଭିନ୍ନ ରୁଚିର ମନୀଷୀ ଥିଲେ । ଜୀବନରେ ବହୁ ଅର୍ଥ ରୋଜଗାର କରିଥିଲେହେଁ ତାହା ତାଙ୍କୁ ଶାନ୍ତି ଦେଇ ନଥିଲା । ତେଣୁ ସେ ପିତୃମାତୃହୀନ, ଗରିବ ଓ ଅବହେଳିତମାନଙ୍କୁ ବହୁ ଅର୍ଥ ଦାନ କରି ଦେଇଥିଲେ ।

ତାଙ୍କ ଗୃହ ଥିଲା ଅତିଥିମାନଙ୍କର ଆଳୟ । ଦରଘାବଜାରରେ ସେ 'ଅନାଥାଶ୍ରମ' ନାମକ ଏକ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ । ସେ ଉତ୍କଳସମ୍ମିଳନୀର ଜଣେ ସକ୍ରିୟ ସଭ୍ୟ ଥିଲେ । ୧୯୫୨ ମସିହା ପର୍ଯ୍ୟନ୍ତ ଓଡ଼ିଶାର ଆଡ଼ଭୋକେଟ ଜେନେରାଲ ପଦବୀରେ ରହି କଟକ ବାର୍‌ରେ ବେଶ୍ ଖ୍ୟାତି ଅର୍ଜନ କଲେ । ସେ କଂଗ୍ରେସ ସଭ୍ୟ ଭାବରେ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ତାଙ୍କର ପତ୍ନୀ ବିୟୋଗ ଘଟିବାରୁ ସେ ସାଧୁ ସନ୍ନ୍ୟାସୀମାନଙ୍କ ପରି ଜୀବନଯାପନ କଲେ । ଧର୍ମ ପ୍ରତି ତାଙ୍କର ପ୍ରବଳ ଆକର୍ଷଣ ସୃଷ୍ଟି ହେଲା । କଟକର ବହୁ ସାହିତ୍ୟିକ ସଂସ୍ଥା ଏବଂ ସାମାଜିକ ଅନୁଷ୍ଠାନ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ଜୀବନରେ ଅର୍ଥ ପ୍ରତି ତାଙ୍କର ଆଦୌ ଲୋଭ ନଥିଲା ।

## ବାଲୁଙ୍କେଶ୍ୱର ଆଚାର୍ଯ୍ୟ :

ବାଲୁଙ୍କେଶ୍ୱର ଆଚାର୍ଯ୍ୟ ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳ ନିକଟବର୍ତ୍ତୀ କୃଷ୍ଣଚନ୍ଦ୍ର-ପୁର ଶାସନରେ ୧୮୮୨ ମସିହାରେ ଜନ୍ମ ହୋଇଥିଲେ । ସେ ଜଣେ ଆୟୁର୍ବେଦ ବିଶାରଦ । ଆୟୁର୍ବେଦ ଔଷଧ ପ୍ରସ୍ତୁତିରେ ତାଙ୍କର ଦକ୍ଷତା ସମଗ୍ର ଓଡ଼ିଶାରେ ଚହଳ ସୃଷ୍ଟି କରିଥିଲା । ଆୟୁର୍ବେଦର ପ୍ରସାର ପାଇଁ ସେ କଟକରେ ଅବସ୍ଥାନ କରିଥିଲେ । ରୋଗୀମାନଙ୍କୁ ଧର୍ମ ଉପରେ ପ୍ରଗାଢ଼ ବିଶ୍ୱାସ ରଖିବାକୁ ସେ ପରାମର୍ଶ ଦେଉଥିଲେ । ଆୟୁର୍ବେଦ ବିଜ୍ଞାନର ପ୍ରସାର ପାଇଁ ବାଲୁଙ୍କେଶ୍ୱର ଆଚାର୍ଯ୍ୟ ନିଦାନ

ପ୍ରଙ୍ଗ, ତରଙ୍ଗ (୩ ଖଣ୍ଡ), ବାଳଶିକ୍ଷା, କୌତୁକ ପତ୍ରିକା ପ୍ରଭୃତି ବହୁ ଗବେଷଣାଧର୍ମୀ ପୁସ୍ତକ ରଚନା କରିଥିଲେ । ରୋଗୀମାନଙ୍କ ସେବାରେ ତାଙ୍କର ଆତ୍ମସନ୍ତୋଷ ଥିଲା । ଏଥିପାଇଁ ସେ ଅଧିକ ଅର୍ଥ ଦାବି କରୁନଥିଲେ । ୧୯୪୨ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ବାଞ୍ଛାନିଧି ମହାପାତ୍ର :

କଟକର ଜଣେ ଖ୍ୟାତନାମା ଓକିଲ ରୂପେ ବାଞ୍ଛାନିଧି ମହାପାତ୍ର ପ୍ରତିଷ୍ଠା ଅର୍ଜନ କରିଥିଲେ । ଜନ୍ମ ପୁରୀ ଜିଲ୍ଲାରେ କିନ୍ତୁ କଟକରେ ତାଙ୍କର ପାଠପଢ଼ା, ଅବସ୍ଥାନ ଓ ଓକିଲାତି । ସେ ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇ ନଥିଲେ ସତ କିନ୍ତୁ ସ୍ୱାଧୀନତା ସଂଗ୍ରାମୀଙ୍କ ତରଫରୁ ସେ କୋର୍ଟରେ ଲଢ଼ୁଥିଲେ । ବହୁବର୍ଷ ଧରି ବାଞ୍ଛାନିଧି ଓଡ଼ିଶାର ଆଡ଼ଭୋକେଟ ଜେନେରାଲ ଥିଲେ । ଅନେକ ସାମାଜିକ, ସାଂସ୍କୃତିକ ଏବଂ ଧାର୍ମିକ ଅନୁଷ୍ଠାନ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । "ଓଡ଼ିଶା ଟାଇମସ୍" ନାମକ ଏକ ଇଂରେଜ ପତ୍ରିକା ସମ୍ପାଦନାରେ ସେ ଯଥେଷ୍ଟ ସହାୟତା ଓ ପରାମର୍ଶ ଦେଇଥିଲେ । ବହୁବର୍ଷ ପର୍ଯ୍ୟନ୍ତ ସେ ଆଇନ୍ ବ୍ୟବସାୟ କରିଥିଲେ । ଜୟପୁରରେ ସେ ପ୍ରାଣତ୍ୟାଗ କଲେ ।

## ବିବେକାନନ୍ଦ ଜେନା :

ବିବେକାନନ୍ଦ ଜେନା ଜଣେ କ୍ରିକେଟ ଖେଳାଳି ଏବଂ ସମ୍ବେଦନଶୀଳ କବି ଭାବରେ ପରିଚିତ । ରେଭେନ୍ସା କଲେଜରୁ ପାଠପଢ଼ା ସାରିବା ପରେ ଆଲ୍ଏଡ଼୍ ସର୍ଭିସରେ ଯୋଗ ଦେଇଥିଲେ । ଜଣେ କ୍ରିକେଟପ୍ରେମୀ ଭାବରେ ସେ ଅନେକ ବାର ଓଡ଼ିଶା ତରଫରୁ ପ୍ରତିନିଧିତ୍ୱ କରିଥିଲେ । କବି ଭାବରେ 'ପବନ ଘର' ତାଙ୍କର ଏକ ବଶିଷ୍ଟ କୃତି । କଲିକତାରେ ସେ ପ୍ରାଣତ୍ୟାଗ କରିଥିଲେ ।

## ବିଶ୍ୱନାଥ ସାହୁ :

ବିଶ୍ୱନାଥ ସାହୁ କଟକ ଜିଲ୍ଲାର ଗୋବିନ୍ଦପୁରରେ ୧୯୧୦ ମସିହାରେ ଜନ୍ମ ହୋଇ ୧୯୯୧ ମସିହାରେ ୮୧ ବର୍ଷ ବୟସରେ ଦେହତ୍ୟାଗ କରିଥିଲେ । ଜଣେ କୃଷି ବିଶେଷଜ୍ଞ ଭାବେ ସେ ପରିଚିତ । କୃଷି ବିଭାଗର ନିର୍ଦ୍ଦେଶକ ଭାବରେ କାର୍ଯ୍ୟକରି ଏହାକୁ ଲୋକପ୍ରିୟ କରାଇବାରେ ତାଙ୍କର ନିଷ୍ଠା ଓ ତ୍ୟାଗ ଅନସ୍ୱୀକାର୍ଯ୍ୟ । ବିଜ୍ଞାନ ପ୍ରଚାର ସମିତି ପ୍ରତିଷ୍ଠାତାମାନଙ୍କ ମଧ୍ୟରୁ ସେ ଥିଲେ ଅନ୍ୟତମ । ଗୋମଙ୍ଗଳ, ଗୋପୀକୃଷ୍ଣ ପନିପରିବା ଚାଷ, ଫଳଚାଷ ଏବଂ ଖାଦ୍ୟ ସମସ୍ୟାର ସମାଧାନ ଇତ୍ୟାଦି ପୁସ୍ତକ ଲେଖି ବିଶ୍ୱନାଥ ସାହୁ କୃଷିର ଉନ୍ନତି ଦିଗରେ ଯଥେଷ୍ଟ ସହାୟତା ଦେଇ ଯାଇଛନ୍ତି ।

## ବଳାଇ ବାନାର୍ଜୀ :

ବଳାଇ ବାନାର୍ଜୀ କଟକର ସବୁ ସ୍ଥାନରେ ବଳାଇଦା ନାମରେ ବେଶ୍ ଲୋକ ପ୍ରିୟ । ଜଣେ ମଞ୍ଚ ନିର୍ଦ୍ଦେଶକ ଏବଂ ଅଭିନେତା ଭାବରେ ସେ ଶତାଧିକ ଓଡ଼ିଆ

ନାଟକରେ ଅଂଶଗ୍ରହଣ କରିଥିଲେ । ତାଙ୍କର ଅଭିନୟ ଶତ ଶତ ଦର୍ଶକଙ୍କ ମନ ମୁଗ୍ଧ କରିଥିଲା । କଟକରେ ସେ ଥିଲେ ଜଣେ ଦକ୍ଷ କଳାକାର । ଓଡ଼ିଶା ଥିଏଟର ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ସେ କୌତୁହଳପ୍ରିୟ ଥିଲେ । ଧନ, ଦରିଦ୍ରମାନଙ୍କୁ ସାହାଯ୍ୟ କରି ସେ ଅପାର ଶାନ୍ତି ପାଉଥିଲେ ।

## ବାବା ସାଗର ଦାସ :

କଟକର ସୁଯୋଗ୍ୟତମ ବ୍ୟକ୍ତିତ୍ୱ ମାନଙ୍କ ମଧ୍ୟରୁ ସାଗର ଦାସଙ୍କ ନାମ ଉଲ୍ଲେଖ ଯୋଗ୍ୟ । ସେ ବାବା ସାଗର ଦାସ ନାମରେ ପ୍ରସିଦ୍ଧ । ପଞ୍ଜାବରେ ତାଙ୍କର ଜନ୍ମ । କିନ୍ତୁ କଟକର ଦୋଳମୁଣ୍ଡାଇରେ ସେ ଅବସ୍ଥାନ କରିଥିଲେ । ସେ ଜଣେ ଦନ୍ତ ବିଶାରଦ । ଖୁବ୍ କମ୍ ପଇସାରେ ସେ ଦାନ୍ତ ଉପାଡ଼ ଏବଂ ଦାନ୍ତ ପାଉଡ଼ର ବିକ୍ରୟକରି ବିକ୍ରୟଲବ୍ଧ ଧନକୁ ଶିକ୍ଷା ଦିଗରେ ବିନିଯୋଗ କରୁଥିଲେ । ସାଗର ଦାସ ଜଣେ ଶିକ୍ଷାପ୍ରେମୀ ଭାବରେ କଟକର ଦୋଳମୁଣ୍ଡାଇରେ ଗୋଟିଏ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା କରିଥିଲେ, ଯାହା ତାଙ୍କର ମୃତ୍ୟୁ ପରେ "ବାବା ସାଗର ଦାସ ବିଦ୍ୟାପୀଠ" ନାମରେ ନାମିତ ହୋଇଥିଲା । ଅବିବାହିତ ରହି ସାଧୁସନ୍ଥଙ୍କ ପରି ପବିତ୍ର ଜୀବନ ଯାପନ କରୁଥିବାରୁ ଯଥାର୍ଥରେ ତାଙ୍କର ନାମ ଥିଲା "ବାବା ସାଗର ଦାସ" । ସେ ଥିଲେ କର୍ମଠ, ପରୋପକାରୀ ଏବଂ କଠୋର ନୀତିବାଦୀ ବ୍ୟକ୍ତିତ୍ୱ ।

## ବିଦ୍ୟୁତପ୍ରଭା ଦେବୀ :

ଓଡ଼ିଶାର ନାରୀକବିମାନଙ୍କ ମଧ୍ୟରେ ବିଦ୍ୟୁତ୍‌ପ୍ରଭା ଦେବୀ ଏକ ବିଶେଷ ସ୍ଥାନର ଅଧିକାରିଣୀ । ୧୯୨୬ ମସିହା ଜୁଲାଇ ମାସ ୧୨ ତାରିଖରେ କଟକ ଜିଲ୍ଲା ଆଳି ଥାନାର ନାଟରା ଗ୍ରାମରେ ତାଙ୍କର ଜନ୍ମ । ତାଙ୍କର ପିତାଙ୍କ ନାମ ନିମାଇଁ ଚରଣ ଦାସ । ସେ ତାଙ୍କ ପିତାମାତାଙ୍କ ସହିତ କଟକ ସହରରେ ବାସ କରୁଥିଲେ । ସେ ମାତ୍ର ଦଶମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ବିଦ୍ୟୁତପ୍ରଭା ଏକାଧାରରେ ଥିଲେ ଜଣେ କବି, ଗାଳ୍ପିକା, ଔପନ୍ୟାସିକା, ସର୍ବୋପରି ଜଣେ ସୁସାହିତ୍ୟିକା । ସେ ବହୁତ ସମୟ ଗ୍ରାମରେ ରହୁଥିଲେ । ଏଣୁ ତାଙ୍କର କାବ୍ୟ କବିତାରେ ପଲ୍ଲୀର ଚିତ୍ର ଥିଲା ସ୍ପଷ୍ଟ ଓ ଜୀବନ୍ତ ।

୧୯୪୪ ମସିହାରେ ପ୍ରକାଶିତ ତାଙ୍କର ପ୍ରଥମ କବିତା ସଙ୍କଳନ 'ସବିତା'ଠାରୁ ଆରମ୍ଭ କରି ୧୯୭୩ ମସିହାର ମାଟି, ପାଣି, ପବନ, ସଙ୍କଳନ ପର୍ଯ୍ୟନ୍ତ ସବୁଗୁଡ଼ିକ ପଲ୍ଲୀର ଚିତ୍ରରେ ସମୃଦ୍ଧ । ଏତଦ୍‌ବ୍ୟତୀତ ତାଙ୍କର ରଚନାଗୁଡ଼ିକରେ ରୋମାଣ୍ଟିକ ଚେତନା, ଅତୀତ ପ୍ରୀତି ଏବଂ ଦେଶାତ୍ମବୋଧର ପ୍ରାଧାନ୍ୟ ବହୁଳ ଭାବରେ ପରିଲକ୍ଷିତ ହୁଏ । ତାଙ୍କର ରଚନାମାନଙ୍କ ମଧ୍ୟରେ ଶେଫାଳିକା, ମଣିଚକା, ବିହାୟସୀ, ବନ୍ଦନିକା, ସ୍ୱପ୍ନଦ୍ୱୀପ, ଝରଣିଜଳ, ନୂତନ ସ୍ୱାକ୍ଷର, ଯାହାକୁ ଯିଏ ଇତ୍ୟାଦି ପ୍ରଧାନ । ତାଙ୍କର କଲିକତା କୁଲି, କରୁଣା ବନ୍ଧୁ, ଅଭାଗୀ ଲଳିତା, ଅଶ୍ରୁବାଣୀ, ରିକ୍ସା ବାଲା, ତୁମେ ତ ମଣିଷ, ଆମେ ତ ମଣିଷ ଭାଇ, ଛୁଟି ଫରମାସ୍ ବିମ୍ବସ୍ତ, ବିଧା ଉପରେ ବିଧା ମାଟିର ମଣିଷ ଇତ୍ୟାଦି ବହୁ କବିତାରେ ବିପ୍ଳବର ସ୍ୱର ଉଦ୍ଗୀର୍ଣ୍ଣ । ସେ ଗ୍ରାମ୍ୟ

ଅରବିନ୍ଦଙ୍କର ଜଣେ ପ୍ରଧାନ ଶିଷ୍ୟାଭାବରେ ପରିଚିତ ଏବଂ ତାଙ୍କ ଉଦ୍ଦେଶ୍ୟରେ 'ପୁଷ୍ପାଞ୍ଜଳି କବିତା' ପୁସ୍ତକ ୧୯୬୭ ମସିହାରେ ସେ ରଚନା କରିଥିଲେ । ୧୯୭୭ ମସିହାରେ ସେ ସ୍ୱର୍ଗାରୋହଣ କଲେ ।

## ବଲୀ ଭଗତ :

ଦୁର୍ଗା ପ୍ରସାଦ ଭଗତ ବଲୀଭଗତ ନାମରେ ଅତ୍ୟନ୍ତ ଲୋକପ୍ରିୟ ଥିଲେ । କୋଟିଏ ଜମିଦାର ପରିବାରରେ ତାଙ୍କର ଜନ୍ମ । କଟକର ବକ୍ସିବଜାର ନିକଟରେ ସେ ରହୁଥିଲେ । ସେ ଥିଲେ ଉଗ୍ର ଜାତୀୟତାବାଦୀ । ଜାତୀୟ ଆନ୍ଦୋଳନ ସମୟରେ ତାଙ୍କ ଘର ପାଖରେ ଥିବା ଏକ ଥାଣ୍ଡିକୁ ସେ ଅଗ୍ନିସଂଯୋଗ କରି ଦେଇଥିଲେ । ଗରିବ ଏବଂ ଅନାଥମାନଙ୍କ ପ୍ରତି ତାଙ୍କ ହୃଦୟରେ ଭରି ରହିଥିଲା ଅସୀମ ଦୟା । ତାଙ୍କ ନାମରେ କଟକର ଏକ ରାସ୍ତା ନାମିତ ହୋଇଛି । ସେ ୧୮୯୫ ମସିହାରେ ମୃତ୍ୟୁ ବରଣ କରିଥିଲେ ।

## ବୈକୁଣ୍ଠ ନାଥ ରାଜ :

ବୈକୁଣ୍ଠ ନାଥ ରାଜ କଟକର ଝାଞ୍ଜିରି ମଙ୍ଗଳାରେ ୧୮୮୨ ମସିହାରେ ଜନ୍ମ ହୋଇଥିଲେ । ସେ ଜଣେ କୌତୁହଳପ୍ରିୟ ବ୍ୟକ୍ତି । ଲେଖାଲେଖିରେ ମଧ୍ୟ ତାଙ୍କର ପ୍ରବେଶ ଥିଲା । ଚକ୍ର ପ୍ରକାଶର ପ୍ରଣେତା ଭାବେ ସେ ଜଣାଶୁଣା । ଜୀବନରେ ସେ ଦୀର୍ଘ ସମୟ ବଞ୍ଚିଥିଲେ । ୧୯୮୪ ମସିହାରେ ୧୦୨ ବର୍ଷ ବୟସରେ ତାଙ୍କର ଦେହାନ୍ତ ହେଲା ।

## ବାମାଚରଣ ଦାସ :

ଶିକ୍ଷା କ୍ଷେତ୍ରରେ ବାମାଚରଣ ଦାସ ବେଶ୍ ଜଣାଶୁଣା । ସେ ୧୯୦୭ ମସିହା ମାର୍ଚ୍ଚ ମାସ ୭ ତାରିଖରେ କଟକର ମାହାଙ୍ଗାରେ ଜନ୍ମଗ୍ରହଣ କରିଥିଲେ । ରେଭେନ୍ସା କଲେଜରୁ ଶିକ୍ଷା ଶେଷ କରି ସେ ପାଟଣା ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରି ଗଣିତରେ ଏମ୍. ଏ. ପାଶ କଲେ । ଗଣିତରେ ଉଚ୍ଚଶିକ୍ଷା ପାଇଁ ସେ ଲଣ୍ଡନ ଯାତ୍ରା କରିଥିଲେ । ଗଣିତରେ ବି. ଏ. ଅନର୍ସ ପାଇ ସେ ଟାଇଲନ୍ଟ ହେବା ଲକ୍ଷ୍ୟ ରଖି ସେଠାରେ କାର୍ଯ୍ୟକଲେ । କିନ୍ତୁ ଏହା ତାଙ୍କୁ ସନ୍ତୁଷ୍ଟ କରିପାରିଲାନି । ବାମାଚରଣ ମୁଜାଫର କଲେଜରେ ଗଣିତ ଅଧ୍ୟାପକ ଭାବରେ ଯୋଗଦେଇ ୧୯୩୬ ମସିହାରେ ଓଡ଼ିଶା ଆସିଲେ ।

ସେ ଜଣେ ଗୁଣ ସ୍ନେହୀ ଅଧ୍ୟାପକ ଭାବରେ ବହୁକଲେଜର ଅଧ୍ୟାପନା କରିବା ସହ ଅଧ୍ୟକ୍ଷ ମଧ୍ୟ ଥିଲେ । ରେଭେନ୍ସା କଲେଜର ଅଧ୍ୟାପକ ଭାବେ କାର୍ଯ୍ୟକରି ଅଧ୍ୟକ୍ଷ ମଧ୍ୟ ହୋଇପାରିଥିଲେ । ଉଚ୍ଚଶିକ୍ଷା ନିର୍ଦ୍ଦେଶକ ହୋଇ ସେ ଖ୍ୟାତି ଅର୍ଜନ କରିଥିଲେ । ସେ ଯେପରି ଜଣେ ଶିକ୍ଷାବିତ୍ ତଦନୁରୂପ ଜଣେ ଦକ୍ଷ ଖେଳାଳୀ ଓ କ୍ରୀଡ଼ାପ୍ରେମୀ ଥିଲେ । ସେ କ୍ରୀଡ଼ା ସଙ୍ଗଠନ ଅଲମ୍ପିକ୍‌ରେ ଯୋଗଦେଇ ଏହାର ସଭ୍ୟ ଏବଂ

ଉପସଭାପତିଥିଲେ । ତାଙ୍କର ବସା ଘର ଥିଲା ଶେଖବଜାରରେ । ୧୯୮୮ ମସିହା ସେପ୍ଟେମ୍ବର ମାସ ୫ ତାରିଖରେ ସେ ଶେଷ ନିଃଶ୍ୱାସ ତ୍ୟାଗକଲେ ।

## ବିପିନ ବିହାରୀ ଗୁପ୍ତ :

ଓଡ଼ିଶାରେ ଖ୍ୟାତି ଅର୍ଜନ କରିଥିବା ଗଣିତଶିକ୍ଷକମାନଙ୍କ ମଧ୍ୟରୁ ବିପିନ ବିହାରୀ ଗୁପ୍ତ ଏକତମ । ସେ ପି. ଏମ୍ ଏକାଡ଼େମୀର ପ୍ରଧାନ ଶିକ୍ଷକ ଥିଲେ । ତାଙ୍କର ଶିକ୍ଷକତା, ପାଠପଢ଼ା ଏବଂ ବ୍ୟକ୍ତିତ୍ୱ ସମ୍ପର୍କରେ ଅନେକ ମୂଲ୍ୟବାନ କଥା ଶୁଣାଯାଏ । ସେ ପାଟିଗଣିତ ପାଠ୍ୟପୁସ୍ତକର ରଚୟିତା ଏବଂ ଏହା ବହୁ ବର୍ଷ ପର୍ଯ୍ୟନ୍ତ ପାଠ୍ୟ ପୁସ୍ତକ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା । ସେ କଟକର କାଞ୍ଚନମେଣ୍ଟ ରୋଡ଼ରେ ଘର ନିର୍ମାଣ କରିଥିଲେ କିନ୍ତୁ ଏହାକୁ ବିକ୍ରିକରି ସେ କଲିକତା ଚାଲିଗଲେ ।

## ବଂଶୀଧର ମହାନ୍ତି :

ଡ଼ଃ ବଂଶୀଧର ମହାନ୍ତି ଓଡ଼ିଶାର ଜଣେ ପ୍ରଖ୍ୟାତ ସାହିତ୍ୟିକ ଏବଂ ସାହିତ୍ୟ ବିଭାଗର ଅଧ୍ୟାପକ ଭାବରେ ପ୍ରସିଦ୍ଧି ଲାଭ କରିଥିଲେ । ୧୯୨୯ ମସିହା ଅକ୍ଟୋବର ମାସ ୧୮ ତାରିଖରେ କଟକ ଜିଲ୍ଲାର ଜଗତ୍‌ସିଂହପୁର ଅନ୍ତର୍ଗତ ବାଗା ସାହିରେ ତାଙ୍କର ଜନ୍ମ । ୧୯୪୯ ମସିହାରେ ଡ଼ଃ ମହାନ୍ତି ରେଭେନ୍‌ସା କଲେଜରୁ ଓଡ଼ିଆରେ ଏମ୍. ଏ. ପାଶ କରି ସେହି କଲେଜର ଅଧ୍ୟାପକ ଭାବରେ ଯୋଗଦେଲେ । ୧୯୬୯ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗର ପ୍ରଫେସର ହୋଇଥିଲେ ଏବଂ ୧୯୮୪ ମସିହାରେ କାର୍ଯ୍ୟରୁ ଅବସର ନେଲେ ।

ଦୀର୍ଘ ୩୫ ବର୍ଷର ଅଧ୍ୟାପନା କାର୍ଯ୍ୟକାଳ ମଧ୍ୟରେ ସେ ବହୁ ପ୍ରାଚୀନ ତାଳପତ୍ର ପୋଥି, ତାମ୍ରଲେଖ, ଶିଳାଲେଖ, କାଗଜ ଅଭିଲେଖ, ଓ ପ୍ରତ୍ନତାତ୍ତ୍ୱିକ ପଦାର୍ଥ ପ୍ରଭୃତିର ସଂକଳନ ଓ ସଂରକ୍ଷଣ ତଥା ପ୍ରାଚୀନ ଗ୍ରନ୍ଥଗୁଡ଼ିକର ଶୁଦ୍ଧ ସଂସ୍କରଣ ଓ ସମ୍ପାଦନା କରି ଯାଇଛନ୍ତି । ସେ ବହୁ ଗବେଷଣାମୂଳକ ପୁସ୍ତକର ରଚୟିତା ।

ତାଙ୍କର ପୁସ୍ତକଗୁଡ଼ିକ ହେଲା - ସାହିତ୍ୟ ଓ ସଂସ୍କୃତି, ଓଡ଼ିଶାରେ ବୌଦ୍ଧଧର୍ମ, ଓଡ଼ିଶାର ଆଦିବାସୀ ସଂସ୍କୃତି, ଓଡ଼ିଆ ସାହିତ୍ୟକୁ ଆର୍ତ୍ତବଲ୍ଲଭଙ୍କ ଦାନ, ଓଡ଼ିଆ ଭାଷା ତତ୍ତ୍ୱର ଭୂମିକା, ଓଡ଼ିଆ ଭାଷାର ଉତ୍ପତ୍ତି ଓ ବିକାଶ । ଓଡ଼ିଶାର ନାଥ ସମ୍ପ୍ରଦାୟ ଓ ନାଥ ସାହିତ୍ୟ । ଓଡ଼ିଆ ସାହିତ୍ୟର ଇତିହାସ, (ପ୍ରଥମ ଭାଗ, ଦ୍ୱିତୀୟ ଭାଗ ଓ ତୃତୀୟ ଭାଗ) ଅଭିଭାଷଣ ଇତ୍ୟାଦି । ଏତଦ୍‌ବ୍ୟତୀତ ଓଡ଼ିଆ ଏବଂ ଇଂରେଜୀ ପତ୍ରପତ୍ରିକା ମାଧ୍ୟମରେ ତାଙ୍କର ବହୁ ଗବେଷଣାତ୍ମକ ପ୍ରବନ୍ଧ ଆଦି ପ୍ରକାଶ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡ଼ିଆ ବିଭାଗର ପାଠଚକ୍ର ପ୍ରବନ୍ଧାବଳୀ ଓ ଓଡ଼ିଆ ସାହିତ୍ୟ ଏକାଡେମୀର କୋଣାର୍କ (ପକ୍ଷସଖା)ର ସମ୍ପାଦନାରେ ସେ କୃତିତ୍ୱ ପ୍ରଦର୍ଶନ କରିଥିଲେ । ୧୯୯୦ ମସିହା ସେପ୍ଟେମ୍ବର ୨୬ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ବନସ୍ତୁ କୁମାର ମିଶ୍ର :

ବନସ୍ତୁ କୁମାର ମିଶ୍ର ୧୯୪୨ ମସିହା ସେପ୍ଟେମ୍ବର ମାସ ୨୧ ତାରିଖରେ ପୁରୀ ଜିଲ୍ଲାର ଶ୍ରୀରାମଚନ୍ଦ୍ରପୁର ଶାସନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଦୁର୍ଗା ପ୍ରସାଦ ମିଶ୍ର ଜଣେ ଜାତୀୟତାବାଦୀ ଥିଲେ ମଧ୍ୟ ପୋଲିସ କର୍ମଚାରୀ ଭାବେ ଜୀବିକାର୍ଜନ କରୁଥିଲେ । ମାଟ୍ରିକ ସେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ରେଭେନ୍ସା କଲେଜରୁ ପ୍ରଥମଶ୍ରେଣୀରେ ଆଇ. ଏସ. ସି. ପାଶ୍‌କରି ଖଡ଼ଗପୁରର ଆଇ. ଆଇ. ଟି. କଲେଜରେ ନାମ ଲେଖାଇଲେ । ସେଠାରୁ ଇଲେକ୍ଟ୍ରିକ ବିଭାଗର ଇଞ୍ଜିନିୟର ଭାବରେ ସେ ପ୍ରଥମ ଶ୍ରେଣୀ ଲାଭ କଲେ । ଚାକିରୀ ତାଙ୍କର ଲକ୍ଷ୍ୟ ନଥିଲା ।

ଏଣୁ ଶ୍ରୀ ମିଶ୍ର ନିଜଙ୍କ ଟ୍ରାନସଫରମର ନାମକ ଏକ ସଂସ୍ଥା ଗଠନ କରି ଏହାକୁ ଓଡ଼ିଶାରେ ଅତ୍ୟନ୍ତ ଲୋକପ୍ରିୟ କରି ପାରିଥିଲେ । ସାଧୁତା, ବିନୟ, ଶୀଳତା ଏବଂ ସ୍ନିଗ୍ଧ ପ୍ରଜ୍ଞତା ଥିଲା ତାଙ୍କ ଜୀବନର ପରମବ୍ରତ । ସେ ଓଡ଼ିଶାର କ୍ଷୁଦ୍ରଶିଳ୍ପ ନିଗମର ସେକ୍ରେଟାରୀ ଭାବରେ କ୍ରମାଗତ ତିନିଥର ଏବଂ ସଭାପତି ଭାବରେ ଦୁଇଥର ନିର୍ବାଚିତ ହୋଇଥିଲେ । ସେ ସମସ୍ତଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ୧୯୮୫ ମସିହା ଜାନୁୟାରୀ ୬ ତାରିଖରେ ଏକ ମର୍ମନ୍ତୁଦ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ହେଲା ।

## ବୀରକିଶୋର ରାୟ :

ଓଡ଼ିଶା ହାଇକୋର୍ଟର ପ୍ରଥମ ମୁଖ୍ୟ ବିଚାରପତି ଭାବରେ ବୀର କିଶୋର ରାୟ ସର୍ବସାଧାରଣରେ ପରିଚିତ । ସେ ଜଣେ ଚତୁର ଆଇନ୍‌ଜୀବୀ ଥିଲେ । ବହୁ ସରକାରୀ, ବେସରକାରୀ, ସାମାଜିକ ତଥା ସାଂସ୍କୃତିକ ସଂସ୍ଥା ସହିତ ତାଙ୍କର ସମ୍ପର୍କ ଥିଲା । ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଓଡ଼ିଶା ଜାତୀୟଦଳର ମୁଖପାତ୍ର ଭାବରେ ତାଙ୍କର ଭୂମିକା ଥିଲା ଉଲ୍ଲେଖଯୋଗ୍ୟ । 'ଓଡ଼ିଶା ଟାଇମସ୍' ନାମକ ଏକ ଇଂରେଜ ପତ୍ରିକାର ସମ୍ପାଦକ ଥିଲେ । ସେ ହାଇକୋର୍ଟର ପ୍ରଧାନ ବିଚାରପତି ଥିଲେହେଁ ସୁପ୍ରିମକୋର୍ଟର ବିଚାରପତି ହୋଇ ପାରିନଥିଲେ । ୧୯୫୮ ମସିହା ଜୁଲାଇ ମାସ ୨୬ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ବିଶ୍ୱେଶ୍ୱର ପଟ୍ଟନାୟକ :

ବିଶ୍ୱେଶ୍ୱର ପଟ୍ଟନାୟକ ୧୮୯୪ ମସିହା ଜୁଲାଇ ମାସ ୭ ତାରିଖରେ ଅନୁଗୁଳରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ମେଧାବୀ ଛାତ୍ର ଭାବରେ ପ୍ରତିଷ୍ଠାଲାଭ କରିଥିଲେ । କଲିକତା ବିଶ୍ୱବିଦ୍ୟାଳୟରୁ ଗଣିତରେ ଏମ୍. ଏ. ପାଶ୍ କରି ସେ ଡେପୁଟୀ କଲେକ୍ଟର ଭାବରେ ନିଯୁକ୍ତି ପାଇଲେ । ଗଣିତରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ବିହାର ଏବଂ ଓଡ଼ିଶାର ବିଭିନ୍ନ ସ୍ଥାନରେ ଚାକିରୀ କରି ଜଣେ ଦକ୍ଷ ପ୍ରଶାସକ ଭାବରେ ନିଜର ପରିଚୟ ଦେଇ ପାରିଥିଲେ । ୧୯୫୦ ମସିହାରେ ଶ୍ରୀ ପଟ୍ଟନାୟକ ଉପଜାତିଙ୍କ କମିଶନର ପଦବୀରୁ ଅବସର ନେଲେ । କଟକର ଗଙ୍ଗାମଣ୍ଡପରେ ସେ ରହୁଥିଲେ

କିନ୍ତୁ ୧୮୮୯ ମସିହା ଅକ୍ଟୋବର ମାସ ୬ ତାରିଖରେ ଅନୁଗୁଳର ପୁରୁଣାଗଡ଼ରେ ତାଙ୍କର ମୃତ୍ୟୁ ହେଲା ।

## ବଂଶୀଧର ମହାନ୍ତ :

ବଂଶୀଧର ମହାନ୍ତଙ୍କ ଜନ୍ମ ୧୯୦୧ ମସିହା ମଇ ମାସ ୨୦ ତାରିଖରେ । ୧୯୨୦ ମସିହାରେ ରେଭେନ୍‌ସା କଲେଜରୁ ବି. ଏ. ପାଶ୍ କରି ବାଣିଜ୍ୟ ବିଷୟରେ ଅଧ୍ୟୟନ କରିବା ପାଇଁ କଲିକତା ଯାଇଥିଲେ । ସେଠାରୁ ଶିକ୍ଷା ସମାପ୍ତ କରି ୧୯୨୧ ମସିହାରେ କଟକ ଆସି ବ୍ୟବସାୟ ଆରମ୍ଭ କଲେ । କଟକର ଜଣେ ବିଶିଷ୍ଟ ବ୍ୟବସାୟୀ ଭାବରେ ବଂଶୀଧର ମହାନ୍ତ ଖୁବ୍ କମ୍ ସମୟ ମଧ୍ୟରେ ବେଶ୍ ଲୋକପ୍ରିୟ ହୋଇ ପାରିଲେ । ସେ ବହୁ ଶିଳ୍ପ ସଂସ୍ଥାର ପ୍ରତିଷ୍ଠାତା ଓ ସଂଗଠକ ଥିଲେ । ୧୯୪୩ ମସିହାରୁ ୧୯୬୨ ମସିହା ପର୍ଯ୍ୟନ୍ତ ଶ୍ରୀ ମହାନ୍ତ ଓଡ଼ିଶା ସରକାରଙ୍କର ଜଣେ କଷ୍ଟୋଡିଆନ୍ ପ୍ରତିନିଧି ହୋଇଥିଲେ । ସେ ମଧ୍ୟ ଜଣେ ଜାତୀୟତାବାଦୀ ଏବଂ ସ୍ୱାଧୀନତା ସଂଗ୍ରାମୀ । ଭୂଦାନ ଆନ୍ଦୋଳନରେ ଗୋପବନ୍ଧୁ ଚୌଧୁରୀଙ୍କ ସହିତ ସେ ସାମିଲ୍ ହୋଇଥିଲେ । ୧୯୯୦ ମସିହା ଅଗଷ୍ଟ ମାସ ପହିଲାରେ ତାଙ୍କର ଦେହାନ୍ତ ହେଲା ।

## ବିଭୂତି କାନୁନ୍‌ଗୋ :

୧୯୨୧ ମସିହାରେ କଟକ ଜିଲ୍ଲାର ସାଳେଗାଁରେ ବିଭୂତି କାନୁନ୍‌ଗୋ ଜନ୍ମ ହୋଇଥିଲେ । ମହମ୍ମଦିଆ ବଜାରରେ ତାଙ୍କର କାର୍ଯ୍ୟକ୍ଷେତ୍ର ଥିଲା ସତ କିନ୍ତୁ ସେ ତଗରପଡ଼ାରେ ରହୁଥିଲେ । ଜଣେ ପ୍ରଖ୍ୟାତ ଚିତ୍ର ଶିଳ୍ପୀ ଭାବରେ କଟକର ମହମ୍ମଦିଆ ବଜାରରେ 'Utkal Art and Crafts" ନାମକ ଏକ ସଂସ୍ଥା ପ୍ରତିଷ୍ଠା କରି ଏହାକୁ ରେଜେଷ୍ଟ୍ରିଭୁକ୍ତ କଲେ । ଏହି ସଂସ୍ଥାରେ କଟକର ବହୁ ବଡ଼ ବଡ଼ ଲୋକ ସଭ୍ୟ ଥିଲେ ।

୧୯୭୯ ମସିହାରେ କେନ୍ଦ୍ରୀୟ ଲଳିତକଳା ଏକାଡେମୀର ଭାଇସ୍ ଚେୟାରମ୍ୟାନ ଏହି ସଂସ୍ଥାକୁ ପରିଦର୍ଶନ କରି ଏହାର ଉଚ୍ଚ ପ୍ରଶଂସା କରିଥିଲେ । ତାଙ୍କର ଅତ୍ୟନ୍ତ ଆଦର ଥିଲା କାର୍ଟୁନ ଚିତ୍ର ଅଙ୍କିବାରେ । ତଥାପି ବ୍ଲକ ଡିଆଇନ୍ ଏବଂ ଚିତ୍ରକଳା ଅଙ୍କନରେ ସେ ବେଶ୍ ସୁନାମ ଅର୍ଜନ କରିଥିଲେ । ଗ୍ରାମ୍ୟାଞ୍ଚଳକୁ ଚିତ୍ର ପ୍ରଦାନ କରିବାଥିଲା ତାଙ୍କର ସର୍ବଶ୍ରେଷ୍ଠ ଦାନ । ସେ ଅନେକ ଥର ଓଡ଼ିଶା ଲଳିତକଳା ଏକାଡେମୀ ପୁରସ୍କାର ପାଇଥିଲେ । ଓଡ଼ିଶାର ଚିତ୍ରକଳା ପ୍ରତି ତାଙ୍କର ଯେଉଁ ମହାନ୍ ତ୍ୟାଗ ତାହା ତାଙ୍କୁ ଚିରସ୍ମରଣୀୟ କରି ରଖିଥିବ । ଅତ୍ୟନ୍ତ ସରଳ ଏବଂ ବିନୟୀ ଭାବରେ ସେ ସମସ୍ତଙ୍କର ପ୍ରିୟପାତ୍ର ହୋଇପାରିଥିଲେ । ବହୁ କଳା ପ୍ରତିଷ୍ଠାନର ଅଧ୍ୟକ୍ଷ ଥିଲେ ଏବଂ ବହୁ କଳାକାର ତାଙ୍କର ଶିଷ୍ୟ ଥିଲେ ।

## ବାଉରୀବନ୍ଧୁ ମହାନ୍ତ :

କଟକ ଜିଲ୍ଲା ଜଗତ୍‌ସିଂହପୁର ଅନ୍ତର୍ଗତ ବାଲିକୁଦା ନିକଟରେ ବାଉରୀବନ୍ଧୁ ମହାନ୍ତିଙ୍କର ଜନ୍ମ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ସେତେ ଅଧିକ ନ ଥିଲା । କିନ୍ତୁ

ତାଙ୍କର ଅସାଧାରଣ ମେଧା ଯୋଗୁ ସେ ପ୍ରସିଦ୍ଧ ଅନ୍ନପୂର୍ଣ୍ଣା ଥିଏଟରର ମ୍ୟାନେଜର ହୋଇ ପାରିଥିଲେ । ସେତେବେଳେ ସମୟଥିଲା ଅତ୍ୟନ୍ତ ଜଟିଳ । ଗାଡ଼ିଘୋଡ଼ା ତଥା ଗମନାଗମନ, ବିଦ୍ୟୁତ୍ ବ୍ୟବସ୍ଥା ଆଦିର କୌଣସି ବ୍ୟବହାର ଲୋକମାନଙ୍କୁ ଜଣାନଥିଲା ।

କଟକରେ ମଧ୍ୟ କୌଣସି ସ୍ଥାୟୀ ରଙ୍ଗମଞ୍ଚ ନଥାଏ କିନ୍ତୁ ବାଉରିବନ୍ଧୁ ଅନ୍ନପୂର୍ଣ୍ଣା ଥିଏଟରସ୍ ଗଠନ କରି ସହରରୁ ମଫସଲ ଯାଏ ଅବିଶ୍ରାନ୍ତ ଭାବରେ ଗସ୍ତ କରିଥିଲେ । ଯେ କୌଣସି ସ୍ଥାନରେ ପହଞ୍ଚିଥିଲେ ସେଠାରେ ଅଭିନୟ ବହୁରାତି ଚାଲୁଥିଲା । ସେତେବେଳେ ଏହା ସାରା ଓଡ଼ିଶାରେ ଚହଳ ପକାଇ ଦେଇଥିଲା । ବାଉରି ବନ୍ଧୁ ମହାନ୍ତିଙ୍କର ସରଳ, ନିଷ୍କପଟ ଏବଂ ଅମାୟିକ ବ୍ୟବହାରରେ ମୁଗ୍ଧ ହୋଇ ଅନେକ କଳାକାର ତାଙ୍କର ନିକଟବର୍ତ୍ତୀ ହୋଇଥିଲେ । ସମୟକ୍ରମେ ଅନ୍ନପୂର୍ଣ୍ଣା ଥିଏଟର ବିଭକ୍ତ ହେଲା କିନ୍ତୁ ବାଉରିବନ୍ଧୁଙ୍କର ବ୍ୟକ୍ତିତ୍ୱରେ ଟିକେ ହେଲେ ଆଞ୍ଚ ଲାଗିଲାନି । ସେ ସେହିପରି ଅପରାଜେୟ ହୋଇ ରହିଗଲେ । ପୁରୀରେ ସେ ପ୍ରାଣତ୍ୟାଗ କରିଥିଲେ ।

## ବଳଭଦ୍ର ପ୍ରସାଦ :

ବଳଭଦ୍ର ପ୍ରସାଦ ୧୯୦୫ ମସିହା ନଭେମ୍ବର ମାସ ୨୬ ତାରିଖରେ ବିହାରରେ ଜନ୍ମଗ୍ରହଣ କରିଥିଲେ । କଟକରେ ତାଙ୍କର ବହୁ ସମୟ ଅତିବାହିତ ହୋଇଥିଲା । ସେ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଭାବରେ ସୁପ୍ରତିଷ୍ଠିତ । ରେଭେନ୍ସା କଲେଜର ରସାୟନ ବିଭାଗର ଅଧ୍ୟାପକ, ପ୍ରଫେସର ଓ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଭାବରେ ତାଙ୍କର ଯଥେଷ୍ଟ ଖ୍ୟାତି ଥିଲା । ଜଣେ ବିହାରୀ ଭାବରେ ସେ ଓଡ଼ିଶା ଆସିଥିଲେ ସତ କିନ୍ତୁ ଜଣେ ଓଡ଼ିଆ ହୋଇ ପ୍ରତ୍ୟାବର୍ତ୍ତନ କରିଥିଲେ । ସେ ଜଣେ ଜାତୀୟତାବାଦୀ, ସମାଜବାଦୀ ଏବଂ ଛାତ୍ରବତ୍ସଳ ଅଧ୍ୟାପକ । ଛାତ୍ରମାନେ ତାଙ୍କୁ ବହୁ ସମ୍ମାନ ଦେଉଥିଲେ ।

ଓଡ଼ିଶାରୁ ବିଦାୟ ନେବାପରେ ବଳଭଦ୍ର ପ୍ରସାଦ ପାଟଣା ବିଶ୍ୱବିଦ୍ୟାଳୟ ଏବଂ ଆହ୍ଲାବାଦ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ଜୟପ୍ରକାଶ ନାରାୟଣଙ୍କର ଭୂଦାନ ଏବଂ ସମ୍ପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନରେ ତାଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ୧୯୮୭ ମସିହା ମାର୍ଚ୍ଚ ମାସ ୧୨ ତାରିଖରେ ସେ ମୃତ୍ୟୁବରଣ କଲେ ।

## ବସନ୍ତ କୁମାର ଦାସ :

ବସନ୍ତ କୁମାର ଦାସ ୧୮୯୨ ମସିହା ଅଗଷ୍ଟ ମାସ ପହିଲାରେ ପଶ୍ଚିମବଙ୍ଗର ମେଦିନୀପୁର ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ରୁଦ୍ରନାରାୟଣ ଦାସ ଓ ମା' ଲକ୍ଷ୍ମୀପ୍ରିୟା ଦେବୀ । ସେ ଲକ୍ଷ୍ମଣନାଥ ହାଇସ୍କୁଲରୁ ମାଟ୍ରିକ୍ ପାଶ୍ କରିବା ପରେ ୧୯୦୮ ମସିହାରେ କଟକ ଆସିଲେ । ଜୀବନ ସହିତ ସଂଗ୍ରାମ କରି ବହୁ କଷ୍ଟ ସ୍ୱୀକାର ପୂର୍ବକ ରେଭେନ୍ସା କଲେଜରୁ ଆଇନ୍‌ରେ ସ୍ନାତକ ଉପାଧି ଲାଭ କଲେ ।

କଟକର ଉତ୍କଳୋଦୟ ହାଇସ୍କୁଲ (ଯାହାପରେ ଉତ୍କଳମଧୁ ବିଦ୍ୟାପୀଠ ନାମରେ ନାମିତ ହେଲା) ଏବଂ ପ୍ୟାରୀମୋହନ ଏକାଡେମୀରେ ସହକାରୀ ଶିକ୍ଷକ ଭାବରେ

କାର୍ଯ୍ୟ କରି ୧୯୩୪ ମସିହାରେ ପ୍ୟାରୀମୋହନ ଏକାଡେମୀର ପ୍ରଧାନ ଶିକ୍ଷକ ହୋଇଥିଲେ । ସେ ଜଣେ ଦକ୍ଷ ଶିକ୍ଷକଭାବରେ ସୁନାମଧନ୍ୟ । ତାଙ୍କର ନୀତି ଓ ଆଦର୍ଶ ଅନ୍ୟମାନଙ୍କର ଅନୁକରଣୀୟ । ଶିକ୍ଷାନୁଷ୍ଠାନ ବ୍ୟତୀତ ଆହୁରି ଅନେକ ସଂସ୍ଥା ସହିତ ସେ ଜଡ଼ିତ ଥିଲେ । ପାଟଣା ବିଶ୍ୱବିଦ୍ୟାଳୟର ପାଠ୍ୟପୁସ୍ତକ ସଂସ୍ଥା, ଭାରତର ରେଡ଼କ୍ରସ ସୋସାଇଟି ଏବଂ ଓଡ଼ିଶା ବ୍ୟାୟାମ ଶିକ୍ଷା ସଂଘର ସେ ଥିଲେ ଜଣେ ସକ୍ରିୟ ସଭ୍ୟ ।

ଇଂରେଜୀ, ଓଡ଼ିଆ ଏବଂ ବଙ୍ଗଳା ଭାଷାରେ ତାଙ୍କର ଗଭୀର ପାଣ୍ଡିତ୍ୟ ଥିଲା । ଇଂରେଜୀ ବ୍ୟାକରଣ ଏବଂ ଅନେକ ଅନୁବାଦ ପୁସ୍ତକ ତାଙ୍କର ରଚନାମାନଙ୍କ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲା । ଚାକିରୀରୁ ଅବସର ନେବାପରେ ବସନ୍ତ କୁମାର ଦାସ ନିଜର ଜନ୍ମଭୂମି ମେଦିନୀପୁରକୁ ଫେରିଯାଇଥିଲେ ଏବଂ ୧୯୫୮ ମସିହା ଅକ୍ଟୋବର ମାସ ୨୯ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ବୀରେନ ମିତ୍ର :

ବୀରେନ୍ ମିତ୍ର ଓଡ଼ିଶାର ବହୁ ଲୋକପ୍ରିୟ ବ୍ୟକ୍ତିତ୍ୱ । କଟକ ସହରର ସର୍ବତ୍ର ସେ ବୀରେନ୍‌ଦା ଭାବରେ ପରିଚିତ ଥିଲେ । ୧୯୧୭ ମସିହା ନଭେମ୍ବର ମାସ ୨୬ ତାରିଖରେ କଟକର କାଠଗଡ଼ା ସାହିରେ ତାଙ୍କର ଜନ୍ମ । ପ୍ରାଥମିକ ଅବସ୍ଥାରୁ ସେ ଥିଲେ ବିପ୍ଳବୀ । ଏଣୁ ପରିବାରରୁ ସେ ବହିଷ୍କୃତ ହୋଇଥିଲେ । ଏହା ତାଙ୍କର ବ୍ୟକ୍ତିଗତ ଏବଂ ରାଜନୈତିକ ଜୀବନର ପରମ ସହାୟକ ଥିଲା । ସେ ରେଭେନ୍‌ସା କଲେଜରେ ପଢ଼ୁଥିବା ସମୟରେ ଛାତ୍ର ଆନ୍ଦୋଳନର ନେତୃତ୍ୱ ନେଇ ଓଡ଼ିଶା ଶାଖାର ସମ୍ପାଦକ ହୋଇଥିଲେ । ତାଙ୍କର ଶାରୀରିକ ବିକଳାଙ୍ଗ ଏବଂ ଧନହୀନତା ବୀରେନ୍ ମିତ୍ରଙ୍କର ଉନ୍ନତିର ପ୍ରଧାନ ଅନ୍ତରାୟ ଥିଲା ।

ସ୍ୱାଧୀନତା ଆନ୍ଦୋଳନରେ ସେ ଏଇଥି ପାଇଁ ଅଂଶଗ୍ରହଣ କରିପାରି ନଥିଲେ ସତ କିନ୍ତୁ ଜାତୀୟତାବାଦର ଜଣେ ପୃଷ୍ଠପୋଷକ ଭାବରେ ତାଙ୍କର ପ୍ରତିଭା ସ୍ୱୀକାର୍ଯ୍ୟ । ଭାରତଛାଡ଼ ଆନ୍ଦୋଳନରେ ବୀରେନ୍‌ଦା ବ୍ରହ୍ମପୁର ଜେଲରେ ବନ୍ଦୀ ହେଲେ । ପରେ ଓଡ଼ିଶାର ଅନ୍ୟତମ ବ୍ୟକ୍ତିତ୍ୱ ତଥା ବରପୁତ୍ର ବିଜୁ ପଟ୍ଟନାୟକଙ୍କ ସହିତ ତାଙ୍କର ନିବିଡ଼ ସମ୍ପର୍କ ସ୍ଥାପିତ ହେଲା । ତତ୍କାଳୀନ ଓଡ଼ିଶାରେ ବିଜୁ, ବୀରେନ୍ ଦୁଇଟି ନାମ ଆଲୋଚନାର ବିଷୟବସ୍ତୁ ହୋଇପଡ଼ିଥିଲା । ସେ ଦୁହେଁ ଥିଲେ ଆଧୁନିକ ଓଡ଼ିଶାର ଅନ୍ୟତମ ନିର୍ମାତା ଓ ହରେକୃଷ୍ଣ ମହତାବଙ୍କର ପ୍ରଧାନ ଚେଲା । ମହତାବଙ୍କ-ଠାରୁ ରାଜନୀତି ଶିକ୍ଷାକରି ସେ ଓଡ଼ିଶାର ରାଜନୀତିରେ ଚହଲ ପକାଇ ଦେଇଥିଲେ । ବୀରେନ୍ ମିତ୍ରଙ୍କର ଓଡ଼ିଶା ପାଇଁ ଅନେକ ସ୍ୱପ୍ନ ଥିଲା । କଟକ ସହରରୁ ସେ ବିଧାନ-ସଭାର ସଭ୍ୟ ଭାବେ ନିର୍ବାଚିତ ହୋଇଥିଲେ । ତାଙ୍କ ନିକଟରେ କଟକର ସମସ୍ତ ଜନତା ଯେପରି ଥିଲେ ଅତି ଆପଣାର । ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିବାବେଳେ ବୀରେନ୍‌ଦା ତାଙ୍କ ମନ୍ତ୍ରୀମଣ୍ଡଳରେ ଉପମୁଖ୍ୟମନ୍ତ୍ରୀ ଆସନରେ ଅଧିଷ୍ଠିତ

ହୋଇଥିଲେ କିନ୍ତୁ କାମରାଜ ଯୋଜନାରେ ବିଜୁ ପଟ୍ଟନାୟକ ଯୋଗଦେଇ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାରୁ ବୀରେନ୍ ମିଶ୍ର ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ।

୧୯୬୪ ମସିହାର ଗ୍ରୀଷ୍ମ ଆନ୍ଦୋଳନ ବୀରେନ୍ ମିଶ୍ରଙ୍କ ରାଜନୈତିକ ଜୀବନରେ ଥିଲା ଗୋଟିଏ ଶକ୍ତ ଆଘାତ । ଜଷ୍ଟିସ୍ ଖାନ୍ନାଙ୍କର ପ୍ରତିନିଧିତ୍ୱରେ ତାଙ୍କ ବିରୁଦ୍ଧରେ ଏକ କମିଶନ ବସିଲା । ଏହା ଶ୍ରୀ ମିଶ୍ରଙ୍କୁ ଦୋଷୀ ବୋଲି ପ୍ରମାଣିତ କରିପାରିଲା ନାହିଁ ସତ କିନ୍ତୁ ବୀରେନ୍‌ବାବୁ ଏପରି ଜିଦ୍‌ଖୋର ପ୍ରକୃତିର ଥିଲେ ଯେ ସେ ନିଜ ପଦବୀରୁ ଇସ୍ତଫା ଦେଲେ ।

ସେ କେବଳ ଓଡ଼ିଶାର ଏକମାତ୍ର ବ୍ୟକ୍ତିତ୍ୱ ଯିଏ ରାଜନୀତି କରି ସର୍ବହରା ହୋଇଛନ୍ତି । ତାଙ୍କର ବଦାନ୍ୟ ଗୁଣ ଯୋଗୁ ସେ ଯେପରି ନିଃସ୍ୱ ହୋଇଛନ୍ତି ତଦ୍‌ପେକ୍ଷା ସହସ୍ର ଗୁଣରେ ଜନମାନସରେ ଏବଂ କଟକର ବସ୍ତି ବାସିନ୍ଦାଙ୍କ ନିକଟରେ ତାଙ୍କର ଖ୍ୟାତି ଅକ୍ଷୁର୍ଣ୍ଣ ରହିଛି । କଟକର ଯେକୌଣସି ଲୋକ ଅସୁବିଧାଗ୍ରସ୍ତ ହେଲେ କିମ୍ବା ଦୁର୍ଘଟଣାରେ ପଡ଼ିଲେ ଅଥବା ମୃତ୍ୟୁ ହେଲେ ବୀରେନ୍‌ବାବୁ ସେମାନଙ୍କ ନିକଟରେ ହାଜର ହେଉଥିଲେ । ଏହାହିଁ ତ ଚରମ ମାନବିକତା । ଶ୍ରୀ ମିଶ୍ର ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ ୧୯୭୮ ମସିହା ମଇ ମାସ ୨୫ ତାରିଖରେ କାଳକବଳିତ ହେଲେ ।

## ବୈରାଗୀ ମିଶ୍ର :

ଓଡ଼ିଶାର ଜଣେ ସମାଜ ସଂସ୍କାରକ ଭାବରେ ବୈରାଗୀ ମିଶ୍ର ଅପ୍ରତିଦ୍ୱନ୍ଦ୍ୱୀ । ସେ ୧୮୮୫ ମସିହା ଡ଼ିସେମ୍ବର ମାସ ୧୭ ତାରିଖରେ କଟକ ଜିଲ୍ଲାର ସାଲେପୁର ଥାନା ଅନ୍ତର୍ଗତ ମୂଳବସନ୍ତ ଗ୍ରାମରେ ଜନ୍ମ ହୋଇଥିଲେ । ବିଶ୍ୱନାଥ କର ସେହି ଗ୍ରାମର ଅନ୍ୟ ଏକ ବରେଣ୍ୟ ବ୍ୟକ୍ତିତ୍ୱ । ସେ ବୈରାଗୀ ମିଶ୍ରଙ୍କୁ ପ୍ରେରଣା ଦେଉଥିଲେ । ତାଙ୍କର ଦାରିଦ୍ର୍ୟ ଉନ୍ନତିର ପ୍ରଧାନ ଅନ୍ତରାୟ ଥିଲା ।

ଶ୍ରୀ ମିଶ୍ର ୨୧ ବର୍ଷ ବୟସରେ ବାରିପଦାରୁ ମାଟ୍ରିକ୍ ପାସ୍ କରି କଟକରେ ଦୁଇବର୍ଷ ଉଚ୍ଚଶିକ୍ଷା ଲାଭ କଲେ । ଉତ୍କଟ ଅର୍ଥାଭାବ ଯୋଗୁଁ ସେ ଅଧିକ ପଢ଼ି-ପାରିଲେ ନାହିଁ । ବୈରାଗୀ ମିଶ୍ର ତତ୍କାଳୀନ ବାଲ୍ୟବିବାହ ପ୍ରଥା ଅନୁସାରେ ୧୪ ବର୍ଷ ବୟସରେ ବିବାହ କରିଥିଲେହେଁ ସେ ଏହି ପ୍ରଥାର ଥିଲେ ଘୋର ବିରୋଧୀ । ଧର୍ମରେ ସଂସ୍କାର ଆଣିବା ଉଦ୍ଦେଶ୍ୟରେ ସେ ଓଡ଼ିଶାର ତତ୍କାଳୀନ ଅନ୍ୟାନ୍ୟ ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କ ସହିତ ବ୍ରାହ୍ମଧର୍ମ ଗ୍ରହଣ କଲେ । ତାଙ୍କର କର୍ମମୟ ଜୀବନକାଳ ମଧ୍ୟରେ ସେ ୩୦ ବର୍ଷ କଟକ କଲେକ୍ଟରଏଟ୍‌ରେ ଚାକିରି କରିଥିଲେ । ୧୯୨୨ ମସିହାରେ ସେ ବ୍ରହ୍ମବିଦ୍ୟା ସମିତିରେ ଯୋଗ ଦେଲେ । ନାରୀ ଜାତିର ଉନ୍ନତି ପାଇଁ ତାଙ୍କର ଚିନ୍ତାଥିଲା ଅନେକ । ଏଣୁ ୧୯୩୦ ମସିହାରେ ବୈରାଗୀ ମିଶ୍ର ନାରୀମଙ୍ଗଳ ସମିତି ଗଠନ କରି ଏହି ଶକ୍ତିର ବିକାଶ ଉଦ୍ଦେଶ୍ୟରେ ବହୁ ପୁସ୍ତକ ରଚନା କରିଥିଲେ ।

୧୯୪୯ ମସିହାରେ ବିଶ୍ୱକଲ୍ୟାଣ ସମିତି ପ୍ରତିଷ୍ଠା କରି ଶ୍ରୀ ମିଶ୍ର "ବିଶ୍ୱକଲ୍ୟାଣ" ନାମକ ଏକ ପତ୍ରିକା ପ୍ରକାଶ କଲେ । ସମାଜର ହିତ ସାଧନ ଥିଲା ତାଙ୍କ ଜୀବନର ଚରମ ବ୍ରତ । ଓଡ଼ିଆ ସଂସ୍କୃତିର ବିବାହ ଏବଂ ବ୍ରତରେ ଆମୂଳଚୂଳ ପରିବର୍ତ୍ତନ ଆଣିବା ପାଇଁ ସେ ଆପ୍ରାଣ ଉଦ୍ୟମ କରିଥିଲେ । ବିଧବାମାନଙ୍କର ପୁନର୍ବିବାହକୁ ତାଙ୍କର ଆନ୍ତରିକ ସମର୍ଥନ ଥିଲା । ଏପରିକି ସେ ନିଜ ପୁଅକୁ ମଧ୍ୟ ଏହି ଆଦର୍ଶରେ ସଂଶ୍ଳିଷ୍ଟ କରିଥିଲେ । ଏହି ମହାନ୍ ବ୍ୟକ୍ତିଙ୍କର ମୃତ୍ୟୁହେଲା ୧୯୭୫ ମସିହାରେ ।

## ବିମ୍ବାଧର ବର୍ମା :

ବିମ୍ବାଧର ବର୍ମା କଟକର ସ୍ମରଣୀୟ ପ୍ରତିଭାମାନଙ୍କ ମଧ୍ୟରୁ ଅନ୍ୟତମ । ସେ ୧୯୦୧ ମସିହାରେ କଟକ ଜିଲ୍ଲାର କୁସୁପୁରରେ ଜନ୍ମଗ୍ରହଣ କରିଥିଲେ । ଆଧୁନିକ କଳାର ଜଣେ ବିଶିଷ୍ଟ ଗବେଷକ ଭାବରେ ସେ ପରିଚିତ । ଓଡ଼ିଶାର କୌଣସି କଳା ସ୍କୁଲର ଛାତ୍ର ନ ଥିଲେ ମଧ୍ୟ କଳା ଓ ସାହିତ୍ୟରେ ତାଙ୍କର ଯଥେଷ୍ଟ ଖ୍ୟାତି ଥିଲା । କଳା ସମ୍ବନ୍ଧୀୟ ବହୁ ପ୍ରବନ୍ଧ ଓଡ଼ିଶା ତଥା ଭାରତର ବହୁ ଖ୍ୟାତନାମା ପତ୍ରିକାରେ ପ୍ରକାଶିତ ହୋଇ ତାଙ୍କର ସମୃଦ୍ଧିରେ ସହାୟକ ହୋଇଥିଲା । ଜଣେ ସାହିତ୍ୟିକ ଭାବରେ ସେ ହେଉଛନ୍ତି ଏକମାତ୍ର 'ପତିତନ୍ନୀ' ଉପନ୍ୟାସର ସ୍ରଷ୍ଟା ।

ଓଡ଼ିଶାର ପ୍ରଥମ କଳାଶିଳ୍ପୀ ରୂପେ ଶ୍ରୀ ବର୍ମା ସ୍ୱନାମଧନ୍ୟ ଆସନର ଅଧିକାରୀ । ଦୈନନ୍ଦିନ ଜୀବନରୁ ଘଟଣାବଳୀ ଆହରଣ କରି କବିତା ରଚନାରେ ସେ ସିଦ୍ଧହସ୍ତ । ପୁରାଣ ଯୁଗ ଏବଂ ଆଧୁନିକ ଯୁଗର ବିଭିନ୍ନ ଚିତ୍ର ଆଙ୍କିବାରେ ତାଙ୍କର ଯଥେଷ୍ଟ ଅନୁରାଗ ଥିଲା । ତାଙ୍କର ଅନେକ ଛବି ପ୍ରଭାସୀ, ଭାରତବର୍ଷ, ନବଭାରତ ଏବଂ ଅନ୍ୟାନ୍ୟ ଅନେକ ସମସାମୟିକ ପତ୍ର ପତ୍ରିକାରେ ଅଙ୍କିତ ହୋଇ ବେଶ୍ ପ୍ରସିଦ୍ଧି ଲାଭ କରିଥିଲା ।

ସେ ଅବିବାହିତ ଥିଲେ ସତ କିନ୍ତୁ ବିଳାସ ବ୍ୟସନ ପ୍ରତି ତାଙ୍କର ବହୁ ଆକର୍ଷଣ ଥିଲା । ଜୀବନରେ ବହୁ ଅର୍ଥ ସେ ରୋଜଗାର କରିଥିଲେ କିନ୍ତୁ ସେ ଏତେ ଖର୍ଚ୍ଚୀ ଥିଲେ ଯେ, ମୃତ୍ୟୁ ସମୟକୁ ସେ ସମ୍ପୂର୍ଣ୍ଣ ସମ୍ବଳହୀନ ହୋଇ ପଡ଼ିଲେ । ତାଙ୍କ ଜୀବନରେ ପଲ୍ଲୀ କବି ନନ୍ଦକିଶୋର ବଳ ଏବଂ ମଧୁସୂଦନ ଦାସଙ୍କର ପ୍ରଭାବ ପଡ଼ିଥିଲା । ୧୯୫୩ ମସିହା ଡିସେମ୍ବର ମାସ ୨୩ ତାରିଖରେ ମାତ୍ର ୫୨ ବର୍ଷ ବୟସରେ ତାଙ୍କର ଦେହାନ୍ତ ହେଲା ।

## ବିପିନ୍ ବିହାରୀ ଚୌଧୁରୀ :

ବିପିନ୍ ବିହାରୀ ଚୌଧୁରୀ ୧୯୦୫ ମସିହାରେ କଲିକତାର ଓଲବାରିଆରେ ଜନ୍ମ ହୋଇଥିଲେ । ତାଙ୍କୁ ଯେତେବେଳେ ମାତ୍ର ଦୁଇବର୍ଷ ହୋଇଥିଲା ସେ ମେଲେରିଆ ରୋଗରେ ଆକ୍ରାନ୍ତ ହୋଇ ଶ୍ରବଣଶକ୍ତି ଓ ବାକ୍‌ଶକ୍ତି ହରାଇ ଥିଲେ । ତାଙ୍କର ବାପା ଥିଲେ ବଙ୍ଗ-ବିହାର-ଓଡ଼ିଶାର ସବଜଜ୍ । ଓଡ଼ିଆ ଜାତିର ମହାନ ବ୍ୟକ୍ତିତ୍ୱ ସଙ୍କର

ମୋହନ ସେନାପତିଙ୍କର କନ୍ୟା ସରୋଜିନୀ ଦେବୀ ତାଙ୍କର ମା' ଥିଲେ । ଭାରତର ଜାତୀୟ କଂଗ୍ରେସର ଜଣେ ସଭ୍ୟ ଭାବରେ ସେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ମୂକବଧିର ସ୍କୁଲରୁ ଶିକ୍ଷାଲାଭ କରିବା ପରେ ବିପିନ୍ ବିହାରୀ କଲିକତାର କଳାସ୍କୁଲରେ ଯୋଗ ଦେଲେ । ତାଙ୍କର କଳା ସୃଷ୍ଟି ଅତ୍ୟନ୍ତ ଉଚ୍ଚକୋଟିର । ଏହା ତତ୍କାଳୀନ ବଙ୍ଗଳା ସରକାରଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

୧୯୩୦ ମସିହାରେ ସେ ବମ୍ବେ ଯାତ୍ରା କରି ସରୋଜିନୀ ନାଇଡୁଙ୍କୁ ଦେଖା କଲେ । ସରୋଜିନୀ ତାଙ୍କ ପାଇଁ ଟାଟା କମ୍ପାନୀରୁ କିଛି ଅର୍ଥର ବ୍ୟବସ୍ଥା କରିଦେବାରୁ ବିପିନ୍ ଲଣ୍ଡନ ଯାତ୍ରା କରି କଳା ବିଷୟରେ ଉଚ୍ଚଶିକ୍ଷା ଲାଭ କଲେ । ଆମେରିକାରୁ ପ୍ରତ୍ୟାବର୍ତ୍ତନ କରି ସେ ପୁଣାର ୱେଲିଙ୍ଗଠାରେ ମହାତ୍ମାଗାନ୍ଧୀଙ୍କୁ ଭେଟିଲେ ଏବଂ ଏକ କଳାବିଜ୍ଞାନ ସ୍କୁଲ ଖୋଲିଲେ । ୧୯୪୯ ମସିହାରେ ବୃତ୍ତିପାଇ ବିପିନ୍ ଆମେରିକା ଯାଇଥିଲେ । ରୋମ, ପ୍ୟାରିସ୍, ଇଟାଲୀ, ଲଣ୍ଡନ ଓ ଆମେରିକା ପ୍ରଭୃତି ଦେଶରୁ ସେ ଉଚ୍ଚକୋଟୀର କଳାଜ୍ଞାନ ଅର୍ଜନ କଲେ । ସେ ଏକ ନେହେରୁ ପ୍ରତିମୂର୍ତ୍ତି ଗଢ଼ି, ପଣ୍ଡିତ ଜବାହରଲାଲ ନେହେରୁ ଏବଂ ବିଜୟଲକ୍ଷ୍ମୀ ପଣ୍ଡିତଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲେ । ସେ ଗଢ଼ିଥିବା କଳାକୃତିମାନଙ୍କ ମଧ୍ୟରେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ସର୍ବପଲ୍ଲୀ ରାଧାକୃଷ୍ଣନ, ଆଚାର୍ଯ୍ୟ ହରିହର ପ୍ରଭୃତି ଅନ୍ତର୍ଭୁକ୍ତ । ୨୩ ବର୍ଷ କଳାବିଦ୍ୟାଳୟଟିକୁ ଚଳାଇବା ପରେ ଓଡ଼ିଶା ସରକାର ତାଙ୍କୁ ନେଇ ଯାଇଥିଲେ । ପରେ ସେ ଖଲିକୋଟ ସ୍କୁଲର ପ୍ରଫେସର ଭାବରେ ଅବସ୍ଥାପିତ ହେଲେ ।

୧୯୭୦ ମସିହାରେ ଓଡ଼ିଶାର କଳାସମ୍ମିଳନୀରେ ସେ ସଭାପତିତ୍ୱ କରିଥିଲେ ଏବଂ ଓଡ଼ିଶା ଲଳିତ କଳା ଏକାଡେମୀ ଓ ନୃତ୍ୟକଳା ପରିଷଦର ସକ୍ରିୟ ସଭ୍ୟ ଭାବରେ କାର୍ଯ୍ୟକରି ଶ୍ରୀ ଚୌଧୁରୀ ୧୯୮୨ ମସିହା ମାର୍ଚ୍ଚ ମାସ ୧୧ ତାରିଖରେ ଇହଲୀଳା ସାଙ୍ଗ କଲେ ।

## ବାବୁଲାଲ ଯୋଶୀ :

ବାବୁଲାଲ ଯୋଶୀ ୧୯୧୮ ମସିହା ମଇମାସ ୩୧ ତାରିଖରେ ଜନ୍ମ ହୋଇ ୧୯୮୫ ମସିହା ସେପ୍ଟେମ୍ବର ମାସ ୨୫ ତାରିଖରେ ସ୍ୱର୍ଗାରୋହଣ କରିଥିଲେ । ସେ ଥିଲେ ଅତ୍ୟନ୍ତ ନୃତ୍ୟଗୀତ ପ୍ରିୟ । ସ୍ୱାଧୀନତା ଆନ୍ଦୋଳନରେ ଅଂଶଗ୍ରହଣ କରି ଶ୍ରୀ ଯୋଶୀ ୧୯୩୪ ମସିହାରେ କଟକ ଆସିଲେ ।

ତାଙ୍କର ସ୍ଥାୟୀ ଗୃହ ଥିଲା ଗୁଜୁରାଟରେ । ୧୯୪୨ ମସିହାରେ ସେ ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହୋଇ ଗୁଜୁରାଟ ଫେରି ଯାଇଥିଲେ କିନ୍ତୁ ପୁନର୍ବାର ୧୯୪୪ ମସିହାରେ କଟକ ଆସି ସେ ସୋସାଲିଷ୍ଟ ପାର୍ଟିରେ ଯୋଗଦେଲେ । ୧୯୫୨ ମସିହାରେ ରେଙ୍ଗୁନ୍‌ଠାରେ ଅନୁଷ୍ଠିତ ହେଉଥିବା ଏସିଆ ମହାଦେଶର ସୋସାଲିଷ୍ଟ ସମ୍ମିଳନୀରେ ଯୋଗ ଦେଇଥିଲେ । କଳାବିକାଶ କେନ୍ଦ୍ରର ସେ ଥିଲେ ପ୍ରତିଷ୍ଠାତା ଏବଂ ବନ୍ଧୁ

ଚଳଚିତ୍ର ନିର୍ମାଣ କରି ଯୋଗୀ ୧୯୭୯ ମସିହାରେ ବିଶିଷ୍ଟ ଚଳଚ୍ଚିତ୍ର ନିର୍ମାତା ଭାବରେ ରାଜ୍ୟ ପୁରସ୍କାର ଲାଭ କରିଥିଲେ ।

## ବନମାଳୀ ବ୍ରହ୍ମଗୃହୀ :

ବନମାଳୀ ବ୍ରହ୍ମଗୃହୀ ଜଣେ ଶିକ୍ଷକ ନେତା ଭାବରେ ସର୍ବଜନ ପରିଚିତ । ସେ ୧୯୦୫ ମସିହା ନଭେମ୍ବର ୧୮ ତାରିଖରେ କଟକ ଜିଲ୍ଲା କେନ୍ଦ୍ରାପଡ଼ା ଥାନାର ଦୋହଳ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ଶ୍ରୀଚରଣ ପଣ୍ଡା ଓ ମା'ଙ୍କ ନାମ ସାବି ଦେବୀ । କିନ୍ତୁ ବନମାଳୀଙ୍କର ପତ୍ନୀ ବିୟୋଗ ପରେ ସେ ଦ୍ୱିତୀୟ ଦାର ଗ୍ରହଣ ନକରି ନିଜର କୌଳିକ ସଂଜ୍ଞା 'ପଣ୍ଡା' ବଦଳରେ 'ବ୍ରହ୍ମଗୃହୀ' ଲେଖିଥିଲେ ।

ମାଇଂରେଜୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ଶ୍ରୀ ବ୍ରହ୍ମଗୃହୀ ୧୯୨୧ ମସିହାରେ କଟକ ଟ୍ରେନିଂ ସ୍କୁଲରେ ନାମ ଲେଖାଇଲେ । ୧୯୨୪ ମସିହାରେ ଟ୍ରେନିଂ ଶେଷ କରିବା ପରେ ତାଙ୍କ ଶିକ୍ଷକ ଜୀବନ ଆରମ୍ଭ ହୋଇଥିଲା । ପ୍ରାଥମିକ, ଉଚ୍ଚ ପ୍ରାଥମିକ ଏବଂ ମାଇନରଂରେଜୀ ବିଦ୍ୟାଳୟ ପ୍ରଭୃତିରେ ସେ ଶିକ୍ଷକତା କରିଥିଲେ । କଟକ ଯଥାର୍ଥରେ ଥିଲା ତାଙ୍କର କର୍ମଭୂମି । ଶିକ୍ଷକ ସଂଘର ପ୍ରତିଷ୍ଠାତା ଭାବରେ ତାଙ୍କର ନାମ ଅବିସ୍ମରଣୀୟ । ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବରେ ସେ ଲବଣ ସତ୍ୟାଗ୍ରହରେ ଅଂଶ ଗ୍ରହଣ କରିଥିଲେ । ଓଡ଼ିଶାର ଶିକ୍ଷକମାନଙ୍କ ଦାବୀପୂରଣ ପାଇଁ ସେ ସର୍ବଦା ବ୍ୟସ୍ତ ଏବଂ ବିବ୍ରତ ରହୁଥିଲେ ।

ସେ ମଧ୍ୟ ଜଣେ ଲେଖକ । ଶିଶୁ ମନୋଯୋଗୀ ଲେଖା ସୃଷ୍ଟି କରିବା ସହିତ ବହୁ ଉଚ୍ଚକୋଟୀର ଏବଂ ନୀତିଶିକ୍ଷା ମୂଳକ ରଚନା ତାଙ୍କ ସାହିତ୍ୟିକ ଜୀବନର ପ୍ରଧାନ କୃତି । ତାଙ୍କର ରଚନାବଳୀମାନଙ୍କ ମଧ୍ୟରେ 'ଦ୍ରୁତକ ହୋ', ଗୁଣ ଦର୍ପଣ, କିଏ କେମିତି, ଗୁରୁ ଚରିତ, ବାନର ମଙ୍କର କଥା, ଚରିତ୍ର ଓ ଚିତ୍ର ଇତ୍ୟାଦି ପ୍ରଧାନ । ଜଣେ ଶିକ୍ଷକର ନିଜ କଥା ନାମକ ଆତ୍ମଜୀବନୀ ମଧ୍ୟ ସେ ରଚନା କରିଛନ୍ତି ।

## ଭଗବତୀ ଚରଣ ପାଣିଗ୍ରାହୀ :

ଓଡ଼ିଆ ସାହିତ୍ୟରେ ସାମ୍ୟବାଦୀ ଚିନ୍ତାଧାରାର ବଳିଷ୍ଠ ପୃଷ୍ଠପୋଷକ ଭଗବତୀ ଚରଣ ପାଣିଗ୍ରାହୀ ୧୯୦୮ ମସିହା ଫେବୃୟାରୀ ମାସ ପହିଲାରେ ପୁରୀ ଜିଲ୍ଲାର ବିଶ୍ୱନାଥପୁରରେ ଜନ୍ମ ଗ୍ରହଣ କରିଥିଲେ । ଓଡ଼ିଶାର ପ୍ରସିଦ୍ଧ ସାହିତ୍ୟିକ ପଦ୍ମଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀଙ୍କର ସେ ହେଉଛନ୍ତି ଅନୁଜ । ଜଣେ ବିପ୍ଳବୀ ବ୍ୟକ୍ତିତ୍ୱ ଭାବରେ ତାଙ୍କର ନାମ ସର୍ବଜନ ଜଣାଶୁଣା । ରେଭେନ୍‌ସା କଲେଜରୁ ବି. ଏ. ପାସ୍ କରି ଶ୍ରୀ ପାଣିଗ୍ରାହୀ ଉଚ୍ଚଶିକ୍ଷା ପାଇଁ ପାଟଣା ଯାଇଥିଲେ । ପାଟଣା ବିଶ୍ୱବିଦ୍ୟାଳୟରୁ ଏମ୍. ଏ. ପାସ୍ କରି ସେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଲେ ।

ରଜ୍ୟର ପ୍ରଜାମେଳ ଆନ୍ଦୋଳନରେ ପାଣିଗ୍ରାହୀ, ନବକୃଷ୍ଣ ଚୌଧୁରୀ, ଗୌରଙ୍ଗ ଦାସ ପ୍ରମୁଖଙ୍କ ସହିତ ସକ୍ରିୟ ଅଂଶ ଗ୍ରହଣ କଲେ । ପ୍ରଥମେ ସେ ସୋସାଲିଷ୍ଟପାର୍ଟିରେ ଯୋଗଦେଇ "କୃଷକ" ପତ୍ରିକା ସମ୍ପାଦନା କରିଥିଲେ । ପରେ କମ୍ୟୁନିଷ୍ଟପାର୍ଟିର ସେକ୍ରେଟାରୀ ହୋଇଥିଲେ । ୧୯୪୦ ମସିହାରେ ତାଙ୍କୁ ଆରେଷ୍ଟ କରାଯାଇ ଦୁଇବର୍ଷ ଅନୁଗୁଳ ଜେଲରେ ରଖାଯାଇଥିଲା । ଭଗବତୀ ଚରଣ ପାଣିଗ୍ରାହୀ 'ନବଯୁଗ ସାହିତ୍ୟ ସଂସଦ' ପ୍ରତିଷ୍ଠା କରି ଏବଂ ଏହି ସଂସ୍ଥାର ମୁଖପତ୍ର ରୂପେ 'ଆଧୁନିକ' ନାମକ ଏକ ମାସିକ ପତ୍ରିକା ପ୍ରକାଶ କରି ଓଡ଼ିଶାରେ ଏହି ଚିନ୍ତାଧାରାରେ ଦୀକ୍ଷିତ ଏକ ନବୀନ ଲେଖକ ଗୋଷ୍ଠୀ ସୃଷ୍ଟି କରିବାରେ ସମର୍ଥ ହେଲେ । ଏହି ସଂସଦ ଏବଂ ତାର ମୁଖପତ୍ର ମାଧ୍ୟମରେ ସାମ୍ୟବାଦର ନୂତନବାଣୀ ପ୍ରଚାର କରି ଓଡ଼ିଆ ସାହିତ୍ୟର ସୃଷ୍ଟି ଆଭିମୁଖ୍ୟରେ ଶ୍ରୀ ପାଣିଗ୍ରାହୀ ଏକ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଆଣି ପାରିଥିଲେ । କ୍ଷୁଦ୍ର ଗଳ୍ପର ଜଣେ ବିଶିଷ୍ଟ ଲେଖକ ଭାବରେ ତାଙ୍କର ପ୍ରତିଭା ଅପ୍ରତିହତ । ସେ ଆଭିଜାତ୍ୟ-ପୂର୍ଣ୍ଣ ସାମନ୍ତବାଦୀ ମନୋଭାବଠାରୁ ସଂପୂର୍ଣ୍ଣ ମୁକ୍ତ ରହି ଜନତାର ଗାଥାଚିତ୍ର ଉପସ୍ଥାପନ କରିବା, ଶ୍ରେଣୀହୀନ ସମାଜ ପ୍ରତିଷ୍ଠାର ପରିକଳ୍ପନା ଏବଂ ସାମାଜିକ ବୈଷମ୍ୟ ଓ ଅତ୍ୟାଚାରର ମୂଳୋତ୍ପାଟନ ପାଇଁ ଲେଖନୀ ଧାରଣ କରିଥିଲେ ।

କେତେକ ରାଜନୈତିକ କାରଣହିଁ ତାଙ୍କୁ ଅଧିକ ଲେଖିବାର ସୁଯୋଗରୁ ବଞ୍ଚିତ କରିଥିଲା । କିନ୍ତୁ ତାଙ୍କର ସୀମିତ ରଚନାହିଁ ତାଙ୍କ ବଳିଷ୍ଠତମ ବ୍ୟକ୍ତିତ୍ୱର ଚରମ ସହାୟକ । ସେ ଓଡ଼ିଆ ସାହିତ୍ୟରେ ନୂତନ ଯୁଗର ସ୍ରଷ୍ଟାର ରୂପେ ପରିଚିତ । ତାଙ୍କର କ୍ଷୁଦ୍ରଗଳ୍ପ ଶିକାର, ଏକଦା ଭାରତର ବହୁ ଭାଷାରେ ଅନୁବାଦିତ ହୋଇ ଚହଳ ସୃଷ୍ଟି କରିଥିଲା । ଚଳଚ୍ଚିତ୍ର ନିର୍ଦ୍ଦେଶକ ମୃଣାଳସେନ ଏହି ଗଳ୍ପ ଉପରେ ସୃଷ୍ଟି କଲେ ଚଳଚ୍ଚିତ୍ର 'ମୃଗୟା' । ସେ ଜଣେ ଦକ୍ଷ ବୀଣାବାଦକ ମଧ୍ୟ ଥିଲେ ।

୧୯୪୩ ମସିହାରେ ଗଞ୍ଜାମ ଜିଲ୍ଲାରେ ଭୟଙ୍କର ମନ୍ୱନ୍ତର ପଡ଼ିଲା । ଶ୍ରୀ ପାଣିଗ୍ରାହୀ ମନ୍ୱନ୍ତର ପ୍ରପୀଡ଼ିତ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ଅକ୍ଳାନ୍ତ ପରିଶ୍ରମ କଲେ । ଫଳରେ କଲେରାରେ ଆକ୍ରାନ୍ତ ହୋଇ ୧୯୪୩ ମସିହା ଅକ୍ଟୋବର ୨୩ ତାରିଖରେ ପ୍ରାଣତ୍ୟାଗ କଲେ ।

## ଭୈରବ ଚରଣ ମହାନ୍ତି :

ଓଡ଼ିଶାର ଜଣେ ବରିଷ୍ଠ କ୍ରୀଡ଼ାପ୍ରେମୀ ଭାବରେ ଭୈରବ ଚରଣ ମହାନ୍ତି ଅତ୍ୟନ୍ତ ଲୋକପ୍ରିୟ । କଟକ ଜିଲ୍ଲାର ବାଲିପୁକୁରୀ ଗ୍ରାମରେ ଶ୍ରୀ ମହାନ୍ତି ୧୯୧୩ ମସିହାରେ ଜନ୍ମ ହୋଇ ୧୯୮୦ ମସିହାରେ ପ୍ରାଣତ୍ୟାଗ କରିଥିଲେ । ଗୋଟିଏ ମଧ୍ୟବିତ୍ତ ପରିବାରରେ ତାଙ୍କର ଜନ୍ମ ହୋଇଥିଲା । କିନ୍ତୁ ଦୁର୍ଭାଗ୍ୟ କ୍ରମେ ସେ ଖୁବ୍ କମ୍ ବୟସରେ ତାଙ୍କର ପିତା ମାତାଙ୍କୁ ହରାଇ ମାମୁଁ ନିଶାମଣି ମହାନ୍ତିଙ୍କ ତତ୍ତ୍ୱାବ-ଧାନରେ ଲାଳିତ ପାଳିତ ହେଲେ । ନିଶାମଣି ମହାନ୍ତି ପାଟଣା ସରକାରଙ୍କ ଅଧୀନରେ ଚାକିରୀ କରୁଥିଲେ ।

ଏଣୁ ଭୈରବ ଚରଣଙ୍କର ଛାତ୍ରଜୀବନ ଏବଂ ଶିକ୍ଷାଲାଭ ପାଟଣାରେ ହୋଇଥିଲା । ୧୯୩୭ ମସିହାରେ ବି.ଏ. ପାଶ୍ କରି ଭୈରବ ବାବୁ ଓଡ଼ିଶା ଫେରି ଆସିଲେ । ଛାତ୍ରାବସ୍ଥାରୁ ଖେଳପ୍ରତି ତାଙ୍କର ପ୍ରବଳ ଆକର୍ଷଣ ଥିଲା । ସେ ପାଟଣା ସ୍କୁଲରେ ପଢୁଥିବା ବେଳେ ଫୁଟବଲ, କ୍ରିକେଟ ଏବଂ ହକିରେ ଅନେକଥର ପୁରସ୍କୃତ ହୋଇଥିଲେ । ତାଙ୍କର କର୍ମମୟ ଜୀବନ ମଧ୍ୟରେ ଭୈରବବାବୁ ୧୯୩୭ ମସିହାରେ ଓଡ଼ିଶା ସେକ୍ରେଟାରିଏଟ୍‌ରେ ଚାକିରି ଆରମ୍ଭ କରିଥିଲେହେଁ ୧୯୪୨ ମସିହାରେ ଚାକିରି ଛାଡ଼ି ଭାରତ ଛାଡ଼ ଆନ୍ଦୋଳନରେ ଝାସ ଦେଇ କାରାବରଣ କଲେ । ଦୈନିକ ପ୍ରଜାତନ୍ତ୍ର ଏବଂ ଇଂରେଜ ପତ୍ରିକା Estern Ti res'ର ସମ୍ପାଦକ ଭାବରେ ସେ କର୍ତ୍ତବ୍ୟ ସମ୍ପାଦନ କାର୍ଯ୍ୟ କରିଥିଲେ । ଓଡ଼ିଶା ବିଧାନ ସଭାକୁ ନିର୍ବାଚିତ ହୋଇ ଭୈରବ ମହାନ୍ତି କ୍ରୀଡ଼ା ବିଭାଗର ମନ୍ତ୍ରୀ ହେଲେ ଏବଂ କ୍ରୀଡ଼ାର ଅଭିବୃଦ୍ଧି ପାଇଁ ତାଙ୍କର ବହୁ ପରିକଳ୍ପିତ ଯୋଜନାକୁ ବାସ୍ତବରୂପ ଦେଲେ । ବାରବାଟୀ ଷ୍ଟାଡ଼ିୟମ ପ୍ରତିଷ୍ଠାରେ ତାଙ୍କର ଅବଦାନ ଉଲ୍ଲେଖଯୋଗ୍ୟ । ପୃଥିବୀର ଅଲିମ୍ପିକରେ ଯୋଗଦେବା ପାଇଁ ସେ ରୁଷିଆ ଯାଇଥିଲେ ଏବଂ ସେହିଠାରେ ତାଙ୍କର ମୃତ୍ୟୁ ହେଲା । ତାଙ୍କୁ ସମ୍ମାନ ଦେବାପାଇଁ ପ୍ରଥମଥର ପାଇଁ ବିଶ୍ୱ ଇତିହାସରେ ଅଲିମ୍ପିକ ଖେଳ ଦୁଇମିନଟ୍ ପାଇଁ ବନ୍ଦ ହୋଇ ଯାଇଥିଲା ।

## ଭଗିରଥି ଷାଠିଆ :

ଭଗିରଥି ଷାଠିଆ କଟକରେ ଜନ୍ମଲାଭ କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଅନ୍ୟତମ । କଟକର ଆଲମଚାନ୍ଦ ବଜାରରେ ୧୮୪୪ ମସିହାରେ ତାଙ୍କର ଜନ୍ମ । ଜଣେ ଶିଳାଲେଖନକାରୀ ଭାବରେ ସେ ପ୍ରସିଦ୍ଧ । ପ୍ରିଣ୍ଟିଂ କମ୍ପାନୀର ଦକ୍ଷ ମୁଦ୍ରଣକାରୀ, ପରିଚାଳକ ଭାବରେ ସେ ମଧ୍ୟ ବେଶ୍ ଲୋକପ୍ରିୟ । ୧୮୬୬ ମସିହାର ଭାଷା ବିଲୋପ ଆନ୍ଦୋଳନରେ ତାଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଜଣେ ଭଦ୍ର ମିଷ୍ଟଭାଷୀ ବ୍ୟକ୍ତି ଶ୍ରୀ ଷାଠିଆ ୧୯୨୨ ମସିହାରେ କଟକରେ ପ୍ରାଣତ୍ୟାଗ କରିଥିଲେ ।

## ଭଗିରଥି ମହାପାତ୍ର :

ଭଗିରଥି ମହାପାତ୍ର ଓଡ଼ିଶାର ଜଣେ ମହାନ ବ୍ୟକ୍ତି ଥିଲେ । ୧୮୯୨ ମସିହାରେ କଟକ ଜିଲ୍ଲାର ଜଗତସିଂହପୁର ଥାନା ଅନ୍ତର୍ଗତ ଗୁଟେରି ଗ୍ରାମର ଗୋଟିଏ ଜମିଦାର ପରିବାରରେ ତାଙ୍କର ଜନ୍ମ । ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବରେ ସେ ବହୁବାର କାରାବରଣ କରିଥିଲେ । ୧୯୧୮ ମସିହାରେ ଶ୍ରୀ ମହାପାତ୍ର ଏମ.ଏ.ବି.ଏଲ ପାଶ୍ କରି କଟକରେ ଓକିଲାତି ଆରମ୍ଭ କଲେ । କିନ୍ତୁ ଦେଶର ଅସହଯୋଗ ଆନ୍ଦୋଳନରେ ପ୍ରଧାନ ଭୂମିକା ନେଇ ୧୯୨୨ ମସିହାରୁ ୧୯୨୪ ମସିହା ପର୍ଯ୍ୟନ୍ତ ସେ ହଜାରିବାଗ ଜେଲରେ ବନ୍ଦୀ ହୋଇ ରହିଲେ । ତାଙ୍କର ଘଟଣା ବହୁଳ ଜୀବନ ମଧ୍ୟରେ ସମବାୟ ଖଣ୍ଡ ସଂଘର ପରିଚାଳକ ଏବଂ କଟକ ମ୍ୟୁନିସିପାଲିଟିର ଚେୟାରମ୍ୟାନ ହୋଇଥିଲେ ।

ଭାରତଛାଡ଼ ଆନ୍ଦୋଳନରେ ଅଂଶ ଗ୍ରହଣ କରି ୧୯୪୨ରୁ ୧୯୪୫ ମସିହା ପର୍ଯ୍ୟନ୍ତ କାରାବରଣ କଲେ । ସେ ଥିଲେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ପ୍ରଥମ ସେକ୍ରେଟାରୀ । ଜଣେ ପାର୍ଲିଆମେଣ୍ଟ ସଦସ୍ୟ ଏବଂ ଗାନ୍ଧୀସ୍ମାରକ ନିଧିର ସମ୍ପାଦକ ଭାବରେ ମଧ୍ୟ ସେ କାର୍ଯ୍ୟ କରିଥିଲେ । ଦେଶ ପାଇଁ ତାଙ୍କର ତ୍ୟାଗ ଅସୀମ ।

## ଭଗବାନ ରାମ :

ଭଗବାନ ରାମ ବାଙ୍କୀରେ ଜନ୍ମ ହୋଇଥିଲେ ସତ କିନ୍ତୁ ସାରାଜୀବନ ତାଙ୍କର କଟିଥିଲା କଟକରେ । ସେ ଗୋଟିଏ ବ୍ୟବସାୟୀ ପରିବାରରେ ଜନ୍ମ ହୋଇଥିଲେ ମଧ୍ୟ ବ୍ୟବସାୟ ପ୍ରତି ତାଙ୍କର କୌଣସି ଧ୍ୟାନ ନଥିଲା । ସେ ଯଥାର୍ଥରେ ଥିଲେ ଜଣେ ଜାତୀୟତାବାଦୀ । ଛାତ୍ର ଥିବା ସମୟରେ ଶ୍ରୀରାମ ଛାତ୍ର ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଓଡ଼ିଶା ଛାତ୍ର କଂଗ୍ରେସର ସମ୍ପାଦକ ଭାବରେ ଛାତ୍ର ଆନ୍ଦୋଳନକୁ ଦକ୍ଷତାର ସହିତ ପରିଚାଳନା କରି ନିଜ କୃତିତ୍ୱ ପ୍ରଦର୍ଶନ କରି ପାରିଥିଲେ । ସ୍ୱାଧୀନତା ଆନ୍ଦୋଳନରେ ମଧ୍ୟ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ । ପରବର୍ତ୍ତୀ ସମୟରେ କଟକର ରାଜନୀତି ସହିତ ସେ ସଂଶ୍ଳିଷ୍ଟ ହୋଇ ପଡ଼ିଥିଲେ ।

## ଭଗବାନ ପତି :

ଭଗବାନ ପତି ୧୯୦୩ ମସିହାରେ କେନ୍ଦ୍ରାପଡ଼ାରେ ଜନ୍ମ ହୋଇ ୧୯୮୪ ମସିହାରେ ମୃତ୍ୟୁ ବରଣ କରିଥିଲେ । ଜଣେ ସାମ୍ବାଦିକ ଭାବରେ ସେ ବହୁ ସମ୍ବାଦପତ୍ର ଏବଂ ସମ୍ବାଦସଂସ୍ଥା ସହିତ ଜଡ଼ିତ ଥିଲେ । ସେ ୩୦ରୁ ଊର୍ଦ୍ଧ୍ୱ ପୁସ୍ତକର ରଚୟିତା । ତାଙ୍କର ପୁସ୍ତକମାନଙ୍କ ମଧ୍ୟରେ ଗଳ୍ପ ରୂପରେ ମାଳବିକା, ବସନ୍ତସେନ, ରତ୍ନାବଳୀ, ସ୍ୱପ୍ନବାସବଦତ୍ତା, ସ୍ୱାଧୀନତାର କାହାଣୀ, ଜୀବନୀ ଏବଂ ବହୁ ଶିଶୁ ରଚନା ଅନ୍ତର୍ଭୁକ୍ତ ।

## ଭିକାରୀ ଚରଣ ପଟ୍ଟନାୟକ :

ଓଡ଼ିଶାର ଜଣେ ବରିଷ୍ଠ ଆଇନ୍‌ଜୀବୀ, ସାହିତ୍ୟିକ, ନାଟ୍ୟକାର, ସଂସ୍କାରକ ଏବଂ ସଙ୍ଗଠକ ଭିକାରୀ ଚରଣ ପଟ୍ଟନାୟକ ୧୮୭୭ ମସିହାରେ କଟକ ଜିଲ୍ଲାର କେନ୍ଦ୍ରାପଡ଼ାରେ ଜନ୍ମଗ୍ରହଣ କରିଥିଲେ । ୧୯୦୭ ମସିହାରେ ସେ ଆଇନ୍ ବ୍ୟବସାୟ ଆରମ୍ଭ କଲେ । ଉତ୍କଳ ଦୀପିକା, ସାହିତ୍ୟ ସମାଜ, ଓଡ଼ିଶା ଲୋକସେବକ ସଂଘର ସେ ଜଣେ ସକ୍ରିୟ ସଭ୍ୟ ଥିଲେ ।

ଆଧୁନିକ ଯୁଗର ଜଣେ ପ୍ରତିଭାଶାଳୀ ନାଟ୍ୟକାର ଭାବରେ ବହୁ ଐତିହାସିକ ଏବଂ ସାମାଜିକ ନାଟକ ରଚନା କରି ସେ କୃତିତ୍ୱ ଅର୍ଜନ କରିଅଛନ୍ତି । ତାଙ୍କର ନାଟକ ମୁଖ୍ୟତଃ ନାଟକ ଓ ପ୍ରହସନ ଏହିପରି ଦ୍ୱିଧା ବିଭକ୍ତ । ସେ ରଚନା କରିଥିବା ନାଟକ ମାନଙ୍କ ମଧ୍ୟରେ ରତ୍ନମାଳା, ସୁଶୀଳା, ଯୌତୁକ, ଅଦ୍ଭୁତ ଆଦର୍ଶ, ସଂସାର ଚିତ୍ର, ନିରୁପମା ଏବଂ ନନ୍ଦକିଶୋର ଇତ୍ୟାଦି ପ୍ରଧାନ । କଳିକାଳ, ବୁଢ଼ାବର, ଘୋଟଭିକାରୀ,

ବୃଦ୍ଧବାର, ଅବହୃତ ଆଦର୍ଶ, କର୍ମକ୍ଷେତ୍ର ପ୍ରଭୃତି ତାଙ୍କର ପ୍ରହସନ ବା ବ୍ୟଙ୍ଗରଚନା ମଧ୍ୟରେ ଅନ୍ତର୍ଭୁକ୍ତ ।

ତାଙ୍କର ଏକ ଶହରୁ ଊର୍ଦ୍ଧ୍ୱ କବିତା ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା । ତାଙ୍କର ବିଶିଷ୍ଟ ସାରସ୍ୱତ ସାଧନା ତଥା ବହୁମୁଖୀ ପ୍ରତିଭା ପାଇଁ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସମ୍ମାନସୂଚକ ଡକ୍ଟରେଟ୍ ଉପାଧି ଲାଭ କରିଥିଲେ । ବିଧବା-ମାନଙ୍କ ପାଇଁ ସେ ଗ୍ରାମ୍ୟ ଶିଳ୍ପସଂସ୍ଥା ଗଢ଼ିଥିଲେ । ଏହି ମହାନ୍ ବ୍ୟକ୍ତିଙ୍କର ଅବସାନ ହେଲା ୧୯୬୨ ମସିହାରେ ।

## ଭୁବନାନନ୍ଦ ଦାସ :

ଓଡ଼ିଶାର ଖ୍ୟାତନାମା ବିଦ୍ୟୁତ୍ ବିଭାଗର ଇଞ୍ଜିନିୟର ଭୁବନାନନ୍ଦ ଦାସଙ୍କର ଜନ୍ମହୁଏ ୧୮୫୫ ମସିହାରେ । ଶିବପୁର ଇଞ୍ଜିନିୟରିଂ କଲେଜରୁ ପାଠପଢ଼ା ଶେଷକରି ଉଚ୍ଚଶିକ୍ଷା ପାଇଁ ସେ ଇଂଲଣ୍ଡ ଯାତ୍ରା କରିଥିଲେ । ୧୯୧୭ ମସିହାରେ ସେ ସରକାରୀ ଚାକରୀରେ ନିଯୁକ୍ତ ହୋଇଲେ । ବ୍ୟବସାୟ ପ୍ରତି ତାଙ୍କର ଅଧିକ ଇଚ୍ଛାଥିବାରୁ ୧୯୨୦ ମସିହାରେ ସେ ଚାକରୀ ଛାଡ଼ି ବ୍ୟବସାୟ ଆରମ୍ଭ କଲେ । ଜଣେ ରାଜନୀତିଜ୍ଞ ଭାବରେ ସେ ପାର୍ଲିଆମେଣ୍ଟକୁ ନିର୍ବାଚିତ ହୋଇଥିଲେ । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ତାଙ୍କର ଭୂମିକା ସର୍ବୋଚ୍ଚ ଊର୍ଦ୍ଧ୍ୱରେ । ଓଡ଼ିଶା ସରକାରଙ୍କର ଇଞ୍ଜିନିୟରିଂ ସଂସ୍ଥାର ଉପଦେଷ୍ଟା ଭାବରେ ନିଯୁକ୍ତ ପାଇ ସେ ଏହି ବିଭାଗର ପ୍ରଭୂତ ଉନ୍ନତି ସାଧନ କରିଥିଲେ । ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ କେନ୍ଦ୍ର ଆସେମ୍ବ୍ଲିରେ ଦାବୀ ଉପସ୍ଥାପନ କରିବାରେ ସେ ଥିଲେ ଅଗ୍ରଗଣ୍ୟ । ଭାରତ ପାର୍ଲିଆମେଣ୍ଟରେ ସେ ଦୀର୍ଘ କାଳ ଧରି ରହିଥିବାରୁ ତାଙ୍କୁ ପାର୍ଲିଆମେଣ୍ଟର ଜନକ କୁହାଯାଉଥିଲା । ୧୯୨୯ ମସିହାରେ ଜେନେଭାଠାରେ ହୋଇ-ଥିବା ଶ୍ରମିକ ସଙ୍ଗଠନରେ ସେ ଭାରତ ପକ୍ଷରୁ ପ୍ରତିନିଧିତ୍ୱ କରିଥିଲେ ।

୧୯୨୮ରୁ ୧୯୩୮ ମସିହା ପର୍ଯ୍ୟନ୍ତ ସେ **Young Utkal** ନାମକ ଏକ ଇଂରେଜୀ ସାପ୍ତାହିକ ପତ୍ରିକା ସମ୍ପାଦନା କରିଥିଲେ । ଓଡ଼ିଶାର ଇଞ୍ଜିନିୟରିଂ ସ୍କୁଲ ତାଙ୍କ ନାମ ରେ ନାମିତ ହୋଇଅଛି । ୧୯୫୮ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ଭଗବତୀ ପ୍ରସାଦ ଆଚାର୍ଯ୍ୟ :

ଡଃ ଭଗବତୀ ପ୍ରସାଦ ଆଚାର୍ଯ୍ୟ ୧୯୦୫ ମସିହାରେ ଓଡ଼ିଶାର ତତ୍କାଳୀନ ଗଡ଼ଜାତ ଖରସୂଆଁରେ ଜନ୍ମଗ୍ରହଣ କରିଥିଲେ । ଡଃ ଆଚାର୍ଯ୍ୟ ସିଂହଭୂମିର ଚାଇଁବସା ଜିଲ୍ଲା ସ୍କୁଲରୁ ମାଟ୍ରିକ୍ ପାଶକରି କଟକର ମେଡ଼ିକାଲ ସ୍କୁଲରେ ନାମ ଲେଖାଇଲେ । ମେଡ଼ିକାଲ ସ୍କୁଲରୁ ଏଲ.ଏମ୍.ପି. ପାଶ୍‌କରି ସେ ବିହାର ଓଡ଼ିଶା ମେଡ଼ିକାଲ ସର୍ଭିସରେ ଯୋଗଦେଲେ ।

ଖୁବ୍ କମ୍ ସମୟ ଭିତରେ ସେ ଜଣେ ଖ୍ୟାତନାମା ଡାକ୍ତର ଭାବରେ ପ୍ରସିଦ୍ଧି ଲାଭ କଲେ । କଟକର ପ୍ରଫେସର ପଡ଼ାରେ ସେ ରହୁଥିଲେ । କଟକର ମେଡ଼ିକାଲ

କଲେଜ ପ୍ରତିଷ୍ଠା ହେବାପରେ ଡଃ ଆଚାର୍ଯ୍ୟ ଏହି କଲେଜରୁ ଏମ୍.ବି ବି.ଏସ୍. ପାଶ୍ କଲେ ଏବଂ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ଅଧ୍ୟାପକଙ୍କ ସହାୟକ ଭାବରେ କାର୍ଯ୍ୟକାଳ ଶେଷ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ । ସେ ଥିଲେ ଗମ୍ଭୀର ଈଶ୍ୱର ବିଶ୍ୱାସୀ ଓ ଆସ୍ତିକ ବାଦୀ । ତାଙ୍କର ବେସରକାରୀ ଚିକିତ୍ସାଳୟରେ ରୋଗୀମାନଙ୍କୁ ବିନା ଫିସ ଦାବୀରେ ଚିକିତ୍ସା କରିବାରେ ତାଙ୍କର ବେଶ୍ ପ୍ରସିଦ୍ଧି ଥିଲା । ରୋଗୀମାନଙ୍କ ନିକଟରେ ସେ ଥିଲେ ଈଶ୍ୱର ତୁଲ୍ୟ ।

କଟକର ସର୍ବସାଧାରଣଙ୍କର ସୁଖ, ଦୁଃଖ ଏବଂ ପର୍ବପର୍ବାଣୀରେ ସେ ପହଞ୍ଚି ଯାଉଥିଲେ । ୧୯୭୭ ମସିହାରେ ଯେତେବେଳେ ତାଙ୍କର ମୃତ୍ୟୁ ହେଲା କଟକ ସହରରେ ନୈରାଶ୍ୟର ଏକ ଗ୍ଳାନି ଖେଳି ଯାଇଥିଲା ।

## ମାୟାଧର ମାନସିଂହ :

କବିବର ମାୟାଧର ମାନସିଂହ ଓଡ଼ିଶାର ଜଣେ ବିଶିଷ୍ଟ କବି, ଲେଖକ, ସାହିତ୍ୟିକ, ଅଧ୍ୟାପକ, ଶିକ୍ଷାବିତ୍ ଏବଂ ଗବେଷକ ଭାବରେ ସୁପରିଚିତ । ସେ ୧୯୦୫ ମସିହା ନଭେମ୍ବର ମାସ ୫ ତାରିଖରେ ପୁରୀ ଜିଲ୍ଲା ଅନ୍ତର୍ଗତ ଚିଲିକା ନିକଟସ୍ଥ ମାଲୁଦ ଦ୍ୱୀପରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଥିଲା ପଦ୍ମଚରଣ ମାନସିଂହ ଏବଂ ମାତାଙ୍କ ନାମ ସୁଭଦ୍ରା ଦେବୀ । ସେ ଜଣେ ଉତ୍ତମ ଛାତ୍ର ଥିଲେ ।

ରେଭେନ୍ସା କଲେଜରୁ ବି.ଏ. ପାଶ୍ କରି ମାନସିଂହ ପାଟଣା ବିଶ୍ୱବିଦ୍ୟାଳୟରେ ଇଂରେଜୀରେ ଏମ୍.ଏ. ପଢ଼ିଲେ । ଏମ୍.ଏ. ପାଶ୍ ପରେ ଡରହାମ ବିଶ୍ୱବିଦ୍ୟାଳୟରୁ କାଳିଦାସ ଏବଂ ସେକ୍ସପିଅରଙ୍କ ଉପରେ ତୁଳନାତ୍ମକ ନିବନ୍ଧ ପ୍ରସ୍ତୁତ କରି ସେ ପି.ଏଚ୍.ଡ଼ି. ଉପାଧି ଲାଭ କରିଥିଲେ । ଓଡ଼ିଶାର ଶିକ୍ଷା ବିଭାଗରେ ଶିକ୍ଷକ, ଅଧ୍ୟାପକ, ପରିଦର୍ଶକ, ନିର୍ଦ୍ଦେଶକ ଏବଂ କଲେଜର ଅଧ୍ୟକ୍ଷ ଭାବରେ ତାଙ୍କର କର୍ମମୟ ଜୀବନ ଅତିବାହିତ ହୋଇଥିଲା । ସେ ବହୁଦିନ ଧରି ରେଭେନ୍ସା କଲେଜରେ ଅଧ୍ୟାପନା କରିଥିଲେ ।

ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ଛାତ୍ରାବସ୍ଥାରୁ ଡଃ ମାନସିଂହ ଥିଲେ ସାହିତ୍ୟାନୁରାଗୀ । ମାଟ୍ରିକ ଶ୍ରେଣୀରେ ପଢ଼ିଲାବେଳେ ସେ ରଚନା କରିଥିଲେ ଜନ୍ମାଷ୍ଟମୀ, କୋଣାର୍କ ଓ ମା' । କଲେଜରେ ଅଧ୍ୟୟନ କରୁଥିବା ବେଳେ ତାଙ୍କର ବାରବାଟି, ଧୂପ, ହେମଶସ୍ୟ ଆଦି କବିତା ଗ୍ରନ୍ଥ ସୃଷ୍ଟି ହୋଇଥିଲା ।

ପରବର୍ତ୍ତୀ ସମୟରେ ହେମପୁଷ୍ପ, କମଳାୟନ, ଜୀବନଚିନ୍ତା, ମାଟିବାଣୀ, ବାପୁତର୍ପଣ, ନଷ୍ଟନୀଡ଼, ପଶ୍ଚିମ ପଥିକ, ଓଡ଼ିଆ ସମାଜ ଓ ଜୀବନ, ଓଡ଼ିଆ ସାହିତ୍ୟର ଇତିହାସ, ଶିକ୍ଷାବିତ୍‌ର ଗାଥା, ସରସ୍ୱତୀ ଫକୀର ମୋହନ, **Sage of Lord Jagannath**, History of Oriya Literature ଆଦି ପୁସ୍ତକ

ରଚନା କରିଥିଲେ । ଜଣେ କବି ଭାବରେ ୧୯୨୧ ମସିହାଠାରୁ ୧୯୩୪ ମସିହା ମଧ୍ୟରେ ତାଙ୍କ ପ୍ରତିଭାର ଚରମ ବିକାଶ ଘଟିଥିଲା ।

ସେ ସାହିତ୍ୟ, ସମାଜ, ଶିକ୍ଷା ଏବଂ ସଂସ୍କୃତି ଉପରେ ଅନେକ ପ୍ରବନ୍ଧ ରଚନା କରିଥିଲେ । ଜଣେ ନାଟ୍ୟକାର ଭାବରେ ରାଜକବି, ପୂଜାରିଣୀ, ଉପେକ୍ଷିତା, ଧୃଷ୍ଟିତା, ପ୍ରଭୃତି ନାଟିକା ତାଙ୍କର ରଚନା ମଧ୍ୟରେ ଅନ୍ତର୍ଭୁକ୍ତ । ସେ ଜଣେ ଜାତୀୟତାବାଦୀ ଏବଂ ରୋମାଣ୍ଟିକ୍ କବି ଭାବରେ ପ୍ରସିଦ୍ଧ । ଶଙ୍ଖ ଓ ଆରତି ନାମକ ଦୁଇଟି ଓଡ଼ିଆ ପତ୍ରିକାର ସମ୍ପାଦକ ଭାବରେ ଅନେକ ଦିନ ରହିଥିଲେ । "History ot O iya Literature" କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲା ।

ବିଦେଶ ଯାତ୍ରା ଅବକାଶରେ ତାଙ୍କର ଏକ ଭ୍ରମଣ କାହାଣୀ । ଏହିପରି ଏକ ମହାନ୍ ବ୍ୟକ୍ତିଙ୍କର ଅବସାନ ହେଲା ୧୯୭୩ ମସିହା ଅକ୍ଟୋବର ମାସ ୧୧ ତାରିଖରେ ।

## ମଧୁସୂଦନ ରାଓ :

ମଧୁସୂଦନ ରାଓ ଓଡ଼ିଶାରେ ଅତୁଳନୀୟ । ଭକ୍ତକବି ଭାବେ ସେ ସର୍ବତ୍ର ପରିଚିତ । ବ୍ୟକ୍ତିଗତ ଜୀବନରେ ସେ ଥିଲେ ରାଧାନାଥଙ୍କର ପ୍ରିୟଶିଷ୍ୟ । ୧୮୫୩ ମସିହା ଜାନୁୟାରୀ ମାସ ୨୯ ତାରିଖରେ ପୁରୀ ଜିଲ୍ଲାର ପଥୁରିଆ ସାହିରେ ମଧୁସୂଦନ ରାଓଙ୍କର ଜନ୍ମ । ଏଫ୍. ଏ. ପର୍ଯ୍ୟନ୍ତ ଶିକ୍ଷା ଲାଭ କରିସାରିବା ପରେ ସେ ଶିକ୍ଷା ବିଭାଗର ପରିଦର୍ଶକ ଭାବରେ କାର୍ଯ୍ୟରେ ଯୋଗ ଦେଲେ । କଲେଜରେ ପାଠ ପଢ଼ୁଥିବା ସମୟରେ ସେ ତାଙ୍କର ଘନିଷ୍ଠ ବନ୍ଧୁ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସହିତ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ ।

ମଧୁସୂଦନ ଥିଲେ ମୁଖ୍ୟତଃ ଜଣେ ଗୀତିକବି । ଓଡ଼ିଶାର ଶିକ୍ଷା ବିଭାଗ ସହିତ ତାଙ୍କର ଜୀବନବ୍ୟାପୀ ସମ୍ପର୍କ ରହିଥିବାରୁ ସେ ଓଡ଼ିଆ ପାଠ୍ୟପୁସ୍ତକର ଅଭାବ ମର୍ମେ ମର୍ମେ ଅନୁଭବ କରିଥିଲେ ଏବଂ ସେହି ଅଭାବ ଦୂର କରିବା ପାଇଁ ସେ ଅନେକ ପାଠ୍ୟପୁସ୍ତକ ରଚନା କଲେ । ଓଡ଼ିଆରେ ଭାଷାଜ୍ଞାନ ପରିଚୟ ପାଇଁ ତାଙ୍କ ରଚିତ ବର୍ଣ୍ଣବୋଧ ଓଡ଼ିଆ ଜାତି ପ୍ରତି ଏକ ଗଭୀର ଶ୍ରଦ୍ଧାଞ୍ଜଳୀ । ତାଙ୍କ ଦ୍ୱାରା ଲିଖିତ ଗ୍ରନ୍ଥମାଳା, କବିତାବଳୀ, ସାହିତ୍ୟ ପ୍ରସଙ୍ଗ, ସାହିତ୍ୟ କୁସୁମ ପ୍ରଭୃତି ସେତେବେଳେ ବହୁବର୍ଷ ପର୍ଯ୍ୟନ୍ତ ବିଦ୍ୟାଳୟରେ ପାଠ୍ୟପୁସ୍ତକ ରୂପେ ଗୃହୀତ ହୋଇଥିଲା । କଟକର ଭିକ୍ଟୋରିଆ ହାଇସ୍କୁଲର ସେ ଥିଲେ ପ୍ରତିଷ୍ଠାତା । ଯାହା ପରବର୍ତ୍ତୀ ସମୟରେ ତାଙ୍କ ନାମରେ (ଭକ୍ତମଧୁ ବିଦ୍ୟାପୀଠ) ନାମିତ ହୋଇଥିଲା ।

ମଧୁସୂଦନଙ୍କର ଜୀବନ ଥିଲା ଧର୍ମଭାବାଶ୍ରିତ । ପ୍ରଶାସନିକ ଦକ୍ଷତା ଓ ଉତ୍କୃଷ୍ଟ ସାହିତ୍ୟ ସୃଷ୍ଟି ପାଇଁ ଇଂରେଜ ସରକାର ତାଙ୍କୁ ରାୟ ବାହାଦୁର ଉପାଧିରେ ଭୂଷିତ

କରିଥିଲେ । ସେ ଥିଲେ ଯଥାର୍ଥରେ ଜଣେ ପ୍ରତିଭାସମ୍ପନ୍ନ ସାହିତ୍ୟିକ ଓ କବି । ବହୁ ନାଟକ ଓ କବିତା ଏବଂ ସଂସ୍କୃତ ନାଟକ ଉତ୍ତର ରାମଚରିତକୁ ସେ ଓଡ଼ିଆରେ ଅନୁବାଦ କରିଥିଲେ । ବସନ୍ତଗାଥା ଓ କୁସୁମାଞ୍ଜଳି ମଧୁସୂଦନଙ୍କର କାବ୍ୟିକ ପ୍ରତିଭାର ସର୍ବୋତ୍କୃଷ୍ଟ ପରିଚୟ । ଜୀବନଚିନ୍ତା, ଆକାଶପ୍ରତି, ଋଷିପ୍ରାଣେ ଦେବାବତରଣ ଏବଂ ହିମାଚଳେ ଉଦୟ ଉତ୍ସବ ପ୍ରଭୃତି କବିତାରେ ସେ ଜୀବନର ଚିରନ୍ତନ ସତ୍ୟ ଏବଂ ମାନବ ପ୍ରାଣରେ ଦେବତ୍ୱର ସନ୍ଧାନ କରିଛନ୍ତି । ଜଣେ ଶିଶୁସାହିତ୍ୟିକ ଭାବରେ ସେ ଶିଶୁବୋଧ ରାମାୟଣ ଓ ମହାଭାରତର ରଚୟିତା ।

ତାଙ୍କର ସ୍ତବ ଏବଂ ପ୍ରାର୍ଥନା ଅତ୍ୟନ୍ତ ପ୍ରାଣସ୍ପର୍ଶୀ ଓ ଉଚ୍ଚକୋଟୀର । ୧୯୧୨ ମସିହା ଡିସେମ୍ବର ମାସ ୨୮ ତାରିଖରେ ସେ ଇହଲୀଳା ସାଙ୍ଗ କରିଥିଲେ ।

## ମଧୁସୂଦନ ଦାସ :

ମଧୁସୂଦନ ଦାସ ୧୮୪୮ ମସିହାରେ କଟକ ଜିଲ୍ଲାର ସତ୍ୟଭାମାପୁରରେ ଜନ୍ମ ଗ୍ରହଣ କରିଥିଲେ । ଓଡ଼ିଶାରେ ସେ ମଧୁବାରିଷ୍ଟର ଏବଂ କୁଳବୃଦ୍ଧ ମଧୁସୂଦନ ନାମରେ ପରିଚିତ । ଓଡ଼ିଶାବାସୀଙ୍କ ପାଇଁ ତାଙ୍କର ଅପରିସୀମ ତ୍ୟାଗଯୋଗୁ ତାଙ୍କୁ ଯଥାର୍ଥରେ ଉତ୍କଳଗୌରବ ଆଖ୍ୟା ପ୍ରଦତ୍ତ ହୋଇଛି । ମଧୁସୂଦନ କଟକରେ କେବଳ ମାଟ୍ରିକ୍ ପାଶ୍ କରିଥିଲେ କିନ୍ତୁ ପରବର୍ତ୍ତୀ ଶିକ୍ଷା ତାଙ୍କର କଲିକତାରେ । କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍. ଏ. ପାଶ୍ କରି ସେ ବାଲେଶ୍ୱରରେ ଶିକ୍ଷକତା କଲେ ।

କଲିକତାରେ ତାଙ୍କର ଧର୍ମାନ୍ତର ହେଲା । ଫଳରେ ସେ ହେଲେ ଖ୍ରୀଷ୍ଟଧର୍ମାବଲମ୍ବୀ । ଶିକ୍ଷକତା ପରେ ବି. ଏଲ୍. ପାଶ୍ କରି ମଧୁସୂଦନ କଲିକତାରେ ଓକିଲାତି କଲେ । ସେ ଯଥାର୍ଥରେ ଥିଲେ ଉତ୍କଳ ସମ୍ମିଳନୀର ପ୍ରାଣପ୍ରତିଷ୍ଠାତା । ଓଡ଼ିଶାରେ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଉତ୍କଳ ସମ୍ମିଳନୀର ଭୂମିକା ଥିଲା ଉଲ୍ଲେଖଯୋଗ୍ୟ । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଏହାର ବିଭିନ୍ନ ଅଧିବେଶନ ଅନୁଷ୍ଠିତ ହୋଇ ବିଭିନ୍ନ କାର୍ଯ୍ୟପନ୍ଥା ସ୍ଥିର କରାଯାଉଥିଲା । ୧୯୨୧ ମସିହାରେ ମଧୁବାବୁ ବିହାର-ଓଡ଼ିଶା ମନ୍ତ୍ରୀ ରୂପେ ନିଯୁକ୍ତି ପାଇଲେ କିନ୍ତୁ ଏକ ବିଶିଷ୍ଟ କାରଣରୁ ସେ ଏଥିରୁ ଇସ୍ତଫା ଦେଇଥିଲେ । ଓଡ଼ିଆମାନଙ୍କର ସମୃଦ୍ଧି ଏବଂ ଓଡ଼ିଶୀ ଦ୍ରବ୍ୟର ବିକାଶ ପାଇଁ ସେ ଉତ୍କଳ ଟ୍ୟାନେରୀ ନାମକ ଏକ ଯୋତା କାରଖାନା ଚଳାଇଥିଲେ ।

ବାରିଷ୍ଟରୀ ପଢ଼ିବା ପାଇଁ ମଧୁବାବୁ ଇଂଲଣ୍ଡ ଯାଇଥିଲେ କିନ୍ତୁ ଦୁର୍ଭାଗ୍ୟକ୍ରମେ ଏହି ପାଠର ପରିସମାପ୍ତି ହୋଇପାରିନଥିଲା । ସେ ଥିଲେ ଜଣେ ବାଗ୍ମୀ, ନେତା ଏବଂ ଅସାଧାରଣ ପ୍ରତିଭାସମ୍ପନ୍ନ ବ୍ୟକ୍ତି । ତାଙ୍କର ସମସ୍ତ ଅର୍ଥକୁ ସେ ଦରିଦ୍ରମାନଙ୍କୁ ଦାନ କରି ଦେଇଥିଲେ । ବ୍ରିଟିଶ ସରକାର ତାଙ୍କୁ ସି. ଆଇ. ଇ. ଉପାଧିରେ ଭୂଷିତ କରିଥିଲେ । ସେ ସାରା ଭାରତର କଂଗ୍ରେସ କମିଟିରେ ସକ୍ରିୟ ସଭ୍ୟ ଥିଲେ ମଧ୍ୟ ନୀତିର ବ୍ୟତିକ୍ରମ ଦୃଷ୍ଟିରୁ ଏଥିରୁ ଇସ୍ତଫା ଦେଇଥିଲେ । ୧୯୩୪ ମସିହା ଫେବ୍ରୁୟାରୀ ମାସ

୪ ତାରିଖ ଦିନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେବାର ଦୁଇବର୍ଷ ପୂର୍ବରୁ ତାଙ୍କର ଜୀବନଦୀପ ନିର୍ବାପିତ ହେଲା ।

## ମହାତ୍ମା ବାଲୁ :

ମହାତ୍ମା ବାଲୁଙ୍କ ବିଷୟରେ ବିଶେଷ କିଛି ତଥ୍ୟ ପରିଦୃଷ୍ଟ ହୁଏନାହିଁ । ସେ ଜଣେ ବିଶିଷ୍ଟ ସମାଜସେବକ ଥିଲେ ଏବଂ ବହୁ ଜନହିତକର କାର୍ଯ୍ୟରେ ନିଜକୁ ନିୟୋଜିତ କରୁଥିଲେ । ତାଙ୍କର ମହାନ୍ ବ୍ୟକ୍ତିତ୍ୱର ସ୍ମାରକୀ ସ୍ୱରୂପ କଟକର ବାଲୁବଜାର ନାମିତ ହୋଇଛି ।

## ମଞ୍ଜୁନାଥ ଚୌଧୁରୀ :

ମଞ୍ଜୁନାଥ ଚୌଧୁରୀଙ୍କ ନାମରେ ଚୌଧୁରୀବଜାର ନାମିତ ଅଛି । ମରହଟ୍ଟା ସମୟରୁ ଏହି ବଜାରର ସୃଷ୍ଟି । ଏହିଠାରେ ସେ ମଧ୍ୟ ଗୋଟିଏ ଜୈନମନ୍ଦିର ନିର୍ମାଣ କରିଥିଲେ । ସେ ଜଣେ ବିଶିଷ୍ଟ କବି ଥିବା ପ୍ରସଙ୍ଗ ଡଃ ମାୟାଧର ମାନସିଂହ ଏବଂ ଶାନ୍ତିଭୂଷଣ ରାୟ ପ୍ରମୁଖ ମତବ୍ୟକ୍ତ କରନ୍ତି ।

## ମହେନ୍ଦ୍ର କୁମାର ରାଉତ :

କଟକର ବରିଷ୍ଠ ବ୍ୟକ୍ତିତ୍ୱମାନଙ୍କ ମଧ୍ୟରୁ ଡଃ ମହେନ୍ଦ୍ର କୁମାର ରାଉତ ଅନ୍ୟତମ । ୧୯୨୪ ମସିହା ଜାନୁଆରୀ ମାସ ୪ ତାରିଖରେ ଜନ୍ମ ହୋଇ ଡଃ ରାଉତ ୧୯୯୦ ମସିହା ଫେବୃୟାରୀ ମାସ ୭ ତାରିଖରେ ଇହଲୀଳା ସାଙ୍ଗ କରିଥିଲେ । ସେ ରେଭେନ୍‌ସା କଲେଜରୁ ବି. ଏସ୍. ସି. ପାଶ୍ କରି ପାଟଣା ବିଶ୍ୱବିଦ୍ୟାଳୟରୁ ରସାୟନ ବିଭାଗରେ ସ୍ନାତକୋତ୍ତର ଉପାଧି ଲାଭ କଲେ । ତାଙ୍କର ପ୍ରଥମ ନିଯୁକ୍ତି ହୋଇଥିଲା ରେଭେନ୍‌ସା କଲେଜର ରସାୟନ ବିଭାଗର ଅଧ୍ୟାପକ ଭାବରେ । ସେ ଜଣେ ବିଶିଷ୍ଟ ଶିକ୍ଷାବିତ୍ ଏବଂ ବୈଜ୍ଞାନିକ ରୂପେ ପ୍ରସିଦ୍ଧି ଲାଭ କରିଥିଲେ ।

୧୯୫୨ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି. ଏଚ୍. ଡି. ଏବଂ ୧୯୫୯ ମସିହାରେ ଡି. ଏସ୍.ସି. ଉପାଧି ପାଇଥିଲେ । ବିଜ୍ଞାନରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡି. ଏସ୍.ସି. ଉପାଧି ଲାଭ କରିବାରେ ସେ ଥିଲେ ସର୍ବପ୍ରଥମ । ସେ ରେଭେନ୍‌ସା କଲେଜର ରିଡ଼ର ଓ ପ୍ରଫେସର ପଦବୀକୁ ଉନ୍ନୀତ ହୋଇଥିଲେ । ସମ୍ବଲପୁରର ଗଙ୍ଗାଧର ମେହେର କଲେଜ ଏବଂ ଖଲ୍ଲିକୋଟ କଲେଜ ବ୍ରହ୍ମପୁରର ଜଣେ ଦକ୍ଷ ଅଧ୍ୟକ୍ଷ ଭାବରେ ମଧ୍ୟ କାର୍ଯ୍ୟ କରିଥିଲେ । ଏତଦ୍‌ବ୍ୟତୀତ ଜଣେ ବିଶିଷ୍ଟ ଶିକ୍ଷାବିତ୍‌ଭାବେ ଡଃ ରାଉତ ଉଚ୍ଚଶିକ୍ଷା ନିର୍ଦ୍ଦେଶକ, ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଏବଂ ଜନସଂଖ୍ୟା ନିୟନ୍ତ୍ରଣ ବୋର୍ଡ଼ର ଚେୟାରମ୍ୟାନ ହୋଇଥିଲେ । ସେ ଜଣେ ପ୍ରସିଦ୍ଧ ଗବେଷକ ଏବଂ ବହୁ ଛାତ୍ର ତାଙ୍କ ନିକଟରୁ ଗବେଷଣା କରି ସମ୍ମାନ ଲାଭ କରିଅଛନ୍ତି । ଭାରତର ବିଭିନ୍ନ ଗବେଷଣା ପତ୍ର ପତ୍ରିକାରେ ତାଙ୍କର ୨୦୦ରୁ ଊର୍ଦ୍ଧ୍ୱ

ପଥରେ ପ୍ରକାଶିତ ହୋଇଛି । ସେ ଜଣେ ଗୁଣାନୁରାଗୀ ବ୍ୟକ୍ତିଙ୍କ ରୂପେ ବେଶ୍ ଜଣାଶୁଣା ।

## ମହେନ୍ଦ୍ର ଚନ୍ଦ୍ର ମିଶ୍ର :

୧୯୦୯ ମସିହାରେ ମହେନ୍ଦ୍ର ଚନ୍ଦ୍ର ମିଶ୍ର ତାଳଚେରରେ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଦାମୋଦର ମିଶ୍ର ଓ ମାତାଙ୍କ ନାମ ମଞ୍ଜୁଶ୍ରୀ ଦେବୀ । ସେ କଟକରେ ଉଚ୍ଚଶିକ୍ଷା ଲାଭ କରିଥିଲେ । ରେଭେନ୍ସା କଲେଜିଏଟ୍ ସ୍କୁଲ୍ରୁ ମାଟ୍ରିକ ପାଶ୍ କରି ସେ ରେଭେନ୍ସା କଲେଜରେ ଆଇ. ଏସ୍.ସି. ପଢ଼ିଲେ । ପରେ ଏମ୍. ବି. ବି. ଏସ୍. ପାଶ୍ କରି ସେ ଡାକ୍ତର ଭାବରେ କଟକରେ ନିଯୁକ୍ତି ପାଇଲେ ।

ଦୋଳମୁଣ୍ଡାଇରେ ଥିବା ତାଙ୍କ ସ୍ଥାୟୀ ଗୃହରେ ସେ ରହୁଥିଲେ । ଜଣେ ବିଶିଷ୍ଟ ଚକ୍ଷୁ ବିଶେଷଜ୍ଞ ଭାବରେ ସେ ପରିଚିତ । ନୂଆପଡ଼ା ଏବଂ ସମ୍ବଲପୁରରେ ମଧ୍ୟ ଡଃ ମିଶ୍ର କାର୍ଯ୍ୟ କରିଥିଲେ । ପରେ ଚକ୍ଷୁ ବିଷୟରେ ଉଚ୍ଚ ଶିକ୍ଷାପାଇଁ ସେ ଇଂଲଣ୍ଡ ଯାଇଥିଲେ । କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜର ସୁପରିଣ୍ଟେଣ୍ଡେଣ୍ଟ ଏବଂ ସର୍ବଭାରତୀୟ ଚକ୍ଷୁ ବିଶେଷଜ୍ଞ ହିସାବରେ ସୁପରିଚିତ ଥିଲେ । ବହୁ ଶିକ୍ଷାନୁଷ୍ଠାନ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ୧୯୮୨ ମସିହା ଫେବୃୟାରୀ ମାସ ୬ ତାରିଖରେ ତାଙ୍କର ଦେହାନ୍ତ ହେଲା ।

## ମୋହିନୀ ମୋହନ ସେନାପତି :

ଓଡ଼ିଆ ଜାତିର କର୍ଣ୍ଣଧାର ରାୟ ବାହାଦୁର ଫକୀରମୋହନ ସେନାପତିଙ୍କ ପୁଅ ମୋହିନୀ ମୋହନ ୧୮୮୧ ମସିହାରେ ବାଲେଶ୍ୱରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ମୃତ୍ୟୁ ହୋଇଥିଲା ୧୯୪୫ ମସିହାରେ । ସେ ରେଭେନ୍ସା କଲେଜର ଦର୍ଶନ ବିଭାଗର ମୁଖ୍ୟଭାବରେ ଅଧ୍ୟାପନ କରିଥିଲେ ସତ କିନ୍ତୁ ଧର୍ମ ଧାରଣା ଠାରୁ ବହୁତ ଦୂରରେ ଥିଲେ । ଦେବଦେବୀ ପୂଜାକୁ ଅନ୍ଧବିଶ୍ୱାସ ବୋଲି ମତ ଦେଇ ସେ ଘୋର ବିରୋଧ କରୁଥିଲେ । ସେ ଥିଲେ ଜଣେ ଖ୍ୟାତନାମା ପ୍ରାବନ୍ଧିକ । କାହାରି ନିନ୍ଦା ପ୍ରଶଂସା ପ୍ରତି ଭ୍ରୂକ୍ଷେପ ନକରି ସେ ନିଜର ସ୍ପଷ୍ଟ ମତ ବ୍ୟକ୍ତ କରୁଥିଲେ ।

## ମଣି ସାହୁ :

ମଣି ସାହୁ ୧୮୯୧ ମସିହା ଡିସେମ୍ବର ମାସ ୧୧ତାରିଖରେ ଗୋଟିଏ ଖ୍ୟାତନାମା ବ୍ୟବସାୟୀ ପରିବାରରେ ଜନ୍ମ ହୋଇଥିଲେ । ତାଙ୍କର ବ୍ୟାବସାୟିକ ପ୍ରତିଭାର ସ୍ମାରକୀ ସ୍ୱରୂପ ମଣିସାହୁ ଛକ ନାମିତ ହୋଇଛି । ସେ ଜଣେ ପରୋପକାରୀ ବଦାନ୍ୟ ବ୍ୟକ୍ତିଥିଲେ । ଜାତି, ଧର୍ମ, ବର୍ଣ୍ଣ, ଧନୀ, ଦରିଦ୍ର, ନିର୍ବିଶେଷରେ ସମସ୍ତଙ୍କୁ ସାହାଯ୍ୟ କରିବା ତାଙ୍କର ପ୍ରଧାନ କର୍ତ୍ତବ୍ୟ ଥିଲା । ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସାହାଯ୍ୟ କରିବାରେ ତାଙ୍କ ମନରେ ଭରି ଯାଉଥିଲା ଅସୀମଶାନ୍ତି ଓ ସନ୍ତୋଷ । ଅନେକ ସାଂସ୍କୃତିକ ସଂସ୍ଥା, ଯାତ୍ରାପାର୍ଟି ତଥା ମନ୍ଦିର ଓ ଧର୍ମଶାଳା ନିର୍ମାଣରେ ସେ ଅଜସ୍ର ଅର୍ଥ

ଦାନ ଦେଉଥିଲେ । ତାଙ୍କର ମଣିଚରଣ ସାରଳା ଏକାଡେମୀର ସେ ପ୍ରତିଷ୍ଠାତା । କଟକ ମୁନସିପାଲିଟିର କାଉନସିଲର ଭାବରେ ତିରିଶ ବର୍ଷରୁ ଊର୍ଦ୍ଧ୍ୱ କାଳ କାର୍ଯ୍ୟ କରିଥିଲେ । ୧୯୪୭ ମସିହା ଅଗଷ୍ଟ ମାସ ୧୮ତାରିଖରେ ତାଙ୍କର ଦେହାନ୍ତ ହେଲା ।

## ମହମ୍ମଦ ୟୁସୁଫ୍ ହାସନ :

ଗୋଟିଏ ଜମିଦାର ପରିବାରରେ କଟକର ଓଡ଼ିଆ ବଜାରରେ ୧୮୯୫ ମସିହା ଅଗଷ୍ଟ ମାସ ୧୨ତାରିଖରେ ୟୁସୁଫ୍ ହାସନଙ୍କର ଜନ୍ମ । କଟକର ସବୁସ୍ଥାନରେ ସେ ୟୁସୁଫ୍ ସାହେବ ନାମରେ ପରିଚିତ । ସେ ରେଭେନ୍ସା କଲେଜ ଏବଂ ଆଲିଗଡ଼ ବିଶ୍ୱବିଦ୍ୟାଳୟରୁ ଶିକ୍ଷାଲାଭ କରିଥିଲେ । ଗଞ୍ଜାମରେ ଥିବା ଭାରତ ରାସାୟନିକ ଲବଣ ଶିଳ୍ପର ସେ ପ୍ରତିଷ୍ଠାତା ।

ସେ ବିଧାନସଭାର ସଦସ୍ୟ ଥିଲେ ଏବଂ ଫରୱାର୍ଡ ବ୍ଲକ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ହାଇଦ୍ରାବାଦ ନିଜାମ ଭାରତ ବିରୋଧୀ ଥିବାରୁ ସେ ତାଙ୍କୁ ସମାଲୋଚନା କରିଥିଲେ । ସୟଦ ସେମିନାରି ତାଙ୍କର ଦାନରେ ପ୍ରତିଷ୍ଠା ହୋଇଥିଲା । ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ପରିବାର ସହିତ ହାସନଙ୍କର ଘନିଷ୍ଠ ସମ୍ପର୍କ ଥିଲା । ହିନ୍ଦୁ ଓ ମୁସଲମାନଙ୍କୁ ସେ ସମାନ ଦୃଷ୍ଟିରେ ଦେଖୁଥିଲେ । ୧୯୪୭ ମସିହା ଅଗଷ୍ଟ ମାସ ୧୮ ତାରିଖରେ ସେ ସ୍ୱର୍ଗାରୋହଣ କଲେ ।

## ମହେନ୍ଦ୍ର ନାଥ ଭୂୟାଁ :

ମହେନ୍ଦ୍ର ନାଥ ଭୂୟାଁ ଓଡ଼ିଶାର ଜଣେ ଖ୍ୟାତନାମା ଇଂଜିନିୟର ଥିଲେ । ଜଳସେଚନ ଏବଂ ନିର୍ମାଣ କାର୍ଯ୍ୟ ଇତ୍ୟାଦିରେ ତାଙ୍କର ପ୍ରଗାଢ଼ ଜ୍ଞାନ ଥିଲା । ୧୯୦୩ ମସିହା ଅଗଷ୍ଟମାସ ୩ ତାରିଖରେ ସେ ଜନ୍ମ ହୋଇଥିଲେ । ଛାତ୍ରାବସ୍ଥାରୁ ସେ ଥିଲେ ବିପ୍ଳବୀ । କଲିକତାର ମେଡ଼ିକାଲ ସ୍କୁଲରେ ପଢ଼ୁଥିବା ବେଳେ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗଦେଇ ମହେନ୍ଦ୍ର ନାଥ ସ୍କୁଲରୁ ବିତାଡ଼ିତ ହୋଇଥିଲେ ।

୧୯୨୮ ମସିହାରେ ସେ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଇଂଜିନିୟରିଂରେ ସ୍ନାତକ ଉପାଧି ଲାଭ କଲେ । ଏହା ପୂର୍ବରୁ କଲିକତା ବିଶ୍ୱବିଦ୍ୟାଳୟରୁ ରସାୟନ ବିଜ୍ଞାନ ଅନର୍ସ ସହିତ ବି.ଏସ୍.ସି. ପାଶ୍ କରିଥିଲେ । ୧୯୩୦ ମସିହାରେ ମହେନ୍ଦ୍ର ନାଥ ଭାରତକୁ ପ୍ରତ୍ୟାବର୍ତ୍ତନ କରି ବିହାର ଓଡ଼ିଶାର ସ୍ୱାସ୍ଥ୍ୟ ବିଭାଗରେ ଯୋଗ ଦେଲେ ।

ଜଣେ ଦକ୍ଷ-ଇଞ୍ଜିନିୟର ଭାବରେ ସେ ବହୁ ନିର୍ମାଣ କାର୍ଯ୍ୟ ହାତକୁ ନେଇଥିଲେ । ବୈତରଣୀର ଆନିକଟ ବନ୍ଧ ଜଳସେଚନ ଯୋଜନା ଏବଂ ନରାଜ ଓ ବିରୂପା ଆନିକଟର ପୁନଃ ନିର୍ମାଣ ତାଙ୍କର କୃତି । ୧୯୫୧ ମସିହାରେ ସେ କଳିଙ୍ଗ ପାଇଥିଲେ । ୧୯୫୬ ମସିହା ଅଗଷ୍ଟ ମାସ ୨୮ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ମଧୁସୂଦନ ମହାନ୍ତି :

ମଧୁସୂଦନ ମହାନ୍ତି ୧୯୦୩ ମସିହାରେ ଜନ୍ମ ହୋଇ ୧୯୮୧ ମସିହାରେ ମୃତ୍ୟୁ ବରଣ କରିଥିଲେ । ଜଣେ ନାମଜାଦା ଓକିଲ ଏବଂ ସ୍ୱାଧୀନଚେତା ସାମ୍ବାଦିକ ଭାବରେ ସେ ସୁପରିଚିତ । ଜଣେ ଲେଖକ ଭାବେ ସେ ଅନେକ ପୁସ୍ତକର ରଚୟିତା । ତାଙ୍କର ପୁସ୍ତକମାନଙ୍କ ମଧ୍ୟରେ ମାର୍କସବାଦ ଓ ଗାନ୍ଧିବାଦ, ଛତିଶରୁ ଛପନ, ଦେଖିଲି ଦେଖିଲା ପରି, ତଦନ୍ତ କମିଶନ, ବଥ ନା ଆଉ, ଅଜାଗାର ଘା' ଇତ୍ୟାଦି ପ୍ରଧାନ । ଓଡ଼ିଶା ଡେମୋକ୍ରାଟିକ୍ ପାର୍ଟିର ସେ ପ୍ରତିଷ୍ଠାତା । ସେ ଜଣେ ବିପ୍ଳବୀ ଥିଲେ ଏବଂ ବିପ୍ଳବୀ ଏମ୍.ଏନ୍. ରାୟଙ୍କ ସହିତ ତାଙ୍କର ନିବିଡ଼ ସମ୍ପର୍କ ଥିଲା । ୧୯୬୪ ମସିହାର ଛାତ୍ର ଆନ୍ଦୋଳନରେ ସେ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲେ ।

## ମୋତିଲାଲ ପଣ୍ଡିତ :

ମୋତିଲାଲ ପଣ୍ଡିତ ଗୋଟିଏ ଜମିଦାର ପରିବାରରେ ଜନ୍ମଲାଭ କରିଥିଲେ । କଟକର ଗୃହଦମାଗେଟୀକରେ ତାଙ୍କର ସ୍ଥାୟୀ ଗୃହ ଥିଲା । ସେ ପି. ଏସ୍. ସି. ସଭ୍ୟ ଓ ଚେୟାରମ୍ୟାନ ଥିଲେ । ବହୁ ସାହିତ୍ୟିକ ଏବଂ ସାମାଜିକ ସଂସ୍ଥା ସହିତ ତାଙ୍କର ନିବିଡ଼ ସମ୍ପର୍କ ଥିଲା । ଭାରତର ଜାତୀୟ କଂଗ୍ରେସର ସେ ଜଣେ ସକ୍ରିୟ ସଭ୍ୟ ଥିଲେ ।

## ମୋହନ ସୁନ୍ଦର ଦେବ ଗୋସ୍ୱାମୀ :

ଶ୍ରୀ ଗୋସ୍ୱାମୀ ୧୮୯୨ ମସିହାରେ ପୁରୀ ଜିଲ୍ଲାରେ ଜନ୍ମ ହୋଇଥିଲେ ସତ, କିନ୍ତୁ କଟକ ଥିଲା ତାଙ୍କର ପ୍ରଧାନ କର୍ମକ୍ଷେତ୍ର । ଓଡ଼ିଆ ରଙ୍ଗମଞ୍ଚ ଏବଂ ସଙ୍ଗୀତରେ ତାଙ୍କର ବେଶ୍ ଦକ୍ଷତା ଥିଲା । ସେ ଗୋପାଳକୃଷ୍ଣଙ୍କର ରାଧାକୃଷ୍ଣ ଲୀଳା, ବନମାଳୀ ଓ ଅଭିମନ୍ୟୁଙ୍କର ପ୍ରାଚୀନ ଗୀତକୁ ଅଭିନୟ ସମୟରେ ଗାଉଥିଲେ । ତାଙ୍କ ଉଦ୍ୟମରେ ଓଡ଼ିଆ ଚଳଚ୍ଚିତ୍ର ସୀତା ବିବାହ ସମ୍ଭବ ହୋଇପାରିଥିଲା ଓ ମୋହନସୁନ୍ଦର ଦେବ ଓଡ଼ିଶାରେ ଚହଳ ପକାଇ ଦେଇଥିଲେ ତାଙ୍କର ମାନଭଞ୍ଜନ, ଆନନ୍ଦ ବୃନ୍ଦାବନ, ଶ୍ରୀରାଧା ପ୍ରେମାମୃତ, ଶରଦ ରାସ, ଚମ୍ପୂ ପ୍ରଭୃତି ରଚନାଗୁଡ଼ିକ ପାଇଁ । ଓଡ଼ିଶାର ରଙ୍ଗମଞ୍ଚ-ମାନଙ୍କରେ ଉକ୍ତ ନାଟଗୁଡ଼ିକ ଅଭିନୀତ ହୋଇ ବେଶ୍ ଲୋକପ୍ରିୟତା ଅର୍ଜନ କରିଥିଲା ।

## ମନମୋହିନୀ ଦେବୀ :

କଟକରେ ନାରୀ ପ୍ରତିଭାମାନଙ୍କ ମଧ୍ୟରୁ ମନମୋହିନୀ ଦେବୀ ଅନ୍ୟତମା । ସେ ୧୯୦୮ ମସିହାରେ କଟକରେ ଜନ୍ମ ହୋଇ ୧୯୯୦ ମସିହାରେ ସ୍ୱର୍ଗାରୋହଣ କଲେ । ଜଣେ ନାରୀକବି ଭାବେ ସେ ଝରଣା, କୁମାରୀ ଗୀତିକା ଏବଂ ଅର୍ଚ୍ଚାବଳୀ ପ୍ରଭୃତିର ରଚୟିତ୍ରୀ । ତାଙ୍କର ସାହିତ୍ୟ କୃତିପାଇଁ ସେ ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ ।

## ମାଗୁଣି ଚରଣ କାନୁନ୍‌ଗୋ :

ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ମାଗୁଣି କାନୁନ୍‌ଗୋ ୧୮୮୯ ମସିହାରେ କଟକ ଜିଲ୍ଲା ଜଗତ୍‌ସିଂହପୁର ଅନ୍ତର୍ଗତ ବାଡ଼ାଲା ଗ୍ରାମରେ ଜନ୍ମ ହୋଇଥିଲେ । ୧୯୩୦ ମସିହାରେ ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ ସେ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେଇଥିଲେ । ୧୯୪୩ ମସିହାରେ ସେ ରାଜନୈତିକ ବନ୍ଦୀରୂପେ କଟକ ଓ ବ୍ରହ୍ମପୁର ଜେଲ୍‌ରେ ରହି ୧୯୪୭ ମସିହାରେ କାରାମୁକ୍ତ ହେଲେ । ଦୀର୍ଘ ୩୦ ବର୍ଷ ଧରି ସେ କଟକ ସ୍ୱରାଜ ଆଶ୍ରମର ତତ୍ତ୍ୱାବଧାରକ ଥିଲେ । ବହୁ ଗରିବ ଲୋକଙ୍କୁ ସେ ସାହାଯ୍ୟ କରୁଥିଲେ । ୧୯୯୨ ମସିହା ମଇମାସରେ ତାଙ୍କର ମୃତ୍ୟୁ ହେଲା ।

## ରାଧାନାଥ ରାୟ :

ରାଧାନାଥ ରାୟ ୧୮୪୮ ମସିହା ସେପ୍‌ଟେମ୍ବର ମାସ ୨୮ ତାରିଖରେ ବାଲେଶ୍ୱର ଜିଲ୍ଲା ସୋରୋ ନିକଟବର୍ତ୍ତୀ କେଦାରପୁର ଗ୍ରାମରେ ଏକ ବଙ୍ଗୀୟ କାୟସ୍ଥ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ସୁନ୍ଦର ନାରାୟଣ ଥିଲେ ବାଲେଶ୍ୱର କଲେକ୍ଟରିଏଟ୍‌ର ସଦର କାନୁନ୍‌ଗୋ । ରାଧାନାଥ ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ରୁ ଏଣ୍ଟ୍ରାନ୍‌ସ ପାଶ୍‌କରି ଏଫ୍. ଏ. ପଢ଼ିବା ପାଇଁ ୧୮୬୪ ମସିହାରେ କଲିକତାର ପ୍ରେସିଡେନ୍‌ସି କଲେଜରେ ନାମ ଲେଖାଇଲେ ।

କଲିକତାର ଜଳବାୟୁ ତାଙ୍କର ସ୍ୱାସ୍ଥ୍ୟ ପ୍ରତି ଅନୁକୂଳ ନ ହେବାରୁ ସେ ପାଠ-ପଢ଼ା ସହ କଲିକତା ତ୍ୟାଗକରି ଘରକୁ ଫେରି ଆସିଥିଲେ । ଗ୍ରାମରେ କିଛିଦିନ ରହିବା ପରେ ୧୮୬୪ ମସିହା ମଇମାସ ୧ ତାରିଖରେ ମାତ୍ର ୧୬ ବର୍ଷ ବୟସରେ ମାସିକ ୩୦ ଟଙ୍କା ବେତନରେ ବାଲେଶ୍ୱର ଜିଲ୍ଲା ସ୍କୁଲର ତୃତୀୟ ଶିକ୍ଷକ ପଦରେ ନିଯୁକ୍ତ ପାଇଲେ । ବାଲେଶ୍ୱରରେ ପାଞ୍ଚବର୍ଷ ଶିକ୍ଷକତା କଲାପରେ ତାଙ୍କର ପୁରୀ ଜିଲ୍ଲା ସ୍କୁଲକୁ ଦ୍ୱିତୀୟ ଶିକ୍ଷକଭାବେ ବଦଳି ହେଲା ଏବଂ ସେଠାରେ ସେ ଏଫ୍. ଏ. ପରୀକ୍ଷା ପାଶ୍ କରିଥିଲେ । ପରେ ରାଧାନାଥ ଶିକ୍ଷା ବିଭାଗର ଡେପୁଟୀ ଇନସପେକ୍ଟର, ଜଏଣ୍ଟ ଇନସପେକ୍ଟର ହୋଇ ୧୯୦୧ ମସିହାରେ ଶିକ୍ଷା ବିଭାଗର ଉଚ୍ଚତମ ଆସନକୁ ଉନ୍ନୀତ ହୋଇଥିଲେ । ଜଏଣ୍ଟ ଇନସପେକ୍ଟର ଥିବା ସମୟରେ ରାଧାନାଥ ଅନେକଥର କଟକ ଆସିଥିଲେ । ରାଧାନାଥ ବଙ୍ଗାଳୀ ଥିବାରୁ ବଙ୍ଗଳା ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା ।

ନିଜର ବ୍ୟକ୍ତିଗତ ଉଦ୍ୟମରେ ସେ ଇଂରାଜୀ, ଗ୍ରୀକ, ସଂସ୍କୃତ, ହିନ୍ଦୀ ପ୍ରଭୃତି ସହିତ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବିପୁଳ ପାଣ୍ଡିତ୍ୟ ଅର୍ଜନ କରିଥିଲେ । କଟକ ଜିଲ୍ଲା ଝଙ୍କଡ଼ର ଜନୈକ ବିଜ୍ଞ ବ୍ୟକ୍ତିଙ୍କ ସାହାଯ୍ୟରେ ସେ ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ପ୍ରଭୃତି ବିଖ୍ୟାତ କବିମାନଙ୍କର କାବ୍ୟଗୁଡ଼ିକ ପାଠ କରିଥିଲେ । ଯୌବନରେ ପିତା ସୁନ୍ଦରନାରାୟଣଙ୍କ ସହିତ ସେ ଭାରତର ବହୁ ଦର୍ଶନୀୟ ସ୍ଥାନ ଭ୍ରମଣରେ ଯାଇଥିଲେ । ଓଡ଼ିଶାର ବହୁ ସ୍ଥାନକୁ ଯିବାର ସୁଯୋଗ ତାଙ୍କ ଭାଗ୍ୟରେ ଅନେକବାର ଘଟିଥିଲା ।

ସେ ଜଣେ ବିଶିଷ୍ଟ ସାହିତ୍ୟିକ ଥିଲେ । ତାଙ୍କୁ ଆଧୁନିକ ଓଡ଼ିଆ ସାହିତ୍ୟର ଜନକ ବା ସ୍ରଷ୍ଟା ଭାବରେ ସମ୍ମାନିତ କରାଯାଇଥାଏ । ତାଙ୍କ ସାହିତ୍ୟ ସୃଷ୍ଟିର ପରିଚୟ ହେଉଛି ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନ । ସେ ଖୁବ୍ କମ୍ ବୟସରୁ କବିତା ଲେଖା ଆରମ୍ଭ କରିଥିଲେ । କବିତାବଳୀର ପ୍ରଥମ ଭାଗ (୧୮୭୮), ଦ୍ୱିତୀୟ ଭାଗ (୧୮୭୨) ଏବଂ ଲେଖାବଳୀ (ବଙ୍ଗଳା ୧୮୭୯) ରାଧାନାଥଙ୍କର ପ୍ରାଥମିକ ରଚନା ଭାବରେ ଗୃହୀତ । ଏତଦ୍‌ବ୍ୟତୀତ କେଦାରଗୌରୀ (୧୮୮୭) ଚନ୍ଦ୍ରଭାଗା (୧୮୮୬) ନନ୍ଦିକେଶରୀ (୧୮୮୭) ଉଷା (୧୮୮୮) ପାର୍ବତୀ (୧୮୯୦) ଚିଲିକା (୧୮୯୧) ମହାଯାତ୍ରା (୧୮୯୨) କବି ରାଧାନାଥଙ୍କର ମହାନ କୃତିର ପରିଚୟ ଦିଏ । ମହାଯାତ୍ରା ଯଥାର୍ଥରେ ହେଉଛି ରାଧାନାଥ ସାହିତ୍ୟର ଜୟଯାତ୍ରା । ସଂସ୍କୃତ କବି କାଳିଦାସଙ୍କର ମେଘଦୂତର ଅନୁବାଦ ମଧ୍ୟ ସେ କରିଥିଲେ । ବିବେକୀ ଏବଂ ଇତାଲୀୟ ଯୁବା ରାଧାନାଥଙ୍କର ବଳିଷ୍ଠ ଗଦ୍ୟ ରଚନା ମଧ୍ୟରେ ଅନ୍ତର୍ଭୁକ୍ତ । ଏତଦ୍‌ବ୍ୟତୀତ ଶିବାଜୀଙ୍କ ଉତ୍ସାହବାଣୀ, ଯଯାତିକେଶରୀ, ଦଶରଥଙ୍କ ମୃଗୟା ଓ ଭାରତ ଗୀତିକା ପ୍ରଭୃତି ସେ ରଚନା କରିଥିଲେ ।

ରାଧାନାଥଙ୍କ ସାହିତ୍ୟ ସୃଷ୍ଟିର ବିଷୟବସ୍ତୁ ମୁଖ୍ୟତଃ ପାଶ୍ଚାତ୍ୟ ସାହିତ୍ୟର ଆଦର୍ଶ ଓ ଅନୁକରଣର ପ୍ରତିରୂପ । ପ୍ରକୃତିକୁ ସେ ଗଭୀର ଭାବରେ ଭଲ ପାଉଥିଲେ । ଏଣୁ ତାଙ୍କ ସାହିତ୍ୟରେ ବହିଃପ୍ରକୃତି ଓ ଅନ୍ତଃପ୍ରକୃତିର ମଣିକାଞ୍ଚନ ସଂଯୋଗ ଘଟିଥିଲା । ବିଦେଶୀ କଥାବସ୍ତୁକୁ ଓଡ଼ିଆରେ ସ୍ଥାନ ଦେଇଥିବାରୁ ଏବଂ ଏଗୁଡ଼ିକ ଓଡ଼ିଆ ସାମାଜିକ ପରିବେଶ ସହିତ ଖାପ୍ ଖାଉ ନ ଥିବାରୁ ରାଧାନାଥ ବହୁ ସମାଲୋଚନାର ଶରବ୍ୟ ହୋଇଥିଲେ । ତଥାପି ତାଙ୍କର କୃତିତ୍ୱ ଅନନ୍ୟ ସାଧାରଣ ଓ କାଳଜୟୀ । ଶିକ୍ଷା ଏବଂ ସାହିତ୍ୟରେ ତାଙ୍କର ଅବଦାନ ସର୍ବାପେକ୍ଷା ଉଲ୍ଲେଖଯୋଗ୍ୟ । ସେ ଥିଲେ ରୁଗ୍‌ଣ ସ୍ୱାସ୍ଥ୍ୟ । ୧୯୦୮ ମସିହା ଅପ୍ରେଲ ମାସ ୧୭ ତାରିଖରେ ସେ ଇହଧାମ ତ୍ୟାଗ କଲେ ।

## ରତ୍ନାକର ପତି :

ରତ୍ନାକର ପତି କଟକ ଜିଲ୍ଲାର ବିରିବାଟୀ ନିକଟସ୍ଥ ଚଉଁରିଆ ଗ୍ରାମରେ ଏକ ରକ୍ଷଣଶୀଳ ବ୍ରାହ୍ମଣ ପରିବାରରେ ୧୮୮୯ ମସିହା ଅପ୍ରେଲ ମାସ ୧୪ ତାରିଖରେ ଜନ୍ମଗ୍ରହଣ କରିଥିଲେ । ବହୁ ଅଭାବ ଅନାଟନ ମଧ୍ୟ ଦେଇ ସେ ଦର୍ଶନ ଶାସ୍ତ୍ରରେ ଏମ୍. ଏ. ପାଶ୍ କରି ରେଭେନ୍‌ସା କଲେଜରେ ଦର୍ଶନ ବିଭାଗର ଅଧ୍ୟାପକ ଭାବରେ ଯୋଗ ଦେଲେ ।

ଦର୍ଶନ ବିଭାଗରେ ଧର୍ମୋଦ୍ଧନ ଧରି ଅଧ୍ୟାପନା କରିବା ସହିତ ସେ ବହୁ ଭାରତୀୟ ଦର୍ଶନ ଶାସ୍ତ୍ର ଏବଂ ବେଦ, ବେଦାନ୍ତ, ଉପନିଷଦ ପ୍ରଭୃତି ପାଠ କରିଥିଲେ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କର ସେ ଜାମାତା । ଜୀବନରେ ସେ ଥିଲେ

ଭାରତୀୟ ସଂସ୍କୃତି ଏବଂ ଆଦର୍ଶ ପ୍ରତି ଏକାନ୍ତ ଅନୁରକ୍ତ । ବହୁ ଚିନ୍ତାପୂର୍ଣ୍ଣ ମୌଳିକ ଓ ତତ୍ତ୍ୱସମ୍ବଳିତ ପ୍ରବନ୍ଧମାନ ରଚନା କରି ସେ ସାହିତ୍ୟ ଜଗତକୁ ସମୃଦ୍ଧ କରି- ଅଛନ୍ତି । ଅଧ୍ୟୟନ ଏବଂ ଅଧ୍ୟାପନା ଥିଲା ତାଙ୍କ ଜୀବନର ପ୍ରଧାନ ବ୍ରତ ।

ତାଙ୍କର ଅନେକ ପ୍ରବନ୍ଧ ସେତେବେଳେ ସତ୍ୟବାଦୀ, ସମାଜ, ନବଭାରତ ଇତ୍ୟାଦି ପତ୍ରିକାରେ ପ୍ରକାଶିତ ହୋଇ ବେଶ୍ ଲୋକପ୍ରିୟ ହୋଇ ପାରିଥିଲା । ଜଣେ ବିଶିଷ୍ଟ ସାହିତ୍ୟିକ ରୂପେ ସେ ପ୍ରବନ୍ଧ ପ୍ରକାଶ—(ପ୍ରଥମ ଭାଗ), ପ୍ରବନ୍ଧ ପ୍ରକାଶ (ଦ୍ୱିତୀୟ ଭାଗ), ସ୍ୱପ୍ନତତ୍ତ୍ୱ, ବିବର୍ତ୍ତନବାଦ, ସ୍ମୃତି ପଥେ ଏବଂ ଇଂରେଜୀରେ ଦର୍ଶନର ଇତିହାସ ପୁସ୍ତକ ରଚନା କରିଅଛନ୍ତି । ଜଣେ ଶାନ୍ତିବାନ୍ ଆଦର୍ଶ ମଣିଷ ଏବଂ ଛାତ୍ରବତ୍ସଳ ଅଧ୍ୟାପକ ଭାବେ ସେ ପରିଚିତ ଥିଲେ । ଏହି ମହାନ୍ ବ୍ୟକ୍ତିଙ୍କର ଅବସାନ ହେଲା ୧୯୬୯ ମସିହାରେ । ଅଧ୍ୟାପକ ପତିଙ୍କ ନାମରେ ତାଙ୍କ ଗ୍ରାମର ଉଚ୍ଚ ବିଦ୍ୟାଳୟଟିକୁ ନାମିତ କରାଯାଇଛି ।

## ରବି ଘୋଷ :

୧୯୦୮ ମସିହାରେ କଟକ ଜିଲ୍ଲାର ମାହାଙ୍ଗାରେ ରବି ଘୋଷଙ୍କର ଜନ୍ମ ହୋଇଥିଲା । ତାଙ୍କର ପିତା ରେବତୀକାନ୍ତ ଘୋଷ ଜଣେ ଖ୍ୟାତନାମା ଉକିଲ ଏବଂ ଓଡ଼ିଶା ବିହାର ବିଧାନ ପରିଷଦର ସଭ୍ୟ ଥିଲେ । ସେ ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବରେ ପରିଚିତ । କଟକ ମେଡ଼ିକାଲ କଲେଜରେ ରବି ଘୋଷ ଅଧ୍ୟୟନ କରିଥିଲେ ଏବଂ ୧୯୪୦ ମସିହାରେ ହୋଇଥିବା ମେଡ଼ିକାଲ ସ୍କୁଲ ଧର୍ମଘଟରେ ନେତୃତ୍ୱ ନେଇଥିଲେ ।

ଦେଶ ପାଇଁ ସଂଗ୍ରାମ କରି ସେ ଅନେକଥର କାରାବରଣ କରିଥିଲେ । ବିଶେଷରୂପେ କଟକରେ ସେ ରବି'ଦା ନାମରେ ପରିଚିତ । ସେ ଥିଲେ ଶାନ୍ତିବାଦୀ, ନିର୍ଲୋଭୀ, ବନ୍ଧୁପ୍ରେମୀ ଏବଂ ପରୋପକାରୀ ବ୍ୟକ୍ତି । ସମାଜର ଅବହେଳିତ ମଣିଷଙ୍କ ପାଇଁ ତାଙ୍କର ପ୍ରାଣ କାନ୍ଦି ଉଠୁଥିଲା । ସୋସାଲିଷ୍ଟ ପାର୍ଟିର ସେ ଜଣେ ସକ୍ରିୟ ସଭ୍ୟ ଥିଲେ । ୧୯୪୨ର ଆନ୍ଦୋଳନ ଏବଂ ଗଡ଼ଜାତର ପ୍ରଜା ଆନ୍ଦୋଳନର ସେ ଜଣେ ପ୍ରଧାନ ନାୟକ । ୧୯୬୧ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ରେବା ରାୟ :

ରେବା ରାୟ ଜଣେ ବିଶିଷ୍ଟ ସାହିତ୍ୟିକା । ସେ ୧୮୭୭ ମସିହାରେ ଜନ୍ମ ହୋଇ ୧୯୫୭ ମସିହାରେ ସ୍ୱର୍ଗାରୋହଣ କରିଥିଲେ । ତତ୍କାଳୀନ ରକ୍ଷଣଶୀଳ ସାମାଜିକ ପ୍ରତିବନ୍ଧକକୁ ଚୂର୍ମାର୍ କରି ଯେଉଁ କେତେଜଣ ମହିଳା ଉଚ୍ଚଶିକ୍ଷା ଲାଭ କରିଥିଲେ, ତନ୍ମଧ୍ୟରୁ ରେବା ରାୟ ଥିଲେ ଅନ୍ୟତମା । ସେ ଜଣେ ପ୍ରାବନ୍ଧିକା ଥିଲେ । 'ଅଞ୍ଜଳି' ଏବଂ 'ପ୍ରଭାତ' ପ୍ରଭୃତି ପତ୍ରିକାର ସମ୍ପାଦନା କରି ସେ ପ୍ରସିଦ୍ଧି ଲାଭ କଲେ । ଅନେକ ମହିଳାଙ୍କୁ ଏହି ପତ୍ରିକାରେ ଲେଖିବାର ସୁଯୋଗ ଦେଇ ନାରୀ ଜାଗରଣର ମୁଖ୍ୟ ଭୂମିକା ନେଇଥିଲେ । ୧୯୫୭ ମସିହାରେ ତାଙ୍କର ଦେହାନ୍ତ ହେଲା ।

## ରମା ଦେବୀ :

ରମା ଦେବୀ କଟକର ବଳିଷ୍ଠ ପ୍ରତିଭାମାନଙ୍କ ମଧ୍ୟରୁ ଅନ୍ୟତମ । ସେ ୧୮୯୯ ମସିହାରେ କଟକ ସହରର ଏକ ପ୍ରତିଷ୍ଠିତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଥିଲେ ଗୋପାଳବଲ୍ଲଭ ଦାସଙ୍କର କନ୍ୟା । ରମା ଦେବୀ ୧୫ ବର୍ଷ ବୟସରେ ଗୋପବନ୍ଧୁ ଚୌଧୁରୀଙ୍କୁ ବିବାହ କଲେ । ସେଠାରୁ ତାଙ୍କର କର୍ମମୟ ଜୀବନ ଆରମ୍ଭ ହେଲା । ୧୯୨୮ ମସିହାରେ ସେ ତାଙ୍କର ସ୍ୱାମୀ ଗୋପବନ୍ଧୁ ଚୌଧୁରୀଙ୍କ ସହିତ କଲିକତାରେ ହେଉଥିବା କଂଗ୍ରେସ ସମ୍ମିଳନୀରେ ଯୋଗ ଦେଇଥିଲେ ।

୧୯୩୦ ମସିହାରେ ବନ୍ଦୀ ହୋଇ ରମାଦେବୀ ଭାଗଲପୁର ଜେଲ୍‌ରେ ରହିଲେ । ୧୯୩୨ ମସିହାରେ ସେ ଦ୍ୱିତୀୟଥର ପାଇଁ ବନ୍ଦୀ ହୋଇଥିଲେ । ସେହିବର୍ଷ ସେ ସାରା ଭାରତର ହରିଜନ ସେବକ ସଙ୍ଘର ସମ୍ପାଦିକା ହେଲେ । ରମାଦେବୀ 'କସ୍ତୁରବା ଗାନ୍ଧି ଟ୍ରଷ୍ଟ' ଫଣ୍ଡର ପରିଚାଳନା ଦାୟିତ୍ୱରେ ରହି ସେଥିରୁ ଲବ୍‌ଧ ଧନରୁ ୧୯୪୫ ମସିହାରେ ବରିଠାରେ ଗୋଟିଏ ମହିଳା କର୍ମୀ ତାଲିମ କ୍ଷେତ୍ର ଆରମ୍ଭ କଲେ । ୧୯୪୬ ମସିହାରେ ଉତ୍କଳ ନବଜୀବନ ମଣ୍ଡଳ ଗଠନ କରାଗଲା ଏବଂ ରମାଦେବୀ ସେଥିରେ ସଭ୍ୟା ରହିଲେ । ୧୯୫୦ ମସିହାରେ ସର୍ବଭାରତୀୟ ସର୍ବୋଦୟ ସମାଜର ଦ୍ୱିତୀୟ ବାର୍ଷିକ ସମ୍ମିଳନୀ ଅନୁଗୁଳରେ ଅନୁଷ୍ଠିତ ହେଲା ଏବଂ ସେ ଏହାର ମୁଖ୍ୟ ପରିଚାଳିକା ଥିଲେ ।

୧୯୫୮ ମସିହାରେ ବିନୋବାଙ୍କ ପରାମର୍ଶକ୍ରମେ ସେ ମହାରାଷ୍ଟ୍ରର ସର୍ବୋଦୟ ସମ୍ମିଳନୀରେ ସଭାପତିତ୍ୱ କରିଥିଲେ । ରମାଦେବୀ ୧୯୬୫ ମସିହାରେ ଉତ୍କଳ ଗାନ୍ଧି ସ୍ମାରକ ନିଧିର ସଭାପତି ହେଲେ । ନାରୀ ଏବଂ ଶିଶୁମାନଙ୍କ ମଙ୍ଗଳ ନିମନ୍ତେ ସେ ନିଜକୁ ତ୍ୟାଗ କରିଥିବାରୁ ତାଙ୍କୁ 'ଯମୁନାଲାଲ ବାଜାଜ' ପୁରସ୍କାର ମିଳିଥିଲା । ୧୯୮୪ ମସିହାରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ପାଇଥିଲେ । ୧୯୮୫ ମସିହାରେ ତାଙ୍କର ମୃତ୍ୟୁ ହେଲା । ଭୁବନେଶ୍ୱରର ମହିଳା କଲେଜ ତାଙ୍କ ନାମରେ ନାମିତ ।

## ରଣଜିତ୍ ମହାନ୍ତି :

ରଣଜିତ୍ ମହାନ୍ତି ୧୯୩୧ ମସିହା ଅଗଷ୍ଟ ମାସ ୧୦ ତାରିଖରେ କଟକରେ ଜନ୍ମ ହୋଇଥିଲେ । ତାଙ୍କ ପିତା ଜଣେ ଖ୍ୟାତନାମା ଓକିଲ ଥିଲେ । ରଣଜିତ୍ ମହାନ୍ତି ଇଂଲଣ୍ଡରୁ ବାରିଷ୍ଟରୀ ପାଶ୍ କରିସାରିବା ପରେ ଓକିଲାତି ଆରମ୍ଭ କଲେ । କଟକର ଜଣେ ନାମଜାଦା ଓକିଲ ଭାବେ ସେ ଲୋକପ୍ରିୟ ହୋଇ ପାରିଥିଲେ । ବାରିଷ୍ଟର ମହାନ୍ତି ସର୍ବଭାରତୀୟ ଓକିଲ ସଙ୍ଘର ଦୁଇଥର ସଭାପତି ହୋଇଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ସେ ରାଜନୀତିରେ ସକ୍ରିୟ ଅଂଶଗ୍ରହଣ କଲେ । ୧୯୮୯ ମସିହା ସେପ୍‌ଟେମ୍ବର ମାସ ୨ ତାରିଖରେ କର୍କଟ ରୋଗରେ ଆକ୍ରାନ୍ତ ହୋଇ ତାଙ୍କର ମୃତ୍ୟୁ ହେଲା ।

## ରଘୁନାଥ ଦାସ :

ରଘୁନାଥ ଦାସ ଜଠାପୁ ନାମରେ ପରିଚିତ ଥିଲେ । ସେ ୧୯୧୯ ମସିହା ଜୁଲାଇ ମାସ ୩ ତାରିଖରେ ଭୂମିଷ୍ଠ ହୋଇ ୧୯୮୪ ମସିହା ନଭେମ୍ବର ମାସ ୯ ତାରିଖରେ ଦେହତ୍ୟାଗ କଲେ । ସେ ଥିଲେ ଜଣେ ବିପ୍ଳବୀ ଓ ଶକ୍ତିଶାଳୀ ବ୍ୟକ୍ତି । ଛାତ୍ରାବସ୍ଥାରୁ ରଘୁନାଥ ଜାତୀୟତା ଆନ୍ଦୋଳନରେ ଭାଗ ନେଇଥିଲେ । ବହୁ ଦୁର୍ଘଟଣା ମଧ୍ୟଦେଇ ଆଇନ୍ ପାଶ୍ କରି ସେ ଓକିଲାତି କଲେ । ସମାଜର ନିଃସ୍ୱ, ଦଳିତ ଏବଂ ନିଷ୍ପେଷିତ ବ୍ୟକ୍ତିମାନଙ୍କୁ ନ୍ୟାୟ ଦେବାପାଇଁ ତାଙ୍କର ସଂଗ୍ରାମ ଅବ୍ୟାହତ ଥିଲା । ଜଣେ ଲେଖକ ଭାବରେ ସେ ଅନେକ କବିତାର ରଚୟିତା । ତାଙ୍କର ବିପ୍ଳବାତ୍ମକ କବିତାର ଭାଷା ସମସ୍ତଙ୍କୁ ଉତ୍ତେଜିତ କରୁଥିଲା । ରଘୁନାଥ ଦାସ ଭୂଦାନ ଆନ୍ଦୋଳନରେ ସକ୍ରିୟଭାବେ ଅଂଶଗ୍ରହଣ କରି ରମା ଦେବୀଙ୍କ ସହିତ କୋରାପୁଟରେ କାର୍ଯ୍ୟ କରିଥିଲେ । ପରେ ଅରବିନ୍ଦଙ୍କର ଦର୍ଶନ ତାଙ୍କ ଜୀବନରେ ସ୍ପଷ୍ଟ ପ୍ରଭାବ ପକାଇଥିଲା ।

## ରତ୍ନାକର ଗର୍ଗବଡୁ :

ରତ୍ନାକର ଗର୍ଗବଡୁ ୧୮୭୬ ମସିହାରେ କଟକରେ ଜନ୍ମ ହୋଇଥିଲେ ସତ କିନ୍ତୁ ପରେ ତାଙ୍କର ପରିବାର ଭୁବନେଶ୍ୱରରେ ଅବସ୍ଥାନ କଲେ । ସେ ହେଉଛନ୍ତି କଟକର ବାଲିଚଉଢ଼ରେ ଥିବା ସତ୍ୟଭାମା ପୁସ୍ତକାଳୟର ପ୍ରତିଷ୍ଠାତା । ଏହା ମାଧ୍ୟମରେ ସେ ରାମାୟଣ, ମହାଭାରତ, ବହୁ ପୁରାଣ ଏବଂ ଓଡ଼ିଆ ଭାଷାର ଅନେକ ପୁସ୍ତକ ପ୍ରକାଶ କରିଥିଲେ । ସେ ନିଜେ ମଧ୍ୟ ଜଣେ ଲେଖକ ଥିଲେ । ଗଣବୋଧିନୀ ଏବଂ ସ୍ୱପ୍ନ ସୁନ୍ଦରୀ ତାଙ୍କର ମୌଳିକ ରଚନା ମଧ୍ୟରେ ଅନ୍ତର୍ଭୁକ୍ତ । ୧୯୫୧ ମସିହାରେ ସେ ସ୍ୱର୍ଗାରୋହଣ କଲେ ।

## ରାମକୃଷ୍ଣ ପତି :

ରାମକୃଷ୍ଣ ପତି ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀଭାବେ ସାଧାରଣରେ ପରିଚିତ । ୧୯୦୯ ମସିହା ଡିସେମ୍ବର ମାସ ୫ ତାରିଖରେ ଗୋଟିଏ ଆଭିଜାତ୍ୟପୂର୍ଣ୍ଣ ପରିବାରରେ ତାଙ୍କର ଜନ୍ମ ହୋଇଥିଲା । ଯୁବ ଜୀବନରୁ ସେ ଥିଲେ ସଂଗ୍ରାମୀ । ସ୍ୱାଧୀନତା ଆନ୍ଦୋଳନରେ ଅଂଶ ଗ୍ରହଣ କରି ଶ୍ରୀ ପତି ବହୁଦିନ ପର୍ଯ୍ୟନ୍ତ କାରାବରଣ କରିଥିଲେ ।

ଭାରତୀୟ ଦର୍ଶନର ଜଣେ ପରମ ବିଦ୍ୱାନ ଭାବରେ ସେ ସୁନାମଧନ୍ୟ । କଟକର ଗୃହନିର୍ମାଣ ସମିତିରେ ବହୁଦିନ ରହିବା ପରେ ରାମକୃଷ୍ଣ ଭୁବନେଶ୍ୱରକୁ ଚାଲିଯାଇଥିଲେ । ସେ ଥିଲେ ଓଡ଼ିଆ ବନ୍ଧ ଆନ୍ଦୋଳନର ମୁଖ୍ୟ ନାୟକ । ୧୯୪୩ ମସିହାର ମରୁଡ଼ି ସମୟରେ ସେ ଶଙ୍କରପୁରରେ ରିଲିଫ୍ କାର୍ଯ୍ୟ ପରିଚାଳନା କରିଥିଲେ । ସେ ଜଣେ ଅଭିନେତା ଥିଲେ ଏବଂ ତାଙ୍କର ଜାତୀୟ ଜୀବନ ଥିଲା ବିଭିନ୍ନ ଘଟଣା-

ବର୍ଷୀରେ ପରିପୂର୍ଣ୍ଣ । ସେ ୧୯୮୭ ମସିହା ଜୁନ୍ ମାସ ୧୫ ତାରିଖରେ ସ୍ୱର୍ଗାରୋହଣ କଲେ ।

## ରଜନୀକାନ୍ତ ଘୋଷ :

ରଜନୀକାନ୍ତ ଘୋଷ ଜଣେ ସ୍ୱାଧୀନତା ସଂଗ୍ରାମୀ ଥିଲେ । ଜଣେ ଡାକ୍ତର ଭାବରେ ତାଙ୍କର ପ୍ରସିଦ୍ଧି ଥିଲା । ବାନରସେନାର ହଜାର ହଜାର ଯୁବକ ଓ ଗୁଣ୍ଡମାନଙ୍କୁ ତାଙ୍କ ଘରେ ସେ ସ୍ଥାନ ଦେଉଥିଲେ । ଜଣେ ବଦାନ୍ୟ ବ୍ୟକ୍ତି ଭାବରେ ଶ୍ରୀ ଘୋଷ ଲୋକପ୍ରିୟ । ସ୍ୱାଧୀନତା ସଂଗ୍ରାମରେ ରକ୍ତାକ୍ତ ହୋଇ ପଡ଼ୁଥିବା ବ୍ୟକ୍ତିମାନଙ୍କୁ ସେବା କରିବା ଥିଲା ତାଙ୍କର ପ୍ରଧାନ ବ୍ରତ । ସେ ୧୯୭୩ ମସିହାରେ କଟକର ବାଲୁବଜାରରେ ମୃତ୍ୟୁବରଣ କରିଥିଲେ ।

## ରଘୁ ରାଉତ :

ରଘୁ ରାଉତ ସମାଜର ଅବହେଳିତ ଏବଂ ଦଳିତ ବ୍ୟକ୍ତିମାନଙ୍କର ପରମବନ୍ଧୁ ଥିଲେ । ବହୁ ଆଶ୍ଚର୍ଯ୍ୟ ବ୍ୟକ୍ତିତ୍ୱଭାବରେ ସେ ସର୍ବଦା ରଙ୍ଗ ବେରଙ୍ଗ ପୋଷାକରେ ସଜ୍ଜିତ ହେଉଥିଲେ ।

ବହୁବର୍ଷ ଧରି କଟକ ମ୍ୟୁନିସିପାଲିଟିର କାଉନ୍‌ସିଲର ରୂପେ ସେ ନିର୍ବାଚିତ ହୋଇଥିଲେ । ସେ ଅତ୍ୟନ୍ତ କ୍ରୋଧୀ, ନିର୍ଭୀକ ଏବଂ କଡ଼ା ପ୍ରକୃତିର ଲୋକ । "ସତକଥା' ପତ୍ରିକା ତାଙ୍କୁ ବେଶ୍ ଲୋକପ୍ରିୟ କରିଥିଲା । କଟକର ଅଧିକାଂଶ ଲୋକଙ୍କର ଖାଦ୍ୟ, ପଚାପବାଣି ଏବଂ ରୋଗ ତଥା ଦୁର୍ଦ୍ଦଶା ସମୟରେ ସେ ସେମାନଙ୍କ ନିକଟରେ ପହଞ୍ଚୁଥିଲେ ।

## ରବି ପଟ୍ଟନାୟକ :

୧୯୩୫ ମସିହାରେ ମୟୂରଭଞ୍ଜ ଜିଲ୍ଲାର ରାଇରଙ୍ଗପୁରରେ ରବି ପଟ୍ଟନାୟକଙ୍କର ଜନ୍ମ । ରେଭେନ୍‌ସା କଲେଜରେ ପଢ଼ିବା ବେଳେ ପୂର୍ବଗୃହବାସରେ ରହୁଥିଲେ । ଭୁବନେଶ୍ୱରର ପ୍ରତ୍ନତତ୍ତ୍ୱ ସର୍ଭେ ସଂସ୍ଥାରେ ସେ କାର୍ଯ୍ୟ କରୁଥିଲେ । ସେ ଜଣେ ବିଶିଷ୍ଟ ସାହିତ୍ୟିକ ରୂପେ ପରିଚିତ । ତାଙ୍କର ପୁସ୍ତକମାନଙ୍କ ମଧ୍ୟରେ ଅସାମାଜିକର ଡାଇରୀ, ବହୁରୂପୀ, ଅନ୍ଧଗଳି, ଅନ୍ଧକାର, ଯାଜ୍ଞସେନୀ, ଗଡ଼ପେଡ଼ି, ହିରଣ୍ୟଗର୍ଭ ଇତ୍ୟାଦି ପ୍ରଧାନ ।

## ରାଜକୃଷ୍ଣ ବୋଷ :

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ତଥା ଗାନ୍ଧିବାଦୀ ନେତା ରାଜକୃଷ୍ଣ ବୋଷ ୧୮୯୮ ମସିହା ନଭେମ୍ବର ମାସ ୧୭ ତାରିଖରେ କଟକ ଜିଲ୍ଲା ଜଗତସିଂହପୁର ନିକଟବର୍ତ୍ତୀ ରାମଚନ୍ଦ୍ରପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଲକ୍ଷ୍ମୀନାରାୟଣ ବୋଷ ଏବଂ ମାତାଙ୍କ ନାମ ଭବାନୀ ଦେବୀ । ସେ ପ୍ୟାରୀମୋହନ ଏକାଡେମୀରୁ ମାଟ୍ରିକ୍

ପାଶ୍ କରି ରେଭେନ୍‌ସା କଲେଜରେ ପଢ଼ୁଥିବା ବେଳେ ଇଂରେଜ ଶାସନ ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କରିଥିଲେ । ସେ ଥିଲେ ଓଡ଼ିଶାର ପ୍ରଥମ ରାଜବନ୍ଦୀ ।

୧୯୨୦ ମସିହାରେ ମହାତ୍ମାଗାନ୍ଧି ପ୍ରଥମ ଥର ଓଡ଼ିଶା ଆସି କାଠଯୋଡ଼ି ବାଲିରେ ପ୍ରଥମ ସଭାରେ ଯେଉଁ ଭାଷଣ ଦେଇଥିଲେ ତାକୁ ଓଡ଼ିଆ ଭାଷାରେ ରୂପାନ୍ତର କରି ଅତି ପ୍ରାଞ୍ଜଳ ଭାଷାରେ ଲୋକଙ୍କୁ ବୁଝାଇଥିଲେ ରାଜକୃଷ୍ଣ ବୋଷ । ୧୯୨୧ ମସିହାରେ ସେ ଇଂରେଜ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ କରି କଟକ ଜେଲରେ ବନ୍ଦୀ ହେଲେ । ବାଲଗଙ୍ଗାଧର ତିଲକ, ପଣ୍ଡିତ ଜବାହରଲାଲ ନେହେରୁ, ମୌଲାନା ଆବୁଲ କାଲାମ ଆଜାଦ୍, ପଣ୍ଡିତ ଗୋପବନ୍ଧୁ ଦାସ ଏବଂ ଡକ୍ଟର ହରେକୃଷ୍ଣ ମହତାବ ପ୍ରମୁଖଙ୍କ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା ।

୧୯୫୩ ମସିହାରେ ରାଜକୃଷ୍ଣ ବୋଷ ସାଲେପୁର ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହୋଇ ହରେକୃଷ୍ଣ ମହତାବଙ୍କ ମନ୍ତ୍ରିମଣ୍ଡଳରେ ପୂର୍ତ୍ତ ବିଭାଗର ମନ୍ତ୍ରୀ ହୋଇଥିଲେ । ସେ ଜାତୀୟତାବାଦୀ, କର୍ମୀ ଏବଂ ପରୋପକାରୀ ବ୍ୟକ୍ତି ଭାବରେ ସର୍ବଜନ ପରିଚିତ । ୧୯୯୨ ମସିହା ଜାନୁଆରୀ ମାସରେ ତାଙ୍କର ମୃତ୍ୟୁ ହେଲା ।

## ରାମଚନ୍ଦ୍ର ମିଶ୍ର :

ଜଣେ ବିଶିଷ୍ଟ ନାଟ୍ୟକାର ରାମଚନ୍ଦ୍ର ମିଶ୍ରଙ୍କର ଜନ୍ମ ୧୯୨୦ ମସିହା ଅକ୍ଟୋବର ମାସ ୧୨ ତାରିଖରେ । ସେ କଟକ ମିଶନ୍ ସ୍କୁଲରୁ ମାଟ୍ରିକ ପାଶ୍ କରି ରେଭେନ୍‌ସା କଲେଜରେ ନାମ ଲେଖାଇଲେ । ୧୯୪୨ ମସିହାରେ ବି. ଏ. ପାଶ୍ କରି ଶ୍ରୀ ମିଶ୍ର ମଧୁସୂଦନ ଆଇନ୍ କଲେଜରୁ ବି. ଏଲ୍. ଡିଗ୍ରୀ ଲାଭ କଲେ । ଛାତ୍ରାବସ୍ଥାରୁ ସେ ଥିଲେ ବିପ୍ଳବୀ ।

ଜଣେ ମାଜିଷ୍ଟ୍ରେଟ ଭାବରେ ରାମଚନ୍ଦ୍ର ଖଣ୍ଡପଡ଼ା ଓ ବାଲେଶ୍ୱରରେ କାର୍ଯ୍ୟ କରୁଥିଲେ । ସେ ଥିଲେ ପ୍ରଗାଢ଼ କ୍ରୀଡ଼ାପ୍ରେମୀ ଏବଂ ଫୁଟବଲ ଖେଳ ପ୍ରତି ତାଙ୍କର ପ୍ରବଳ ଆଗ୍ରହ ଥିଲା । ଜଣେ ବିଶିଷ୍ଟ ନାଟ୍ୟକାର ଭାବେ ସେ ଗୁଡ଼ିକରୁ ଊର୍ଦ୍ଧ୍ୱ ନାଟକର ରଚୟିତା । ତାଙ୍କର ପ୍ରକାଶିତ ନାଟକ ମଧ୍ୟରେ ଅଭିଯାନ, ମୂଲିଆ, ଭାଇଭାଉଜ, ଘରସଂସାର, କବିସୂର୍ଯ୍ୟ, ନରୋତ୍ତମ ଦାସ କହେ, ସାହିପଡ଼ିଶା ଓ ମନ୍ତ୍ରୀବାବୁ ଇତ୍ୟାଦି ପ୍ରଧାନ । ଗାନ୍ଧିଜୀଙ୍କ ଆଦର୍ଶରେ ସେ ଅନୁପ୍ରାଣିତ ଥିଲେ । ୧୯୯୨ ମସିହା ଜୁନ୍ ମାସ ୨୭ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ରାଜକିଶୋର ମହାନ୍ତି :

କଟକର ମହନୀୟ ବ୍ୟକ୍ତିତ୍ୱମାନଙ୍କ ମଧ୍ୟରୁ ରାଜକିଶୋର ମହାନ୍ତିଙ୍କ ନାମ ଉଲ୍ଲେଖ ଯୋଗ୍ୟ । ଜଣେ ଦକ୍ଷ ସଚ୍ଚୋଟ ଏବଂ ନିଷ୍ଠାପର ଇଞ୍ଜିନିୟର ଭାବରେ ସେ ପରିଚିତ । ସେ କଟକ ଇଞ୍ଜିନିୟରିଂ ସ୍କୁଲରୁ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଲାଭ କରି ୧୯୨୫ ମସିହାରେ ପାଟଣା ବିଶ୍ୱବିଦ୍ୟାଳୟରୁ ଇଞ୍ଜିନିୟରିଂରେ ପ୍ରଥମ ଶ୍ରେଣୀ ପାଇଲେ ।

ହେଉଲଟା, ବାଲିମେଲା ଏବଂ ସାଲନ୍ଦୀ ପ୍ରଭୃତି ଜଳସେଚନ ଯୋଜନାର ଯନ୍ତ୍ରୀ ଭାବରେ କାର୍ଯ୍ୟ କରି ସେ ସୁନାମ ଅର୍ଜନ କରିଥିଲେ ।

ମହାତ୍ମା ଗାନ୍ଧିଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ରାଜ୍ୟର ବହୁ ସ୍ୱାଧୀନତା ସଂଗ୍ରାମୀଙ୍କୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସାହାଯ୍ୟ କରୁଥିଲେ । ଓଡ଼ିଶା ଇଞ୍ଜିନିୟର ସେବା ସଂସ୍ଥାର ସେ ହେଉଛନ୍ତି ପ୍ରାଣ ପ୍ରତିଷ୍ଠାତା । ୧୯୯୮ ମସିହା ଏପ୍ରିଲ ମାସ ୨୭ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ରାଧାଚରଣ ପଟ୍ଟନାୟକ :

ଜଷ୍ଟିସ ରାଧାଚରଣ ପଟ୍ଟନାୟକ ୧୯୩୫ ମସିହା ଜୁଲାଇ ମାସ ୨୨ ତାରିଖରେ ପୁରୀ ଜିଲ୍ଲାର ବାଜପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ରେଭେନ୍‌ସା କଲେଜରୁ ବି.ଏ ପାଶ୍ କରି ଶ୍ରୀ ପଟ୍ଟନାୟକ କଲିକତା ବିଶ୍ୱବିଦ୍ୟାଳୟରୁ ଇଂରାଜୀରେ ଏମ୍.ଏ. ଉପାଧି ଏବଂ ଆଇନ ଉପାଧି ଲାଭ କଲେ ।

୧୯୫୭ ମସିହାରେ ମାତ୍ର ୨୨ ବର୍ଷ ବୟସରେ ତାଙ୍କର ଓକିଲାତି ଜୀବନର ଆରମ୍ଭ ହୁଏ । ପ୍ରଥମେ ସେ ପ୍ରମୋଦ ଚନ୍ଦ୍ର ରୁଦ୍ରାଙ୍କଙ୍କର ସହଯୋଗୀ ଓକିଲ ଭାବରେ ଓକିଲାତି ଆରମ୍ଭ କରିଥିଲେ । ପରେ ସେ ଜଷ୍ଟିସ୍ ରଙ୍ଗନାଥ ମିଶ୍ରଙ୍କର ଜୁନିଅର ହେଲେ । ୧୯୮୧ ମସିହାରେ ଓଡ଼ିଶା ହାଇକୋର୍ଟର ବିଚାରପତି ରୂପେ ନିଯୁକ୍ତି ପାଇଲେ । ସେ ରାଜ୍ୟ ଆଇନ୍ ସହାୟକ ଏବଂ ଉପଦେଷ୍ଟା ବୋର୍ଡର କାର୍ଯ୍ୟକାରୀ ଅଧ୍ୟକ୍ଷ ଭାବରେ ଗୁରୁ-ଦାୟିତ୍ୱ ତୁଲାଇଥିଲେ । ବିଚାରପତି ଭାବେ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ମୋକଦ୍ଦମାରେ ରାୟ ପ୍ରଦାନ କରି ସେ ତାଙ୍କର ନିର୍ଭୀକତା ଓ ସାମାଜିକ ନ୍ୟାୟ ପ୍ରତିଷ୍ଠା ଦିଗରେ ଯେଉଁ ସବୁ ବଳିଷ୍ଠ ପଦକ୍ଷେପ ନେଇଛନ୍ତି, ତାହା ବାସ୍ତବିକ୍ ପ୍ରଶଂସନୀୟ ।

ଓଡ଼ିଶାର ଗରିବ, ଅବହେଳିତ, ଆଦିବାସୀ, ହରିଜନ ଏବଂ ସ୍ତ୍ରୀ ଲୋକମାନଙ୍କୁ ବିନା ଖର୍ଚ୍ଚରେ ଆଇନ ପ୍ରଦାନ କରିବା ତାଙ୍କର ପ୍ରଧାନ ଭୂମିକା ଥିଲା । ସେ ଅବିବାହିତ ଥିଲେ କିନ୍ତୁ ବହୁ ଅନୁଷ୍ଠାନ ଏବଂ ପରିବାର ସହିତ ତାଙ୍କର ମଧୁର ସମ୍ପର୍କ ଥିଲା । ଜଣେ ସୁଯୋଗ୍ୟ ଓକିଲ ଏବଂ ଜଜ୍ ହିସାବରେ ତାଙ୍କର କାର୍ଯ୍ୟଦକ୍ଷତା ଏବଂ ନିର୍ଭୀକ ବିଚାର ବୁଦ୍ଧି ଯୋଗୁ ଶ୍ରୀ ପଟ୍ଟନାୟକ ୧୯୯୧ ମସିହାରେ ସୁପ୍ରିମ କୋର୍ଟର ବିଚାରପତି ଭାବରେ ନିଯୁକ୍ତି ପାଇଥିଲେ । କାଳ ତାଙ୍କୁ ସହିପାରିଲାନି । ସୁପ୍ରିମକୋର୍ଟର ଜଜ୍ ହେବାର ମାତ୍ର ୫ ମାସ ପରେ ୧୯୯୨ ମସିହା ମେ ମାସ ୩୦ ତାରିଖରେ କଟକ ଭୁବନେଶ୍ୱର ରାସ୍ତାରେ ଏକ ମର୍ମନ୍ତୁଦ ଦୁର୍ଘଟଣାରେ ସେ ପ୍ରାଣ ହରାଇଲେ ।

## ଲକ୍ଷ୍ମୀକାନ୍ତ ଚୌଧୁରୀ :

ଲକ୍ଷ୍ମୀକାନ୍ତ ଚୌଧୁରୀ ୧୮୯୮ ମସିହାରେ ଜନ୍ମ ଗ୍ରହଣ କରି ୧୯୭୨ ମସିହାରେ ସ୍ୱର୍ଗାରୋହଣ କଲେ । ଖୁବ୍ କମ୍ ବୟସରୁ ସଙ୍ଗୀତ ପ୍ରତି ତାଙ୍କର ଗଭୀର ଆକର୍ଷଣ ଥିଲା । ତେଣୁ ପରବର୍ତ୍ତୀ ସମୟରେ ଜଣେ ଦକ୍ଷ ସଙ୍ଗୀତଜ୍ଞ ଭାବରେ ସେ ପ୍ରତିଷ୍ଠା ଲାଭକଲେ ।

ଯୁବ ଶିଳ୍ପୀମାନଙ୍କୁ ସଙ୍ଗୀତ ଶିକ୍ଷା ଦେବା ପାଇଁ ଲକ୍ଷ୍ମୀକାନ୍ତ ଚୌଧୁରୀଙ୍କର ସର୍ବଶ୍ରେଷ୍ଠ ଦାନ ହେଉଛି "ଉତ୍କଳ ସଙ୍ଗୀତ ସମାଜ"। ଓଡ଼ିଶାର ସହସ୍ରାଧିକ କଳାକାର ସୃଷ୍ଟି କରିବାରେ ଏହି ଅନୁଷ୍ଠାନ ପ୍ରଧାନ ଭୂମିକା ଗ୍ରହଣ କରିଥିଲା । ଗୀତ ଓ ବାଦ୍ୟର ପ୍ରଧାନ ପୃଷ୍ଠପୋଷକ ଭାବରେ ତାଙ୍କର ପ୍ରତିଭା ଚିରସ୍ମରଣୀୟ ଏବଂ ଅପ୍ରତିହତ ।

## ଲକ୍ଷ୍ମଣ ମିଶ୍ର :

ପୁରୀ ଜିଲ୍ଲାର ବୀରପ୍ରତାପ ପୁରରେ ୧୯୦୦ ମସିହାରେ ଲକ୍ଷ୍ମଣ ମିଶ୍ରଙ୍କର ଜନ୍ମ ହୋଇଥିଲା । କଟକ ସହରର ଜଣେ ପୁଲିସ ଅଫିସର ଭାବରେ ସେ ବହୁ ବର୍ଷ କାର୍ଯ୍ୟ କରିଥିଲେ । ପୁଲିସ ବିଭାଗ ସହିତ ଲୋକମାନଙ୍କ ସେବା କରିବାରେ ତାଙ୍କ ମନରେ ଭରି ରହିଥିଲା ଅପାର ଆନନ୍ଦ । ସେ ଆଦିବାସୀ ଅଞ୍ଚଳରେ ଚାକିରୀ କରିଥିବାବେଳେ ସେଠାରେ ପ୍ରତିଦିନ ହଜାର ହଜାର ରୋଗାକ୍ରାନ୍ତ ଏବଂ ଜନ୍ତୁ ଆକ୍ରମିତ ମଣିଷମାନଙ୍କୁ ଔଷଧ ଦେଇ ଭଲ କରୁଥିଲେ । "ସାପକାମୁଡ଼ା" ପାଇଁ ତାଙ୍କର ଔଷଧ ଥିଲା ଅବ୍ୟର୍ଥ ।

ଜଣେ ପୁଲିସ ଅଫିସର ଭାବରେ ସେ ଅନେକ ଜାତୀୟତାବାଦୀ, ନେତା ଏବଂ ସ୍ୱାଧୀନତା ସଂଗ୍ରାମୀଙ୍କୁ ସାହାଯ୍ୟ କରିଥିଲେ । ସେ ଜଣେ ଲେଖକ ଥିଲେ ଏବଂ ତାଙ୍କ ରଚିତ ପୁସ୍ତକମାନଙ୍କ ମଧ୍ୟରେ ଅନୁଭୂତ ଯୋଗମାଳା, ଘର ବଇଦ ଏବଂ ସହଜ ଚିକିତ୍ସା ଆଦି ପ୍ରଧାନ । ସେ ତାଙ୍କର ପୁରୀ ଟାଉନ୍‌ରେ ଥିବା ବାସଭବନରେ ଶେଷ-ନିଃଶ୍ୱାସ ତ୍ୟାଗ କରିଥିଲେ ।

## ଲକ୍ଷ୍ମୀଧର ମହାନ୍ତି :

ଜଣେ ପ୍ରବୀଣ ଆଇନଜୀବୀ ଭାବରେ ଲକ୍ଷ୍ମୀଧର ମହାନ୍ତି ଅବିସ୍ମରଣୀୟ । ଏତଦ୍‌-ବ୍ୟତୀତ ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ତାଙ୍କର କର୍ମମୟ ଜୀବନ କାଳ ମଧ୍ୟରେ ଲକ୍ଷ୍ମୀଧର ବିହାର-ଓଡ଼ିଶା ବିଧାନ ପରିଷଦର ଡେପୁଟୀ ଚେୟାରମ୍ୟାନ, କଟକ ଜିଲ୍ଲା ବୋର୍ଡ଼ର ଚେୟାରମ୍ୟାନ ଏବଂ ଓଡ଼ିଶା ପବ୍ଲିକ ସର୍ଭିସ କମିଶନର ସଭ୍ୟ ଥିଲେ । ଅନେକ ସାମାଜିକ ଏବଂ ସାଂସ୍କୃତିକ ଅନୁଷ୍ଠାନ ସହିତ ତାଙ୍କର ସମ୍ପର୍କ ଥିଲା । ୧୯୩୦ ମସିହାରେ କଟକ ମୋଟର ଆସୋସିଏସନର ସଭାପତି ଭାବରେ ସେ ନିର୍ବାଚିତ ହୋଇଥିଲେ ।

## ଲାଲା ନଗେନ୍ଦ୍ର କୁମାର ରାୟ :

ଲାଲା ନଗେନ୍ଦ୍ର କୁମାର ରାୟ ଜଣେ ଖ୍ୟାତନାମା ନାଟ୍ୟକାର ଏବଂ ଗଦ୍ୟ ଲେଖକ ରୂପେ ପରିଚିତ । ତାଙ୍କର ଜନ୍ମ ୧୮୯୮ ମସିହାରେ । ସେ ୫୦ରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରିଥିଲେ । ତାଙ୍କର ନାଟକମାନଙ୍କ ମଧ୍ୟରୁ କଳିଙ୍ଗ ବିଜୟ, ଶେଷ ସ୍ୱାଧୀନତା ଏବଂ ବନ୍ଧୁଅରକ୍ଷିତ ବିଶେଷ ପ୍ରସାର ଲାଭ କରିଥିଲା । ବିବିଧ ରତ୍ନ ସଂଗ୍ରହ

ଏବଂ ଜୀବନୀ ଗଦ୍ୟ ରଚନା ମଧ୍ୟରେ ଅନ୍ତର୍ଭୁକ୍ତ । ଜଣେ ଅନୁବାଦକ ଭାବରେ ସେ ନୋବେଲ ପୁରସ୍କାର ଲାଭ କରିଥିବା ବହୁ ପୁସ୍ତକକୁ ଓଡ଼ିଆରେ ଅନୁବାଦ କରିଥିଲେ ।

ବିରସ ନାଟକ ଓ ସ୍ୱାଧୀନ ମାନବ ତାଙ୍କର ବିଶିଷ୍ଟ ଅନୁବାଦ ଗ୍ରନ୍ଥ ରୂପେ ଅତ୍ୟନ୍ତ ଲୋକପ୍ରିୟ ।

## ଲକ୍ଷ୍ମୀକାନ୍ତ ମହାପାତ୍ର :

ଲକ୍ଷ୍ମୀକାନ୍ତ ମହାପାତ୍ର କାନ୍ତକବି ଭାବେ ପରିଚିତ । ସେ ୧୮୮୮ ମସିହାରେ ଭଦ୍ରଖରେ ଜନ୍ମଗ୍ରହଣ କରିଥିଲେ । ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟିକ ରୂପେ ସେ ଖ୍ୟାତନାମା ଥିଲେ । କଟକରେ ସେ ଅନେକ ବର୍ଷ ଅବସ୍ଥାନ କରିଥିଲେ ଏବଂ ଏହିଠାରେ ତାଙ୍କର ସାହିତ୍ୟିକ ଜୀବନର ଅଭ୍ୟୁଦୟ ହୋଇଥିଲା । ଲକ୍ଷ୍ମୀକାନ୍ତ ଉଭୟ ଷଟ୍‌ପଦୀ ଓ ଗୀତି କବିତା ରଚନା କ୍ଷେତ୍ରରେ କୃତିତ୍ୱ ପ୍ରଦର୍ଶନ କରିଥିଲେ । ଜୀବନର ଯୌବନ ଅବସ୍ଥାରେ ସେ କୁଷ୍ଠରୋଗାକ୍ରାନ୍ତ ହୋଇ ପଡ଼ିଲେ । ତାଙ୍କର ଶାରୀରିକ, ମାନସିକ ଏବଂ ମେଧାବୀ ଜୀବନର କ୍ରମ ହ୍ରାସ ଘଟିଲା । ତାଙ୍କ ସାହିତ୍ୟରେ ହାସ୍ୟରସର ବହୁଳ ପ୍ରଭାବ ପରିଲକ୍ଷିତ ହେଉଥିଲେହେଁ ପରବର୍ତ୍ତୀ ସମୟରେ କବିତା ରଚନାର ଧାରା ଅତ୍ୟନ୍ତ ମର୍ମସ୍ପର୍ଶୀ, ରୋମାଞ୍ଚକର ଓ ଦୁଃଖପୂର୍ଣ୍ଣ ହୋଇଉଠିଥିଲା । ଓଡ଼ିଆ ସାହିତ୍ୟରେ ବ୍ୟଙ୍ଗ କବିତା ପାଇଁ ତାଙ୍କର ପ୍ରସିଦ୍ଧି ରହିଛି ।

ତାଙ୍କର 'ଚଟକ ଚନ୍ଦ୍ରହାସ ଚମ୍ପୂ' ଏ ଦିଗରେ ଏକ ଉଲ୍ଲେଖଯୋଗ୍ୟ କୃତି । ଓଡ଼ିଶୀ ଚମ୍ପୂ, ପିଲାଙ୍କ କଥା, ଚଉଆଖାନା, କୁମାରୀ, ସୁନାପୁଅ, ଜୀବନ ସଙ୍ଗୀତ, ଲକ୍ଷ୍ମୀ ଗୁଣ୍ଡାଳୁଣୀ, ଦାନମାହାତ୍ମ୍ୟ, ବଡ଼ମାହାତ୍ମ୍ୟ, ଅଫିମ ଲୀଳା, ଦେହିପଦପଲ୍ଲବ-ମୁଦାରଂ ଏବଂ ବନ୍ଦେ ଉତ୍କଳ ଜନନୀ ଆଦି ପୁସ୍ତକର ସେ ହେଉଛନ୍ତି ରଚୟିତା । ଜଣେ ସେ 'ବୁଢ଼ାଶଙ୍ଖାରି' ପ୍ରଭୃତି ଗଳ୍ପରେ ଉଚ୍ଚ ମାନବିକତା ଏବଂ ମାନବିକ ମୂଲ୍ୟବୋଧର ଗାଳ୍ପିକ ଭାବେ ପରିଚୟ ଦେଇଅଛନ୍ତି । ସେହିପରି ତାଙ୍କର 'କଣାମାମୁଁ' ଉପନ୍ୟାସ ଏକମାତ୍ର ହାସ୍ୟ- ରସର ପୃଷ୍ଠଭୂମି ଉପରେ ପ୍ରତିଷ୍ଠା ଲାଭ କରିଛି । ୧୯୩୫ ମସିହାରେ କାନ୍ତକବିଙ୍କର ମୃତ୍ୟୁ ହେଲା ।

## ଲାଲମୋହନ ପଟ୍ଟନାୟକ :

ଲାଲମୋହନ ପଟ୍ଟନାୟକ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ସେ ଜଣେ ଜାତୀୟତା-ବାଦୀ ଏବଂ ସ୍ୱାଧୀନତା ସଂଗ୍ରାମୀ । ୧୯୪୬ ରୁ ୫୧ ମସିହା ପର୍ଯ୍ୟନ୍ତ ଲାଲମୋହନ ଓଡ଼ିଶା ବିଧାନସଭାର ବାଚସ୍ପତି ଥିଲେ । 'ଜୀବନ ଚମ୍ପୂ' ତାଙ୍କର ଏକ ଲୋକପ୍ରିୟ ରଚନା ।

## ଲଳିତ ମୋହନ ଘୋଷ :

ଶ୍ରୀ ଘୋଷ ଜଣେ ଗାନ୍ଧିବାଦୀ ଏବଂ ସ୍ୱାଧୀନତା ସଂଗ୍ରାମୀ ଭାବେ ପରିଚିତ । ନେତାଜୀ ସୁଭାସ ଚନ୍ଦ୍ର ବୋଷଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ନେତାଜୀ

ଜୀବନ ଏବଂ ଭାରତକୁ ପ୍ରଭାବଶାଳୀ କରିବେ ବୋଲି ସେ ଦୃଢ଼ ବିଶ୍ୱାସ ରଖିଥିଲେ । ଜଣେ ବିଶିଷ୍ଟ ସମାଜସେବୀ ଭାବରେ ତାଙ୍କର ଖ୍ୟାତି ଥିଲା ଏବଂ ବହୁ ରାଜନୀତିକ, ସାଂସ୍କୃତିକ ଏବଂ ସାମାଜିକ ଅନୁଷ୍ଠାନ ସହିତ ସେ ନିବିଡ଼ ସମ୍ପର୍କ ରକ୍ଷା କରିଥିଲେ ।

## ଲକ୍ଷ୍ମୀନାରାୟଣ ସାହୁ :

ଲକ୍ଷ୍ମୀନାରାୟଣ ସାହୁ ୧୮୯୦ ମସିହାରେ ଜନ୍ମ ହୋଇ ୧୯୬୨ ମସିହାରେ ସ୍ୱର୍ଗାରୋହଣ କଲେ । ସେ ଜଣେ ବିଶିଷ୍ଟ ସମାଜସେବୀ ଏବଂ ସାହିତ୍ୟିକ ରୂପେ ପରିଚିତ । ବହୁ କ୍ଷୁଦ୍ର କବିତା ଓ ଜୀବନୀର ଲେଖକ ଭାବେ ସେ ଅଜସ୍ରସ୍ରାବୀ । ଜୈନଧର୍ମ ଏବଂ ଦଣ୍ଡନୀତି ତାଙ୍କର ଦୁଇଟି ଗବେଷଣାଧର୍ମୀ ପୁସ୍ତକ । ଶ୍ରୀ ସାହୁ କଟକରେ ଅବସ୍ଥାନ କରୁଥିଲେ ଏବଂ ମାସିକ ସାହିତ୍ୟ ପତ୍ରିକା 'ସହକାର'ର ସମ୍ପାଦକ ଭାବରେ କିଛିକାଳ ସାହିତ୍ୟ ସେବା କରିଥିଲେ ।

## ଲିଙ୍ଗରାଜ ମିଶ୍ର :

ଲିଙ୍ଗରାଜ ମିଶ୍ର ପୁରୀ ଜିଲ୍ଲାର ସତ୍ୟବାଦୀ ନିକଟସ୍ଥ ଶ୍ରୀରାମଚନ୍ଦ୍ରପୁର ଶାସନରେ ୧୮୯୪ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ସେ ଜଣେ ମେଧାବୀ ଛାତ୍ର ଏବଂ ଦକ୍ଷ ଶିକ୍ଷକ ଭାବରେ ସୁନାମଧନ୍ୟ । ଲିଙ୍ଗରାଜ ମିଶ୍ର ୧୯୦୮ ମସିହାରେ ଏମ. ଇ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପୁରୀ ଜିଲ୍ଲା ସ୍କୁଲରେ ପଢ଼ିଲେ । ସେ ଆଇ. ଏ. ଏବଂ ବି.ଏ. ପଢ଼ୁଥିବା ବେଳେ ବୃତ୍ତି ପାଉଥିଲେ ।

୧୯୧୯ ମସିହାରେ ସଂସ୍କୃତ ଏମ୍. ଏ.ରେ ଲିଙ୍ଗରାଜ ସ୍ୱର୍ଣ୍ଣପଦକ ଲାଭ କଲେ ଏବଂ ସଂସ୍କୃତ ଅଧ୍ୟାପକ ଭାବରେ ନିଯୁକ୍ତି ପାଇଲେ । ୧୯୨୧ ମସିହାରେ ଲିଙ୍ଗରାଜ ଚାକିରି ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ୧୯୨୪ ମସିହାରେ ସେ ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷକତା କଲେ । ୧୯୩୭ ଏବଂ ୧୯୪୨ ମସିହାର ଆନ୍ଦୋଳନରେ ଭାଗନେଇ ସେ କାରାବରଣ କରିଥିଲେ । ତାଙ୍କର ରାଜନୀତିକ ଜୀବନକାଳ ମଧ୍ୟରେ ଶ୍ରୀ ମିଶ୍ର ୧୯୨୭ ମସିହାରେ ବିହାର ଓଡ଼ିଶା କାଉନସିଲର ସଭ୍ୟ ଏବଂ ୧୯୫୨ ମସିହାରେ ପାର୍ଲିଆମେଣ୍ଟ ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ ।

୧୯୨୮ ମସିହାରେ ଲୋକସେବକ ମଣ୍ଡଳ ସଭ୍ୟ ହୋଇ ସେ ସମାଜର ସମ୍ପାଦକ ହେଲେ । ୧୯୪୬ ମସିହାରେ ଓଡ଼ିଶାର ଶିକ୍ଷାମନ୍ତ୍ରୀ ଭାବରେ ସେ ବହୁ ଉନ୍ନତିମୂଳକ କାର୍ଯ୍ୟ କରିଥିଲେ । ସେ ଜଣେ ଲେଖକ ଥିଲେ ଏବଂ ବାଲ୍ମୀକି ରାମାୟଣର ଗଦ୍ୟାନୁବାଦ ତାଙ୍କର ମହାନକୃତି ମଧ୍ୟରେ ଅନ୍ତର୍ଭୁକ୍ତ । ବିଖ୍ୟାତ ବ୍ୟକ୍ତିମାନଙ୍କର ଜୀବନୀ ରଚନା କରି ସେ ଶ୍ରେଷ୍ଠ ବହୁ ଅନେକ ଗଦ୍ୟ ଲେଖା ପ୍ରକାଶ କଲେ । ୧୯୫୭ ମସିହାରେ ସେ ଶେଷ ନିଶ୍ୱାସ ତ୍ୟାଗ କଲେ ।

## ଲକ୍ଷ୍ମୀଧର ଗର୍ବବଡ଼ୁ :

ଲକ୍ଷ୍ମୀଧର ଗର୍ବବଡ଼ୁ ୧୯୦୩ ମସିହାରେ ପୁରୁଣା ଭୁବନେଶ୍ୱରରେ ଜନ୍ମ ହୋଇଥିଲେ । ସେ ଉତ୍କଳ ସମ୍ମିଳନୀରୁ ଆର୍ଥିକ ସାହାଯ୍ୟ ପାଇ ଇଞ୍ଜିନିୟରିଂ ପଢ଼ିଲେ । ସେ ଜଣେ ବହୁ ବିଦ୍ୱାନ ବ୍ୟକ୍ତି ଥିଲେ । ଅନେକ ଭାଷା ଉପରେ ତାଙ୍କର ଦକ୍ଷତା ଥିଲା । ଓଡ଼ିଆ, ଇଂରେଜୀ ଏବଂ ଅର୍ଥନୀତିରେ ଗର୍ବବଡ଼ୁ କୃତିତ୍ୱର ସହ ଏମ୍.ଏ. ପାଶ୍ କରିଥିଲେ । ହିନ୍ଦୀ ପରୀକ୍ଷାରେ କୃତିତ୍ୱ ଦେଖାଇ ସେ ୧୯୩୪ ମସିହାରେ 'ହିନ୍ଦୀ ବିଶାରଦ' ଉପାଧି ପାଇଲେ । ଲକ୍ଷ୍ମୀଧର ଗର୍ବବଡ଼ୁ କଟକର ମିଶନ୍ ସ୍କୁଲରେ ବହୁବର୍ଷ ଶିକ୍ଷକତା କରିଥିଲେ ।

ତାଙ୍କର କର୍ମମୟ ଜୀବନକାଳ ମଧ୍ୟରେ ସେ ବହୁ ସଂସ୍ଥା ସହିତ ଜଡ଼ିତ ଥିଲେ । ଜଣେ ସମ୍ପାଦକ ଭାବରେ ଗର୍ବବଡ଼ୁ ସହଯୋଗ, ସମାଲୋଚକ, ସହକାର, ଷ୍ଟାର୍ ଅଫ୍ ଉତ୍କଳ (ଇଂରେଜୀ) ବୈତରଣୀ ପତ୍ରିକା (ଇଂରେଜୀ) ସମ୍ପାଦନା କରିଥିଲେ । ଏତଦ୍ ବ୍ୟତୀତ କଟକ ସେଣ୍ଟ୍ରାଲ ବ୍ୟାଙ୍କର ନିର୍ଦ୍ଦେଶକ ଏବଂ ଉତ୍କଳ ସାହିତ୍ୟ ସମାଜର ସମ୍ପାଦକ ଭାବରେ ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱର ପରିଚୟ ମିଳେ । ସେ ଶତାଧିକ ଉର୍ଦ୍ଧ୍ୱ ପୁସ୍ତକ ରଚନା କରିଥିଲେ । ତାଙ୍କର ଆତ୍ମଜୀବନୀ "ଜୀବନ ଓ ଜୀବନୀ" ନାମରେ ପ୍ରକାଶିତ ।

ସେ ଓଡ଼ିଶା ବିଧାନସଭା ଏବଂ ଲୋକସେବକ ମଣ୍ଡଳର ସଭ୍ୟ ଥିଲେ । ସେ ତାଙ୍କର ବହୁମୁଖୀ ପ୍ରତିଭା ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସମ୍ମାନସୂଚକ ଡକ୍ଟରେଟ୍ ପାଇଥିଲେ । ସେ ହିନ୍ଦୁ ଥିଲେ ସତ କିନ୍ତୁ ମୁସଲମାନ ଏବଂ ଖ୍ରୀଷ୍ଟିୟାନ୍‌ମାନଙ୍କ ପ୍ରତି ତାଙ୍କର ସମାନ ମନୋଭାବ ଥିଲା । ୧୯୯୦ ମସିହାରେ ଏହି ମହାନ୍ ବ୍ୟକ୍ତିଙ୍କର ଅବସାନ ହେଲା ।

## ଶଶିଭୂଷଣ ରାୟ :

ଶଶିଭୂଷଣ ରାୟ ଆଧୁନିକ ଓଡ଼ିଆ ସାହିତ୍ୟର ସ୍ରଷ୍ଟା । ରାଧାନାଥ ରାୟଙ୍କର ସୁଯୋଗ୍ୟ ସନ୍ତାନ । ସେ ୧୮୭୪ ମସିହାରେ ଜନ୍ମ ହୋଇ ୧୯୫୩ ମସିହାରେ ଇହଧାମ ତ୍ୟାଗ କରିଥିଲେ । ରାଧାନାଥଙ୍କ ସହିତ ସେ ବିଭିନ୍ନ ସ୍ଥାନ ଭ୍ରମଣ କରି ଅନେକ ଅଭିଜ୍ଞତା ଅର୍ଜନ କରିଥିଲେ । ଶଶିଭୂଷଣ ପ୍ରବନ୍ଧ ରଚନା କରିବାରେ ଥିଲେ ସିଦ୍ଧହସ୍ତ ।

ଅର୍ଦ୍ଧ ଶତାବ୍ଦୀରୁ ଉର୍ଦ୍ଧ୍ୱ କାଳ ଧରି ନିରବଚ୍ଛିନ୍ନ ସାଧନା ଚଳାଇ ସେ ବହୁ ପ୍ରବନ୍ଧ ସୃଷ୍ଟି କରି ଯାଇଅଛନ୍ତି । ତାଙ୍କର ପ୍ରବନ୍ଧଗୁଡ଼ିକ ଭ୍ରମଣ ବୃତ୍ତାନ୍ତଠାରୁ ଆରମ୍ଭ କରି ଶିକ୍ଷା ସମସ୍ୟା, ଧର୍ମ, ଦର୍ଶନ, ବିଜ୍ଞାନ, ମନସ୍ତତ୍ତ୍ୱ, ପ୍ରେମ, ଯୌବନ, ସାହିତ୍ୟ ପ୍ରଭୃତି ସମ୍ପର୍କରେ ଲିଖିତ । ତାଙ୍କର ପ୍ରକାଶିତ ପ୍ରବନ୍ଧ ଅପେକ୍ଷା ଅପ୍ରକାଶିତ ପ୍ରବନ୍ଧର ସଂଖ୍ୟା ଅଧିକ ।

ପ୍ରକାଶିତ ପ୍ରବନ୍ଧମାନଙ୍କ ମଧ୍ୟରେ ଦାକ୍ଷିଣାତ୍ୟ ଭ୍ରମଣ (୧୮୯୬), ଆର୍ଯ୍ୟାବର୍ତ୍ତ ଦର୍ଶନ (୧୯୧୧), ପିତୃସ୍ମୃତି (୧୯୧୨), କନିକା ଦର୍ଶନ, ଚିଲିକା ଦର୍ଶନ, ଉତ୍କଳର ଋତୁଚରିତ (୧୯୧୩), ଉତ୍କଳ ପ୍ରକୃତି (୧୯୧୪), ବିବେକାନନ୍ଦ ସ୍ମୃତି (୧୯୩୬), ଚୈତନଚରିତ (୧୯୩୭), ଆଧୁନିକ ତାଳଚେର (୧୯୪୦), ପ୍ରବନ୍ଧ ପ୍ରବାହ (୧୯୪୪), ବଡ଼ମ୍ବା ପ୍ରକୃତି (୧୯୪୭), ପ୍ରବନ୍ଧ ପ୍ରସୂନ ଶିକ୍ଷା (୧୯୫୩) ଇତ୍ୟାଦି ପ୍ରଧାନ । 'ପ୍ରବନ୍ଧ ସଂଗ୍ରହ' ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶିତ ହୋଇଥିଲା । ତାଙ୍କର ଇଂରେଜି, ଓଡ଼ିଆ, ସଂସ୍କୃତ ଓ ବଙ୍ଗଳା ସାହିତ୍ୟରେ ଅଗାଧ ପାଣ୍ଡିତ୍ୟ ଥିଲା ।

## ଶରତ ଚନ୍ଦ୍ର ମୁଖାର୍ଜୀ :

ସବୁଜ ସାହିତ୍ୟ ସମିତିର ଅନନ୍ୟତମ ବ୍ୟକ୍ତିତ୍ୱ ଶରତ ଚନ୍ଦ୍ର ଜଣେ ବିଶିଷ୍ଟ କବି ଭାବରେ ପରିଚିତ ଥିଲେ । ୧୯୦୧ ମସିହାରେ ତାଙ୍କର ଜନ୍ମ । ଜଣେ ଅଫିସର ଭାବରେ ସେ ଜୀବିକାର୍ଜନ କରୁଥିଲେ ମଧ୍ୟ ଆଧୁନିକ ଓଡ଼ିଆ ସାହିତ୍ୟର ସେ ଜଣେ ବଳିଷ୍ଠ ପୃଷ୍ଠପୋଷକ । ଛାତ୍ରାବସ୍ଥାରୁ ଶରତ ଚନ୍ଦ୍ରଙ୍କର କବିତା ଲେଖା ଆରମ୍ଭ ହୋଇଥିଲା ।

ତାଙ୍କର କବିତାଗୁଡ଼ିକ ପୁଷ୍ପପୁଷ୍ଟ ଏବଂ ସବୁଜ କବିତା (ସଂକଳନ)ରେ ପ୍ରକାଶିତ । 'ପଲ୍ଲୀମଙ୍ଗଳ' ନାମକ ଏକ ମାସିକ ମାନଚ୍ୟ ପତ୍ରିକା ମଧ୍ୟ ସେ ସମ୍ପାଦନା କରିଥିଲେ । ତାଙ୍କର କବିତାଗୁଡ଼ିକରେ ଯଥାର୍ଥରେ ସବୁଜ ଯୁଗର ପ୍ରାଣସ୍ପନ୍ଦନ ଅନୁଭୂତ ହୋଇଥାଏ । ୧୯୮୯ ମସିହାରେ ଶରତ ଚନ୍ଦ୍ରଙ୍କର ମୃତ୍ୟୁ ହୋଇଥିଲା ।

## ଶରତ ପଟ୍ଟନାୟକ :

ଶରତ ପଟ୍ଟନାୟକ ଓଡ଼ିଶା ତଥା ଭାରତର ବିଭିନ୍ନ ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନରେ ଅଂଶଗ୍ରହଣ ଗ୍ରହଣ କରି ବହୁ ନେତାଙ୍କର ସଂସ୍ପର୍ଶରେ ଆସିବାର ସୌଭାଗ୍ୟ ଅର୍ଜନ କରିଥିଲେ । ୧୯୦୮ ମସିହା ଜନ୍ ମାସ ୧୨ ତାରିଖରେ ଚୌଦ୍ୱାର ନିକଟସ୍ଥ ଶାଳଗାଁରେ ତାଙ୍କର ଜନ୍ମ । ତାଙ୍କର ପିତାଙ୍କ ନାମ ଥିଲା ପ୍ରିୟନାଥ କାନୁନ୍‌ଗୋ । ସେ ବହୁଗ୍ରାମ ନିକଟବର୍ତ୍ତୀ ଭୈରପୁର ଗ୍ରାମକୁ ତାଙ୍କ ମାମୁଁ ବଟକୃଷ୍ଣ ପଟ୍ଟନାୟକଙ୍କର ପୁଅ ହୋଇ ଆସିଥିଲେ । ଶରତ ପଟ୍ଟନାୟକ ଶୈଶବ ଅବସ୍ଥାରୁ ଥିଲେ ବିପ୍ଳବୀ ଏବଂ ଜୀବନର ଶେଷ ସମୟ ପର୍ଯ୍ୟନ୍ତ ମଧ୍ୟ ତାଙ୍କ ଭିତରେ ସେହି ଚେତନା ଉଜ୍ଜୀବିତ ଥିଲା । ଓଡ଼ିଶାରେ ଖୁବ୍ କମ୍ ଦିନ କଂଗ୍ରେସ କମିଟିରେ ରହି ସେ ଗୋବିନ୍ଦ ଚନ୍ଦ୍ର ମିଶ୍ରଙ୍କ ସହିତ ଦଶପଲ୍ଲା ମେଳିରେ ଯୋଗ ଦେଇଥିଲେ ।

ଶରତ୍ କାଶୀ ବିଦ୍ୟାପୀଠରେ ପଣ୍ଡିତ ମଦନମୋହନ ମାଳବ୍ୟଙ୍କ ନିକଟରେ ଶିକ୍ଷାଲାଭ କଲେ । ସେଠାରେ ସେ ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଆଚାର୍ଯ୍ୟ କୃପାଳନୀ, ରଫି ଅହମ୍ମଦ କିଦୱାଇ ଏବଂ ଡଃ ବି. ଆର୍. କେଶକର୍‌ଙ୍କର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ । କଂଗ୍ରେସ ପାର୍ଟିର ଜଣେ ସକ୍ରିୟ ସଭ୍ୟ ଭାବେ ସେ ଉତ୍ତର

ପ୍ରଦେଶ ଓ ବିହାରରେ ରହିଥିଲେ । ଉତ୍ତର ପ୍ରଦେଶର ଆନନ୍ଦ ଭବନରେ ଥିବା ସମୟରେ ନେହେରୁ ଏବଂ ଜୟପ୍ରକାଶଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ଓଡ଼ିଶାକୁ ଆସି ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଲେ ।

୧୯୪୯ ମସିହାରେ ଏକ ଷଡ଼ଯନ୍ତ୍ର ଘଟଣାକୁ କେନ୍ଦ୍ର କରି ତାଙ୍କୁ ବନ୍ଦୀ କରାଗଲା ଏବଂ ୧୯୬୨ ମସିହାରେ ତାଙ୍କର ଜେଲ କାଳ ଶେଷ ହେଲାବେଳକୁ ତାଙ୍କୁ ପୁନର୍ବାର ବନ୍ଦୀ କରାଗଲା । ସେ ଜଣେ ଶକ୍ତିଶାଳୀ ସଙ୍ଗଠକ ଥିଲେ । ଓଡ଼ିଶାରେ ଡଃ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ଏବଂ ରାଧାନାଥ ରଥଙ୍କ ସହିତ ତାଙ୍କର ନିବିଡ଼ ସମ୍ପର୍କ ଥିଲା । ସେ ମୁଖ୍ୟତଃ ନୀଳଗିରି ଏବଂ ଢେଙ୍କାନାଳର ସ୍ୱାଧୀନତା ଆନ୍ଦୋଳନ ଏବଂ ପ୍ରଜାଆନ୍ଦୋଳନରେ ଭାଗ ନେଇଥିଲେ । ୧୯୯୧ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ :

କନିକାର ରାଜା ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କର ଜନ୍ମ ହୋଇଥିଲା ୧୯୦୮ ମସିହାରେ । ଓଡ଼ିଶାର ବହୁ ଜନହିତକର କାର୍ଯ୍ୟ କରି ସେ ଚିରସ୍ମରଣୀୟ । ଅନେକ ବନ୍ଧ ଏବଂ ପୋଲ ନିର୍ମାଣରେ ତାଙ୍କର ବିଶିଷ୍ଟ ଭୂମିକା ଥିଲା । ବନ୍ୟା ନିୟନ୍ତ୍ରଣ ପାଇଁ ସେ ବହୁ ଉଦ୍ୟମ କରିଥିଲେ । ଭଞ୍ଜଦେଓ ଓଡ଼ିଶା ବିଧାନସଭାକୁ ନିର୍ବାଚିତ ହୋଇ କିଛିଦିନ ମନ୍ତ୍ରୀ ଥିଲେ ।

ସେ ଥିଲେ ଅତ୍ୟନ୍ତ ଶିକ୍ଷାର ପ୍ରିୟ । ତାଙ୍କ ଦ୍ୱାରା ନିର୍ମିତ ବୃହତ୍ ପାଠାଗାର ସମଗ୍ର ଭାରତବର୍ଷରେ ପ୍ରସିଦ୍ଧ । ଏହା ତାଙ୍କର କଳ୍ପନାର ଏକ ବିଶିଷ୍ଟତମ ଦିଗ । ସମଗ୍ର ପୃଥିବୀର ଗବେଷଣାତ୍ମକ ପ୍ରବନ୍ଧ ଏହି ପାଠାଗାରରେହିଁ ମିଳିପାରୁ ଥିଲା । ୧୯୮୨ ମସିହାରେ କଟକ ଡାକ୍ତରଖାନାରେ ତାଙ୍କର ମୃତ୍ୟୁ ହେଲା ।

## ଶ୍ୟାମାଚରଣ ତ୍ରିପାଠୀ :

ଶ୍ୟାମାଚରଣ ତ୍ରିପାଠୀଙ୍କ ଘର ମୟୂରଭଞ୍ଜରେ କିନ୍ତୁ କଟକରେ ସେ ଶିକ୍ଷାଲାଭ କରି ଅଧିକ ବର୍ଷ ରହିଥିଲେ । ଉଚ୍ଚଶିକ୍ଷାର ପ୍ରଶାସକ ଭାବେ ସେ ପ୍ରଥମେ ଓଡ଼ିଶାରୁ ଆଇ. ଇ. ଏସ. ପାଇଥିଲେ । ତାଙ୍କର କର୍ମମୟ ଜୀବନକାଳ ମଧ୍ୟରେ ସେ ଶିକ୍ଷା ବିଭାଗର ନିର୍ଦ୍ଦେଶକ ଏବଂ ରାଜସ୍ଥାନରେ ପି. ଏସ୍. ସିର ଚେୟାରମ୍ୟାନ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ସେ ଶିକ୍ଷାର ଉନ୍ନତି ପୁର୍ନଗଠନ, ତଥା ନବୀକରଣ ଦିଗରେ ଓଡ଼ିଶା ପାଇଁ ଅନେକ ସ୍ୱପ୍ନ ଦେଖିଥିଲେ ନିହିଁ ମଧ୍ୟକୁ କାର୍ଯ୍ୟକାରୀ କରି ପାରିନଥିଲେ । ରାଜସ୍ଥାନରେ ତାଙ୍କର ମୃତ୍ୟୁ ହୋଇଥିଲା ।

## ଶ୍ୟାମସୁନ୍ଦର ସେନ୍ :

ଶ୍ୟାମସୁନ୍ଦର ସେନ୍ ୧୮୮୯ ମସିହାରେ କେନ୍ଦ୍ରାପଡ଼ାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ପ୍ରାଣକୃଷ୍ଣ ସେନ୍ ଜଣେ ଖ୍ୟାତନାମା ଇଞ୍ଜିନିୟର ଥିଲେ ଏବଂ

କେନ୍ଦ୍ର ସରକାରଙ୍କ ତରଫରୁ ସେନ୍ ମହାନଦୀରେ ପୋଲ ନିର୍ମାଣ ଏବଂ ଜଳସେଚନ ଇତ୍ୟାଦି କାର୍ଯ୍ୟପାଇଁ କଟକରେ ଅବସ୍ଥାପିତ ହେଲେ । ଶ୍ୟାମସୁନ୍ଦର ଶିବପୁର ଇଞ୍ଜିନିୟରିଂ କଲେଜରୁ ଇଞ୍ଜିନିୟରିଂରେ ଡିପ୍ଲୋମା ଲାଭ କଲେ । ଚାକିରି କରିବା ତାଙ୍କର ଲକ୍ଷ୍ୟ ନଥିଲା ।

ସେ ଜଣେ ନାମଜାଦା କଣ୍ଟ୍ରାକ୍ଟର ଭାବରେ ରେଳବାଇ ବିଭାଗର ବହୁକାର୍ଯ୍ୟ ହାତକୁ ନେଇଥିଲେ । ଅନେକ ମୂଲ୍ୟବାନ ଏବଂ ନୂତନ ଧରଣର ଅଟ୍ଟାଳିକା ନିର୍ମାଣରେ ତାଙ୍କର ଅସାଧାରଣ କୃତିତ୍ୱ ଥିଲା । ବିଦେଶରୁ ବହୁ ମୂଲ୍ୟବାନ କାର୍ ଆମଦାନୀ କରି ପୂର୍ବ ରାଜ୍ୟମାନଙ୍କରେ ବିକ୍ରି କରି ଶ୍ରୀ ସେନ ପ୍ରସିଦ୍ଧି ଅର୍ଜନ କରିଥିଲେ । କଟକ ହଷ୍ଟେଲ ନାମକ ଓଡ଼ିଶାର ପ୍ରଥମ ହୋଷ୍ଟେଲ ପ୍ରତିଷ୍ଠା ତାଙ୍କ ଦ୍ୱାରା ହୋଇଥିଲା । ୧୯୭୧ ମସିହାରେ ସେ ସ୍ୱର୍ଗାରୋହଣ କଲେ ।

## ଶ୍ରୀକୃଷ୍ଣ ମହାପାତ୍ର :

ଓଡ଼ିଶାର ଜଣେ ଦକ୍ଷ ପୋଲିସ ଅଫିସର ଭାବରେ ଶ୍ରୀକୃଷ୍ଣ ମହାପାତ୍ର ଥିଲେ ପ୍ରତିଭାଶାଳୀ । ତାଙ୍କ ଦୃଷ୍ଟିରେ ଦୋଷୀ ହେଲେ ବି ପୁଅ ମଧ୍ୟ କଠୋର ଶାସ୍ତି-ବିଧାନର ଯୋଗ୍ୟ । ଏହି ବିଭାଗରେ ତାଙ୍କର କାର୍ଯ୍ୟଦକ୍ଷତା ପାଇଁ ସେ ପଦୋନ୍ନତି ପାଇ ପୋଲିସ ବିଭାଗର ଶୀର୍ଷ ସ୍ଥାନକୁ ଉଠି ପାରିଥିଲେ । ପରବର୍ତ୍ତୀ ସମୟରେ ରାଜନୀତିରେ ଅଂଶ ଗ୍ରହଣ କରି ସେ ବିହାର ଓଡ଼ିଶା ବିଧାନ ପରିଷଦର ସଭ୍ୟ ଏବଂ କଟକ ମୁନିସିପାଲିଟିର ଚେୟାରମ୍ୟାନ ହେଲେ । କଟକ ମୋଟର ଆସୋସିଏସନ୍‌ର ଜଣେ କାର୍ଯ୍ୟକାରୀ ସଭ୍ୟ ଭାବରେ ତାଙ୍କର ବେଶ୍ ପ୍ରତିଷ୍ଠା ଥିଲା ।

## ଶ୍ରୀହର୍ଷ ମିଶ୍ର :

ଶ୍ରୀହର୍ଷ ମିଶ୍ରଙ୍କର ଜନ୍ମ ହୋଇଥିଲା ୧୯୧୯ ମସିହାରେ । ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ଜଣେ ସ୍ୱାଧୀନତା ସଂଗ୍ରାମୀ ଭାବରେ ଶ୍ରୀ ମିଶ୍ର ୧୯୩୦ ମସିହାରେ ଅସହଯୋଗ ଆନ୍ଦୋଳନରେ ଯୋଗଦେଇ ପାଞ୍ଚବର୍ଷ ଆଠମାସ ପାଇଁ କାରାବରଣ କରିଥିଲେ ।

ଦୈନିକ ସମ୍ବାଦପତ୍ରର ସାମ୍ବାଦିକ ରୂପେ ସେ ଖ୍ୟାତନାମା । ଦୈନିକ ଆଶା, ନଅାଁଖୁଣ୍ଟା, ନବଭାରତ, ସମାଜ, କଳିଙ୍ଗ, ଜନଶକ୍ତି ଏବଂ ଶେଷରେ ପ୍ରଜାତନ୍ତ୍ରରେ ସେ କାର୍ଯ୍ୟ କରିଥିଲେ । ଫରୱାର୍ଡ଼ ବ୍ଲକରେ ଯୋଗଦେଇ ଶ୍ରୀହର୍ଷ ମିଶ୍ର ସୁବାସ ବୋଷଙ୍କ ସହିତ କାର୍ଯ୍ୟ କରିବାପାଇଁ ସୁଯୋଗ ପାଇଥିଲେ ।

ସମାଜରେ ସେ ୧୮ ବର୍ଷ କାର୍ଯ୍ୟକରି ସମାଜ ତରଫରୁ ସର୍ବଭାରତୀୟ ସାମ୍ବାଦିକ ସମ୍ମିଳନୀ ଦିଲ୍ଲୀଠାରେ ପ୍ରତିନିଧିତ୍ୱ କରିଥିଲେ । ପ୍ରଜାତନ୍ତ୍ରରେ ୧୪ ବର୍ଷ କାର୍ଯ୍ୟ କରିବାପରେ ଶ୍ରୀ ମିଶ୍ର କାର୍ଯ୍ୟରୁ ଅବସର ନେଲେ । ଜଣେ ନିର୍ଭୀକ ସାମ୍ବାଦିକ ଏବଂ ବକ୍ତା ପରି ତାଙ୍କର ସାହିତ୍ୟିକ ପ୍ରତିଭା ବିଶିଷ୍ଟ ସ୍ଥାନୀୟ । ତାଙ୍କର ରଚନା-

ମାନଙ୍କ ମଧ୍ୟରେ ସ୍ୱାଧୀନ ଆନ୍ଦୋଳନ, ଗଣତନ୍ତ୍ର ଭାରତ, ଆଚାର୍ଯ୍ୟ କୃପାଳନୀ, ବ୍ରିଟିଶ ଶାସନର ଚକ୍ରତଳେ, ଅଷ୍ଟମିବଦଳକ୍ତ ଇତ୍ୟାଦି ପ୍ରଧାନ । ୧୯୮୪ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ଶ୍ରୀଧର ମହାପାତ୍ର :

ଶ୍ରୀଧର ମହାପାତ୍ର ୧୯୦୯ ମସିହା ସେପ୍ଟେମ୍ବର ମାସ ୨ ତାରିଖରେ ଜନ୍ମ ହୋଇଥିଲେ । ତାଙ୍କର ପିତାଙ୍କ ନାମ ଗଙ୍ଗାଧର ମହାପାତ୍ର । ବାଲ୍ୟାବସ୍ଥାରୁ ଶ୍ରୀଧର ଥିଲେ ସାହିତ୍ୟାନୁରାଗୀ । ୧୯୩୩ ମସିହାରେ ସେ ଷ୍ଟୁଡେଣ୍ଟ ଷ୍ଟୋରରେ ଯୋଗ ଦେଲେ । ଏହା ତାଙ୍କୁ ସନ୍ତୁଷ୍ଟ କରିପାରିଲାନି । ଏହାପରେ ସ୍ୱାଧୀନ ଭାବରେ ସେ ଗ୍ରନ୍ଥ ମନ୍ଦିର ନାମକ ଏକ ପୁସ୍ତକ ପ୍ରକାଶନ ସଂସ୍ଥା ପ୍ରତିଷ୍ଠା କଲେ ।

୧୯୬୧ ମସିହାରେ ଗ୍ରନ୍ଥପ୍ରକାଶନୀ ନାମକ ପ୍ରିଣ୍ଟିଂ ହାଉସ୍ ପ୍ରତିଷ୍ଠା କରି ସେ ବହୁ ଲେଖକ ଏବଂ ସାହିତ୍ୟିକ ମାନଙ୍କର ପୁସ୍ତକ ପ୍ରକାଶରେ ସହାୟକ ହୋଇଥିଲେ । ସେ ନିଜେ ମଧ୍ୟ ଥିଲେ ଅନେକ ଉପନ୍ୟାସ ଏବଂ ପାଠ୍ୟ ପୁସ୍ତକର ରଚୟିତା । "ରକ୍ତ ଗୋଲାପର ରକ୍ତସ୍ରୋତ" ହେଉଛି ତାଙ୍କର ଏକ ଖ୍ୟାତନାମା ଐତିହାସିକ ଉପନ୍ୟାସ । ସେ ମଧ୍ୟ ଅନେକ ପୁସ୍ତକର ଅନୁବାଦକ ।

ତାଙ୍କର ଅନୁଦିତ ପୁସ୍ତକମାନଙ୍କ ମଧ୍ୟରେ ଦଣ୍ଡିଙ୍କର ଦଶକୁମାର ଚରିତ, ମୁକ୍ତମାଳା, ନଳାଦ୍ରୀ ମହୋଦୟ ପ୍ରଧାନ । ତାଙ୍କର ମହାନ୍ ସାହିତ୍ୟିକ କୃତିମାନଙ୍କ ପାଇଁ ସେ ଓଡ଼ିଆ ସାହିତ୍ୟ ଏକାଡେମୀ, ଉତ୍କଳ ପାଠକ ସଂସଦ ତଥା ଅନେକ ସଂସ୍ଥା ଦ୍ୱାରା ପୁରସ୍କୃତ ହୋଇଥିଲେ । ୧୯୮୯ ମସିହା ନଭେମ୍ବର ମାସ ୨୫ ତାରିଖରେ ସେହି ମହାନ ବ୍ୟକ୍ତିତ୍ୱର ଅବସାନ ହେଲା ।

## ଶ୍ରୀଧର ଦାସ :

କଟକର ଜଣେ ଲୋକପ୍ରିୟ ଶିକ୍ଷକ ଏବଂ ଗୁଣବତ୍ସଳ ଅଧ୍ୟାପକ ଭାବରେ ଶ୍ରୀଧର ଦାସ ବେଶ୍ ଜଣାଶୁଣା । ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗର ଅଧ୍ୟାପକ ରୂପେ ଯୋଗଦେଇ ସେ ମୁଖ୍ୟ ଅଧ୍ୟାପକ ପର୍ଯ୍ୟନ୍ତ ଉନ୍ନୀତ ହୋଇ କାର୍ଯ୍ୟରୁ ଅବସର ନେଇଥିଲେ । ସେ ମଧ୍ୟ ଜଣେ ବରିଷ୍ଠ ସାହିତ୍ୟାନୁରାଗୀ । ସରଳ ଜୀବନ ଯାପନ ଏବଂ ଉଚ୍ଚ ଚିନ୍ତା ଥିଲା ତାଙ୍କ ଜୀବନର ମହାନ୍ ଆଦର୍ଶ । ଜଣେ ଲେଖକ ଭାବରେ ସେ ଅନେକ ପୁସ୍ତକର ରଚୟିତା । ତାଙ୍କ ରଚିତ ପୁସ୍ତକମାନଙ୍କ ମଧ୍ୟରେ ବହୁ ବ୍ୟାକରଣ ପୁସ୍ତକ, ପାଠ୍ୟ ପୁସ୍ତକ ଏବଂ ଇଂରେଜ ତଥା ସଂସ୍କୃତ ପୁସ୍ତକର ଅନୁବାଦ ଅନ୍ତର୍ଭୁକ୍ତ ।

## ଶ୍ରୀବତ୍ସ ପଟ୍ଟନାୟକ :

ଶ୍ରୀବତ୍ସ ପଟ୍ଟନାୟକ ଜଣେ ଦକ୍ଷ ସଙ୍ଗୀତଜ୍ଞ ଭାବରେ ବେଶ୍ ଲୋକପ୍ରିୟତା ଅର୍ଜନ କରିଥିଲେ । ୧୯୩୬ ମସିହାରେ ବ୍ରହ୍ମପୁରରେ ତାଙ୍କର ଜନ୍ମ । ବ୍ରହ୍ମପୁର କୃଷ୍ଣଚନ୍ଦ୍ର

ଉକ୍ତ ବିଦ୍ୟାଳୟରୁ ପାଠପଢ଼ା ଶେଷକରି ସଙ୍ଗୀତ ସେବାରେ ସେ ନିୟୋଜିତ ହେଲେ । ଏଥିପାଇଁ ଶ୍ରୀ ପଟ୍ଟନାୟକଙ୍କୁ ଅନେକ ଦିନ ବମ୍ବେରେ ରହିବାକୁ ପଡ଼ିଥିଲା ।

କଟକ ଆକାଶବାଣୀ କେନ୍ଦ୍ରର ଜଣେ ବରିଷ୍ଠ ସଙ୍ଗୀତ ସଂଯୋଜକ ଭାବରେ ସେ ଖ୍ୟାତିଲାଭ କରିଥିଲେ । ଶାସ୍ତ୍ରୀୟ ସଙ୍ଗୀତ ର ସେ ହେଉଛନ୍ତି ଜଣେ ଗୁରୁ । ବହୁ ଚଳଚ୍ଚିତ୍ରର ସଙ୍ଗୀତ ନିର୍ଦ୍ଦେଶକ ଭାବରେ ତାଙ୍କର ଖ୍ୟାତି ଥିଲା । ଦୀର୍ଘ ୪୦ ବର୍ଷଧରି ସଙ୍ଗୀତ ସେବାରେ ନିଜକୁ ଉତ୍ସର୍ଗକରି ସେ ୧୯୯୩ ମସିହା ମାର୍ଚ୍ଚ ମାସ ୧୮ ତାରିଖରେ ଶେଷନିଃଶ୍ୱାସ ତ୍ୟାଗକଲେ ।

## ସଂଗ୍ରାମ କେଶରୀ ରାୟ :

ସଂଗ୍ରାମ କେଶରୀ ରାୟ ଥିଲେ ଜଣେ ଦୁଃସାହାସିକ ବ୍ୟକ୍ତିତ୍ୱ । ତାଙ୍କର ଜନ୍ମ ହୋଇଥିଲା ୧୯୧୧ ମସିହା ନଭେମ୍ବର ମାସ ୧୯ ତାରିଖରେ । ସେ ମାଟ୍ରିକ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଇଂଲଣ୍ଡର Wool witch military Academy ରେ ନାମ ଲେଖାଇଲେ । ସେଠାରୁ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇ ଭାରତକୁ ପ୍ରତ୍ୟାବର୍ତ୍ତନ ପୂର୍ବକ ଭାରତୀୟ ସୈନ୍ୟ ବାହିନୀରେ ଯୋଗ ଦେଲେ ।

ତାଙ୍କର ଦୁଃସାହସିକତା ଏବଂ କାର୍ଯ୍ୟ ଦକ୍ଷତା ଯୋଗୁଁ ସେ ବ୍ରିଗେଡ଼ିଅର ପର୍ଯ୍ୟନ୍ତ ଉନ୍ନୀତ ହୋଇଥିଲେ । ପରେ ସେ ଏଥିରୁ ଇସ୍ତଫା ଦେଇ ପାରାଦ୍ୱୀପ ପୋର୍ଟ ଟ୍ରଷ୍ଟର ପରିଚାଳକ ଏବଂ ଓଡ଼ିଶା ପରିବହନ ନିଗମର ଚେୟାରମ୍ୟାନ ହେଲେ । ଅନେକ ଶିକ୍ଷାନୁଷ୍ଠାନ ସହିତ ତାଙ୍କର ସମ୍ପର୍କ ଥିଲା । ୧୯୭୦ ମସିହା ଅଗଷ୍ଟ ୧୦ ତାରିଖରେ ଏକ ମର୍ମନ୍ତୁଦ ଟ୍ରାକ୍ଟର ଦୁର୍ଘଟଣାରେ ସେ ପ୍ରାଣ ହରାଇଲେ ।

## ସାମୁଏଲ ଦାସ :

ସାମୁଏଲ ଦାସ ୧୮୯୩ ମସିହା ନଭେମ୍ବର ମାସ ୧୬ ତାରିଖରେ ସମ୍ବଲପୁରରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ମେଧାବୀ ଛାତ୍ର ଭାବରେ ପରିଚିତ । ଜୀବନରେ ପ୍ରଥମ ଶ୍ରେଣୀ ବ୍ୟତୀତ ସେ କେବେ ଦ୍ୱିତୀୟସ୍ଥାନ ପାଇ ନ ଥିଲେ । ରେଭେନ୍‌ସା କଲେଜରୁ ଡିଷ୍ଟିଂସନ୍ ସହିତ ବି.ଏ. ପାଶ୍ କରି ସାମୁଏଲ ଦାସ କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ୍ କଲେ । ଓଡ଼ିଶା ସିଭିଲ୍ ସର୍ଭିସ ପାଇ ସେ ଡେପୁଟି ମାଜିଷ୍ଟ୍ରେଟ ହୋଇଥିଲେ । ୧୯୩୨ ମସିହାରୁ ୧୯୩୬ ମସିହା ପର୍ଯ୍ୟନ୍ତ ପାଟଣା ସଚିବାଳୟରେ ଥାଇ ଶ୍ରୀ ଦାସ ସ୍ୱତନ୍ତ୍ର ଓଡ଼ିଶା ଗଠନପାଇଁ ଯଥେଷ୍ଟ କାର୍ଯ୍ୟ କରିଥିଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେଲା । ସାମୁଏଲ ଦାସ ଓଡ଼ିଶା ଆସି କଟକର ମାଜିଷ୍ଟ୍ରେଟ ହେଲେ ।

ତାଙ୍କର ଜାତି ପ୍ରୀତି ଏବଂ ଦକ୍ଷ ଶାସନ ବ୍ୟବସ୍ଥା ଯୋଗୁ କଟକ ସହରରେ କୌଣସି ଗୁଳଗୁଳାର ଶବ୍ଦ ଶୁଣାଯାଉ ନ ଥିଲା । ରାଜସ୍ୱ, ଶିକ୍ଷା ଏବଂ ସ୍ୱାସ୍ଥ୍ୟ ବିଭାଗର ସଚିବ ଭାବରେ ସେ ଅନେକ ଦିନ କାର୍ଯ୍ୟ କରିଥିଲେ । ଗଡ଼ଜାତର ସ୍ୱତନ୍ତ୍ର କମିଶନର

ରୂପେ ଅବସ୍ଥାପିତ ହେବାପରେ ସେ ଓଡ଼ିଶାର ବରପୁତ୍ର ଡଃ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ ଏବଂ ରାଧାନାଥ ରଥ ପ୍ରଭୃତିଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସିଲେ । କିଛିକାଳ ପାଇଁ ପି.ଏସ୍.ସି.ର ସେକ୍ରେଟାରୀ ଭାବରେ ମଧ୍ୟ ସେ କାର୍ଯ୍ୟ କରିଥିଲେ । ରେଡ଼କ୍ରସ ସୋସାଇଟି, ଟି.ବି. ଏବଂ ଲେପ୍ରସି ସୋସାଇଟି ଏବଂ ବ୍ଲଡ଼ ବ୍ୟାଙ୍କ୍ ପ୍ରଭୃତି ସଂସ୍ଥା ସହିତ ତାଙ୍କର ନିବିଡ଼ ସମ୍ପର୍କ ଥିଲା ।

ସେ ଜଣେ ଖ୍ରୀଷ୍ଟିୟାନ୍ ଥିଲେ ଏବଂ ବ୍ରଜାନନ୍ଦ ମହାନ୍ତିଙ୍କ ସହିତ ଖ୍ରୀଷ୍ଟ କଲେଜ ପ୍ରତିଷ୍ଠା କରି ଏହାର ପରିଚାଳନା କମିଟିର ଚେୟାରମ୍ୟାନ ହୋଇଥିଲେ । ତାଙ୍କର କଟକର ରାଷ୍ଟ୍ରଭାଷା ରୋଡ଼ର ବାସଭବନରେ ସେ ରହୁଥିଲେ । ଖ୍ରୀଷ୍ଟଧର୍ମ ପ୍ରତି ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା ଏବଂ ସେ ମଧ୍ୟ ଶ୍ରୀରାମପୁର ଚର୍ଚ୍ଚ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ । ୧୯୮୨ ମସିହା ଅକ୍ଟୋବର ମାସ ୫ ତାରିଖରେ ତାଙ୍କର ଦେହାନ୍ତ ହେଲା ।

## ସରଳା ଦେବୀ :

କଟକର ନାରୀ ପ୍ରତିଭାମାନଙ୍କ ମଧ୍ୟରୁ ସରଳା ଦେବୀ ଅନ୍ୟତମ । ସେ ୧୯୦୪ ମସିହା ଅଗଷ୍ଟ ମାସ ୧୦ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଜଣେ ବିପ୍ଳବୀ, ନାରୀ ନେତ୍ରୀ ଏବଂ ସାହିତ୍ୟିକା ଭାବରେ ସେ ସୁପରିଚିତା । ବାସନ୍ତୀ ଉପନ୍ୟାସକୁ ପର୍ଯ୍ୟାୟ-କ୍ରମେ ଯେଉଁ ୧୨ ଜଣ ଲେଖକ ଲେଖିକା ରଚନା କରି ପରିପୁଷ୍ଟ କରି ଯାଇଛନ୍ତି, ତନ୍ମଧ୍ୟରୁ ସରଳା ଦେବୀ ଅନ୍ୟତମା । ସିଏ ଏକମାତ୍ର ନାରୀନେତ୍ରୀ ଯିଏ ମହିଳାମାନଙ୍କୁ ସ୍ୱାଧୀନତା ସଂଗ୍ରାମରେ ଭାଗ ନେବା ପାଇଁ ଉତ୍ସାହିତ କରୁଥିଲେ ।

ତାଙ୍କର ସ୍ୱାମୀ ଭଗିରଥି ମହାପାତ୍ର ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଥିଲେ ଏବଂ ମାତ୍ର ୧୪ ବର୍ଷ ବୟସରୁ ସେ ଏଥିରେ ଯୋଗ ଦେଇଥିଲେ । ସରଳାଦେବୀ ୧୯୩୭ ମସିହା ନିର୍ବାଚନରେ କଟକ ସହରରୁ ବିଧାନ ସଭାକୁ ନିର୍ବାଚିତ ହୋଇଥିଲେ । ସେ ଥିଲେ ଭାରତୀୟ ଜାତୀୟ କଂଗ୍ରେସର ଜଣେ ଖ୍ୟାତନାମା ନେତ୍ରୀ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ ସେ ବହୁବାର କାରାବରଣ କରିଥିଲେ । ବହୁ ଅନୁଷ୍ଠାନ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲେ ।

ତାଙ୍କର କର୍ମମୟ ଜୀବନ ମଧ୍ୟରେ ସେ ପ୍ରଦେଶ କଂଗ୍ରେସ କମିଟିର ସେକ୍ରେଟାରୀ, ସର୍ବଭାରତୀୟ ମହିଳା ସମ୍ମିଳନୀର ସଭ୍ୟା, ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ ସଭ୍ୟା ଏବଂ ଉତ୍କଳ ସାହିତ୍ୟ ସମାଜର ସମ୍ପାଦିକା ଓ ଉପସଭାପତି ଥିଲେ । ଜଣେ କୃତି ସାହିତ୍ୟିକା ଭାବରେ ସରଳା ଦେବୀ ଓଡ଼ିଆ ବନ୍ଧୁ, ସାରଳା ମହାଭାରତରେ ନାରୀ ଚରିତ୍ର, ନାରୀର ଦାବୀ, ନାରୀ ସମସ୍ୟା, ନାରୀ ଜଗତ, ଭାରତୀୟ ମହିଳା ପ୍ରସଙ୍ଗ, ଉତ୍କଳ ଭାରତୀ, କବି ପ୍ରତିଭା, ରବୀନ୍ଦ୍ର ପୂଜା, ବିଶ୍ୱବିପ୍ଳବୀ, ପଞ୍ଚପ୍ରଦୀପ, ମନୁ କାହାଣୀ ରଚନା କରିଅଛନ୍ତି । ସେ ଜଣେ ସଫଳଧର୍ମୀ ଅନୁବାଦିକା ।

ତାଙ୍କର ଅନୁବାଦ ମଧ୍ୟରେ ସନ୍ତଧର୍ମ, ବାଣୀମାଳା, ଅମୂଲ୍ୟନିଧି, କଥା ରାମାୟଣ, ଅଭ୍ୟୁବାଣୀ ପ୍ରଭୃତି ପ୍ରଧାନ । ତାଙ୍କର ରାମକୃଷ୍ଣମାନନ୍ଦ ପୁସ୍ତକ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହୋଇଛି । ଓଡ଼ିଶାରେ ନାରୀ ଜାଗରଣର ସୂଚନା ଏବଂ ମାତୃ ଜାତିର ମହତ୍ତ୍ୱ ପ୍ରତିପାଦନରେ ତାଙ୍କର ରଚନାବଳୀ ପରିପୁଷ୍ଟ । ଏହି ମହୀୟସୀ ମହିଳା ୧୯୮୬ ମସିହା ଅକ୍ଟୋବର ମାସ ୪ ତାରିଖରେ ସ୍ୱର୍ଗାରୋହଣ କଲେ ।

## ସତ୍ୟବ୍ରତ ପଟ୍ଟନାୟକ :

ସତ୍ୟବ୍ରତ ପଟ୍ଟନାୟକ କଟକର ସ୍ଥାୟୀ ଅଧିବାସୀ ଥିଲେ ଏବଂ ଗୃହଦମାରୀଚୀକ ନିକ ନିକଟରେ ତାଙ୍କ ଘରଥିଲା । ଜଣେ ଖ୍ୟାତନାମା ଉକିଲ ଭାବରେ ତାଙ୍କର ଯେତିକି ପ୍ରସିଦ୍ଧି ନଥିଲା, ତଦପେକ୍ଷା ଜଣେ ଦକ୍ଷ ଖେଳାଳୀ ଏବଂ କ୍ରୀଡ଼ାବିତ୍ ଭାବରେ ସେ ଖ୍ୟାତି ଅର୍ଜନ କରିଥିଲେ । ଓଡ଼ିଶାରେ କ୍ରୀଡ଼ାର ଉନ୍ନତି ପାଇଁ ସେ ବହୁକାର୍ଯ୍ୟ କରିଅଛନ୍ତି । ସେ ହେଉଛନ୍ତି ଓଡ଼ିଶାର ପ୍ରଥମ ବ୍ୟକ୍ତି, ଯିଏ ପ୍ରଥମେ ବୁଟ୍‌ପିନ୍ଧି ଫୁଟବଲ୍ ଖେଳୁଥିଲେ । ସେ ଜଣେ ସୁସଙ୍ଗଠକ, କ୍ରୀଡ଼ାପ୍ରେମୀ, ବନ୍ଧୁସ୍ନେହୀ ଏବଂ ମଧୁରଭାଷୀ ବ୍ୟକ୍ତି । ତାଙ୍କର ସ୍ମୃତିର ସ୍ମାରକୀ ସ୍ୱରୂପ ବାରବାଟୀ ଦୁର୍ଗ ପଡ଼ିଆ ମଧ୍ୟରେ ସତ୍ୟବ୍ରତ ଷ୍ଟାଡ଼ିୟମ ନିର୍ମିତ ହୋଇଛି ।

## ସାଲବେଗ :

ସପ୍ତଦଶ ଶତାବ୍ଦୀର ପ୍ରତିଭାମାନଙ୍କ ମଧ୍ୟରୁ ସାଲବେଗ ଅନ୍ୟତମ । ଜନଶ୍ରୁତି ଅନୁସାରେ ତାଙ୍କ ବାପା ଲାଲବେଗ ଥିଲେ ମୁସଲମାନ କିନ୍ତୁ ମାତା ଥିଲେ ହିନ୍ଦୁ ବ୍ରାହ୍ମଣ ମହିଳା । ଯବନ ସେନାପତିମାନଙ୍କ ମଧ୍ୟରୁ ଲାଲବେଗ ପ୍ରତିଭାଶାଳୀ ଥିବାରୁ କଟକର ଲାଲବାଗ ତାଙ୍କ ନାମରେ ନାମିତ ହୋଇଛି । ସାଲବେଗ ମହାବାହୁ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଥିଲେ ଏବଂ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଅନେକ ଭଜନ, ଜଣାଣ ଓ ଗୀତିକବିତା ସେ ରଚନା କରିଅଛନ୍ତି । ତାଙ୍କର ଭକ୍ତି ରଚନାର ସଂଖ୍ୟା ଏତେ ଅଧିକ ନ ଥିଲେହେଁ ଏହାର ଅନ୍ତଃସ୍ୱର ଥିଲା ଅତ୍ୟଧିକ ମଧୁର ଏବଂ ମର୍ମସ୍ପର୍ଶୀ ।

କିମ୍ବଦନ୍ତୀ କୁହେ ଯେ ସାଲବେଗ ଥିଲେ ଜଣେ ଶ୍ରେଷ୍ଠ ଭକ୍ତ ଏବଂ ସାତଶ ପଞ୍ଚାଶ କୋଶ ଦୂରରେ ଥାଇ ବଡ଼ଦାଣ୍ଡରେ ଶ୍ରୀଜଗନ୍ନାଥଙ୍କର ରଥକୁ ଅଟକାଇ ଦେଇଥିଲେ । ସେ ଯୌବନରେ କୁଷ୍ଠବ୍ୟାଧିଗ୍ରସ୍ତ ହୋଇଥିଲେ କିନ୍ତୁ ତାଙ୍କର ଭକ୍ତିକ ନିଷ୍ଠା ଏବଂ ଭଜନ ଜଣାଣ ଗାଇ ଏହି ରୋଗରୁ ସେ ମୁକ୍ତ ହେଲେ । ଜଣେ ଯବନ ଜଗନ୍ନାଥ ଭକ୍ତ ରୂପେ ସେ ଓଡ଼ିଶା ଇତିହାସରେ ଅତୁଳନୀୟ ନିଶ୍ଚୟ ।

## ସଚ୍ଚିଦାନନ୍ଦ ଭୂୟାଁ :

ସଚ୍ଚିଦାନନ୍ଦ ଭୂୟାଁ ୧୯୧୦ ମସିହା ମଇ ମାସ ପନ୍ଦ୍ରଲରେ ଜନ୍ମ ହୋଇ ୧୯୪୧ ମସିହା ନଭେମ୍ବର ମାସ ୫ ତାରିଖରେ ମାତ୍ର ୩୧ ବର୍ଷ ବୟସରେ ଏକ ବିମାନ

ଦୁର୍ଘଟଣାରେ ପ୍ରାଣ ହରାଇଲେ । ସେ ଥିଲେ ଜଣେ ଦୁଃସାହସୀ ବ୍ୟକ୍ତି । ମୟୂରଭଞ୍ଜରୁ ମାଟ୍ରିକ୍ ପାଶ୍ କରିବା ପରେ ଶ୍ରୀ ଭୂୟାଁ ଯାଦବପୁରରେ ଇଞ୍ଜିନିୟରିଂ ପାଶ୍ କଲେ । ଛାତ୍ରାବସ୍ଥାରୁ ଜଣେ ଖ୍ୟାତନାମା ପାଇଲଟ୍ ହେବା ପାଇଁ ସେ ଉଚ୍ଚ ଆଶା ରଖିଥିଲେ । ଏଣୁ ଇଞ୍ଜିନିୟରିଂରେ ଡିପ୍ଲୋମା କରିସାରିବା ପରେ ସେ ଉଡ଼ାଜାହାଜ ଚାଳକ ଭାବରେ ନିଯୁକ୍ତି ପାଇଲେ । ସେ ଥିଲେ ଜଣେ ଦୁଃସାହସୀ ପାଇଲଟ୍ ।

ଦିଲ୍ଲୀରେ ଅବସ୍ଥାନ କରୁଥିବା ସମୟରେ ଓଡ଼ିଶାର ଅନ୍ୟ ଜଣେ ଦୁଃସାହସୀ ପାଇଲଟ୍ ବିଜୁ ପଟ୍ଟନାୟକଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ଖୁବ୍ କମ୍ ଦିନ ମଧ୍ୟରେ ବିମାନ ଚାଳନାରେ ତାଙ୍କର ବେଶ୍ ଖ୍ୟାତି ବ୍ୟାପି ଯାଇଥିଲା । କିନ୍ତୁ ହାଇଦ୍ରାବାଦର ବେଗମ୍‌ପେଟ ବିମାନ ବନ୍ଦରରେ ଏକ ବିମାନ ଦୁର୍ଘଟଣାରେ ତାଙ୍କ ଜୀବନର ଅବସାନ ହେଲା ।

## ସାରଙ୍ଗଧର ଦାସ :

ସାରଙ୍ଗଧର ଦାସ ୧୮୮୭ ମସିହାରେ ଢେଙ୍କାନାଳରେ ଜନ୍ମ ହୋଇଥିଲେ । ସେ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । କୃଷି ବିଜ୍ଞାନ ଉପରେ ତାଙ୍କର ଯଥେଷ୍ଟ ଦକ୍ଷତା ଥିଲେହେଁ ମୁଖ୍ୟତଃ ସେ ଜଣେ ଦେଶପ୍ରେମୀ, ଜାତୀୟତାବାଦୀ ଏବଂ ସ୍ୱାଧୀନତା ସଂଗ୍ରାମୀ । ଜାପାନ ଏବଂ କାଲିଫର୍ଣ୍ଣିଆ ପ୍ରଭୃତି ଦେଶରେ କୃଷିବିଜ୍ଞାନ ଏବଂ ଚିନି କାରଖାନା ଉପରେ ଅଧ୍ୟୟନ କରିଥିଲେ । ଭାରତକୁ ପ୍ରତ୍ୟାବର୍ତ୍ତନ କରିବା ପରେ ସେ ଚମ୍ପାରନର ଚିନି କାରଖାନାର ମ୍ୟାନେଜର ହେଲେ । ଢେଙ୍କାନାଳରେ ଆଖୁ-ଚାଷର ଉନ୍ନତି ପାଇଁ ସାରଙ୍ଗଧର ଏକ ବୃହତ୍ ଆଖୁ ସଂଗ୍ରହ କେନ୍ଦ୍ର ସ୍ଥାପନ କରିଥିଲେ ।

୧୯୩୮ ମସିହାରେ ଶ୍ରୀ ଦାସ କଂଗ୍ରେସରେ ଯୋଗ ଦେଲେ । ୧୯୪୨ ମସିହାରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ସେ କାରାବରଣ କଲେ । ତାଙ୍କର ରାଜନୀତିକ କାର୍ଯ୍ୟକାଳ ମଧ୍ୟରେ ସାରଙ୍ଗଧର ୧୯୪୬ ମସିହାରେ ଓଡ଼ିଶା ବିଧାନସଭା ଏବଂ ୧୯୫୨ ମସିହାରେ ଭାରତର ପାର୍ଲିଆମେଣ୍ଟକୁ ନିର୍ବାଚିତ ହୋଇ-ଥିଲେ । ୧୯୪୮ ମସିହାରେ ସେ ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଲେ । ଜଣେ ପ୍ରସିଦ୍ଧ ନେତା' ଭାବରେ ସେ ଗଡ଼ଜାତ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ତେଣୁ ତାଙ୍କୁ ଯଥାର୍ଥରେ "ଗଡ଼ଜାତ ଗାନ୍ଧି" କୁହାଯାଏ । ସେ ଜଣେ ସୁଇଜରଲଣ୍ଡ ମହିଳାକୁ ବିବାହ କରିଥିଲେ । "My Indian Husband" ନାମକ ଏକ ପୁସ୍ତକ ମିସେସ୍ ଫ୍ରିଡ଼ା ଦାସ ଲେଖିଥିଲେ ।

ପାର୍ଲିଆମେଣ୍ଟର ସଦସ୍ୟ ଭାବରେ ସେ ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ସେ ଥିଲେ ଜଣେ ଦାନଶୀଳ ବ୍ୟକ୍ତି ଏବଂ ଗରିବମାନଙ୍କ ଉନ୍ନତି ପାଇଁ ସେ ତାଙ୍କର ସମସ୍ତ ସମ୍ପତ୍ତି ଦାନ କରି

ଦେଇଥିଲେ । ଅନୁଗୁଳରେ "ନବଜୀବନ ମଣ୍ଡଳ" ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା । ସେ ହେଉଛନ୍ତି ପ୍ରଥମ ରାଜନୀତିଜ୍ଞ ଯିଏ ପ୍ରଥମେ ଭାରତର ଜାତୀୟ କଂଗ୍ରେସ ପରିତ୍ୟାଗ କରି ସୋସାଲିଷ୍ଟ ପାର୍ଟିରେ ଯୋଗ ଦେଇ ପାର୍ଲିଆମେଣ୍ଟ ସଭ୍ୟ ପଦରୁ ଇସ୍ତଫା ଦେଇ ଏକ ନୂତନ ଧାରାର ପ୍ରବର୍ତ୍ତନ କଲେ ଯାହା ସାଂପ୍ରତିକ ରାଜନୀତିରେ ଏକ ବିଶିଷ୍ଟ ପ୍ରଥା ଭାବରେ ଗୃହୀତ । ଏହି ମହାନ୍ ବ୍ୟକ୍ତିଙ୍କର ମୃତ୍ୟୁ ହେଲା ୧୯୫୭ ମସିହାରେ ।

## ସୟଦ୍ ଅହମ୍ମଦ ହମିଦ୍ :

ସୟଦ୍ ଅହମ୍ମଦ ହମିଦ୍ କଟକର ସବୁଜ ହମିଦ୍ ମିଆଁ ନାମରେ ପରିଚିତ ଥିଲେ । ସେ ମଧ୍ୟ ଜଣେ ଚାରଣ କବି । ୧୮୯୮ ମସିହା ମାର୍ଚ୍ଚ ମାସ ୧୦ ତାରିଖରେ କଟକ ସହରରେ ତାଙ୍କର ଜନ୍ମ । ସେ ଥିଲେ ଜଣେ ଉଗ୍ର ଜାତୀୟତାବାଦୀ ଏବଂ ଗାନ୍ଧିଜୀଙ୍କ ଆହ୍ୱାନରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ ।

କଟକର ଦୈନନ୍ଦିନ ଘଟଣାକୁ ଅତ୍ୟନ୍ତ ମନୋରମ ତଥା ଚିତ୍ତାକର୍ଷକ ଭାଷାରେ କ୍ଷୁଦ୍ର ପୁସ୍ତିକା ମାଧ୍ୟମରେ ପ୍ରକାଶ କରି ତାକୁ କଟକର ବିଭିନ୍ନ ଗଳିଗନ୍ଦିକୁ ଯାଇ ଗୀତ ବୋଲି ବିକ୍ରୟ କରୁଥିଲେ । ପୁସ୍ତିକାର ଦାମ ସର୍ବନିମ୍ନ ଏକ ପଇସାରୁ ଅଣାଏ ମଧ୍ୟରେ ସୀମିତ ଥିଲା । ହମିଦ୍‌ଙ୍କୁ ଯେତେବେଳେ ଅଧିକ ବୟସ ହେଲା ତାଙ୍କ ପ୍ରକାଶିତ ପୁସ୍ତକକୁ ଅନ୍ୟମାନେ ବିକ୍ରୟ କଲେ । ବାଜିରାଉତଙ୍କ ଉପରେ ଲିଖିତ ତାଙ୍କର ପୁସ୍ତକ ସର୍ବାପେକ୍ଷା ଲୋକପ୍ରିୟ ହୋଇଥିଲା । କେବଳ ଓଡ଼ିଶାରେ ତାଙ୍କ କବିତା ଲୋକପ୍ରିୟତା ଅର୍ଜନ କରି ନଥିଲା, ଏହା ଗାଁଗହଳିରୁ ଆରମ୍ଭ କରି ଆସାମ, ବଙ୍ଗଳା ଏବଂ ବ୍ରହ୍ମଦେଶ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା ।

ତାଙ୍କର ପୁସ୍ତକର ସଂଖ୍ୟା ୮୦ରୁ ଊର୍ଦ୍ଧ୍ୱ । ହିନ୍ଦୁ ଏବଂ ମୁସଲମାନ ଧର୍ମକୁ ଏକଭାବରେ ବିଚାର କରି ସମତା ରକ୍ଷା କରିବାରେ ତାଙ୍କର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ୧୯୫୭ ମସିହା ମଇ ମାସ ୨୭ ତାରିଖରେ ସେ ଶେଷ ନିଃଶ୍ୱାସ ତ୍ୟାଗ କଲେ ।

## ସିଜୁ ପଟ୍ଟନାୟକ :

କଟକର ଅବିସ୍ମରଣୀୟ ପ୍ରତିଭାମାନଙ୍କ ମଧ୍ୟରୁ ସିଜୁ ପଟ୍ଟନାୟକ ଅନ୍ୟତମ । ଓଡ଼ିଶା ନବଜାଗରଣର ଅଗ୍ରଦୂତ ଲକ୍ଷ୍ମୀନାରାୟଣ ପଟ୍ଟନାୟକଙ୍କର କନିଷ୍ଠପୁତ୍ର ସିଜୁ ପଟ୍ଟନାୟକ ୧୯୧୯ ମସିହାରେ କଟକର ତୁଳସୀପୁରରେ ଜନ୍ମଗ୍ରହଣ କରି ୧୯୮୪ ମସିହାରେ କର୍କଟ ରୋଗାକ୍ରାନ୍ତ ହୋଇ ଦିଲ୍ଲୀରେ ପ୍ରାଣତ୍ୟାଗ କଲେ । ସେ ତାଙ୍କର ଅନ୍ୟ ଦୁଇଜଣ ଅଗ୍ରଜ ବିଜୁ ପଟ୍ଟନାୟକ ଏବଂ ଜର୍ଜ ପଟ୍ଟନାୟକଙ୍କ ପରି ଥିଲେ ଦୁଃସାହସୀ ।

ଛାତ୍ରାବସ୍ଥାରୁ ସେ ଜଣେ ଦକ୍ଷ ଖେଳାଳି ଥିଲେ । ରେଭେନ୍‌ସା କଲେଜରୁ ଶିକ୍ଷାଲାଭ କରିବା ପରେ ସେ ଭାରତୀୟ ସୈନ୍ୟବାହିନୀରେ ଯୋଗଦେଲେ । ଆକାଶ-ବାହିନୀରେ ତାଙ୍କର ଦୁଃସାହସିକତା ପାଇଁ ସେ କମାଣ୍ଡର ପର୍ଯ୍ୟନ୍ତ ଉନ୍ନୀତ ହୋଇଥିଲେ । ଦେଶପ୍ରତି ତାଙ୍କର ଗଭୀର ମମତା ଥିଲା । କ୍ରୀଡ଼ା ଜଗତରେ ଜଣେ ଅସାଧାରଣ ବ୍ୟକ୍ତିତ୍ୱ ଭାବରେ ସେ ପରିଚିତ ।

## ସୁଦାମ ଚରଣ ପଟ୍ଟନାୟକ :

ସୁଦାମ ଚରଣ ପଟ୍ଟନାୟକ କଟକର ଗଙ୍ଗାମନ୍ଦିର ନିକଟରେ ଥିବା ତାଙ୍କର ସ୍ଥାୟୀ ଗୃହରେ ବାସ କରୁଥିଲେ । ଗୋଟିଏ ଭଦ୍ର ପରିବାରରେ ତାଙ୍କର ଜନ୍ମ । ଗଡ଼ଜାତ ରାଜ୍ୟର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଭାବରେ ସେ ଅନେକ ହିତ କାର୍ଯ୍ୟ କରିଥିଲେ । ସେ ଥିଲେ ପରୋପକାରୀ ଓ ସାହାଯ୍ୟ ପରାୟଣ । ଅନେକଙ୍କୁ ପ୍ରେରଣା ଦେଇ ବଡ଼ ହେବାର ସୁଯୋଗ ଦେବାରେ ସୁଦାମ ପଟ୍ଟନାୟକ ଥିଲେ ଅଗ୍ରଗଣ୍ୟ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନରେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥିଲେ ।

## ସୁଧାକର ପଟ୍ଟନାୟକ :

ସୁଧାକର ପଟ୍ଟନାୟକ ୧୮୯୨ ମସିହା ଅଗଷ୍ଟ ମାସ ୧୬ ତାରିଖରେ ଅନୁଗୁଳରେ ଜନ୍ମ ହୋଇଥିଲେ । କଟକ ତାଙ୍କର କର୍ମକ୍ଷେତ୍ର ଥିବାରୁ ସେ ଏଠାରେ ଅବସ୍ଥାନ କଲେ । ଜଣେ ଐତିହାସିକ ଏବଂ ସୁସାହିତ୍ୟିକ ଭାବରେ ତାଙ୍କର ପ୍ରସିଦ୍ଧି ଥିଲେହେଁ ମୁଖ୍ୟତଃ ସେ ଜଣେ ପ୍ରଶାସନିକ ଅଫିସର । ଜଣେ ଐତିହାସିକ ଭାବରେ ସେ ଅନେକ ଅନାବିଷ୍କୃତ ଏବଂ ଅଜ୍ଞାତ ଘଟଣାକୁ ଲୋକଲୋଚନକୁ ଆଣିପାରିଥିଲେ ।

ତାଙ୍କର ସାହିତ୍ୟିକ କୃତିମାନଙ୍କ ମଧ୍ୟରେ ରାଜା ସୋମନାଥ ସିଂହ, ଜୟଦେବ, ଚକଡ଼ା ପୋଥି, ଚକଡ଼ା ଭସାଣି, ଗୁଣ୍ଡିଚା ବିଜେ, ବ୍ରଜନାଥ ଗ୍ରନ୍ଥାବଳୀ (ସଂପାଦନା) ଏବଂ ସମ୍ବାଦପତ୍ରରେ ଓଡ଼ିଶା କଥା ଇତ୍ୟାଦି ପ୍ରଧାନ । ଅନେକ ଓଡ଼ିଶା ଇତିହାସ ସମ୍ପର୍କୀୟ ବହୁତ ଲେଖା ବିଭିନ୍ନ ପତ୍ର ପତ୍ରିକାରେ ସ୍ଥାନ ଲାଭ କରିଥିଲା । ସେ ଉତ୍କଳ ସାହିତ୍ୟ ସମାଜର ସଭାପତି ଥିଲେ । ୧୯୮୧ ମସିହାରେ ତାଙ୍କୁ ଶାରଳା ପୁରସ୍କାର ମିଳିଥିଲା । ଓଡ଼ିଶା ସରକାରଙ୍କର ବିଭିନ୍ନ ବିଭାଗରେ ଚାକିରି କରିଥିଲେ ମଧ୍ୟ କଳା ଇତିହାସ ପ୍ରତି ତାଙ୍କର ପ୍ରବଳ ଆକର୍ଷଣ ଥିଲା । ୧୯୮୩ ମସିହା ଡ଼ିସେମ୍ବର ମାସ ୨୬ ତାରିଖରେ ସେ ସ୍ୱର୍ଗଗାମୀ ହେଲେ ।

## ସୁରେନ୍ଦ୍ର ମହାନ୍ତି :

ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟିକ, ସାମ୍ବାଦିକ ଏବଂ ପାର୍ଲିଆମେଣ୍ଟାରିଆନ୍ ସୁରେନ୍ଦ୍ର ମହାନ୍ତି ୧୯୨୨ ମସିହା ଜୁନ୍ ମାସ ୨୧ ତାରିଖରେ କଟକ ଜିଲ୍ଲାର ସାଲେପୁର ନିକଟସ୍ଥ ପୁରୁଷୋତ୍ତମପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସାଲେପୁର ହାଇସ୍କୁଲରୁ

ମାଟ୍ରିକ୍ ପାଶ୍ କରି ସେ ରେଭେନ୍ସା କଲେଜରେ ନାମ ଲେଖାଇଲେ । ଛାତ୍ର ଅବସ୍ଥାରୁ ତାଙ୍କର ସାହିତ୍ୟ ପ୍ରତି ପ୍ରବଳ ଆକର୍ଷଣ ଥିଲା ।

ଓଡ଼ିଆ ସାହିତ୍ୟରେ ସେ ୫୦ ଖଣ୍ଡରୁ ଊର୍ଦ୍ଧ୍ୱ ପୁସ୍ତକ ରଚନା କରିଛନ୍ତି । ଗଳ୍ପ, ଉପନ୍ୟାସ ଏବଂ ସମାଲୋଚନା କ୍ଷେତ୍ରରେ ସୁରେନ୍ଦ୍ର ମହାନ୍ତି ଏକ ସମ୍ମାନିତ ଆସନର ଅଧିକାରୀ । ଜୀବନୀ, ଆତ୍ମଜୀବନୀ ଏବଂ ଭ୍ରମଣ କାହାଣୀର ସ୍ରଷ୍ଟାଭାବରେ ସେ ଅବିସ୍ମରଣୀୟ । ତାଙ୍କର ମହାନ୍ କୃତି ନୀଳଶୈଳ ପାଇଁ ସୁରେନ୍ଦ୍ର ମହାନ୍ତି କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ୧୯୬୪ ମସିହା ଏବଂ ୧୯୮୭ ମସିହାରେ ସେ ତାଙ୍କର 'ସବୁଜପତ୍ର ଓ ଧୂସର ଗୋଲାପ' କ୍ଷୁଦ୍ର ଗଳ୍ପସଂକଳନ ଏବଂ ଆତ୍ମଜୀବନୀ 'ପଥପୃଥିବୀ' ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ । କୁଳବୃଦ୍ଧ ମଧୁସୂଦନ ପୁସ୍ତକ ପାଇଁ ତାଙ୍କୁ ଶାରଳା ସମ୍ମାନ ମିଳିଥିଲା ।

ତାଙ୍କର ଗଳ୍ପ ପୁସ୍ତକଗୁଡ଼ିକ ମଧ୍ୟରେ ମହାନଗରୀର ରାତି, କୃଷ୍ଣଚୂଡ଼ା, ରୁଟି ଓ ଚନ୍ଦ୍ର, ଶେଷ କବିତା, ସବୁଜପତ୍ର ଓ ଧୂସର ଗୋଲାପ, ମରାଳର ମୃତ୍ୟୁ, ଓଃ କ୍ୟାଲକାଟା, କବି ନର୍ତ୍ତକୀ, ଦୁଇସୀମାନ୍ତ ଇତ୍ୟାଦି ବିଶେଷ ଜନପ୍ରିୟ । ସେ ରଚନା କରିଥିବା ଉପନ୍ୟାସଗୁଡ଼ିକ ମଧ୍ୟରେ ନୀଳଶୈଳ, ଶତାବ୍ଦୀର ସୂର୍ଯ୍ୟ, ଅନ୍ଧଦିଗନ୍ତ ଏବଂ ନେତି ନେତି ପ୍ରଭୃତି ପ୍ରଧାନ । ଏତଦ୍‌ବ୍ୟତୀତ ସମାଲୋଚନାଧର୍ମୀ ଗଦ୍ୟ ସାହିତ୍ୟ ସୃଷ୍ଟିରେ ମଧ୍ୟ ତାଙ୍କର ଅପୂର୍ବ ଦକ୍ଷତା ପ୍ରତିଫଳିତ । ଫକୀରମୋହନ ସମୀକ୍ଷା, ଓଡ଼ିଆ ସାହିତ୍ୟର ଆଦିପର୍ବ ଏବଂ ମଧ୍ୟପର୍ବରେ ତାଙ୍କର ଗବେଷଣାତ୍ମକ ଚିନ୍ତାଧାରା ପ୍ରକାଶିତ ହୋଇଛି । ଜଣେ ରାଜନୀତିଜ୍ଞ ତଥା ପାର୍ଲିଆମେଣ୍ଟାରିଆନ ଭାବରେ ସେ ୧୯୫୨-୫୬ ମସିହା ପର୍ଯ୍ୟନ୍ତ ଏବଂ ୧୯୫୬ ମସିହାରୁ ୧୯୬୨ ମସିହା ଯାଏ ଦୁଇଥର ରାଜ୍ୟସଭାକୁ ମନୋନୀତ ହୋଇଥିଲେ ।

୧୯୭୧ ମସିହାରେ ସେ ଲୋକସଭା ନିର୍ବାଚନରେ ବିଜୟୀ ହୋଇଥିଲେ । ସେ ବହୁଥର ବିଦେଶ ଭ୍ରମଣରେ ଯାଇଥିଲେ । ସେ ଜଣେ ଦକ୍ଷ ସମ୍ପାଦକ ଏବଂ ସାମ୍ବାଦିକ ଭାବେ ପରିଚିତ । ୧୯୪୫ ମସିହାରେ 'ଜନତା' ନାମକ ଏକ ସାହିତ୍ୟ ପତ୍ରିକାର ସମ୍ପାଦନା କରିବା ସହିତ ୧୯୫୫ ରୁ ୬୦ ମସିହା ପର୍ଯ୍ୟନ୍ତ 'ଗଣତନ୍ତ୍ର' ନାମକ ଦୈନିକ ସମ୍ବାଦପତ୍ରର ସମ୍ପାଦକ ଥିଲେ । ୧୯୮୪ ମସିହାରୁ ୮୭ ମସିହା ପର୍ଯ୍ୟନ୍ତ ସେ 'ସମ୍ବାଦ'ର ସମ୍ପାଦକ ଥିଲେ । ୧୯୮୧ ରୁ ୧୯୮୭ ପର୍ଯ୍ୟନ୍ତ ସେ ଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀର ସଦସ୍ୟ । ୧୯୯୦ ମସିହା ଡିସେମ୍ବର ମାସ ୨୧ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

**ସୁରଜମଲ ସାହା :**

ସୁରଜମଲ ସାହା ୧୯୧୮ ମସିହା ଜାନୁଆରୀ ମାସ ୨୦ ତାରିଖରେ ପୁରୀରେ ଜନ୍ମ ହୋଇଥିଲେ । କଟକର ଜଣେ ବିଶିଷ୍ଟ ଆଇନଜୀବୀ ଭାବରେ ତାଙ୍କର ପ୍ରସିଦ୍ଧି

ଥିଲା । ୧୯୩୭ ମସିହାରେ ସେ ଯେତେବେଳେ ପୁରୀ ଜିଲ୍ଲା ସ୍କୁଲରେ ପଢ଼ୁଥିଲେ, ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିବାରୁ ତାଙ୍କର ଛାତ୍ରପଦ ରଦ୍ଦ କରାଯାଇଥିଲା । ଛାତ୍ରା-ବସ୍ଥାରୁ ସେ ଥିଲେ ବିପ୍ଳବୀ ।

୧୯୩୯ ମସିହାରେ ଐତିହାସିକ ମେଡ଼ିକାଲ ସ୍କୁଲ ଧର୍ମଘଟରେ ସେ ବନ୍ଦୀ ହୋଇଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ସୁରଜମଲ ପୁରୀ, ଖୋର୍ଦ୍ଧା ଏବଂ ବ୍ରହ୍ମପୁର ଜେଲରେ ବହୁଥର ବନ୍ଦୀ ହୋଇ ରହିଥିଲେ । ଗୋଟିଏ ମାରୱାଡ଼ି ପରିବାରରେ ତାଙ୍କର ଜନ୍ମ ହୋଇଥିଲା ସତ କିନ୍ତୁ ବ୍ୟବସାୟ ପ୍ରତି ତାଙ୍କର ଆଦୌ ଧ୍ୟାନ ନଥିଲା । ବିଶିଷ୍ଟ ଜାଣିପୃଚ୍ଛାବାଦୀ, ସୁଭାସ ବୋଷଙ୍କ ଦ୍ୱାରା ପ୍ରଭାବିତ ହୋଇ ସୁରଜମଲ ସାହା ଫରୱାର୍ଡ଼ ବ୍ଲକରେ ଯୋଗଦେଲେ ।

ଜଣେ ବିଶିଷ୍ଟ ଶିକ୍ଷାନୁରାଗୀ ଏବଂ ଶିକ୍ଷାବିତ୍ ଭାବରେ ସେ ବହୁବର୍ଷ ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ଏବଂ ସିଣ୍ଡିକେଟ ସଭ୍ୟ ଥିଲେ । ତାଙ୍କ ସମୟରେ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଭୂତ ଉନ୍ନତି ସାଧିତ ହୋଇଥିଲା । ଏହି ମହାନ୍ ବ୍ୟକ୍ତିଙ୍କର ଅବସାନ ଘଟିଲା ୧୯୭୧ ମସିହା ଜୁଲାଇ ମାସ ୧୩ ତାରିଖରେ ।

## ସୁନନ୍ଦ କର :

ସୁନନ୍ଦ କର ୧୯୨୭ ମସିହାରେ ଜନ୍ମ ହୋଇ ୧୯୮୫ ମସିହାରେ ଭୟଙ୍କର କର୍କଟ ରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କରିଥିଲେ । ତାଙ୍କ ଜୀବନର ପ୍ରାଥମିକ ପର୍ଯ୍ୟାୟରୁ ସେ ଥିଲେ ବିପ୍ଳବୀ । ସାହିତ୍ୟ ପ୍ରତି ମଧ୍ୟ ତାଙ୍କର ଆକର୍ଷଣ କମ ନଥିଲା । ବିପ୍ଳବାତ୍ମକ ସାହିତ୍ୟ ରଚନା କରିବାରେ ସେ ଥିଲେ ସିଦ୍ଧହସ୍ତ । ତାଙ୍କର ପୁସ୍ତକମାନଙ୍କ ମଧ୍ୟରେ ଆଗାମୀ କାଲି, ଏ ଦୁନିଆଁ ସଂଗ୍ରାମ, ଉଦୟନ ପ୍ରଭୃତି ଅନ୍ତର୍ଭୁକ୍ତ । ଗର୍କିଙ୍କର ପ୍ରସିଦ୍ଧ ଉପନ୍ୟାସ 'ମଦର'କୁ ସେ ଓଡ଼ିଆରେ ଅନୁବାଦ କରିଥିଲେ ।

## ସୁରେନ୍ ମହାନ୍ତି :

ବହୁ ବେତାର ନାଟିକାର ଲେଖକ ଭାବରେ ସୁରେନ୍ ମହାନ୍ତି ଓଡ଼ିଶାର ପାଠକ ଏବଂ ନାଟ୍ୟପ୍ରେମୀମାନଙ୍କ ନିକଟରେ ବେଶ ପରିଚିତ । ଏତଦ୍‌ବ୍ୟତୀତ ସେ ଜଣେ ବିଶିଷ୍ଟ ବେତାର ଶିଳ୍ପୀ । ତାଙ୍କର ଜନ୍ମ ୧୯୨୧ ମସିହାରେ । କଟକ ଆକାଶ-ବାଣୀର ଉପନିର୍ଦ୍ଦେଶକ ଭାବରେ ସେ ଜନପ୍ରିୟ ହୋଇପାରିଥିଲେ । ତାଙ୍କର ପିତା ଜଗନ୍ନାଥ ମହାନ୍ତି ଥିଲେ ଓଡ଼ିଶା ହାଇକୋର୍ଟର ଜଣେ ବିଚାରପତି ।

ସୁରେନ୍‌ଙ୍କର ବାଲ୍ୟାବସ୍ଥାରୁ ନାଟକ ପ୍ରତି ପ୍ରବଳ ଉତ୍ସାହ ଥିଲା । ତାଙ୍କର ପୂର୍ଣ୍ଣାଙ୍ଗ ନାଟକ 'ବଜ୍ରକବାଟ ଓ ବେଗମ କୋଠି' ବେଶ ପ୍ରାଣବନ୍ତ । ଏହା ଏକଦା

ଓଡ଼ିଶାର ମଞ୍ଚକଳା ଏବଂ ନାଟ୍ୟ ଶିଳ୍ପର ଇତିହାସରେ ଆଲୋଡ଼ନ ସୃଷ୍ଟି କରିଥିଲା । ତାଙ୍କର ପୁସ୍ତକମାନଙ୍କ ମଧ୍ୟରେ ନ କହିଲେ ଭଲ, ଅନୁପ୍ରାସ, ବେତାର ସାହିତ୍ୟକଳା ଏବଂ ପ୍ରସ୍ତର ଦେହରେ ଓଡ଼ିଶୀ ନୃତ୍ୟ ଅନ୍ତର୍ଭୁକ୍ତ । ତାଙ୍କର ନାଟକଗୁଡ଼ିକ ଥିଲା ସମସାମୟିକ ସମସ୍ୟାର ପ୍ରତିଛବି । ସେ ରେଭେନ୍ସା କଲେଜରୁ ବି. ଏ. ପାଶକରି ଆକାଶବାଣୀରେ ନିଯୁକ୍ତ ପାଇଥିଲେ । ୧୯୭୭ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ସୁରେନ୍ଦ୍ରନାଥ ପଟ୍ଟନାୟକ :

ସୁରେନ୍ଦ୍ର ନାଥ ପଟ୍ଟନାୟକ ୧୯୦୪ ମସିହା ନଭେମ୍ବର ମାସ ୧୦ ତାରିଖରେ କଟକ ଜିଲ୍ଲାର ନଗରପୁରରେ ଜନ୍ମଗ୍ରହଣ କରିଥିଲେ । ଛାତ୍ରାବସ୍ଥାରୁ ସେ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ । ୧୯୩୦ ମସିହାରେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ପଢ଼ୁଥିବା ବେଳେ ଯେଉଁ ତିନିଜଣ ଛାତ୍ର ପ୍ରଧାନ ଶିକ୍ଷକଙ୍କ ଆଦେଶ ଅମାନ୍ୟ କରି ସ୍କୁଲ ପାଚେରି ଡେଇଁ ସ୍ୱାଧୀନତା ଆନ୍ଦୋଳନରେ ସାମିଲ୍ ହୋଇଥିଲେ ସେମାନେ ହେଲେ—ସୁରେନ୍ଦ୍ରନାଥ ପଟ୍ଟନାୟକ, ବିନୋଦ କାନୁନ୍‌ଗୋ ଏବଂ ସୁରେନ୍ଦ୍ରନାଥ ଦ୍ୱିବେଦୀ ।

ଏହି ତିନିଜଣଙ୍କର ପାଠପଢ଼ାରେ ସେହିଦିନ ଡୋରି ବନ୍ଧା ହୋଇଥିଲା ସତ କିନ୍ତୁ ସେମାନେ ବିଭିନ୍ନ ଦିଗରେ ସୁନାମ ଅର୍ଜନ କଲେ । ସୁରେନ୍ଦ୍ରନାଥ ପଟ୍ଟନାୟକ ଥିଲେ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ବ୍ୟକ୍ତିତ୍ୱ । ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସେ ଜଣେ ସକ୍ରିୟ ସଭ୍ୟ । ଓଡ଼ିଶାର ରାଜସ୍ୱ ମନ୍ତ୍ରୀ ଭାବରେ ସେ ଦକ୍ଷତା ଅର୍ଜନ କରିଥିଲେ । ଗୀତିନାଟ୍ୟ ଏବଂ ଗୋଟିପୁଅ ନାଚକୁ ସେ ଖୁବ୍ ଭଲ ପାଉଥିଲେ ଏବଂ ସେତେବେଳେ ଓଡ଼ିଶାରେ ଚହଳ ପକାଇ ଦେଇଥିବା ନଗରପୁର ଯାତ୍ରାପାର୍ଟିର ସେ ପୃଷ୍ଠପୋଷକ ଥିଲେ । ଓଡ଼ିଶା ରାଜନୀତିରେ ସେ ଏକ ଝଲକ କହିଲେ ଭୁଲ ହେବନି । ୧୯୮୯ ମସିହା ଡିସେମ୍ବର ମାସ ୩୧ ତାରିଖରେ ଶହୀଦନଗରସ୍ଥିତ ତାଙ୍କର ବାସଭବନରେ ପ୍ରାଣତ୍ୟାଗ କଲେ ।

## ସଦାଶିବ ମିଶ୍ର :

ପୁରୀ ଜିଲ୍ଲା ନିମାପଡ଼ା ଥାନା ଅନ୍ତର୍ଗତ ଅଣ୍ଡିଆ ଶାସନରେ ୧୯୦୪ ମସିହା ଅପ୍ରେଲ ମାସ ୪ ତାରିଖରେ ସଦାଶିବ ମିଶ୍ରଙ୍କର ଜନ୍ମ । ପୁରୀ ଜିଲ୍ଲାସ୍କୁଲରୁ ମାଟ୍ରିକ୍ ପାଶ୍ କରି ସେ ଉଚ୍ଚଶିକ୍ଷା ପାଇଁ ରେଭେନ୍ସା କଲେଜ ଆସିଲେ । ଉତ୍କଳରେ ପାଠ ଶେଷ କରି ୧୯୨୮ ମସିହାରେ ଶ୍ରୀ ମିଶ୍ର ଆଇନ୍ ବ୍ୟବସାୟ ଆରମ୍ଭ କଲେ । ସିଭିଲ ଲ’ ଏବଂ ମୁନିସିପାଲ ଲ’ର ସେ ଜଣେ ପ୍ରବୀଣ ଆଇନଜ୍ଞ ।

ସେ ଥିଲେ ବିନୟୀ, ଧୀର, ସରଳ ଏବଂ ବଦାନ୍ୟ ବ୍ୟକ୍ତି । ଗରିବ ଛାତ୍ରମାନଙ୍କୁ ସାହାଯ୍ୟ କରିବା ତାଙ୍କର ପରମ କର୍ତ୍ତବ୍ୟ ଥିଲା । କେହି ତାଙ୍କ ପାଖରୁ ଶୂନ୍ୟ ହସ୍ତରେ ଫେରୁନଥିଲେ । ୧୯୬୦ ମସିହାରୁ ୧୯୭୨ ମସିହା ପର୍ଯ୍ୟନ୍ତ ସଦାଶିବ ମ୍ୟୁନିସିପାଲ ଆଡ଼ମିନିଷ୍ଟ୍ରେଟର ଭାବରେ କାର୍ଯ୍ୟ କରିଥିଲେ । କଟକ ରଘୁନାଥଜୀଉ ମନ୍ଦିରର ଟ୍ରଷ୍ଟି ରୂପେ ବହୁବର୍ଷ କାର୍ଯ୍ୟକରି ସେ ଏହାର ସୁପରିଚାଳନା କଲେ । ୧୯୯୧ ମସିହାରେ ତାଙ୍କର ମୃତ୍ୟୁ ହେଲା ।

## ସୁଭାଷଚନ୍ଦ୍ର ବୋଷ :

ସୁଭାଷ ଚନ୍ଦ୍ର ବୋଷ କେବଳ ଓଡ଼ିଶାର ନୁହଁନ୍ତି ସମଗ୍ର ଭାରତର ଜଣେ ଅଦ୍ୱିତୀୟ ବ୍ୟକ୍ତିତ୍ୱ । ୧୮୯୭ ମସିହାରେ କଟକ ସହରରେ ତାଙ୍କର ଜନ୍ମ । ସେ ଜଣେ ମେଧାବୀ ଛାତ୍ର ଥିଲେ । ପାଟନା ବିଶ୍ୱବିଦ୍ୟାଳୟରୁ ରେକର୍ଡ଼ ଭଙ୍ଗକରି ସେ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ବି. ଏ. ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଲାଭକରି ସୁଭାଷ ୧୯୨୧ ମସିହା ପର୍ଯ୍ୟନ୍ତ କେମ୍ବ୍ରିଜରେ ଅଧ୍ୟୟନ କଲେ । ୧୯୨୧ ମସିହାରେ ସେ ଆଇ. ସି. ଏସ (ICS) ପାଇଲେ କିନ୍ତୁ ଏହା ପ୍ରତ୍ୟାଖାନ କରିଥିଲେ । ବଙ୍ଗଳାର ବନ୍ୟା ସମୟରେ ସୁଭାଷ ଅବିଶ୍ରାନ୍ତ ଭାବରେ ଜନତାର ସେବା କଲେ । ଚିତ୍ତରଞ୍ଜନ ଦାସଙ୍କର ମୁଖ୍ୟ ପରାମର୍ଶଦାତା ରୂପରେ ସେ ପ୍ରସିଦ୍ଧ । ସେ ଥିଲେ ଉଗ୍ର ଜାତୀୟତାବାଦୀ ଏବଂ ସ୍ୱାଧୀନତା ସଂଗ୍ରାମୀ ।

ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇ ସୁଭାଷ ଅନେକ ଥର କାରାବରଣ କରିଥିଲେ ଏବଂ ଜେଲରେ ଅସୁସ୍ଥ ହୋଇ ପଡ଼ିବାରୁ ଚିକିତ୍ସିତ ହେବାପାଇଁ ତାଙ୍କୁ ଇଉରୋପ ଯିବାକୁ ପଡ଼ିଥିଲା । ୧୯୩୯ ମସିହାରେ ସେ ଭାରତୀୟ ଜାତୀୟ କଂଗ୍ରେସର ସଭାପତି ହେଲେ କିନ୍ତୁ ମହାତ୍ମାଗାନ୍ଧୀଙ୍କ ସହିତ ତାଙ୍କର ମତାନ୍ତର ହେବାରୁ ସେ କଂଗ୍ରେସରୁ ଇସ୍ତଫା ଦେଇ ଫରୱାର୍ଡ଼ ବ୍ଲକ ଗଠନ କଲେ । ୧୯୪୧ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ତାଙ୍କୁ ଗୃହବନ୍ଦୀ ଭାବରେ ରହିବାକୁ ପଡ଼ିଥିଲା । ଏହି ସମୟରେ ସେ ଛଦ୍ମବେଶରେ ଭାରତ ଛାଡ଼ି ଜର୍ମାନୀ ପଳାଇ ଯାଇଥିଲେ । ଜର୍ମାନୀରେ ହିଟଲର୍ ସହିତ ତାଙ୍କର ସାକ୍ଷାତ ହେଲା ଏବଂ ସେଠାରୁ ସେ ଜାପାନ ଗଲେ । ସିଙ୍ଗାପୁରରୁ ଫେରି ସୁଭାଷ ଚନ୍ଦ୍ର ୧୯୪୪ ମସିହାରେ ଭାରତ ଜାତୀୟ ସୈନ୍ୟବାହିନୀ ଗଠନ କଲେ । ତାଙ୍କର ମୃତ୍ୟୁ ସମ୍ପର୍କରେ କୌଣସି ସଠିକ୍ ବିବରଣୀ ମିଳେ ନାହିଁ । ଶୁଣାଯାଏ ସେ ଏକ ବିମାନ ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ହେଲା । ଭାରତ, ଜାପାନ ଓ ଜର୍ମାନୀର ସେ ଜଣେ ପ୍ରଧାନ ନେତା ଭାବରେ ପ୍ରସିଦ୍ଧ ଥିଲେ ।

## ହରେକୃଷ୍ଣ ମହତାବ :

ଡଃ, ହରେକୃଷ୍ଣ ମହତାବ ୧୮୯୯ ମସିହାରେ କଟକର ଅସୁରେଶ୍ୱରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରକୃତ ଘର ଥିଲା ବାଲେଶ୍ୱରର ଅଗରପଡ଼ାରେ

ମହତାବ ଜଣେ ବିଶିଷ୍ଟ ଖ୍ୟାତନାମା ସ୍ୱାଧୀନତା ସଂଗ୍ରାମୀ, ରାଜନୀତିଜ୍ଞ, ନେତା, ସାହିତ୍ୟିକ, ଐତିହାସିକ ଏବଂ ସାମ୍ବାଦିକ । ୧୯୨୦ ମସିହାରେ ସେ ବି. ଏ. ପଢୁଥିବା ବେଳେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ତାଙ୍କର ସଂଗ୍ରାମୀ ଜୀବନରେ ତାଙ୍କୁ ଅନେକ ଥର କାରାବରଣ କରିବାକୁ ପଡ଼ିଥିଲା । ବହୁ ସାଂସ୍କୃତିକ ଏବଂ ଶିକ୍ଷାନୁଷ୍ଠାନ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ ଥିଲା ।

ଜଣେ ବିଶିଷ୍ଟ ସାମ୍ବାଦିକ ଭାବରେ ସେ ହେଉଛନ୍ତି ପ୍ରଜାତନ୍ତ୍ର ପ୍ରଚାର ସମିତିର ପ୍ରତିଷ୍ଠାତା । ଏହି ଅନୁଷ୍ଠାନରୁ ସେ ଦୈନିକ ସମ୍ବାଦପତ୍ର ପ୍ରଜାତନ୍ତ୍ର, ଇଂରେଜୀ ପତ୍ରିକା **Eastern Times**, ମାସିକ ସାହିତ୍ୟ ପତ୍ରିକା ଝଙ୍କାର ଏବଂ ଶିଶୁପତ୍ରିକା ମୀନାବଜାର ସମ୍ପାଦନା କରୁଥିଲେ । ଡଃ ହରେକୃଷ୍ଣ ମହତାବଙ୍କର ରାଜନୈତିକ ଜୀବନ ଥିଲା ଉତ୍‌ଥାନ ପତନରେ ପରିପୂର୍ଣ୍ଣ । ଓଡ଼ିଶାର ନାମଜାଦା କଂଗ୍ରେସ ନେତା ଭାବରେ ସେ ଥିଲେ ସର୍ବମାନ୍ୟ ଆସନର ଅଧିକାରୀ । ତାଙ୍କର ରାଜନୈତିକ ଜୀବନକାଳ ମଧ୍ୟରେ ବିହାର ଓଡ଼ିଶା ବିଧାନସଭାର ସଭ୍ୟ, ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି, ଓଡ଼ିଶାର ମୁଖ୍ୟମନ୍ତ୍ରୀ, ପ୍ରଥମ କେନ୍ଦ୍ରମନ୍ତ୍ରୀ, ବମ୍ବେର ରାଜ୍ୟପାଳ ଏବଂ କଂଗ୍ରେସ ପାର୍ଲିଆମେଣ୍ଟାରୀପାର୍ଟିର ଉପନେତା ଭାବରେ କାର୍ଯ୍ୟ କରିଥିଲେ ।

ଏତଦ୍‌ବ୍ୟତୀତ ଜଣେ ଶିକ୍ଷାବିତ୍ ଭାବରେ ମହତାବ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରୋ-ଚାନ୍‌ସେଲର ଏବଂ ସିଣ୍ଡିକେଟର ସ୍ଥାୟୀ ସଭ୍ୟ ରୂପେ ନିର୍ବାଚିତ ହୋଇଥିଲେ । ସେ ଜଣେ ଦକ୍ଷ ସାହିତ୍ୟିକ । ଉପନ୍ୟାସ, ପ୍ରବନ୍ଧ ଏବଂ କବିତା ଆଦି ରଚନା କ୍ଷେତ୍ରରେ ତାଙ୍କର କୃତିତ୍ୱ ସ୍ୱାଗତଯୋଗ୍ୟ । ପ୍ରତିଭା, ଟାଉଟର, ଆଦି ଉପନ୍ୟାସ, ପଲସୀ ଅବସାନେ, ଆତ୍ମଦାନ, ଶେଷଅଶ୍ରୁ ପ୍ରଭୃତି ଐତିହାସିକ ଓ ସାମାଜିକ କଥାବସ୍ତୁ ଉପରେ ଆଧାରିତ କାବ୍ୟାବଳୀ, ଓଡ଼ିଶା ଇତିହାସ ଏବଂ ଗାଆଁ ମଜଲିସ୍ ପ୍ରଭୃତି ରଚନା କରି ଓଡ଼ିଶାର ବାଣୀଭଣ୍ଡାରକୁ ସମୃଦ୍ଧ କରିଅଛନ୍ତି । ଗାଁ ମଜଲିସ୍ ପାଇଁ ଡଃ ହରେକୃଷ୍ଣ ମହତାବ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ସମସାମୟିକ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ପୃଷ୍ଠଭୂମି ଆଶ୍ରୟରେ ଲିଖିତ ଗାଆଁ ମଜଲିସ୍ ପାଠକ ମହଲରେ ଦେଶ ଓ ଜାତିର ନାନା ସମସ୍ୟା ସମ୍ପର୍କରେ ଆଗ୍ରହ ସୃଷ୍ଟି କରିଥିଲା । 'ଝଙ୍କାର' ମାସିକ ସାହିତ୍ୟ ପତ୍ରିକା ସମ୍ପାଦନା ଦ୍ୱାରା ସେ ଆଧୁନିକ ଲେଖକ ଗୋଷ୍ଠୀର ଉତ୍ସାହଦାତା ଭାବରେ ପରିଚିତ ହେଲେ ।

'ପ୍ରଜାତନ୍ତ୍ର ପ୍ରଚାର ସମିତି' ଜରିଆରେ ବାର୍ଷିକ ବିଷୁବ ମିଳନର ଆୟୋଜନ କରି ସେ ଦକ୍ଷ ସାହିତ୍ୟିକ, କବି ଏବଂ ଲେଖକମାନଙ୍କର ପ୍ରେରଣାର ଉତ୍ସ ହୋଇ ଉଠିଥିଲେ । କଳାବିକାଶ କେନ୍ଦ୍ର ଏବଂ ରାଷ୍ଟ୍ରଭାଷା ପ୍ରଚାର ସମିତି ପ୍ରଭୃତି ତାଙ୍କ ପ୍ରେରଣାର ପ୍ରତିରୂପ । ତେଣୁ ସେ ଯଥାର୍ଥରେ ଥିଲେ ଆଧୁନିକ ଓଡ଼ିଶାର

କାର୍ଯ୍ୟ ଥିଲା । ସେ ଭୁବନେଶ୍ୱରରେ ଏକାମ୍ର ନିବାସରେ ଅବସ୍ଥାନ କରୁଥିଲେ । ଏହି ମହାନ୍ ବ୍ୟକ୍ତିଙ୍କର ଅବସାନ ହେଲା ୧୯୮୭ ମସିହାରେ ।

## ହରିହର ଦାସ :

୧୯୩୦ ମସିହା ସେପ୍ଟେମ୍ବର ମାସ ୯ ତାରିଖରେ ବାଲେଶ୍ୱର ଜିଲ୍ଲାରେ ହରିହର ଦାସଙ୍କର ଜନ୍ମ । ସେ ଉଚ୍ଚଶିକ୍ଷା ପାଇଁ କଟକ ଆସି ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରୁ ଏମ୍. ବି. ବି ଏସ୍. ପାଶ୍ କରିଥିଲେ । ବମ୍ବେ ବିଶ୍ୱବିଦ୍ୟାଳୟରୁ ଯକ୍ଷ୍ମା ଏବଂ ଛାତିରୋଗ ଉପରେ ସ୍ନାତକୋତ୍ତର ଉପାଧି ଲାଭକରି ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜରେ ଯୋଗ ଦେଲେ । ତାଙ୍କର ଅଧ୍ୟାପନା ଏବଂ ରୋଗୀ ଚିକିତ୍ସା ଅତ୍ୟନ୍ତ ଉଚ୍ଚକୋଟୀର ଥିଲା । ତାଙ୍କର କାର୍ଯ୍ୟଦକ୍ଷତା ଏବଂ ନିରଳସ ସେବାପାଇଁ ସେ ପ୍ରଫେସର ପଦବୀକୁ ଉନ୍ନୀତ ହୋଇଥିଲେ । ଓଡ଼ିଶାର ଯକ୍ଷ୍ମା ସଙ୍ଘର ସେ ସେକ୍ରେଟାରୀ ଥିଲେ । ସେ ଥିଲେ ପ୍ରଗାଢ଼ ଧର୍ମବିଶ୍ୱାସୀ । ୧୯୮୯ ମସିହା ଡିସେମ୍ବର ମାସ ୨୫ ତାରିଖରେ ତାଙ୍କର ମୃତ୍ୟୁ ହେଲା ।

## ହରିହର ମର୍ଦ୍ଦରାଜ :

ହରିହର ମର୍ଦ୍ଦରାଜ ୧୮୯୭ ମସିହାରେ କଟକରେ ଜନ୍ମ ହୋଇ ୧୯୭୭ ମସିହାରେ ସ୍ୱର୍ଗାରୋହଣ କରିଥିଲେ । ତାଙ୍କର ପିତାଙ୍କ ନାମ ବ୍ରଜସୁନ୍ଦର ମର୍ଦ୍ଦରାଜ । ହରିହର ସ୍କଟିଶ୍ ଚର୍ଚ୍ଚ କଲେଜ, କଲିକତାରୁ ଶିକ୍ଷାଲାଭ କରି ଆସିଷ୍ଟାଣ୍ଟ ସେଟେଲମେଣ୍ଟ ଅଫିସର ଭାବେ ନିଯୁକ୍ତି ପାଇଲେ । କିନ୍ତୁ ସରକାର ତାଙ୍କୁ ଶାନ୍ତି ନ ଦେବାରୁ ସେ ଏଥିରୁ ଇସ୍ତଫା ଦେଲେ । ସମାଜ ସେବାରେ ତାଙ୍କ ମନରେ ଭରି ରହିଥିଲା ଅପାର ଆନନ୍ଦ । ଜଣେ ବିଶିଷ୍ଟ କର୍ମୀ, ସଙ୍ଗଠକ ଏବଂ କ୍ରୀଡ଼ା ପ୍ରେମୀ ଭାବରେ ସେ ବେଶ ପ୍ରସିଦ୍ଧି ଅର୍ଜନ କରିଥିଲେ । ସେ କଟକ ମ୍ୟୁନିସପାଲଟିର କାଉନ୍‌ସିଲର ଥିଲେ ଏବଂ କଟକ ୟୁନିୟନ କ୍ଲବ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ।

## କ୍ଷେତ୍ରମୋହନ କର :

କ୍ଷେତ୍ରମୋହନ କର ଜଣେ ଖ୍ୟାତନାମା ତବଲାବାଦକ ଥିଲେ । ୧୯୦୨ ମସିହା ଅଗଷ୍ଟ ମାସ ୩୦ ତାରିଖରେ ପୁରୀରେ ତାଙ୍କର ଜନ୍ମ ହୋଇଥିଲା । କିନ୍ତୁ ବହୁବର୍ଷ ସେ କଟକରେ କଟାଇଥିଲେ । ରେଭେନ୍‌ସା କଲେଜରେ ପଢୁଥିବା ବେଳେ ବାଦ୍ୟ ପ୍ରତି ତାଙ୍କର ଗଭୀର ଆକର୍ଷଣ ଥିଲା । ଫଳରେ ସେ ଜଣେ ବିଶିଷ୍ଟ ତବଲା ବାଦକ ଏବଂ ତବଲା ଗୁରୁ ହୋଇ ପାରିଲେ । ଅମିର୍ ଖାଁ, ରାଧିକା ମୋହନ ମୈତ୍ର, ପାନ୍ନାଲାଲ ଘୋଷ, ପଣ୍ଡିତ ଓଁକାର ନାଥ ଠାକୁର ଏବଂ ବିନାୟକ ରାଓ ପ୍ରମୁଖଙ୍କ ସହିତ ତବଲା ବଜାଇ ସେ ଖ୍ୟାତି ଅର୍ଜନ କରିଥିଲେ । ଅନେକ ଯୁବଶିଳ୍ପୀଙ୍କୁ ତାଲିମ୍ ଦେବାପାଇଁ ସେ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟରେ ତବଲାବାଦ୍ୟ ବିଭାଗ ଉନ୍ମୋଚନ କଲେ । ୧୯୮୭ ମସିହା ଜୁଲାଇମାସ ପହିଲାରେ ତାଙ୍କର ମୃତ୍ୟୁ ହେଲା ।

**କ୍ଷେତ୍ରମୋହନ ରାୟ :**

କ୍ଷେତ୍ରମୋହନ ରାୟ ୧୮୭୮ ମସିହାରେ କଟକ ଜିଲ୍ଲାର ବଗଲଗଡ଼ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ଜଣେ ଖ୍ୟାତନାମା ଡାକ୍ତର । ବିହାର, ଓଡ଼ିଶା ଏବଂ ଉତ୍ତରପ୍ରଦେଶରେ ସେ ବହୁଦିନ ପର୍ଯ୍ୟନ୍ତ ଡାକ୍ତର ଥିଲେ । ପ୍ରଥମ ଓଡ଼ିଆ ଡାକ୍ତର ଭାବରେ ୧୯୧୪ ମସିହାର ପ୍ରଥମ ବିଶ୍ୱଯୁଦ୍ଧରେ କ୍ଷେତ୍ରମୋହନ କାର୍ଯ୍ୟକରି କୃତିତ୍ୱ ପ୍ରଦର୍ଶନ କରିଥିଲେ । ଭାରତର ବିଭିନ୍ନ ସୀମାନ୍ତ ରାଜ୍ୟରେ ତାଙ୍କୁ ନିଯୁକ୍ତି ଦିଆ-ଯାଇଥିଲା ।

ଓଡ଼ିଶାକୁ ପ୍ରତ୍ୟାବର୍ତ୍ତନ କରି ସେ ଏମ୍. ବି. ବି. ଏସ୍ ପାଶ୍‌କଲେ ଏବଂ ଉଡ଼ିଶା ମେଡ଼ିକାଲ ସ୍କୁଲର ଡାକ୍ତର ଭାବରେ ନିଯୁକ୍ତି ପାଇଲେ । ସେ ହେଉଛନ୍ତି ଓଡ଼ିଶା ସରକାରଙ୍କର ପ୍ରଥମ ସିଭିଲସର୍ଜନ । ତାଙ୍କର କାର୍ଯ୍ୟକାଳ ମଧ୍ୟରେ ଡଃ କ୍ଷେତ୍ରମୋହନ ବହୁ ସ୍ୱାଧୀନତା ସଂଗ୍ରାମୀଙ୍କୁ ସାହାଯ୍ୟ କରିଥିଲେ । ନାରୀଶିକ୍ଷା ପ୍ରତି ତାଙ୍କର ଯଥେଷ୍ଟ ଅନୁକୂଳ ମନୋବୃତ୍ତି ଥିଲା ଏବଂ ବହୁଝିଅଙ୍କୁ ଉଚ୍ଚ ଶିକ୍ଷିତ କରିବାରେ ସେ ସହାୟତା ଦେଇଥିଲେ । ୧୯୪୨ ମସିହାରେ ତାଙ୍କର ମୃତ୍ୟୁ ହେଲା ।



# କଟକ ଏବଂ ଓଡ଼ିଶା ମିଶନ ପ୍ରେସ

ବସନ୍ତ କୁମାର ସାହୁ

ଦେଶକାଳ ପାତ୍ର ନିର୍ବିଶେଷରେ ସାଧାରଣତଃ ପୂର୍ବଯୁଗୀୟ ସାହିତ୍ୟ ପରମ୍ପରା ପରବର୍ତ୍ତୀ ଯୁଗକୁ ପ୍ରଭାବିତ କରିଥାଏ । ବେଳେବେଳେ ନିର୍ଦ୍ଦିଷ୍ଟ ଏକ ଦେଶ ବା ରାଜ୍ୟ ଏପରି ଏକ ରାଜନୈତିକ ଏବଂ ସାମାଜିକ ଘଡ଼ିସନ୍ଧି ମୁହୂର୍ତ୍ତରେ ଆସି ଉପନୀତ ହୁଏ ଯେ, ସେତେବେଳେ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇପଡ଼େ । ବିଭିନ୍ନ ଗୋଷ୍ଠୀ, ଭାଷାଭାଷୀ ସଂସ୍କୃତିର ମିଳନ କିମ୍ବା ବାଧ୍ୟବାଧକତା ମଧ୍ୟରୁ ଜନ୍ମନିଏ ଅନ୍ୟ ଏକ ସଂସ୍କୃତି – ନୂତନ ସ୍ୱାକ୍ଷର ନେଇ । ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ପଦ୍ୟ ସାହିତ୍ୟ ରସବନ୍ତ ଓ ପ୍ରାଣବନ୍ତ ହୋଇଥିଲେ ମଧ୍ୟ, ପଦ୍ୟ ସାହିତ୍ୟ ତୁଳନାରେ ଗଦ୍ୟ ସାହିତ୍ୟର ଅଭ୍ୟୁଦୟ ଓ ବିକାଶ ପାଇଁ ସାମାଜିକ ପରିସ୍ଥିତିର ଗତିଥିଲା ବିପରୀତ ମୁଖୀ, ଅଧୋମୁଖୀ । ଯେଉଁ ସମୟରେ ଧନ ଓ ପ୍ରାଣରକ୍ଷା ବ୍ୟତୀତ ତୃତୀୟ କଥାର ସ୍ଫୁରଣ ହିଁ ନଥିଲା ସେତେବେଳେ ସାହିତ୍ୟ ବିବେଚନା ବିଡ଼ମ୍ବନା ଛଡ଼ା କ'ଣ ଅବା ହୋଇପାରେ ? ମରହଟ୍ଟା ବର୍ଗୀମାନଙ୍କର ଲୁଣ୍ଠନର ବିଭୀଷିକା, ମରହଟ୍ଟୀ ସୁବେଦାର କୁଶାସନର ଫଳ ସ୍ୱରୂପ ଅଧିକନ୍ତୁ କ'ଣ ବା ଆଶାକରାଯାଇପାରେ ? ଓଡ଼ିଶା ପାଇଁ ଅଷ୍ଟାଦଶ ଶତାବ୍ଦୀର ଶେଷପାଦ ଶ୍ମଶାନର ଯନ୍ତ୍ରଣା ଜର୍ଜରିତ ପଦଚିହ୍ନ କହିଲେ ଅତ୍ୟୁକ୍ତି ହେବନାହିଁ ।

୧୮୦୩ ମସିହାରେ ଇଂରେଜମାନଙ୍କର ଓଡ଼ିଶା ଅଧିକାର ଓ ପରବର୍ତ୍ତୀ କାଳରେ ଓଡ଼ିଶାରେ ଇଂରାଜ ଶାସନର ପ୍ରବର୍ତ୍ତନ ଯୋଗୁଁ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନରେ ଅନେକ ପରିବର୍ତ୍ତନ ଘଟିଥିଲା । କ୍ରମଶଃ ପାଶ୍ଚାତ୍ୟ ଶିକ୍ଷାଦୀକ୍ଷାରେ ନୂତନ ଏକ ଗୋଷ୍ଠୀର ଉତ୍‌ଥାନ, କୁସଂସ୍କାର ବିଲୋପ ସହ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାର ଓଡ଼ିଆ ଭାଷାରେ ବିଭିନ୍ନ ପୁସ୍ତକ ପ୍ରକାଶନ ଏ ଭାଷା ଓ ସାହିତ୍ୟକୁ ଅନେକ ପରିମାଣରେ ପ୍ରଭାବିତ କରିଥିଲା । ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଆଭିମୁଖ୍ୟ ଥିଲା ଖ୍ରୀଷ୍ଟଧର୍ମ ପ୍ରଚାରକରି ଭାରତ ବର୍ଷରେ ଏକ କ୍ରାନ୍ତିକାରୀ ପରିବର୍ତ୍ତନ ଆଣିବା । ସନାତନ ହିନ୍ଦୁ ଭାରତରେ ଏହା ଏତେଟା ସମ୍ଭବ ହୋଇ ପାରିନଥିଲା । ପରିଣତି ସ୍ୱରୂପ ଓଡ଼ିଶାରେ ଖ୍ରୀଷ୍ଟଧର୍ମ ଆନ୍ଦୋଳନର ପରିକଳ୍ପନା ରୂପ ନେଲା ବିଭିନ୍ନ ପାଶ୍ଚାତ୍ୟ ମୁଖୀ ଶିକ୍ଷାଳୟ, ଚିକିତ୍ସାଳୟ, ଅନାଥାଶ୍ରମ ଆଦି ପ୍ରତିଷ୍ଠାରେ ଏବଂ ବିଭିନ୍ନ ଭାରତୀୟ ଭାଷା ନବୀକରଣରେ ।

ଖ୍ରୀଷ୍ଟିୟ ମିଶନାରୀମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଭାରତରେ ଖ୍ରୀଷ୍ଟଧର୍ମ ପ୍ରଚାର ଓ ପ୍ରସାର । ଜଣେ ଶିକ୍ଷିତ ଅପେକ୍ଷା ସାଧାରଣ ଜନତା ଉପରେ ସେମାନଙ୍କର ଆସ୍ଥା ଥିଲା ଅଧିକ । ସେମାନେ ଭଲ ଭାବେ ହୃଦୟଙ୍ଗମ କରିଥିଲେ ଯେ; ଜନ-ସାଧାରଣଙ୍କ ଦ୍ୱାରା ଆଦୃତ ସାଧାରଣ ଭାଷାକୁ ହିଁ ମାଧ୍ୟମ କଲେ ଧର୍ମପ୍ରଚାର ସହଜ ଏବଂ ସୁଗମ ହେବ । ଏଣୁ ମିଶନାରୀମାନଙ୍କ ପ୍ରଥମ ଚେଷ୍ଟା ଥିଲା ବିଭିନ୍ନ ପ୍ରାନ୍ତର ଦେଶୀୟ ଭାଷା ଶିକ୍ଷା କରିବା ଓ ତାହା ଉପରେ ଅଭିଧାନ ଓ ବ୍ୟାକରଣ ରଚନା କରିବା । ମିଶନାରୀ ଉଇଲୟମ କେରୀ ସାହେବଙ୍କ ଐକାନ୍ତିକ ଚେଷ୍ଟା ହିଁ ପରବର୍ତ୍ତୀ କାଳରେ ବିଭିନ୍ନ ଆଧୁନିକ ଭାରତୀୟ ଭାଷାମାନଙ୍କ ବିକାଶ ନିମିତ୍ତ ପଥ ପରିଷ୍କାର କରିପାରିଥିଲା । ଓଡ଼ିଶାରେ ସଟନ୍ ସାହେବ କେରୀଙ୍କ ପ୍ରଥମ ଚେଷ୍ଟାକୁ ଓଡ଼ିଆ ଭାଷାର ଉନ୍ନତି କଲେ ବ୍ୟାକରଣ ରଚନା କରି ଆହୁରି ସୁଦୃଢ଼ କରିପାରିଥିଲେ ।

ବହୁ ସମୟ ପୂର୍ବରୁ ଅନେକ ଇଂରେଜ ଭାରତୀୟ ଜନଜୀବନରେ ପର୍ଯ୍ୟବସିତ ଥିବା ଅନ୍ଧବିଶ୍ୱାସ ଏବଂ କୁସଂସ୍କାର ଓ ପୁତ୍ତଳିକା ପୂଜାର ମୂଳୋତ୍ପାଟନ ପାଇଁ ଚେଷ୍ଟା କରିଥିଲେ । ସେମାନଙ୍କର ଧାରଣା ଥିଲା ଯେ, ଭାରତରେ ଖ୍ରୀଷ୍ଟଧର୍ମ ପ୍ରଚାର ଓ ପ୍ରସାର ହେଲେ ଏହିସବୁ ଅନ୍ଧକାର ସ୍ୱତଃ ଦୂରେଇ ଯିବ । ପଶ୍ଚିମବଙ୍ଗ ଶ୍ରୀରାମପୁର ଠାରେ ଖ୍ରୀଷ୍ଟଧର୍ମ ପ୍ରଚାରର ମୂଳକେନ୍ଦ୍ର ସ୍ଥାପନ ହେଲା । ୧୮୦୯ ମସିହାରେ ଶ୍ରୀରାମପୁର ମିଶନ ପ୍ରେସରୁ ଓଡ଼ିଆ ଭାଷାରେ ଅନୁଦିତ ପ୍ରଥମ ଓଡ଼ିଆ ବାଇବେଲ ପ୍ରଥମେ ପ୍ରକାଶିତ ହୋଇଥିଲା । ପରବର୍ତ୍ତୀ କାଳରେ କଟକକୁ କେନ୍ଦ୍ର କରି ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାର କରିବା ପାଇଁ ଯେଉଁ ମିଶନାରୀମାନେ ଆଗେଇ ଆସିଥିଲେ । ସେମାନଙ୍କ ମଧ୍ୟରେ ପେଗ୍ସ, ସଟନ୍, ଲେସୀ, ବୃକ୍ସ ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ଓଡ଼ିଶାର ସାହିତ୍ୟ, ସାଂସ୍କୃତିକ ଓ ସାମାଜିକ ଜୀବନରେ ଶ୍ରୀରାମପୁର ମିଶନ୍ ପ୍ରେସର ଅବଦାନ ଉଲ୍ଲେଖଯୋଗ୍ୟ । ୧୮୦୦ ସାଲରେ ଶ୍ରୀରାମପୁରଠାରେ ସ୍ଥାପିତ ହୋଇଥିବା ମିଶନ୍ ପ୍ରେସରୁ ବଙ୍ଗଳା, ଓଡ଼ିଆ ଭାଷାରେ ବିଭିନ୍ନ ପୁସ୍ତକମାନ ପ୍ରକାଶନ ହୋଇ ଓଡ଼ିଆ ଗଦ୍ୟ ସାହିତ୍ୟରେ ଏକ ଯୁଗାନ୍ତକାରୀ ଅଧ୍ୟାୟ ସୃଷ୍ଟି କରିଥିଲା କହିଲେ ଅତ୍ୟୁକ୍ତି ହୋଇ ନ ପାରେ ।

ମହାମତି କେରୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ପେଗ୍ସ ସଟନଙ୍କ ଭଳି ସାହେବମାନେ ଓଡ଼ିଶାରେ ପଦାର୍ପଣ କରି ଓଡ଼ିଆ ଭାଷାର ଯଥେଷ୍ଟ ଉନ୍ନତି ସାଧନ କରିଥିଲେ । ମିଶନାରୀମାନେ ଓଡ଼ିଶାକୁ ଆସିବା ସମୟରେ ଗମନାଗମନର ବ୍ୟବସ୍ଥା ଖରାପ ଅବସ୍ଥାରେ ଥିଲା । କେତେକ ଗ୍ରାମ୍ୟ ପାଠଶାଳା ଓ ଚଟାଶାଳୀ ଥିଲା ଶିକ୍ଷାଦାନର ଶ୍ରେଷ୍ଠ ମାଧ୍ୟମ । ସାଧାରଣ ଓ ଅନୁନ୍ନତ ଲୋକଙ୍କୁ ପ୍ରଭାବିତ କରିବା ପାଇଁ ମିଶନାରୀ-ମାନେ ମାତୃଭାଷାର ଉପାଦେୟତାକୁ ହୃଦୟଙ୍ଗମ କରି, ଓଡ଼ିଆ ଭାଷା ଶିକ୍ଷାକରି ଓଡ଼ିଆ ଭାଷାରେ ଧର୍ମଗ୍ରନ୍ଥଗୁଡ଼ିକର ଅନୁବାଦ, ମୌଳିକ ରଚନା, ବ୍ୟାକରଣ, ଅଭିଧାନ

ଆଦି ପୁସ୍ତକମାନ ପ୍ରଣୟନ କରିଥିଲେ । ଯାହା ପରବର୍ତ୍ତୀ କାଳରେ ଓଡ଼ିଆ ଭାଷାର ଉନ୍ନତି କରିବାରେ ଯଥେଷ୍ଟ ସହାୟକ ହୋଇ ପାରିଥିଲା । ଓଡ଼ିଶାରେ ସରକାରୀ ସ୍କୁଲ ସବୁ ପ୍ରତିଷ୍ଠା ପରେ ପାଠ୍ୟପୁସ୍ତକାବଳୀର ଆବଶ୍ୟକତା ଅନୁଭୂତ ହେବା ଯୋଗୁଁ କିଛି କିଛି ପାଠ୍ୟପୁସ୍ତକ ବଙ୍ଗଳା ଭାଷାରୁ ଓଡ଼ିଆ ଭାଷାକୁ ଭାଷାନ୍ତର କରିବା ଆବଶ୍ୟକ ହୋଇ ପଡ଼ିଲା । ୧୮୮୨ ସାଲ ବେଳକୁ କଟକର ସ୍ଥାନୀୟ କମିଟି ପରାମର୍ଶ କ୍ରମେ ଓଡ଼ିଆ ପାଠ୍ୟପୁସ୍ତକ ରଚନାର ଭାର ସଟନ୍ ସାହେବ ଏବଂ କଟକ ସ୍କୁଲ ହେଡ୍ ପଣ୍ଡିତ ବିଶ୍ୱମ୍ଭର ବିଦ୍ୟାଭୂଷଣଙ୍କ ଉପରେ ନ୍ୟସ୍ତ ହେଲା । ପ୍ରଥମତଃ ପାଠ୍ୟ-ପୁସ୍ତକରେ ଧର୍ମଗ୍ରନ୍ଥକୁ ସ୍ଥାନ ଦେଇଥିଲେ ହେଁ, ବୈଷୟିକ ଜ୍ଞାନ ସମ୍ବଳିତ ପୁସ୍ତକମାନ ପ୍ରକାଶ କରିବା ପାଇଁ ମିଶନାରୀମାନେ ବାଧ୍ୟ ହୋଇଥିଲେ । ଏଇଥି ପାଇଁ ମାତୃଭାଷା ମାଧ୍ୟମରେ ପ୍ରଚାର ଓ ପ୍ରସାର ମଧ୍ୟ ସମ୍ଭବପର ହୋଇ ପାରିଥିଲା ।

ଓଡ଼ିଶାର କଟକଠାରେ ଓଡ଼ିଶା ମିଶନ୍ ପ୍ରେସ ସ୍ଥାପନ ହେବା ପୂର୍ବରୁ ଏଠାରେ କିମ୍ବା ଓଡ଼ିଶାର ଅନ୍ୟ କୌଣସି ସ୍ଥାନରେ ଏପରି ଛାପାଖାନା ପ୍ରତିଷ୍ଠିତ ହୋଇ ନ ଥିଲା । ଓଡ଼ିଶାଠାରୁ ଶ୍ରୀରାମପୁରର ଦୂରତ୍ୱ ଦୃଷ୍ଟିରୁ ଖ୍ରୀଷ୍ଟଧର୍ମ ପୁସ୍ତିକା ଓ ଅନ୍ୟାନ୍ୟ ପ୍ରକାଶନ ଯୋଗ୍ୟ ପୁସ୍ତକ ଆଦି ଓଡ଼ିଆ ଭାଷାରେ ଛାପା ହୋଇ ଶ୍ରୀରାମପୁରଠାରୁ ଆସିବା ପକ୍ଷରେ ଅନେକ କଷ୍ଟ ସ୍ୱୀକାର କରିବାକୁ ପଡ଼ୁଥିଲା । ଏ କଷ୍ଟ ଏବଂ ଅସୁବିଧାକୁ ମିଶନାରୀ ସଟନ୍ ସାହେବ ଠିକ୍ ଭାବେ ଉପଲବ୍ଧି କରିପାରି ଥିଲେ । ୧୮୩୭ ସାଲରେ ଲେସୀ ସାହେବ ଇଂଲଣ୍ଡରୁ ପ୍ରତ୍ୟାବର୍ତ୍ତନ କାଳରେ ଗୋଟିଏ ଛାପାକଳ ଆଣିଥିଲେ ଯାହା ୧୮୩୮ ମସିହାରେ କଟକଠାରେ ଅବସ୍ଥାପିତ ହୋଇ କଟକ ଏବଂ ଓଡ଼ିଶାର ସର୍ବପ୍ରଥମ ଛାପାକଳର ଗୌରବ ଅର୍ଜନ କରିଥିଲା । ଯାହା ସେହିଦିନଠାରୁ "ଓଡ଼ିଶା ମିଶନ ପ୍ରେସ୍" ନାମରେ ସର୍ବଜନବିଦିତ ।

ଓଡ଼ିଶା ମିଶନ ପ୍ରେସ୍ ଆନୁକୂଲ୍ୟରେ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ ପୁସ୍ତିକାମାନ ପ୍ରକାଶନ ସହ ଓଡ଼ିଆ ଭାଷାର ଅନେକ ପ୍ରାଚୀନ ପୋଥିମାନ ମଧ୍ୟ ପ୍ରକାଶିତ ହେଲା । ୧୮୪୨ ମସିହାରେ ମିଶନାରୀ ବକ୍ସ ସାହେବ ବୈଷୟିକ ଜ୍ଞାନ ହାସଲ କରି ଏହି ପ୍ରେସର ତତ୍ତ୍ୱାବଧାରକ ଭାବେ. ୧୮୪୨ଠାରୁ ୧୮୮୧ ସାଲ ପର୍ଯ୍ୟନ୍ତ ପ୍ରେସର ସୁପରିଚାଳନା କରିଥିଲେ । ଯଦିଓ ଖ୍ରୀଷ୍ଟଧର୍ମ ପ୍ରଚାର ଓ ପ୍ରସାର ନିମିତ୍ତ ୧୮୩୮ ସାଲରେ ମିଶନ ପ୍ରେସ ସ୍ଥାପନ ହୋଇଥିଲା; ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟବୋଧ ଏବଂ ଓଡ଼ିଆ ଜାତି ପାଇଁ ଏହି ପ୍ରେସର ଅମୂଲ୍ୟ ଅବଦାନ ପାଇଁ ଏ ଜାତି ଚିରଦିନ ପାଇଁ ପ୍ରେସ ଓ ମିଶନାରୀ-ମାନଙ୍କଠାରେ କୃତଜ୍ଞତା ସ୍ୱୀକାର କରି ଚାଲିଥିବ । ଓଡ଼ିଶା ଭୂଇଁରେ ପରବର୍ତ୍ତୀ କାଳରେ ଯେଉଁସବୁ ପ୍ରେସଗୁଡ଼ିକର ଆବିର୍ଭାବ ଘଟିଛି, ସେ ସମସ୍ତ ଓଡ଼ିଶା ମିଶନ ପ୍ରେସଠାରୁ ସବୁ ପ୍ରକାର ପ୍ରେରଣା ଓ ପ୍ରୋତ୍ସାହନ ପାଇଛନ୍ତି । ସେଥିପାଇଁ ମିଶନାରୀ ସଟନ୍ ସାହେବ ଏ ଜାତିର ଚିରନମସ୍ୟ । ମିଶନାରୀମାନଙ୍କ ଐକାନ୍ତିକ ଚେଷ୍ଟାର

ଘନ ଅଭାବ ଘଟିଥାନ୍ତା ଆଜ ଓଡ଼ିଆ ଭାଷା ଯେ କେଉଁ ଅବସ୍ଥାରେ ଥା'ନ୍ତା ତାହା ଭାବିହୁଏ ନାହିଁ ।

୧୮୨୧ ସାଲରେ ବାପ୍ଟିଷ୍ଟ ମିଶନାରୀ ସୋସାଇଟିର ସମ୍ପାଦକ ପାଇକମ୍ ସାହେବ, ଓଡ଼ିଶାକୁ ଆସିଥିବା ମିଶନାରୀ ବାମ୍ପଟନ୍ ଓ ପେଗସ୍ ସାହେବଙ୍କ ପାଖକୁ ଲେଖିଥିବା ମର୍ମସ୍ପର୍ଶୀ ଉପଦେଶାତ୍ମକ ଚିଠିର ସାରାଂଶ ଥିଲା—ଅଜ୍ଞ ଓ ନିରକ୍ଷର ଲୋକଙ୍କ ପାଇଁ ଧର୍ମ ପ୍ରଚାର କରିବା ଲାଗି ସରଳତା ଓ ସୁବୋଧତା ପ୍ରତି ଯତ୍ନବାନ ହେବା ଉଚିତ । ଏହି ଉପଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରି ମିଶନାରୀମାନେ ପ୍ରଥମେ ଓଡ଼ିଆ ଭାଷା ଶିକ୍ଷା କରିବାକୁ ଯତ୍ନଶୀଳ ହୋଇଥିଲେ । ସେତେବେଳେ ଅବଶ୍ୟ ଓଡ଼ିଆ ଭାଷା ଶିଖିବା ଲାଗି ସହାୟକ ଗ୍ରନ୍ଥର ଘୋର ଅଭାବ ଥିଲା । ବଙ୍ଗଳା ଭାଷା ମାଧ୍ୟମରେ ସେମାନେ ଓଡ଼ିଆ ଭାଷା ଶିଖି ଥିଲେ । ପ୍ରଥମତଃ ଶୁଦ୍ଧ ଓଡ଼ିଆ ଭାଷା କହିବା ଏବଂ ଲେଖିବାପାଇଁ କଷ୍ଟକର ହେଲା । କ୍ରମଶଃ ଓଡ଼ିଆ ଭାଷାର ବ୍ୟାକରଣ, ଅଭିଧାନ ଓ କେତେକ ପ୍ରାଥମିକ ପୁସ୍ତକ ଆଦି ରଚନା ପରେ ପରେ ଓଡ଼ିଆ ଭାଷାର ପ୍ରଚଳନ କ୍ରମଶଃ ସହଜସାଧ୍ୟ ହୋଇ ପଡ଼ିଲା ।

ଓଡ଼ିଶା ମିଶନ ପ୍ରେସ ଆନୁକୂଲ୍ୟରେ ୧୮୪୨ ଠାରୁ ୧୮୫୭ ସାଲ ପର୍ଯ୍ୟନ୍ତ ଯେଉଁ କେତେକ ପୁସ୍ତକମାନ ପ୍ରକାଶନ ହୋଇଥିଲା ତାହା ନିମ୍ନରେ ପ୍ରଦତ୍ତ ହେଲା—

୧୮୪୩ ସାଲରେ ସଟନ୍‌ଙ୍କ ପ୍ରଣୀତ ଇନ୍‌ଟ୍ରୋଡକ୍ଟରୀ ଲେସନ, ୧୮୪୪ରେ ଅଭିଧାନ, ୧୮୪୫ରେ ଭୂଗୋଳ, ଅମରକୋଷ, ୧୮୪୬ରେ ଭର୍ଣ୍ଣାକୁଲର କ୍ଲାସ ବୁକ୍ ରିଡ଼ର, ଓଡ଼ିଶା ଇତିହାସ, ୧୮୫୫ରେ ହିତୋପଦେଶ, ନୀତିକଥା, ଲେସୀଙ୍କ ପ୍ରଣୀତ ଓଡ଼ିଆ ବ୍ୟାକରଣ ପ୍ରଭୃତି ପୁସ୍ତକାବଳୀ ଓ ଅନ୍ୟ ପୁସ୍ତକମାନ ପ୍ରକାଶିତ ହୋଇଥିଲା । କେତେକ ଧର୍ମପୁସ୍ତିକା ଯଥା—ମୁକ୍ତି ପାଇଥିବା ମଣିଷ, ଈଶ୍ୱର ଯାହା କହନ୍ତି, ଶେଷବାଣୀ, ମଧୁର କାହାଣୀ, ପିଲାଙ୍କ ଶିକ୍ଷକ, ଯୀଶୁଖ୍ରୀଷ୍ଟଙ୍କ ଜୀବନୀ (ଗଦ୍ୟ ଓ ପଦ୍ୟ ଆକାରରେ) ମଧ୍ୟ ପ୍ରକାଶିତ ହୋଇଥିଲା ।

ମିଶନାରୀ ଲେସୀ ସାହେବଙ୍କ ସମ୍ପାଦନାରେ ୧୮୪୯ରେ 'ଜ୍ଞାନାରୁଣ', ୧୮୫୬ରେ 'ପ୍ରବୋଧ ଚନ୍ଦ୍ରିକା' ନାମକ ମାସିକ ଧର୍ମପତ୍ରିକା ପ୍ରକାଶ ପାଇଲା । ଗ୍ରାହକ ଅଭାବ ଯୋଗୁଁ ତାହା ବନ୍ଦ ହୋଇଗଲା । ୧୮୬୧ରେ ଖ୍ରୀଷ୍ଟିୟାନ ଭର୍ଣ୍ଣାକୁଲାର ଲିଟରେଚର ସୋସାଇଟିର ପୃଷ୍ଠପୋଷକତାରେ 'ଅରୁଣୋଦୟ' ମାସିକ ପତ୍ରିକା ପ୍ରାୟ ତିନିବର୍ଷ ପର୍ଯ୍ୟନ୍ତ ଚାଲି ବନ୍ଦ ହୋଇଗଲା । କିନ୍ତୁ ଅତି ତାତ୍ପର୍ଯ୍ୟର ବିଷୟ, ଏହିସବୁ ପତ୍ରିକାମାନ ପରବର୍ତ୍ତୀକାଳରେ ଶୁଦ୍ଧ ଓଡ଼ିଆ ମାସିକ, ଦୈନିକ ପତ୍ରିକାର ପ୍ରକାଶନ ପାଇଁ ଉଦ୍ୟମର ପଥ ପରିଷ୍କାର କରିଦେଇଥିଲା ।

ଓଡ଼ିଶାର ଆଧୁନିକ ଶିକ୍ଷାର ପ୍ରସାର ଓ ପାଠ୍ୟପୁସ୍ତକ ପ୍ରଣୟନ ଦିଗରେ ଖ୍ରୀଷ୍ଟୀୟ ମିଶନାରୀମାନେ ଥିଲେ ପ୍ରଥମ ପଥପ୍ରଦର୍ଶକ, ଏଥିରେ ଦ୍ୱିରୁକ୍ତି ନାହିଁ । ସେମାନଙ୍କ ସାହାଯ୍ୟ ଏବଂ ସହଯୋଗ ଫଳରେ ଆଧୁନିକ ଓଡ଼ିଆ ଭାଷା ଏବଂ ସାହିତ୍ୟର ପ୍ରଭୂତ ଉନ୍ନତି ସାଧନ ହୋଇ ପାରିଥିଲା । ସେତେବେଳେ 'ଓଡ଼ିଆ, ଇଂରେଜୀ ଅଭିଧାନ' ପୁସ୍ତକ ପ୍ରାପ୍ତିରେ 'ସମ୍ବାଦ ବାହିକା' ପତ୍ରିକା ତାଙ୍କର ସୁଚିନ୍ତିତ ଅଭିମତ ପ୍ରକାଶ କରିଥିଲେ । ଏହି ଅଭିଧାନ କଟକ ନଗରବାସୀ ରେଭେରେଣ୍ଡ ବ୍ରୁକ୍ସ ସାହେବଙ୍କ ଦ୍ୱାରା ରଚିତ କଟକ ମିଶନ ପ୍ରେସରେ ମୁଦ୍ରିତ । ମୁଦ୍ରାଙ୍କନ ଓ ଜିଲଦ ବନ୍ଧାଇ କାର୍ଯ୍ୟ ଅତି ଉତ୍ତମ ଅଟେ । ଏହା ଇଂରେଜମାନଙ୍କ ପକ୍ଷରେ ପ୍ରଥମ ଓ ଦେଶୀୟମାନଙ୍କ ପକ୍ଷରେ ଦ୍ୱିତୀୟ ଉପକାରୀ ଓ ସ୍କୁଲର ଗ୍ରନ୍ଥମାନଙ୍କ ଠାରୁ ବିଶେଷ ପ୍ରୟୋଜନୀୟ । ୧୮୬୬ ସାଲବେଳକୁ ଇଂରେଜ ମିଶନାରୀମାନଙ୍କ ସହ ସମକାଳରେ ସ୍ଥାନୀୟ ନାଗରିକ ବିଭିନ୍ନ ପୁସ୍ତକ ପ୍ରଣୟନରେ ମନୋନିବେଶ କରିଥିଲେ । ବିଚ୍ଛନ୍ଦ ପଟ୍ଟନାୟକଙ୍କର ଭୂଗୋଳ ସୂତ୍ରର ଅନୁବାଦ (୧୮୬୭), ତାଙ୍କର ବୋଧୋଦୟ, ଗୁରୁପାଠ, କାଦମ୍ବରୀ (୧୮୬୮), ଫକୀର ମୋହନଙ୍କର ଅଙ୍କମାଳା, ଗୌରୀଶଙ୍କରଙ୍କ ଭୂଗୋଳତତ୍ତ୍ୱ, ପ୍ରଭାକରଙ୍କର ପଦ୍ୟ ସଂଗ୍ରହ ଆଦି ୧୮୭୦ ସାଲରେ ଆତ୍ମପ୍ରକାଶ କରିଥିଲା । ଏହି ସମୟ ବେଳକୁ ପ୍ରଦେଶ ନାମ 'ଉଡ଼ିଶ୍ୟା' ବଦଳରେ ଓଡ଼ିଶା ଏବଂ ଭାଷା 'ଉଡ଼ିୟା' ବଦଳରେ ଓଡ଼ିଆ ଭାବେ ଲେଖାଗଲା ।

୧୮୭୦ ସାଲର କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କର ଲିଖିତ 'ଉଡ଼ିୟା ସ୍ୱତନ୍ତ୍ର ଭାଷା ନୟ' ଏବଂ ସେହି ସମୟର ବଙ୍ଗାଳୀମାନଙ୍କ ଓଡ଼ିଆ ଭାଷା ଉପରେ ବିଭିନ୍ନ ହୀନଚକ୍ରାନ୍ତ ପରିପ୍ରେକ୍ଷୀରେ ତଦାନିନ୍ତନ କଲେକ୍ଟର ଜନ୍ ବିମସ୍ ଓ କମିଶନର ଟି. ରେଭେନ୍‌ସାଙ୍କ ଅକପଟ ଅନୁଗ୍ରହ ଓଡ଼ିଶାବାସୀ ଏବଂ ଓଡ଼ିଆ ଭାଷା ଚିରଦିନ ପାଇଁ ମନେ ରଖିବେ । ଊନବିଂଶ ଶତାବ୍ଦୀର ଆଦ୍ୟପାଦରେ ଆସିଥିବା ମିଶନାରୀମାନଙ୍କର ପ୍ରଚେଷ୍ଟା, ମହାତ୍ମା ବିମସ୍, ରେଭେନ୍‌ସା ସାହେବ ଏ ଜାତିର ଚିରନମସ୍ୟ । ଓଡ଼ିଶା ମିଶନ ପ୍ରେସ ଏ ଜାତି, ଏ ଭାଷାର ଆଦି ବାର୍ତ୍ତାବହ, ଯେଉଁଥିପାଇଁ ଆଜି ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ଭାବେ ସମ୍ବିଧାନ ସ୍ୱୀକୃତି ଲାଭ କରି ସ୍ୱୀୟ ମର୍ଯ୍ୟାଦା ଅକ୍ଷୁର୍ଣ୍ଣ ରଖି ପାରିଛି ।



# କଟକର ବିଦ୍ୟୁତ୍ ବ୍ୟବସ୍ଥା

ଇଞ୍ଜିନିୟର ଶ୍ରୀ ଜଗନ୍ନାଥ ଜେନା

ବିଦ୍ୟୁତ୍ ବ୍ୟତୀତ ମାନବ ସମାଜର ପ୍ରଗତି କଳ୍ପନାତୀତ । ଯେଉଁ ଦେଶର ବିଦ୍ୟୁତ୍ ଉତ୍ପାଦନ ଓ ବିଦ୍ୟୁତ୍ ବ୍ୟବହାର ଯେତେ ଅଧିକ, ସେ ଦେଶ ସେତେ ଉନ୍ନତ ଓ ପ୍ରଗତିଶୀଳ । ପୂର୍ବେ ବିଦ୍ୟୁତ୍ ଥିଲା ବଡ଼ଲୋକଙ୍କ ସୌଖିନ ଆବଶ୍ୟକତା । ମାତ୍ର ଆଧୁନିକ ଯୁଗରେ ବିଦ୍ୟୁତ୍ ଏକ ଅତ୍ୟାବଶ୍ୟକୀୟ ବ୍ୟବହାର୍ଯ୍ୟ ଉପକରଣରେ ପରିଣତ ହୋଇଗଲାଣି । ଖାଲି ଯେ ବିଦ୍ୟୁତ୍ କଳକାରଖାନା, ଫ୍ୟାନ, ଆଲୋକ ପାଇଁ ବ୍ୟବହାର ହେଉଛି ତାହା ନୁହେଁ । ଏହା ରେଲ, ଟ୍ରାମ, ପାଣିପମ୍ପ ଇତ୍ୟାଦିରେ ମଧ୍ୟ ବ୍ୟବହାର ହେଉଛି । ବିଦ୍ୟୁତ୍ ବ୍ୟବହାରର ବହୁଳତା ବିଷୟରେ ଜନସାଧାରଣଙ୍କୁ କହିବା ମୂର୍ଖତା ବ୍ୟତୀତ ଆଉ କିଛି ନୁହେଁ । ଦେଶର ସମୃଦ୍ଧି, ଅର୍ଥନୈତିକ ଅଭିବୃଦ୍ଧି, ବେକାରି ସମସ୍ୟା ସମାଧାନ ଓ ଉନ୍ନତ ଜୀବନଯାପନ ପାଇଁ ବିଦ୍ୟୁତ୍‌ର ଆବଶ୍ୟକତା ବିଷୟ ସମସ୍ତଙ୍କୁ ଜଣା । ଏଣୁ ସମସ୍ତ ପ୍ରଗତିଶୀଳ ରାଜ୍ୟ ବିଦ୍ୟୁତ୍ ଉତ୍ପାଦନକୁ ଅଧିକ ପ୍ରାଧାନ୍ୟ ଦେଉଛନ୍ତି । ବିଦ୍ୟୁତ୍ ଉତ୍ପାଦନ ଯେ ଜଳରୁ ହୁଏ ତାହା ନୁହେଁ, ପେଟ୍ରୋଲ, ଡିଜେଲ, କିରୋସିନ, କୋଇଲା, ଆଣବିକ, ପବନ, ଗୋବର, ଅଳିଆ, ସୌରଶକ୍ତି ଇତ୍ୟାଦି ବ୍ୟବହାର କରି ମଧ୍ୟ ବିଦ୍ୟୁତ୍ ଉତ୍ପାଦନ କରାଯାଏ ।

ସାଧାରଣତଃ ବିଭିନ୍ନ ନଦୀମାନଙ୍କରେ ବନ୍ଧ ବାନ୍ଧି ଜଳକୁ ଅଟକାଇ ରଖି ଜଳବିଦ୍ୟୁତ୍ ଉତ୍ପାଦନ କରାଯାଏ । ମାତ୍ର ଏଥିନିମିତ୍ତ ପ୍ରଥମେ ବହୁତ ଅର୍ଥ ବ୍ୟୟ କରିବାକୁ ପଡ଼ିଥାଏ । ଜଳୀୟ ସମ୍ପଦ ମଧ୍ୟ ସୀମିତ ଓ ବ୍ୟୟବହୁଳ ହୋଇଥିବାରୁ, ଏହାର ବହୁଳ ଉତ୍ପାଦନ ଗରିବ ରାଷ୍ଟ୍ର ପକ୍ଷରେ କରିବା ସବୁବେଳେ ସମ୍ଭବ ନଥାଏ । ଏଣୁ ବର୍ତ୍ତମାନ ନଦୀ ଉପରେ ବନ୍ଧ କରି ବିଦ୍ୟୁତ୍ ଉତ୍ପାଦନ ବ୍ୟତୀତ ବଡ଼ ଓ ଛୋଟ ଜଳପ୍ରପାତ ସବୁ ଜଳସେଚନ ନାଳ ଓ କେନାଲ ଇତ୍ୟାଦିର ଉଚ୍ଚତାକୁ ବ୍ୟବହାର କରି ଛୋଟ ଛୋଟ ବିଦ୍ୟୁତ୍ କେନ୍ଦ୍ରମାନ ମଧ୍ୟ ପ୍ରତିଷ୍ଠା କରାଯାଉଛି ।

କୋଇଲା, ଆଣବିକ ଶକ୍ତି ପ୍ରୟୋଗରେ ମଧ୍ୟ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଉଛି । ଏହା ମଧ୍ୟ ଅଧିକ ବ୍ୟୟବହୁଳ । କୋଇଲା ସମ୍ପଦ ଓ ଆଣବିକ ସମ୍ପଦ ମଧ୍ୟ

କାଳକ୍ରମେ ହ୍ରାସ ପାଇବ । ଏଣୁ ପବନ ଚାଳିତ ବିଦ୍ୟୁତ୍‌କେନ୍ଦ୍ର, ସୌରଶକ୍ତିରୁ ସଂଗୃହୀତ ବିଦ୍ୟୁତ୍ ଶକ୍ତି, ଅଳଆ, କାଠ, ପତ୍ର ଇତ୍ୟାଦି ବ୍ୟବହାର କରି ବିଦ୍ୟୁତ୍ କେନ୍ଦ୍ର, ଗୋବର ଗ୍ୟାସରୁ ବିଦ୍ୟୁତ୍. ସମୁଦ୍ର ଜୁଆରରୁ ବିଦ୍ୟୁତ୍ ଉତ୍ପାଦନ କରା ଯାଉଛି । ଏହା ପୂର୍ବରୁ କିରୋସିନ, ଡିଜେଲ, ପେଟ୍ରୋଲ ବ୍ୟବହାର କରି ବିଦ୍ୟୁତ୍ ଉତ୍ପାଦନ କରାଯାଉଥିଲା ।

ଆମ ଓଡ଼ିଶାରେ ବିଦ୍ୟୁତ୍ ଶକ୍ତିର ପ୍ରସାର ହୋଇ ନଥିଲା । ଇଂରେଜ ଶାସନ ଆରମ୍ଭପରେ କେତେକ ଗ୍ରେଟ ଗ୍ରେଟ ରାଜ୍ୟର ରାଜାମାନେ ସେମାନଙ୍କ ସୌଖିନ୍ ପାଇଁ ବିଦ୍ୟୁତ୍ କେନ୍ଦ୍ରମାନ ସ୍ଥାପନକରି ସେମାନଙ୍କର ରାଜବାଟି ଗୁଡ଼ିକ ଆଲୋକିତ କରୁଥିଲେ । କାଳକ୍ରମେ ଇଂରେଜମାନେ ସୌଖିନ୍ ପାଇଁ ଛୋଟ ଗ୍ରେଟ ଜେନେରେଟରମାନ ବ୍ୟବହାର କଲେ । ଇଂରେଜ ସରକାର ବିଭିନ୍ନ ଇଂରେଜ ପରିଚାଳିତ ବିଦ୍ୟୁତ କମ୍ପାନୀଙ୍କୁ ବିଦ୍ୟୁତ୍ ଉତ୍ପାଦନ କରି ଆଗ୍ରହୀ ଗ୍ରାହକମାନଙ୍କୁ ବ୍ୟାବସାୟିକ ଭିତ୍ତିରେ ବିଦ୍ୟୁତ୍ ବିକ୍ରୀ କରିବାକୁ ଅନୁମତି ଦେବା ପରେ କଲିକତା, ମାନ୍ଦ୍ରାଜ ଓ ବମ୍ବେ ଇତ୍ୟାଦି ବଡ଼ ବଡ଼ ସହରମାନଙ୍କରେ ବିଭିନ୍ନ ବିଦ୍ୟୁତ୍ କମ୍ପାନୀ ବିଦ୍ୟୁତ୍ ବ୍ୟବସାୟ ଆରମ୍ଭ କଲେ ।

ଓଡ଼ିଶାରେ ସବୁଠାରୁ ପୁରୁଣା ସହର କଟକରେ ବିଦ୍ୟୁତ୍ ସରବରାହ ୧୯୩୦ ମସିହା ପୂର୍ବରୁ ନଥିଲା । ୧୯୩୦ ମସିହା ଜୁଲାଇ ମାସ ୩ ତାରିଖ ଦିନ ଅକ୍ଟୋ-ଭିୟୁସ କମ୍ପାନୀ 'କଟକ ବିଦ୍ୟୁତ୍ ସରବରାହ କମ୍ପାନୀ' ସର୍ବପ୍ରଥମେ ବିଦ୍ୟୁତ୍ ଉତ୍ପାଦନ ଓ ସରବରାହ ପାଇଁ ଇଣ୍ଡିଆନ କାଉନ୍‌ସିଲର ସେକ୍ରେଟାରୀଙ୍କ ସହ ଚୁକ୍ତି ସ୍ୱାକ୍ଷର ହେଲା । ରାଣୀହାଟ ଠାରେ କଟକ ସହରର ସର୍ବପ୍ରଥମ ବ୍ୟାବସାୟିକ ଡି. ସି. ଜେନେରେଟର ସ୍ଥାପନ ପାଇଁ ଜମି ଲିଜ ତା ୨୦-୪-୧୯୩୧ ରିଖ ଦିନ ମିଳିଲା । ଏହାର କ୍ଷମତା ୧୦୦ କିଲୋଓ୍ୱାଟ ମାତ୍ର ଥିଲା । ଏହା ପୂର୍ବରୁ ରେଭେନ୍‌ସା କଲେଜରେ କେବଳ ୨ଟି ୧୫ କିଲୋଓ୍ୱାଟର ଜେନେରେଟର ଥିଲା ଓ କଟକ ସହରରେ ରାସ୍ତା ଆଲୋକ ପାଇଁ ବିଭିନ୍ନ ସ୍ଥାନରେ କିରୋସିନ ଲଣ୍ଠନ ଜଳା ଯାଉଥିଲା । କାଳକ୍ରମେ ରାଣୀହାଟ ପାୱାର ହାଉସର ଉତ୍ପାଦନ କ୍ଷମତା ୨୫୦ କି. ଓ୍ୱାଟକୁ ବୃଦ୍ଧି କରାଯାଇ ଥିଲା । ୧୯୪୮ ମସିହାରେ ଚୋଉଦ୍ୱାରଠାରେ ୨୫୦ କିଲୋଓ୍ୱାଟର ଏକ ଡିଜେଲଚାଳିତ ଜେନେରେଟର ଓଡ଼ିଶା ସରକାରଙ୍କ ଦ୍ୱାରା ସ୍ଥାପନ କରାଗଲା ଓ ସମସ୍ତ ଉତ୍ପାଦିତ ବିଦ୍ୟୁତ୍ କଟକ ବିଦ୍ୟୁତ୍ କମ୍ପାନୀକୁ ବିକ୍ରୀ କରାଗଲା । କଟକ ସହରର ବିଦ୍ୟୁତ୍ ବ୍ୟବହାରର ଦ୍ରୁତ ସମ୍ପ୍ରସାରଣ ଏହାଠାରୁ ଆରମ୍ଭ ହେଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହାପରେ ଚୌଦ୍ୱାରଠାରେ ୩୦୦୦ କିଲୋଓ୍ୱାଟ ଉତ୍ପାଦନ କ୍ଷମତାବିଶିଷ୍ଟ କୋଇଲାଭିତ୍ତିକ ଏକ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କେନ୍ଦ୍ର ଓଡ଼ିଶା ସରକାର ପ୍ରତିଷ୍ଠା କଲେ । ଏହାର ଉତ୍ପାଦିତ ଅଧିକାଂଶ ବିଦ୍ୟୁତ୍ କଟକ ବିଦ୍ୟୁତ୍ ସରବରାହ କମ୍ପାନୀ ବ୍ୟବହାର କରୁଥିଲା । କଟକ ସହରର ବିଦ୍ୟୁତ୍ ସରବରାହର ଦ୍ରୁତ ପ୍ରସାରଣ ୧୯୪୯ ମସିହାରୁ ଆରମ୍ଭ

ହେଲା । ୧୯୪୯ ମସିହାରେ ତତ୍କାଳୀନ ସଚିବାଳୟ ଓ ଚାରିପାର୍ଶ୍ୱିକ ଅଞ୍ଚଳକୁ ବିଦ୍ୟୁତ୍ ଯୋଗାଇ ଦେବା ନିମିତ୍ତ ବାରବାଟୀ ଷ୍ଟାଡିୟମ ସାମନାରେ ଥିବା ବର୍ତ୍ତମାନ କ୍ୟାଣ୍ଟନ-ମେଣ୍ଟ କନଷ୍ଟ୍ରକ୍ସନ୍‌ଙ୍କ କାର୍ଯ୍ୟାଳୟ ଘରେ ଏ. ସି. ରୁ ଡି. ସି. କୁ ପରିଣତ କରୁଥିବା ରେକ୍ଟିଫାୟାର ସ୍ଥାପନ କରାଗଲା । ସେହି ୧୯୪୯ ମସିହାରେ କଟକ ରେଳ ଷ୍ଟେସନ ଖୁଣ୍ଟିଆଗଞ୍ଜ ଅଞ୍ଚଳକୁ ବିଦ୍ୟୁତ୍ ମଧ୍ୟ ଯୋଗାଣ ସମ୍ପ୍ରସାରିତ ହୋଇଥିଲା । ୧୯୫୦ ମସିହା ବେଳକୁ କଟକ ସହରରେ ୩୫ଟି ବିଦ୍ୟୁତ୍ ଟ୍ରାନ୍ସଫର୍ମର ଏବଂ ରାଣୀହାଟ, କ୍ୟାଣ୍ଟନମେଣ୍ଟ ଓ ଚୌଧୁରୀ ବଜାରଠାରେ ୩ଟି ଏ.ସି. ରୁ ଡି.ସି.କୁ ରୂପାନ୍ତର କରୁଥିବା ରେକ୍ଟିଫାୟାର ସ୍ଥାପନ କରାଯାଇଥିଲା । ୧୯୫୬ ମସିହାପରେ କଟକ ସହରକୁ ହୀରାକୁଦ ପାୱାର ମିଳିବାପରେ ବିଦ୍ୟୁତ୍ ସରବରାହରେ ଦ୍ରୁତ ଅଭିବୃଦ୍ଧି ହେଲା ଓ କମ୍ପାନୀ ତାହାର ନିଜସ୍ୱ ବିଦ୍ୟୁତ୍ କେନ୍ଦ୍ର ବନ୍ଦ କରିଦେଲା । ଚୌଦ୍ୱାରଠାରୁ ୨ଟି ୧୧,୦୦୦ ଭୋଲ୍ଟ ଲାଇନରେ ବିଦ୍ୟୁତ ରାଣୀହାଟ ପାୱାର ହାଉସକୁ ଆସୁଥିଲା ଓ ସେଠାରୁ ସହରର ବିଭିନ୍ନ ସ୍ଥାନକୁ ବିଦ୍ୟୁତ୍ ସରବରାହ କରାଯାଉଥିଲା ।

୧୯୬୨ ମସିହାରେ ଓଡ଼ିଶା ସରକାର 'ଓଡ଼ିଶା ରାଜ୍ୟ ବିଦ୍ୟୁତ ପରିଷଦ' ଗଠନ କଲେ । ସରକାରଙ୍କ ନିର୍ଦ୍ଦେଶ ଅନୁଯାୟୀ କଟକ ସହରର ବିଦ୍ୟୁତ ସରବରାହ ଓ ବ୍ୟବସାୟ ଦାୟିତ୍ୱ ଆକ୍ଟୋଭିୟସ କମ୍ପାନୀଠାରୁ ଓଡ଼ିଶା ରାଜ୍ୟ ବିଦ୍ୟୁତ ପରିଷଦ ଗ୍ରହଣ କଲା । ଆକ୍ଟୋଭିୟସ କମ୍ପାନୀର ସମସ୍ତ ସ୍ଥାବର, ଅସ୍ଥାବର ସମ୍ପତ୍ତି ବ୍ୟତୀତ ସମସ୍ତ କର୍ମଚାରୀଙ୍କୁ ମଧ୍ୟ କମ୍ପାନୀ ଚୁକ୍ତିର ସର୍ତ୍ତାବଳୀ ଅନୁଯାୟୀ ଓଡ଼ିଶା ରାଜ୍ୟ ବିଦ୍ୟୁତ ପରିଷଦକୁ ହସ୍ତାନ୍ତର ହେଲା । ଏହି ହସ୍ତାନ୍ତର କାର୍ଯ୍ୟ ୨ମାସଠାରୁ ଅଧିକ ସମୟ ଲାଗିଥିଲା ଓ ଓଡ଼ିଶା ବିଦ୍ୟୁତ ପରିଷଦ ତରଫରୁ ତତ୍କାଳୀନ ନିର୍ବାହୀ ଯନ୍ତ୍ରୀ ଶ୍ରୀ ସନ୍ତୋଷ କୁମାର ନନ୍ଦ ଏହା ତଦାରଖ କରି ଗ୍ରହଣ କରିଥିଲେ । ଦାୟିତ୍ୱ ହସ୍ତାନ୍ତର ବେଳେ କଟକ ସହରର ସମୁଦାୟ ବିଦ୍ୟୁତ ଗ୍ରାହକଙ୍କ ସଂଖ୍ୟା ୬୫୦୦ ଥିଲା ଓ ସନ୍ଧ୍ୟାକାଳୀନ ଅତ୍ୟୁଚ୍ଚ ବିଦ୍ୟୁତ ଚାହିଦା ପ୍ରାୟ ୩୫୦୦ କିଲୋ ଭୋଲ୍ଟ ଆମ୍ପିୟର ଥିଲା । ବିଦ୍ୟୁତ ପରିଷଦ ଦାୟିତ୍ୱ ନେଲା ପରେ କଟକ ସହରର ବିଦ୍ୟୁତ୍ ସରବରାହର ଦ୍ରୁତ ପ୍ରସାରଣ ପ୍ରକ୍ରିୟା ଆରମ୍ଭ ହେଲା ଓ କ୍ରମେ କ୍ରମେ ବିଦ୍ୟୁତ ଗ୍ରାହକ ସଂଖ୍ୟା ବଢ଼ି ଚାଲିଲା । ୧୯୭୬ ମସିହା ପର୍ଯ୍ୟନ୍ତ ଚୌଦ୍ୱାରସ୍ଥ ୧୩୨।୩୩।୧୧ କିଲୋ ଭୋଲ୍ଟ୍ ଗ୍ରୀଡ୍ ସବ୍‌ଷ୍ଟେସନରୁ ୨ଟି ୧୧୦୦୦ ଭୋଲ୍ଟ୍ ଲାଇନରେ ବିଦ୍ୟୁତ୍ ଶକ୍ତି ରାଣୀହାଟସ୍ଥ ମୁଖ୍ୟ ବିଦ୍ୟୁତ୍ କେନ୍ଦ୍ରକୁ ଅଣାଯାଇ କଟକ ସହରରେ ବଣ୍ଟନ କରାଯାଉଥିଲା । ୧୯୭୬ ମସିହା ଜୁଲାଇ ମାସରେ କଟକର ପ୍ରଥମ ୩୩।୧୧ କିଲୋ ଭୋଲ୍ଟ୍ ସବଷ୍ଟେସନ ସ୍ଥାପନ କରାଗଲା ପରେ କଟକ ସହରର ବିଦ୍ୟୁତ ସରବରାହରେ ସମ୍ୟକ ଉନ୍ନତି ପରିଲକ୍ଷିତ ହେଲା । ଏଠାରେ ପ୍ରଥମେ ଏକ ୧୨୫୦୦ କିଲୋ ଭୋଲ୍ଟ ଆମ୍ପିୟର ଶକ୍ତିର ଟ୍ରାନ୍ସଫର୍ମର ବସିଥିଲା । ପରେ ଏଠାରେ ଆଉ ଏକ ୧୨୫୦୦ କିଲୋ ଭୋଲ୍ଟ ଆମ୍ପିୟରର ଟ୍ରାନ୍ସଫର୍ମର ବସାଗଲା । ୧୯୭୩ ମସିହାରେ କଟକ ସହରର ବିଦ୍ୟୁତ୍

ଗୃହ୍ରଦା ମାତ୍ର ୧୦୦୦୦ କିଲୋ ଭୋଲ୍ଟ ଆମ୍ପିୟର ଥିବା ବେଳେ ୧୯୭୮ ମସିହାରେ ଗୃହ୍ରଦା ୨୫,୦୦୦ କିଲୋ ଭୋଲ୍ଟ ଆମ୍ପିୟରକୁ ବୃଦ୍ଧି ପାଇଲା । ସେତେବେଳେ କଟକ ସହରକୁ ଚୌଦ୍ୱାର ଗ୍ରୀଡ୍ ସବ୍‌ଷ୍ଟେସନରୁ ୩୩୦୦୦ ଭୋଲ୍ଟ ଲାଇନ ବ୍ୟତୀତ ୧୧୦୦୦ ଭୋଲ୍ଟରେ ମଧ୍ୟ ବିଦ୍ୟୁତ ଆଣି ବଣ୍ଟନ କରାଯାଉଥିଲା । ରାଣୀହାଟ ବ୍ୟତୀତ କାଣ୍ଟୋନ୍‌ମେଣ୍ଟଠାରେ, ଚୌଧୁରୀ ବଜାରଠାରେ ଓ ହାଇକୋର୍ଟ ଠାରେ ମୁଖ୍ୟ ବିଦ୍ୟୁତ୍ କେନ୍ଦ୍ର ମାନ ସ୍ଥାପନ କରାଗଲା ।

କଟକ ସହରର ଦ୍ରୁତ ବିଦ୍ୟୁତ୍ ଗୃହ୍ରଦା ଚୌଦ୍ୱାରଠାରୁ ପାଇବା କଷ୍ଟକର ହେବାରୁ କଟକଠାରେ ଏକ ଉଚ୍ଚଶକ୍ତିସମ୍ପନ୍ନ ୧୩୨/୩୩ କିଲୋଭୋଲ୍ଟର ଗ୍ରୀଡ୍ ସବ୍‌ଷ୍ଟେସନ ୧୯୮୫ ମସିହାରେ ସ୍ଥାପନ କରାଗଲା । ତୁଳସୀପୁର, ବିଡ଼ାନାସୀ, ଦୂରଦର୍ଶନ ଓ ଆକାଶବାଣୀ କେନ୍ଦ୍ର ମାନଙ୍କରେ ଭୋଲଟେଜ୍ କମିଯିବାରୁ ତୁଳସିପୁର ଛକରେ ଏକ ୩୩/୧୧ କିଲୋ ଭୋଲଟର ସବ୍‌ଷ୍ଟେସନ ୧୯୮୫ ମସିହାରେ ପ୍ରତିଷ୍ଠା କରାଗଲା । ୧୯୮୮ ମସିହାରେ କଟକ ସହରର ବିଦ୍ୟୁତ ଗୃହ୍ରଦା ପ୍ରାୟ ୩୮୦୦୦ ଭୋଲ୍ଟ ଆମ୍ପିୟର ଥିଲା । ୧୯୮୭ ମସିହାରେ କଟକ ସହରରେ ସବ୍‌ଷ୍ଟେସନ ସଂଖ୍ୟା ୧୨୦ ଥିଲା ଓ ସମୁଦାୟ ବଣ୍ଟନ ସବଷ୍ଟେସନର କ୍ଷମତା ୪୨୦୦୦ ଭୋଲଟ୍ ଆମ୍ପିୟର ଥିଲା । ୧୯୮୭ ମସିହାରୁ ୧୯୯୧ ମସିହା ମଧ୍ୟରେ କଟକ ସହରର ବହୁ ଗଳି କନ୍ଦିରେ ବଣ୍ଟନ ସବ୍‌ଷ୍ଟେସନ ପ୍ରତିଷ୍ଠା କରାଯାଇ ବିଦ୍ୟୁତ ବଣ୍ଟନର ମାନର ଅଭିବୃଦ୍ଧି କରାଯାଇଥିଲା । ତେବେ ସୁଦ୍ଧା କଟକ ସହରର ବିଦ୍ୟୁତ୍ ଗୃହ୍ରଦା ବଢ଼ି ଚାଲିବାରୁ ୧୯୯୨ମସିହା ଫେବ୍ରୁୟାରୀ ମାସରେ କଟକସ୍ଥ ୧୩୨/୩୩ କିଲୋ ଭୋଲଟ ସବ୍‌ଷ୍ଟେସନର କ୍ଷମତା ୪୦୦୦୦ ଭୋଲଟ ଆମ୍ପିୟରରୁ ୭୦,୦୦୦ ଭୋଲଟ ଆମ୍ପିୟରକୁ ବୃଦ୍ଧି କରାଗଲା ଓ ସରକାରୀ ପ୍ରେସ ଛକରେ ଆଉ ଏକ ୩୩/୧୧ କିଲୋ ଭୋଲଟ ସବଷ୍ଟେସନ ସ୍ଥାପନ କରାଗଲା । ତେବେ ସୁଦ୍ଧା କଟକ ସହରର ଗୃହ୍ରଦା ବଢ଼ି ଚାଲିଛି । ଏହି ବିଦ୍ୟୁତ ଗୃହ୍ରଦା ବୃଦ୍ଧିର ମୁକାବିଲା କରିବା ନିମିତ୍ତ ଯୋବ୍ରାଠାରେ ଏକ ୩୩/୧୧ କିଲୋ ଭୋଲଟର ସବ୍‌ଷ୍ଟେସନ, ନୂତନ କଟକ ବିଡ଼ାନାସୀର ସେକ୍ଟର ୬୦ରେ ଏକ ୩୩/୧୧ କିଲୋ-ଭୋଲଟ ସବ୍‌ଷ୍ଟେସନ କାର୍ଯ୍ୟ ଆଗେଇ ଚାଲିଛି ଓ ଶିଶୁଭବନଠାରେ ଏକ ୩୩/୧୧ କିଲୋ ଭୋଲ୍ଟ ସବ୍‌ଷ୍ଟେସନ ହେବାର ଯୋଜନା କରାଯାଇଛି । ସଙ୍ଗରାଗୋଠାରେ ଆଉ ଏକ ଉଚ୍ଚଶକ୍ତି ସମ୍ପନ୍ନ ୧୩୨/୩୩ କେଭି ଗ୍ରୀଡ୍ ସବଷ୍ଟେସନ ପ୍ରତିଷ୍ଠା କରାଯାଉଛି । ଏହି କାର୍ଯ୍ୟ ଦ୍ରୁତ ଭାବରେ ଆଗେଇ ଚାଲିଛି । ଏହି କାର୍ଯ୍ୟ ୧୯୯୩ ମସିହା ମାର୍ଚ୍ଚ ମାସ ସୁଦ୍ଧା ସମ୍ପୂର୍ଣ୍ଣ ହେବାର ଆଶା କରାଯାଉଛି । ଏତଦ୍‌ବ୍ୟତୀତ ବିଡ଼ାନାସୀ-ଠାରେ ନୂତନ କରି ଗଢ଼ି ଉଠୁଥିବା ନୂତନ କଟକର ବିଦ୍ୟୁତ ଗୃହ୍ରଦା ମେଣ୍ଟେଇବା ନିମିତ୍ତ ଆହୁରି ୫ଟି ନୂତନ ୩୩/୧୧ କିଲୋ ଭୋଲ୍ଟ ସବ୍‌ଷ୍ଟେସନ ଓ ମହାନଦୀବିହାର ପାଖରେ ଏକ ୩୩/୧୧ କିଲୋ ଭୋଲ୍ଟର ସବଷ୍ଟେସନ ହେବାର ଯୋଜନା କରାଯାଇଛି ଓ ଏଥି ନିମିତ୍ତ ଜମି ମଧ୍ୟ କିଣା ସରିଲାଣି । ଯୋଜନାବଦ୍ଧ ସମସ୍ତ କାର୍ଯ୍ୟ ସମାପନ ପ୍ରାୟ

ଆସନ୍ତା ୫ବର୍ଷ ମଧ୍ୟରେ ହେବ । ବର୍ତ୍ତମାନ କଟକ ସହରର ବିଦ୍ୟୁତ ଚାହିଦା ୫୫,୦୦୦ କିଲୋ ଭୋଲ୍ଟ ଆମ୍ପିୟର ଓ ଆସନ୍ତା ୫ ବର୍ଷ ମଧ୍ୟରେ ଏହା ୮୦,୦୦୦ କିଲୋ ଭୋଲ୍ଟ ଆମ୍ପିୟର ହେବାର ଆଶା କରାଯାଉଛି । ବିଦ୍ୟୁତ ପରିଷଦ କଟକ ସହର ପାଇଁ ଏତେ ପଇସା ଖର୍ଚ୍ଚ କଲେ ମଧ୍ୟ ବିଦ୍ୟୁତ ଗ୍ରାହକମାନେ ସମପରିମାଣର ଉପକାର ନପାଇ ପାରିବାର ନିମ୍ନଲିଖିତ କାରଣଗୁଡ଼ିକ ହେଲା —

୧) କଟକର ଅଧିକାଂଶ ବିଦ୍ୟୁତ ଲାଇନଗୁଡ଼ିକ ବହୁବର୍ଷ ତଳେ ତିଆରି ହୋଇଥିଲା ଓ ଏହାର ନବୀକରଣ ନିହାତି ଦରକାର ।

୨) ଅଧିକାଂଶ ବିଦ୍ୟୁତ ଗ୍ରାହକ ଚୁକ୍ତି ବହିର୍ଭୂତ ବିଦ୍ୟୁତ ବ୍ୟବହାର କରୁଛନ୍ତି ।

୩) ସନ୍ଧ୍ୟା ସମୟରେ କଳ କାରଖାନା ଚାଲିବା ମନା ଥିଲେ ମଧ୍ୟ ବହୁ ଅଞ୍ଚଳରେ ଏହା ବେନିୟମ ଭାବେ ଚାଲୁଛି ।

୪) କେତେକ ଅଞ୍ଚଳରେ କେତେକ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତି ଚୋରିରେ ବିଦ୍ୟୁତ ବ୍ୟବହାର କରୁଛନ୍ତି ।

୫) ସଂଧ୍ୟା ସମୟରେ ଚାହିଦା ତୁଳନାରେ ବିଦ୍ୟୁତ ଶକ୍ତି କମିଯାଉ ଥିବାରୁ କମ ଭୋଲଟେଜର ବିଦ୍ୟୁତ ମିଳୁଛି ।

୬ । ବେଶି ଗ୍ରାହକ ଥିବା ଅଞ୍ଚଳରେ ନୂତନ ସବ୍‌ଷ୍ଟେସନ ପାଇ ସ୍ଥାନାଭାବ । ବିଭିନ୍ନ ଅଞ୍ଚଳର ବିଦ୍ୟୁତ ଭୋଲଟେଜ ଭଲ ମିଳନ୍ତା ଯଦି ବିଦ୍ୟୁତ ଗ୍ରାହକମାନେ ନିଜର ଚୁକ୍ତି ମୁତାବକ ବ୍ୟବହାର କରନ୍ତେ, ବିଦ୍ୟୁତ୍‌ର ଅସତ୍ ବ୍ୟବହାର କରନ୍ତେ ନାହିଁ, ସନ୍ଧ୍ୟା ସମୟରେ ଚଳାଉଥିବା କଳକାରଖାନା ବନ୍ଦ କରନ୍ତେ ଓ ନୂତନ ସବ୍‌ଷ୍ଟେସନ ନିର୍ମାଣ ନିମନ୍ତେ ସରକାରୀ ଜମି ବଣ୍ଟନ କରାଇ ଦିଅନ୍ତେ ।



# କଟକରେ ଚମଡ଼ା ଓ ଚମଡ଼ା ଶିଳ୍ପ

**ହୁସେନ ରବି ଗାନ୍ଧୀ**

ସହସ୍ର ବର୍ଷ ପୂର୍ବରୁ ମାନବଜାତି ପଶୁ ଚମଡ଼ାର ବ୍ୟବହାର ସମ୍ପର୍କରେ ପର୍ଯ୍ୟାପ୍ତ ଜ୍ଞାନ ଆହରଣ କରିଥିଲା । ଖ୍ରୀ. ପୂ. ୬୦୦୦ ବର୍ଷ ପୂର୍ବରୁ ମାନବଜାତି ବିଭିନ୍ନ ବୃକ୍ଷଲତାର ଛାଲି, ପତ୍ର, ଚେର, ମୂଳ ଓ ଫଳରେ ଥିବା ରାସାୟନିକ ପଦାର୍ଥକୁ ଆବିଷ୍କାର କରି ଏହାଦ୍ୱାରା କଞ୍ଚା ଚମଡ଼ାକୁ କସ (Tanning) କରି ବ୍ୟବହାର କରିବା ପାଇଁ ସକ୍ଷମ ହୋଇ ପାରିଥିଲା । ଏହି ପ୍ରକ୍ରିୟା ମୁଖ୍ୟତଃ ଇଜିପ୍ଟ, ଚୀନ ଓ ଭାରତ ପରେ ଗ୍ରୀସ୍‌ର ଅଧିବାସୀମାନଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲା । ଭାରତରେ ଏହି ପ୍ରକ୍ରିୟାକୁ ଗ୍ରାମୀଣ ପ୍ରକ୍ରିୟା (Village Tanning) କୁହାଯାଏ ।

ମୁଖ୍ୟତଃ ଚମଡ଼ାର ବ୍ୟବହାର ଜୋତା, ଜ୍ୟାକେଟ୍ ପୋଷାକ, ବ୍ୟାଗ୍, ଗ୍ଲୋଭ୍, ବାକ୍ସ ହୋଲ୍‌ଡର, ବାଦ୍ୟଯନ୍ତ୍ର ଇତ୍ୟାଦି ଜିନିଷରେ ବ୍ୟବହୃତ ହେଉଥିଲା ଏବଂ ପରେ ଘର ସଜାଇବା ଓ କାର୍ମେଣ୍ଟ ତଥା ବିଭିନ୍ନ ଯନ୍ତ୍ର ଉପକରଣରେ ଚମଡ଼ାର ବ୍ୟବହାର ପରିଲକ୍ଷିତ ହେଲା ।

ଆମ ଦେଶ ଭାରତ ଚମଡ଼ା ପାଇଁ ଉଦ୍ଦିଷ୍ଟ କଞ୍ଚାମାଲରେ ପରିପୂର୍ଣ୍ଣ । ପୃଥିବୀରେ ବର୍ଷକୁ ପ୍ରାୟ ୬.୫ ନିୟୁତ ଟନ୍‌ର କଞ୍ଚା ଚମଡ଼ା ଓ ୧ ନିୟୁତ ଟନ୍‌ର ଛାଲି (ଛେଳି, ମେଣ୍ଢା ଚମଡ଼ା) ମିଳିଥିବା କଥା ଏକ ମୋଟାମୋଟି ପରୀକ୍ଷାରୁ ଜଣାପଡ଼େ । ବିଶ୍ୱର ବେଶି ଚମଡ଼ା ଉତ୍ପାଦନ କରୁଥିବା ରାଷ୍ଟ୍ରଗୁଡ଼ିକ ମଧ୍ୟରେ ସୋଭିଏତ୍ ଋଷ, ଆମେରିକା, ଭାରତ, ଅଷ୍ଟ୍ରେଲିଆ ଏବଂ ନିୟୁଜିଲାଣ୍ଡ ଶୀର୍ଷ ସ୍ଥାନ ଅଧିକାର କରିଛନ୍ତି ଏବଂ ବେଶି ଛାଲି ଉତ୍ପାଦନ କରୁଥିବା ରାଷ୍ଟ୍ରଗୁଡ଼ିକ ହେଲେ ଭାରତ, ଚୀନ, ବାଂଲାଦେଶ, ସୋଭିଏତ୍ ଋଷ, ନିୟୁଜିଲାଣ୍ଡ ଏବଂ ଅଷ୍ଟ୍ରେଲିଆ ।

ଭାରତରେ ବର୍ଷକୁ ପ୍ରାୟ ୬୭୦ ନିୟୁତ ବର୍ଗଫୁଟ ଚମଡ଼ା ଉତ୍ପାଦନ କରା-ଯାଉଛି ଯାହା ବିଶ୍ୱର ମୋଟ ଉତ୍ପାଦନର ଶତକଡ଼ା ୮ ଭାଗ ସହିତ ସମାନ ।

ଅବଶ୍ୟ ଭାରତରେ ଚମଡ଼ାର ମାନ ଅତ୍ୟନ୍ତ ନିମ୍ନ ଧରଣର । କାରଣ ମୁଖ୍ୟ ଭାବରେ ଚମଡ଼ାଗୁଡ଼ିକ ମୃତ ପଶୁଗୁଡ଼ିକଠାରୁ ସଂଗୃହୀତ ହୋଇଥାଏ । ତା ଛଡ଼ା ଉପଯୁକ୍ତ ରକ୍ଷଣାବେକ୍ଷଣ, ବୈଷୟିକ ଜ୍ଞାନ କୌଶଳର ଅଭାବ ହିଁ ନିମ୍ନ ମାନର ଚମଡ଼ା ଉତ୍ପାଦନର ମୁଖ୍ୟ କାରଣ । ଠିକ୍ ସେହିପରି ଭାରତରେ ବର୍ଷକୁ ପ୍ରାୟ ୩୮୫ ବର୍ଗଫୁଟ ଖାଲ ଚମଡ଼ା ଉତ୍ପାଦନ କରାଯାଏ । ଯାହା ବିଶ୍ୱର ମୋଟାମୋଟି ଉତ୍ପାଦନ କ୍ଷମତାର ୧୨% ମାତ୍ର ସମାନ । ଉଲ୍ଲେଖଯୋଗ୍ୟ ଖାଲରୁ ତିଆରି ହେଉଥିବା ଚମଡ଼ାଗୁଡ଼ିକ ଉଚ୍ଚ ମାନର ହୋଇଥାଏ କାରଣ ଏଗୁଡ଼ିକ ମାଂସର ଚାହିଦା ମେଣ୍ଟାଇବା ପାଇଁ ବଧ କରାଯାଇ ଖାଲ ସଂଗୃହୀତ ହୋଇଥାଏ । ତଥାପି ଆଧୁନିକୀକରଣ ଓ ବୈଷୟିକ ଜ୍ଞାନ କୌଶଳର ଅଭାବ ଦ୍ୱାରା ସମସ୍ତ ସମୟରେ ନିମ୍ନ ମାନର ଖାଲ ଉତ୍ପାଦନ କରାଯାଉଛି । ସ୍ୱାଧୀନତାର ୪୦ ବର୍ଷପରେ ମଧ୍ୟ ଚମଡ଼ାଶିଳ୍ପ ଅସଂଗଠିତ । ବିକ୍ଷିପ୍ତ ଓ ପରମ୍ପରାଗତ ଶିଳ୍ପଭାବେ ଦଣ୍ଡାୟମାନ । ପ୍ରାୟ ଦୁଇଦଶକରରୁ ଊର୍ଦ୍ଧ୍ୱ ହେବ ଉନ୍ନତ ବୈଷୟିକ ଜ୍ଞାନକୌଶଳ ଭାରତୀୟ ଚମଡ଼ା ଶିଳ୍ପଗୁଡ଼ିକୁ ଦିଗ୍‌ଦର୍ଶନ ଦେଲା । ଏହାସତ୍ତ୍ୱେ ଚମଡ଼ା ଶିଳ୍ପ ଭାରତର ଅନ୍ୟାନ୍ୟ ବୃହତ୍ ଓ ମଧ୍ୟମ ଧରଣର ଶିଳ୍ପମାନଙ୍କ ଭଳି ଉପଯୁକ୍ତ ସ୍ଥାନ ଦଖଲ କରିପାରି ନାହିଁ । ସାରା ଭାରତବର୍ଷରେ ପ୍ରାୟ ଦେଢ଼ଲକ୍ଷ ନିୟୁତ ଚର୍ମକାର ଚମଡ଼ା ସଂଗ୍ରହଠାରୁ ଆରମ୍ଭ କରି ଜୋତା ତିଆରି ତଥା ଅନ୍ୟାନ୍ୟ କାର୍ଯ୍ୟରେ ଲାଗିରହିଛନ୍ତି ।

ଆମ ରାଜ୍ୟ ଓଡ଼ିଶାରେ ଚମଡ଼ା ଶିଳ୍ପର ବିକାଶ ପାଇଁ ପ୍ରଚୁର ପରିମାଣର କଞ୍ଚାମାଲ ମିଳୁଥିବାବେଳେ ଭାରତର ଚମଡ଼ା ଶିଳ୍ପର ମାନଚିତ୍ରରେ ଏହା ଏ ପର୍ଯ୍ୟନ୍ତ ସ୍ଥାନ ଦଖଲ କରିପାରି ନାହିଁ । ଓଡ଼ିଶା ଏକ କୃଷିପ୍ରଧାନ ରାଜ୍ୟ । ଗ୍ରାମାଞ୍ଚଳର ପ୍ରାୟ ପ୍ରତ୍ୟେକ ପରିବାର ବିଭିନ୍ନ ପ୍ରକାରର ପଶୁ ପାଳଥାନ୍ତି ଏବଂ ସେଗୁଡ଼ିକୁ ଗ୍ରାମାଞ୍ଚଳର ପଶୁସମ୍ପଦ (Cattle wealth) ଭାବରେ ଅଭିହିତ କରାଯାଇଥାଏ । ପ୍ରାୟ ଓଡ଼ିଶାରେ କୃଷି କାର୍ଯ୍ୟରେ ପଶୁମାନଙ୍କୁ ବ୍ୟବହାର କରାଯାଉଥାଏ । ତା'ଛଡ଼ା ମାଂସର ଚାହିଦା ପୂରଣ ପାଇଁ ଛେଳି, ମେଣ୍ଢାଗୁଡ଼ିକୁ ମଧ୍ୟ ପାଳନ କରାଯାଉଥାଏ । ମଇଁଷି ଓ ଗାଈ ପାଳିବା ଦ୍ୱାରା କ୍ଷୀରର ଚାହିଦା ମେଣ୍ଟିଥାଏ । ପଶୁବଳ ଆମ ରାଜ୍ୟର କୃଷିଶିଳ୍ପକୁ ଅନେକ ପର୍ଯ୍ୟନ୍ତ ସାହାଯ୍ୟ ଦେଇଆସିଛି ।

୧୯୮୨ ମସିହାରେ ହୋଇଥିବା ପଶୁଗଣନା ସମୀକ୍ଷାରୁ ଜଣାଯାଏ ଯେ ଆମ ରାଜ୍ୟରେ ପ୍ରାୟ ୨୧.୧୩ ନିୟୁତ ପଶୁ ନିମ୍ନୋକ୍ତ ଅନୁଯାୟୀ ଥିଲେ ।

| | |
|---|---|
| ଗାଈ | ୧୨.୯୩ ନିୟୁତ ଖଣ୍ଡ |
| ମଇଁଷି | ୦୧.୩୩ ନିୟୁତ ଖଣ୍ଡ |
| ଛେଳି | ୦୪.୯୩ ନିୟୁତ ଖଣ୍ଡ |
| ମେଣ୍ଢା | ୦୧.୯୪ ନିୟୁତ ଖଣ୍ଡ |
| ମୋଟ | ୨୧.୧୩ ନିୟୁତ ଖଣ୍ଡ |

ପଶୁମାନଙ୍କର ହାରହାର ମୃତହାର ପ୍ରାୟ ଶତକଡ଼ା ୧୧.୨୦%. ଭାଗ । ଏହା ଛଡ଼ା ପଶୁମାନଙ୍କର ପ୍ରାକୃତିକ ଉପାୟରେ ମୃତ୍ୟୁ ଓ ମାଂସର ଗୃହଦା ମେଣ୍ଟାଇବା ପାଇଁ ବଧ କରାଯାଉଥିବା ପଶୁମାନଙ୍କୁ ହିସାବ କଲେ ଜଣାଯାଏ ଯେ ଓଡ଼ିଶାର କଞ୍ଚା ଚମଡ଼ା ଓ ଖାଲ ପ୍ରଚୁର ପରିମାଣରେ ମିଳିଥାଏ । ଯଦିଓ ଅଦ୍ୟାବଧି ଆମ ରାଜ୍ୟରେ ମିଳୁଥିବା କଞ୍ଚାଚମଡ଼ା ଓ ଖାଲର ଏକ ପ୍ରକୃତ ରୂପରେଖର ଏକ ସମୀକ୍ଷା କରାଯାଇନାହିଁ, ତେବେ ଆନୁମାନିକ ପ୍ରାୟ ୨.୨୫ରୁ ୨.୪୨ ନିୟୁତ ଖଣ୍ଡ ଚମଡ଼ା (ନିମ୍ନୋକ୍ତ ମତେ) ଆମ ରାଜ୍ୟରେ ଥିଲା ।

| | |
|---|---|
| ଗୋରୁ ଚମଡ଼ା | ୧.୩୬ ରୁ ୧.୪୫ ନିୟୁତ ଖଣ୍ଡ |
| ମଇଁଷି ଚମଡ଼ା | ୦.୧୪ ରୁ ୦.୧୫ ,, |
| ଛେଳି ,, | ୦.୫୨ ରୁ ୦.୬୦ ,, |
| ମେଣ୍ଢା ,, | ୦.୨୧ ରୁ ୦.୨୨ ,, |
| ମୋଟ | ୨.୨୩ ରୁ ୨.୪୨ ନିୟୁତ ଖଣ୍ଡ |

ବାର୍ଷିକ ପ୍ରାୟ ଦଶଭାଗରୁ ପନ୍ଦର ଭାଗ ପର୍ଯ୍ୟନ୍ତ ଚମଡ଼ା ନଷ୍ଟ ହେଉଥିବା କାରଣମାନଙ୍କ ମଧ୍ୟରେ ରକ୍ଷଣାବେକ୍ଷଣ ଓ ବୈଷୟିକ ଜ୍ଞାନ କୌଶଳର ଅଭାବ, ସାମାଜିକ ଓ ଜାତିପ୍ରଥା ଇତ୍ୟାଦି ଅନ୍ୟତମ ।

ରାଜ୍ୟରେ ମିଳୁଥିବା ସମସ୍ତ ଚମଡ଼ାର କେବଳ ୦.୨୦ ନିୟୁତ ଖଣ୍ଡ ଚମଡ଼ା କସ (Tanning) ହୋଇଥାଏ ଏବଂ ଅନ୍ୟାନ୍ୟ ସମସ୍ତ ଚମଡ଼ା ପଡ଼ୋଶୀ ରାଜ୍ୟ ପଶ୍ଚିମବଙ୍ଗ, ଆନ୍ଧ୍ର, ତାମିଲନାଡ଼ୁକୁ ଶ୍ରେଣୀରେ ଚାଲାଣ ହୋଇଥାଏ । ଓଡ଼ିଶାରେ ଆଜି ସୁଦ୍ଧା ସାର୍ବଜନୀନ କ୍ଷେତ୍ରରେ ମାତ୍ର ୩ଟି ଟେନେରି କାର୍ଯ୍ୟକ୍ଷମ । ଏହି ୩ଟି ଟେନେରିର ପରିଚାଳନା ଭାର ଓଡ଼ିଶା ଚମଡ଼ା ନିଗମ ଲିଃ ଉପରେ ନ୍ୟସ୍ତ । ତିଟିଲାଗଡ଼, ବୌଦ୍ଧରେ ଅବସ୍ଥିତ ଟେନେରିଗୁଡ଼ିକ ରାଜାରାଜୁଡ଼ା ଶାସନ କାଳରେ ପ୍ରତିଷ୍ଠା କରାଯାଇଥିଲା । ଯାହା ପରବର୍ତ୍ତୀ ସମୟରେ ରାଜ୍ୟସରକାର ଓ ରାଜ୍ୟ ଚମଡ଼ା ନିଗମ ଏହାର ପରିଚାଳନା ଦାୟିତ୍ୱ ଗ୍ରହଣ କରିଥିଲେ । ସାମ୍ପ୍ରତରେ ହେଲେ ମଧ୍ୟ ରାଜ୍ୟ ଚମଡ଼ା ନିଗମ ପ୍ରଚେଷ୍ଟାରେ ରାୟଗଡ଼ାରେ ଏକ ଟେନେରି ପ୍ରତିଷ୍ଠା କରାଯାଇଛି । ଏତଦ୍‌ବ୍ୟତୀତ ବାଲେଶ୍ୱର ଜିଲ୍ଲାର ଚନ୍ଦନେଶ୍ୱର ଠାରେ ଏକ ରପ୍ତାନିଭିତ୍ତିକ ଆଧୁନିକ କଳକାରଖାନା ଦ୍ୱାରା ସୁସଜ୍ଜିତ ଚମଡ଼ା ଓ ଜୋତା କାରଖାନା ପ୍ରତିଷ୍ଠା କରାଯାଇଛି । କିନ୍ତୁ ଆବଶ୍ୟକ ମୂଳଧନ ଓ କାର୍ଯ୍ୟକାରୀ ଧନର ଅଭାବ ଯୋଗୁଁ ଉକ୍ତ କାରଖାନା ଉତ୍ପାଦନକ୍ଷମ ହୋଇପାରି ନାହିଁ । ରାଜ୍ୟରେ ବେସରକାରୀ ଉଦ୍ୟମରେ ରାୟଗଡ଼ା ଠାରେ ଅନ୍ୟ ଏକ ଟେନେରି ପ୍ରତିଷ୍ଠା କରାଯାଇଛି ଏବଂ ବାଲେଶ୍ୱର ଜିଲ୍ଲାରେ ପ୍ରତିଷ୍ଠିତ କେତେମୁଡ଼ିଏ ଟେନେରି ରୁଗ୍ଣ ଅବସ୍ଥାରେ ପଡ଼ିରହିଛି । ପ୍ରଚୁର ପରିମାଣରେ କଞ୍ଚାମାଲ ଆମ ରାଜ୍ୟରେ ମିଳୁଥିଲେ ମଧ୍ୟ ପୁଣି ଏଇଥିପାଇଁ ବହୁ ଯୁବଶିଳ୍ପୋଦ୍ୟୋଗୀ

ବେସରକାରୀ ସ୍ତରରେ ଟେନେରୀ ପ୍ରତିଷ୍ଠା କରିବାପାଇଁ ଉଦ୍ୟମ କରିଥିଲେହେଁ ପରିବେଶ ପ୍ରଦୂଷଣର ଆଳ ଦେଖାଇ ରାଜ୍ୟ ପ୍ରଦୂଷଣ ବୋର୍ଡ଼ ଏହି ଟେନେରୀଗୁଡ଼ିକୁ ଲାଇସେନ୍ସ ଦେଉନଥିବାରୁ ଏହି ଚମଡ଼ା ଶିଳ୍ପ ଓଡ଼ିଶାରେ ସମ୍ପୂର୍ଣ୍ଣଭାବେ ବିଲୁପ୍ତ ହେବାକୁ ବସିଲଣି ।

ଯଦି ସରକାରୀ ସ୍ତରରେ କୌଣସି ନୀତି ଅବଲମ୍ବନ କରାନଯାଏ, ତା'ହେଲେ ଚମଡ଼ା ଶିଳ୍ପର ଭବିଷ୍ୟତ ଆମ ରାଜ୍ୟରେ ସନ୍ଦେହଜନକ । ରାଜ୍ୟ ସରକାର ଯୁବଶିଳ୍ପୋଦ୍ୟୋଗୀ ମାନଙ୍କ ପ୍ରୋତ୍ସାହନ ଦେବାପାଇଁ ଆଗେଇ ଆସିବା ଉଚିତ । ଏହାଦ୍ୱାରା ସାରା ରାଜ୍ୟରେ ୨୦,୦୦୦ରୁ ଊର୍ଦ୍ଧ୍ୱ ଚର୍ମକାର ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବେ ଏଥିରୁ ଉପକୃତ ହେବେ ଏଥିରେ ସନ୍ଦେହ ନାହିଁ । ରାଜ୍ୟର ନିମ୍ନୋକ୍ତ ସ୍ଥାନମାନଙ୍କରେ ଜୋତା ଉତ୍ପାଦନକାରୀ (Shoemaker) କାରିଗରମାନେ ବସବାସ କରୁଛନ୍ତି । ସେଗୁଡ଼ିକ ମଧ୍ୟରେ ବାଲେଶ୍ୱର, ଜଳେଶ୍ୱର, ବଲାଙ୍ଗିର, ସୋନପୁର, ଟିଟିଲାଗଡ଼, କଣ୍ଟାବାଞ୍ଜି, ପାଟନାଗଡ଼, କଟକ, ବାରଙ୍ଗ, ଭଗତ୍ପୁର, ଯାଜପୁରରୋଡ଼, ଆଠଗଡ଼, ଢେଙ୍କାନାଳ, ଆଠମଲ୍ଲିକ, ତାଳଚେର, ବ୍ରହ୍ମପୁର, ପାରଳାଖେମୁଣ୍ଡି, ଭଞ୍ଜନଗର, କେସିଙ୍ଗା, ଭବାନୀପାଟଣା, ଜୁନାଗଡ଼, ଖଡ଼ିଆଳ, କେନ୍ଦୁଝର, ଆନନ୍ଦପୁର, ରାୟଗଡ଼ା, ଭଦ୍ରକ, ମୁନିଗୁଡ଼ା, ଜୟପୁର, କଳାହାଣ୍ଡି, ବାରିପଦା, ବେତନଟି, କରଞ୍ଜିଆ, ଜଟଣି, ଦଶପଲ୍ଲା, ନୟାଗଡ଼, ଭୁବନେଶ୍ୱର, ରଣପୁର, ପୁରୀ, ବୌଦ୍ଧ, ଫୁଲବାଣୀ, ମନମୁଣ୍ଡା, ଜି. ଉଦୟଗିରି, ବାଲିଗୁଡ଼ା, ରେଢ଼ାଖୋଲ, ସମ୍ବଲପୁର, ଦେଓଗଡ଼, ବରଗଡ଼, ବରପାଲି, ପଦ୍ମପୁର, ସୋହେଲା, ଝାରସୁଗୁଡ଼ା, ରାଜଗାଙ୍ଗପୁର, ରାଉରକେଲା, ସୁନ୍ଦରଗଡ଼, ବୀରମିତ୍ରପୁର ।

ଏହି ଉପରୋକ୍ତ ସ୍ଥାନଗୁଡ଼ିକର ଚର୍ମକାରମାନେ ଉକ୍ତ ସ୍ଥାନଗୁଡ଼ିକର ଚାହିଦା ଅନୁଯାୟୀ ଛୋଟ ଛୋଟ କୁଟୀରଶିଳ୍ପ ମାଧ୍ୟମରେ ଜୋତା, ଚପଲ, ସ୍ୟାଣ୍ଡେଲ୍ ଇତ୍ୟାଦି ତିଆରି କରି ଜୀବିକା ନିର୍ବାହ କରୁଛନ୍ତି । ଏଗୁଡ଼ିକ ତିଆରି କରିବା ପାଇଁ ସେମାନେ ପରମ୍ପରାଗତ ତଥା ନିଜର କର୍ମକୁଶଳତା ଉପରେ ଧ୍ୟାନ ଦେଇଥାନ୍ତି । ରାଜ୍ୟରେ ପ୍ରାୟ ୨୦ଟି କ୍ଷୁଦ୍ରଶିଳ୍ପ ମାଧ୍ୟମରେ ଜୋତା ଉତ୍ପାଦନ କରାଯାଉଛି । ଉତ୍କଳ ଟେନେରୀ କଟକ ଜିଲ୍ଲାରେ ଅବସ୍ଥିତ ବାରଙ୍ଗଠାରେ ଗ୍ରାମ୍ୟ ପ୍ରଣାଳୀରେ କସ 'Tanning) କରାଯାଇ ସେଗୁଡ଼ିକ ଉତ୍କଳ ଟେନେରୀରେ ଚପଲ, ସେଣ୍ଡେଲ ଆଦି ତିଆରି କରାଯାଉଥିଲା । ରାଜ୍ୟ ଚମଡ଼ା ନିଗମର ରାଣୀହାଟ ଜୋତା କାରଖାନା ସ୍ୱାଧୀନତା ପ୍ରାପ୍ତିର ବହୁ ପୂର୍ବରୁ ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ କରାଯାଇଥିଲା । ସେତେବେଳେ ଏହାର ନାମ ଥିଲା ଉତ୍କଳ ଟେନେରୀ । ୧୯୭୭ ମସିହାରେ ରାଜ୍ୟ ସରକାର ରାଜ୍ୟ ଚମଡ଼ା ନିଗମକୁ ହସ୍ତାନ୍ତର କରିଦିବା ପରେ ଏହି ଜୋତା କାରଖାନା ରାଜ୍ୟ ସରକାରଙ୍କର ବିଭିନ୍ନ ବିଭାଗ ତଥା ରାଉରକେଲା ଷ୍ଟିଲ ପ୍ଲାଣ୍ଟ ଏବଂ ଅନ୍ୟାନ୍ୟ ଅର୍ଦ୍ଧ ସରକାରୀ ସଂସ୍ଥାମାନଙ୍କର ଚାହିଦା ପୂରଣ କରି ଆସୁଛି ।

ସାଧାରଣ ଲୋକଙ୍କର ବ୍ୟବହୃତ ହେଉଥିବା ଜୋତା (Civilian footwear) ଯଦ୍ୟପି ଆଧୁନିକ ଜ୍ଞାନକୌଶଳ ଦ୍ୱାରା ପ୍ରସ୍ତୁତ ହେଉନାହିଁ ତଥାପି ରାଜ୍ୟ ଚମଡ଼ା ନିଗମର ପଦକ୍ଷେପ ଏ ଦିଗରେ ଏକ ପ୍ରଶଂସନୀୟ ପଦକ୍ଷେପ । ବାରଙ୍ଗର କଟକି ଚପଲ, ଦଶପଲ୍ଲାର ପବନା ଚପଲ, ପୁରୀର ଗ୍ରାଇ ଚମଡ଼ା, ବିଦେଶରୁ ଆସୁଥିବା ପରିଭ୍ରମଣକାରୀ (Tourist)ମାନଙ୍କୁ ବିଶେଷ ଭାବରେ ଆକୃଷ୍ଟ କରିପାରିଛି । ରାଜ୍ୟ ଚମଡ଼ା ନିଗମ ତରଫରୁ ଏହି ଦୁଇଟି ସ୍ଥାନର କାରିଗରମାନଙ୍କୁ ପ୍ରଶିକ୍ଷଣ ଦେବା ଓ ବିଭିନ୍ନ ଅର୍ଥନୈତିକ ଯୋଜନା ମାଧ୍ୟମରେ ସାହାଯ୍ୟ ଦେଉଥିଲେହେଁ ସରକାରୀ ସ୍ତରରେ ଉପଯୁକ୍ତ ପ୍ରୋତ୍ସାହନର ଅଭାବରୁ ବିଦେଶରେ ଚାହିଦା ଥିଲେ ମଧ୍ୟ ରପ୍ତାନି କରିଯାଇ ପାରୁନାହିଁ ।

ରାଜ୍ୟର ଦୁଇକୋଟି ଚଉଷଠି ଲକ୍ଷ ଜନସଂଖ୍ୟାରୁ ୨ କୋଟି ୩୩ ଲକ୍ଷ ଗ୍ରାମାଞ୍ଚଳରେ ୦.୩୧ କୋଟି ସହରାଞ୍ଚଳରେ ବାସ କରନ୍ତି । ଗ୍ରାମାଞ୍ଚଳର ୨୦% ଏବଂ ସହରାଞ୍ଚଳର ୯୦% ଲୋକ ଜୋତା, ଚପଲ ବ୍ୟବହାର କରୁଥିବା କଥା ଯଦି ହିସାବକୁ ନିଆଯାଏ ତା'ହେଲେ ବର୍ଷକୁ ୩.୫ ନିୟୁତ ହଳ ଜୋତା, ଚପଲର ଆବଶ୍ୟକତା ରହିଛି ବୋଲି ଧରି ନିଆଯିବ । ରାଜ୍ୟର ଉପରୋକ୍ତ ଚାହିଦା ମେଣ୍ଟାଇବା ପାଇଁ ରାଜ୍ୟ ଚମଡ଼ା ନିଗମର ନିଜର ସମ୍ବଳ ଅନୁଯାୟୀ ଚାହିଦା ପୂରଣ କରୁଥିବା ବେଳେ ବାକି ସାମଗ୍ରୀଗୁଡ଼ିକ କଲିକତା, କାନପୁର, ଆଗ୍ରାରୁ ଆମଦାନୀ କରାଯାଉଛି । ଏଣୁ ବିଶେଷ ଭାବେ ଚମଡ଼ା ଶିଳ୍ପର ପ୍ରତିଷ୍ଠାର ଗୁରୁତ୍ୱ ଉପଲବ୍‌ଧି କରାଯାଉଛି ।

ଓଡ଼ିଶାରେ ଚମଡ଼ା ଶିଳ୍ପର ଉନ୍ନତିକଳ୍ପେ ରାଜ୍ୟ ସରକାର ରାୟଗଡ଼ାଠାରେ ଏକ ତିନିବର୍ଷିଆ ଶିକ୍ଷା ପାଠ୍ୟକ୍ରମ ଯୋଜନା ଆରମ୍ଭ କରିଥିଲେ । ଏହି ଶିକ୍ଷା ଅନୁଷ୍ଠାନରୁ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନେ ରାଜ୍ୟ ଚମଡ଼ା ନିଗମ ଓ ଏହାର ସହକାରୀ ସଂସ୍ଥା ଲେଦର୍ ଇଣ୍ଡଷ୍ଟ୍ରିଜ୍‌ରେ କେତେଜଣ ନିଯୁକ୍ତି ପାଇଥିବା ବେଳେ ଅନ୍ୟମାନେ ଓଡ଼ିଶା ବାହାରେ ଏହିଭଳି ଶିଳ୍ପ ଅନୁଷ୍ଠାନରେ କାର୍ଯ୍ୟ କରୁଛନ୍ତି । ରାଜ୍ୟ ସରକାରଙ୍କଠାରୁ ଉପଯୁକ୍ତ ପ୍ରୋତ୍ସାହନ ମିଳୁ ନ ଥିବାରୁ କେତେକ ଛାତ୍ର ଚମଡ଼ା ଶିଳ୍ପ ପ୍ରତିଷ୍ଠା କରିବା ପାଇଁ ଆଶାୟୀ ଥିଲେ ମଧ୍ୟ କୃତକାର୍ଯ୍ୟ ହୋଇପାରୁ ନାହାନ୍ତି ।

ରାଜ୍ୟ ଚମଡ଼ା ନିଗମ, ହରିଜନ ଆଦିବାସୀ ବିଭାଗ ଏବଂ ଖଦି ଓ ଗ୍ରାମୋଦ୍ୟୋଗ ବୋର୍ଡ଼ର ଆର୍ଥିକ ସହାୟତାରେ ବହୁ କ୍ଷୁଦ୍ର ଏବଂ କୁଟୀରଶିଳ୍ପ ପ୍ରତିଷ୍ଠା କରିଥିଲେହେଁ ପରବର୍ତ୍ତୀ ସମୟରେ ଆର୍ଥିକ ଅଭାବ ପାଇଁ ସେଗୁଡ଼ିକ ସଫଳ ହୋଇପାରି ନାହିଁ । ସାରା ଭାରତବର୍ଷରେ ୪୦୦୦ରୁ ଊର୍ଦ୍ଧ୍ୱ କୋଟି ଟଙ୍କାର ଚମଡ଼ା ଏବଂ ଚମଡ଼ାଜାତ ଦ୍ରବ୍ୟ ବିଦେଶକୁ ରପ୍ତାନି କରାଯାଉଥିବାବେଳେ ଆମ ରାଜ୍ୟ ଏପର୍ଯ୍ୟନ୍ତ ରପ୍ତାନି କ୍ଷେତ୍ରରେ କୌଣସି ଭୂମିକା ଗ୍ରହଣ କରିପାରି ନାହିଁ । ଚମଡ଼ା ଶିଳ୍ପର ବିକାଶ ଦିଗରେ ପ୍ରତିବନ୍ଧକ ହେଉଥିବା ମୁଖ୍ୟ କାରଣଗୁଡ଼ିକ ହେଲା—

୧—ପଡ଼ୋଶୀ ରାଜ୍ୟକୁ ଚୋରାରେ ଚାଲାଣ ହେଉଥିବା କଞ୍ଚା ଚମଡ଼ା ଯାହା ଦ୍ୱାରା କୃତ୍ରିମ ଅଭାବ ।

୨—ଉପଯୁକ୍ତ ରକ୍ଷଣାବେକ୍ଷଣ ଓ ବୈଷୟିକ ଜ୍ଞାନକୌଶଳର ଅଭାବ ।

୩—ରାଜ୍ୟ ଚମଡ଼ା ନିଗମ ଦ୍ୱାରା ପରିଚାଳିତ ଜୋତା ତିଆରି କାରଖାନା ଓ ଟେନେରୀର ଆଧୁନିକୀକରଣ ପାଇଁ ଆବଶ୍ୟକ ପଡ଼ୁଥିବା ଅର୍ଥର ଅଭାବ ।

୪—ରାଜ୍ୟର ପ୍ରତ୍ୟେକ ଜିଲ୍ଲାରେ ସଙ୍ଗଠିତ ଭାବରେ ଟେନେରୀର ଅଭାବ ।

୫—ଅତ୍ୟାଧୁନିକ ପ୍ରଶିକ୍ଷଣ ଓ ତାଲିମ ପାଇଁ ଉଦ୍ଦିଷ୍ଟ ଅର୍ଥର ଅଭାବ ।

୬—ରାଜ୍ୟ ପ୍ରଦୂଷଣ ବୋର୍ଡ଼ର ଚମଡ଼ା ଶିଳ୍ପକୁ ଲାଇସେନ୍ସ ଦେବା ପାଇଁ ଜାରି କରାଯାଇଥିବା କଟକଣା ।

୭—ସର୍ବଶେଷରେ କୋହଲମାନ୍ତରେ ଯୁବ ଶିଳ୍ପୋଦ୍ୟୋଗୀମାନଙ୍କୁ ଋଣ ଏବଂ ଜମି ଆଦି ଯୋଗାଇବା ଅନ୍ୟତମ କାରଣ ।

ରାଜ୍ୟରେ ଚମଡ଼ା ଶିଳ୍ପର ବିକାଶ ଏବଂ ଏହି ଶିଳ୍ପ ସହିତ ସମ୍ପୃକ୍ତ ଥିବା ଚର୍ମକାରମାନଙ୍କର ଆର୍ଥିକ ଉନ୍ନତି ପାଇଁ ସରକାରୀ ସ୍ତରରେ ଯଦି ଏକ ନିର୍ଦ୍ଦିଷ୍ଟ ରୂପରେଖ ନେଇ ପ୍ରୋତ୍ସାହନ ଦିଆଯାଏ ତା'ହେଲେ ଆମ ରାଜ୍ୟ କେବଳ ଭାରତବର୍ଷ ମାନଚିତ୍ରରେ ନୁହେଁ ସାରା ବିଶ୍ୱରେ ଚମଡ଼ା ଶିଳ୍ପ ମାନଚିତ୍ରରେ ଏକ ଉଲ୍ଲେଖନୀୟ ସ୍ଥାନ ଗ୍ରହଣ କରିପାରିବ ଏଥିରେ ସନ୍ଦେହ ନାହିଁ । ସରକାର ଏହି ମୂଲ୍ୟବାନ କଞ୍ଚା-ମାଲକୁ ଯଦି କାର୍ଯ୍ୟରେ ଲଗାଇବା ପାଇଁ ନିଜର ଆନ୍ତରିକତା ପ୍ରକାଶ କରନ୍ତି ତା'ହେଲେ ଏହା ଏକ ମାଇଲ ଖୁଣ୍ଟି ସଦୃଶ ହୋଇ ପାରିବ ।

ରାଜ୍ୟରେ ଚମଡ଼ା ଶିଳ୍ପର ଉନ୍ନତି ପାଇଁ ଯେଉଁମାନଙ୍କର ଅବଦାନ ଅତୁଳନୀୟ ସେଇମାନଙ୍କ ମଧ୍ୟରେ ସର୍ବପ୍ରଥମେ ଉତ୍କଳଗୌରବ ମଧୁସୂଦନ ଦାସ ଅଗ୍ରଗଣ୍ୟ । ଏବଂ ସ୍ୱାଧୀନତାର ପରବର୍ତ୍ତୀ ସମୟରେ ଏସ୍. ପି. ପାଲିତ୍, ଉପନିର୍ଦ୍ଦେଶକ ଚମଡ଼ା ବିଭାଗ, ଶ୍ରୀ ମଧୁସୂଦନ ମହାନ୍ତି ଉପନିର୍ଦ୍ଦେଶକ ଚମଡ଼ା ବିଭାଗ ଅନ୍ୟତମ । ଉଲ୍ଲେଖନୀୟ ଚମଡ଼ା ଶିଳ୍ପ ସହିତ ସଂଶ୍ଳିଷ୍ଟ ଥିବା ବ୍ୟକ୍ତି ଯେଉଁମାନେ କି ସମାଜରେ ସାମାଜିକ ଏବଂ ଆର୍ଥିକସ୍ତରରେ ଦୁର୍ବଳ ସେମାନଙ୍କର ଉନ୍ନତିକୁ ଆଖି ଆଗରେ ରଖି ରାଜ୍ୟ ଚମଡ଼ା ନିଗମ ଷଷ୍ଠ ପଞ୍ଚବାର୍ଷିକ ଯୋଜନାରେ ନିଗମର ପୂର୍ବତନ ପରିଚାଳନା ନିର୍ଦ୍ଦେଶକ ଶ୍ରୀ ବିନୟ ଭୂଷଣ ମିଶ୍ର I A. S ଙ୍କ ନେତୃତ୍ୱରେ ଯେଉଁ ପଦକ୍ଷେପ ନିଆଯାଇଥିଲା ତାହା ସର୍ବଭାରତୀୟ ସ୍ତରରେ ଲାଗୁ କରିବା ପାଇଁ କେନ୍ଦ୍ର ସରକାରଙ୍କ ତରଫରୁ ନିର୍ଦ୍ଦେଶ ନିଆଯାଇଥିଲା । ଉକ୍ତ ଯୋଜନା ସମ୍ପୂର୍ଣ୍ଣ ଭାବେ ସଫଳ ହୋଇଥିବା କହିବା ଉଚିତ୍ ନ ହେଲେ ମଧ୍ୟ, ତାହା ଏକ ଉଲ୍ଲେଖନୀୟ ଅବଦାନ ।



# କଟକ କଚେରୀ ଓ ରାଜସ୍ୱ ପରିଷଦ (ପର୍ଷଦ)

ଶ୍ରୀ ବରଦାକାନ୍ତ ମହାନ୍ତି

'କଟକ' ଏପରି ଏକ ଶବ୍ଦ ଯାହାକୁ କ ଆଦ୍ୟ ଅକ୍ଷରଆଡ଼ୁ ପଢ଼ି ଆସିଲେ ଯେଉଁ ଶବ୍ଦ ବାହାରିବ, ଶେଷ ଅକ୍ଷରଆଡ଼ୁ ପଢ଼ି ଆସିଲେ ସେହି ଶବ୍ଦ ମଧ୍ୟ ବାହାରିବ । ଯଥାର୍ଥରେ କୁହାଯାଇଛି—

"କଟକ ନଗର ଧବଳ ଟଗର ।"

କଟକର ସବୁ ଜିନିଷର ସ୍ୱତନ୍ତ୍ରତା ଅଛି ।

"ବୋହୂ ହେଉ ପଛକେ କାଣୀ, ସେ କନ୍ଥୁ କଟିକିଆଣୀ ।"

କାଣୀ ବୋହୂଟିଏ ହେଲେ ମଧ୍ୟ ସେ କନ୍ଥୁ କଟିକିଆଣୀ । ତେଣୁ ସେ ବୋହୂଟିର ନିଜସ୍ୱ କିଛି ଅଛି । ସେହିପରି କଟକର ବାଲିଯାତ୍ରା, କଟକ ଗୃହ୍, କଟକର ଦହିବରା ଆଳୁଦମ, କଟକର ଗୁଳଘର ବାରଣ୍ଡାରେ ବୁଢ଼ୀମାନେ ଗ୍ରୁଣ୍ଟୁଥିବା ବରି, ପିଆଜି, ବନାଉଥିବା ଇଡ଼ଲି, ତରକାରୀ, କଟକୀ ଭାଷା, କଟକର ବାଉନ ବଜାର ତେପନଗଲି, କଟକର ଗଡ଼ଗଡ଼ିଆ, ଆନ୍ଧ୍ରରୁ ଆସି କଟକରେ ରିକ୍‌ସା ଟାଣୁଥିବା ତେଲୁଗୁ ଭାଷାଭାଷୀ ରିକ୍‌ସାବାଲାଙ୍କର ଭାଷା, ପୁରୁଷ ଓ ସ୍ତ୍ରୀ ମିଶି ପିକା ଟାଣୁଥିବା ଦୃଶ୍ୟ ପରିଶେଷରେ କଟକ କଚେରୀ ଓ ରାଜସ୍ୱ ପରିଷଦ (ପର୍ଷଦ)ର ସ୍ୱତନ୍ତ୍ରତା ନିଶ୍ଚୟ ଭାବେ ଅଛି ତାହା କେହି ଅସ୍ୱୀକାର କରିପାରିବେ ନାହିଁ, ଏହାସହିତ ଦୋଷ ଦୁର୍ବଳତା ମଧ୍ୟ କିଛି ରହିଛି ।

ବହୁବର୍ଷ ତଳେ ବର୍ତ୍ତମାନ ପରି ଛୋଟ ଛୋଟ ସଦରଗୁଡ଼ିକରେ ଅଦାଲତ ନଥିଲା, ଲୋକମାନେ ମକଦମା ବା ମାମଲା କରିବା ପାଇଁ କଟକ ସହରକୁ ପାଦରେ ଚାଲିଚାଲି ଅଥବା ଶଗଡ଼ରେ ଆସୁଥିଲେ । ଶଗଡ଼ରେ କଟକକୁ ଆସି ମକଦମା ତଦାରଖ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ବିଶେଷକରି ଜମିଦାର ଶ୍ରେଣୀ ଓ ତାଙ୍କର ଗୁମାସ୍ତା-ମାନେ ଥିଲେ, ମକଦମ ଲଢ଼ିବା ସେମାନଙ୍କର ଏକ ଝୁଙ୍କ୍ ଥିଲା । ସାଥିରେ ଚାଉଳ,

ଡାଲି, ପରିବା, ଚୂଡ଼ା ଓ ଗୁଡ଼ ଇତ୍ୟାଦି ବାନ୍ଧି ଲୋକମାନେ ସୁଦୂର ମଫସଲରୁ ଆସି ଧରଣା ନେଇ ଅଥବା ଓକିଲମାନଙ୍କର ମହକିଲମାନଙ୍କ ପାଇଁ ଥିବା ଘରେ ରହି ମକଦମା ତଦାରଖ କରୁଥିଲେ । ସେତେବେଳେ କଟକରେ ଓକିଲ ମୁକ୍ତିଆର ଓ ମୋହରିରଙ୍କ ସଂଖ୍ୟା ଖୁବ୍ କମ ଥିଲା, ଏପରିକି ତଳ କୋର୍ଟଠାରୁ ଉଚ୍ଚନ୍ୟାୟାଳୟ ପର୍ଯ୍ୟନ୍ତ ବାରିଷ୍ଟରଙ୍କ ସଂଖ୍ୟା ମଧ୍ୟ ସୀମିତ ଥିଲା, ପାଟନା ହାଇକୋର୍ଟରୁ ଅଲଗା ହୋଇ ଆସିବା ପରେ ଓଡ଼ିଶା ହାଇକୋର୍ଟ କଟକର ଲାଲ୍ କୋଠାରେ ହେବାପରେ ମଫସଲର; ଏପରିକି କଟକର ଜନସାଧାରଣ ମଧ୍ୟ ହାଇକୋର୍ଟକୁ ନାଲି କୋଠା ବୋଲି କହୁଥିଲେ । କଟକରେ ଦୁଇଟି ବିରାଟ ନାଲିକୋଠା ସେତେବେଳେ ମୁଣ୍ଡ ଟେକିଥିଲା । ଗୋଟିଏ ହେଲା ରେଭେନ୍ସା କଲେଜ, ଅନ୍ୟଟି ହେଲା ଓଡ଼ିଶାର ଉଚ୍ଚ-ନ୍ୟାୟାଳୟ ବା ହାଇକୋର୍ଟ । କଟକ ସହରରେ ସେତେବେଳେ ମଧ୍ୟ ବର୍ତ୍ତମାନ ଭଳି ସାହିବସ୍ତିମାନ ଥିଲା । ସେତେବେଳର ସାହିବସ୍ତି ଓ ବର୍ତ୍ତମାନର ସାହିବସ୍ତି ଭିତରେ ଆକାଶ ପାତାଳ ପ୍ରଭେଦ, ପ୍ରତ୍ୟେକ ସାହିର ମୁରବୀ ଥିଲେ ସେମାନଙ୍କ ସାହି ମହନ୍ତ । ମହନ୍ତମାନଙ୍କୁ ଲୋକମାନେ ଖୁବ୍ ମାନୁଥିଲେ ଏବଂ ସମ୍ମାନ ଦେଉଥିଲେ । 'ସାହି ମହନ୍ତ'ଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ବୋଲି ଧରି ଯାଉଥିଲା ।

କଟକ ସହରର ଖୁବ୍ କମ ସାହିଲୋକ ନିଜ ନିଜ ଭିତରେ ବୁଝାମଣା ଅଭାବରୁ କଚେରୀର ଦ୍ୱାରସ୍ଥ ହେଉଥିଲେ । ଅବଶ୍ୟ ସେତେବେଳେ କେତେକ ବିଶିଷ୍ଟ ଜମିଦାରଙ୍କ ବିରୋଧରେ ପ୍ରଜାମାନେ ନ୍ୟାୟାଳୟକୁ ଯାଉଥିଲେ । କିନ୍ତୁ ଗ୍ରାମରେ ମୁଖିଆମାନେ କଳି ମାମଲାକୁ ଯିବା ପୂର୍ବରୁ ସଭା ଡକାଇ ତାହା ସମାଧାନ କରି ଦେଉଥିଲେ । ଯାହା ସେଠାରେ ସମାଧାନ ହୋଇ ପାରୁନଥିଲା କଟକର କଚେରୀକୁ ଆସୁଥିଲା । ବର୍ତ୍ତମାନ ଭଳି ସେତେବେଳେ ସାଧାରଣ ଲୋକମାନେ ଜମିବାଡ଼ି ବିକି କଚେରୀର ଦ୍ୱାରସ୍ଥ ହେଉନଥିଲେ । ସେତେବେଳେ ଗ୍ରାମର ଜମିଦାର ଶ୍ରେଣୀଙ୍କର ମକଦମା ଲଢ଼ିବା ଏକ ଝୁଙ୍କ୍ ଥିଲା ଏବଂ ସେମାନେ ସେମାନଙ୍କର ଥିବା ଅଚଳାଚଳ ସମ୍ପତ୍ତିରୁ କିଛି ବିକିକରି ସାଧାରଣ ଲୋକମାନଙ୍କୁ କଚେରୀର ଦ୍ୱାରସ୍ଥ କରାଇ ବହୁତ ହଇରାଣ ହରକତ କରୁଥିଲେ । ଫଳରେ ଗ୍ରାମର ସାଧାରଣ ଏବଂ ନିରୀହ ଜନସାଧାରଣ ଜମିଦାରମାନଙ୍କ ପାଖରେ ମୁଣ୍ଡ ନଇଁବାକୁ ବାଧ୍ୟ ହେଉଥିଲେ । ସୀମିତ ସଂଖ୍ୟକ ଓକିଲ, ମୋହରିର, ମୁକ୍ତିଆରମାନେ ଲାଭବାନ ହେଉଥିଲେ ।

ବର୍ତ୍ତମାନ ପରିସ୍ଥିତି ଅଲଗା; ଛୋଟ ଛୋଟ ସହରମାନଙ୍କରେ ଏବେ କୋର୍ଟ କଚେରୀମାନ ପ୍ରତିଷ୍ଠା ହେବାରୁ ଲୋକମାନେ ସେଠାକୁ ବାଟଭାଙ୍ଗି ଯାଉଛନ୍ତି । କେବଳ ଯେଉଁମାନେ ସେଠାରେ ହାରୁଛନ୍ତି, ଅପିଲରେ ହାଇକୋର୍ଟକୁ ଆସୁଛନ୍ତି କିମ୍ବା (Writ) ମକଦମାଗୁଡ଼ିକ ସିଧାସଳଖ ହାଇକୋର୍ଟକୁ ଆସୁଛି । ଅବଶ୍ୟ କଟକ ନଗର ଇଲାକାଧୀନ ଏବଂ ଏଠାରେ ପ୍ରତିଷ୍ଠିତ ଥିବା କଚେରୀଗୁଡ଼ିକର ଅଧୀନସ୍ଥ ଇଲାକାଗୁଡ଼ିକରୁ ମକଦମାମାନ ଏଠାକାର ତଳ କୋର୍ଟକୁ ଆସି ପରେ ହାଇକୋର୍ଟକୁ ଆସୁଛି, ତ୍ରୁଟିକର

ସର୍ତ୍ତାବଳୀ ସମ୍ବନ୍ଧୀୟ ମାମଲା ବା **Service matter** ଗୁଡ଼ିକ ସିଧାସଳଖ ଆଉ ଉଚ୍ଚ ନ୍ୟାୟାଳୟକୁ ନଯାଇ ଭୁବନେଶ୍ୱରରେ ଥିବା ଓଡ଼ିଶା ଆଡ଼ମିନିଷ୍ଟ୍ରେଟିଭ ଟ୍ରିବ୍ୟୁନାଲ୍‌କୁ ଯାଇ ବିଚାର କରାଯାଉଛି ଏବଂ ସପ୍ତାହରେ ମାତ୍ର କେତେକ ଦିନ ବିଚାରପତିମାନେ ଭୁବନେଶ୍ୱରରୁ ଆସି ସର୍କିଟ କୋର୍ଟ କରି କଟକରେ ମକଦ୍ଦମା ବିଚାର କରୁଛନ୍ତି, ଅବଶ୍ୟ କେନ୍ଦ୍ରୀୟ ଆଡ଼ମିନିଷ୍ଟ୍ରେଟିଭ ଟ୍ରିବ୍ୟୁନାଲ ବର୍ତ୍ତମାନ ପାଇଁ କଟକରେ ଅବସ୍ଥାପିତ ଏବଂ କେନ୍ଦ୍ର ସରକାରଙ୍କ ଅଧୀନରେ ଚାକିରି କରୁଥିବା କର୍ମଚାରୀମାନଙ୍କର ଚାକିରି ସର୍ତ୍ତାବଳୀ ବାବଦ ମାମଲାମାନ ଏଠାକୁ ସିଧାସଳଖ ବିଚାର ପାଇଁ ଆସୁଛି ଏବଂ ଶୁଣାଣି ହୋଇ ରାୟ ପ୍ରକାଶ ପାଉଛି । ଏହା ଏକ ସ୍ୱତନ୍ତ୍ର ସ୍ଥାନରେ ହେଉଅଛି ଯାହାକି ରାଜସ୍ୱ ପର୍ଷଦର ନବନିର୍ମିତ ସାତତାଲା କୋଠାରେ ଏବଂ ରାଜସ୍ୱ ପର୍ଷଦ କ୍ୟାମ୍ପସ ଭିତରେ ।

କଟକ ସହରରେ ଓକିଲଙ୍କ ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇଛି । ଆଇନ କଲେଜମାନ ମଧ୍ୟ ମେଣ୍ଢପରି ଭାବେ ବୃଦ୍ଧିପାଇଛି । ସ୍ନାତକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ କେତେକ ଛାତ୍ରଛାତ୍ରୀ ଘରେ ବସିବା ଅପେକ୍ଷା ଆଇନ୍ କଲେଜମାନଙ୍କରେ ନାମ ଲେଖାଇ ଆଇନ ଡ଼ିଗ୍ରୀ ହାସଲ କରୁଛନ୍ତି । ଆଇନ କଲେଜମାନଙ୍କରେ ମୁଖ୍ୟତଃ ଦୁଇବେଳା ପାଠ ପଢ଼ାଯାଏ । ଦିନବେଳା ଓ ଅନ୍ୟ ସମୟଟି ହେଉଛି ବେଳେ ବେଳେ ପ୍ରାତଃକାଳରେ ବା ସନ୍ଧ୍ୟାବେଳେ । ପ୍ରାତଃ ବା ସନ୍ଧ୍ୟାରେ ଯେଉଁ ଆଇନ କ୍ଲାସଗୁଡ଼ିକ ହୁଏ, ଏଥିରେ ସାମୟିକ ଭାବେ **(Parttime)** ଅଧ୍ୟାପକମାନେ ରହନ୍ତି । ଏଥିରେ ଯେଉଁ ଅଧ୍ୟାପକମାନେ ଖୁବ୍ କମ୍ ଦରମା ନେଇ ରହନ୍ତି ସେମାନେ ପ୍ରାୟ ଓକିଲାତି କରୁଥାନ୍ତି । ତେଣୁ ଯେଉଁ ଅର୍ଥ ଉକ୍ତ ଅଧ୍ୟାପନାରୁ ସେମାନେ ପାଆନ୍ତି ତାହା ସେମାନଙ୍କର ଏକ ଦ୍ୱିତୀୟ ଆୟର ପନ୍ଥା । **(Side Businees)** ହିସାବରେ ଧରାହୁଏ । ପ୍ରାୟ ସରକାରୀ ଚାକିରିଆ, ଦିନରେ ଅନ୍ୟ କୌଣସି କାର୍ଯ୍ୟରେ ବ୍ୟସ୍ତଥିବା ଛାତ୍ରଛାତ୍ରୀମାନେ ବା ବୟସ୍କ ବୟସ୍କାମାନେ ଏଥିରେ ଅଧ୍ୟୟନ କରନ୍ତି । ଫଳରେ ଏ ଶ୍ରେଣୀଗୁଡ଼ିକ ଏକ ଇଚ୍ଛାଧୀନ ପାଠ୍ୟ ବା **Optional Study** ହିସାବରେ ଧରାଯାଏ । ସନ୍ଧ୍ୟା ବା ସକାଳ ଶ୍ରେଣୀରେ ଅଧ୍ୟୟନ କରୁଥିବା ଛାତ୍ର ଛାତ୍ରୀ ଓ ଓକିଲ, ଅଧ୍ୟାପକ, ଅଧ୍ୟାପିକାମାନେ ନିଜ ନିଜର କାର୍ଯ୍ୟରେ ଓ ବୃତ୍ତିରେ ବ୍ୟସ୍ତ ରହୁଥିବାରୁ ପାଠପଢ଼ା ଉପରେ ସେତେଟା ଜୋର ଦିଆଯାଏ ନାହିଁ । ଯେନତେନ ପ୍ରକାର ଡ଼ିଗ୍ରୀ ହାସଲ କରିବା ଏ ପାଠପଢ଼ାର ମୂଳ ଉଦ୍ଦେଶ୍ୟ ଥାଏ । ଫଳରେ ଆଇନ ଶିକ୍ଷାର ଅଧୋଗତି ଘଟୁଛି, ଅବଶ୍ୟ ଦିନବେଳେ ଯେଉଁ ଅଧ୍ୟାପକ ଓ ଅଧ୍ୟାପିକାମାନେ ଅଧ୍ୟାପନାରତ ଥାଆନ୍ତି ସେମାନେ ସମସ୍ତେ ପୁରା ସମୟ ଅଧ୍ୟାପକ ବା **Whole time lecturer** ଥାଆନ୍ତି । ଏମାନେ ଏକା ସମୟରେ ଅଧ୍ୟାପନା ସହ ଓକିଲାତି କରିପାରିବେ ନାହିଁ ବୋଲି ନିୟମ ଅଛି ଓ ଏମାନେ ୟୁ. ଜି. ସି. **(U. G. C Scale)**. ପାଆନ୍ତି । ଦିନବେଳେ ଅଧ୍ୟୟନ କରୁଥିବା କେତେକ ଛାତ୍ରମାନଙ୍କ ମଧ୍ୟରେ ପାଠ

ପଢ଼ିବା ପାଇଁ, ଆଇନ ବଦ୍ୟା ଠିକ୍ ଭାବେ ଶିକ୍ଷା କରି ଓକିଲାତି କରିବା ପାଇଁ ଅଥବା କଚେରିରେ ହାକମ ହେବାପାଇଁ ଝୁଙ୍କ ଥାଏ । ତେଣୁ ସେମାନେ ଠିକ ଭାବେ ପାଠ ପଢ଼ନ୍ତି । ଆଉ କେତେକ ଛାତ୍ର ମଝିରୁ ଯାଇ ଓକିଲାତି ପାଠପଢ଼ା ଛାଡ଼ି ଚାକିରି ପାଇଗଲେ ଚାକିରି କରିବସନ୍ତି ।

ଏବେ ଖୋଦ କଟକ ସହରରେ ଦୁଇଟି ଆଇନ କଲେଜ ଯଥା—ସର୍ବପୁରାତନ କଲେଜ 'ମଧୁସୂଦନ ଆଇନ କଲେଜ' ଓ 'ଧି ଲ କଲେଜ'ରେ ବହୁ ଛାତ୍ରଛାତ୍ରୀ ଅଧ୍ୟୟନ କରୁଥିବାରୁ ପ୍ରତିବର୍ଷ ଶହ ଶହ ସଂଖ୍ୟାରେ ଆଇନ ଡିଗ୍ରୀ ହାସଲ କରୁଛନ୍ତି ଏବଂ ଚାକିରି ନ ପାଇ ଅନନ୍ୟୋପାୟ ହୋଇ ବହୁ ସଂଖ୍ୟାରେ ଓକିଲାତି ଲାଇ-ସେନ୍ସ କରୁଛନ୍ତି । ଯଦି ମଝିରୁ କେହି ଚାକିରି ପାଇ ଯାଉଛନ୍ତି ତେବେ ଓକିଲାତି ଛାଡ଼ି ଚାକିରି କରନ୍ତି ।

ଆଇନ କଲେଜରୁ ବହୁ ସଂଖ୍ୟାରେ ଆଇନ ଡିଗ୍ରୀଧାରୀ ଛାତ୍ରଛାତ୍ରୀ ଉତ୍ତୀର୍ଣ୍ଣ ହୋଇ ଲାଇସେନ୍ସ କରୁଛନ୍ତି । ଫଳରେ ଜଣେ ଜଣେ ସିନିଅର ଓକିଲମାନଙ୍କ ପାଖରେ ଜୁନିଅର ଭାବେ ରହି ଓକିଲାତି କରିବା ଏକ ସମସ୍ୟା ହୋଇ ପଡ଼ିଲାଣି । ସିନିଅର ଓକିଲମାନେ ଏବେ ଜୁନିଅର ରଖିବା ପାଇଁ ସାଧାରଣତଃ ରାଜି ହେଉନାହାନ୍ତି । କଟକ ସହରରେ ଏବେ ଜଣେ ଜଣେ ସିନିଅର ଓକିଲଙ୍କ ପାଖରେ ଦଶ ବାରଜଣ ବା ତଦୁର୍ଦ୍ଧ୍ୱ ଜୁନିଅର ଓକିଲ ଅବସ୍ଥାପିତ । ଯଦିବା ବାଧ୍ୟବାଧକତାରେ ବା ଖୋସାମତ ବଳରେ ଜୁନିଅର ଓକିଲ ରଖୁଛନ୍ତି, ସେମାନଙ୍କୁ ଠିକ୍ ଭାବେ ଅର୍ଥ ବା ଦୈନିକ କିଛି ଅର୍ଥ ଦେଉ ନ ଥିବାରୁ ଏତେବର୍ଷ ଧରି ପାଠ ପଢ଼ିଥିବା ଜୁନିଅର ଓକିଲମାନେ କୌଣସି ନା କୌଣସି କାରଣରୁ ହତୋତ୍ସାହ ହୋଇ ପଡ଼ୁଛନ୍ତି । ଫଳରେ ଦୁଇତି କିଛିବର୍ଷ ପରେ ଖାଲି ଲାଇସେନ୍ସ ରଖି ଆଉ କଚେରୀ ନ ଯାଇ ଘରେ ବସି ରହୁଛନ୍ତି ଅଥବା କିଛି Side Buisness ବା Part time କାର୍ଯ୍ୟ କରିବାକୁ ବାଧ୍ୟ ହେଉଛନ୍ତି ନଚେତ୍ ସୁଦୂର ମଫସଲରୁ ଆସି କଟକରେ ଘରଭଡ଼ା ନେଇ ନୂଆ ଓକିଲାତି କରିବା କ କଷ୍ଟକର ବ୍ୟାପାର । ଯାହା ସିଏ ଅନୁଭବ ନ କରିଛି, ସେ ଜାଣିବା କଷ୍ଟକର ବ୍ୟାପାର । ଫଳରେ ଓକିଲାତି କରି ଅର୍ଥ ଉପାର୍ଜନ କରିବା ଏକ ଦୁରୂହ ବ୍ୟାପାର ହେଲାଣି ।

ଅବଶ୍ୟ ଯେଉଁ ଜୁନିଅର ଓକିଲମାନଙ୍କର ବାପା, ଶ୍ୱଶୁର ଓ ଅନ୍ୟ ନିକଟ ସମ୍ପର୍କୀୟ ଓକିଲାତି କରୁଥିବେ ବା ଆଗରୁ କରିଥିବେ, ବହି ଗ୍ରନ୍ଥର ଭର୍ତ୍ତି ହୋଇ ରହିଥିବ ସେଗୁଡ଼ିକମାନେ ହିଁ ଶେଷକୁ ଏଥିରେ ତିଷ୍ଠି ରହୁଛନ୍ତି, ନଚେତ୍ କେତେକ ନୂଆ ଓକିଲାତି କରୁଥିବା ଯୁବକ କୌଣସି ଶିକ୍ଷୟିତ୍ରୀ, ଅଧ୍ୟାପିକା, ଡାକ୍ତରାଣୀ ବା କୌଣସି ସରକାରୀ ଚାକିରି କରୁଥିବା ମହିଳାଙ୍କୁ ବିବାହ କରି ସେମାନଙ୍କ ରୋଜଗାର ଉପରେ ନିର୍ଭର କରି ନିଜର ଓକିଲାତି ବ୍ୟବସାୟକୁ କିଛିବର୍ଷ ପାଇଁ ବଜାୟ ରଖି ପରେ ପ୍ରତିଷ୍ଠିତ ଓକିଲ ଭାବେ ପରିଗଣିତ ହେଉଛନ୍ତି । ନଚେତ୍ ନୂଆ ଓକିଲାତି

କରୁଥିବା ବ୍ୟକ୍ତିଟି ଏକ ଘରେଇ ସ୍ତ୍ରୀ ଲୋକକୁ ବିବାହ କଲେ କଟକ ସହରରେ ଘରଭଡ଼ା ସମସ୍ୟା ଯାହା ସେଥିରେ ନିଜ ଗୁଜୁରାଣ ମେଣ୍ଟାଇବା ଓ ପରିବାର ଭରଣ ପୋଷଣ କରିବା ବହୁ କଷ୍ଟକର ବ୍ୟାପାର । ତେଣୁ ଓକିଲାତି ପ୍ରତି ବହୁ ଆଶାୟୀ ଯୁବକ ଓ ଯୁବତୀମାନଙ୍କର ସ୍ପୃହା କମି କମି ଯାଉଛି । ନୂଆକରି ଓକିଲାତି କରୁଥିବା ଯୁବତୀଟି ପ୍ରତି ବିବାହ ଏକ ମୁଖ୍ୟ ସମସ୍ୟା ହୋଇ ପଡ଼ୁଛି । ଓକିଲାତି କରୁଥିବା ଯୁବତୀଟିକୁ ବୋହୂକରି ନେବା ପାଇଁ ସାଧାରଣ ଲୋକମାନେ "ସାହସ କରୁନାହାନ୍ତି । ଅବଶ୍ୟ ଉଚ୍ଚ ପ୍ରତିଷ୍ଠିତ ବା Aristocracy ପରିବାର କଥା ଭିନ୍ନ । ଏତେବର୍ଷ ଧରି ପାଠ ପଢ଼ିଥିବା ଓ ଉଚ୍ଚଶିକ୍ଷିତା ହୋଇଥିବା ଯୋଗ୍ୟ ପାତ୍ରୀଟି ପାଇଁ ବର ଖୋଜିବା ପୁଣି ସେହିଭଳି ଏକ ସମସ୍ୟା । ଖୋଦ କଟକ ସହରରେ ଘରଭଡ଼ା ସମସ୍ୟା ଏକ ବିଷମ ସମସ୍ୟା । ତା' ମଧ୍ୟରେ ପୁଣି ଓକିଲ ଓ ପୁଲିସବାଲାଙ୍କୁ ଘର ମିଳିବା ଏକ କଷ୍ଟକର ବ୍ୟାପାର । ସାଧାରଣ ଲୋକମାନଙ୍କର ଧାରଣା ଯେ ଯଦି ସେମାନେ ଓକିଲ ଓ ପୁଲିସବାଲାଙ୍କୁ ଭଡ଼ାଟିଆ ହିସାବରେ ଘରେ ରଖିବେ, ତେବେ ସେମାନେ ଘର ଛାଡ଼ିବା ବେଳକୁ ବଡ଼ ହଇରାଣ କରିବେ । ବିଶେଷ କରି ଓକିଲମାନେ ପ୍ରତ୍ୟକ୍ଷ ଭାବେ କଚେରୀ ସହ ଜଡ଼ିତ ଥିବାରୁ ଘରଭଡ଼ା ଆଇନ ଅନୁସାରେ ମକଦ୍ଦମା ଦାଏର୍ କରିବେ । ତେଣୁ ବିଚରା ନିରୀହ ଯୁବ ଓକିଲଙ୍କ ପରିବାରବର୍ଗଙ୍କୁ କଟକ ସହରରେ ରଖିବା ପାଇଁ ଏ ମହଙ୍ଗା ବଜାରରେ ବିଭିନ୍ନ ମାଲିକମାନଙ୍କ ଦ୍ୱାରସ୍ଥ ହେବାକୁ ପଡ଼ୁଛି । ଅବଶ୍ୟ ପ୍ରାୟ ସବୁ ସିନିଅର ଓକିଲମାନଙ୍କର କଟକ ସହରରେ ଆଖିଦୃଶିଆ ଅଟ୍ଟାଳିକାମାନ ଅଛି ।

ସିନିଅର ଓକିଲମାନେ ଜୁନିଅର ଓକିଲମାନଙ୍କୁ ନିୟମିତ ଭାବେ ପଇସା ନ ଦେଉଥିବାରୁ ଜୁନିଅର ଓକିଲମାନେ ବାଧ୍ୟ ହୋଇ ମହକିଲମାନଙ୍କଠାରୁ ତାରିଖ ଅନୁଯାୟୀ ଭିନ୍ନରକମ ପଇସା ନେବା ପାଇଁ ବାଧ୍ୟ ହେଉଛନ୍ତି । ବିଚରା ମହକିଲଟି ତା'ର ମକଦ୍ଦମାର ସମସ୍ତ ପ୍ରାପ୍ୟ ସିନିଅର ଓକିଲଙ୍କୁ ଦେଇ ସାରିଥିଲେ ମଧ୍ୟ ପୁଣି ବୋଝ ଉପରେ ନଳିତା ବିଡ଼ା ଭଳି ଜୁନିଅରମାନଙ୍କର ଶିକାର ହେଉଛି । ଯଦିବା କୌଣସି ମହକିଲ ଠିକ୍ ଭାବରେ ନିଜର ମକଦ୍ଦମା ତଦାରଖ କରିପାରୁ ନାହିଁ ଓ ସେ ଭାବୁଛି ଯେ ସେ ସିନିଅର ଓକିଲବାବୁଙ୍କୁ ପଇସା ଦେଇ ସାରିଛି ଓ ତା'ର କାର୍ଯ୍ୟ ସମାପ୍ତ ହୋଇଛି, କାହିଁକି ଏତେ ପଇସା ଖର୍ଚ୍ଚ କରି କଟକ ଆସିବ, ସେହି ଆଶାରେ ଘରେ ରହିଯାଉଛି । ଏଣେ ସିନିଅର ଓକିଲମାନେ ଉଚ୍ଚ ନ୍ୟାୟାଳୟରେ ମକଦ୍ଦମା ତଦାରଖ କରୁ କରୁ ଅଥବା ଜିଲ୍ଲା ବା ସେସନ୍ ଜଜ୍ କୋର୍ଟରେ ମକଦ୍ଦମା ତଦାରଖ କରୁ କରୁ ଯେପରି ଚକବନ୍ଦୀ କୋର୍ଟ ହେଉ ବା ସଭ୍ୟ ରାଜସ୍ୱ ପର୍ଷଦଙ୍କ କୋର୍ଟ ବା ଜିଲ୍ଲାପାଳ, ଅତିରିକ୍ତ ଜିଲ୍ଲାପାଳ କିମ୍ବା ପରିଶେଷରେ ସେଟଲମେଣ୍ଟ ଅଫିସରଙ୍କ କୋର୍ଟରେ ମକଦ୍ଦମା ଖାରଜ ହୋଇଯାଉଛି । ସେଟଲମେଣ୍ଟ ଅଫିସରଙ୍କ କୋର୍ଟ କୋରାପୁଟରେ, ବିଭିନ୍ନ ରେଞ୍ଜର ଚକବନ୍ଦୀ ଡେପୁଟି ଡାଇରେକ୍ଟରଙ୍କ କୋର୍ଟ କଟକ ସହରର ତୁଳସୀପୁରଠାରୁ ଆରମ୍ଭ କରି ରାଜାବଗିଚା ପର୍ଯ୍ୟନ୍ତ ବିଭିନ୍ନ ଜାଗାରେ

କଲେକ୍ଟର, ଅତିରିକ୍ତ ଜିଲ୍ଲାପାଳ, ସବ୍‌କଲେକ୍ଟରଙ୍କ କାର୍ଯ୍ୟାଳୟ ଓ ସଭ୍ୟ ରାଜସ୍ୱ ପର୍ଷଦଙ୍କ କୋର୍ଟଗୁଡ଼ିକ କଚେରୀକୁ ଲାଗିଥିଲେହେଁ ବିଭିନ୍ନ ବିଭିନ୍ନ ସ୍ଥାନରେ ଅବସ୍ଥାପିତ । ଉଚ୍ଚ ନ୍ୟାୟାଳୟ ତଳକୁ ସେସନ୍‌ସ ଜଜ୍ ବା ଜିଲ୍ଲାଜଜ୍, ମୁଖ୍ୟ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ୍, ଅତିରିକ୍ତ ମୁଖ୍ୟ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ୍, ସବ୍‌ଜଜ୍ (ଏକାଧିକ), ଅତିରିକ୍ତ ସବ୍ ଜଜ୍, ଜୁଡ଼ିସିଆଲ ମାଜିଷ୍ଟ୍ରେଟ୍ ତଥା ମୁନସଫ୍ ପ୍ରଥମ ଶ୍ରେଣୀ ଓ ଦ୍ୱିତୀୟ ଶ୍ରେଣୀମାନଙ୍କର କୋର୍ଟ, କୋର୍ଟ ପରିସରକୁ ଲାଗି ଲାଗି ଏବଂ କେତେକ କୋର୍ଟ ମଧ୍ୟ ଗୁଡ଼ଗୁଡ଼ ହୋଇ ଅଛି । ଫଳରେ ବିଭିନ୍ନ ସ୍ଥାନରେ ବିଭିନ୍ନ କୋର୍ଟ ଚାଲୁଥିବାରୁ ଓକିଲ, ମୋହରିର ଏପରିକି ମକଦ୍ଦମାମାନେ ବି ବହୁତ ହଇରାଣ ହେଉଛନ୍ତି ।

ରାଜସ୍ୱ ପର୍ଷଦଠାରୁ ଅଳ୍ପ ଦୂରରେ ଆର୍. ଡି. ସି.ଙ୍କ ଅଫିସ ତଥା କୋର୍ଟ ଚାଲୁଅଛି । ସିଟି ମାଜିଷ୍ଟ୍ରେଟ୍‌ଙ୍କଠାରୁ ଆରମ୍ଭ କରି ଏକଜିକ୍ୟୁଟିଭ ମାଜିଷ୍ଟ୍ରେଟ ଦ୍ୱିତୀୟ ଶ୍ରେଣୀ ଅବାନ ଲ୍ୟାଣ୍ଡ ସିଲିଂ ଅଫିସର, ଲ୍ୟାଣ୍ଡ ଆକ୍ୱିଜିସନ୍ ଅଫିସର, ସଦର ତହସିଲଦାର ଇତ୍ୟାଦି ମକଦ୍ଦମା ପରିଚାଳନା ପାଇଁ ନିଯୁକ୍ତ ଥିବା ଅଫିସରଙ୍କ ସଂଖ୍ୟା କଟକ ସହରରେ କମ୍ ନୁହେଁ । ଉଚ୍ଚ ନ୍ୟାୟାଳୟରେ ମାନ୍ୟବର ମୁଖ୍ୟ ବିଚାରପତିଙ୍କୁ ମିଶାଇ ଚଉଦରୁ ଊର୍ଦ୍ଧ୍ୱ ବିଚାରପତି ନିଯୁକ୍ତ ହେଲେଣି । ତେଣୁ ସେମାନଙ୍କ ମଧ୍ୟରୁ କେତେକ ଖଣ୍ଡପୀଠରେ ବସନ୍ତି ତ ଆଉ କେତେଜଣ ବିଚାରପତି ଏକକ ଭାବେ ମକଦ୍ଦମାମାନ ଶୁଣାଣି କରନ୍ତି । ବିଚରା ସିନିଅର ଓକିଲମାନଙ୍କୁ ମଧ୍ୟ ଏତେଗୁଡ଼ିଏ କୋର୍ଟର ମକଦ୍ଦମା ପରିଚାଳନା ପାଇଁ ମାନସିକ ଯନ୍ତ୍ରଣାରେ ଶିକାର ହେଉଥିବା ଯୁବ ଜୁନିଅର ଓକିଲମାନଙ୍କ ଉପରେ ନିର୍ଭର କରିବା ପାଇଁ ପଡ଼ିବା ସ୍ୱାଭାବିକ । ଉପଯୁକ୍ତ ଭାବେ ଜୁନିଅର ଓକିଲମାନଙ୍କର ତଦାରଖ ଅଭାବରୁ ମକଦ୍ଦମା-ମାନ ଖାରଜ ହୋଇଯାଉଛି । ବିଚରା ମକଦ୍ଦମା ଯଦି କୌଣସି କାରଣରୁ କଟକକୁ ଆସିପାରୁ ନାହିଁ ତେବେ ମୋହରିର ମଧ୍ୟ ଉପଯୁକ୍ତ ଭାବେ ଜୁନିଅର ଓକିଲଙ୍କୁ ଠିକ୍ ସମୟରେ ଫାଇଲଟି ଦେଇ ତାଙ୍କୁ ଫାଇଲ ସହ ପୂର୍ବଭାବେ ଅଭ୍ୟସ୍ତ କରାଇ ପାରୁନାହିଁ ଓ ଅବହିତ କରିପାରୁ ନାହିଁ କିମ୍ବା ଯୁବ ଓକିଲମାନେ ଭାବୁଛନ୍ତି ମୋ ମକଦ୍ଦମା ତ ଆସିନାହିଁ ପଇସା ବା ଦେବ କିଏ ? ପଇସା ପାଇବାର ନାହିଁ ଏତେ ତଦାରଖ କରିବା କ'ଣ ଦରକାର ? ଯଦି କୌଣସି ସିନିଅର ଓକିଲମାନଙ୍କର ଅନ୍ୟ କୋର୍ଟରେ ବ୍ୟସ୍ତତା ଭିତରେ ଜୁନିଅରମାନେ ବାଧ୍ୟବାଧକତାରେ ବିଭିନ୍ନ କୋର୍ଟକୁ ଯାଉଛନ୍ତି ତେବେ ଫାଇଲ ସହ ସମ୍ପୂର୍ଣ୍ଣ ଭାବେ ନିଜକୁ ଜଡ଼ିତ ନ କରିଥିବାରୁ ଅନ୍ୟ ତରଫରେ କୌଣସି ସିନିଅର ଓକିଲ ଯୁକ୍ତି ବାଢ଼ି ବସନ୍ତି ବା **Argument** କରନ୍ତି ତେବେ ଯୁବ ଓକିଲ ଠିକ୍ ଭାବେ ଯୁକ୍ତି ଉପସ୍ଥାପିତ ନ କରିବାରୁ ଏବଂ ହଡ଼ବଡ଼େଇ ଯିବାରୁ ମକଦ୍ଦମାଗୁଡ଼ିକ ଖାରଜ ହୋଇଯାଉଛି । ଯେଉଁ ପଟରେ ସିନିଅର ଓକିଲମାନେ ଚଳୁଛନ୍ତି ଏବଂ ଯୁକ୍ତି ଉପସ୍ଥାପନ କରୁଛନ୍ତି । ସେପଟକୁ ଡିଗ୍ରୀ ଆଦେଶ ହେଉଛି, ମୋହରିରମାନଙ୍କର ମକଦ୍ଦମାମାନଙ୍କଠାରୁ ନାନା ଆଳରେ ଅର୍ଥ ଆଦାୟ ଓ ଜୁଲମ ବି କରୁଛି କମ୍ ନୁହେଁ ।

ଜୁଡ଼ିସିଆଲ କୋର୍ଟରେ ହେଉ ବା ଏକଜିକ୍ୟୁଟିଭ କୋର୍ଟରେ ହେଉ ପେଷ୍କାର ମାନଙ୍କର ହାତ ଚକ୍‌କଣ ନ ହେଲେ କଥାସରେନା । ଦଶ ବାରଥର ଦୌଡ଼ାଦୌଡ଼ି କରି ସାର୍ଟି-ଫାଏଡ ନକଲଟିଏ ପାଇବା କଷ୍ଟକର ବ୍ୟାପାର, ଏକଜିକ୍ୟୁଟିଭ କୋର୍ଟମାନଙ୍କରେ ବିଶେଷ କରି ଉପରସ୍ତର ଯଥା କଲେକ୍ଟରଙ୍କ ପଦବୀରେ ପହଞ୍ଚିବା ପର୍ଯ୍ୟନ୍ତ ଓଡ଼ିଶା କ୍ୟାଡରର ପ୍ରଶାସନିକ ଅଫିସରମାନେ ପଦାଧିକାରୀ ରହନ୍ତି । ସେମାନଙ୍କ ଉପରେ ରାଜନୈତିକ ପ୍ରଭାବ ବହୁତ ନଚେତ ବଦଳିର ଭୟ ଥାଏ, ଫଳରେ ଉପଯୁକ୍ତ ନ୍ୟାୟ ପ୍ରଦାନ ବାଧାପ୍ରାପ୍ତ ହୁଏ । ତାରିଖ (ମକଦମାଗୁଡ଼ିକର) କରିବା ପାଇଁ ଏକ ନିର୍ଦ୍ଦିଷ୍ଟ ପେଷ୍କାର ପାଉଣା ଅଛି । ସେଥିରୁ କମ ହେଲେ ବିଚରା ମହକିଲ ମଲା, ମିଥ୍ୟା ସାକ୍ଷୀମାନେ କ୍ରିମିନାଲ କୋର୍ଟ ପାଇଁ ଧରିବନ୍ଧା ଥାଆନ୍ତି । ଏମାନେ ବହୁତ ମକଦମାରେ **Professional** ସାକ୍ଷୀରୂପେ କାର୍ଯ୍ୟ କରନ୍ତି । ଏମାନଙ୍କ ଭାଉ ବି କମ୍ ନୁହେଁ ।

ବର୍ତ୍ତମାନ ଖୋଦ କଟକ ସହରରେ ମଦର ବହୁଳ ପ୍ରଚାର ଯେପରି ହେଲାଣି ସେହିପରି ମଦଦୋକାନୀଙ୍କ ବୋକରିବୁଢ଼ା ଭାବେ ଏକସାଇଜ ଅଫିସରମାନେ କାର୍ଯ୍ୟ କଲେଣି ନଚେତ ରାଜନୈତିକ ଚାପରେ ଏମାନଙ୍କୁ କୋରାପୁଟ ଅଥବା କଳାହାଣ୍ଡି ବଦଳି ଆଦେଶ, ଏତେଦୂର ଯାଇ ପରିବାର ନେଇ ହଇରାଣ ହରକତ ହେବା ଅପେକ୍ଷା ସବୁ ଜାଣି ଆଖି ବୁଜିଦେବା ଭଲ । ଖାଦ୍ୟ ଅପମିଶ୍ରଣର ଅବସ୍ଥା ସେଇଆ, ଏହା ବ୍ୟତିରେକେ ବିକ୍ରୀକର ଟ୍ରିବ୍ୟୁନାଲ, ଆୟକର ଟ୍ରିବ୍ୟୁନାଲ, ଦୁର୍ଘଟଣା ଟ୍ରିବ୍ୟୁନାଲ ମାନ ମଧ୍ୟ କଟକରେ ଅବସ୍ଥାପିତ, 'ରାମେ ରାମେ, ଚୋର ଅପେ ତ ମୋର ଅପେ' ନୀତିରେ ଆୟକର, ବିକ୍ରୀକର ଓ ଦୁର୍ଘଟଣା କ୍ଷତିପୂରଣ ମାମଲା ରାୟ ପ୍ରକାଶ ପାଉଛି । କଟକ ସହରରେ ସାଧାରଣତଃ ହାଇକୋର୍ଟ ବାର ଆସୋସିଏସନ, ସିଭିଲ ବାର ଆସୋସିଏସନ, କ୍ରିମିନାଲ ବାର ଆସୋସିଏସନ ଏବଂ ଟ୍ୟାକ୍ସ ବାର ଆସୋସିଏସନ ମାନ ଅଛି । ଓକିଲମାନେ ନିଜକୁ ଯେକୌଣସି ଥିରେ ପ୍ରତିଷ୍ଠିତ କରାଇ ଥାଆନ୍ତି ଅଥବା ଏକାଧିକ ବାର ଆସୋସିଏସନର ମେମ୍ବର ହିସାବରେ ଉପସ୍ଥାପିତ କରାନ୍ତି । ଏବେ ଅବଶ୍ୟ ଗରିବଙ୍କୁ ମାଗଣା ସାହାଯ୍ୟ ଦେବାପାଇଁ ସ୍ୱତନ୍ତ୍ର ଓକିଲ ନିଯୁକ୍ତ ହେଉଛନ୍ତି, ଖାଉଟି ସୁରକ୍ଷା ଆଇନ ଅନୁସାରେ ଖାଉଟି ସୁରକ୍ଷା ଅଦାଲତମାନ ପ୍ରତିଷ୍ଠା ହେଲାଣି, ମକଦମାଗୁଡ଼ିକର ତୁରନ୍ତ ସମାଧାନ ପାଇଁ ଏବଂ ଏକାଦିନେ ବହୁତ ମକଦମା ବିଚାର ପାଇଁ ଲୋକ ଅଦାଲତମାନ ପ୍ରତିଷ୍ଠା ହେଲାଣି ।

ଯାହାହେଲେ ବି, "ଖଜୁରୀ ଗଛର କି ଗୁଣ ଗାଇବି, ତାହା ମୂଳରୁ ଯାହାତ ଯାହାତ" ଭଳି ମହକିଲଙ୍କର ଭାଗ୍ୟ ଯେଉଁ ତିମିରେ ସେହି ତିମିରେ, ଫଳରେ ନ୍ୟାୟ ପାଇବା ଏବଂ ସେହି ନ୍ୟାୟ ପୁଣି ଶୀଘ୍ର ପାଇବା ଏବଂ ଠିକ୍ ନ୍ୟାୟ ପାଇବା ବର୍ତ୍ତମାନ କାଠିକର ପାଠ ହେଲାଣି । ଚୋରି, ଡକାୟତି, ଧର୍ଷଣ, ନରହତ୍ୟା ବହୁଳ ପରିମାଣରେ ବଢ଼ିଥିଲେ ମଧ୍ୟ ସରକାରୀ ଓକିଲଙ୍କର ଉପଯୁକ୍ତ ତଦାରଖ ଏବଂ ଅନଭିଜ୍ଞମାନଙ୍କୁ ଏ ପଦପଦବୀରେ ରାଜନୈତିକ ପ୍ରଭାବରେ ନିଯୁକ୍ତ ଦିଆଯାଉଥିବାରୁ ଓ ଉପଯୁକ୍ତ

ସାକ୍ଷ୍ୟ ପ୍ରମାଣ ଅଭାବରୁ ବା ଭୟରେ ସାକ୍ଷ୍ୟ ନଦେବା ହେତୁ ବହୁ ଅସାମାଜିକ ବ୍ୟକ୍ତି ଅଦାଲତରେ ଖଲାସ ହୋଇ ଯାଉଛନ୍ତି ଫଳରେ ବହୁଳ ଭାବେ ଅସାମାଜିକତା କଟକ ସହରରେ ଭରପୂର ହୋଇଗଲାଣି ଏବଂ ଉପଯୁକ୍ତ ନ୍ୟାୟ ନ ପାଇବା ଭୟରେ ନଗର-ଲୋକେ କଚେରୀର ଦ୍ୱାରସ୍ଥ ହେବାକୁ ଭୟ କଲେଣି । ମକଦମା ବା ମାମଲା ହେଉଛି 'ମା—ମଲା' ସଦୃଶ, ତେଣୁ ମାଆ ମଲେ ଯେତିକ କଷ୍ଟ ଯନ୍ତ୍ରଣା ଭୋଗ କରିବା ପାଇଁ ପଡ଼େ, ଯେତିକ ଖୋସାମତ କରିବା ପାଇଁ ପଡ଼େ ଗୋଟିଏ ମକଦମା ଆରମ୍ଭକଲେ ସେତିକ ଦୁଃଖ, ଯନ୍ତ୍ରଣା, କଷ୍ଟ ଭୋଗ କରିବାକୁ ପଡ଼ୁଛି; ତେଣୁ ମାଡ଼ଖାଇ ଘରେ ବସିବା ଭିତରେ ବାଟର ଭଦ୍ରଲୋକଟି ଉପରେ ଅତ୍ୟାଚାର ହେଲେ ମଧ୍ୟ ସେମାନେ କୋର୍ଟର ଦ୍ୱାରସ୍ଥ ନହୋଇ ଘରେ ବସିରହିବାକୁ ଶ୍ରେୟସ୍କର ମଣୁଛନ୍ତି, ଧର୍ଷଣ ମାମଲା ମାନଙ୍କରେ ଦେଖିଥିବା ସାକ୍ଷୀମାନଙ୍କୁ ନାନାଭାବେ ଭୟଭୀତ କରାଯାଉଛି, ଧର୍ଷିତା ହୋଇଥିବା ନାରୀଟି ତାର 'ଇଜ୍ଜତ ଗଲା ପୁଣି ହଟହଟା ହେବ କାହିଁକି' ଭିତରେ ପରିବାରବର୍ଗ ଏହା ଜାଣିଲେ ମଧ୍ୟ ନିଜର ଇଜ୍ଜତ, ସମ୍ମାନ ଭୟରେ କଚେରୀକୁ ଯାଉ ନାହାନ୍ତି ।

ସେମାନଙ୍କ ପାଇଁ ଆଇନରେ ସୁରକ୍ଷା ନାହିଁ, ରକ୍ଷକ ଭକ୍ଷକ ସାଜୁଛି, ଯେଉଁମାନେ ଆଇନ ଶୃଙ୍ଖଳା ଦାୟିତ୍ୱରେ ଅଛନ୍ତି ସେମାନେ ଅର୍ଥଲୋଭରେ ହେଉ ବା ରାଜନୈତିକ ପ୍ରଭାବରେ ହେଉ ପାଟିଚୁପ୍, ହାତଚୁପ୍ କରି ସବୁ ଦେଖି କିଛି ନ ଦେଖିବାର, ସବୁ ଜାଣି କିଛି ନ ଜାଣିବାର ଛଳନା କରୁଛନ୍ତି । ରାଜସ୍ୱ ପର୍ଷଦ ଅଧୀନରେ ଆଇ. ଏ. ଏସ ଏବଂ ଓ. ଏ ଏସ୍. ଅଫିସରଙ୍କ ସଂଖ୍ୟା କୌଣସି ଗୁଣରେ କମ ନୁହେଁ ହେଲେ ସାଧାରଣ ଲୋକ ନ୍ୟାୟ ପାଉଛି କେଉଁଠି ? ଏ ନାଲିଫିତା କାରବାରରୁ ମୁକ୍ତି ନ ମିଳିଲେ ସମାଜର ଅଧୋପତନ ନିଶ୍ଚିତ ଏଥିରେ ସନ୍ଦେହ ନାହିଁ । ବର୍ତ୍ତମାନ ଟିକସ ଫାଙ୍କିଠାରୁ ଆରମ୍ଭ କରି ଫୌଜଦାରୀ ମାମଲା ସଂଖ୍ୟା କଟକର ଭିନ୍ନ ଭିନ୍ନ କଚେରୀ ଅଧୀନରେ ବଢ଼ି ଚାଲିଥିଲେ ମଧ୍ୟ ହାକିମ (ଜୁଡ଼ିସିଆଲ୍)ଙ୍କ କମ୍ ଥିବା ହେତୁ ଠିକ୍ ସମୟରେ ଓ ଅଳ୍ପଦିନ ଭିତରେ ମକଦମା ବିଚାର ହୋଇ ପାରୁନାହିଁ । ଫଳରେ **Justice delayed means Justice denied** ବା ନ୍ୟାୟ ବିଳମ୍ବିତ ଅର୍ଥ ନ୍ୟାୟ ନଦେବା ସଙ୍ଗେ ସମାନ ହୋଇଗଲାଣି । କଟକ କଚେରୀ ଓ ରାଜସ୍ୱ ପର୍ଷଦ ଅବସ୍ଥା ଯେଉଁ ତିମିରେକୁ ସେହି ତିମିରେ ।



# କଟକର ଶିକ୍ଷାନୁଷ୍ଠାନ

**ଶ୍ରୀ ନିର୍ମଳଚନ୍ଦ୍ର ପତି**

ଓଡ଼ିଶାର ପ୍ରାଣକେନ୍ଦ୍ର କଟକ । ଏହାର ଏକ ପ୍ରାଚୀନ ଐତିହ୍ୟ ଓ ପରମ୍ପରା ରହିଛି । ଏହା ଓଡ଼ିଶାର ଏକ ପ୍ରାଚୀନ ଏବଂ ଜନବହୁଳ ସହର । ଏହା ପୂର୍ବେ ଓଡ଼ିଶାର ରାଜଧାନୀ ଥିଲା । ବ୍ରିଟିଶ ରାଜତ୍ୱ ସମୟରେ କଟକ ମଧ୍ୟ ଓଡ଼ିଶାର ରାଜଧାନୀ ଥିଲା ।

ଇଂରେଜମାନଙ୍କ ଆସିବାର ଅବ୍ୟବହିତ ପୂର୍ବରୁ ଓଡ଼ିଶାରେ କୌଣସି ସ୍କୁଲ କିମ୍ବା କଲେଜ ନଥିଲା । ସେହି ସମୟରେ କେତେଜଣ ସଂସ୍କୃତ ପଣ୍ଡିତ ଗୁରୁକୁଳାଶ୍ରମରେ ଛାତ୍ରମାନଙ୍କୁ ଶିକ୍ଷା ପ୍ରଦାନ କରୁଥିଲେ । ଏହି ସମୟର ଶାସକ, ଜମିଦାର ଏବଂ ସମ୍ଭ୍ରାନ୍ତ ଶ୍ରେଣୀର ବ୍ୟକ୍ତିମାନେ ସଂସ୍କୃତ ଭାଷାର ପୃଷ୍ଠପୋଷକ ଥିଲେ । ସେ ସମୟରେ ସାମୂହିକ ଶିକ୍ଷା ପରିବର୍ତ୍ତେ କେତେଜଣ ଧନୀ ବା ସମ୍ଭ୍ରାନ୍ତ ଶ୍ରେଣୀର ବ୍ୟକ୍ତି ସେମାନଙ୍କ ପିଲାମାନଙ୍କୁ ଘରେ ସଂସ୍କୃତ ପଣ୍ଡିତମାନଙ୍କ ଦ୍ୱାରା ଶିକ୍ଷା ଦେବାର ବ୍ୟବସ୍ଥା କରୁଥିଲେ । ସମଗ୍ର ରାଜ୍ୟରେ ଯେଉଁ ପ୍ରକାର ଢାଞ୍ଚାରେ ଶିକ୍ଷା ପ୍ରଚଳିତ ଥିଲା । କଟକରେ ମଧ୍ୟ ସେହି ପ୍ରଣାଳୀରେ ଶିକ୍ଷା ପ୍ରଚଳିତ ଥିଲା । ଓଡ଼ିଶାର ଗାଁ, ଗହଳି ସହିତ ସହରର ଗଳି, ବସ୍ତି ଓ ସାହିମାନଙ୍କରେ ମାଟିବଂଶ ଅବଧାନମାନଙ୍କ ଦ୍ୱାରା ଗତାନୁଗତିକ ଧାରାରେ ପିଲାମାନଙ୍କୁ ଶିକ୍ଷା ପ୍ରଦାନ କରାଯାଉଥିଲା । ସେ ସମୟର ଶିକ୍ଷା କହିଲେ ପଣିକିଆ, ମିଶାଣ, ଫେଡ଼ାଣ, ଗୁଣନ ଓ ହରଣକୁ ବୁଝାଉଥିଲା । ସେ ସମୟର ପିଲାମାନେ ଲେଖଣୀ ସାହାଯ୍ୟରେ ତାଳପତ୍ରରେ ଲେଖୁଥିଲେ । ସହରର ପ୍ରାଥମିକ ଶିକ୍ଷା କହିଲେ ଏହାକୁ ବୁଝାଉଥିଲା । ସେ ସମୟରେ କୌଣସି ସ୍ୱୀକୃତିପ୍ରାପ୍ତ ପ୍ରାଥମିକ ବିଦ୍ୟାଳୟ ନଥିଲା ।

ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ଓଡ଼ିଶାରେ ଶାସନ କରୁଥିବା ମୋଗଲ ଓ ମରହଟ୍ଟା ଶାସକମାନେ ଶିକ୍ଷା ପ୍ରତି ଦୃଷ୍ଟି ନଦେଇ, ଓଡ଼ିଶାରୁ ଆଦାୟ ହେଉଥିବା ରାଜସ୍ୱକୁ ସେମାନେ ସେମାନଙ୍କର ପ୍ରତିରକ୍ଷା ବାବଦରେ ବ୍ୟୟ କରୁଥିଲେ । ସେତେବେଳେ କେତେକ ମୁଷ୍ଟିମେୟ ସମ୍ଭ୍ରାନ୍ତ ବ୍ୟକ୍ତି ଅଣଆନୁଷ୍ଠାନିକ ଶିକ୍ଷା ଉପରେ ଗୁରୁତ୍ୱ ଦେଉଥିଲେ । ସେତେବେଳର ଲୋକମାନେ ଶିକ୍ଷାପ୍ରତି ସଚେତନ ନଥିଲେ । ଓଡ଼ିଶା ଇତିହାସ ପ୍ରଣେତା ହଣ୍ଟର ସାହେବ ସମସାମୟିକ ଶିକ୍ଷା ସମ୍ପର୍କରେ ମତ ଦେଇ ତାଙ୍କ

ପୁସ୍ତକରେ ଲେଖିଛନ୍ତି ସେ ସମୟର ଶିକ୍ଷା କହିଲେ କେବଳ ଗୁରୁଶାଳୀକୁ ବୁଝାଉଥିଲା । ଯେଉଁଠାରେ ସଂସ୍କୃତ ପଣ୍ଡିତମାନେ ଛାତ୍ରମାନଙ୍କୁ ଶିକ୍ଷା ଦେଉଥିଲେ । ହଣ୍ଟର ସାହେବ କେବଳ ଜଣେ ଐତିହାସିକ ନଥିଲେ, ସେ ମଧ୍ୟ ଥିଲେ ଜଣେ ଦକ୍ଷ ସ୍କୁଲ ପରିଦର୍ଶକ । ଓଡ଼ିଶାରେ ଶିକ୍ଷାର ଉନ୍ନତି ପାଇଁ ସେ ବହୁଶ୍ରମ ସ୍ୱୀକାର କରିଥିଲେ । ସେ ସମୟରେ ଆନୁଷ୍ଠାନିକ ଶିକ୍ଷା କିଛି ନଥିଲା ।

## ଇଂରେଜ ଶାସନ ସମୟରେ ଓଡ଼ିଶାରେ ଶିକ୍ଷାର ବିକାଶ :

୧୮୦୩ ମସିହାରେ ଓଡ଼ିଶା ଇଂରେଜ ଶାସନର ବଶବର୍ତ୍ତୀ ହୋଇଥିଲା । ଇଂରେଜମାନେ ଓଡ଼ିଶାକୁ ଆସିବା ଫଳରେ ସ୍ଥାନୀୟ ପାଇକ, ଜମିଦାର ଓ କେତେକ ଅନୁନ୍ନତ ସମ୍ପ୍ରଦାୟର ଲୋକମାନେ ଏହି ସରକାରଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ମୁଷ୍ଟିମେୟ ବ୍ୟକ୍ତିଙ୍କ ବ୍ୟତିରେକେ ଅନ୍ୟ ସମସ୍ତ ଲୋକେ ଇଂରେଜମାନଙ୍କ ଓଡ଼ିଶା ଅଧିକାରକୁ ପସନ୍ଦ କରୁନଥିଲେ । ସରକାରଙ୍କ ବିରୋଧରେ ଉଠିଥିବା ଜନଅସନ୍ତୋଷକୁ ଇଂରେଜମାନେ କୌଶଳର ସହିତ ଦମନ କରିଥିଲେ । ସେ ସମୟରେ ଭାରତର କେତେକ ସ୍ଥାନକୁ ଛାଡ଼ିଦେଲେ, ସମଗ୍ର ଭାରତବର୍ଷ ଇଂରେଜମାନଙ୍କ ଅଧୀନରେ ଥିଲା । ସେ ସମୟରେ ଇଂରେଜ ସରକାର ଇଂଲଣ୍ଡରୁ ଲୋକମାନଙ୍କୁ ଆଣି ଶାସନ ଚଳାଇବା ବହୁ ବ୍ୟୟବହୁଳ ହେଲା । ତେଣୁ ଇଂରେଜମାନେ ଏହି ସମସ୍ୟାର ସମାଧାନ କରିବା ପାଇଁ କେତେକ ଭାରତୀୟଙ୍କୁ ପାଶ୍ଚାତ୍ୟ ଶିକ୍ଷା ପ୍ରତି ଅନୁପ୍ରାଣିତ କରାଇଲେ । ଲର୍ଡ଼ ଉଇଲିୟମ ବେଣ୍ଟିଙ୍କଙ୍କ ସମୟରେ ଇଂରେଜୀ ଶିକ୍ଷା ଭାରତରେ ବିଶେଷ ଭାବରେ ପ୍ରସାର ଲାଭ କଲା । ସେ ସମୟରେ ସ୍କୁଲମାନଙ୍କରେ ଇଂରାଜୀ ଭାଷାକୁ ପାଠପଢ଼ାର ମାଧ୍ୟମରୂପେ ଗ୍ରହଣ କରାଗଲା । ଏହାର ମୂଳରେ ସେମାନଙ୍କର ଏହି ଲକ୍ଷ୍ୟ ଥିଲା ଯେ ଯେଉଁ ଭାରତୀୟମାନେ ଇଂରାଜୀ ଶିକ୍ଷା ଲାଭ କରିବେ, ସେମାନେ ଇଂରେଜ ସରକାରଙ୍କ ଅଧୀନରେ ଚାକିରୀ କରିବେ, ସରକାରଙ୍କୁ ଶାସନ କାର୍ଯ୍ୟରେ ସାହାଯ୍ୟ କରିବେ ଓ ଇଂରେଜ ଶାସନ ପ୍ରତି ଅନୁଗତ ପ୍ରକାଶ କରିବେ । ଏଥିଲାଗି ଇଂରେଜ ଶାସକମାନେ ଇଂରାଜୀ ବିଦ୍ୟାଳୟର ସଂଖ୍ୟା ବୃଦ୍ଧି ଘଟାଇଲେ ।

ଛାତ୍ରମାନଙ୍କୁ ଶିକ୍ଷା ପ୍ରତି ଆକୃଷ୍ଟ କରାଇବା ପାଇଁ ପୁରୀଠାରେ ଏକ ଇଂରାଜୀ ବିଦ୍ୟାଳୟ ଓ ସଂସ୍କୃତ ବିଦ୍ୟାଳୟ ସ୍ଥାପନ କରାଗଲା । ଛାତ୍ରମାନେ ଏହି ଶିକ୍ଷା ପ୍ରତି ଅଧିକ ଆଗ୍ରହ ପ୍ରକାଶ କଲେ । ଫଳରେ ପୁରୀଠାରେ ସ୍ଥାପନ କରାଯାଇଥିବା ଇଂରାଜୀ ବିଦ୍ୟାଳୟ ଯଥେଷ୍ଟ ନହେବାରୁ ସରକାର ସବୁ ରାଜ୍ୟର ସଦରମହକୁମାଠାରେ ଇଂରାଜୀ ବିଦ୍ୟାଳୟ ଖୋଲିବା ପାଇଁ ସ୍ଥିର କଲେ । ଏହି ସମୟରେ କଟକ ସମେତ ଓ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନମାନଙ୍କରେ ଅନେକ ଇଂରାଜୀ ବିଦ୍ୟାଳୟମାନ ଖୋଲାଗଲା ।

୧୮୨୨ ମସିହା ଏପ୍ରିଲ ୨୨ ତାରିଖରେ ଉଇଲିୟମ ବାନପଷ୍ଟ (William Banptous) ଙ୍କ ପ୍ରଚେଷ୍ଟାରେ କଟକଠାରେ ପ୍ରଥମେ ଗୋଟିଏ ସ୍କୁଲ ଖୋଲିଲା । ଏହି ସ୍କୁଲର ନାମ କଟକ ସ୍କୁଲ ରଖାଗଲା । କିନ୍ତୁ ଏହା ମିଶନାରୀମାନଙ୍କ ଦ୍ୱାରା ପରିଚାଳିତ ହେଲା । ୧୮୪୧ ମସିହାରେ ଇଂରେଜ ସରକାର ଏହି ସ୍କୁଲକୁ ନିଜ ହାତକୁ ନେଲେ । ଏହି ସ୍କୁଲରେ ପ୍ରାଥମିକ ଶିକ୍ଷାଠାରୁ ମଧ୍ୟ ଇଂରେଜୀ ଶିକ୍ଷା ପର୍ଯ୍ୟନ୍ତ ଶିକ୍ଷା ଦିଆଗଲା । ସେ ସମୟରେ କଟକଠାରେ ଥିବା ଏହି ମଧ୍ୟଇଂରାଜୀ ସ୍କୁଲ ସେ କ ସମଗ୍ର ଓଡ଼ିଶାରେ ଏକମାତ୍ର ସ୍କୁଲ ଥିଲା । ପରବର୍ତ୍ତୀ ସମୟରେ ଅର୍ଥାତ୍ ୧୮୫୮ ମସିହାରେ ସରକାରଙ୍କ ନିର୍ଦ୍ଦେଶକ୍ରମେ ଏହି ସ୍କୁଲରେ ହାଇସ୍କୁଲ ଶ୍ରେଣୀ ଖୋଲାଯାଇଥିଲା । କଲିକତା ବିଶ୍ୱବିଦ୍ୟାଳୟ ସିଲାବସ୍ ଅନୁଯାୟୀ ଏହି ସ୍କୁଲରେ ପ୍ରବେଶିକା ପରୀକ୍ଷା ମଧ୍ୟ ପ୍ରଚଳନ କରାଗଲା । ଏହି ସମୟରେ ସ୍କୁଲର ନାମ କଟକ ସ୍କୁଲ ପରିବର୍ତ୍ତେ କଟକ ଜିଲ୍ଲା ସ୍କୁଲ କରାଗଲା । ଏମ୍. ଇ. ବେଲ୍ ଏହାର ପ୍ରଥମ ଶିକ୍ଷକ ରୂପେ ଦାୟିତ୍ୱ ଗ୍ରହଣ କଲେ ।

୧୮୬୬ ମସିହାରେ ଘଟିଥିବା ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ମେରୁଦଣ୍ଡକୁ ଦୋହଲାଇ ଦେଇଥିଲା । ଏହି ଦୁର୍ଭିକ୍ଷରେ ଦଶ ଲକ୍ଷ ଲୋକ ମୃତ୍ୟୁବରଣ କରିଥିଲେ । ଏହି ଦୁର୍ଭିକ୍ଷ ସମସାମୟିକ ଶିକ୍ଷା କ୍ଷେତ୍ରରେ ମଧ୍ୟ ଏକ ଅନ୍ତରାୟ ସୃଷ୍ଟି କରିଥିଲା । କଟକ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିବା ଶତକଡ଼ା ଚଉଷଠି ଭାଗ ଛାତ୍ର ଏହି ଦୁର୍ଭିକ୍ଷର ଶିକାର ହୋଇଥିଲେ । ଏହି ସମୟରେ କଟକ ଜିଲ୍ଲା ସ୍କୁଲ ବନ୍ଦ ଅବସ୍ଥାର ସମ୍ମୁଖୀନ ହୋଇଥିଲା । କେବଳ ଏତିକି ନୁହେଁ ଇଂରେଜମାନେ ରାଜତ୍ୱ କରିବାର ପଚିଶ ବର୍ଷ ମଧ୍ୟରେ ଓଡ଼ିଶାର ଗାଁଗହଳରେ ବାସ କରୁଥିବା କୌଣସି ବ୍ୟକ୍ତି ଭଲ ସରକାରୀ ଚାକିରି ଖଣ୍ଡେ ପାଇନଥିଲେ । ଏହାର ଏକମାତ୍ର କାରଣ ଶିକ୍ଷାର ଅଭାବ । ଯେଉଁ କେତେଜଣ ଉଚ୍ଚ ସରକାରୀ ଚାକିରିରେ ପ୍ରବେଶ କରିଥିଲେ, ସେମାନେ ଥିଲେ କଟକ ସହରର ଲୋକ । ସେ ସମୟରେ ଓଡ଼ିଶାର ଏକମାତ୍ର ଉନ୍ନତ ସ୍ଥାନ କହିଲେ କଟକକୁ ବୁଝାଉଥିଲା ।

ଓଡ଼ିଶାର ଶିକ୍ଷା ଇତିହାସରେ ଏକ ସ୍ମରଣୀୟ ଘଟଣା ହେଉଛି, କଟକ ଜିଲ୍ଲା ସ୍କୁଲରେ ପ୍ରଥମ କରି କଲେଜ ସ୍ଥାପନ । କଲେଜରେ ନାମ ଲେଖାଇବା ପାଇଁ ଛାତ୍ରମାନଙ୍କୁ ପ୍ରବେଶିକା ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଲା । ଏହି କଲେଜ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ କିଛି ଦିନ ରହିବା ପରେ, ପୁଣି ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ଆଉ କିଛି ଦିନ ରହି ଶେଷରେ ଅର୍ଥାତ୍ ୧୯୪୪ ମସିହାରେ ଯେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା, ତାହା ଏହି ବିଶ୍ୱବିଦ୍ୟାଳୟ ଅଧୀନକୁ ଆସିଲା ।

୧୯୬୯ ମସିହାରେ କଟକ ଜିଲ୍ଲା ସ୍କୁଲକୁ କଟକ କଲଜଏଟ୍ ସ୍କୁଲରେ ପରିଣତ କରାଗଲା । ଏଠାରେ ଖୋଲିଥିବା କଲେଜରେ ପ୍ରଥମେ କଳାବିଭାଗରେ ଉପସ୍ନାତକ

**(Pre Degree)** ଶ୍ରେଣୀ ଖୋଲିଲା । ୧୮୭୫ ମସିହାରେ ରେଭେନ୍‌ସା ସାହେବ ଏକ ପ୍ରସ୍ତାବ ଦେଲେ ହାଇସ୍କୁଲଠାରୁ କଲେଜକୁ ସ୍ୱତନ୍ତ୍ର କରାଯିବ ଏବଂ ଏହି କଲେଜରେ ଡିଗ୍ରୀ ଶ୍ରେଣୀ ପର୍ଯ୍ୟନ୍ତ ଖୋଲାଯିବ; ଯେଉଁଠାରେ ଛାତ୍ରମାନେ ବି. ଏ. ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ପାଇପାରିବେ । ସେହିବର୍ଷ କଲେଜର ପରିଚାଳନା ପାଇଁ ସରକାରଙ୍କ ତରଫରୁ ତିରିଶି ହଜାର ଟଙ୍କା ଓ ଲୋକମାନଙ୍କ ତରଫରୁ ତିରିଶି ହଜାର ଟଙ୍କା ସାହାଯ୍ୟ ଦିଆଗଲା । କଲେଜର ସ୍ଥାୟୀ ଗୃହ ନିର୍ମାଣ ପାଇଁ ମୟୂରଭଞ୍ଜର ରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ ସେହିବର୍ଷ କଲେଜକୁ କୋଡ଼ିଏ ହଜାର ଟଙ୍କା ସାହାଯ୍ୟ ପ୍ରଦାନ କଲେ । ମହାରାଜାଙ୍କ ଅନୁରୋଧକ୍ରମେ କଲେଜର ନାମକୁ ରେଭେନ୍‌ସା କଲେଜ ନାମରେ ନାମିତ କରାଗଲା । ଆହୁରି ମଧ୍ୟ ୧୮୭୫ ମସିହାରେ କଟକ ଜିଲ୍ଲା ସ୍କୁଲର ନାମକୁ ପରିବର୍ତ୍ତନ କରାଯାଇ ରେଭେନ୍‌ସା କଲିଜିଏଟ୍ ସ୍କୁଲ ନାମରେ ନାମିତ କରାଗଲା ।

୧୮୩୫ ମସିହାରେ ଲର୍ଡ଼ ଉଇଲିୟମ ବେଣ୍ଟିକଙ୍କ ଦ୍ୱାରା ଆଧୁନିକ ଶିକ୍ଷା ପ୍ରଣାଳୀର ପ୍ରଚଳନ କରାଗଲା । ଏହା ପ୍ରଚଳନ କରାଯିବା ଦ୍ୱାରା କଲିକତା, ବମ୍ବେ ଓ ମାନ୍ଦ୍ରାଜ ଭଳି ସହରମାନଙ୍କରେ ବାସ କରୁଥିବା ବ୍ୟକ୍ତିମାନେ ଶିକ୍ଷାର ମହତ୍ତ୍ୱ ବୁଝିବାକୁ ଚେଷ୍ଟା କଲେ । ଏହି ସମୟରେ ଶିକ୍ଷାର ଉନ୍ନତି ପାଇଁ ସର୍ବସାଧାରଣଙ୍କ ସମ୍ପତ୍ତିକୁ ସରକାରଙ୍କୁ ହସ୍ତାନ୍ତର କରାଗଲା । ଏହାଛଡ଼ା ଶିକ୍ଷାର ଦ୍ରୁତ ପ୍ରସାର ପାଇଁ ଘରୋଇ ଅନୁଷ୍ଠାନମାନଙ୍କୁ ସରକାରଙ୍କ ତରଫରୁ ଅନୁଦାନ ଦିଆଗଲା । ଏହି ସମୟରେ ଦକ୍ଷିଣ ପଶ୍ଚିମ ବଙ୍ଗଳାର ଶିକ୍ଷା ବିଭାଗର ଦାୟିତ୍ୱରେ ଥିବା ସ୍କୁଲ ଇନସ୍‌ପେକ୍ଟର ସରକାରଙ୍କୁ ଏକ ପ୍ରାଥମିକ ରିପୋର୍ଟ ପ୍ରଦାନ କଲେ । ଯେଉଁ ରିପୋର୍ଟରେ ଲେଖାଥିଲା, ଶିକ୍ଷାକ୍ଷେତ୍ରରେ ବଙ୍ଗଳାଠାରୁ ଓଡ଼ିଶା ବହୁତ ପଛରେ । ବଙ୍ଗଳା ଓ ବିହାରରେ ଇଂରେଜି ଶିକ୍ଷାର ବିଶେଷ ପ୍ରସାର ଘଟିଥିଲେ ମଧ୍ୟ ଓଡ଼ିଶାରେ ଆଶାନୁରୂପ ବିକାଶ ଘଟିପାରି ନାହିଁ ।

ଏହି ରିପୋର୍ଟ ପାଇବା ପରେ ସରକାର କଟକ ସମେତ ଓଡ଼ିଶାର ବିଭିନ୍ନ ସ୍ଥାନରେ କେତେକ ସଂସ୍କୃତ ବିଦ୍ୟାଳୟ ଓ କେତେକ ଇଂରେଜି ବିଦ୍ୟାଳୟମାନ ଖୋଲିଲେ । ଲୋକମାନେ ସଂସ୍କୃତ ବିଦ୍ୟାଳୟ ପରିବର୍ତ୍ତେ ଇଂରେଜୀ ବିଦ୍ୟାଳୟକୁ ବିଶେଷ ସ୍ୱାଗତ ଜଣାଇଲେ । ଯାହା ଫଳରେ ଇଂରେଜି ବିଦ୍ୟାଳୟମାନଙ୍କରେ ଓଡ଼ିଆ ଛାତ୍ରଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାରେ ଲାଗିଲା । ସରକାରଙ୍କ ନିର୍ଦ୍ଦେଶକ୍ରମେ କେତେକ ମଧ୍ୟଇଂରାଜୀ ବିଦ୍ୟାଳୟକୁ ହାଇସ୍କୁଲରେ ପରିଣତ କରାଗଲା । ଏହି ସମୟରେ କଟକର କେତେଜଣ ଆଗ୍ରହୀ ବ୍ୟକ୍ତିଙ୍କ ଦ୍ୱାରା କଟକ ଏକାଡ଼େମୀ ଓ ଭିକ୍ଟୋରିଆ ସ୍କୁଲ ନାମରେ ଦୁଇଟି ଅନୁଷ୍ଠାନ ଖୋଲାଗଲା ।

୧୮୭୦ ମସିହାରେ କଟକ ଜିଲ୍ଲା ସ୍କୁଲରୁ ପ୍ୟାରୀମୋହନ ଆଚାର୍ଯ୍ୟ କୃତକାର୍ଯ୍ୟ ହୋଇ, କଲେଜର କଳା ଶ୍ରେଣୀରେ ନାମ ଲେଖାଇଲେ । ସେହି ସମୟରେ କଟକର

ରାସ୍ତାଘାଟର ବ୍ୟବସ୍ଥା ଆଦୌ ସୁବିଧାଜନକ ନଥିଲା କହିଲେ ଚଳେ । କଟକ ପୌର-ସଂସ୍ଥାର ଅପାରଗତା ଯୋଗୁ ରାସ୍ତାଘାଟର ଅବସ୍ଥା ଏପରି ବୋଲି ପ୍ୟାରୀମୋହନ ଆଚାର୍ଯ୍ୟ ଜାଣିବାକୁ ପାଇଲେ ଏବଂ କଟକ ମ୍ୟୁନିସିପାଲିଟି ବିରୋଧରେ ତାଙ୍କ ଦ୍ୱାରା ସମ୍ପାଦିତ 'ଉତ୍କଳ ପୁତ୍ର' ପତ୍ରିକାରେ ସେ ସରକାରଙ୍କୁ ସମାଲୋଚନା କଲେ । ପ୍ୟାରୀମୋହନ ଆଚାର୍ଯ୍ୟ ଜଣେ କଲେଜର ଛାତ୍ର ହିସାବରେ ଇଂରେଜ ସରକାରଙ୍କୁ ସମାଲୋଚନା କରିଥିବାରୁ ତାଙ୍କୁ କଲେଜରୁ ବାହାର କରି ଦିଆଗଲା । ଏହିଠାରୁ ପ୍ୟାରୀମୋହନ ଆଚାର୍ଯ୍ୟଙ୍କର ପାଠପଢ଼ାରେ ଡୋରିବନ୍ଧା ହୋଇଥିଲା । କିନ୍ତୁ ପ୍ୟାରୀ-ମୋହନଙ୍କର ପ୍ରଥମ ଉଦ୍ଦେଶ୍ୟ ହେଲା ସେ କିପରି ନିଜେ ଗୋଟିଏ ସ୍କୁଲ ଖୋଲିବେ ଏବଂ ଛାତ୍ରମାନଙ୍କୁ ଶିକ୍ଷା ଦେବେ । ତେଣୁ ସେ ବାରଜଣ ଛାତ୍ରଙ୍କୁ ନେଇ ବକ୍ସିବଜାରସ୍ଥ କୃପାସିନ୍ଧୁ ସାହୁଙ୍କ ଘର ବାରଣ୍ଡାରେ ଗୋଟିଏ ପ୍ରାଥମିକ ସ୍କୁଲ ଖୋଲିଲେ ।

୧୮୭୯ ମସିହାରେ ଏହିଠାରେ ପୁଣି ହାଇସ୍କୁଲ ଖୋଲାଗଲା । ଏହି ସମୟରେ ମୃତ୍ୟୁଞ୍ଜୟ ରଥ ଓ ତାଙ୍କର ଅନ୍ୟ କେତେଜଣ ସହଯୋଗୀଙ୍କ ପ୍ରଚେଷ୍ଟାରେ ଦରଘା-ବଜାରଠାରେ ହାଇସ୍କୁଲ ପାଇଁ ସ୍ଥାୟୀ ଜମି ମିଳିବାରୁ ବକ୍ସିବଜାରରୁ ସ୍କୁଲକୁ ଉଠାଇ ନିଆଗଲା ଓ ସେଠାରେ ସ୍କୁଲ ଚାଲିଲା । କିନ୍ତୁ ସରକାରଙ୍କଠାରୁ ଏହି ସ୍କୁଲ କୌଣସି ଆର୍ଥିକ ଅନୁଦାନ ଗ୍ରହଣ କରିବ ନାହିଁ ବୋଲି ପ୍ୟାରୀମୋହନ ଆଚାର୍ଯ୍ୟ ଇଂରେଜ ସରକାରଙ୍କୁ ଜଣାଇ ଦେଲେ । ପ୍ୟାରୀମୋହନ ଆଚାର୍ଯ୍ୟ ଓ ତାଙ୍କର କେତେଜଣ ସହଯୋଗୀ ବନ୍ଧୁଙ୍କ ପ୍ରଚେଷ୍ଟାରେ ଏହି ଅନୁଷ୍ଠାନ ଚାଲିଲା । ପରବର୍ତ୍ତୀ ସମୟରେ ଏହି ସ୍କୁଲର ନାମ ପ୍ୟାରୀମୋହନ ଏକାଡେମୀ ନାମରେ ନାମିତ କରାଗଲା ।

ଏହାର ପରବର୍ତ୍ତୀ ସମୟରେ ଅର୍ଥାତ୍ ୧୮୮୧ ମସିହାରେ କଟକଠାରେ ଉତ୍କଳବୀର ମଧୁସୂଦନ ରାଓଙ୍କ ପ୍ରଚେଷ୍ଟାରେ ଟାଉନ ଭିକ୍ଟୋରିଆ ସ୍କୁଲ ନାମରେ ଗୋଟିଏ ବିଦ୍ୟାଳୟ ଖୋଲାଗଲା । ଏହି ସ୍କୁଲରେ ପ୍ରାଥମିକ ଶିକ୍ଷାଠାରୁ ହାଇସ୍କୁଲ ଶିକ୍ଷା ପର୍ଯ୍ୟନ୍ତ ଶିକ୍ଷା ଦିଆଗଲା । ପ୍ୟାରୀମୋହନ ଯେପରି ସ୍କୁଲର ପରିଚାଳନା ପାଇଁ ସରକାରଙ୍କ-ଠାରୁ କୌଣସି ଅନୁଦାନ ଗ୍ରହଣ କଲେ ନାହିଁ, ମଧୁସୂଦନ ରାଓ ମଧ୍ୟ ସ୍କୁଲର ପରି-ଚାଳନା ପାଇଁ କୌଣସି ସରକାରୀ ଅନୁଦାନ ଗ୍ରହଣ କଲେନାହିଁ । ଏହି ସ୍କୁଲ ଲୋକମାନଙ୍କ ସହଯୋଗରେ ଆଗେଇ ଚାଲିଲା । ଏହି ସ୍କୁଲର ନାମ ପରବର୍ତ୍ତୀ ସମୟରେ ଭକ୍ତମଧୁ ବିଦ୍ୟାପୀଠ ନାମରେ ନାମିତ ହୋଇଅଛି ।

୧୮୬୬ ମସିହା ପରେ ସରକାରୀ ଓ ବେସରକାରୀ ପ୍ରଚେଷ୍ଟାରେ ଅନେକ ଗୁଡ଼ିଏ ସ୍କୁଲ ରାଜ୍ୟର ବିଭିନ୍ନ ସ୍ଥାନମାନଙ୍କରେ ଖୋଲାଗଲା । ସ୍କୁଲରେ ପାଠ ପଢ଼ାଇବା ପାଇଁ ତାଲିମପ୍ରାପ୍ତ (Trained) ଶିକ୍ଷକଙ୍କ ଆବଶ୍ୟକତା ପଡ଼ିଲା । ତେଣୁ ୧୮୬୯ ମସିହାରେ ଶିକ୍ଷକମାନଙ୍କୁ ତାଲିମ ଦେବା ପାଇଁ କଟକଠାରେ ଗୋଟିଏ ନରମାଲ୍ ସ୍କୁଲ ଖୋଲିଲା । ଏଥିରେ ଦୁଇଟି ବିଭାଗ ରହିଲା । ତାଲିମ୍‌ର ସମୟ ସୀମା

ଏକବର୍ଷ କରାଗଲା । ଏହି ସ୍କୁଲରୁ ଯେଉଁମାନେ ତାଲିମ ପାଇଲେ ସେମାନେ ରାଜ୍ୟର ବିଭିନ୍ନ ସ୍ଥାନରେ ଥିବା ମଧ୍ୟଇଂରାଜୀ ବିଦ୍ୟାଳୟ ଓ ହାଇସ୍କୁଲ ମାନଙ୍କରେ ନିଯୁକ୍ତି ପାଇଲେ ।

ଏହାର କିଛିବର୍ଷ ପରେ ଅର୍ଥାତ୍ ୧୮୭୫ ମସିହାରେ କଟକ ନର୍ମାଲ ସ୍କୁଲର ନାମ କଟକ ଟ୍ରେନିଂସ୍କୁଲ କରାଗଲା । ପୁଣି ଯେତେବେଳେ ୧୯୨୩ ମସିହାରେ କଟକ ଟ୍ରେନିଂ କଲେଜ ସ୍ଥାପନ କରାଗଲା, ସେତେବେଳେ କଟକ ଟ୍ରେନିଂ ସ୍କୁଲର ନାମ ପରିବର୍ତ୍ତନ କରାଯାଇ ସେକେଣ୍ଡାରୀ ଟ୍ରେନିଂ ସ୍କୁଲ ନାମରେ ନାମିତ କରାଗଲା । ଏହାପରେ ୧୯୪୮ ମସିହାରେ କଟକ ଟ୍ରେନିଂ କଲେଜର ନାମ ପରିବର୍ତ୍ତନ କରାଯାଇ ରାଧାନାଥ ଟ୍ରେନିଂ କଲେଜ କରାଗଲା । ଉତ୍କଳ ବିଶ୍ୱବିଦ୍ୟାଳୟ ସିଲାବସ ଅନୁଯାୟୀ ଡି. ଇଡ଼. ପାଠ୍ୟକ୍ରମ ପରିବର୍ତ୍ତେ ବି.ଇଡ୍ ପାଠ୍ୟକ୍ରମ ଏହି କଲେଜରେ ପ୍ରଚଳନ କରାଗଲା । ୧୯୫୭ ମସିହାରେ ଏକବର୍ଷିଆ ଏମ୍.ଇଡ୍ ପାଠ୍ୟକ୍ରମ ଏହି କଲେଜରେ ଖୋଲାଗଲା । କଟକର ରାଧାନାଥ ଟ୍ରେନିଂ କଲେଜ ଓଡ଼ିଶାର ସବୁଠାରୁ ପ୍ରାଚୀନ ଟ୍ରେନିଂ କଲେଜ ।

## ନାରୀ ଶିକ୍ଷା :

ଓଡ଼ିଶାରେ ସରକାରୀ ଓ ବେସରକାରୀ ସ୍ତରରେ ଶିକ୍ଷାର ଉନ୍ନତି ପାଇଁ ବହୁବିଧ ପ୍ରଚେଷ୍ଟା କରାଯାଇଥିଲେ ମଧ୍ୟ ନାରୀ ଶିକ୍ଷା ପ୍ରତି ବିଶେଷ ଗୁରୁତ୍ୱ ସେ ସମୟରେ ଦିଆଯାଉନଥିଲା । ଅନେକ ଲୋକଙ୍କର ଧାରଣାଥିଲା ନାରୀର ସ୍ଥାନ ହେଉଛି ଗୃହ କୋଣରେ । ତେଣୁ ନାରୀମାନଙ୍କୁ ଶିକ୍ଷା ଦେବା କୌଣସି ସଭ୍ୟତାର ପରିଚ୍ଛେଦ ନୁହେଁ ବୋଲି ଅନେକ ବିଜ୍ଞବ୍ୟକ୍ତିମାନେ ମତ ଦେଉଥିଲେ । ସେ ସମୟରେ ନାରୀଶିକ୍ଷା ପ୍ରତି ଲୋକମାନଙ୍କର ମନୋଭାବ କ'ଣ ଥିଲା ୧୮୯୮ ମସିହାରେ ରଚିତ ଫକୀରମୋହନଙ୍କ 'ରେବତୀ' ଗଳ୍ପ ପାଠ କଲେ ଜଣାଯାଏ ।

୧୮୭୯ ମସିହାରେ ଅବିନାଶ ଗୃହାର୍ଜୀ ନାମକ ଜଣେ ଭଦ୍ରବ୍ୟକ୍ତିଙ୍କ ଚେଷ୍ଟାରେ କଟକଠାରେ ନାରୀଶିକ୍ଷାର ବିକାଶ ପାଇଁ ଏକ ଘରୋଇ ପ୍ରାଥମିକ ବିଦ୍ୟାଳୟ ଖୋଲାଗଲା । ପରବର୍ତ୍ତୀ ସମୟରେ ଏହି ସ୍କୁଲର ନାମ ପରିବର୍ତ୍ତନ କରାଯାଇ କଟକ ହିନ୍ଦୁ ବାଳିକା ବିଦ୍ୟାଳୟ ନାମରେ ନାମିତ କରାଗଲା । ଏହି ସ୍କୁଲରେ ଛାତ୍ରୀମାନଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାରେ ଲାଗିଲା । ୧୮୭୩ ମସିହାରେ ଏହି ସ୍କୁଲର ନାମକୁ ବଦଳାଇ 'ରେଭେନ୍‌ସା ହିନ୍ଦୁ ବାଳିକା ବିଦ୍ୟାଳୟ' ଦିଆଗଲା । ଏହି ସମୟରେ ମଧୁସୂଦନ ଦାସଙ୍କ ପାଳିତାକନ୍ୟା ଶୈଳବାଳା ଦାସ ବ୍ରିଟେନରେ ତାଙ୍କର ଶିକ୍ଷା ସମାପ୍ତ କରି କଟକ ଫେରିଲେ । ଓଡ଼ିଶାରେ ନାରୀମାନଙ୍କର ଉଚ୍ଚଶିକ୍ଷା ପାଇଁ ସେ ୧୯୧୫ ମସିହାରେ ରେଭେନ୍‌ସା ହିନ୍ଦୁ ବାଳିକା ବିଦ୍ୟାଳୟ ଗୃହରେ ଏକ ମହିଳା କଲେଜ ଆରମ୍ଭ କଲେ ।

୧୯୪୮ ମସିହାରେ କଲେଜ ବିଭାଗ ସ୍କୁଲ ବିଭାଗଠାରୁ ଅଲଗା ଭାବେ କାର୍ଯ୍ୟ କଲା । ପୁଣି ୧୯୫୨ ମସିହାରେ ଏହି କଲେଜକୁ ତା'ର ନିଜସ୍ୱ ଗୃହକୁ ସ୍ଥାନାନ୍ତରିତ କରାଗଲା ଓ କଲେଜର ନାମ ଶୈଳବାଳା ଦେବୀଙ୍କ ନାମାନୁସାରେ ଶୈଳବାଳା ମହିଳା ମହାବିଦ୍ୟାଳୟ ରଖାଗଲା । ଶୈଳବାଳା ମହିଳା ମହାବିଦ୍ୟାଳୟ ଓଡ଼ିଶାର ସବୁଠାରୁ ପ୍ରାଚୀନ ମହିଳା ମହାବିଦ୍ୟାଳୟ । ଓଡ଼ିଶାରେ ନାରୀଶିକ୍ଷାର ବିକାଶ କ୍ଷେତ୍ରରେ ଏହି କଲେଜର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ ।

ଓଡ଼ିଶାରେ ନାରୀ ଶିକ୍ଷାର ବିକାଶ କ୍ଷେତ୍ରରେ ମିଶନାରୀମାନଙ୍କ ଭୂମିକା ଖୁବ୍ ପ୍ରଶଂସନୀୟ । କଟକଠାରେ ମିଶନାରୀମାନଙ୍କ ଉଦ୍ୟମରେ ବକ୍‌ଲ ଗାର୍ଲସ ହାଇସ୍କୁଲ, ସନତ୍‌ନଲକ୍ଷ୍ମୀ ଗାର୍ଲସ୍ ହାଇସ୍କୁଲ ନାମରେ ଦୁଇଟି ହାଇସ୍କୁଲ ଓ କଟକ ମ୍ୟୁନିସିପାଲିଟି ଉଦ୍ୟମରେ ମ୍ୟୁନିସିପାଲ ଗାର୍ଲସ ହାଇସ୍କୁଲ ଖୋଲାଗଲା । ଏହାର କିଛିଦିନ ପରେ ସରକାରଙ୍କ ତରଫରୁ ନାରୀଶିକ୍ଷାର ବିକାଶ ପାଇଁ ରାଧାନାଥ ଟ୍ରେନିଂ କଲେଜ ପରିସର ମଧ୍ୟରେ ପ୍ରାକ୍‌ଟିସିଙ୍ଗ୍ ଗାର୍ଲସ ହାଇସ୍କୁଲ, କାଜିବଜାରଠାରେ ସରକାରୀ ବାଳିକା ହାଇସ୍କୁଲ ଓ ବାଦାମବାଡ଼ିଠାରେ ଆଉ ଏକ ସରକାରୀ ବାଳିକା ହାଇସ୍କୁଲ ଖୋଲାଗଲା । ଆଉ ମଧ୍ୟ ମୁସଲମାନ ଗୋଷ୍ଠୀର ବାଳିକାମାନଙ୍କ ପାଇଁ ମୁସିଲିମ୍ ଗାର୍ଲସ୍ ହାଇସ୍କୁଲ ଖୋଲାଗଲା ।

କଟକଠାରେ ରେଭେନ୍‌ସା କଲେଜ ପ୍ରତିଷ୍ଠା କରାଯିବାପରେ ଓଡ଼ିଶାର ବହୁତ ଛାତ୍ରଛାତ୍ରୀ ଉଚ୍ଚତର ଶିକ୍ଷା ଲାଭ କରିବାର ସୁଯୋଗ ପାଇଲେ ଏବଂ ପାଶ୍ଚାତ୍ୟ ଶିକ୍ଷା ଦ୍ୱାରା ଅନୁପ୍ରାଣିତ ହେଲେ । ଏହି ପାଶ୍ଚାତ୍ୟ ଶିକ୍ଷା ଓଡ଼ିଶାବାସୀଙ୍କ ମନରେ ନୂତନ ଆଶା ଓ ଆକାଂକ୍ଷା ସୃଷ୍ଟି କଲା । ରେଭେନ୍‌ସା କଲେଜ ଓଡ଼ିଶାରେ ଶିକ୍ଷାର ବିକାଶ କ୍ଷେତ୍ରରେ ଏକ ଆଲୋକ ସ୍ତମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ରେଭେନ୍‌ସା କଲେଜ ପ୍ରତିଷ୍ଠାର କିଛି ବର୍ଷପରେ କଟକ ଠାରେ ଖ୍ରୀଷ୍ଟିୟାନ ସମ୍ପ୍ରଦାୟଙ୍କ ପ୍ରଚେଷ୍ଟାରେ ଖ୍ରୀଷ୍ଟକଲେଜ ଓ ପରେ ଷ୍ଟୁଆର୍ଟ କଲେଜ ପ୍ରତିଷ୍ଠା କରାଯାଇ ଥିଲା । ଏହି ସମୟରେ ମେଡ଼ିକାଲ ଶିକ୍ଷାର ପ୍ରସାର ପାଇଁ ଡକ୍ଟର ଷ୍ଟୁଆର୍ଟ ନାମକ ଜଣେ ଭଦ୍ରବ୍ୟକ୍ତିଙ୍କ ପ୍ରଚେଷ୍ଟାରେ କଟକଠାରେ ୧୮୭୬ ମସିହାରେ ୩୮ ଜଣ ପିଲାଙ୍କୁ ନେଇ ଗୋଟିଏ ମେଡ଼ିକାଲ ସ୍କୁଲ ଖୋଲାଗଲା । ଡକ୍ଟର ଷ୍ଟୁଆର୍ଟଙ୍କ ପ୍ରଚେଷ୍ଟା ଫଳରେ ଏହି ସ୍କୁଲ ଦ୍ରୁତ ଉନ୍ନତି ପଥରେ ଆଗେଇ ଚାଲିଲା । ପ୍ରଥମେ ଓଡ଼ିଆ ଭାଷା ମାଧ୍ୟମରେ ଛାତ୍ରଛାତ୍ରୀମାନଙ୍କୁ ମେଡ଼ିକାଲ ଶିକ୍ଷା ଦିଆଗଲା । କିନ୍ତୁ ଏହାଦ୍ୱାରା ଅସୁବିଧା ହେବାରୁ ପାଠପଢ଼ାର ମାଧ୍ୟମ ରୂପେ ଇଂରେଜୀ ଭାଷାକୁ ଗ୍ରହଣ କରାଗଲା । ଏହି ମେଡ଼ିକାଲ ସ୍କୁଲରେ କ୍ରମେ କ୍ରମେ ଛାତ୍ରଛାତ୍ରୀଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଲା ।

ସେ ସମୟରେ ଓଡ଼ିଶାର ଶିକ୍ଷାମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ମେଡ଼ିକାଲ ଶିକ୍ଷାର ଉନ୍ନତି ପାଇଁ ସରକାରଙ୍କ ଦୃଷ୍ଟି ଆକର୍ଷଣ କଲେ ଏବଂ ସରକାରଙ୍କୁ ଏକ

ଦାବିପତ୍ର ଦେଲେ । ଏଥିରେ ସେ ଉକ୍ତ ସ୍କୁଲ ପରିସର ମଧ୍ୟରେ ମେଡ଼ିକାଲ କଲେଜ ଖୋଲିବା ପାଇଁ ଦାବୀ କରିଥିଲେ । ସରକାର ଏହି ଦାବୀକୁ ଗ୍ରହଣ କଲେ । ଏହାର କିଛି ବର୍ଷ ପରେ ମୟୂରଭଞ୍ଜର ରାଜା ରାମଚନ୍ଦ୍ର ଭଞ୍ଜଦେଓ ମେଡ଼ିକାଲ କଲେଜର ଉନ୍ନତି ପାଇଁ ମୋଟା ଆକାରରେ କିଛି ସାହାଯ୍ୟ ପ୍ରଦାନ କଲେ । ତାଙ୍କର ଏହି ମହତ୍ତ୍ଵ ଦାନ ପାଇଁ ତାଙ୍କର ସ୍ମୃତି ଉଦ୍ଦେଶ୍ୟରେ ମେଡ଼ିକାଲ କଲେଜର ନାମ ରଖାଗଲା 'ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ' ।

ସ୍ୱାଧୀନତା ପ୍ରାପ୍ତିର କିଛି ବର୍ଷ ପରେ ଅର୍ଥାତ୍ ୧୯୫୬ ମସିହାରେ କଟକ ଠାରେ ମାଧ୍ୟମିକ ଶିକ୍ଷା ପରିଷଦ (ବୋର୍ଡ଼ ଅଫ୍ ସେକେଣ୍ଡାରୀ ଏଜୁକେଶନ) ପ୍ରତିଷ୍ଠା କରାଗଲା । ଏହା ପ୍ରତିଷ୍ଠା ହେବା ପୂର୍ବରୁ ହାଇସ୍କୁଲ ପରୀକ୍ଷା ବିଶ୍ୱବିଦ୍ୟାଳୟ ଦ୍ୱାରା ପରିଚାଳିତ ହେଉଥିଲା । ଏହି ଅନୁଷ୍ଠାନ ପ୍ରତିଷ୍ଠା ଦ୍ୱାରା ହାଇସ୍କୁଲ ପରୀକ୍ଷା ପରିଚାଳନା ଦାୟିତ୍ୱ ଏହା ଉପରେ ନ୍ୟସ୍ତ କରାଗଲା । ଏହି ବୋର୍ଡ଼ ନିଜ ଉଦ୍ୟମରେ ୧୯୫୯ ମସିହାରେ କଟକଠାରେ ଏକ ହାଇସ୍କୁଲ ଖୋଲିଲା । ଯାହାର ନାମ 'ସେକେଣ୍ଡାରୀ ବୋର୍ଡ଼ ହାଇସ୍କୁଲ୍' ରଖାଗଲା । ଆହୁରି ମଧ୍ୟ ଛାତ୍ରଛାତ୍ରୀମାନଙ୍କୁ ବୋର୍ଡ଼ ତରଫରୁ ଛପା ବହିମାନ ଯୋଗାଇ ଦିଆଗଲା । ଓଡ଼ିଶାରେ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷାର ମାନବୃଦ୍ଧି କରିବା ପାଇଁ କେତେଜଣ ବିଜ୍ଞ ବ୍ୟକ୍ତିଙ୍କୁ ନେଇ ଗୋଟିଏ କମିଟି ଗଠନ କରାଗଲା ।

ଶିକ୍ଷାର ବିକାଶ କ୍ଷେତ୍ରରେ ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କ ଭୂମିକା ମଧ୍ୟ ପ୍ରଶଂସନୀୟ । ୧୯୧୩ ମସିହାରେ କେତେଜଣ ମୁସଲମାନମାନଙ୍କ ପ୍ରଚେଷ୍ଟାରେ ତିନକୋଣିଆ ବଗିଚାଠାରେ ମୁସ୍ଲିମ୍ ସେମିନାରୀ ହାଇସ୍କୁଲ ନାମରେ ଗୋଟିଏ ହାଇସ୍କୁଲ ଖୋଲାଗଲା । ପରବର୍ତ୍ତୀ ସମୟରେ ଏହାକୁ କଟକର ଦିମସାହିକୁ ଉଠାଇ ନିଆଗଲା । ଏହି ସ୍କୁଲର ପ୍ରତିଷ୍ଠାତା ଥିଲେ ଏମ୍.ଉ. ସୟଦ୍ । ମାଡ୍ରାସର ହକିମ୍ ନାମକ ଜଣେ ବଣିକଙ୍କ ଆର୍ଥିକ ସହାୟତାରେ ଏହି ସ୍କୁଲର ସ୍ଥାୟୀ ଗୃହନିର୍ମାଣ କରାଯାଇଥିଲା । ୧୯୪୭ ମସିହାରେ ଏହି ସ୍କୁଲର ନାମ ପରିବର୍ତ୍ତନ କରାଯାଇ 'ସୟଦ ସେମିନାରୀ ହାଇସ୍କୁଲ୍' ନାମରେ ନାମିତ କରାଗଲା । ଏହି ସମୟରେ ମୁସଲମାନ ବାଳିକାମାନଙ୍କର ଶିକ୍ଷାର ବିକାଶ ପାଇଁ ସେକ୍‌ବଜାର ଠାରେ ଗୋଟିଏ ଗାର୍ଲସ୍ ହାଇସ୍କୁଲ ଖୋଲାଗଲା । ସ୍କୁଲରେ ଉର୍ଦ୍ଦୁ ଓ ଓଡ଼ିଆ ଭାଷାରେ ଶିକ୍ଷା ପ୍ରଦାନ କରାଗଲା ।

ଶିକ୍ଷାର ବିକାଶ କ୍ଷେତ୍ରରେ ମିଶନାରୀମାନଙ୍କ ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ମିଶନାରୀମାନଙ୍କ ଅସୀମ ପ୍ରଚେଷ୍ଟା ଫଳରେ ଓଡ଼ିଶାର ପ୍ରାଣକେନ୍ଦ୍ର କଟକଠାରେ ଦୁଇଟି କଲେଜ ଓ ତିନୋଟି ହାଇସ୍କୁଲ ଗଢ଼ି ଉଠିଥିଲା । ୧୮୩୬ ମସିହାରେ ବକ୍ଲି ନାମକ ଜଣେ ମହିଳା ନଅଜଣ ଅନାଥ ପିଲାଙ୍କୁ ନେଇ ଗୋଟିଏ ସ୍କୁଲ ଖୋଲିଲେ । ୧୯୪୪ ମସିହାରେ ଏହି ମହୀୟସୀ ମହିଳାଙ୍କ ପ୍ରଚେଷ୍ଟାରେ ଏହିଠାରେ ଗୋଟିଏ

ହାଇସ୍କୁଲ ଖୋଲାଗଲା ଓ ଏହାର ନାମ ରଖାଗଲା 'ବକ୍ଲ ଗାର୍ଲସ ହାଇସ୍କୁଲ' । ଅନେକ ବର୍ଷ ପର୍ଯ୍ୟନ୍ତ ଏହି ସ୍କୁଲ ମିଶନାରୀମାନଙ୍କ ଆର୍ଥିକ ସହାୟତାରେ ଆଗେଇ ଚାଲିଲା । ଏବେ ଅବଶ୍ୟ ସରକାରଙ୍କଠାରୁ ସିଧାସଳଖ ଆର୍ଥିକ ଅନୁଦାନ ପାଇଲେ ମଧ୍ୟ ଏହା ଖ୍ରୀଷ୍ଟିୟାନମାନଙ୍କ ଦ୍ୱାରା ପରିଚାଳିତ ହେଉଅଛି । ଏହା ବ୍ୟତୀତ ମିସନ୍‌ସ୍କୁଲ ଓ ସେଲଟର ଛକରେ ଥିବା 'ସନଭନଲଲ ଗାର୍ଲସ୍ ହାଇସ୍କୁଲ'ର ପ୍ରତିଷ୍ଠାତା ଥିଲେ ଏହି ମିଶନାରୀମାନେ । ୧୯୦୨ ମସିହାରେ ବକ୍ଲ ଗାର୍ଲସ୍ ହାଇସ୍କୁଲଠାରେ ଏହି ମିଶନାରୀମାନଙ୍କ ଉଦ୍ୟମରେ 'ଥମ୍‌ସନ ଟ୍ରେନିଂ ସ୍କୁଲ' ନାମରେ ଗୋଟିଏ ସ୍କୁଲ ଖୋଲାଯାଇଥିଲା । କଟକରେ ଶିକ୍ଷାର ବିକାଶ କ୍ଷେତ୍ରରେ ଏହି ସଂଖ୍ୟାଲଘୁ ସମ୍ପ୍ରଦାୟମାନଙ୍କର ଭୂମିକା ନିଶ୍ଚିତ ପ୍ରଶଂସନୀୟ ।

ବର୍ତ୍ତମାନ କଟକ ସହରର ଜନସଂଖ୍ୟା ପ୍ରାୟ ପାଞ୍ଚ ଲକ୍ଷରେ ପହଞ୍ଚିଛି । ଲୋକସଂଖ୍ୟା ବୃଦ୍ଧି ଫଳରେ କଟକର ସ୍କୁଲ ଓ କଲେଜର ସଂଖ୍ୟା କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି । ବର୍ତ୍ତମାନ ଗଣନା କରି ଦେଖାଯାଇଛି ୧୮୮୯ ମସିହାରେ କଟକରେ ଗୁଟିଏ ହାଇସ୍କୁଲ ଓ ଗୋଟିଏ କଲେଜ ଥିବାବେଳେ ବର୍ତ୍ତମାନ କଟକରେ ୨୦ଟି କଲେଜ ଓ ୩୭ଟି ହାଇସ୍କୁଲ ଓ ଗୁଟିଏ ବୈଷୟିକ ଶିକ୍ଷା କେନ୍ଦ୍ର ରହିଛି । ନିମ୍ନରେ ସେ ସବୁର ସୂଚନା ପ୍ରଦାନ କରାଗଲା ।

## କଲେଜ ସଂଖ୍ୟା

୧ । ରେଭେନ୍‌ସା କଲେଜ
୨ । ଶୈଳବାଳା ମହିଳା ମହାବିଦ୍ୟାଳୟ
୩ । ଜାତୀୟ କବି ବୀରକିଶୋର ମହାବିଦ୍ୟାଳୟ
୪ । ମଧୁସୂଦନ ଆଇନ ମହାବିଦ୍ୟାଳୟ
୫ । ରାଧାନାଥ ଟ୍ରେନିଂ କଲେଜ
୬ । ଫିଜିକାଲ ଏଜୁକେଶନ କଲେଜ
୭ । ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ
୮ । ନର୍ସିଙ୍ଗ୍ କଲେଜ
୯ । ରଘୁନାଥଜୀଉ ମହାବିଦ୍ୟାଳୟ
୧୦ । ଇନ୍ଦିରାଗାନ୍ଧୀ ମହାବିଦ୍ୟାଳୟ
୧୧ । ଇମର୍ତ୍ତିଦେବୀ ମହିଳା ମହାବିଦ୍ୟାଳୟ
୧୨ । ସିଟି କଲେଜ
୧୩ । କ୍ରିଟକ କଲେଜ
୧୪ । ଖ୍ରୀଷ୍ଟ ମହାବିଦ୍ୟାଳୟ
୧୫ । ହିନ୍ଦୀ ଟ୍ରେନିଂ ଇନଷ୍ଟିଚ୍ୟୁଟ୍

୧୬ । ଉତ୍କଳ ଟ୍ରେନିଂ କଲେଜ
୧୭ । ଷ୍ଟୁଆର୍ଟ ସାଇନସ୍ କଲେଜ
୧୮ । ମହିଳା ମହାବିଦ୍ୟାଳୟ (ଖୋରଧା ସାହି)
୧୯ । ହରେକୃଷ୍ଣ ମହତାବ ସଂସ୍କୃତ ମହାବିଦ୍ୟାଳୟ
୨୦ । ଶ୍ରୀରାମଚନ୍ଦ୍ର ଦାସ ମହାବିଦ୍ୟାଳୟ
୨୧ । କଟକ ହୋମିଓପ୍ୟାଥିକ କଲେଜ

## ହାଇସ୍କୁଲ ସଂଖ୍ୟା

୧ । ରେଭେନସା କଲିଜିଏଟ୍ ସ୍କୁଲ
୨ । ରାଣୀହାଟ ହାଇସ୍କୁଲ
୩ । ରେଲୱେ ସେଟଲମେଣ୍ଟ ହାଇସ୍କୁଲ
୪ । ପ୍ୟାରିମୋହନ ଏକାଡେମୀ
୫ । ଓଡ଼ିଶା ପୋଲିସ ହାଇସ୍କୁଲ
୬ । ନୂଆବଜାର ହାଇସ୍କୁଲ
୭ । ମାରୱାଡ଼ି ହାଇସ୍କୁଲ
୮ । ଖାନନଗର ହାଇସ୍କୁଲ
୯ । ହାଡ଼ିବନ୍ଧୁ ବିଦ୍ୟାପୀଠ
୧୦ । କମଳାକାନ୍ତ ବିଦ୍ୟାପୀଠ
୧୧ । ସିଟି ହାଇସ୍କୁଲ
୧୨ । ଖ୍ରୀଷ୍ଟ କଲିଜିଏଟ ସ୍କୁଲ
୧୩ । ଛତ୍ରବଜାର ହାଇସ୍କୁଲ
୧୪ । ଭକ୍ତମଧୁ ବିଦ୍ୟାପୀଠ
୧୫ । ସେକେଣ୍ଡାରି ବୋର୍ଡ ହାଇସ୍କୁଲ
୧୬ । ମୁନସିପାଲ ଗାର୍ଲସ ହାଇସ୍କୁଲ
୧୭ । ପ୍ରାକ୍ଟିସିଙ୍ଗ୍ ଗାର୍ଲସ ହାଇସ୍କୁଲ
୧୮ । ରେଭେନସା ଗାର୍ଲସ ହାଇସ୍କୁଲ
୧୯ । ଉତ୍କଳ ଗାର୍ଲସ ହାଇସ୍କୁଲ
୨୦ । ସି. ଆର୍. ଆର୍. ଆଇ ହାଇସ୍କୁଲ
୨୧ । ମ୍ୟୁନସିପାଲ୍ ହାଇସ୍କୁଲ
୨୨ । ବାଦାମବାଡ଼ି ନିଉ କଲୋନି ହାଇସ୍କୁଲ
୨୩ । କେମ୍ବ୍ରିଜ ସ୍କୁଲ
୨୪ । କୁଞ୍ଜବିହାରୀ ଜୀଉ ହାଇସ୍କୁଲ, ବକ୍ସିବଜାରଗଞ୍ଜ
୨୫ । କୋଡ଼ୁଆ ହାଇସ୍କୁଲ

୨୬ । ରଘୁନାଥଜୀଉ ବିଦ୍ୟାଳୟ
୨୭ । ସତ୍‌ସଙ୍ଗ ହାଇସ୍କୁଲ
୨୮ । ତୁଳସୀପୁର ହାଇସ୍କୁଲ
୨୯ । ଶ୍ରୀ ଅରବିନ୍ଦ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ହାୟର ଷ୍ଟଡିଜ ଆଣ୍ଡ୍ ରିସରର୍ଚ୍ଚ ସ୍କୁଲ
୩୦ । ଓଡ଼ିଶା ସ୍ପେସିଆଲ ଆରମ୍ଡ଼୍ ହାଇସ୍କୁଲ
୩୧ । ସରକାରୀ ବାଳିକା ବିଦ୍ୟାଳୟ
୩୨ । ସନାତନଲକ୍ଷ୍ମୀ ବାଳିକା ବିଦ୍ୟାଳୟ
୩୩ । ପ୍ରେସ କଲୋନୀ ହାଇସ୍କୁଲ
୩୪ । ସରକାରୀ ବାଳିକା ବିଦ୍ୟାଳୟ (କାଜି ବଜାର)
୩୫ । ସେଣ୍ଟ ଯୋଶେଫ୍ କନ୍‌ଭେଣ୍ଟ
୩୬ । ବକ୍ସି ଗାର୍ଲସ ହାଇସ୍କୁଲ
୩୭ । ଇମର୍ତ୍ତି ଦେବୀ ଗାର୍ଲସ ହାଇସ୍କୁଲ

## ବୈଷୟିକ ଶିକ୍ଷାକେନ୍ଦ୍ର

୧ । ଭୁବନାନନ୍ଦ ଇଞ୍ଜିନିୟରିଂ ସ୍କୁଲ
୨ । ଇଣ୍ଡଷ୍ଟ୍ରିଆଲ୍ ଟ୍ରେନିଂ ଇନ୍‌ସିଚ୍ୟୁଟ୍
୩ । ଗଭର୍ଣ୍ଣମେଣ୍ଟ ସେକେଣ୍ଡାରୀ ଟ୍ରେନିଂ ସ୍କୁଲ
୪ । ଗଭର୍ଣ୍ଣମେଣ୍ଟ ଟେକ୍‌ନିକାଲ ସ୍କୁଲ, ସି. ଆର୍. ଆର୍. ଆଇ

ଏହାଛଡ଼ା ପାଞ୍ଚଶହ ପ୍ରାଥମିକ ସ୍କୁଲ ଓ ଇଂରାଜୀ ମିଡ଼ିୟମ ସ୍କୁଲମାନ ରହିଛି । ଲୋକ ସଂଖ୍ୟା କ୍ରମଶଃ ବୃଦ୍ଧି ଫଳରେ ଆଗାମୀ ଦିନମାନଙ୍କରେ ଏହାର ସଂଖ୍ୟା ଆହୁରି ବୃଦ୍ଧି ପାଇବ ବୋଲି ଅନୁମାନ କରାଯାଏ ।



# କଟକ ନଗର
# ଓ
# ବାସ୍ତରଙ୍ଗ ସଂକୀର୍ତ୍ତନ ମଣ୍ଡଳୀ

**ପଣ୍ଡିତ ଶ୍ରୀ ରାମକୃଷ୍ଣ ପତି** (ସ୍ମରଣ)

ସହସ୍ରାୟୁ କଟକ ଆଜି ଧନ, ମାନ, ଜନ ଓ ଗୌରବରେ ସମୃଦ୍ଧ । ପ୍ରାଚୀନ ବଟବୃକ୍ଷର ଛାୟାଶ୍ରିତ ବିସ୍ତୃତ ବାହୁବଳୟ ନୂତନ ବୃକ୍ଷର ଶକ୍ତି ଓ ସାଦୃଶ୍ୟକୁ ଗ୍ରହଣ କଲାପରି କଟକ ସଂସ୍କୃତିର ବିଭିନ୍ନ ଅଙ୍ଗ ସ୍ୱ ସ୍ୱ ଭୂୟୋବିକାଶରେ ଶ୍ରୀସମ୍ପନ୍ନ । ବଟଦ୍ରୁମ ନିଜର ଶତ ଶତ କରଚରଣ ଶକ୍ତିରେ ବଳୀୟାନ ହୋଇ ଦୀର୍ଘଜୀବୀ । ଅସଂଖ୍ୟ ସଂସ୍କୃତି ରଶ୍ମିରେ ସୁଶୋଭିତ ଏତାଦୃଶ କଟକର ଅନାଲୋଚିତ ଅଙ୍ଗ ହେଉଛି— ବାସ୍ତରଙ୍ଗ ସଂକୀର୍ତ୍ତନ ମଣ୍ଡଳୀ ।

କଟକ-ଓଡ଼ିଶା ଇତିହାସରେ ପ୍ରାଚୀନସ୍ଥଳ ଭାବରେ ସମ୍ମାନିତ । ସମୟାନୁକ୍ରମରେ ଯଯାତିନଗର ରାଜଧାନୀ ହେଉ ବା ଖୋରଧାଗଡ଼ ରାଜନୀତିର କେନ୍ଦ୍ର ହେଉ, ଏହାର ମଧ୍ୟସ୍ଥଳ ଭାବରେ ଅଭିନବ ବାରାଣସୀ କଟକରେ ଅନୁଭୂତ ହୋଇଛି ଏହାର ସ୍ପନ୍ଦନ । ନିଜର ଭୌଗୋଳିକ ଅବସ୍ଥିତି ପାଇଁ ବୈଦେଶିକର ଲୋଲୁପ ଦୃଷ୍ଟିରେ କଟକ ହୃଦୟ କ୍ଷତବିକ୍ଷତ ହୋଇଛି । ପ୍ରଶାସନର ଔଦ୍ଧତ୍ୟ ଯୋଗେ କଟକ ବିମୋହିତ ମଧ୍ୟ ହୋଇଛି । ରାଜଶକ୍ତିର ରଣାଙ୍ଗନ ଭାବରେ କଟକ ବିକ୍ଷୁବ୍ଧ ହୋଇଛି; ପୁଣି ପରମ୍ପରାର ଚର୍ଚ୍ଚାରେ ପ୍ରସିଦ୍ଧି ଲାଭ କରିଛି । କେତେବେଳେ ତୀକ୍ଷ୍ଣ କରବାଳର ଝନ୍‌ତ୍କାରରେ ଶିହରିତ ପ୍ରାଣ କରତାଳର କର୍ଣ୍ଣମଧୁର ଧ୍ୱନିରେ ପୁଲକିତ ହୋଇଛି । ବାରମ୍ବାର ଯୁଦ୍ଧର ରୁଦ୍ରତାଣ୍ଡବରେ ଲହୁଲୁହର ସ୍ରୋତ ଜନଜୀବନକୁ ବୁଡ଼େଇ ଦେଇଛି, ପୁଣି ଏହାସହ ପ୍ରଜାନୁରଞ୍ଜନ ନରପତିଙ୍କ ମଠ, ମନ୍ଦିର, ହାଟ, ପାଠକର କୋଳାହଳରେ କଟକ ଭୁଲିଯାଇଛି ଜୀବନ ଦୁଃଖକୁ । ଶାସନକୁ ନେଇ ଗଢ଼ି ଉଠିଛି ସାହିତ୍ୟ, ସଂସ୍କୃତି, ସଦ୍ଭାବନାର ଏକ ତ୍ରିବେଣୀ । ନଦୀମାତୃକା କୋଡ଼ରେ ଚିରଚଞ୍ଚଳ ହୋଇ ଉଠିଛି କଟକର ତ୍ରିକୋଣ ଭୂମି ।

ରାଜଶକ୍ତି ସବୁବେଳେ ଧର୍ମାପୁଷ୍ଟ ହୋଇଛି । ଧର୍ମର ପ୍ରଗାଢ଼ ପ୍ରଭାବରେ ନିଜକୁ 'ପରମ ସୌଗତ', 'ପରମ ମାହେଶ୍ୱର', 'ପରମ ବୈଷ୍ଣବ' ବୋଲି ଘୋଷଣା

କରିଛନ୍ତି କିନ୍ତୁ କାଳର ଆବର୍ତ୍ତରେ ଏଠାରେ କେବଳ ନୀଳାଚଳର ଧ୍ୱଜା ଉଡ଼ିଲେ ସମସ୍ତେ ଆଶ୍ରୟ ନେଇଛନ୍ତି । ଓଡ଼ିଶାର ନରପତିଗଣ ନିଜର ମାନ-ଅଭିମାନକୁ ଜଗନ୍ନାଥଙ୍କ ପାଦତଳେ ସମର୍ପଣ କରି ଜଗନ୍ନାଥ ଭୂମିର ଜାଗ୍ରତ ପ୍ରହରୀ 'ରାଉତ'ଟିଏ ବୋଲି ଶେଷରେ ନିଜକୁ ଘୋଷଣା କରିଛନ୍ତି ।

ଓଡ଼ିଶାର ଆଧ୍ୟାତ୍ମିକ ପ୍ରଲୋଭନ ଓ ଶ୍ରୀକ୍ଷେତ୍ର ପ୍ରତି ଦୁର୍ବାର ଆକର୍ଷଣରେ ଆକର୍ଷିତ ହୋଇ ଭାରତୀୟ ଭକ୍ତ, ସନ୍ଥ, ଓ ମନୀଷୀଗଣ ଆସିଛନ୍ତି । ପ୍ରବାଦ ପୁରୁଷ ମହାରାଜା ଇନ୍ଦ୍ରଦ୍ୟୁମ୍ନ, ଆଚାର୍ଯ୍ୟ ଶଙ୍କର, ରାମାନୁଜ, ମାଧ୍ୱ, ନିମ୍ବାର୍କ ଓ ଚୈତନ୍ୟ ଓଡ଼ିଶାର ଧାର୍ମିକ ଚେତନାରେ ନିଜକୁ ସଂଶ୍ଳିଷ୍ଟ କରିଛନ୍ତି । ଏମାନଙ୍କର ପଦପାତ ଓଡ଼ିଶାର ସଂସ୍କୃତିକୁ ସମୃଦ୍ଧ କରିଛି, ସାହିତ୍ୟକୁ ପରିପୁଷ୍ଟ କରିଛି । ମହାପୁରୁଷମାନଙ୍କର ଆଗମନ ଆଗାମୀ ଦିନର ହୋଇଛି ସ୍ମୃତି ସମ୍ପଦ । କଟକ ଓଡ଼ିଶାର ଆଗମନ ଓ ପ୍ରସ୍ଥାନର ଦ୍ୱାରସଦୃଶ ହୋଇଥିବାରୁ ଏବଂ ରାଜନୀତିର କେନ୍ଦ୍ରସ୍ଥଳ ହୋଇଥିବା ହେତୁ କଟକକୁ ଛୁଇଁଛି ଏହି ପଦଯାତ୍ରାର ସୁଖଦ ଅନୁଭୂତି ।

ଶ୍ରୀକ୍ଷେତ୍ରଗାମୀ ଚୈତନ୍ୟ ୧୫୧୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ପାଦ ଦେଇଛନ୍ତି । ଚୈତନ୍ୟଙ୍କ ଆଗମନ ବେଳକୁ ନରପତି 'ପ୍ରତାପରୁଦ୍ରଦେବଙ୍କ (୧୪୯୭-୧୫୪୦) ଶାସନ ପ୍ରଚଳିତ । ପ୍ରତାପରୁଦ୍ର ଜଣେ ଭକ୍ତ ଓ ଭଗବନ୍ତ ଲୀଳାପ୍ରିୟ ବ୍ୟକ୍ତି ଥିଲେ । ସାହିତ୍ୟ ଓ ସଂସ୍କୃତିର ଥିଲେ ପୃଷ୍ଠପୋଷକ । ଚୈତନ୍ୟଙ୍କ ଆଗମନ ଶୁଣି ଆପଣାର ରାଜ୍ୟବାସୀଙ୍କ ତରଫରୁ କୀର୍ତ୍ତନପ୍ରିୟ ଚୈତନ୍ୟଙ୍କୁ ସେ କୀର୍ତ୍ତନ ମାଧ୍ୟମରେ ସ୍ୱାଗତ ଜଣାଇ ଥିଲେ । ଏହି କୀର୍ତ୍ତନ ମଣ୍ଡଳୀଗୁଡ଼ିକ କଟକ ନଗରର ବିଭିନ୍ନ ପ୍ରାନ୍ତରୁ ସଙ୍ଗଠିତ ହୋଇ ଆସିଥିଲେ । ରାଜସ୍ୱୀକୃତି ଓ ରାଜାଙ୍କରେ ମଣ୍ଡଳୀଗୁଡ଼ିକ ଏଥିରେ ଯୋଗଦାନ କରିଥିଲେ ।

ଶ୍ରୀଚୈତନ୍ୟ ପୁରୀଯାତ୍ରା ଉଦ୍ଦେଶ୍ୟରେ ଗମନ କରୁଥିଲେ । ଐତିହାସିକ ପରମାନନ୍ଦ ଆଚାର୍ଯ୍ୟଙ୍କ ବିବୃତିରେ—"ଚୈତନ୍ୟ ବଙ୍ଗରୁ ଓଡ଼ିଶାକୁ ଆସିଲାବେଳେ ଗଙ୍ଗାନଦୀର ଦେବଘାଗ ପର୍ଯ୍ୟନ୍ତ ଆସି ସେଠାରେ ଦାନ୍ତୁଣୀ ପର୍ଯ୍ୟନ୍ତ ଆସିଥିଲେ । ସେଠାରୁ ଜଳେଶ୍ୱର, ରେମୁଣା, ଯାଜପୁର, କଟକ, ଭୁବନେଶ୍ୱର ହୋଇ ପୁରୀ ଯାଇଥିଲେ ।" ଯାଜପୁରରୁ ଚୈତନ୍ୟ ଗୋପୀନାଥପୁର, ପଦ୍ମପୁର, ଚୌଦ୍ୱାର ହୋଇ ଚଷାପଡ଼ା ଘାଟରୁ ନୌକା ଯୋଗେ ମହାନଦୀ ପାର ହୋଇଥିଲେ । କଟକର ଗଡ଼ଗଡ଼ିଆ ଘାଟଠାରେ ପହଞ୍ଚି ସାକ୍ଷୀଗୋପାଳଙ୍କ ଦର୍ଶନ କରି କୀର୍ତ୍ତନରେ ପ୍ରେମମଗ୍ନ ହୋଇ ଯାଇଥିଲେ । 'ଚୈତନ୍ୟ ଚରିତାମୃତ' ମଧ୍ୟଖଣ୍ଡରେ ଉଲ୍ଲେଖ ଅଛି—

"କଟକେ ଆଇଲ ସାକ୍ଷୀଗୋପାଳ ଦେଖିତେ
ଗୋପାଲ ସୌନ୍ଦର୍ଯ୍ୟ ଦେଖି ହେଲ ଆନନ୍ଦିତେ
ପ୍ରେମାବେଶେ ନୃତ୍ୟ ଗୀତ କୈଲ କତକ୍ଷଣ
ଆବିଷ୍ଟ ହୟା କୈଲ ଗୋପାଳ ସ୍ତବନ ।"

କଟକର ନାଟ୍ୟକାର ଗୋଲକଚନ୍ଦ୍ର ମହାନ୍ତି ୧୯୮୬ରେ ଚୈତନ୍ୟ ପଞ୍ଚଶତ ଶତବାର୍ଷିକୀ ଉତ୍ସବ' ଉପଲକ୍ଷ୍ୟେ ବାସ୍ତରଦ୍ଦଗ ସଙ୍କୀର୍ତ୍ତନ ମଣ୍ଡଳୀ ସମ୍ପର୍କରେ ପ୍ରକାଶିତ ଏକ ପ୍ରସ୍ତର ପଟ୍ଟରେ ଏହା ଉଲ୍ଲେଖ କରିଛନ୍ତି । ସେ ଲେଖିଛନ୍ତି—୧୫୧୦ ଖ୍ରୀଷ୍ଟାବ୍ଦରେ ପୁଣ୍ୟ କାର୍ତ୍ତିକମାସ ପୂର୍ଣ୍ଣିମା ତିଥିରେ ଶ୍ରୀମାନ ମହାପ୍ରଭୁ ଶ୍ରୀଚୈତନ୍ୟ ଷଡ଼ଗୋସ୍ୱାମୀ, ପାର୍ଷଦ ଓ ସଙ୍କୀର୍ତ୍ତନ ଗୋଷ୍ଠୀସହ ନବଦ୍ୱୀପରୁ ନୀଳାଚଳ ଅଭିମୁଖେ ଆସି ପଦାର୍ପଣ କଲେ ମହାନଦୀଘାଟରସ୍ଥ ଗଡ଼ଗଡ଼ିଆ ଘାଟରେ । ତାଙ୍କର ନାମ କୀର୍ତ୍ତନର ଶୈଳୀ ଓ ଭାବଧାରା ଶ୍ରୋତାମାନଙ୍କୁ ଅଭିଭୂତ କଲା । ଲୋକେ ତନ୍ମୟ ହୋଇ ଭାବାବେଶରେ ସଙ୍କୀର୍ତ୍ତନର ତାଳେ ତାଳେ ନୃତ୍ୟ କରିବାକୁ ଲାଗିଲେ । କଟକରୁ ଶ୍ରୀଚୈତନ୍ୟ ସଙ୍କୀର୍ତ୍ତନ ଗୋଷ୍ଠୀ ସହ ଯାତ୍ରା କଲେ ତାଙ୍କର ଇପ୍‌ସିତ ଓ ଆକାଙ୍‌କ୍ଷିତ ଦେବ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବାକୁ ପୁରୀ ନୀଳାଚଳ । ଗଡ଼ଗଡ଼ିଆ ଘାଟରେ ତାଙ୍କର ପଦାର୍ପଣର ସ୍ୱରୂପ ସେ ଛାଡ଼ିଦେଇ ଯାଇଛନ୍ତି ତାଙ୍କର ପଦସ୍ପର୍ଶରେ ଦ୍ରବୀଭୂତ ପାଷାଣ ଉପରେ ପାଦପଦ୍ମର ସଙ୍କେତ, ଯାହା ଅଦ୍ୟାବଧି ସେହି ସ୍ଥାନରେ ବିରାଜିତ, ପୂଜିତ ଓ ବନ୍ଦିତ ହେଉଛନ୍ତି । ଏଠାରେ ପ୍ରତିବର୍ଷ କାର୍ତ୍ତିକ ପୂର୍ଣ୍ଣିମାରେ ଗଡ଼ଗଡ଼ିଆ ଘାଟରେ, ପାଦପଦ୍ମ ପୀଠରେ ବାସ୍ତରଦ୍ଦଗ ସଙ୍କୀର୍ତ୍ତନ ମଣ୍ଡଳୀ ନାମକୀର୍ତ୍ତନ କରି ଆସୁଛନ୍ତି ।" ଏଥିରୁ ଜଣାପଡୁଛି ଯେ; ରାଜା ପ୍ରତାପରୁଦ୍ରଙ୍କ ସ୍ୱୀକୃତି ନେଇ କାର୍ତ୍ତିକପୂର୍ଣ୍ଣିମାରେ କୀର୍ତ୍ତନ-ମଣ୍ଡଳୀଗୁଡ଼ିକ ଏକତ୍ର ହୋଇ ଚୈତନ୍ୟଙ୍କୁ ସ୍ୱାଗତ କରିବା ସହ ତାଙ୍କର ସହଯାତ୍ରୀ ହୋଇଥିଲେ ନୀଳାଚଳ ପର୍ଯ୍ୟନ୍ତ । ସେହି ଚୈତନ୍ୟଙ୍କ ଆଗମନସ୍ମୃତିକୁ ବାସ୍ତରଦ୍ଦଗ ସଙ୍କୀର୍ତ୍ତନ ମଣ୍ଡଳୀ ସେହି ଦିନରେ ସ୍ମରଣ କରି ଆସୁଛନ୍ତି ।

ଏତଦ୍‌ବ୍ୟତୀତ ମହାନ୍ତିଦିଆ ବଜାରରେ ଶ୍ରୀଚୈତନ୍ୟ ମଠ ଏବଂ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ପାଦପଦ୍ମ ବିରାଜିତ, ଏହି ପାଦପଦ୍ମ ରାଧାରମଣ ମଠ ପରିଚାଳନାରେ ପରିଚାଳିତ ହେଉଛନ୍ତି ।

ଏଠାରେ ସ୍ମରଣଯୋଗ୍ୟ ଯେ, ଚୈତନ୍ୟଙ୍କ ଆଗମନ ପୂର୍ବରୁ କୀର୍ତ୍ତନମଣ୍ଡଳୀ ଗୁଡ଼ିକ ସୃଷ୍ଟି ହୋଇଥିଲା । କୀର୍ତ୍ତନମଣ୍ଡଳୀ କଟକ ସହର ସମେତ ଓଡ଼ିଶାର ସବୁଠି ରହିଥିଲା । ଚୈତନ୍ୟଦେବଙ୍କ ଆଗମନ ଉପଲକ୍ଷ୍ୟେ ରାଜ ଆଦେଶରେ ଏଗୁଡ଼ିକ ସଙ୍ଗଠିତ କରାଯାଇଥିଲା । କଟକର ତତ୍‌କାଳୀନ ବାସ୍ତରଦ୍ଦଗର ଏମାନେ ପ୍ରତିନିଧିତ୍ୱ କରୁଥିବାରୁ ବାରଟି ଦଳକୁ ରାଜା ସ୍ୱୀକୃତି ଦେଇଥିଲେ । ସେହିଦିନରୁ ଏହାର ନାମ 'ବାସ୍ତରଦ୍ଦଗ ସଙ୍କୀର୍ତ୍ତନ ମଣ୍ଡଳୀ' ବୋଲି ରହି ଆସିଅଛି ।

ଚୈତନ୍ୟ ଥିଲେ ଜଣେ ବୈଷ୍ଣବ । ବୈଷ୍ଣବଧର୍ମରେ ତାଙ୍କର ଯଶଚନ୍ଦ୍ର ଉତ୍କଳ ଆଗମନପରେ ବର୍ଦ୍ଧିତ ହୋଇଥିଲା । ବୈଷ୍ଣବମାନଙ୍କ ସଦାଚାର ବିଷୟରେ ପ୍ରାଚୀନ ପୁରାଣ ଓ ଶାସ୍ତ୍ରମାନଙ୍କରେ କେତେକ ନିର୍ଦ୍ଦେଶକୁ ପ୍ରତ୍ୟେକ ବୈଷ୍ଣବ ପାଳନ କରୁଥିଲେ । 'ଭରଦ୍ୱାଜ ସଂହିତା'ରେ ଉଲ୍ଲେଖ ଅଛି—

"ତାପଃ ପୁଣ୍ଡ୍ରଂ ତଥା ନାମ ମନ୍ତ୍ରୋ ଯାଗଶ୍ଚ ପଞ୍ଚମଃ
ଅମୀ ପରମ ସଂସ୍କାରାଃ ପାରମୈକାନ୍ତ୍ୟ ହେତବଃ ।"

ତପସ୍ୟା, ତିଳକ, ନାମଜପ, ମନ୍ତ୍ରଗ୍ରହଣ ଓ ଯାଗ-ଏହି ପାଞ୍ଚଟି କର୍ମ ବୈଷ୍ଣବ-ଭକ୍ତଙ୍କ କରଣୀୟ, ବୈଷ୍ଣବମାନଙ୍କ ସମ୍ପ୍ରଦାୟ ନିର୍ବିଶେଷରେ ସର୍ବମାନ୍ୟ ଗ୍ରନ୍ଥ ହେଉଛି ଶ୍ରୀମଦ୍ ଭାଗବତ, ଏଥିରେ ଭକ୍ତିର ବିଭିନ୍ନତାକୁ 'ଶ୍ରବଣଂ କୀର୍ତ୍ତନଂ— ବିଷ୍ଣୋଃ ସ୍ମରଣଂ ପାଦସେବନମ୍' (୭.୫.୨୩) ପ୍ରଭୃତି ଭାବରେ ନବବିଧ ବୋଲି ଉଲ୍ଲେଖ କରାଯାଇଛି । ଭକ୍ତିର ଏହି ନବସୂତ୍ର ମଧ୍ୟରୁ 'କୀର୍ତ୍ତନ' ହିଁ କଳିକାଳର ପ୍ରଧାନ ଆଶ୍ରୟ ବୋଲି ଭାଗବତରେ କୁହାଯାଇଛି—

"କୃତେ ଯଦ୍ ଧ୍ୟାୟତୋ ବିଷ୍ଣୁଂ ତ୍ରେତାୟାଂ ଯଜତୋ ମଖୈଃ ।
"ଦ୍ୱାପରେ ପରିଚର୍ଯ୍ୟାୟାଂ କଳୌ ତଦ୍ ହରିକୀର୍ତ୍ତନାତ୍ ।"
୧୨ । ୩ । ୫୧

ସତ୍ୟଯୁଗରେ ବିଷ୍ଣୁଙ୍କ ଧ୍ୟାନ, ତ୍ରେତୟାରେ ଯଜ୍ଞବିଧାନ, ଦ୍ୱାପରରେ ପରିଚର୍ଯ୍ୟା ଓ କଳିକାଳରେ କେବଳ 'କୀର୍ତ୍ତନ' କରଣୀୟ । ଭାଗବତର ଏହି ଉକ୍ତିକୁ ବୃହନ୍ନାରଦୀୟ ପୁରାଣରେ ଦୃଢ଼ କରି ବଜ୍ରସ୍ୱରରେ କୁହାଯାଇଛି ଯେ, ହରିନାମ ହିଁ ଏହି କଳିକାଳର ସାର, ଏତଦ୍‌ଭିନ୍ନ ଅନ୍ୟଗତି ନାହିଁ ।

"ହରେର୍ନାମ ହରେର୍ନାମ ହରେର୍ନାମୈବ କେବଳମ୍
କଳୌ ନାସ୍ତ୍ୟେବ ନାସ୍ତ୍ୟେବ ନାସ୍ତ୍ୟେବ ଗତିରନ୍ୟଥା ।"
(ପୂର୍ବ ୪୧ । ୧୧)

କଳିରେ ଯଦି ନାମ ସାର, ତେବେ ନାମ ଆମକୁ ଗତିମୁକ୍ତି ଦେଇପାରିବ ? ଏହି ଜିଜ୍ଞାସାର ପ୍ରତ୍ୟୁତ୍ତର ଦେଇ 'କଳିସନ୍ତରଣୋପନିଷଦ୍'ରେ କୁହାଯାଇଛି—

"ହରେ ରାମ ହରେ ରାମ ରାମ ରାମ ହରେ ହରେ,
ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ ।
ଇତି ଷୋଡ଼ଶକଂ ନାମ୍ନାଂ କଳିକଳ୍ମଷ ନାଶନମ୍
ନାତଃ ପରତରୋପାୟଃ ସର୍ବବେଦେଷୁ ଦୃଶ୍ୟତେ ।"

ଏହି ଷୋଡ଼ଶ ନାମର ଉଚ୍ଚାରଣ କୀର୍ତ୍ତନ ମାଧ୍ୟମରେ କରଣୀୟ । କଳିଯୁଗରେ ଏହା ସରଳ, ସହଜ, ଏକମାତ୍ର ସହଜସାଧ୍ୟ । କଳିକଳ୍ମଷନାଶନରେ ଏହା ହିଁ ସର୍ବୋତ୍ତମ ଉପାୟ । ଶ୍ରୀମଦ୍ ଭାଗବତ ମତରେ ଏବଂବିଧ ନାମକୀର୍ତ୍ତନରେ ନିଜର ସ୍ଥିତିକୁ ଭୁଲିଯାଇ ବିଷ୍ଣୁଗତପ୍ରାଣ ହେବ । କଣ୍ଠରୁ ଗଦ୍‌ଗଦ୍ ହୋଇ ନାମ ଝରୁଥିବ, କେତେବେଳେ ହସି, କେତେବେଳେ କାନ୍ଦି, କେବେ ନିର୍ଲ୍ଲଜ୍ଜ ହୋଇ ନାଚଉଠିବ, ଗାନ କରିବ । ଏହିପରି ସର୍ବତୋଭାବରେ ବିଷ୍ଣୁମୟ ବିଷ୍ଣୁରସ ଲୀଳାରେ ଆତ୍ମହରା ହେଲେ ଯାଇ ସେ ଜଗତକୁ ଉଦ୍ଧାର କରିବ, ସଂସାରକୁ ପବିତ୍ର କରିବ ।

"ବାଗ୍ ଗଦ୍‌ଗଦା ଦ୍ରବତେ ଯସ୍ୟଚିତ୍ତଂ, ରୁଦତ୍ୟଭୀକ୍ଷ୍ଣଂ ହସତି କ୍ୱଚିଚ୍ଚ,
ବିଲଜ୍ଜ ଉଦ୍‌ଗାୟତି ନୃତ୍ୟତେ ଚ, ମଦ୍‌ଭକ୍ତିଯୁକ୍ତୋ ଭୁବନଂ ପୁନାତି ॥
(୧୧ । ୧୪ । ୨୪)

କୀର୍ତ୍ତନର ଏହି ଧାରା ଭାଗବତ ଗ୍ରନ୍ଥରୁ ଆରମ୍ଭ ହୋଇ ଉତ୍କଳର ସର୍ବତ୍ର ପ୍ରଚଳିତ ହୋଇଥିଲା ।

ପୁଣି ଲକ୍ଷ୍ୟଣୀୟ ଯେ; ବୈଷ୍ଣବ ଧର୍ମରେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର ଉପାସନା ଆରମ୍ଭ ହୋଇଥିଲା ଉତ୍କଳରୁ । ପ୍ରତ୍ନତତ୍ତ୍ୱବିତ୍ ପରମାନନ୍ଦ ଆଚାର୍ଯ୍ୟ ୧୯୬୭ 'କଳ୍ପନା ପତ୍ରିକାରେ ପ୍ରକାଶିତ "ରାଧାକୃଷ୍ଣ ମୂର୍ତ୍ତିପୂଜାର ଇତିହାସ" ପ୍ରବନ୍ଧରେ ସ୍ପଷ୍ଟ ମତବ୍ୟକ୍ତ କରିଛନ୍ତି ଯେ; "ଖ୍ରୀଷ୍ଟୀୟ ୧୨ଶ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ହିଁ ପରବର୍ତ୍ତୀକାଳୀନ ବିଷ୍ଣୁ-କୃଷ୍ଣ ମୂର୍ତ୍ତି କଳ୍ପିତ ହୋଇ ପ୍ରସ୍ତରରେ ମୂର୍ତ୍ତି ରୂପେ ଗଠିତ ହୋଇ ପୂଜିତ ହେଉଥିଲା । ଏହା ପରେ ଗୋପୀନାଥ ମୂର୍ତ୍ତି କଳ୍ପିତ ହୋଇ ପ୍ରସ୍ତରରେ ଗଠିତ ହେଲା ଓ ଦେବତା ମୂର୍ତ୍ତି ରୂପେ ନାନା ସ୍ଥାନରେ ପୂଜା ପାଇଲା ।" ଓଡ଼ିଶାରେ ରେମୁଣାରେ କ୍ଷୀରଚୋରା ଗୋପୀନାଥ, ସାକ୍ଷୀଗୋପାଳରେ, ସରକଣାରେ ଓ ହୀରାପୁରରେ ଗୋପୀନାଥ ମୂର୍ତ୍ତି ପୂଜାର ପ୍ରଚଳନ ଦେଖାଇ ସେ କହିଛନ୍ତି ଯେ;— "ବଂଶୀଧାରୀ କୃଷ୍ଣମୂର୍ତ୍ତି ଖୁବ୍ ସମ୍ଭବତଃ ଓଡ଼ିଶାରେ କଳ୍ପିତ ଓ ଗଠିତ ହୋଇ ଭାରତର ଅନ୍ୟ ସ୍ଥାନକୁ ସ୍ଥାନାନ୍ତରିତ ହୋଇଥିଲା । ଏବେ ଏହା ସର୍ବତ୍ର ଗଠିତ ହେଉଅଛି ।" (ପୃ. ୪୧୩)

ଐତିହାସିକ ପରମାନନ୍ଦଙ୍କ ମତରେ ରାଧାମୂର୍ତ୍ତିର ଉଦ୍ଭବ ମଧ୍ୟ ଓଡ଼ିଶାରେ । ରାଧାକୃଷ୍ଣ ମୂର୍ତ୍ତି ପୂଜାର ଦାର୍ଶନିକ ସିଦ୍ଧାନ୍ତକୁ ଭାରତରେ ପ୍ରଚାର କରିଥିଲେ ଓଡ଼ିଶାର ମହାନ୍ ଦାର୍ଶନିକ ବଳଦେବ ବିଦ୍ୟାଭୂଷଣ । ଆଚାର୍ଯ୍ୟଙ୍କ ଶେଷ ମନ୍ତବ୍ୟ ଆମର ପ୍ରଣିଧାନଯୋଗ୍ୟ—"ଓଡ଼ିଶା ହିଁ ରାଧାକୃଷ୍ଣ ମୂର୍ତ୍ତି ଗଠନର ଆଦି କ୍ଷେତ୍ର ଓ ଓଡ଼ିଶାର ଦାର୍ଶନିକ ବଳଦେବ ବିଦ୍ୟାଭୂଷଣ କୃଷ୍ଣମୂର୍ତ୍ତି ପୂଜାର ଦାର୍ଶନିକ ବ୍ୟାଖ୍ୟା କରିଥିଲେ । ବର୍ତ୍ତମାନ ସମଗ୍ର ଭାରତରେ ରାଧାକୃଷ୍ଣ ମୂର୍ତ୍ତି ପୂଜା ପ୍ରଚଳିତ ହୋଇ କୋଟି କୋଟି ଲୋକଙ୍କୁ ଧର୍ମଭାବ ପ୍ରଦାନ କରୁଅଛି ।" (ପୃ. ୪୭୦, ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ, ପ୍ରଥମ ଭାଗ) ।

ପରମାନନ୍ଦ ଆଚାର୍ଯ୍ୟଙ୍କ ମତକୁ ଓଡ଼ିଶାର ଅନ୍ୟତମ ପ୍ରଖ୍ୟାତ ଐତିହାସିକ କେଦାରନାଥ ମହାପାତ୍ର ନିଜର "ଶ୍ରୀ ଜୟଦେବ ଓ ଶ୍ରୀଜଗନ୍ନାଥ" ପୁସ୍ତକରେ ସ୍ୱୀକାର କରିବା ସହ ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ଗୋପାଳ ଓ ମାଧବ ଉପାସନାର ଯେଉଁ ବ୍ୟାପକ ପ୍ରଚଳନ ଥିଲା ତାହାକୁ ଶ୍ରୀ ଜୟଦେବଙ୍କ କାବ୍ୟପ୍ରତିଭା ଓ ଇଷ୍ଟ ସାଧନାର ପୃଷ୍ଠଭୂମି ବୋଲି ଉଲ୍ଲେଖ କରିଛନ୍ତି ।

ଓଡ଼ିଶାରେ ଦ୍ୱାଦଶ ଶତାବ୍ଦୀରେ ଜନ୍ମ ନେଲେ କାଳଜୟୀ ଭକ୍ତ ଓ କବି ଶ୍ରୀଜୟଦେବ । ଆପଣାର ୭୨ଟି ଶ୍ଲୋକ ଓ ୨୪ଟି ଗୀତ ସମ୍ବଳିତ ଅବିସ୍ମରଣୀୟ ଗ୍ରନ୍ଥ

'ଶ୍ରୀ ଗୀତଗୋବିନ୍ଦ'ରେ ରାଧାକୃଷ୍ଣଙ୍କ ଦିବ୍ୟ ମାଧୁର୍ଯ୍ୟ ଲୀଳାକୁ କାନ୍ତ-କୋମଳ-ପଦା-ବଳୀରେ ଅମର କରି ଦେଇଗଲେ । ଓଡ଼ିଶାର ପୁରପଲ୍ଲୀରୁ ଆରମ୍ଭ କରି ଶ୍ରୀଜଗନ୍ନାଥ ମନ୍ଦିର ପର୍ଯ୍ୟନ୍ତ ଏହାହିଁ ହେଲା ଏକମାତ୍ର ଗାୟନଯୋଗ୍ୟ ଗ୍ରନ୍ଥ । ଗଜପତି ପ୍ରତାପରୁଦ୍ର-ଦେବ ୧୫୦୦ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୮ ତାରିଖ ଆଷାଢ଼ ଶୁକ୍ଳ ଦଶମୀ ବୁଧବାର ପବିତ୍ର ବାହୁଡ଼ା ଯାତ୍ରା ଦିନ ଦେଶ ଓ ବିଦେଶାଗତ ଯାତ୍ରୀ ଭକ୍ତଙ୍କ ଆଗରେ ଘୋଷଣା କରିଦେଲେ ଯେ ଶ୍ରୀଜଗନ୍ନାଥଙ୍କ ବଡ଼ସିଂହାର ବେଳେ ଶ୍ରୀ ଗୀତଗୋବିନ୍ଦହିଁ ଗାନ କରାଯିବ । ଇତର ଗୀତ କେହି ମନ୍ଦିରରେ ଗାଇ ପାରିବେ ନାହିଁ କିମ୍ବା ନାଚିପାରିବେ ନାହିଁ । ପ୍ରତାପରୁଦ୍ରଙ୍କର ଏହି ଗୁରୁତ୍ୱପୂର୍ଣ୍ଣ ଘୋଷଣା ଶ୍ରୀମନ୍ଦିର ଜୟବିଜୟ ଶିଳା-ଲେଖରେ ସ୍ଥାନ ପାଇଅଛି । ତଦବଧି ଶ୍ରୀ ଗୀତଗୋବିନ୍ଦ ହେଲା ଏହି ଉତ୍କଳ ରାଷ୍ଟ୍ରର ରାଷ୍ଟ୍ରଗ୍ରନ୍ଥ ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ପରମପ୍ରିୟ କବି ଜୟଦେବ ଆଦ୍ୟ ଜୀବନରୁ ଥିଲେ ଭଗବତ୍ ପ୍ରିୟ । ଆପଣାର ପତ୍ନୀ ପଦ୍ମାବତୀଙ୍କ ସହ ଭଗବତ୍ ଆରାଧନାରେ ସମୟ ବିତାଉଥିଲେ । ଚନ୍ଦ୍ରଦତ୍ତ କୃତ 'ଭକ୍ତମାଳା'ରେ ଉଲ୍ଲେଖ ଅଛି—

"ଉଭୌ ତୌ ଦମ୍ପତି ତତ୍ର ଏକପ୍ରାଣ ବଭୂବତୁଃ
ନୃତ୍ୟନ୍ତୌ ଗୃପି ଗାୟନ୍ତୌ ଶ୍ରୀକୃଷ୍ଣାଜ୍ଞ'ନ ତତ୍ପରୌ ।"

ଗାୟନ ଓ ନୃତ୍ୟ ମାଧ୍ୟମରେ ଜୟଦେବ ଦମ୍ପତିଙ୍କର କାଳାତିବାହିତ ହେଉ-ଥିଲା । ନୃତ୍ୟ ସହ ଗାୟନରେ ଏକପ୍ରାଣ ଦମ୍ପତି 'ଗୀତଗୋବିନ୍ଦ'ରେ ଥିଲେ ଅନୁପ୍ରାଣିତ । ଲେଖକ ଜୀବନରୁ ଆରମ୍ଭ କରି ଗୀତଗୋବିନ୍ଦ ପଠନ ଓ ଗାୟନରେ ଏମିତି ମଧ୍ୟ ନିଜକୁ ଭୁଲିଗଲା । ଦ୍ୱାଦଶ ଶତାବ୍ଦୀରୁ ପୂର୍ବ ପ୍ରଚଳିତ ପୌରାଣିକ କୀର୍ତ୍ତନର ରୂପରେଖ ବଦଳିଗଲା । 'ନାମ' କୀର୍ତ୍ତନ ସହ 'ଗୀତଗୋବିନ୍ଦ' ପ୍ରଭାବରେ ଲୀଳା ବିଷୟକ ରାଗ ସଙ୍ଗୀତ ଗାୟନ କରାଗଲା । ଏହି ରାଗ ସଙ୍ଗୀତର ପ୍ରଚଳନ ଅଦ୍ୟାବଧି ଓଡ଼ିଶାର ପୁରପଲ୍ଲୀରେ ପ୍ରଚଳିତ ଅଛି । ପ୍ରାଚୀନ ବ୍ୟକ୍ତିଗତ ରାଗ ସଙ୍ଗୀତମୟ କୀର୍ତ୍ତନକୁ 'ଓଡ଼ିଶୀ କୀର୍ତ୍ତନ' ଓ ନାମ ଉଚ୍ଚାରଣମୂଳକ କୀର୍ତ୍ତନକୁ 'ନଦିୟା କୀର୍ତ୍ତନ' କହିଥାନ୍ତି । ଓଡ଼ିଶୀ କୀର୍ତ୍ତନରେ ତାଳ ଓ ଗିନି ସହ ଛନ୍ଦାୟିତ ଗତି ଥିଲାବେଳେ ନଦୀୟାକୀର୍ତ୍ତନରେ ଖୋଞ୍ଚ ସହ ଉଦ୍ଦଣ୍ଡ ନୃତ୍ୟକୁ ଲକ୍ଷ୍ୟକଲେ ଏହାର ଭିନ୍ନତା ଜାଣିହେବ । 'ଗୀତଗୋବିନ୍ଦ' ନିଜର ଅପ୍ରତିହତ ପ୍ରଭାବରେ ଓଡ଼ିଶାର ଜନଜୀବନ, ସାହିତ୍ୟ, ସଂସ୍କୃତ ସାହିତ୍ୟ ତଥା ଭାରତୀୟ ସାହିତ୍ୟକୁ ମଧ୍ୟ ନିୟନ୍ତ୍ରଣ କଲା । ସ୍ୱୟଂ ଚୈତନ୍ୟ ମଧ୍ୟ ଗୀତଗୋବିନ୍ଦ କାବ୍ୟ ପଠନ ଓ ଗାୟନରେ ଅସୀମ ଆନନ୍ଦ ଲାଭ କରୁଥିଲେ । ସେ ଗୀତଗୋବିନ୍ଦ କାବ୍ୟର ଜଣେ ରସିକ ପାଠକ ଥିଲେ ।

ଅତଏବ ପ୍ରାକ୍‌ଚୈତନ୍ୟ କୀର୍ତ୍ତନର ସତ୍ତା ଓ ସମ୍ଭାବନା ବିଷୟରେ କୁହାଯାଇ ପାରିବ ଯେ, (କ) ପୁରାଣଗତ କୀର୍ତ୍ତନ ଓଡ଼ିଶାରେ ପ୍ରଚଳନ ଥିଲା । (ଖ) ରାଧା ମୂର୍ତ୍ତି ତଥା କୃଷ୍ଣ ମୂର୍ତ୍ତିର ପ୍ରସ୍ତର ଗଠନ ଓଡ଼ିଶାରୁ ଆରମ୍ଭ ହୋଇଥିଲା । (ଗ) ଓଡ଼ିଶାରୁ

ଦାର୍ଶନିକ ବଳଦେବ ବିଦ୍ୟାଭୂଷଣ ରାଧାକୃଷ୍ଣ ମୂର୍ତ୍ତିର ଦାର୍ଶନିକ ବ୍ୟାଖ୍ୟା ପ୍ରଥମେ ପ୍ରତିଷ୍ଠା କରିଥିଲେ । (ଘ) 'ଜୟଦେବଙ୍କ 'ଗୀତଗୋବିନ୍ଦ' ଓଡ଼ିଶାର କୀର୍ତ୍ତନକୁ ନବଜନ୍ମ ଦେଇଥିଲା । (ଙ) ଚୈତନ୍ୟ 'ଗୀତଗୋବିନ୍ଦ'ର ରସିକ ପାଠକ ଥିଲେ ଏବଂ (ଛ) ଓଡ଼ିଶୀ କୀର୍ତ୍ତନଠାରୁ ନଦୀୟା କୀର୍ତ୍ତନର ମୌଳିକ ଭେଦ ସୁସ୍ପଷ୍ଟ ଥିଲା ।

ମହାରାଜା ପ୍ରତାପରୁଦ୍ର ଦେବ 'ଗୀତଗୋବିନ୍ଦ'ର ଜଣେ ବିମୁଗ୍ଧ ପାଠକ ଥିଲେ ଏବଂ ଗୀତଗୋବିନ୍ଦ ପ୍ରଭାବିତ ଓଡ଼ିଶୀ କୀର୍ତ୍ତନର ମଧ୍ୟ ଜଣେ ଥିଲେ ଆଗ୍ରହୀ ଅନୁରାଗୀ, ଚୈତନ୍ୟ ଆଗମନ ବେଳେ କଟକ ସହରର ବାସ୍ତରଟି ଅଞ୍ଚଳରେ ଥିବା କୀର୍ତ୍ତନ ଦଳଗୁଡ଼ିକୁ ଏକତ୍ର କରି ପ୍ରୋତ୍ସାହିତ କରିଥିଲେ ଏବଂ ଚୈତନ୍ୟଙ୍କ ଆଗରେ ଏକତ୍ର କୀର୍ତ୍ତନ କରିବା ବେଳେ, ଦଳଗୁଡ଼ିକ ନବଜୀବନର ଅନୁଭୂତି ଆଣିଥିଲେ । ତଦବଧି ଏ ଯାବତ୍ ଏହି ସଂକୀର୍ତ୍ତନ ଦଳଗୁଡ଼ିକ କଟକର ସାଂସ୍କୃତିକ ଚେତନାକୁ ଜାଗ୍ରତ କରି ଆସିଛନ୍ତି ।

ବାସ୍ତର ସଂଖ୍ୟାଟି ବିଶେଷଣ ପଦ ନହୋଇ ଏଠାରେ ନାମବାଚକ ବିଶେଷ୍ୟ ଭାବରେ ପ୍ରୟୋଗ କରି ହୋଇଛି, ଅର୍ଥାତ୍ ଦଳ ସଂଖ୍ୟା ବାସ୍ତରି ନ ହେଲେ ମଧ୍ୟ ନାମଟି 'ବାସ୍ତର ସାହି' ବୋଲି ରହି ଆସିଛି । ଏହି ବାସ୍ତର ସାହି ଗୁରୁଟି ସାହିରେ ବିଭକ୍ତ ହୋଇଛି । ସେଗୁଡ଼ିକ ହେଲା—ପଚିଶ ସାହି, ବାଇଶି ସାହି, ଉଣେଇଶ ସାହି ଓ ଷୋହଳ ସାହି । ନିଜର ସଂକୀର୍ତ୍ତନ ଦଳକୁ ନେଇ ଏହିପରି ନାମକରଣ ହୋଇଛି ବୋଲି ଧରି-ନେଲେ ଏହାର ମିଶ୍ରଣରେ ୮୨ଟି ଦଳ ହେଉଛି । ଏଣୁ 'ବାସ୍ତର ସାହି' ତତ୍କାଳୀନ କଟକର ବାସ୍ତରି ସାହିକୁ ସୂଚାଉଅଛି । ଅନୁଷ୍ଠାନ ସେହିଦିନରୁ ଏହି ନାମରେ ପରିଚିତ ହୋଇ ଆସୁଛି ।

ଏହି ଗୁରୁସାହିର ଜଣେ ଲେଖା ସର୍ବାଧିକାରୀ ଅଛନ୍ତି । ପ୍ରତ୍ୟେକ ସଂକୀର୍ତ୍ତନ ମଣ୍ଡଳୀର ସୁପରିଚାଳନା, ସେବା ଓ ତଦାରଖ ପାଇଁ ଯଥାକ୍ରମେ ଜଣେ ଅଧିକାରୀ, ଜଣେ କଟୁଆଳ ରହିଛନ୍ତି । ସର୍ବାଧିକାରୀଙ୍କୁ ଗୋଟିଏ ଲେଖା ପରିଚାଳନା ସମିତି ସହଯୋଗ କରନ୍ତି ଏବଂ ସମିତି ସେହି ଅଞ୍ଚଳର ଅନୁଭୂତିପ୍ରବଣ ବ୍ୟକ୍ତିଙ୍କୁ ନେଇ ଗଠିତ ହୋଇ ଆସୁଅଛି ।

ଅନୁଷ୍ଠାନର ନିଜସ୍ୱ ଆରାଧନା ପୀଠ ନଥିଲା । କଟକ ସହର ବକ୍ସିବଜାର ନିବାସୀ ବଦାନ୍ୟବ୍ୟକ୍ତି ୭ ପଦନ ସାହୁ ଏ ଦିଗରେ ଆଗେଇ ଆସି ୧୦-୧-୧୯୧୬ ରେ ଜମି ପ୍ରଦାନ ସହ ଏକ ଦାନପତ୍ର ରେଜେଷ୍ଟ୍ରୀ କରାଇ ସେଥିରେ ମଣ୍ଡଳୀ ଗୁଡ଼ିକର ନାମ ଓ ଅଧିକାରୀଗଣଙ୍କ ନାମୋଲ୍ଲେଖ କରିଥିଲେ । ସାହୁଙ୍କ ପ୍ରଦତ୍ତ ଜମିରେ ଶ୍ରୀରାଧାକୃଷ୍ଣ ଯୁଗଳମୂର୍ତ୍ତି ଓ ଚୈତନ୍ୟଙ୍କ ମୂର୍ତ୍ତି ମଧ୍ୟ ଆଜି ପୂଜା ପାଉଛନ୍ତି । ଶ୍ରୀଯୁଗଳ-କିଶୋର ଠାକୁରଙ୍କ ନାମରେ ଉତ୍ସର୍ଗୀକୃତ ଏହି ସଂସ୍ଥା ଆଜି ବକ୍ସିବଜାର ବଡ଼ଭାଇ ସାହିରେ ରହିଛି । ସାହୁଙ୍କ ଏତାଦୃଶ ମହତ୍ ଦାନ ପାଇଁ ସହରବାସୀ ତାଙ୍କୁ ସମ୍ମାନ-ସୂଚକ "ବାସ୍ତର ମଣ୍ଡଳ ସର୍ବାଧିକାରୀ" ପଦ ପ୍ରଦାନ କରିଥିଲେ । ମହନ୍ତ ପଦରେ ବିଖ୍ୟାତ ବିଦ୍ୱାନ୍ ବିହାରୀଲାଲ ପଣ୍ଡିତଙ୍କ ପୁତ୍ର ଗଣେଶଲାଲ ପଣ୍ଡିତ ରହିଥିଲେ ।

ପଦନ ସାହୁଙ୍କ ପରେ ନଟବର ସାହୁ, ମଣି ସାହୁ ଏବଂ ୧୯୬୦ରେ ଆନନ୍ଦଚନ୍ଦ୍ର ସାହୁ 'ବାସ୍ତବ ମଣ୍ଡଳ ସର୍ବାଧିକାରୀ' ପଦରେ ଭୂଷିତ ହୋଇଥିଲେ । ଆନନ୍ଦ ସାହୁ ସର୍ବାଧିକାରୀ ପଦରେ ଥିଲାବେଳେ ୪ ଦଳକୁ ଚାରିଗୋଟି ସଙ୍କେତ ପ୍ରଦାନ କରିଥିଲେ । ପଚଶ ଦଳକୁ ଶଙ୍ଖ, ବାଇଶି ଦଳକୁ ଚକ୍ର, ଊଣେଇଶ ଦଳକୁ ଗଦା ଓ ଷୋହଳ ଦଳକୁ ପଦ୍ମ ଚିହ୍ନ ପ୍ରଦାନ କରାଯାଇଥିଲା । ଆନନ୍ଦ ସାହୁଙ୍କ ପରେ ଅର୍ଥାତ୍ ୧୯୬୨ ପରଠାରୁ ଏହି ସର୍ବମାନ୍ୟ ପଦଟି ଆଜିପର୍ଯ୍ୟନ୍ତ ଶୂନ୍ୟ ରହିଛି । ସେଥିପାଇଁ ଚାରି ବିଭାଗ ସର୍ବାଧିକାରୀ ଏବଂ ସଂକୀର୍ତ୍ତନପ୍ରେମୀ ମୁଖ୍ୟମାନଙ୍କୁ ନେଇ ଏକ ପରିଚାଳନାମଣ୍ଡଳୀ ତତ୍ତ୍ୱାବଧାନରେ ଦୋଳଯାତ୍ରା ମେଳଣ ହେଉଛି । ଏହି ଯାତ୍ରା ଚାରିଜଣ ସର୍ବାଧିକାରୀଙ୍କ ମଧ୍ୟରୁ ବଡ଼ଭାଇ ୨୫ ଭାଗ ସର୍ବାଧିକାରୀଙ୍କ ପରିଚାଳନାରେ ଅନୁଷ୍ଠିତ ହୋଇଛି ।

ବର୍ତ୍ତମାନ କଟକ ସହରରେ 'ବାସ୍ତବ ଦଳ ସଂକୀର୍ତ୍ତନ ମଣ୍ଡଳୀ'ର ନିମ୍ନମତେ ମଣ୍ଡଳୀମାନ ରହିଛି ଓ ଏହା କାର୍ଯ୍ୟ କରି ଆସୁଅଛି । **୨୫ ଦଳ ଭାଗ ସଂକୀର୍ତ୍ତନ ମଣ୍ଡଳୀ**ର ସର୍ବାଧିକାରୀ ରାଜାବଗିଚାର ଶ୍ରୀ ହରିଶ୍ଚନ୍ଦ୍ର ମହାରଣା ରହିଅଛନ୍ତି । ଏହି ଦଳଭାଗ ମଧ୍ୟରେ ନିମସାହି କ ଓ ଖ ଭଗତପୁର, ରାଜାବଗିଚା, ବାଙ୍କୀସାହି, ଝାଞ୍ଜିରିମଙ୍ଗଳା କ ଓ ଖ, ବଙ୍ଗାଳି ସାହି, ତେଲେଙ୍ଗା ବଜାର କ ଓ ଖ, ବାଖରାବାଦ କ ଓ ଖ, ବାରିକ ସାହି, ଚୌଧୁରୀ ବଜାର, ଦରଘା ବଜାର, କାଠଗଡ଼ା ସାହି କ ଖ ଓ ଗ, ରାହୁସାପାଟଣା କ, ଖ ଓ ଗ, ହରିପୁର କ ଓ ଖ, ପିଠାପୁର ସାମନ୍ତସାହି ଓ ଥୋରିଆ ସାହି ପ୍ରଭୃତି ୨୬ଟି ମଣ୍ଡଳୀ ଅନ୍ତର୍ଭୁକ୍ତ ଅଛନ୍ତି ।

**ବାଇଶି ବିଭାଗର ସଂକୀର୍ତ୍ତନ ମଣ୍ଡଳୀ**ର ଦରଖାପାଟଣାବାସୀ ଶ୍ରୀ ଜଗବନ୍ଧୁ ସାହୁ ସର୍ବାଧିକାରୀ ଅଛନ୍ତି । ଏହି ବିଭାଗ ମଧ୍ୟରେ ଦରଖା ପାଟଣା, ଗୁଡ଼ିଆଗଞ୍ଜ (ମଙ୍ଗଳାସାହି); ଗୁଡ଼ିଆଗଞ୍ଜ (ମଠସାହି); ଗୁଡ଼ିଆଗଞ୍ଜ (ଢେଲିସାହି) ଗୁଡ଼ିଆଗଞ୍ଜ (ପାଟଣାସାହି); ରାଣୀହାଟ, କନ୍ହେଇପୁର, ଶଙ୍କରପୁର, ଶଙ୍କରପୁର ଦାସସାହି, ହରିପୁର, ଅନ୍ଦରପୁର, କାଠଗଡ଼ା ସାହି, ଖାନନଗର କ ଓ ଖ, ବଙ୍ଗାଳି ସାହି, ବିଦ୍ୟାଧରପୁର କ ଓ ଖ, ବଳଭଦ୍ରପୁର, ପାଟରିସାହି, ଶିଖରପୁର କ, ଖ ଓ ଗ; କମଳପୁର, ନୂଆପଡ଼ା, ଭଦ୍ରମୂଳ, ପୋପରଡ଼ା କ ଓ ଖ, ଡିମିରିଆ, ସାମନ୍ତସାହି ପିଠାପୁର, ମାଳିସାହି, ଶଗଡ଼ିଆ ସାହି ପ୍ରଭୃତି ୩୨ଟି ମଣ୍ଡଳୀ ଅନ୍ତର୍ଭୁକ୍ତ ଅଛନ୍ତି ।

**ଊଣେଇଶ ଦଳଭାଗ ସଂକୀର୍ତ୍ତନ ମଣ୍ଡଳୀ**ର ସର୍ବାଧିକାରୀ ବୁଢ଼ୀଠାକୁରାଣୀ ବାସୀ ଶ୍ରୀ କୃଷ୍ଣଚନ୍ଦ୍ର ସାହୁ ରହିଅଛନ୍ତି । ଏହି ଦଳଭାଗ ମଧ୍ୟରେ ବଡ଼ାନାସୀ କ ଓ ଖ, ଦେଉଳସାହି, ତୁଳସୀପୁର, ରାମଗଡ଼, ମାନସିଂହପାଟଣା କ, ଖ ଓ ଗ, ଅଲିସାବଜାର ମଙ୍ଗଳା ସାହି, ନୃସିଂହ ମଠ, ଗଙ୍ଗାମନ୍ଦିର, ଅଲକେଶ୍ୱର ମଠ, ଚାନ୍ଦନୀଚୌକ, ଦରଜି ସାହି, ମହମଦିଆ ବଜାର କ ଓ ଖ, ଶେଖବଜାର, ଖଟ୍ଟବିନ ସାହି କ ଓ ଖ, ଜଗନ୍ନାଥ ବଲ୍ଲଭ, କାଜିବଜାର ଓ ଓଡ଼ିଆ ବଜାର ପ୍ରଭୃତି ବାଇଶିଟି ମଣ୍ଡଳୀ ଅନ୍ତର୍ଭୁକ୍ତ ଅଛନ୍ତି ।

**ଷୋହଳ ହରିଭକ୍ତ ସଂକୀର୍ତ୍ତନ ମଣ୍ଡଳୀ**ର ସର୍ବାଧିକାରୀ ମାଳୁଆବଜାର ବାସୀ ଶ୍ରୀ କୃଷ୍ଣଚନ୍ଦ୍ର ସାହୁ ରହିଅଛନ୍ତି । ଏହି ହରିଭକ୍ତ ମଧ୍ୟରେ ବଡ଼େଇସାହି କ ଓ ଖ, ମଣିସାହୁ ଛକ, ବଣିଆସାହି ମଦନମୋହନ, ବଣିଆସାହି ପର୍ଶୁରାମ ମଠ, ମଙ୍ଗଳାବାଗ, ନୂଆପାଟଣା, ନୂଆପାଟଣା ମହିସାହି, ବାସୁଳି ସାହି ଓ ନାୟକ ସାହି ପ୍ରଭୃତି ଦଶଟି ମଣ୍ଡଳୀ ଅନ୍ତର୍ଭୁକ୍ତ ଅଟନ୍ତି । ଏହି ମଣ୍ଡଳୀଗୁଡ଼ିକର ଅଧିକାରୀଗଣ ମଣ୍ଡଳୀର ସୁପରିଚାଳନାରେ ଦିଗ୍‌ଦର୍ଶନ ଦେଉଛନ୍ତି । ସର୍ବାଧିକାରୀ ଗୁରୁଜଣ ମୁଖ୍ୟ ଭାବରେ ଏହି ମଣ୍ଡଳୀଗୁଡ଼ିକର ନିର୍ଦ୍ଦେଶନା ଦେଉଛନ୍ତି । ସମସ୍ତ ମଣ୍ଡଳୀର ଅଧିକାରୀ-ମାନଙ୍କ ନାମକୁ ପ୍ରବନ୍ଧର ବିସ୍ତାର ଭୟରେ ଦୁଃଖର ସହ ଉଲ୍ଲେଖ କରିବାରୁ ବିରତ ରହୁଅଛୁ ।

ସମୟ କ୍ରମରେ ସାହି ସଂଖ୍ୟା ବଢ଼ିଛି ଓ ମଣ୍ଡଳୀ ସଂଖ୍ୟାର ପରିବର୍ଦ୍ଧନ ହୋଇଛି । ୧୯୧୬ର ଦାନପତ୍ରରେ ଉଲ୍ଲେଖ ଥିବା ମଣ୍ଡଳୀ ସହ ଆଜିର ମଣ୍ଡଳୀକୁ ତୁଳନା କଲେ ଜଣାଯାଏ—

| ୧୯୧୬ | ୧୯୯୪ |
|---|---|
| ୨୫ ହରିଭକ୍ତ ୨୪ ମଣ୍ଡଳୀ | ୨୬ ମଣ୍ଡଳୀ |
| ୨୨ ହରିଭକ୍ତ ୨୫ ” | ୩୨ ” |
| ୧୯ ହରିଭକ୍ତ ୧୭ ” | ୨୨ ” |
| ୧୬ ହରିଭକ୍ତ ୧୩ ” | ୧୦ ” |
| ୭୯ ମଣ୍ଡଳୀ | ୯୦ ମଣ୍ଡଳୀ |

୧୯୧୬-୯୪ ମଧ୍ୟରେ ଏଗାରଟି ମଣ୍ଡଳୀ ବଢ଼ି ଆଜି ମଣ୍ଡଳୀ ସଂଖ୍ୟା ନବେ ହୋଇଥିଲେ ମଧ୍ୟ ଅନୁଷ୍ଠାନ 'ବାସ୍ତରିହରି ସଙ୍କୀର୍ତ୍ତନ ମଣ୍ଡଳୀ' ଭାବରେ ନାମିତ ହୋଇ ଆସୁଅଛି ।

ଏହି ଅନୁଷ୍ଠାନ କଟକର ସାଂସ୍କୃତିକ ପରମ୍ପରାକୁ ଉଜ୍ଜୀବିତ ରଖିବାରେ ସାହାଯ୍ୟ କରି ଆସୁଅଛି । ଅତୀତରେ ରାଜାଙ୍କ ନିମନ୍ତ୍ରଣରେ ଅନୁଷ୍ଠାନ ଭାଗ ନେଉଥିଲା । ଏବେ ମଧ୍ୟ ବାର୍ଷିକ ଯାନଯାତ୍ରା ପର୍ବପର୍ବାଣି ସମେତ ବିଶେଷ ଉତ୍ସବ-ମାନଙ୍କରେ ନିମନ୍ତ୍ରଣ ପାଇ ଯୋଗ ଦେଉଅଛି । ପ୍ରତିବର୍ଷ ଗଡ଼ଗଡ଼ିଆ ଘାଟରେ କାର୍ତ୍ତିକ ପୂର୍ଣ୍ଣିମୀରେ, ପାଦପଦ୍ମ ପୀଠରେ କୀର୍ତ୍ତନ କରି ଆସୁଛନ୍ତି । ଦୋଳମେଳଣ ବେଳେ ଦୋଳ ଦଶମୀରୁ ପୂର୍ଣ୍ଣିମୀ ପର୍ଯ୍ୟନ୍ତ ଚାରି ହରିଭକ୍ତ ସ୍ୱ ସ୍ୱ ହରିଭକ୍ତର ଦାୟିତ୍ୱ ତୁଲାଉଛନ୍ତି । କଟକ ସହର ଓ ଅନ୍ୟତ୍ର ଭାଗ ନେଉଛନ୍ତି । ୧୯୮୩ ମସିହାରେ ବିଶ୍ୱହିନ୍ଦୁ ପରିଷଦ ଦ୍ୱାରା ଆୟୋଜିତ ଏକାତ୍ମ ଯଜ୍ଞରେ ଏହି ସଙ୍କୀର୍ତ୍ତନ ମଣ୍ଡଳୀମାନ ସହଯୋଗ କରି ଶ୍ରୀକ୍ଷେତ୍ରରୁ ଆଗତ ରଥରେ ସଂକୀର୍ତ୍ତନ ପରିବେଷଣ କରିଥିଲେ । ୧୯୮୪ ମସିହା ଡିସେମ୍ବର ମାସରେ କଟକ ଶଙ୍କରୀବାଦଭବନ ଠାରେ ପଣ୍ଡିତ

ସଦାଶିବ ରଥଶର୍ମାଙ୍କ ଉଦ୍ୟମରେ ଯେଉଁ ଭବ୍ୟ ଜଗନ୍ନାଥ ଚେତନା ମହାଧିବେଶନ ହୋଇଥିଲା ତାହା କଟକ ପାଇଁ ସ୍ମରଣୀୟ । ଗଜପତି ଦିବ୍ୟସିଂହଦେବଙ୍କ ନେତୃତ୍ୱରେ ଯେଉଁ ବିମାନ ଶୋଭାଯାତ୍ରା କଟକ ସହର ପରିକ୍ରମା କରିଥିଲା—ଏଥିରେ 'ବାସ୍ତବେଗ ସଂକୀର୍ତ୍ତନ ମଣ୍ଡଳୀ'ର ମହତ୍ତ୍ୱପୂର୍ଣ୍ଣ ଯୋଗଦାନକୁ ଲେଖକ ନିଜେ ଅନୁଭବ କରିଅଛି । ଶ୍ରୀ ଚୈତନ୍ୟଦେବଙ୍କ ପଞ୍ଚଶତ ଜନ୍ମବାର୍ଷିକୀ ଉପଲକ୍ଷେ ସଂକୀର୍ତ୍ତନ ମଣ୍ଡଳୀମାନେ ବାସ୍ତବୀ ମଠରୁ ଶୋଭାଯାତ୍ରା କରିଥିଲେ ।

୧୯୮୬ରେ ପୁରୀଠାରେ ଅନୁଷ୍ଠିତ "ଶ୍ରୀଚୈତନ୍ୟ ଜନ୍ମ ପଞ୍ଚଶତ ବାର୍ଷିକୀ" ସମାରୋହରେ କଟକରୁ ପାଞ୍ଚଶହ ମୃଦଙ୍ଗ ସହ କୀର୍ତ୍ତନମଣ୍ଡଳୀ ଯୋଗ ଦେଇ ଶ୍ରୀଜଗନ୍ନାଥ ମନ୍ଦିର ସମ୍ମୁଖରେ ଶରଧାବାଲିରେ ଯେଉଁ ହୃଦୟ ଆହ୍ଲାଦକ ଦୃଶ୍ୟ ସୃଷ୍ଟି କରିଥିଲେ ତାହା ଏହି ପ୍ରାବନ୍ଧକର ଆଜୀବନ ସ୍ମରଣ ରହିବ । ଅନୁଷ୍ଠାନର ମହତ୍ କାର୍ଯ୍ୟ ପାଇଁ ଗଜପତି ଦିବ୍ୟସିଂହ ଦେବ ୧୯୮୬ ମସିହା ଦୋଳ ପୂର୍ଣ୍ଣିମୀ ଦିନ ଯେଉଁ ଅଭିନନ୍ଦନ ପତ୍ର ପ୍ରଦାନ କରିଥିଲେ, ତାହା ଏଠାରେ ଉଦ୍ଧାର କରିବା ସମୁଚିତ ହେବ ।

"ଶ୍ରୀଶ୍ରୀ ଗୌରାଙ୍ଗ ଦେବୋ ଜୟତି<br>ଶ୍ରୀକ୍ଷେତ୍ର ନୀଳାଚଳ ଗୌରଗମ୍ଭୀରା, ପୁରୀ<br>ସନ୍ ୧୯୮୬ ମସିହା ଦୋଳ ପୂର୍ଣ୍ଣିମା ।"

କଟକ ସହର ବାସ୍ତବେଗ ସଂକୀର୍ତ୍ତନ ମଣ୍ଡଳୀ ଅନ୍ତର୍ଭୁକ୍ତ ଗୁରୁବେଗ ସଂକୀର୍ତ୍ତନ ମଣ୍ଡଳୀର ସର୍ବାଧିକାରୀମାନଙ୍କ ବଳିଷ୍ଠ ନେତୃତ୍ୱ ଓ ଚରମ ନିଷ୍ଠାରେ ପରିଚାଳିତ ସର୍ବ-ବୃହତ୍ ସଂକୀର୍ତ୍ତନମଣ୍ଡଳୀ ପାଞ୍ଚଶତ ଖୋଳ ଓ ତାଳ, ଧ୍ୱଜା ସହ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପାଞ୍ଚଶତ ବାର୍ଷିକ ଆବିର୍ଭାବ ଉତ୍ସବ ସମାରୋହ ଉପଲକ୍ଷେ, ଶ୍ରୀକ୍ଷେତ୍ର ଶରଧାବାଲି ଉପରେ ହରିସଂକୀର୍ତ୍ତନଜନିତ ଯେଉଁ ପ୍ଲାବନ ସୃଷ୍ଟି କରିଥିଲେ, ତାହା ଅବିସ୍ମରଣୀୟ ଓ ଅଭିନନ୍ଦନୀୟ ଅଟେ । ଏହି ମହୋତ୍ସବ ନିମନ୍ତେ ଗଠିତ ପଞ୍ଚଶତ ବାର୍ଷିକୀ ସମାରୋହ ସମିତି ଓ ଉତ୍କଳୀୟ ଗଜପତି ମହାରାଜା ଶ୍ରୀଶ୍ରୀ ଦିବ୍ୟସିଂହଦେବଙ୍କ ସ୍ୱାକ୍ଷରରେ ସଂକୀର୍ତ୍ତନ ଅନୁଷ୍ଠାନର ନିମ୍ନଲିଖିତ ସର୍ବାଧିକାରୀମାନଙ୍କୁ ଅଭିନନ୍ଦନ ପତ୍ର ପ୍ରଦତ୍ତ ହେଲା ।

"ବାସ୍ତବୀ ବେଗ ସଂକୀର୍ତ୍ତନ ଅନୁଷ୍ଠାନ ପ୍ରତିଷ୍ଠିତ ଦେବ<br>ପଚିଶ ବେଗ ସର୍ବାଧିକାରୀ ଶ୍ରୀ ହରିଶ୍ଚନ୍ଦ୍ର ମହାରଣା<br>ବାଇଶ ବେଗ ସର୍ବାଧିକାରୀ ଶ୍ରୀ ଜଗବନ୍ଧୁ ସାହୁ<br>ଊଣେଇଶି ବେଗ ସର୍ବାଧିକାରୀ ଶ୍ରୀ କୃଷ୍ଣଚନ୍ଦ୍ର ସାହୁ<br>ଷୋହଳ ବେଗ ସର୍ବାଧିକାରୀ ଶ୍ରୀ କୁଞ୍ଜବିହାରୀ ସାହୁ ।

ସ୍ୱାକ୍ଷର<br>(ଦିବ୍ୟସିଂହ ଦେବ)<br>ଉତ୍କଳର ଗଜପତି ମହାରାଜା

କଟକ ସହରର ଏହି ମହାନ୍ ଅନୁଷ୍ଠାନ ବିଷୟରେ ଦାନପତ୍ର—ଅଭିନନ୍ଦନ ପତ୍ର ସମେତ ତଥ୍ୟମାନ ଯୋଗାଇ ଦେଇ ମୋର ଅଗ୍ରଜତୁଲ୍ୟ ପଚଶଦଗଭଗ ସଂକୀର୍ତ୍ତନ ମଣ୍ଡଳୀର ସର୍ବାଧିକାରୀ ଶ୍ରୀ ହରିଶଚନ୍ଦ୍ର ମହାରଣା ମୋତେ ଋଣୀ କରାଇଛନ୍ତି । ଅନୁଷ୍ଠାନ ବିଷୟରେ ସେ କହନ୍ତି—"କଟକର ଏହି ପ୍ରାଚୀନ ଅନୁଷ୍ଠାନ ବହୁ କାର୍ଯ୍ୟକ୍ରମରେ ଯୋଗ ଦେଇଛି । ଓଡ଼ିଶାର ପାରମ୍ପରିକ ଖୋଳ ଓ ତାଳ ସହ କୀର୍ତ୍ତନ କରି ଆସୁଅଛି ଏବଂ କଟକ ଭିନ୍ନ ପୁରୀ ପ୍ରଭୃତି ସ୍ଥାନରେ ବର୍ଷର ବିଭିନ୍ନ ସମୟରେ ଯୋଗ ଦେଉଛି । କଟକର ଏକ ପ୍ରାଚୀନ ସଂଗଠିତ ଅନୁଷ୍ଠାନ ଭାବରେ ସବୁବେଳେ ଏହାର ସୁନାମ ରହିଆସିଛି ।"

ସହସ୍ରାବ୍ଦର ଭୂକ୍ତଭୋଗୀ କଟକ ସହରରେ ପଞ୍ଚଶତ ବର୍ଷ ଧରି ଚାଲିଆସୁଥିବା "ବାପ୍ତଶଦଗ ସଂକୀର୍ତ୍ତନ ମଣ୍ଡଳୀ" ଖାଲି କଟକ ପାଇଁ କାହିଁକି ଓଡ଼ିଶା ପାଇଁ ମଧ୍ୟ ଗୌରବଯୁକ୍ତ ଅନୁଷ୍ଠାନ । ସମୟର ଉତ୍ଥାନ-ପତନରେ କ୍ରମବର୍ଦ୍ଧମାନ ହୋଇ କଟକର ସମସ୍ତ ମେଳା, ମହୋତ୍ସବ, ଯାନଯାତ୍ରାକୁ ସଫଳ କରିଛି । ସହରର ସୁଖଦୁଃଖ, ଜନ୍ମ ଓ ମୃତ୍ୟୁ, ଆନନ୍ଦ ଓ ନିରାନନ୍ଦକୁ ଏକ ମଣିଛି, ଏକ କରିଛି, ସମଗ୍ର ସହରକୁ ଏକସୂତ୍ରରେ ବାନ୍ଧିରଖି ଭ୍ରାତୃତ୍ୱ ଓ ପ୍ରେମର ମନ୍ଦାକିନୀ ସୃଷ୍ଟି କରିଛି । ମହାନଦୀ-କାଠଯୋଡ଼ିର ନିର୍ମଳ ଜଳରାଶିକୁ ନାମପ୍ରେମର ବନ୍ୟାରେ ସଂଯୋଜିତ କରିଛି । ଅଭିନବ ବାରାଣସୀର ନାମ ଆଜି କେବଳ କଟକରେ ପର୍ଯ୍ୟବସିତ ଥିଲେ ଅତୀତର ଅଭିନବ ବାରାଣସୀ ଆଜି ମଧ୍ୟ ଏ କ୍ଷେତ୍ରରେ ଅଭିନବ ଦୃଷ୍ଟାନ୍ତ ହୋଇ ରହିଛି । ଏହି ଅନୁଷ୍ଠାନ ସହରର ଇତିହାସକୁ ନିଜ ଅଙ୍ଗେ ନିଭାଇଛି, ପରମ୍ପରାକୁ ତୋଳି ଧରିଛି । କଟକର ପ୍ରାଚୀନ ସଂସ୍କୃତିକୁ ଋଦ୍ଧିମନ୍ତ କରିଛି । ଇତିହାସ ଓ ପରମ୍ପରାର ମିଳନ ବେଦୀ ହୋଇଛି—ବାପ୍ତରିଦଗ ସଂକୀର୍ତ୍ତନ ମଣ୍ଡଳୀ ।



# କଟକ ନଗରର ନାରୀ-ପ୍ରତିଭା

**ଶ୍ରୀମତୀ ସରୋଜିନୀ ମିଶ୍ର**

୧୮୬୬ ମସିହାର ନ'ଙ୍କ ଦୁର୍ଭିକ୍ଷ ଓଡ଼ିଶାର ସମାଜ ଜୀବନକୁ ଧ୍ୱସ୍ତବିଧ୍ୱସ୍ତ କରି ଦେଇଥିଲା । ଏହି ଧ୍ୱଂସର ପାଉଁଶ ଗଦା ମଧ୍ୟରୁ ନବ ସୂର୍ଯ୍ୟର ଝଲକ ନେଇ ଉଦିତ ହୋଇଥିବା ଓଡ଼ିଶାର ଅଗ୍ରମାରମ୍ଭ ତଥା ଆୟୁଷ ମାତ୍ର ଦେଢ଼ଶତ ବର୍ଷ ମଧ୍ୟରେ ସୀମାବଦ୍ଧ । ଆଧୁନିକ ଓଡ଼ିଶାର ଏହି ବିକାଶ ପର୍ବର କେନ୍ଦ୍ରବିନ୍ଦୁ କଟକ ନଗରର ଭୂମିକା ଇତିହାସ ଦୃଷ୍ଟିରୁ ଅପରିହାର୍ଯ୍ୟ, ଅକ୍ଷତର କଟକ ମହାନଗର । ସୁଦୂର ପ୍ରସାରିତ ବିଶାଳବକ୍ଷ ମହାନଦୀ ଓ କାଠଯୋଡ଼ିର ମଧ୍ୟଭାଗରେ ଅବସ୍ଥିତ ଏହି କଟକ ନଗର । ନଦୀ ସମତଳଠାରୁ ନିମ୍ନଦେଶରେ 'କଟେଇ'ର ଆକୃତି ନେଇ ଗଢ଼ିଉଠିଛି ଏହି ନଗର ।

ତେଣୁ ସ୍ୱାଭାବିକ ଭାବରେ କଟକ ଭୂଖଣ୍ଡରେ ବହୁ ଝରଣା, ଜଳାଶୟ ପ୍ରଭୃତି ଏହାକୁ ଅସ୍ୱାସ୍ଥ୍ୟକର ଜନବସତିରେ ପରିଣତ କରାଇଥିଲା । କଳିଙ୍ଗ ସାମ୍ରାଜ୍ୟର ସୀମାନ୍ତ ଭୂମିରୂପେ ସୀମାନ୍ତ ଦୁର୍ଗ ବାରବାଟୀର ସେନାଛାଉଣି ଶାସନରେ କଟକର ଜନପଦ ରହିବା ପୂର୍ବରୁ ଏଠାରେ ବହୁ ସାଧୁ,ସନ୍ଥ ସେମାନଙ୍କର ଆଧ୍ୟାତ୍ମିକ ସାଧନା କରି ଯାଇଥିଲେ । ଅଦ୍ୟାବଧି ମଧ୍ୟ ସେମାନଙ୍କ ଲଳିତ ଚେତନାର ସ୍ପର୍ଶରେ ଗଢ଼ିଉଠିଥିବା ବହୁ ମଠ, ମନ୍ଦିର ପରିଲକ୍ଷିତ ହୁଏ । ୮୭ଟି ମଠ ଓ ମନ୍ଦିରକୁ ନେଇ ଏବଂ ଚାରିପାଖରେ ବିସ୍ତୃତ ଚାଷଜମି, ସବୁଜ ଅରଣ୍ୟ, ଅପାଟେଶାର ସୌନ୍ଦର୍ଯ୍ୟର ପୁଷ୍ପିତ ଗଛ, ଲତା, ସିମେଣ୍ଟ କଂକ୍ରିଟର ଚୂନଧଉଳା ବା ଭିନ୍ନ ଭିନ୍ନ ରଙ୍ଗରେ ଶୋଭିତ କୋଠାବାଡ଼ି, ଗୁଳଛପର ଝୁମ୍ପୁଡ଼ି ଘରକୁ ନେଇ କଟକର ସାମାଜିକ ଜୀବନ ଗଢ଼ି-ଉଠିଛି । ବାରବାଟୀ ଦୁର୍ଗରେ ସୈନ୍ୟସାମନ୍ତ, ମନ୍ଦିରରେ ପୂଜକ ଓ ତାର ପରିବାର, ମଠରେ ସାଧୁ ଓ ତାଙ୍କର ଶିଷ୍ୟମାନଙ୍କର ସେବା କରିବା ପାଇଁ ଓଡ଼ିଶାର ଗଜପତି କଟକକୁ ଚରମ ଅପରାଧୀମାନଙ୍କର 'ଅଟକ'ରେ ପରିଣତ କରିଥିଲେ । ଏହି ହତଭାଗ୍ୟ ଦଣ୍ଡିତ ଅପରାଧୀମାନେ ଗୋଟିଏ ଗୋଟିଏ ମଠ ବା ମନ୍ଦିରର ଅଧୀନରେ ଚାଷ କାମ କରି ମନ୍ଦିର କୋଷରୁ ପ୍ରସାଦ ଖାଇ ଜୀବନ ଅତିବାହିତ କରୁଥିଲେ ।

ତେବେ ମାଛ ମାରି ଜୀବିକା ନିର୍ବାହ କରୁଥିବା କେଉଟ, ଗାଈ ଚରାଇ ଦୁଧ, ଦହି, ଘିଅ, ଛେନା ବେପାର କରି ବଞ୍ଚୁଥିବା ଗଉଡ଼, ତେଲି, ହଳଦି ବ୍ୟବସାୟ କରୁଥିବା ତେଲି ହେଉଛନ୍ତି ତତ୍କାଳୀନ କଟକର ଆଦିମ ଅଧିବାସୀ । ପରେ ବୟନ ଶିଳ୍ପର କେନ୍ଦ୍ର ଭାବରେ ଓଡ଼ିଆ-ବାଉରି, ବଙ୍ଗାଳୀ-ତନ୍ତୀ ଓ ତେଲେଙ୍ଗା ତନ୍ତୀମାନେ କଟକରେ ବସତି ସ୍ଥାପନ କରିଥିଲେ । ଆଫଗାନମାନେ ଓଡ଼ିଶା ଦଖଲ କରି କଟକକୁ ତାଙ୍କର ଶାସନ କେନ୍ଦ୍ର କରିଥିଲେ । ପରବର୍ତ୍ତୀକାଳରେ ମରହଟ୍ଟାବର୍ଗୀମାନେ ଓଡ଼ିଶା ଅଧିକାର କରି କଟକକୁ ସେମାନଙ୍କର କେନ୍ଦ୍ର କଲେ ଏବଂ ସେମାନଙ୍କର ଦୌରାତ୍ମ୍ୟରେ ଆଦି-କଟକୀ ଲୋକେ ଚୌଦ୍ୱାର-ଟାଙ୍ଗୀରେ ବସବାସ କଲେ ।

୧୮୦୩ ମସିହାରୁ ୧୮୭୬ ମସିହା ପର୍ଯ୍ୟନ୍ତ ବ୍ରିଟିଶଶାସକମାନେ ପୁରୀ ସହରକୁ ଶାସନ କେନ୍ଦ୍ର କରି ପରେ କଟକକୁ ରାଜଧାନୀ ସ୍ଥାନାନ୍ତରିତ କରିବାରୁ ଅନେକ ବର୍ଗୀ କଟକ ଛାଡ଼ି ପଳାଇଲେ । ଟାଙ୍ଗୀରୁ ଆଦିକଟକୀମାନେ ଫେରିଆସି ପୁନର୍ବାର କଟକରେ ବାସ କରିବାକୁ ଲାଗିଲେ । ଇଂରେଜ ଶାସନର ପ୍ରଶାସକ ଭାବରେ ପୂର୍ବବଙ୍ଗରୁ ଆସିଥିବା ନେଟିଭ-ବଙ୍ଗାଳୀ ଓଡ଼ିଶାରେ ଶହ ଶହ ବର୍ଷ ଧରି ବସବାସ କରିଥିବା କେଭି-ବଙ୍ଗାଳୀ ଏବଂ ଅତି ଅଧୁନା ଋକବରେ ଯୋଗ ଦେଉଥିବା ଓଡ଼ିଆମାନେ "ନବ୍ୟକରଣ" ଭାବରେ ଆଧୁନିକ ଓଡ଼ିଶାର ପ୍ରାଣ ପ୍ରତିଷ୍ଠା କରିବାପାଇଁ ଉଦ୍ୟମ କରିଥିଲେ ।

ସେମାନଙ୍କୁ ସାହାଯ୍ୟ ସହଯୋଗ କରୁଥିଲେ ଖ୍ରୀଷ୍ଟଧର୍ମ ପ୍ରଚାର କରୁଥିବା ମିଶନାରୀ ପାଦ୍ରିମାନେ । ସେତେବେଳକୁ ଦକ୍ଷିଣ ଓଡ଼ିଶା, ମାନ୍ଦ୍ରାଜ ଅଧୀନରେ ଏବଂ ପଶ୍ଚିମ ଓଡ଼ିଶା ମଧ୍ୟପ୍ରଦେଶ ଅଧୀନରେ ଥିଲା । ଗଡ଼ଜାତ ରାଜା ଓ ଜମିଦାରମାନେ ଥିଲେ ସ୍ୱତନ୍ତ୍ର । କେବଳ ଉପକୂଳବର୍ତ୍ତୀ ବାଲେଶ୍ୱର, କଟକ ଏବଂ ପୁରୀ ବଙ୍ଗ ପ୍ରେସିଡ଼େନ୍‌ସି ଅଧୀନରେ ଓଡ଼ିଶା ଡିଭିଜନ ଭାବରେ ପରିଚିତ ଥିଲା । ହଣ୍ଟରଙ୍କ ଓଡ଼ିଶା ସୁବର୍ଣ୍ଣରେଖା ନଦୀର ଉତ୍ତରକୁ ଥିବା ବିସ୍ତୃତ ମେଦିନୀପୁର ଅଞ୍ଚଳ, ବଙ୍ଗଭାଷୀ ଭାବରେ ସତ୍ତା ହରାଇ ସାରିଥିଲା । ଓଡ଼ିଶାର ସମାଜ ଜୀବନକୁ ନିୟନ୍ତ୍ରଣ କରୁଥିଲେ ସୂର୍ଯ୍ୟାସ୍ତ ଆଇନ୍ ବଳରେ ବଡ଼ ବଡ଼ ଜମିଦାରୀ କିଣିଥିବା ବଙ୍ଗ-ମହାକରଣର କର୍ମଚାରୀମାନେ ।

ଓଡ଼ିଶାର ସ୍ୱାଭାବିକ ପରମ୍ପରା ଏବଂ ଏହି ନୂତନ ଶକ୍ତିର ସଂଘର୍ଷ ଫଳରେ ସୃଷ୍ଟି ହୋଇଥିବା ସାହିତ୍ୟର ପ୍ରତିଧ୍ୱନି ଆଜି ସବୁଠି ଅନୁରଣିତ ହେଉଛି । ସେହି ସାହିତ୍ୟ ପାଖୁଡ଼ାର ମହକ ସୁରକ୍ଷିତ ହୋଇଛି ସଙ୍ଗୀତ ଏବଂ ନୃତ୍ୟ ଗୀତରେ । ତତ୍କାଳୀନ ଓଡ଼ିଶା ଡିଭିଜନ କମିଶନର ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ହିସାବରେ ରାଜପୁତ୍ରମାନଙ୍କର ଆଧୁନିକ ଶିକ୍ଷାର ବ୍ୟବସ୍ଥା ଏହି କଟକ ନଗରରେ କରାଇ ସେମାନଙ୍କର ଅଭିଭାବକ ହୋଇଥିଲେ । ତେବେ ଆଧୁନିକ ବିଜ୍ଞାନ ଏବଂ ପ୍ରଯୁକ୍ତି

ବିଜ୍ଞାନ ପାଇଁ ସ୍ଥିତିରେ ବହୁ ପରିବର୍ତ୍ତନ ଘଟିଲା ଏବଂ ଉତ୍ପାଦନ ପଦ୍ଧତିରେ ପରିବର୍ତ୍ତନ ଦ୍ୱାରା ବ୍ୟକ୍ତିଜୀବନ ଓ ପରିବାର ଜୀବନରେ ଆମୂଳଚୂଳ ପରିବର୍ତ୍ତନ ହେଲା । ଏହି କାରଣରୁ ମୂଲ୍ୟବୋଧର ଧାରା ମଧ୍ୟ ବଦଳିଗଲା । ନାରୀ ଆଉ ପୂର୍ବର ସୀତା, ସାବିତ୍ରୀଙ୍କ ମୂଲ୍ୟବୋଧଗୁଡ଼ିକ ପରମ୍ପରାକୁ ଆବୋରି ଧରି ସତ୍ତା, ପତିବ୍ରତାର ପରାକାଷ୍ଠା ଦେଖାଇ ନିଜର ପ୍ରତିଭା ଜ୍ଞାନ, ଧୀ ଶକ୍ତିର ବିକାଶ କରିବାକୁ ଚାହିଁଲା ନାହିଁ । ସମଗ୍ର ପଶ୍ଚିମ ଭୂଖଣ୍ଡରେ ନାରୀ ପୁରୁଷର ସହଯୋଗୀ ନ ହୋଇ ହୋଇଛନ୍ତି ପ୍ରତିଦ୍ୱନ୍ଦ୍ୱୀ । ସେ ଅମଲାତନ୍ତ୍ରରେ ମୂଳରୁ ଚୂଳ ଯାଏ କାର୍ଯ୍ୟ ନିର୍ବାହ କରିପାରୁଛି ।

କଳକାରଖାନାରେ ଅନାୟାସରେ ଶ୍ରମିକ ଭାବରେ କାର୍ଯ୍ୟ ସମ୍ପାଦନ କରି ନିଜ କର୍ମକୁଶଳତାର ପ୍ରମାଣ ଦେଇ ପାରୁଛି । ବିଜ୍ଞାନ, କାରିଗରୀ, ଚିତ୍ରକଳା, ନୃତ୍ୟଗୀତ ସାହିତ୍ୟ ପ୍ରତ୍ୟେକ କ୍ଷେତ୍ରରେ ସେ ଅସୀମ ପାରଦର୍ଶିତା ଲାଭକରି ସମାଜକୁ ଦେଉଛି ମୂଲ୍ୟବାନ ଅବଦାନ । ନିଜସ୍ୱ ପ୍ରତିଭା ବଳରେ ଏବଂ ଦୃଢ଼ ଅଧ୍ୟବସାୟ ବଳରେ ସେ ହୋଇପାରୁଛି ଯଶସ୍ୱିନୀ । ପୁରୁଷଠାରୁ ସେ କୌଣସି ଗୁଣରେ ନ୍ୟୂନ ନୁହେଁ କି ମାନସିକ ସ୍ତରରେ ମଧ୍ୟ ଅପାରଗ ନୁହେଁ । ବରଂ ସର୍ବତୋଭାବେ ସେ ପରିପୂର୍ଣ୍ଣା, ସ୍ୱୟଂସଂପୂର୍ଣ୍ଣା ପ୍ରତିଭାମୟୀ ନାରୀ । ତେଣୁ କେବଳ ଅର୍ଥନୈତିକ କାରଣରୁ ସେ କାହିଁକି ପୁରୁଷର ଅନ୍ଧ ବର୍ବରତାର ଶିକାର ହେବ ? କାହିଁକି ତା'ର ଚିରଅମ୍ଳାନ ପ୍ରତିଭାକୁ ପୁରୁଷପ୍ରଧାନ ସମାଜର ଅବିବେକିତା ପାଖରେ ନିଷ୍ପ୍ରଭ ହେବାକୁ ଦେବ ? ଏହି ଚିନ୍ତାଧାରାରେ ନାରୀ ଅର୍ଥନୈତିକ ସ୍ୱାତନ୍ତ୍ର୍ୟ ସଙ୍ଗେ ସଙ୍ଗେ ନିଜର ସ୍ୱତନ୍ତ୍ର ସ୍ଥିତି ଓ ବଳିଷ୍ଠ ବ୍ୟକ୍ତିତ୍ୱ ସାବ୍ୟସ୍ତ କରିବାକୁ ତତ୍ପର ହୋଇ ଉଠିଲା ।

ତେବେ ଏହି ବିରାଟ ଆନ୍ତର୍ଜାତିକ ପରିବର୍ତ୍ତନର ପ୍ରଭାବ କ୍ରମବର୍ଦ୍ଧିଷ୍ଣୁ କଟକ ନଗରୀରେ ବହୁଳ ଭାବରେ ନ ହେଲେ ମଧ୍ୟ କେତେକାଂଶରେ ଅନୁଭୂତ ହୋଇ ପାରିଛି । ଓଡ଼ିଶା ସେଭଳି ଶିଳ୍ପସମୃଦ୍ଧ ରାଜ୍ୟ ନୁହେଁ କିମ୍ବା ପଶ୍ଚିମା ମୂଲ୍ୟବୋଧରେ ନୂତନ ବାତାବରଣ ପାଇଁ ଓଡ଼ିଶାରେ ସେଭଳି ସୁଯୋଗ ନାହିଁ । ତେବେ ଓଡ଼ିଶାରେ ରାଜଧାନୀ ଭୁବନେଶ୍ୱର ଓ ଶିଳ୍ପନଗରୀ ରାଉରକେଲାରେ ଅନେକ ପରିମାଣରେ ଓଡ଼ିଆ ନାରୀ ସ୍ୱାତନ୍ତ୍ର୍ୟକାମୀ ହୋଇଛି । କଟକରେ ଖ୍ରୀଷ୍ଟିୟାନ ଏବଂ ବଙ୍ଗଭାଷୀ ପରିବାରରେ ନାରୀମାନେ ଯେତେ ପରିମାଣରେ ପ୍ରଗତିଶୀଳ ଅନ୍ୟ ସଂପ୍ରଦାୟର ନାରୀମାନେ ସେତେ ଅଗ୍ରସର ହୋଇପାରି ନାହାନ୍ତି ।

ତଥାପି ଆଧୁନିକ ଶିକ୍ଷା ଓଡ଼ିଶାରେ ବହୁ ଶିକ୍ଷିତ ଶ୍ରେଣୀ ସୃଷ୍ଟି କରିଛି । ଏହି ଶ୍ରେଣୀର ପରିବାରଙ୍କ ସମ୍ପର୍କ ଗ୍ରାମାଞ୍ଚଳ ସହିତ ନିବିଡ଼ ହୋଇଥିଲେ ମଧ୍ୟ ମୁଖ୍ୟତଃ ଏମାନେ ସହରବାସୀ । ସହରବାସୀ ସାଧାରଣତଃ ଉଚ୍ଚଶିକ୍ଷିତ ଏବଂ ଅଧିକାଂଶ ବହୁ ପଦପଦବୀରେ ଅବସ୍ଥାପିତ । ଏହି ପରିବାରର ନାରୀମାନେ ହେଉଛନ୍ତି ଅବସର-ଭୋଗୀ । କାରଣ ଘରର କାର୍ଯ୍ୟ ତୁଲାଇବାକୁ ନାନା ଭାବରେ ସେମାନେ ସାହାଯ୍ୟ ପାଇଥାନ୍ତି । ଯେଉଁ ଗୃହିଣୀମାନେ ନିଜ ହାତରେ ଘରକାର୍ଯ୍ୟ ସମ୍ପାଦନା କରିଥାନ୍ତି

ସାରା ବସ୍ତ୍ରବର ସେମାନଙ୍କ ହାତରେ ଥାଏ । ଏହାକୁ ସମୟୋପଯୋଗୀ କରିବାକୁ କେହି ପୁସ୍ତକ ଅଧ୍ୟୟନ କରେ ତ କେହି ସୁନ୍ଦର ସୁନ୍ଦର କୁଟୀରଶିଳ୍ପ, ଛବି, ମୂର୍ତ୍ତି, କଟିଂ ଡଲ୍, ଫେଲରଙ୍ଗ୍ ଇତ୍ୟାଦି କରି ଆଞ୍ଚଳିକ ବା ସର୍ବଭାରତୀୟ ସ୍ତରରେ ଉଚ୍ଚ-ପ୍ରଶଂସିତ ହୋଇ ପାରିଛନ୍ତି । ଗ୍ରାମାଞ୍ଚଳକୁ ମଧ୍ୟ ଏହା ପ୍ରସାରିତ ହୋଇ ଗ୍ରାମ୍ୟ ମହିଳା ଓ ଯୁବତୀମାନଙ୍କୁ କର୍ମଜୀବିନୀ କରିପାରୁଛି । କେବଳ ସେତିକି ନୁହେଁ, ବିଭିନ୍ନ ଖାଦ୍ୟ ପ୍ରସ୍ତୁତିରେ ନାରୀର ନିପୁଣତା ମଧ୍ୟ ବହୁଭାବରେ ନିହିତ ରହିଛି । ସ୍ୱାଧୀନତା ପରେ ଆଧୁନିକ ନାରୀ ଶିକ୍ଷାର ସୁଯୋଗରେ ବହୁ ନିରକ୍ଷରା ବା ଅର୍ଦ୍ଧଶିକ୍ଷିତା ଝିଅମାନେ ଉଚ୍ଚଶିକ୍ଷିତା ହୋଇପାରି ନିଜକୁ କର୍ମଜୀବିନୀ କରି ପାରୁଛନ୍ତି । ତେଣୁ ପୂର୍ବର ସାମାଜିକ ପ୍ରତିବନ୍ଧକ; ଏବଂ ମୂଲ୍ୟବୋଧ ଓ ବିଚାର ପ୍ରଣାଳୀ କ୍ରମେ ଶିଥିଳ ହେଉଛି ।

ଆଧୁନିକ ଶିକ୍ଷିତ ସଂପ୍ରଦାୟମାନଙ୍କ ଦ୍ୱାରା ଗଠିତ ଏହି ମଧ୍ୟବିତ୍ତ ଶ୍ରେଣୀର ଓଡ଼ିଆ ନାରୀମାନଙ୍କ ମଧ୍ୟରୁ ଅନେକ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟକରି ନୂତନ ଓଡ଼ିଶା ଗଠନ ପାଇଁ ଉଦ୍ୟମ କରି ଆସିଛନ୍ତି । ଓଡ଼ିଶାର ପ୍ରାଣକେନ୍ଦ୍ର କଟକ ନଗର ସେହିମାନଙ୍କର ପ୍ରେରଣାର ଉତ୍ସ । ନାରୀ ଶିକ୍ଷା ବିଶେଷତଃ ଉଚ୍ଚ ନାରୀ ଶିକ୍ଷା ପ୍ରଥମେ ଏହି କଟକ ନଗରରେ ଆରମ୍ଭ ହୋଇ ତା'ପରେ ଗ୍ରାମାଞ୍ଚଳକୁ ବ୍ୟାପିଥିଲା । କଟକ ଯଦି ହୁଏ ନାରୀ ଶିକ୍ଷାର ବଟବୃକ୍ଷ, ପଲ୍ଲୀ ବା ଗ୍ରାମାଞ୍ଚଳ ତା'ର ଶାଖାପ୍ରଶାଖା ଓ ଓହଳ । ଏଠାରେ ଉତ୍କଳ ଗୌରବ ମଧୁସୂଦନଙ୍କ ଚେଷ୍ଟା ଓ ପ୍ରେରଣାରେ ହିନ୍ଦୁ ବାଳିକା ବିଦ୍ୟାଳୟ (ବର୍ତ୍ତମାନର ରେଭେନ୍‌ସା ଗାର୍ଲସ ସ୍କୁଲ) ଏବଂ ନାରୀ ମହା-ବିଦ୍ୟାଳୟ (ବର୍ତ୍ତମାନର ଶୈଳବାଳା ମହିଳା କଲେଜ) ସ୍ଥାପନ କରାଯାଇଥିଲା । କଟକର ମୁଖ୍ୟତଃ ଖ୍ରୀଷ୍ଟିୟାନ ଝିଅ, ବୋହୂମାନେ ସାରା ଓଡ଼ିଶାର ଦୂରଦୂରାନ୍ତରେ ପ୍ରାଥମିକ ଶିକ୍ଷାର ପ୍ରସାର ପାଇଁ ଜୀବନ ବିତାଇ ଦେଇଛନ୍ତି ।

ବର୍ତ୍ତମାନ ହିନ୍ଦୁ ଝିଅବୋହୂମାନେ ମଧ୍ୟ ଏହି କାର୍ଯ୍ୟରେ ନିଜକୁ ନିୟୋଜିତ କଲେଣି । ପୁରୁଷ ବିଚାରର କାରାଗାରରୁ ମୁକୁଳି ଆସି ଏହି କଟକ ନଗରୀର ଚେତନଶୀଳ ଝିଅମାନେ ନିଜ ନିଜ ପ୍ରତିଭାର ବିକାଶ ପାଇଁ ସାଧନା ଆରମ୍ଭ କଲେଣି । ନିଜକୁ ଅସୂର୍ଯ୍ୟମ୍ପଶ୍ୟା ଭଳି ଆଉ ଗୋପନ ନ ରଖି ସାହିତ୍ୟ, ନୃତ୍ୟ, ଚଳଚ୍ଚିତ୍ରରେ ଅଂଶଗ୍ରହଣ କରି ଦେଶ ବିଦେଶରେ ସୁନାମ ଅର୍ଜନ କଲେଣି । ପୁରୁଷର ଆଖିରୁ ରକ୍ଷଣଶୀଳତାର ଅନ୍ଧପୁଟୁଳି ଖୋଲି ଦେଇ ତା' ଆଗରେ ସୁନ୍ଦର ନୃତ୍ୟ, ଅଭିନୟ ପ୍ରଦର୍ଶନ କରି ହୃଦୟସ୍ପର୍ଶୀ ସଙ୍ଗୀତ ପରିବେଷଣ କରି ତା'ର ଭୁଲ୍ ଭାଙ୍ଗି ଦେଲେଣି । ଦୁଇଦଶନ୍ଧି ହେବ କଟକର ମୁସଲମାନ ସମ୍ପ୍ରଦାୟର ଝିଆବୋହୂମାନେ ରକ୍ଷଣ-ଶୀଳତାର ବୁର୍ଖାକୁ ଫିଙ୍ଗିଦେଇ ଆଧୁନିକ ଶିକ୍ଷାର ସୁବିଧା ସୁଯୋଗ ନେବା ସହିତ ସେମାନଙ୍କ ସମ୍ପ୍ରଦାୟରେ ଶିକ୍ଷାର ପ୍ରସାର ପାଇଁ ଶିକ୍ଷୟିତ୍ରୀ ହୋଇ ଶିକ୍ଷା ପ୍ରଦାନ କରୁଛନ୍ତି ।

ନାରୀମାନଙ୍କ ଦ୍ୱାରା ନାରୀ ଶିକ୍ଷା ବିଶେଷତଃ ପ୍ରାଥମିକ ଶିକ୍ଷାରେ କୋମଳମତି ବାଳକ, ବାଳିକାମାନଙ୍କର ଶିକ୍ଷାର ଦାୟିତ୍ୱ ନାରୀମାନଙ୍କୁ ଦିଆଯିବ ବୋଲି ଘୋଷିତ

ସରକାରୀ ମନ୍ତ, ନାରୀ ଶିକ୍ଷା ପ୍ରସାର ପାଇଁ ଆଗ୍ରହ ସୃଷ୍ଟି କରନ୍ତି । ସାମ୍ପ୍ରତିକ ଜୀବନ ଧାରଣର ମାନର ଦ୍ରୁତ ଅଭିବୃଦ୍ଧି ଏବଂ ଏହାକୁ ଉନ୍ନୀତ କରିବା ପାଇଁ ସାଧାରଣ ନିମ୍ନମଧ୍ୟବିତ୍ତ ଗୃହସ୍ଥ ମାନସିକ ତଥା ଅର୍ଥନୈତିକ ସ୍ତରରେ ସମର୍ଥ ନ ହେଉଥିବାରୁ ସେହି ପରିବାରର ନାରୀ କର୍ମଜୀବୀ ହେବାକୁ ନିଷ୍ପତ୍ତି ନେଉଛନ୍ତି । ଏବେ ସାଧାରଣତଃ ବିବାହ ପ୍ରସ୍ତାବରେ କର୍ମଜୀବୀ ଯୁବତୀଙ୍କୁ ଅଗ୍ରାଧିକାର ଭିତ୍ତିରେ ମନୋନୀତ କରା-ଯାଉଛି । ଶିକ୍ଷା କ୍ଷେତ୍ରରେ ଅନୁଧ୍ୟାନ କଲେ ଜଣାଯାଏ ଯେ ନାରୀମାନେ ପୁରୁଷ-ମାନଙ୍କଠାରୁ ଅଧିକ କୃତିତ୍ୱ ପ୍ରଦର୍ଶନ କରି ପାରିଛନ୍ତି । ସେମାନଙ୍କର ଦକ୍ଷତା, କର୍ମକୁଶଳତା ତଥା ବିଚକ୍ଷଣତା ପୁରୁଷମାନଙ୍କଠାରୁ ବହୁଗୁଣରେ ଉନ୍ନତ । ପ୍ରାଥମିକ, ମାଧ୍ୟମିକ, ବିଶ୍ୱବିଦ୍ୟାଳୟ ସ୍ତରରେ ଝିଅମାନେ ପୁଅମାନଙ୍କ ଅପେକ୍ଷା ଅଧିକ ସଫଳତା ଅର୍ଜନ କରି ଯଶସ୍ୱିନୀ ହୋଇ ପାରୁଛନ୍ତି । ତେଣୁ ଆଗ ଅପେକ୍ଷା ବର୍ତ୍ତମାନର ସମସ୍ତ ନାରୀପ୍ରତିଭା ବିକାଶ ଦିଗରେ ବେଶ୍ ଅନୁକୂଳ । ନାରୀ ଆଜି ଗୃହାଙ୍ଗନରେ ଲଜ୍ଜାଶୀଳା ବୋହୂଟିଏ ହୋଇ ଓଢ଼ଣୀ ଭିତରେ ମୁହଁ ଲୁଚାଇ ବସିରହୁନି ।

ଅତୀତରେ ଶ୍ରୀବତ୍ସ ପଣ୍ଡାଙ୍କ ସମାଜ ସଂସ୍କାର ଆନ୍ଦୋଳନ ପାଇଁ ନର୍ମଦା ପାଢ଼ୀଙ୍କ ପରି ସାହସିନୀ ନାରୀମାନେ ଆନ୍ଦୋଳନର ଅନଳଶିଖାରେ ଝାସ ଦେଇ ବିପ୍ଳବକୁ ତୀବ୍ରତର କରିପାରିଥିଲେ । ବିପ୍ଳବୀ ସୈରିନ୍ଧ୍ରୀ ନାୟକ ସାହିତ୍ୟ ଏବଂ ସମାଜ ସେବା କ୍ଷେତ୍ରରେ ଆଗୁଆ ହୋଇଥିଲେ । ଏବେ ଓଡ଼ିଶାର ପୁରପଲ୍ଲୀରେ ସର୍ବତ୍ର ନାରୀ ପ୍ରତିଭାର ଜୟଯାତ୍ରା ଦ୍ରୁତଗତିରେ ପ୍ରସାରିତ ହୋଇଛି । ଏହି ଶୋଭାଯାତ୍ରାର ପ୍ରଥମେ ଶୁଭ ପଡ଼ିଥିଲା ଏହି କଟକ ନଗରରେ । କିଏ ମଫସଲରୁ ଆସୁ କି ଅନ୍ୟ ରାଜ୍ୟରୁ ଆସୁ କିନ୍ତୁ ଏହି କଟକ ନଗରୀ ସେମାନଙ୍କର ପ୍ରତିଭା ଉନ୍ମେଷର କେନ୍ଦ୍ରସ୍ଥଳ ଥିଲା । କଟକ ନଗର ପଲ୍ଲବିତ ସବୁଜ ବନାନୀ ହେଲେ ନାରୀମାନେ ହେଉଛନ୍ତି ତାର ସୁବାସିତ ପୁଷ୍ପ । ସେ ପୁଷ୍ପର ମହକ ସଞ୍ଚରି ଯାଇଛି ଆକାଶ, ପବନ ଏବଂ ମାଟିକୁ । ଜନ୍ମଭୂମି, କର୍ମଭୂମି ଏହି କଟକ ମାଟିରେ କ୍ରୀଡ଼ା, ସଂସ୍କୃତି, ଶିକ୍ଷାରେ ତାରି କୋଳରେ ବଢ଼ିଥିବା, ସମୟ ବିତେଇଥିବା ଯୁବତୀମାନେ ବେଶ୍ ନୈପୁଣ୍ୟ ଦେଖାଇ ପାରିଛନ୍ତି ।

ଅତୀତରେ ଖ୍ରୀଷ୍ଟିୟାନ ମିଶନାରୀ ଏବଂ ଧର୍ମାନ୍ତରିତ ଓଡ଼ିଆ ଖ୍ରୀଷ୍ଟିୟାନ ମହିଳାମାନେ ସାରା ଓଡ଼ିଶାରେ ଆଧୁନିକ ଶିକ୍ଷାର ପ୍ରଦୀପ ପ୍ରଜ୍ୱଳନ କରିଥିଲେ । ବହୁ ଘାତ-ପ୍ରତିଘାତ ମଧ୍ୟରେ ସୃଷ୍ଟି ହୋଇଥିବା ଆଧୁନିକ ଓଡ଼ିଆ ସାହିତ୍ୟ ନାରୀ ସ୍ୱାତନ୍ତ୍ର୍ୟର ମହିମାରେ ଅନୁରଣିତ । ଉତ୍କଳଗୌରବ ମଧୁସୂଦନଙ୍କ ପାଳିତା କନ୍ୟା ଶୈଳବାଳା ଦାସ, ନିର୍ମଳା ନାୟକ ଏବଂ ରେବା ରାୟଙ୍କ ପରି ମହୀୟସୀ ମହିଳାମାନେ ଓଡ଼ିଶାରେ ନାରୀଶିକ୍ଷାର ଶୁଭାରମ୍ଭ କରିଥିଲେ । ବଙ୍ଗୀୟା ସନତ୍ ହାଲଦାର ଏବଂ ନଳିନୀ ହାଲଦାର ମଧ୍ୟ ନାରୀ ଶିକ୍ଷା ପାଇଁ ବହୁ ଉଦ୍ୟମ କରିଥିଲେ । ସେମାନଙ୍କ ସ୍ମୃତି ସ୍ୱରୂପ ମୁଣ୍ଡକଟକରେ ଛି ସନତନଳିନୀ ବାଳିକା ବିଦ୍ୟାଳୟ ।

ସେହିପରି ଶୈଳବାଳା ଦାସଙ୍କ ନାମରେ ନାମିତ ହୋଇଛି ଶୈଳବାଳା ମହିଳା ମହାବିଦ୍ୟାଳୟ । ବିଂଶ ଶତାବ୍ଦୀର ଦୁଇ ଦଶକ ବେଳେ ଓଡ଼ିଶାର ନାରୀ ସମାଜ ଆଗରେ ଗୌରବର ମଶାଲ ଧରି ଜନପ୍ରିୟ ବାର୍ତ୍ତା ବାଢ଼ି ଦେଇଥିଲେ ତାଲ୍ଚେରର କୁନ୍ତଳା କୁମାରୀ ସାବତ । ସେ ସ୍ୱାଧୀନଜୀବୀ ଭାବରେ ଆୟ କରିବା ସଙ୍ଗେ ସଙ୍ଗେ, ଜନସାଧାରଣଙ୍କ ସେବା ବ୍ରତରେ ନିଜକୁ ଉତ୍ସର୍ଗ କରିଥିଲେ । ଏହା ସତ୍ତ୍ୱେ ସେ ସାହିତ୍ୟ ସାଧନାରେ ଜଡ଼ିତ ଥିଲେ । ତାଙ୍କର ଉଚ୍ଚକୋଟିର ରଚନାତ୍ମକ ଭଙ୍ଗୀ, ଲଳିତ ମଧୁର ସରଳ ଭାଷା, ଛନ୍ଦୋବଦ୍ଧ ଶୈଳୀ, 'ଶେଫାଳୀ ପ୍ରତି' କବିତାରେ ପରିସ୍ଫୁଟ । ଏହି କଟକ ଥିଲା ତାଙ୍କର ଆଦି କର୍ମଭୂମି ଏବଂ ତାଙ୍କ ବିକାଶ ଅବଦାନ ସାରା ଓଡ଼ିଶାରେ ତାଙ୍କୁ କରିଛି ମହୀୟସୀ । ଏହାପରେ ଲଳିତା ଦେବୀଙ୍କର ସମାଜ ସେବା କ୍ଷେତ୍ରରେ ଅତୁଳନୀୟ ଅବଦାନ ସମସ୍ତଙ୍କୁ ମୁଗ୍ଧ କରିଛି । ସାହିତ୍ୟିକା ତଥା ବିପ୍ଳବୀ ସରଳା ଦେବୀ ଓ ସମାଜସେବୀ ଲଳିତା ଦେବୀ ଏହି କଟକ ନଗରରେ ଜୀବନ ସାଧନା କରି ଯାଇଅଛନ୍ତି । ବରିଷ୍ଠା ନାରୀକବି ଦେବହୂତି ଦେବୀ ତାଙ୍କ ଅମର ଲେଖନୀରେ ନାରୀ ଜୀବନର ବହୁ ସୁଖ ଦୁଃଖର କାହାଣୀକୁ ପ୍ରାଣବନ୍ତ କରି ତୋଳିଛନ୍ତି । ତାଙ୍କର ଅମ୍ଳାନ ପ୍ରତିଭାକୁ କାଳ ମଳୀନ କରିପାରିବ ନାହିଁ ।

ସେତେବେଳେ ଓଡ଼ିଶାରେ ମୁଦ୍ରଣ ଶିଳ୍ପ ସେତେ ଉନ୍ନତ ନଥିଲା । ଆଉ ମଧ୍ୟ ରକ୍ଷଣଶୀଳତାର ତୀବ୍ର ସଙ୍କଟ ବହୁ ପ୍ରତିଭାମୟୀ ନାରୀଙ୍କୁ ପ୍ରକାଶିତ କରିବାର ସୁଯୋଗରୁ ବଞ୍ଚିତ କରିଥିଲା । ନାରୀ ଭିତରର ନିଜସ୍ୱ ସାଧନାର ଫୁଲମହକ ବିତରଣ କରିପାରିଲା ନାହିଁ ଏବଂ ବହୁ ପ୍ରତିଭା ବିକଶିତ ନହୋଇପାରି ସମାଜର ପ୍ରଚଣ୍ଡ ଗୀତ ନିୟମ ଅଗ୍ନିରେ ମଉଳି ଗଲେ । କିନ୍ତୁ ଅସହଯୋଗ ଆନ୍ଦୋଳନର ଆଲୋଡ଼ନ ବହୁ ନାରୀଙ୍କୁ ସମାଜ ମଞ୍ଚ ଉପରକୁ ଉଠାଇ ପାରିଥିଲା । ଅଶିଣର ମେଘମୁକ୍ତ ନୀଳାକାଶ, ନଈକୂଳରେ ମୃଦୁପବନରେ ଦୋଳାୟିତ କାଶତଣ୍ଡୀ ପଠା; ମଗୁଣିରର ଝୋଟିଚିତା ଅଗଣା, କାନ୍ଥ; କ୍ଷେତ ବାଡ଼ରେ ସୁନା ସୋରିଷ ଫୁଲର ମହୋତ୍ସବ; ଫଗୁଣର ଆମ୍ବକଷି ବାସ୍ନାର ଆକର୍ଷଣରେ ବେଳେ ବେଳେ ବିମୋହିତ ହୋଇଯାଏ ହୃଦୟ, ମନ । ବିଚ୍ଛୁରିତ ହୋଇଯାଏ ରକ୍ତ ଭିତରେ ଉନ୍ମାଦନା । ଜାଗ୍ରତ ହୋଇ ଉଠେ ସୁପ୍ତ ଚେତନା । ମଣିଷ ଭାଙ୍ଗିଦିଏ ସବୁ ବନ୍ଧନର ଲୌହ କବାଟ ଏବଂ ଅନାୟାସରେ ମୁକୁଳି ଆସେ ନିରବଚ୍ଛିନ୍ନ ଅନ୍ଧକାର ମଧ୍ୟରୁ ।

ସେହିଭଳି ମହାତ୍ମାଗାନ୍ଧିଙ୍କର ତେଜଦୀପ୍ତ ମୁକ୍ତି, ଅହିଂସାର ବାଣୀ, ବୈପ୍ଳବିକ ଚେତନା, ନାରୀଶିକ୍ଷାର ଆହ୍ୱାନ ବହୁ ବ୍ୟକ୍ତି ଚେତନା ନାରୀଙ୍କୁ ପ୍ରଲୁବ୍ଧ ଓ ପ୍ରଭାବିତ କରିଦେଇଥିଲା । ନାରୀ ଫିଙ୍ଗିଦେଇଥିଲା ସକଳ ମୂଲ୍ୟବାନ ଭୂଷଣ, ଭାଙ୍ଗି ଦେଇଥିଲା ସାମାଜିକ ଶୃଙ୍ଖଳର ଉତ୍ତୁଙ୍ଗ ପାଚେରୀ ଏବଂ ଝାସ ଦେଇଥିଲା ମୁକ୍ତି ଆନ୍ଦୋଳନର ଯଜ୍ଞବେଦିରେ । ଏହି ଆହ୍ୱାନ ଭିତରେ ସେ ଖୋଜ ପାଇଥିଲା ନିଜ ଭିତରେ ସୁପ୍ତ ପ୍ରତିଭାକୁ । ଶାମୁକାର ଆବରଣ ଭିତରେ ଲୁକ୍କାୟିତ ହୋଇ ରହିଛି

ରହି ଗଲା । ତାକୁ ଆଲୋକକୁ ଆଣିବାକୁ ପଡ଼ିବ ଓ ସମାଜସେବାରେ ତାର ଉପଯୁକ୍ତ ବିନିଯୋଗ କରିବାକୁ ପଡ଼ିବ । ତେଣୁ ନାରୀ ତାର ସ୍ୱତନ୍ତ୍ର ମହିମା ପ୍ରକଟିତ କରିବାକୁ ଲାଗିଲା ।

ସେହି ପରିପେକ୍ଷୀରେ ବାଗ୍ମୀବିଶ୍ୱନାଥଙ୍କର ତିନି କନ୍ୟା ପ୍ରତିଭା, ସୁପ୍ରଭା ଓ ନର୍ମଦା 'ଉତ୍କଳ ସାହିତ୍ୟ' ସମ୍ପାଦନାରେ ସମ୍ପୃକ୍ତ ରହି ବହୁ ସାହିତ୍ୟ ସୃଷ୍ଟି କରି ଯାଇଅଛନ୍ତି । ଏତଦ୍‌ବ୍ୟତୀତ ଲକ୍ଷ୍ମୀ ନାରାୟଣ ପ୍ରେସର ମାଲିକ ହାବିବ ଖାଁଙ୍କର ବ୍ରାହ୍ମଣୀ ପତ୍ନୀ ଜଣେ ସୁସାହିତ୍ୟିକା ଥିଲେ ଏବଂ ତାଙ୍କ ପ୍ରଗାଢ଼ ଚେଷ୍ଟା ଓ ଉଦ୍ୟମରେ ବହୁ ସାହିତ୍ୟ ପୁସ୍ତକ ପ୍ରକାଶିତ ହୋଇପାରିଛି । ଖ୍ରୀଷ୍ଟଧର୍ମକୁ ଭିତ୍ତିକରି ପୁଷ୍ପକେଶୀ ପ୍ରଧାନ ଗୃହିଣୀ ଉଚ୍ଚକୋଟୀର ଉପନ୍ୟାସ ରଚନା କରିଛନ୍ତି । ତାଙ୍କର ସାହିତ୍ୟିକ ଚରିତ୍ର ଅନନ୍ୟ, ଅସାଧାରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ସରଳା ଦେବୀ ଏବଂ ବିଶିଷ୍ଟ ସାହିତ୍ୟିକ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କ ପତ୍ନୀ ମୁକ୍ତା ଦେବୀ ଯୌଥ ଉପନ୍ୟାସ ବାସନ୍ତୀର ବିଭିନ୍ନ ପରିଚ୍ଛେଦ ରଚନା କରିଛନ୍ତି । ଆଧୁନିକ ଶିକ୍ଷାର ଏବେ ବହୁଳ ପ୍ରସାର ଘଟିଲାଣି । ପୁସ୍ତକ ଶିଳ୍ପର ବିକାଶ ଉନ୍ନତତର ହେଲାଣି ତଥାପି ନାରୀ ନିଜକୁ ଆନୁପାତିକ ଭାବରେ ପ୍ରକାଶ କରିବାକୁ ସକ୍ଷମ ହୋଇପାରୁନି ।

ଏହା ପଛରେ ବହୁ ନାରୀଙ୍କ ମନରେ ଏକାଗ୍ରତାର ଅଭାବ, ସାହିତ୍ୟ ସଂସ୍କୃତି ପ୍ରତି ବିରାଗ, ପାରିବାରିକ ଯନ୍ତ୍ରଣା ଓ ଜଞ୍ଜାଳ ଏବଂ ସମୟର ଅପଚୟ ହିଁ ଦାୟୀ । ଏବେ ଅବଶ୍ୟ ନାରୀଶିକ୍ଷା ଏବଂ ବିଭିନ୍ନ ଧନ୍ଦାମୂଳକ ଶିକ୍ଷାରେ କୁଟୀର ଶିଳ୍ପର ଉପଯୋଗିତା ନାରୀ ଉପଲବ୍ଧି କଲାଣି । ତେଣୁ ସେ ତାର ଅବସର ସମୟକୁ ଅପଚୟ ନକରି ସେ ସମୟରେ କିଛି ଉପାର୍ଜନକ୍ଷମ ହେଲାଣି । ଆଉମଧ୍ୟ ବିଭିନ୍ନ ନାରୀମଙ୍ଗଳ ସମିତି, ମହିଳା ସମିତି, ଜନମଙ୍ଗଳ ସମିତି ଜରିଆରେ କାର୍ଯ୍ୟ କରି ତା ଭିତରେ ଅବହେଳିତ ଇଚ୍ଛାଶକ୍ତିର ଜାଗ୍ରତ କରି ଶିଶୁ, ଅସହାୟ ଯୁବତୀ, ବୃଦ୍ଧ-ବୃଦ୍ଧାଙ୍କର ଦାୟିତ୍ୱ ବହନ କରି ଜନସେବାର ପରାକାଷ୍ଠା ଦେଖାଇ ପାରୁଛି । ଏହି ମହତ ସେବାମୂଳକ ତ୍ୟାଗର ପଟାନ୍ତର ନାହିଁ । ହୁଏତ ଇତିହାସ ତାକୁ ଏହି ତ୍ୟାଗ ବା ସମାଜସେବାର ମୂଲ୍ୟ ନଦେଇନପାରେ । କିନ୍ତୁ ତାର ଲୁହ, ରକ୍ତକୁ ପୁଞ୍ଜିକରି ସେ ଯେଉଁ ନିଃସହାୟ, ଉପେକ୍ଷିତ ଗୋଷ୍ଠୀର ସେବା କରିଛି ତାହା ସେମାନଙ୍କ ହୃଦୟରୁ ପୋଛି ହେବନାହିଁ । 'ମାନବ ସେବା ହିଁ ଈଶ୍ୱର ସେବା' ଯଦି ଧ୍ୟେୟ, ତେବେ ନିଶ୍ଚୟ ସେ ଈଶ୍ୱର ମନ୍ଦିର ସମୀପବର୍ତ୍ତୀ ହୋଇପାରିବ ।

ଗୋପବନ୍ଧୁ ଚୌଧୁରୀଙ୍କ ସହଧର୍ମିଣୀ ମା' ରମାଦେବୀଙ୍କ ନେତୃତ୍ୱରେ ନବକୃଷ୍ଣ ଚୌଧୁରୀଙ୍କ ପତ୍ନୀ ମାଳତୀ ଚୌଧୁରୀ ଏବଂ ଅନ୍ନପୂର୍ଣ୍ଣା ମହାରଣାଙ୍କ ସହଯୋଗରେ ଅଳକା ଆଶ୍ରମ ଓ ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟକ୍ରମ ଏହି କଟକ ନଗରରେ ହିଁ କରିଥିଲେ । ଏବେ କଟକର ଗୁଣନିଧି ଭବନରୁ ସେହି ଉଦ୍ୟମ

ଭୂଦାନଯଜ୍ଞ ମାଧ୍ୟମରେ ଅବ୍ୟାହତ ରହିଛି । ନାରୀ ସମାଜର ବିକାଶ ପାଇଁ ଉତ୍କଳମଣି ଗୋପବନ୍ଧୁଙ୍କ ନାତୁଣୀ ପ୍ରଗତିମୟୀ ଦେବୀ, ପଦ୍ମାଳୟା ଦାଶ, ଶକୁନ୍ତଳା ମହାନ୍ତି, ଜ୍ୟୋତି ମହାନ୍ତି ପ୍ରମୁଖ ବହୁ ନାରୀନେତ୍ରୀ ସାହସିକ ପଦକ୍ଷେପ ନେଇଛନ୍ତି । ତେଣୁ ଆଧୁନିକ ଓଡ଼ିଶାର ସଂଗଠନ ଏବଂ ନାରୀମଙ୍ଗଳ କାର୍ଯ୍ୟକ୍ରମର ସର୍ବବିଧ ଉନ୍ନତି ପାଇଁ କଟକ ନଗରର ନାରୀମାନେ ହିଁ ବିଶେଷ ନେତୃତ୍ୱ ନେଇଛନ୍ତି । ସେମାନେ ଅନ୍ଧ କୁସଂସ୍କାର ପରମ୍ପରାକୁ ଛିନ୍ନ କରି, କଠୋର ନୀତିନିୟମ ଅର୍ଗଳରୁ ଓହରି ଆସି ପ୍ରଗତିଶୀଳ କାର୍ଯ୍ୟକ୍ରମର ଆବାହିକା ହୋଇଛନ୍ତି ।

କଟକ ନାରୀ ସମାଜର ବିଶେଷ ଆତ୍ମ-ବିଶ୍ୱାସର ପ୍ରତୀକ ଭାବରେ ସାଧାରଣ ମଧ୍ୟବିତ୍ତ ପରିବାରର ଝିଅ ଏବଂ ବୋହୂ ଶ୍ରୀମତୀ ନନ୍ଦିନୀ ଶତପଥୀ କେନ୍ଦ୍ରମନ୍ତ୍ରୀ ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ଭାରତୀୟ ନାରୀ ସମାଜରେ ଯେଉଁ ଭୂମିକା ଗ୍ରହଣ କରି ନେତୃତ୍ୱ ଦେଇଛନ୍ତି ତାହା ଅବିସ୍ମରଣୀୟ । ଏହା ବ୍ୟତୀତ ସେ ଜଣେ ସୁନାମଧନ୍ୟା ସୁ-ସାହିତ୍ୟିକା । ତାଙ୍କର ଗଳ୍ପ, ନାଟକ ସ୍ୱକୀୟ ମହିମାରେ ଉଜ୍ଜ୍ୱଳିତ । ଏହି ଐତିହାସିକ କଟକ ନଗର ହିଁ ତାଙ୍କର ଜନ୍ମସ୍ଥଳୀ । ପୁଣି ସେ ଉଚ୍ଚ ସାହିତ୍ୟସମ୍ପନ୍ନ ପରିବାରରେ ଜନ୍ମଗ୍ରହଣ କରିଛନ୍ତି ଏବଂ ବିଶିଷ୍ଟ ସାହିତ୍ୟିକ କାଳନ୍ଦୀଚରଣ ପାଣିଗ୍ରାହୀଙ୍କ କନ୍ୟା ଏବଂ ପିତାଙ୍କର ସବୁ ସଦ୍‌ଗୁଣ ବା ସାହିତ୍ୟ ସାଧନା ତାଙ୍କ ଜୀବନରେ ପ୍ରତିଫଳନ ହେବା ସ୍ୱାଭାବିକ ।

ତଥାପି ସମାଜ ସେବାରେ ମୁଖ୍ୟ ଦାୟିତ୍ୱ ବହନ କରିଥିବା ନେତ୍ରୀ ଏବଂ ମନ୍ତ୍ରୀ ଭାବରେ ସାହିତ୍ୟ କ୍ଷେତ୍ରରେ ବ୍ରତୀହେବା ଅତ୍ୟନ୍ତ ଦୁରୂହ ବ୍ୟାପାର । ତଥାପି ତାଙ୍କ ସଂଗ୍ରାମରତ ଜୀବନରେ ସେ ସାହିତ୍ୟ ସାଧନାରୁ ବିରତ ରହି ନାହାନ୍ତି । ସେହିପରି ବସନ୍ତ କୁମାରୀ ପଟ୍ଟନାୟକ ଆଜୀବନ ଅବିବାହିତା ରହି ଅତି ଉଚ୍ଚକୋଟୀର ଉପନ୍ୟାସ, କ୍ଷୁଦ୍ରଗଳ୍ପ ଏବଂ ସାବଲୀଳ କବିତା ରଚନା କରିଛନ୍ତି । ଏବେ ଜୀବନ ଅପରାହ୍ନରେ ଉପନୀତ ହୋଇ ମଧ୍ୟ ଜେ. କେ. କୃଷ୍ଣମୂର୍ତ୍ତିଙ୍କ ଗ୍ରନ୍ଥଗୁଡ଼ିକର ଅନୁବାଦ କରି ଓଡ଼ିଶାରେ ଆଧ୍ୟାତ୍ମିକ ଚେତନାର ପ୍ରସାର କରୁଛନ୍ତି । ଏହି କଟକ ନଗରର ପାଣି, ପବନରେ ହିଁ କଟିଛି ତାଙ୍କ ଜୀବନର ସୁଖ, ଦୁଃଖର ଅଧ୍ୟାୟ । ଆଧ୍ୟାତ୍ମିକ ଚେତନାର ପ୍ରସାରରେ ସକ୍ରିୟ ସହଯୋଗ କରୁଛନ୍ତି ତାଙ୍କର ଦୁଇଭଉଣୀ ପୁଣ୍ୟପ୍ରଭା ଓ ଆରତୀ । ତେଲୁଗୁ ଓ ଓଡ଼ିଆରେ ସୁପଣ୍ଡିତା ଶୈଳବାଳା ପଟ୍ଟନାୟକ 'ମହିଳା ପୁସ୍ତକ ନିକେତନ' ନାମରେ ପୁସ୍ତକ ପ୍ରକାଶନ ସଂସ୍ଥା କରିବା ସଙ୍ଗେ ସଙ୍ଗେ ଆଇନ୍ ବ୍ୟବସାୟରେ ମଧ୍ୟ ସୁନାମ ଅର୍ଜନ କରିପାରିଛନ୍ତି । ଏବେ ଅନ୍ୟତମ ନାରୀ ଉକିଲ ଅମିୟବାଳା ପାତ୍ରୀ ଓଡ଼ିଶା ହାଇକୋର୍ଟରେ ମାନ୍ୟବର ବିଚାରପତି ଭାବେ କାର୍ଯ୍ୟ ନିର୍ବାହ କରି ନିଜ ବିଚକ୍ଷଣତାର ପରିଚୟ ଦେଇଛନ୍ତି ।

ଏହିପରି ଭାବରେ ବିଚାରବିମର୍ଶ କଲେ ଜଣାଯାଏ ଯେ ଆଧୁନିକ ଜୀବନର ବିଭିନ୍ନ ଦିଗରେ କଟକର ନାରୀ-ପ୍ରତିଭାମାନେ ଦକ୍ଷତାର ସହିତ କାର୍ଯ୍ୟ ସମ୍ପାଦନା

କରି ଏହି କଟକକୁ ଗୌରବର ଜୟମାଳ୍ୟ ପିନ୍ଧାଇଛନ୍ତି । ସାରା ଭାରତରେ କଟକର ସୁନାମ-ପଦ୍ମର ମହକରେ ମହକିତ । ଓଡ଼ିଶା ଅର୍ଥନୈତିକ, ସାମାଜିକ ଆଦି ବହୁସ୍ତରରେ ପଛେଇ ଥିଲେ ମଧ୍ୟ ସର୍ବଭାରତୀୟ ସ୍ତରରେ କଟକ ତାର ସ୍ୱତନ୍ତ୍ର ସ୍ଥାନ ଗ୍ରହଣ କରିଛି । ଏଥିପାଇଁ ନାରୀପ୍ରତିଭାମାନଙ୍କର ଅବଦାନ ହିଁ ବହୁଭାବରେ ନିହିତ । ସାଂସାରିକ ଜୀବନଜଞ୍ଜାଳକୁ ମୁଣ୍ଡେଇ ନେଇ ସୀତା ଦେବୀ ଖାଡ଼ାଙ୍ଗା ତାଙ୍କ ଆତ୍ମିକ ଚେତନାରେ ରଚନା କରିଛନ୍ତି ଋଦ୍ଧିମନ୍ତ ସାହିତ୍ୟ । ହୃଦୟର ଆବେଗ, ସୀମାହୀନ ଅନୁଭୂତି ଓ ସ୍ନେହ-ପ୍ରେମର ସ୍ପର୍ଶଦେଇ ସେ ସାହିତ୍ୟ ସାଧନା କରିଥିଲେ । ନାରୀକବି ମନମୋହିନୀ ଦେବୀ ନାରୀ ଜୀବନର ସୁଖ ଦୁଃଖର କାହାଣୀ ତାଙ୍କ କବିତାରେ ବ୍ୟକ୍ତକରି ବରଣୀୟା ହୋଇ ରହିଛନ୍ତି । ଏହିପରି ବହୁ ପ୍ରତିଭାମୟୀ ନାରୀଙ୍କର ଆଦର୍ଶବାଦ, ସେବା, ତ୍ୟାଗର ମହିମା, ନୃତ୍ୟକଳାର ଗୌରବ ଏବଂ ସାହିତ୍ୟର ସୃଜନଶୀଳତାର ସୁରଭି କଟକରୁ ପରିବ୍ୟାପ୍ତ ହୋଇଛି ପୁରପଲ୍ଲୀକୁ । ସେଇ ପୁରପଲ୍ଲୀର ବହୁ ଝିଅ, ବୋହୂମାନେ ଅଳ୍ପଶିକ୍ଷିତା ହୋଇ ମଧ୍ୟ ସାହିତ୍ୟ, ସଙ୍ଗୀତର ଶ୍ରୀବୃଦ୍ଧି କରିଛନ୍ତି ।

ସ୍ୱାଭାବିକ ଭାବରେ ଓଡ଼ିଆ ନାରୀ ମାନଙ୍କ କଷ୍ଟ । ଦୁଃଖ ଓ ଭାବନାର ଆନ୍ତରିକତାରେ ମଣ୍ଡି ହୋଇ ହୃଦୟର କୋହକୁ ଦୀର୍ଘଶ୍ୱାସ ବା କେତେ ଟୋପା ଲୁହରେ ରୂପାନ୍ତରିତ କଲାବେଳେ ଆକସ୍ମିକ ଭାବରେ ବହୁ ଶବ୍ଦସଂଯୋଜନାର ପରିପ୍ରକାଶ ଘଟେ । ହୁଏତ ସେ ତାକୁ କଲମ ମୂନରେ ଆଙ୍କିବାର ଅବକାଶ ପାଏନାହିଁ । ଢଗ ଢମାଳି, ଝିଅଙ୍କ ବାହୁନା ବା କାନ୍ଦଣାରେ ତାହା ସରସ୍ୱତୀଙ୍କ ମୁଖନିସୃତ ବାଣୀ ଭଳି ପ୍ରକାଶ ପାଇଯାଏ । ଅଧିକାଂଶ ଢଗଢମାଳି ଲୋକ ମୁଖରେ ପୁନଃ ପୁନଃ ପ୍ରଚରିତ ହୋଇ ବଞ୍ଚି ରହିଛି; କିନ୍ତୁ ଅଧିକାଂଶ ବିଲୁପ୍ତ । ନାରୀ କଣ୍ଠରେ ଉଚ୍ଚାରିତ ହୋଇ ସେ ଶୂନ୍ୟରେ ମିଳେଇ ଯାଏ । ସେ ସବୁ ଆଲୋଚନା ସ୍ତରକୁ ଆସିବା ସମ୍ଭବପର ହୁଏନାହିଁ । ତଥାପି ଲୋକଗୀତ ସଂକଳନ ମାଧ୍ୟମରେ ଅନେକ ମହାନୁଭବ ପୁରୁଷ ଉଦ୍ୟମ କରି ଏହାକୁ ବଞ୍ଚାଇ ରଖିଛନ୍ତି । କିନ୍ତୁ କେଉଁ ଅନାମଧେୟ ନାରୀ ଏହାକୁ ସଂଯୋଜନା କରିଯାଇଛନ୍ତି ତାହା ଜାଣିବା ସାଧାରଣତ । ତେବେ ମୁଖ୍ୟତଃ ଶତାବ୍ଦୀ ଆରମ୍ଭରୁ ଓଡ଼ିଆ ନାରୀମାନେ ସମାଜ କ୍ଷେତ୍ରରେ ମୁକ୍ତଭାବରେ ଅଂଶ ଗ୍ରହଣ କଲେ ସୁଦ୍ଧା ଭୁଟଣ୍ଡି ଭୁଟଣ୍ଡି ରଚିତ ଢଗଢମାଳି, କାନ୍ଦଣା ତା ପୂର୍ବରୁ ପରିପ୍ରକାଶିତ ହୋଇଛି ବୋଲି ଅନୁମାନ କରାଯାଏ । ଆଧୁନିକ ନାରୀର ଗୀତବୋଧ, ପ୍ରତିଭା ଏହି ଐତିହାସିକ କଟକ ନଗରରେ ହିଁ ଉନ୍ମେଷିତ ହୋଇଛି ।

ଖଣ୍ଡପାହିର ପ୍ରଖ୍ୟାତ ଜମିଦାର ଗୋବିନ୍ଦ ମିଶ୍ରଙ୍କର କନ୍ୟା ଜାହ୍ନବୀ ଦେବୀ ରାଜହଂସ ସାହିତ୍ୟ ମନ୍ଦିର ଏବଂ ଶତଦଳ ପ୍ରେସ ତିଆରି କରି ସାହିତ୍ୟ ସାଧନାର ଚରମ ପରାକାଷ୍ଠା ଦେଖାଇଛନ୍ତି । ଡାକ୍ତର ଶ୍ରୀମତୀ ନିରୁପମା ରଥ, ଶ୍ରୀମତୀ ପାର୍ବତୀ ଆଚାର୍ଯ୍ୟ ନାରୀମାନଙ୍କର ପରିକଳ୍ପିତ ଉନ୍ନତି ପାଇଁ ବହୁଭାବରେ ନେଇଛି ଦେଇ

ସଙ୍ଗେ କଲ୍ୟାଣସାଧନା କରିବା ସଙ୍ଗେ ସଙ୍ଗେ ସାହିତ୍ୟ ସୃଷ୍ଟିରେ ମଧ୍ୟ ମନୋନିବେଶ କରି ପାରିଛନ୍ତି । ସେହିପରି ବାଗ୍ମୀବିଶ୍ୱନାଥଙ୍କର ପୁତ୍ରବଧୂ ଉମଳା କର ଓଡ଼ିଆ ଅଭିଧାନ ସଂକଳନ କରିବା ସଙ୍ଗେ ସଙ୍ଗେ ସାହିତ୍ୟ କର୍ମରେ ନିଜକୁ ନିୟୋଜିତ କରିଛନ୍ତି । ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର ମୁଖ୍ୟ ସଂକଳକ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ସହକର୍ମିଣୀ ଭାବରେ ପୀତାମ୍ବରୀ ଦେବୀ ଦକ୍ଷତାର ସହିତ କାର୍ଯ୍ୟକରି ଗୌରବ ଅର୍ଜନ କରିଛନ୍ତି ।

ଏବେ ଦ୍ରୁତବେଗରେ କଟକ ମହାନଗରୀର ବିକାଶ ଘଟୁଛି । ଅତୀତର ବାରମାଣିଆ ଗୃହଜମି—ଯାହା ଜନମାନବଶୂନ୍ୟ ସ୍ଥାନ ଥିଲା । ଯେଉଁଠି ଦିନ ଦ୍ୱିପ୍ରହରରେ ସାପମାନେ ନିର୍ଭୟରେ ଆହାର ବିହାର କରୁଥିଲେ ତାହା ଏବେ ବାଦାମବାଡ଼ି ବସ୍ତି‌ଷ୍ଟାଣ୍ଡରେ ପରିବର୍ତ୍ତିତ ହୋଇଛି । ଦୁଇକଡ଼ରେ ନିର୍ମିତ ନୂତନ କୋଠାବାଡ଼ି, ଦୋକାନ ବଜାର ଏବଂ ଲୋକମାନଙ୍କର ଯାତାୟତରେ ମୁଖରିତ ହୋଇ ଉଠୁଛି ବାଦାମବାଡ଼ି । ଆଜି କେହି ବିଶ୍ୱାସ କରିବେ ନାହିଁ ଯେ ସେଠାରେ ପରିବେଶ ଥିଲାବେଳେ ଗଛଲତା ଘେରା ସବୁଜବନାନୀ ଏବଂ ଆବାସ ସ୍ଥଳୀ ଥିଲା ସରୀସୃପଙ୍କର । ମଧୁପାଟଣା ଏବଂ ନୂଆବଜାର ଅଞ୍ଚଳରେ ମଧ୍ୟ କଟକ ମହାନଗରୀର ପୂର୍ବାଞ୍ଚଳ ଏକ ସ୍ୱତନ୍ତ୍ର ଉପ-ନଗର ଭାବରେ ଗଢ଼ିଉଠୁଛି । ଜଗତପୁରର ବିସ୍ତୃତ ଶିଳ୍ପାଞ୍ଚଳ କଟକ ସହିତ ମିଶିଯାଇଛି ।

ଏକଦା ଆଠଗଡ଼ର ବ୍ରଜବିହାରୀ ପଠା ଏବେ ବିଡ଼ାନାସୀ ନାମରେ ନାମିତ ହୋଇ ବିକାଶ ପଥରେ ସାମିଲ ହୋଇଛି । ସରକାରଙ୍କ ଯୋଜନା ଅନୁଯାୟୀ ଏଠାରେ ବାସହୀନ ଲୋକମାନଙ୍କୁ ବାସଜମି ଯୋଗାଇ ଦିଆଯାଇ ଥଇଥାନ କରିବା ସଙ୍ଗେ ସଙ୍ଗେ ଗମନାଗମନର ସୁବିଧା ସୁଯୋଗ ପାଇଁ ବ୍ୟବସ୍ଥା ହେଉଛି । ତୁଳସୀପୁରର ବିସ୍ତୃତ ଅନୁନ୍ନତ ଅଞ୍ଚଳରେ ନୂତନ ସହର ଦ୍ରୁତଗତିରେ ନିର୍ମିତ ହେବାରେ ଲାଗିଛି । ମହାନଦୀ ଓ କାଠଯୋଡ଼ିରେ ନୂତନ ନଦୀବନ୍ଧ ନିର୍ମାଣ ଏବଂ ଜୋବ୍ରାରେ ନୂତନ ବ୍ୟାରେଜ୍ ହେବା ଫଳରେ ଗଡ଼ଗଡ଼ିଆ ଘାଟରେ ସୁବୃହତ୍ ପଠା ଗଠିତ ହୋଇ ଯାଉଛି । ଶିଖରପୁର-ଚଣ୍ଡିରପୁର ଅଞ୍ଚଳରେ "ମହାନଦୀ ବିହାର" ନାମରେ ଉପନଗରୀ ନିର୍ମିତ ହୋଇ କଟକ ନଗରର ସୌନ୍ଦର୍ଯ୍ୟ ବୃଦ୍ଧି କରୁଛି ।

ଏହା ବ୍ୟତୀତ କଟକରେ ବହୁ ମହାବିଦ୍ୟାଳୟ, ଉଚ୍ଚ ମାଧ୍ୟମିକ ବିଦ୍ୟାଳୟମାନ ଗଠିତ ହେବା ଦ୍ୱାରା ଏକ ସ୍ୱତନ୍ତ୍ର "ବିଶ୍ୱବିଦ୍ୟାଳୟ" ସ୍ଥାପନର ସମୟ ଆସିଗଲାଣି । ଯେହେତୁ ଶିକ୍ଷା କ୍ଷେତ୍ରରେ ପୁରୁଷମାନଙ୍କ ଅପେକ୍ଷା ନାରୀମାନେ ଅଧିକ ସଂଖ୍ୟାରେ କୃତିତ୍ୱ ହାସଲ କରିବା ସଙ୍ଗେ ସଙ୍ଗେ ଉଚ୍ଚ ଶିକ୍ଷାରେ ଆଗ୍ରହୀ ହେଉଥିବାରୁ କଟକ ନଗରରେ ସ୍ୱତନ୍ତ୍ର କଟକ "ବିଶ୍ୱବିଦ୍ୟାଳୟ" ସ୍ଥାପନର ଉପଯୋଗିତା ଅନୁଭୂତ ହେବା ଅବଶ୍ୟମ୍ଭାବୀ । ଶିକ୍ଷାଦାନ କ୍ଷେତ୍ର ଛଡ଼ା ପ୍ରଶାସନ, କ୍ରୀଡ଼ା, ଧର୍ମମୂଳକ ବିଭିନ୍ନ ବୃତ୍ତିରେ ନାରୀମାନେ କ୍ରମେ ଅଧିକରୁ ଅଧିକ ସଂଖ୍ୟାରେ ଯୋଗ ଦେଇ ନିଜର ତଥା

ଦେଶ ଓ ଜାତିର ଉନ୍ନତି ପାଇଁ ଆଗଭର ହେଲେଣି । ଏହିସବୁ ଦୃଷ୍ଟିରୁ କଟକ ଓଡ଼ିଶାର ସର୍ବୋନ୍ନତ ନାରୀ-ପ୍ରଗତିର ମହାନ୍ କେନ୍ଦ୍ରରେ ପରିଣତ ହୋଇ ଯାଉଛି । ରାଜ୍ୟସ୍ତରୀୟ ଭେଷଜ ବିଜ୍ଞାନ ମହାବିଦ୍ୟାଳୟ ଏବଂ ଚିକିତ୍ସାଗାର, ଓଡ଼ିଶାର ବୃହତ୍ତମ ବିଶ୍ୱବିଦ୍ୟାଳୟ, ବହୁଳ ପ୍ରଚାରିତ ସମ୍ବାଦପତ୍ର, ବେତାର କେନ୍ଦ୍ର ଏବଂ ଦୂରଦର୍ଶନ ପରି ଗଣ-ମାଧ୍ୟମ ଥିବା ଦୃଷ୍ଟିରୁ ରାଜଧାନୀ କଟକରୁ ସ୍ଥାନାନ୍ତରିତ ହୋଇଥିଲେ ମଧ୍ୟ କଟକର ନାରୀ ସମାଜର ଗୁରୁତ୍ୱ ଯୁଗବତ୍ ଭାବରେ ବଢ଼ି ଚାଲିଛି ଏବଂ କଟକର ନାରୀ ସବୁ କ୍ଷେତ୍ରରେ ଅସୀମ ପାରଦର୍ଶିତା ଦେଖାଇ ସୁନାମ ଅର୍ଜନ କରିଚାଲିଛି । ନାରୀ ଶିକ୍ଷାର ପ୍ରସାର ସଙ୍ଗେ ସଙ୍ଗେ ଶିକ୍ଷିତା ଗୃହବଧୂ, ଅଧ୍ୟାପିକା, ଶିକ୍ଷୟିତ୍ରୀ, ଛାତ୍ରୀ, ସେବିକା, ଚିକିତ୍ସକ, କ୍ରୀଡ଼ାବିତ୍ ସମେତ ବହୁ ନାରୀ ଏବେ ସାଧାରଣ ଜୀବନରୁ କଳା ସଂସ୍କୃତି କ୍ଷେତ୍ରକୁ ବହୁ ସଂଖ୍ୟାରେ ଆସିଲେଣି । ୧୯୪୭ ମସିହାରେ ଭାରତ ସ୍ୱାଧୀନତା ଲାଭ କଲାବେଳେ ଏହି ଶିକ୍ଷିତା ସାହସୀ ନାରୀମାନଙ୍କର ସଂଖ୍ୟା ଅତି ସୀମିତ ଥିଲା । ୧୯୭୦ ମସିହା ପରେ ଏହା ଦ୍ରୁତ ଭାବରେ ବଢ଼ି ଚାଲିଛି ।

ତେଣୁ ଏବେ ଜନଜୀବନରେ ବହୁ ନାରୀ ସାମିଲ ହେବାରେ ଲାଗିଛନ୍ତି । ବିଜୟଲକ୍ଷ୍ମୀ ସାହୁ, ଶୈଳ ବେଉରା, ସାବିତ୍ରୀ ଚୌଧୁରୀ, ଶକୁନ୍ତଳା ମହାନ୍ତି ପ୍ରମୁଖ ନାରୀମାନେ ଜନଜୀବନରେ ଆତ୍ମପ୍ରକାଶ କରିଛନ୍ତି । ଦୈନିକ ସମ୍ବାଦ ପତ୍ରରେ ପୂର୍ଣ୍ଣଲତା ମିଶ୍ର, ନିହାରବାଳା ନାୟକ, ସରସ୍ୱତୀ ସ୍ୱାଇଁ, ସୁଷମା ପଣ୍ଡା ସହ-ସମ୍ପାଦକ ଏବଂ ସାମ୍ବାଦିକା ଭାବରେ ନିଜକୁ ପ୍ରତିଷ୍ଠିତ କରିଛନ୍ତି । ଆକାଶବାଣୀ, ଦୂରଦର୍ଶନ ପ୍ରଭୃତି ଗଣମାଧ୍ୟମରେ ଝରଣା ଦାସ, ଉର୍ବଶୀ ଯୋଶୀ ଏବଂ ବୀଣାପାଣି ମହାନ୍ତି, ସଞ୍ଜିବନୀସୁଧା ପଟ୍ଟନାୟକ, କାକଲି ପାଲ, ସଙ୍ଘମିତ୍ରା କାନୁନ୍‌ଗୋ ପ୍ରମୁଖ ନାରୀ-ଶିଳ୍ପୀମାନଙ୍କର ବଳିଷ୍ଠ ଅବଦାନ ସ୍ୱୀକାର୍ଯ୍ୟ । ଏକ ମୁଖ୍ୟ ରଙ୍ଗମଞ୍ଚରେ ଏବଂ ଓଡ଼ିଆ ଚଳଚ୍ଚିତ୍ର କ୍ଷେତ୍ରରେ ନାନା ଦୁଃଖ, କଷ୍ଟ ମଧ୍ୟରେ ମଣିମାଳା, ଲୀଳାଦୁଲାଲୀ, ଅନିମା ପେଡ଼ିଣୀ, ଶ୍ଲୋରିଆ ରାଉତ, ଚପଳା ନାୟକ, ସଂଯୁକ୍ତା ଦାସ, ପ୍ରେମଲତା ନନ୍ଦ, ବାସନ୍ତୀ ଦେବୀ, ଡାକ୍ତର ସୁଖଲତା ମହାନ୍ତି, ନିର୍ମଳା ପଣ୍ଡାଙ୍କ ଅଭିନୟର ଚମତ୍କାରିତା ଅଗଣିତ ଦର୍ଶକଙ୍କ ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ସମାଜରେ ସ୍ୱକୀୟ ମହିମା ପ୍ରକଟିତ କରି ଯଶସ୍ୱିନୀ ହୋଇଛନ୍ତି । ସେହିପରି ନୃତ୍ୟରେ ଅଧ୍ୟାପିକା ପ୍ରିୟମ୍ବଦା ମହାନ୍ତି, ଡକ୍ଟର ମିନତି ମିଶ୍ର, ଡକ୍ଟର କୁଙ୍କୁମ ମହାନ୍ତି, ସଂଯୁକ୍ତା ପାଣିଗ୍ରାହୀ କେବଳ ଭାରତ କାହିଁକି ସମଗ୍ର ବିଶ୍ୱରେ ନିଜର କୃତିତ୍ୱ ପ୍ରଦର୍ଶନ କରି ଓଡ଼ିଶାର ଗୌରବ ବୃଦ୍ଧି କରିଛନ୍ତି । ଏହି କଟକ ହିଁ ସେମାନଙ୍କ ପ୍ରତିଭା ବିକାଶର ଭିତ୍ତିଭୂମି । ସେହି ବୀର-ନାରୀମାନଙ୍କୁ କୋଳରେ ଧରି କଟକର ମସ୍ତକ ଆଜି ଗର୍ବୋନ୍ନତ ।

ସଙ୍ଗୀତ କ୍ଷେତ୍ରରେ କୁମାରୀ ସୁନନ୍ଦା ପଟ୍ଟନାୟକ, ଶ୍ୟାମାମଣି ଦେବୀ, ବୀଣାପାଣି ମିଶ୍ର, ପଦ୍ମାଳୟା ଗଡ଼ବଡ଼ୁ, ତୃପ୍ତି ଦାସ, ଗୀତା ପଟ୍ଟନାୟକ ପ୍ରମୁଖ ସାଧିକାମାନେ ସଙ୍ଗୀତ-ଶିଳ୍ପୀ ଭାବରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ବହୁ ନବୀନ-କଳାକାର, କଣ୍ଠ

ଶିଳ୍ପୀମାନେ ନିଜକୁ ପ୍ରତିଷ୍ଠିତ କରିବା ପାଇଁ ପ୍ରଗାଢ଼ ସାଧନା ଓ ଅଧ୍ୟବସାୟ ଅବ୍ୟାହତ ରଖିଛନ୍ତି । ସଙ୍ଗୀତ, ନାଟକ, ନୃତ୍ୟ, ଚଳଚିତ୍ର ପ୍ରଭୃତି କ୍ଷେତ୍ରରେ ମହୀୟସୀ ମହିଳା-ମାନେ କଟକ ନଗରରେ ଉନ୍ନତ କଳାତ୍ମକ ବାତାବରଣ ସୃଷ୍ଟି କରିଛନ୍ତି । ସେମାନଙ୍କ ପାଇଁ ଗୀତାର-ବିଦ୍ୟା କ୍ଷେତ୍ରରେ କଟକର ସ୍ୱାତନ୍ତ୍ୟ ବୃଦ୍ଧି ପାଇଛି । ଗ୍ରାମାଞ୍ଚଳରେ ଝିଅମାନେ ବିଭିନ୍ନ ଗଣମାଧ୍ୟମ ମାଧ୍ୟମରେ ଲଳିତକଳାର ମାଧୁର୍ଯ୍ୟରେ ମୋହିତ ହୋଇ ସଙ୍ଗୀତ ସାଧନାରେ ପ୍ରୟାସୀ ହେଲେଣି ।

କ୍ରୀଡ଼ାକ୍ଷେତ୍ରର ପର୍ଯ୍ୟାଲୋଚନା କଲେ ଯଦ୍ୟପି କଟକର ନାରୀମାନେ ଗୁରୁତ୍ୱ-ପୂର୍ଣ୍ଣ ଭୂମିକା ନେବା ପାଇଁ ସାଧନାରତ । ବାରବାଟୀ ଷ୍ଟାଡ଼ିଅମ୍ ସେଥିପାଇଁ ପୃଷ୍ଠଭୂମି ଯୋଗାଉଛି ।

ହସ୍ତଶିଳ୍ପ, ଝୋଟି ଆଦି ଚିତ୍ରକଳାରେ କଟକ ନଗରର ନାରୀମାନଙ୍କ ନୈପୁଣ୍ୟ ଉଲ୍ଲେଖଯୋଗ୍ୟ । ବହୁ ଝିଅ, ବୋହୂ ସେମାନଙ୍କ କାରିଗରୀର ପରାକାଷ୍ଠା ଦେଖାଇ ଉଚ୍ଚ ପ୍ରଶଂସିତ ହେବା ସଙ୍ଗେ ସଙ୍ଗେ ପୁରସ୍କୃତ ହୋଇଛନ୍ତି । 'ଉଦ୍ୟମ କେବେ ନିଷ୍ଫଳ ହୁଏ ନାହିଁ' ଏହି ନ୍ୟାୟରେ ନାରୀମାନେ ସାଧନା ଅବ୍ୟାହତ ରଖିଲେ କଟକ-ନଗରର ଶ୍ରୀବୃଦ୍ଧି ହେବା ସଙ୍ଗେ ସଙ୍ଗେ ବହୁ ଅନାମଧେୟ ନାରୀପ୍ରତିଭା ଆଲୋକର ରଙ୍ଗମଞ୍ଚରେ ନିଜସ୍ୱ ରଶ୍ମି ବିଚ୍ଛୁରିତ କରିପାରିବେ ।

ଏହାଛଡ଼ା ସାହିତ୍ୟର ବିଭିନ୍ନ କ୍ଷେତ୍ରରେ କଟକର ନାରୀ-ସମାଜ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ । ଦିନଥିଲା ଯେତେବେଳେ ବହୁନାରୀ ଲୋକଲୋଚନ ଅଗୋଚରରେ ରହିଯାଉଥିଲେ । ଗୃହବଧୂର କର୍ମ ସମ୍ପାଦନା ଓ ସଂଯୋଜନାକୁ ମୁଖ୍ୟକର୍ମ ବୋଲି ଗ୍ରହଣ କରି ଅନ୍ୟଦିଗ ପ୍ରତି ବିତସ୍ପୃହ ଥିଲେ । ସେମାନଙ୍କ ଲୁକ୍କାୟିତ ପ୍ରତିଭାକୁ ପ୍ରକାଶ କରିବାକୁ ମାନସିକ ପ୍ରସ୍ତୁତି କରି ପାରୁନଥିଲେ । ଏହାଛଡ଼ା ସେମାନଙ୍କ ମନରେ ସାମାଜିକ କୁସଂସ୍କାର, ନିନ୍ଦା, ଅପମାନର ଭୟ ବୁଢ଼ୀଆଣି ଜାଲ ପରି ବସା ବାନ୍ଧି ସେମାନଙ୍କର ବିକାଶ ପଥରେ ଅନ୍ତରାୟ ସୃଷ୍ଟି କରୁଥିଲା । କାଳେ ସେମାନେ କାହା ସହିତ ଦି'ପଦ କଥା କହିଲେ ବା କାଗଜ ପୃଷ୍ଠାରେ କିଛି ଲେଖି ପକାଇଲେ ତାହା ଅମାର୍ଜିତ ଅପରାଧ ହେବ ବା ନାରୀ ବିପଥ ଗାମିନୀ ହେବ ଏ ଆଶଙ୍କାରେ ସେମାନେ କିଛି ପ୍ରକାଶ କରିବାକୁ ସାହାସ କରୁନଥିଲେ । ତେଣୁ ବହୁ ପ୍ରତିଭା ଅକାଳରେ ଏମିତି ନଷ୍ଟ ହୋଇଯାଇଛି । ସେମାନଙ୍କୁ ଉତ୍ସାହିତ କରିବାକୁ ସୂର୍ଯ୍ୟମଣି ଦେବୀ, କୁମାରୀ ସୁରବାଳା, ପ୍ରୀତିନନ୍ଦା ଦାଶ ଆଦି ଛଦ୍ମ ନାମରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, କବି ରତ୍ନନାରାୟଣ ମହାପାତ୍ର କବି ସଦାଶିବ ଦାଶ ପ୍ରମୁଖ ବହୁ ସାହିତ୍ୟିକ ଲେଖୁଥିଲେ । ଏହାଛଡ଼ା ନିଜର ପତ୍ନୀ ଏବଂ ଆତ୍ମୀୟମାନଙ୍କ ନାମରେ ବହୁ ସାହିତ୍ୟିକ ମଧ୍ୟ ସାହିତ୍ୟ ସୃଷ୍ଟି କରିଛନ୍ତି । ଏବେ ଅବଶ୍ୟ ସେ ଦୃଶ୍ୟପଟ ବଦଳିଯାଇଛି । ନାରୀ ଗୃହାଙ୍ଗନର କୋଣାନ୍ତରେ ବୁଡ଼ିରହି ମଧ୍ୟ ଲେଖନୀ ଚାଳନା କରିପାରୁଛି ।

କୁନ୍ତଳା କୁମାରୀ, ଦେବହୂତି ଦେଈଙ୍କ ପର ପୀଢ଼ିରେ କବିରନ୍ନ ନିର୍ମଳାଦେବୀ, ଡ଼କ୍ଟର ମାୟାଧର ମାନସିଂହଙ୍କ 'ଧୂପ' କବିତାର ଅନୁରୂପ 'ଧିନାକେ' କବିତା ବହି ଲେଖିଛନ୍ତି । ଏଥିପାଇଁ ସେ ମାନସିକ ସ୍ତରରେ ବହୁ ନିର୍ଯ୍ୟାତନାର ଶିକାର ହୋଇଛନ୍ତି । ତଥାପି ସେ ସଂଗ୍ରାମ ପାଖରେ ନିଜକୁ ଅବନତ କରିନାହାନ୍ତି । ତାଙ୍କର ଆଦର୍ଶ ନାରୀଜାତିର ପାଥେୟ ହେବା ବାଞ୍ଛନୀୟ । ଅଭିନେତା ପ୍ରିୟନାଥ ମିଶ୍ରଙ୍କର ଆତ୍ମୀୟା ନିର୍ମଳାଦେବୀଙ୍କ କବିତା ସ୍ୱତନ୍ତ୍ର ସ୍ୱାଦ ବହନ କରିଛି । କଳକଳ ଛଳଛଳ ମଧୁମୟ ଭାଷାରେ କବି ମନମୋହିନୀ ଦେବୀଙ୍କର କବିତାଗୁଡ଼ିକ ମର୍ମସ୍ପର୍ଶୀ । କବି ବିନ୍ଧ୍ୟାବତୀ ମହାନ୍ତିଙ୍କର କବିତାଗୁଡ଼ିକର ଅଲୌକିକ ସତ୍ତ୍ୱର ସୌରଭ ମହକି ଉଠେ । କବି ତୁଳସୀ ଦାସଙ୍କ କବିତା ଅନୁପମ, ସାବଲୀଳ ଓ ହୃଦୟସ୍ପର୍ଶୀ । ଅନୁପମା ମହାପାତ୍ର, ଡାକ୍ତର ଯୋଗମାୟା ପଟ୍ଟନାୟକ, ଡାକ୍ତର ସରୋଜିନୀ ଷଡ଼ଙ୍ଗୀ, ସୁଜାତା ମହାନ୍ତି, ଅଧ୍ୟାପିକା ବାସନ୍ତୀ ପଟ୍ଟନାୟକ, ଜଷ୍ଟିସ ଦେବେନ୍ଦ୍ର ମୋହନ ପଟ୍ଟନାୟକଙ୍କ ସହଧର୍ମିଣୀ ପ୍ରଭା ପଟ୍ଟନାୟକ ଶକୁନ୍ତଳା ଦେବୀ ପ୍ରମୁଖ ବହୁ ଉଚ୍ଚକୋଟିର କବିତା ରଚନା କରି ନିଜ ପ୍ରତିଭାର ପରିଚୟ ଦେଇଛନ୍ତି । ଏହି କବିମାନଙ୍କର ଜୀବନଧର୍ମୀ କବିତାଗୁଡ଼ିକ ପରିଚ୍ଛନ୍ନ, ଗତିଶୀଳ ଏବଂ ଆବେଗମୟ । ଗାଳ୍ପିକାଭାବରେ ଭାରତୀ କର, ଗିରିଶବାଳା ମହାନ୍ତି, ତୁଳସୀ ଓଝା, ବିଦ୍ୟୁତ୍‌ଲତା ନନ୍ଦ, ସରଳାବାଳା ମହାପାତ୍ର, ଅଳକାଗୃହ ପ୍ରମୁଖ ଚରିତ୍ର-ବିଶ୍ଳେଷଣ ଏବଂ ପରିସ୍ଥିତିର ବିଚାର ଅତି ସୂକ୍ଷ୍ମ ଏବଂ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ କରିଛନ୍ତି । ଉପନ୍ୟାସ କ୍ଷେତ୍ରରେ ଅଗସ୍ତି କାନୁନ୍‌ଗୋ, ପ୍ରତିଭା ରାୟ, ଜ୍ୟୋତ୍ସ୍ନା ରାଉତରାୟ, ସୁଷମା ମହାନ୍ତି, କ୍ଷୀରୋଦା କାନୁନ୍‌ଗୋଙ୍କ ଅବଦାନ ଉଲ୍ଲେଖନୀୟ । ଶିଶୁ ସାହିତ୍ୟ କ୍ଷେତ୍ରରେ ମଧ୍ୟ ବହୁନାରୀ ଶିଶୁମାନଙ୍କର ମନସ୍ତାତ୍ତ୍ୱିକ ଶିଶୁସାହିତ୍ୟ ରଚନା କରି ସ୍ମରଣୀୟ ହୋଇଛନ୍ତି । କଟକରେ ସାଧନା-କରି ଶକୁନ୍ତଳା ପଣ୍ଡା ଏବେ ଭୁବନେଶ୍ୱରରେ 'ସୁଚରିତା' ମାସିକ ମହିଳା ସାହିତ୍ୟ ପତ୍ରିକାର ସମ୍ପାଦନା କରି ବିଭିନ୍ନ ବିଭାଗରେ ନାରୀମାନଙ୍କ ସମସ୍ୟା ଭିତ୍ତିକ କାର୍ଯ୍ୟକ୍ରମ ପରିବେଷଣ କରୁଛନ୍ତି ।

ବୀଣା ମହାପାତ୍ର 'ସୌରଭ', ବିଜୟିନୀ ଦାସ 'ଜୀବନ-ରଙ୍ଗ', ମିନତି ଦାଶ 'ସ୍ୱୟଂସିଦ୍ଧା' ସାହିତ୍ୟ ପତ୍ରିକା ଏବଂ ସୈରିନ୍ଧ୍ରୀ ସାହୁ ବାଲେଶ୍ୱରରେ 'ଧ୍ୱନି ପ୍ରତିଧ୍ୱନି' ଦୈନିକ ସମ୍ବାଦପତ୍ରର ସମ୍ପାଦନା କରୁଅଛନ୍ତି । ଏହାଛଡ଼ା ବହୁନାରୀ ସାହିତ୍ୟ ପତ୍ରିକା ସମ୍ପାଦନ କରିବାର ପ୍ରୟାସ ଅବ୍ୟାହତ ରଖିଛନ୍ତି ।

ପ୍ରବନ୍ଧ ଏବଂ ଅନୁବାଦ ସାହିତ୍ୟରେ ଗାୟତ୍ରୀ ରଥ, ଭାରତୀ ମିଶ୍ର, ସଖୀଦେଈ, ଅନ୍ନପୂର୍ଣ୍ଣା ମହାରଣା, ପ୍ରମୁଖ ନାରୀମାନେ ପାରିବାରିକ ଜୀବନ ଜଞ୍ଜାଳ ମଧ୍ୟରେ ଘାଣ୍ଟି ହୋଇ ସୁଦ୍ଧା ସାହିତ୍ୟ ସାଧନା ଅବ୍ୟାହତ ରଖିଛନ୍ତି । ଏହି ଲେଖିକାମାନଙ୍କର ବଳିଷ୍ଠ ଅବଦାନରେ ଆଧୁନିକ ଓଡ଼ିଆ ସାହିତ୍ୟ ସମୃଦ୍ଧ ହେଉଛି । ସେହି ପରିପ୍ରେକ୍ଷୀରେ ବିଚାର କଲେ ବହୁନାରୀ ସମାଜର ଉନ୍ନତି ବିଶେଷ କରି ଦୁଃଖୀ, ଅସହାୟ ନାରୀମାନଙ୍କୁ

ସମାଜରେ ସ୍ୱତନ୍ତ୍ର ସ୍ଥାନ ଦେବା ପାଇଁ ବିଭିନ୍ନ ଅନୁଷ୍ଠାନ ମାନ ଗଢ଼ିଛନ୍ତି । ଡାକ୍ତର ମହାମାୟୀ ପଟ୍ଟନାୟକ, ଶୈଳ ବେହେରା, ଡାକ୍ତର ଯୋଗମାୟା ପଟ୍ଟନାୟକ ପ୍ରମୁଖ 'ବସୁନ୍ଧରା' ନାମକ ଅନୁଷ୍ଠାନ ଖୋଲି ବହୁ ଅବହେଳିତ ଅନାଥ କନ୍ୟା ଶିଶୁଙ୍କର ଦାୟିତ୍ୱ ବହନ କରି ମହାନ୍ କର୍ତ୍ତବ୍ୟ ସମ୍ପାଦନା କରୁଛନ୍ତି । କେତେ ଶିଶୁକନ୍ୟା' ନିର୍ଦ୍ଦୟ ମାରର କାଟ ପରି ଅକାଳରେ ଝଡ଼ି ପଡ଼ୁଥାନ୍ତେ । କେତେ ମଧ୍ୟ ଛିଣ୍ଡା ପୋଷାକ ବା ଖାଲି ଦେହରେ ପେଟ ପାଇଁ ମୁଠିଏ ଆହାର ଖୋଜିବାକୁ ଘର ଘର ବୁଲି ନିର୍ଯାତିତ ହୋଇଥାନ୍ତେ । କିନ୍ତୁ ସେଇଭଳି ବହୁ ଅନୁଷ୍ଠାନ ଦ୍ୱାରା ବହୁ ଅନାଥ ଶିଶୁକନ୍ୟା ଉପଯୁକ୍ତ ମଣିଷ ହୋଇ ସମାଜରେ ନିଜର ସ୍ଥାନ ନିରୁପଣ କରିପାରୁଛନ୍ତି । ସେମାନେ ଉଚ୍ଚଶିକ୍ଷିତା, ଗାୟିକା, ଲେଖିକା ପ୍ରଭୃତି ହୋଇ ନିଜର ତଥା ସମାଜର କଲ୍ୟାଣ ସାଧନ କରି ପାରୁଛନ୍ତି । ସେହିଭଳି ସାହାନାଜ ବାନୁ, ପ୍ରଭା ପଟେଲ ପ୍ରଭୃତି ନାରୀମାନେ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଢ଼ି ଏବଂ ନେତ୍ରୀ ଭାବରେ ଭୂମିକା ଗ୍ରହଣ କରି ବହୁ ନିଃସହାୟ ମହିଳାମାନଙ୍କର ଦୁଃଖ, ଯନ୍ତ୍ରଣା ନିବାରିତ କରି ପାରୁଛନ୍ତି ।

ନାରୀମାନଙ୍କ ପ୍ରଗତି ପାଇଁ, ନାରୀମାନଙ୍କ ଅବମାନନା ଓ ଅସମ୍ମାନର ପ୍ରତିବାଦ କରି ବହୁ ନାରୀ ସଂଗଠିତ ଆନ୍ଦୋଳନ କରି ନ୍ୟାଯ୍ୟ ଦାବୀ ହାସଲ କରି ପାରୁଛନ୍ତି । ନାରୀମାନଙ୍କ ଅବଚେତନ ମନରେ ନାରୀ ଜାଗରଣର ବିପ୍ଳବର ବହ୍ନି ଜଳାଇ ଲକ୍ଷ୍ୟ ସାଧନ କରିପାରିଛି ଏହି କଟକ ନଗରୀର ନାରୀ ସମାଜ । ଘର ଭିତରେ ଜନନୀ, ଭଗିନୀ, ଜାୟା ଭାବରେ ସକଳ ଜଞ୍ଜାଳ ମୁଣ୍ଡେଇ ଦକ୍ଷତାର ସହ ଘରକାମ ତୁଲାଇ ପାରିଛି । ସେହିପରି ରାଜରାସ୍ତା ଉପରେ ବିପ୍ଳବର ପତାକା ତୋଳିଧରି ନାରୀ ସମାଜର କଲ୍ୟାଣ ସାଧନ କରିପାରିଛି ।

ତେଣୁ ଏହା ସ୍ପଷ୍ଟ ଯେ ଅତି ନିର୍ଦ୍ଦିଷ୍ଟ କ୍ଷେତ୍ର ବ୍ୟତୀତ ନାରୀ ପୁରୁଷଠାରୁ ଅନ୍ୟାନ୍ୟ କ୍ଷେତ୍ରରେ ସ୍ୱତନ୍ତ୍ର ନୁହେଁ । ମାନସିକ କର୍ମ ଏବଂ ସମୂହ କଲ୍ୟାଣ ପାଇଁ ନାରୀ ଓ ପୁରୁଷ ଭିତରେ ସେଭଳି ପ୍ରାର୍ଥକ୍ୟ କିଛି ନାହିଁ । ତେବେ ଚରିତ୍ର କହିଲେ ଆମେ ଯାହା ବୁଝୁ, ସେ କ୍ଷେତ୍ରରେ ପୁରୁଷ ସ୍ୱେଚ୍ଛାଚାରୀ ହୋଇପାରେ କିନ୍ତୁ ନାରୀ ସ୍ୱେଚ୍ଛାଚାରୀ ହେଲେ ତାହା ସାମାଜିକ ଗର୍ହିତ ସୃଷ୍ଟି କରିଥାଏ । ତେଣୁ କର୍ମଜୀବୀ ନାରୀ ପାଇଁ ସାମାଜିକ ସମସ୍ୟା ଅନେକ ସମୟରେ ବହୁ ଦୁର୍ଘଟଣା ଘଟାଇଥାଏ । ବିବାହିତା ନାରୀ କ୍ଷେତ୍ରରେ ତାହା ଆହୁରି ଜଟିଳ ପରିସ୍ଥିତି ସୃଷ୍ଟି କରିଥାଏ । ପରିବାର ଜୀବନ ସହିତ ସମାଜ ଜୀବନରେ ସନ୍ତୁଳିତ ହୋଇ ନାରୀ ମାନସିକ ଓ ଶାରୀରିକ କ୍ଳେଶ, ଅବସାଦର ଶିକାର ହୁଏ । ଦୁଇଟି ଜୀବନ ବହୁକ୍ଷେତ୍ରରେ ନାରୀ ପାଇଁ ସୁରୁଖୁରୁରେ ଚଳାଇବା ଅସମ୍ଭବ ହୋଇପଡ଼େ । ନିଜ ହାତରେ ଗୃହକର୍ମ ସମ୍ପାଦନ କରି, ପୁତ୍ର, କନ୍ୟା, ଶାଶୁ ଶ୍ୱଶୁର ପ୍ରଭୃତି ଆତ୍ମୀୟସ୍ୱଜନଙ୍କ ଦାୟିତ୍ୱ ସାରି ନାରୀ ପ୍ରବେଶ କରେ ଅଫିସ ବା ସେଭଳି କୌଣସି କର୍ମକ୍ଷେତ୍ରକୁ । ରୁଟିନ ବନ୍ଧା ସମୟରେ କାର୍ଯ୍ୟ ଶେଷକରି ଘରକୁ ପ୍ରତ୍ୟାବର୍ତ୍ତନ ପରେ ଘରର ତା'ପାଇଁ ପଡ଼ି ରହିଥାଏ ଅସମାପ୍ତ ଦାୟୀତ୍ୱ । କ୍ଳାନ୍ତ,

ଶ୍ରାନ୍ତ ମନକୁ ହାଲକା କରିବାକୁ ସେ ଉପଯୁକ୍ତ ବିଶ୍ରାମ ଟିକିଏ ପାଏ ନାହିଁ । ଘରଣା ଭଳି ମେଣି ହୋଇ ଯଦି ସମସ୍ତଙ୍କର ଦାୟିତ୍ୱ ଗ୍ରହଣ କଲା, ତେବେ ସେ ପ୍ରିୟପାତ୍ରୀ ହେଲା । ଯଦି ସେକଥା ତା' ପକ୍ଷରେ ସମ୍ଭବ ନହେଲା, ତା'ହେଲେ ସେ ହେଲା ସ୍ୱେଚ୍ଛାଚାରିଣୀ । ତେଣୁ ସବୁ କଳିତକରାଳ ମନଫଟାଫଟିର ପର୍ବ ଆରମ୍ଭ ହୋଇଯାଏ । ନିଜ ପ୍ରତି ଚରମ ଅବହେଳା କରି ନାରୀ ଯଦି ସହନଶୀଳତାର ଆଚରଣରେ ଅନ୍ୟମାନଙ୍କୁ ସନ୍ତୁଷ୍ଟ କରି ପାରିଲା ସେହିଠାରେ ଯୌଥ ପରିବାର ବଞ୍ଚିପାରିଲା । ନଚେତ୍ ମନାନ୍ତର, ମତାନ୍ତର ସମାଜ-ସଂସାର ଭୁଷୁଡ଼ି ପଡ଼ିଲା । ତେଣୁ ପରିବାର ପରିସରରେ ଅବସରଭୋଗୀ ଜୀବନ-ଯାପନ କରି ବହୁନାରୀ ସାରସ୍ୱତ ସାଧନାରେ ବ୍ରତୀ ହୋଇଛନ୍ତି ।

ଅବଶ୍ୟ କଟକ ନଗରୀର କର୍ମଜୀବୀ ଏବଂ ଗୃହ ବଧୂମାନଙ୍କର ସେଭଳି କିଛି ସମସ୍ୟା ଗୁରୁତର ହୋଇନାହିଁ । ଗ୍ରାମ୍ୟ ସୁଲଭ ମଣିଷ—ମଣିଷ ଭିତରେ ପ୍ରଚଳିତ ସାମାଜିକ ଜୀବନ ଏବେ ମଧ୍ୟ କଟକରେ ଅବ୍ୟାହତ ଅଛି । ଆଧୁନିକ ସହର ଏବଂ ନଗର ବିକୃତ ବାତାବରଣରେ ଏବେ ମଧ୍ୟ କଟକ ମହାନଗରୀ କଳୁଷିତ ହୋଇନାହିଁ ।

କଟକରେ ପାରିବାରିକ ଜୀବନ ଏବଂ ନାରୀର ମର୍ଯ୍ୟାଦା ସ୍ୱଚ୍ଛନ୍ଦ ଓ ପରିଚ୍ଛନ୍ନ ହୋଇଥିବାରୁ ନାରୀ ପ୍ରତିଭାର ସୁଷମ ବିକାଶ ସମ୍ଭବପର ହୋଇପାରୁଛି । କଟକରେ ନାରୀ ପ୍ରତିଭା ଭାରତବର୍ଷର ଅନ୍ୟାନ୍ୟ ଅଞ୍ଚଳ ତୁଳନାରେ ନ୍ୟୂନ ନୁହେଁ, ବରଂ ଆଦର୍ଶ ସ୍ଥାନୀୟ । ବିଶିଷ୍ଟ ଶିକ୍ଷାବିତ୍ ପ୍ରାଣକୃଷ୍ଣ ପରିଜାଙ୍କ କନ୍ୟା ସୌଦାମିନୀ ପଞ୍ଜାବରେ ବିବାହ କରି ପଞ୍ଜାବର ପରମ୍ପରା ଓ ସଂସ୍କୃତିକୁ ଆଦରି ନେଇଥିଲେ ମଧ୍ୟ ଓଡ଼ିଶାର, ଓଡ଼ିଆର ସମ୍ମାନ ବିଶେଷତଃ କଟକ ନଗରୀର କଳା-ସଂସ୍କୃତି ଓ ସାହିତ୍ୟର ମୂର୍ଚ୍ଛନାକୁ ସେ ଏବେ ମଧ୍ୟ ଭୁଲି ନାହାନ୍ତି । ଭାରତର ବିଭିନ୍ନ ପ୍ରାନ୍ତରେ କଟକର ନାରୀମାନେ ସ୍ୱାମୀ ପୁତ୍ର ପରିବାର ଧରି ରହୁଥିଲେ ବା ବିଭିନ୍ନ ଚାକିରୀ କ୍ଷେତ୍ରରେ ଯୋଗଦେଇ ଜୀବିକା ନିର୍ବାହ କରୁଥିଲେ ମଧ୍ୟ କଦାପି ସଂକୀର୍ଣ୍ଣ ସ୍ୱାତନ୍ତ୍ର ଦାବୀକରି କଟକ ନଗରର ମର୍ଯ୍ୟାଦା ହାନିକରି ନାହାନ୍ତି । 'ଯେ ଦେଶ ଯାଇ ସେ ଫଳ ଖାଇ' ନୀତିରେ ବିଶ୍ୱାସ ରଖି ସେମାନେ ନୂତନ ପରିସ୍ଥିତିର ସ୍ୱାଗତ କରିଛନ୍ତି । ସେହି ପରମ୍ପରାରେ ନିଜକୁ ଖାପ ଖୁଆଇ ଚଳେଇ ନେଇଛନ୍ତି । ଏବେ ମଧ୍ୟ ଆସାମ, ପଶ୍ଚିମ ବଙ୍ଗ, ଉତ୍ତର ପ୍ରଦେଶ, ବିହାରରେ ବସବାସ କରୁଥିବା ବା ସ୍ଥାୟୀ ବାସିନ୍ଦା ଭାବରେ ରହୁଥିବା ବହୁ ନାରୀ ପ୍ରତିଭା ଏହି କଟକ ନଗରର ପାଣି ପବନରେ ସେମାନଙ୍କ ସାଧନା ଆରମ୍ଭ କରିଥିଲେ । ଗୁଜୁରାଟର ବରୋଦା ଏବଂ ସୁରତ ସହରରେ କଟକର ନାରୀ ପ୍ରତିଭା-ମାନେ ଫୁଲପରି ବିକଶିତ ହୋଇଛନ୍ତି ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଜୁ ପଟ୍ଟନାୟକ ବ୍ରାହ୍ମ-ଧର୍ମାବଲମ୍ବୀ ତାଙ୍କ କନ୍ୟା ଗୀତା ଗୁଜୁରାଟରେ ବିବାହ କରି ଏବେ ଯୁକ୍ତରାଷ୍ଟ୍ର ଆମେରିକାରେ ଅବସ୍ଥାପିତ ହୋଇଛନ୍ତି । ସେ ଇଂରେଜୀ ଭାଷାରେ ଲେଖି ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରିଛନ୍ତି ।

ସେ ଯେଉଁଠାରେ ଥାଆନ୍ତୁ ବା ଯେଉଁ ଭାଷାରେ ନିଜ ସାଧନାର ପରିଚୟ ଦିଅନ୍ତୁ; କିନ୍ତୁ ସେ ଏହି କଟକ ନଗରର କନ୍ୟା । ଏହି ମାଟିର ସ୍ପର୍ଶରେ କଅଁଳି ଉଠିଛି କେତେ ନବାଗତଙ୍କର ସାହିତ୍ୟ ସଙ୍ଗୀତ, ନୃତ୍ୟର ପଦ୍ମ ପାଖୁଡ଼ା । ଆମେରିକାରେ ଏବେ ପ୍ରାୟ ୫୦୦ରୁ ଅଧିକ କଟକବାସୀ ସ୍ଥାୟୀ ଭାବରେ ବସବାସ କଲେଣି । ସେମାନେ ସେଠାରେ ସ୍ୱତନ୍ତ୍ର ଏଥେନିକ୍-ଗୋଷ୍ଠୀ ଭାବରେ ଓଡ଼ିଶାର ସ୍ୱାଭିମାନ ଏବଂ ସଂସ୍କୃତିର ବିକାଶ ସାଧନାରେ ବ୍ରତୀ ଅଛନ୍ତି ଏବଂ ସେଥିରେ କଟକର ନାରୀମାନେ ଅଂଶଗ୍ରହଣ କରି ଓଡ଼ିଶାର ସୁନାମ ବଜାୟ ରଖିଛନ୍ତି । ତେଣୁ ଐତିହାସିକ କଟକ ପ୍ରଜ୍ଞା ଓ ପ୍ରତିଭାର ଚନ୍ଦନ ବାସ୍ନାରେ ମହକିତ । ତା'ର ସହର ଉପକଣ୍ଠର ନାଳ ନର୍ଦ୍ଦମା, ଗଳିକନ୍ଦିରେ ଭର୍ତ୍ତି କୋଠାବାଡ଼ି, ଅହରହ ଯାନବାହାନ ଚଳାଚଳ, କଳକାରଖାନା, ସର୍ବୋପରି ବହୁ ସଂଖ୍ୟାର ବାସିନ୍ଦାଙ୍କ ବସବାସ ଏବଂ ଯାତ୍ରୀମାନଙ୍କର ଅସମ୍ଭବ ଭିଡ଼ ସହରର ପରିବେଶକୁ ଦୂଷିତ କରୁଛି । ମଶା ମାଛିଙ୍କ ଉପଦ୍ରବରେ ବିଭିନ୍ନ ରୋଗ ସଂକ୍ରମିତ ହେଉଛି । ତଥାପି ଏହି କଟକର ମାଟିରେ ନାରୀ ପ୍ରତିଭାର ଅଙ୍କୁରୋଦଗମ୍ ହୋଇଛି । ନବ ପ୍ରଭାତର ଆଲୋକରେ ଉଦ୍ଭାସିତ ହୋଇଛି ଏହି ନଗର, ଏବଂ ସେଇ ଆଲୋକର ବିପଣୀ ବସାଇ ଦେଇଛି ଅନ୍ୟତ୍ର ।

ଜଗନ୍ନାଥ ସଂସ୍କୃତି ହେଉଛି ଓଡ଼ିଶାର ଧର୍ମ । ଏହି ସଂସ୍କୃତି ସମ୍ପ୍ରଦାୟ ଭିତ୍ତିକ ନୁହେଁ । ଏହା ସବୁ ଧର୍ମମତ ଏବଂ ଧର୍ମପଥର ଊର୍ଦ୍ଧ୍ୱରେ ମାନବିକତା ଏବଂ ମଣିଷପଣିଆକୁ ଗ୍ରହଣ କରେ । ଏହା ଉଚ୍ଚାରଣମୂଳକ ନୁହେଁ, ଆଚରଣ ମୂଳକ । କିନ୍ତୁ ସହନଶୀଳ ଗୃହସ୍ଥ-ଧର୍ମ ହେଉଛି ଜଗନ୍ନାଥ ସଂସ୍କୃତିର ନିର୍ଯ୍ୟାସ । ଗୃହସ୍ଥ-ଧର୍ମରେ ନାରୀର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । କଟକର ସାମାଜିକ ଜୀବନରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ଏହି ନଗରର ନାରୀପ୍ରତିଭାମାନେ ନିଷ୍ଠାର ସହିତ ଉଦ୍ୟମ କରି ଆସିଛନ୍ତି । ଅନେକ କୁସଂସ୍କାର, ଅନ୍ଧବିଶ୍ୱାସର କାଠଗଡ଼ାରୁ ନାରୀସମାଜକୁ ମୁକୁଳାଇ ଆଣିବାର ସଫଳତା ଅର୍ଜନ କରିଛନ୍ତି । ଜଣେ ଶିକ୍ଷିତା ନାରୀକୁ ବୁଝେଇ ହୁଏ କିନ୍ତୁ ଜଣେ ଅଶିକ୍ଷିତା ନାରୀକୁ ସହଜରେ ବୁଝେଇ ଅଜ୍ଞାନତା ଦୂର କରାଯାଇ ନପାରେ । ତଥାପି ଏହି ମହାନଗରର ସମାଜସେବୀ ନାରୀମାନେ ସେମାନଙ୍କୁ ପ୍ରବର୍ତ୍ତାଇ ସଠିକ୍ ପଥ ଦେଖାଇ ମହାନ୍ କର୍ମ ସାଧିତ କରିପାରୁଛନ୍ତି । ଯୌତୁକ ପାଇଁ ନିର୍ଯ୍ୟାତିତ ହେଉଥିବା ରମଣୀର ସ୍ୱାମୀ, ଶାଶୁଙ୍କ ସହିତ ଉତ୍ତମ ବୁଝାମଣା କରି କେତୋଟି ମୂଲ୍ୟବାନ ଜୀବନକୁ ସେମାନଙ୍କ ନିଷ୍ଠୁର ହାତରୁ ରକ୍ଷାକରି ପାରୁଛନ୍ତି ଏବଂ ଯୌତୁକ-ବିହୀନ ବିବାହ କରିବାକୁ ନାରୀମାନଙ୍କୁ ପ୍ରେରଣା ଦେଉଅଛନ୍ତି ।

କଟକ ହେଉଛି ଏକ ବିଶେଷ ସ୍ଥାନ । ଏହାକୁ ତନ୍ତ୍ର-ସାଧକମାନେ ଯୋନି-କ୍ଷେତ୍ର ବୋଲି ଅଭିହିତ କରିଥାନ୍ତି । ମାତ୍ର କଟକର ସିଭିକ୍ ସର୍ଭେ କରିଥିବା ବିଶିଷ୍ଟ ଟାଉନ୍-ପ୍ଲାନର ଭି. ସି. ମେହେନ୍ଦ୍ରାଙ୍କ ମତାନୁସାରେ ଏହା ହେଉଛି କାର୍ମୁକ-କ୍ଷେତ୍ର । ତେବେ କୋଦଣ୍ଡ। ଦଣ୍ଡପାଟର ଅନ୍ତର୍ଭୁକ୍ତ କଟକକୁ କୋଦଣ୍ଡ-କ୍ଷେତ୍ର ବୋଲି କେତେକ

ଗବେଷକ ମତ ପୋଷଣ କରିଛନ୍ତି । କୋଦଣ୍ଡ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ପଦ ଜଡ଼ିତ । ଗବେଷକ ଯଶୋବନ୍ତ ନାରାୟଣ ଧର କଟକରେ କନ୍ଧ, ଶବର ଆଦି ଆଦିବାସୀମାନେ ବସବାସ କରୁଥିଲେ ବୋଲି ତାଙ୍କ ଲେଖାରେ ପ୍ରକାଶ କରିଛନ୍ତି । ଆଦିବାସୀ ସମାଜରେ ନାରୀର ସମ୍ମାନ ଅପୂର୍ବ ବୋଲି ସେ ଦର୍ଶାଇଛନ୍ତି । ବିଶିଷ୍ଟ ତନ୍ତ୍ର-ସାଧିକା ନତେଇ ଧୋବଣୀ କଟକର ଚଉଦ୍ଦଶାଘାଟ ନିକଟବର୍ତ୍ତୀ, ଭୁଆସୁଣୀ ଗଛ ସହିତ ସମ୍ପର୍କ ବିଷୟରେ କିମ୍ବଦନ୍ତୀ ପ୍ରଚଳିତ । ତେଣୁ କଟକ ସାରା ଓଡ଼ିଶାରେ ନାରୀପ୍ରତିଭା ବିକାଶ ପାଇଁ ଅନୁପମ ପୃଷ୍ଠଭୂମି ଯୋଗାଇ ଆସିଛି ।

ଆଧୁନିକ ଅର୍ଥରେ ମୁଖ୍ୟତଃ ଏହି ଶତାବ୍ଦୀର ପ୍ରାରମ୍ଭରୁ କଟକର ନାରୀମାନେ କ୍ରମେ ଅଧିକରୁ ଅଧିକତର ଭାବରେ ସମାଜସେବା କ୍ଷେତ୍ରକୁ ଆସି ସେମାନଙ୍କ ପ୍ରତିଭାର ଉତ୍କର୍ଷତା ପ୍ରତିପାଦନ କରି କଟକ ମାଟିକୁ ମର୍ଯ୍ୟାଦା-ପୂର୍ଣ୍ଣ କରିଛନ୍ତି । ବିଗତ ନବେ ବର୍ଷର ଇତିହାସରେ ଆଧୁନିକ ଓଡ଼ିଆନାରୀର ଜୀବନଚର୍ଯ୍ୟା, ମୀତିବୋଧ ଏବଂ ସ୍ୱାଭିମାନକୁ କଟକର ନାରୀପ୍ରତିଭାମାନେ ଉପଯୁକ୍ତ ନେତୃତ୍ୱ ଦେଇଆସିଛନ୍ତି । ସଂସ୍କାରଶୀଳ ସଦ୍‌ଭାବନା, ପରିବାର ନିୟନ୍ତ୍ରଣ ଯୋଜନା, ସାକ୍ଷରତା ପ୍ରସାର, ଜନସ୍ୱାର୍ଥମୂଳକ ସେବା, ସାହିତ୍ୟ, ସଂସ୍କୃତି, କଳାର ବିକାଶ, ବିଭିନ୍ନ ନାରୀମଙ୍ଗଳ କାର୍ଯ୍ୟକ୍ରମରେ କଟକର ନାରୀ-ପ୍ରତିଭାମାନେ ସକ୍ରିୟ ଅଂଶ ଗ୍ରହଣ କରିଛନ୍ତି । ତଥାପି ମଧ୍ୟ ଓଡ଼ିଶାର ସାଧାରଣ ନାରୀ ଅଦ୍ୟାବଧି ଏହାକୁ ଗ୍ରହଣ କରି ପାରିନାହିଁ ।

ତେଣୁ ଏସବୁ ପ୍ରଚାର ଓ ପ୍ରସାର ପାଇଁ କଟକର ନାରୀ ପ୍ରତିଭାମାନଙ୍କର ଆହୁରି କର୍ତ୍ତବ୍ୟ ବାକି ରହିଛି । ଓଡ଼ିଶାର ବିକାଶ ପାଇଁ ସେମାନଙ୍କର ବଳିଷ୍ଠ ଅବଦାନକୁ ଅପେକ୍ଷା କରାଯାଉଛି । କଟକର ଶହ ଶହ ନାରୀ ଏହି ଭୂମିକାକୁ ଗ୍ରହଣ କରି ସାର୍ଥକ କରିବେ ନିଜକୁ ଏବଂ ଏ ମାଟିକୁ । ସେମାନଙ୍କ ଗୌରବରେ ଗୌରବାନ୍ୱିତ ହେବ ଏହି କଟକ ନଗରୀ । ତେଣୁ ଓଡ଼ିଆନାରୀର ସଫଳତା ଓ କୃତିତ୍ୱ ପାଇଁ କଟକନଗରୀର ଅବଦାନ ଗୁରୁତ୍ୱପୂର୍ଣ୍ଣ ଏବଂ ଐତିହାସିକ । ଏ ଦିଗରେ ଧାରାବାହିକ ଭାବରେ ବିଜ୍ଞାନସମ୍ମତ ବସ୍ତୁନିଷ୍ଠ ପର୍ଯ୍ୟାଲୋଚନା ପାଇଁ ଏ ପ୍ରବନ୍ଧଟି ପ୍ରାଥମିକ ସର୍ବେକ୍ଷଣ ମାତ୍ର ।



# କଟକଠାରେ କ୍ୟାନ୍ସର ପ୍ରତିଷ୍ଠାନ

**ଶ୍ରୀ ସତ୍ୟ ରାୟ**

ଆଗାମୀ ୨୦୧୫ ମସିହା ସୁଦ୍ଧା ପୃଥିବୀରେ ସର୍ବାଧିକ ଲୋକ କ୍ୟାନ୍ସର ବା କର୍କଟ ରୋଗରେ ଆକ୍ରାନ୍ତ ହୋଇ ପ୍ରାଣ ହରାଇବେ ବୋଲି ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ (ଡବ୍ଲୁ. ଏଚ୍. ଓ.) ପକ୍ଷରୁ ଆଶଙ୍କା ପ୍ରକାଶ କରାଯାଇଛି । ଏଡ୍ସ, ଯକ୍ଷ୍ମା ଓ ମେଲେରିଆରେ ସର୍ବମୋଟ ଯେତିକି ଲୋକ ପ୍ରାଣ ହରାଉଛନ୍ତି ତାହା କର୍କଟରେ ପ୍ରାଣ ହରାଉଥିବା ଲୋକଙ୍କ ସଂଖ୍ୟାଠାରୁ ଅତିକ୍ରମ କରିଯିବାର ସମ୍ଭାବନା ରହିଛି । ପାଶ୍ଚାତ୍ୟ ଦେଶରେ ସର୍ବାଧିକ ପ୍ରାଣନାଶ କରୁଥିବା ରୋଗଗୁଡ଼ିକ ମଧ୍ୟରେ କ୍ୟାନ୍ସର ଦ୍ୱିତୀୟ ସ୍ଥାନରେ ଥିଲାବେଳେ ବିକାଶଶୀଳ ଦେଶଗୁଡ଼ିକରେ ଏହାର ସ୍ଥାନ ତୃତୀୟରେ ରହିଛି । ଏ ପ୍ରକାର ସାଙ୍ଘାତିକ ରୋଗର ଶୀଘ୍ର ନିରୂପଣ ତଥା ନିବାରଣ ପାଇଁ ତୁରନ୍ତ ପଦକ୍ଷେପମାନ ଗ୍ରହଣ କରିବାକୁ ବିଶ୍ୱସ୍ୱାସ୍ଥ୍ୟ ସଙ୍ଗଠନର କ୍ୟାନ୍ସର ନିୟନ୍ତ୍ରଣ କାର୍ଯ୍ୟକ୍ରମ ପକ୍ଷରୁ ପରାମର୍ଶ ଦିଆଯାଇଛି ।

ବର୍ତ୍ତମାନ ତୃତୀୟ ବିଶ୍ୱରେ ପ୍ରତିବର୍ଷ ପ୍ରାୟ ୫ ନିୟୁତ ଲୋକ ଏହି ରୋଗରେ ଆକ୍ରାନ୍ତ ହେଉଥିବା ବେଳେ ସେମାନଙ୍କ ମଧ୍ୟରୁ ପ୍ରାୟ ୩ ନିୟୁତ ଲୋକ ପ୍ରାଣ ହରାଉଥିବାର ଏକ ସର୍ଭେରୁ ଜଣାପଡ଼ିଛି । ୨୦୧୫ ମସିହା ବେଳକୁ ଏହି ରୋଗରେ ଆକ୍ରାନ୍ତ ଲୋକଙ୍କ ସଂଖ୍ୟା ୧୦ ନିୟୁତ ଓ ମୃତ୍ୟୁସଂଖ୍ୟା ୬ ନିୟୁତକୁ ଅତିକ୍ରମ କରିଯିବ ବୋଲି ସତର୍କ କରାଇ ଦିଆଯାଇଛି ।

ଏହି ରୋଗର ବିଭିନ୍ନ କାରଣ ମଧ୍ୟରେ ତମାଖୁ ବ୍ୟବହାର ଓ ପରିବେଶ ପ୍ରଦୂଷଣ ପ୍ରଭୃତି ଅନ୍ତର୍ଭୁକ୍ତ । ଉନ୍ନତ ଦେଶଗୁଡ଼ିକରେ ୧୫ ବର୍ଷରୁ ଉର୍ଦ୍ଧ୍ୱ ପ୍ରତି ୩ ଜଣ ପୁରୁଷଙ୍କ ମଧ୍ୟରୁ ଜଣେ ଧୂମପାନ କରୁଥିବା ବେଳେ ବିକାଶଶୀଳ ଦେଶଗୁଡ଼ିକରେ ଦୁଇଜଣ ପୁରୁଷଙ୍କ ମଧ୍ୟରୁ ଜଣେ ଧୂମପାନ କରିଥାଆନ୍ତି । ଭାରତରେ ଏହି ମନ୍ଦ ଅଭ୍ୟାସ ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଫୁସ୍‌ଫୁସ୍‌ଜନିତ କର୍କଟ ରୋଗରେ ପ୍ରାଣ ହରାଉଥିବା ରୋଗୀମାନଙ୍କ ମଧ୍ୟରୁ ୯୦ ଭାଗ ତମାଖୁ ସେବନ କରୁଥିବା ଜଣାପଡ଼ିଛି । ବିକାଶଶୀଳ ଦେଶଗୁଡ଼ିକରେ ବାର୍ଷିକ ପ୍ରାୟ ୩,୦୦,୦୦୦ ଲୋକ ମୁଖ

ଗନ୍ଧରଜନିତ କର୍କଟ ରୋଗରେ ଆକ୍ରାନ୍ତ ହେଉଛନ୍ତି । ସେଥି ମଧ୍ୟରୁ କେବଳ ଭାରତରେ ଏହି ସଂଖ୍ୟା ହେଉଛି ପ୍ରାୟ ୬୧,୦୦୦ ।

ଏହି ପରିପ୍ରେକ୍ଷୀରେ ଆମ ଦେଶ ତଥା ରାଜ୍ୟରେ କ୍ୟାନ୍ସର ରୋଗ ନିରୂପଣ ତଥା ଚିକିତ୍ସା ପାଇଁ ଅନେକ ଯୋଜନା ସରକାରୀ ଓ ବେସରକାରୀ ଉଦ୍ୟମରେ କାର୍ଯ୍ୟକାରୀ କରାଯାଉଛି । ଏଥିପାଇଁ ଜାତୀୟ ତଥା ରାଜ୍ୟସ୍ତରରେ କ୍ୟାନ୍ସର ନିୟନ୍ତ୍ରଣ ବୋର୍ଡମାନ ଗଠନ କରାଯାଇଛି ।

କଟକ ମେଡ଼ିକାଲ ରୋଡ଼ସ୍ଥିତ ଆଚାର୍ଯ୍ୟ ହରିହର ଆଞ୍ଚଳିକ କ୍ୟାନ୍ସର ଗବେଷଣା ଓ ଚିକିତ୍ସା କେନ୍ଦ୍ର ଏହି ରୋଗ ନିରୂପଣ ତଥା ଚିକିତ୍ସା କ୍ଷେତ୍ରରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିପାରିଛି । ଦେଶର ବିଭିନ୍ନ ସ୍ଥାନରେ ଏହିଭଳି ଆଜି ୯ଟି କେନ୍ଦ୍ର କାର୍ଯ୍ୟ କରୁଛି ।

ମହାନ ତ୍ୟାଗୀ, ଦେଶସେବକ ଓ ଶିକ୍ଷାବିତ୍ ପୁଣ୍ୟାତ୍ମା ଆଚାର୍ଯ୍ୟ ହରିହର ଦାସଙ୍କ ନାମରେ ନାମିତ ଏହି କେନ୍ଦ୍ରଟି ଏକ ସ୍ୱୟଂଶାସିତ ପ୍ରତିଷ୍ଠାନ । ପୂର୍ବରୁ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ହାସ୍‌ପାତାଳ ସହିତ ସଂଶ୍ଳିଷ୍ଟ ରେଡ଼ିଓଥେରାପି ବା ରଞ୍ଜନରଶ୍ମି ବିଭାଗକୁ ୧୯୮୧ ମସିହା ଫେବୃୟାରୀ ପହିଲାରେ ଏକ ସ୍ୱତନ୍ତ୍ର କ୍ୟାନ୍ସର ପ୍ରତିଷ୍ଠାନ ରୂପେ ଉନ୍ନୀତ କରାଯାଇଥିଲା ।

ଏହି କେନ୍ଦ୍ରକୁ କେବଳ ଓଡ଼ିଶା କାହିଁକି ବିହାର, ପଶ୍ଚିମବଙ୍ଗ, ମଧ୍ୟପ୍ରଦେଶ ଓ ଆନ୍ଧ୍ର ପ୍ରଦେଶରୁ ମଧ୍ୟ ବହୁ ରୋଗୀ ପରୀକ୍ଷା ତଥା ଚିକିତ୍ସା ପାଇଁ ଆସିଥାଆନ୍ତି । ୧୯୮୪ ମସିହା ପର୍ଯ୍ୟନ୍ତ ଏହା ରାଜ୍ୟ ସରକାରଙ୍କ ପ୍ରତ୍ୟକ୍ଷ ପ୍ରଶାସନିକ ନିୟନ୍ତ୍ରଣାଧୀନ ଥିଲା । ପରେ, ୧୯୮୪ ମସିହା ଅପ୍ରେଲ ୨୪ ତାରିଖରେ କ୍ୟାନ୍ସର ନିୟନ୍ତ୍ରଣ କାର୍ଯ୍ୟକ୍ରମକୁ ଅଧିକ ବ୍ୟାପକ ତଥା ଫଳପ୍ରଦ କରିବା ପାଇଁ ଏହାକୁ ଏକ ସ୍ୱୟଂଶାସିତ ସଂସ୍ଥାରେ ପରିଣତ କରାଯାଇଥିଲା ।

ପ୍ରାୟ ୭ ଏକର ପରିମିତ ଜମି ଉପରେ ପ୍ରତିଷ୍ଠିତ ଏ କେନ୍ଦ୍ରର ପରିଚାଳନା ପାଇଁ ଉଭୟ କେନ୍ଦ୍ର ଓ ରାଜ୍ୟ ସରକାର ପ୍ରତିବର୍ଷ ଆର୍ଥିକ ଅନୁଦାନ ଯୋଗାଇ ଦେଇଥାଆନ୍ତି । ବିଭିନ୍ନ ଅତ୍ୟାଧୁନିକ ଚିକିତ୍ସା ଉପକରଣ କ୍ରୟ କରିବା ସାଙ୍ଗକୁ ଗବେଷଣା କାର୍ଯ୍ୟ ପାଇଁ କେନ୍ଦ୍ର ସରକାର ଆର୍ଥିକ ସହାୟତା ଯୋଗାଇ ଦେଉଥିବା ବେଳେ ଏହାର ରକ୍ଷଣାବେକ୍ଷଣ ପାଇଁ ରାଜ୍ୟ ସରକାର ଅର୍ଥ ଯୋଗାଇ ଦେଇ ଥାଆନ୍ତି । ଜାପାନ ସରକାର ଏହି କେନ୍ଦ୍ରକୁ ଏକ ସି. ଟି. ସ୍କାନ ଦାନସୂତ୍ରରେ ଯୋଗାଇ ଦେଇଛନ୍ତି । ଏହାଛଡ଼ା କେତେକ ଦାତବ୍ୟ ସଂସ୍ଥା ଓ ବଦାନ୍ୟ ବ୍ୟକ୍ତି-ବିଶେଷ ମଧ୍ୟ ଆର୍ଥିକ ସହାୟତା ଯୋଗାଇ ଦେଇ ଥାଆନ୍ତି ।

ଏହି କେନ୍ଦ୍ରର ସୁ-ପରିଚାଳନା ପାଇଁ ରାଜ୍ୟ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଏକ ୧୫ ଜଣିଆ ପରିଚାଳନା ସମିତି ଓ ରାଜ୍ୟ ସରକାରଙ୍କ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ

ବିଭାଗ ସଚିବଙ୍କ ଅଧ୍ୟକ୍ଷତାରେ କାର୍ଯ୍ୟକାରୀ କମିଟି ଗଠନ କରାଯାଇଛି । କେନ୍ଦ୍ରର ନିର୍ଦ୍ଦେଶକ ଉଭୟ ସମିତିର ସଦସ୍ୟ-ସଚିବ ତଥା ଆବାହକ ଅଛନ୍ତି । ବର୍ତ୍ତମାନ ଏହି କେନ୍ଦ୍ରରେ ୩୦ ଜଣ ମେଡ଼ିକାଲ ଅଫିସର, ୫ ଜଣ ଅଣ-ମେଡ଼ିକାଲ ଅଫିସର, ୨୦ ଜଣ ନର୍ସ, ୧୦ ଜଣ ରେଡ଼ିଓଗ୍ରାଫର୍, ୮ ଜଣ ଟେକ୍‌ନିସିଆନ୍, ୨ ଜଣ ଫାର୍ମାସିଷ୍ଟ, ୧୦ ଜଣ ଅମଲା ଓ ୪୦ ଜଣ ସହାୟକ କର୍ମଚାରୀ କାର୍ଯ୍ୟ କରୁଛନ୍ତି ।

୧୯୮୯-୯୦ ମସିହାରେ ଏହି କେନ୍ଦ୍ରକୁ ୧୪,୮୩୮ ଜଣ ରୋଗୀ ପରୀକ୍ଷା ତଥା ଚିକିତ୍ସା ପାଇଁ ଆସିଥିବା ବେଳେ ୧୯୯୦-୯୧ ମସିହାରେ ୧୨,୪୯୩ ଜଣ ରୋଗୀ ପରୀକ୍ଷା ପାଇଁ ଆସିଥିଲେ । ଏହି କେନ୍ଦ୍ରରେ ୧୩୦ଟି ଶଯ୍ୟାର ବ୍ୟବସ୍ଥା ରହିଛି । ଏଥିରେ ୧୯୯୦-୯୧ ମସିହାରେ ୧୮୮୨ ଜଣ ରୋଗୀ ଚିକିତ୍ସା ପାଇଁ ଭର୍ତ୍ତି ହୋଇଥିବା ବେଳେ ତା'ର ପୂର୍ବବର୍ଷ ୨,୧୨୨ ଜଣ ରୋଗୀ ଭର୍ତ୍ତି ହୋଇଥିଲେ ।

ସେହିପରି ୧୯୯୦-୯୧ ମସିହାରେ ୬୮ ଜଣ ରୋଗୀଙ୍କର ମୃତ୍ୟୁ ଘଟିଥିବା ବେଳେ ୧୯୮୯-୯୦ ମସିହାରେ ୭୨ ଜଣଙ୍କର ମୃତ୍ୟୁ ଘଟିଥିଲା । ୧୯୯୦-୯୧ ମସିହାରେ ୮୬୧ ଜଣ ରୋଗୀଙ୍କର ଅସ୍ତ୍ରୋପଚାର, ୨୨୯୭ ଜଣଙ୍କର ରଞ୍ଜନରଶ୍ମି ଚିକିତ୍ସା ଓ ୧୭୮୯ ଜଣଙ୍କର କେମୋଥେରାପି ଚିକିତ୍ସା କରାଯାଇ ଥିବାର ଏକ ସର୍ଭେ ପକ୍ଷରୁ ଜଣାପଡ଼ିଛି ।

ରବିବାର ଓ ସରକାରୀ ଛୁଟିଦିନ ବ୍ୟତୀତ ପ୍ରତ୍ୟହ ସକାଳ ୯ଟା ଠାରୁ ଅପରାହ୍ନ ୪ଟା ପର୍ଯ୍ୟନ୍ତ ଏହି କେନ୍ଦ୍ରରେ ରୋଗୀ ପରୀକ୍ଷା ଓ ଚିକିତ୍ସା କରାଯାଇଥାଏ ।

କେନ୍ଦ୍ରର ଅଧିକ ଉନ୍ନତି ଲାଗି ପ୍ରସ୍ତୁତ ଏକ 'ମାଷ୍ଟର ଯୋଜନା' ଇତିମଧ୍ୟରେ ସରକାରଙ୍କର ଅନୁମୋଦନ ଲାଭ କରିସାରିଛି । କର୍କଟ ରୋଗ ପରୀକ୍ଷା ଓ ଚିକିତ୍ସା ବ୍ୟତୀତ ଏହି ପ୍ରତିଷ୍ଠାନ ପକ୍ଷରୁ ଗ୍ରାମାଞ୍ଚଳ ଡାକ୍ତର, ମେଡ଼ିକାଲ ଛାତ୍ରମାନଙ୍କୁ ଶିକ୍ଷାଦାନ, ଗବେଷଣା, ଗ୍ରାମାଞ୍ଚଳରେ ସ୍ୱାସ୍ଥ୍ୟସେବା, ପୁସ୍ତକ ପ୍ରକାଶନ ଓ ଆଲୋଚନାଚକ୍ର ପ୍ରଭୃତିର ଆୟୋଜନ କରାଯାଇଥାଏ । କର୍କଟ ରୋଗର କାରଣ ଓ ନିରାକରଣ ସମ୍ପର୍କରେ ଜନସଚେତନତା ସୃଷ୍ଟି କରିବା ଲାଗି ରାଜ୍ୟର ବିଭିନ୍ନ ସ୍ଥାନରେ ଶିବିରମାନ ମଧ୍ୟ ଆୟୋଜନ କରାଯାଇଥାଏ ।

ଗତ ୫ ବର୍ଷ ମଧ୍ୟରେ ରାଜ୍ୟର ବିଭିନ୍ନ ଅଞ୍ଚଳରେ ରୋଟାରୀ କ୍ଲବ୍, ଲାୟନ୍‌ସ କ୍ଲବ୍, ଏନ୍. ଏସ୍. ଏସ୍. ଓ ଅନ୍ୟାନ୍ୟ ଦାତବ୍ୟ ସଂଗଠନର ମିଳିତ ସହଯୋଗରେ କର୍କଟ ରୋଗ ନିରୂପଣ, ଚିକିତ୍ସା ଓ ସଚେତନତା ଶିବିର ଅନୁଷ୍ଠିତ ହୋଇଯାଇଛି । ଅଷ୍ଟମ ଯୋଜନା କାଳରେ ବାଲେଶ୍ୱର ଜିଲ୍ଲାରେ ଏହିସବୁ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା ଲାଗି କେନ୍ଦ୍ର ସରକାର ୬ ଲକ୍ଷ ଓ ରାଜ୍ୟ ସରକାର ୪ ଲକ୍ଷ ଟଙ୍କା ମଞ୍ଜୁର କରିଛନ୍ତି । ରୋଗୀମାନଙ୍କ ସହାୟକମାନେ ଯେପରି ସୁବିଧାରେ ରହିପାରିବେ ସେଥିପାଇଁ

ଏକ ଧର୍ମଶାଳା ନିର୍ମାଣ କରିବା ଲାଗି ଭରତିଆ ଦାତବ୍ୟ ଟ୍ରଷ୍ଟ ୭ ଲକ୍ଷ ଟଙ୍କା ଯୋଗାଇ ଦେଇଛି ।

ବିଭିନ୍ନ ସମୟରେ ଏହି ପ୍ରତିଷ୍ଠାନର ନିର୍ଦ୍ଦେଶକ ରୂପେ ଯେଉଁ ବିଶେଷଜ୍ଞମାନେ ନିଷ୍ଠାର ସହ କାର୍ଯ୍ୟକରି ଏହାର ଉନ୍ନତି ବିଧାନରେ ସହାୟକ ହୋଇଛନ୍ତି, ସେମାନେ ହେଲେ ଡାକ୍ତର ମଧୁସୂଦନ ଖାଡ଼ଙ୍ଗା, ଡାକ୍ତର ଆକୁଳାନନ୍ଦ ଷଡ଼ଙ୍ଗୀ, ଡାକ୍ତର ଗଙ୍ଗାଧର ବେହେରା, ଡାକ୍ତର ଏନ୍. ସି. ପଟ୍ଟନାୟକ ଓ ଡାକ୍ତର ଭକ୍ତିଲତା ରାୟ । ବର୍ତ୍ତମାନ ଡାକ୍ତର ଗୌରୀଶଙ୍କର ଆଚାର୍ଯ୍ୟ ନିର୍ଦ୍ଦେଶକ ରୂପେ କାର୍ଯ୍ୟ କରୁଛନ୍ତି । ୧୯୯୪ ମସିହା ଫେବ୍ରୁୟାରୀ ୧୧ ତାରିଖଠାରୁ ଡାକ୍ତର ଆଚାର୍ଯ୍ୟ ଏହି ପଦବୀରେ ଅବସ୍ଥାପିତ ହୋଇଛନ୍ତି । ଏତଦ୍‌ବ୍ୟତୀତ ବିଭିନ୍ନ ସମୟରେ ଶ୍ରୀରାମଚନ୍ଦ୍ର ଭଞ୍ଜ, ମେଡ଼ିକାଲ କଲେଜର ସୁପରିଣ୍ଟେଣ୍ଡେଣ୍ଟ ବା ରାଜ୍ୟ ଡାକ୍ତରୀ ଶିକ୍ଷା ଓ ତାଲିମ ନିର୍ଦ୍ଦେଶକ ମଧ୍ୟ ନିଜ ଦାୟିତ୍ୱ ସହ ଏହି କ୍ୟାନ୍‌ସର ପ୍ରତିଷ୍ଠାନର ନିର୍ଦ୍ଦେଶକ ରୂପେ ଅତିରିକ୍ତ ଦାୟିତ୍ୱ ତୁଲାଇଛନ୍ତି ।

କ୍ୟାନ୍‌ସର ଭଳି ଏକ ମାରାତ୍ମକ ରୋଗକୁ ନିୟନ୍ତ୍ରଣ କରିବା ପାଇଁ ସମସ୍ତଙ୍କର ନିଷ୍ଠାପର ସହଯୋଗ ଦରକାର । ଏହି କେନ୍ଦ୍ରର ଶଯ୍ୟା ସଂଖ୍ୟା ୧୩୦ରୁ ୨୫୦କୁ ବୃଦ୍ଧି କରିବା ପାଇଁ ପ୍ରସ୍ତାବ ରହିଛି । ୩୦ଟି ନର୍ସିଂ ହୋମ୍ ପ୍ରତିଷ୍ଠା ପାଇଁ ମଧ୍ୟ ଯୋଜନା ପ୍ରସ୍ତୁତ କରାଯାଇଛି । କେନ୍ଦ୍ର ସରକାର ଓ ରାଜ୍ୟ ସରକାର ବାର୍ଷିକ ଯେଉଁ ଅନୁଦାନ ଦେଉଛନ୍ତି, ସେଥିରେ ଦରିଦ୍ର ଓ ନିଃସ୍ୱ କର୍କଟ ରୋଗୀମାନଙ୍କୁ ଉପଯୁକ୍ତ ଚିକିତ୍ସା ସୁବିଧା ଯୋଗାଇ ଦେବା ଆଦୌ ଯଥେଷ୍ଟ ହେଉନାହିଁ । ରୋଗୀମାନଙ୍କଠାରୁ 'ସର୍ଭିସ ଚାର୍ଜ' ଆକାରରେ ଯେଉଁ ଅର୍ଥ ଆଦାୟ କରାଯାଉଛି ତାହା ମଧ୍ୟ ଲକ୍ଷ୍ୟ ପୂରଣରେ ସହାୟକ ହେଉନାହିଁ । ଆମ ଲୋକମାନଙ୍କର ସାମାଜିକ ଓ ଅର୍ଥନୈତିକ ଅବସ୍ଥା ଯାହା ସେଥିରେ ରୋଗୀମାନଙ୍କଠାରୁ ଅଧିକ ଅର୍ଥ ଆଦାୟ କରିବା ମଧ୍ୟ ଉଚିତ୍ ହେବ ନାହିଁ । ଏହି ପରିପ୍ରେକ୍ଷୀରେ ବଦାନ୍ୟ ବ୍ୟକ୍ତିବିଶେଷ ଓ ଅନୁଷ୍ଠାନ ଦରିଦ୍ର ରୋଗୀମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ ପୂର୍ବକ ଅକୁଣ୍ଠ ଚିତ୍ତରେ ସାହାଯ୍ୟ କରିବାକୁ ଆଗେଇ ଆସିଛନ୍ତି ।

ଏହି କେନ୍ଦ୍ର ବ୍ୟତୀତ ଭାରତୀୟ କ୍ୟାନ୍‌ସର ସୋସାଇଟି (ଓଡ଼ିଶା ଶାଖା) ପକ୍ଷରୁ ମଧ୍ୟ କର୍କଟ ରୋଗ ନିୟନ୍ତ୍ରଣ ପାଇଁ ବିଭିନ୍ନ ଯୋଜନା କାର୍ଯ୍ୟକାରୀ କରାଯାଉଛି । ବିଶିଷ୍ଟ ସମାଜସେବିକା ତଥା ସର୍ବୋଦୟ ନେତ୍ରୀ ସ୍ୱର୍ଗୀୟା ରମାଦେବୀଙ୍କ ମୁଖ୍ୟ ପୃଷ୍ଠପୋଷକତାରେ ୧୯୮୧ ମସିହା ଜୁନ୍ ୨୧ ତାରିଖରେ ଏହି ସୋସାଇଟି ଗଠିତ ହୋଇଥିଲା ।

କ୍ୟାନସର ବିରୋଧରେ ସଂଗ୍ରାମ କରିବାର ଲକ୍ଷ୍ୟ ନେଇ ସମିତିପକ୍ଷରୁ ଉଭୟ ସହର ଓ ଗ୍ରାମାଞ୍ଚଳରେ କର୍କଟ ରୋଗ ନିରୂପଣ ଓ ଚିକିତ୍ସା ଶିବିରମାନ ଆୟୋଜନ

କରାଯାଇଥାଏ । ସମିତିର ବର୍ତ୍ତମାନ ୫୪୪ ଜଣ ସାଧାରଣ ସଦସ୍ୟ, ୧୮୩ ଜଣ ଆଜୀବନ ସଦସ୍ୟ ଓ ୫ ଜଣ ସମ୍ମାନିତ ସଦସ୍ୟ ଅଛନ୍ତି ।

ଆଚାର୍ଯ୍ୟ ହରିହର ଦାସ ସ୍ମାରକୀଟ୍ରଷ୍ଟ ପକ୍ଷରୁ କଟକଠାରେ ଗୋଟିଏ ଓ ଭୁବନେଶ୍ୱରଠାରେ ଅନ୍ୟ ଗୋଟିଏ ଦାତବ୍ୟ ରୋଗ ନିରୂପଣ କେନ୍ଦ୍ର ଖୋଲାଯାଇଛି । ପ୍ରତି ସପ୍ତାହରେ ଏହା ଦୁଇଦିନ ଖୋଲାଯାଇଥାଏ ।

ଏହି ସମିତି ପକ୍ଷରୁ ରାଜ୍ୟର ବିଭିନ୍ନ ସ୍ଥାନରେ ୨୪୫ଟି ଭ୍ରାମ୍ୟମାଣ ଶିବିର ଖୋଲାଯାଇ ୯୧୪୧୪ ଜଣଙ୍କୁ ପରୀକ୍ଷା କରାଯାଇଛି । ସେମାନଙ୍କ ମଧ୍ୟରୁ ୪୩୧୪ ଜଣ କର୍କଟ ରୋଗୀଙ୍କୁ ଚିହ୍ନଟ କରାଯାଇ ଯଥା ସମୟରେ ଚିକିତ୍ସା କରାଯିବା ଫଳରେ ୮୦ ଭାଗ ରୋଗୀ ଆରୋଗ୍ୟ ଲାଭ କରି ପାରିଛନ୍ତି ।

ସ୍କୁଲ ଓ କଲେଜଛାତ୍ରମାନଙ୍କୁ ଧୂମପାନ ଓ ଗୁଣ୍ଡାଖୁ ବ୍ୟବହାରର କୁ-ପରିଣାମ ସମ୍ପର୍କରେ ସଚେତନ କରାଇବାଲାଗି ମଧ୍ୟ କେତେକ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି ।

ଡାକ୍ତର ବନମାଳୀ ମହାନ୍ତିଙ୍କ ଅଧ୍ୟକ୍ଷତାରେ ଗଠିତ ଏକ ୧୩ ଜଣିଆ ପରିଚାଳନା କମିଟି ଦ୍ୱାରା ଏହି ସୋସାଇଟି ପରିଚାଳିତ ହେଉଛି । ଏ ପର୍ଯ୍ୟନ୍ତ ପ୍ରାୟ ୨୨୨ ଜଣ ଦରିଦ୍ର ରୋଗୀଙ୍କୁ ବିନାମୂଲ୍ୟରେ ଚିକିତ୍ସା କରାଯାଇ ଥଇଥାନ କରାଯାଇଛି । ଭୁବନେଶ୍ୱରଠାରେ ଏହି ସୋସାଇଟି ପକ୍ଷରୁ ଏକ ଆଧୁନିକ କ୍ୟାନସର ଚିକିତ୍ସା ଗବେଷଣା କେନ୍ଦ୍ର ପ୍ରତିଷ୍ଠା ପାଇଁ ଯୋଜନା ପ୍ରସ୍ତୁତ କରାଯାଇଛି । ସ୍ୱାମୀ ଅରୂପାନନ୍ଦଙ୍କ କଳଙ୍କକୁଷ୍ଠନାଶନ ସମିତି ପକ୍ଷରୁ ମଧ୍ୟ କ୍ୟାନସର ନିୟନ୍ତ୍ରଣ ପାଇଁ ବିଭିନ୍ନ ପଦକ୍ଷେପ ଗ୍ରହଣ କରାଯାଇଛି ।



# କଟକରେ ରାଜାମାନଙ୍କର କୋଠୀ

ଶ୍ରୀ କାର୍ତ୍ତିକନାରାୟଣ ମହାନ୍ତି

କୋଠୀ ବା କୋଠାଘର ବା ପ୍ୟାଲେସ ଯାହା କୁହାଯାଉନା କାହିଁକି ଏହା ଗୋଟିଏ ବାସ ଉପଯୋଗୀ ଘର । ଯେଉଁ ଘରେ ରାଜା ମହାରାଜା ରହନ୍ତି ତାହାକୁ କୋଠୀ କୁହାଯାଉଥିଲା । କେତେକେ ଏହାକୁ ରାଜବାଟୀ ମଧ୍ୟ କହନ୍ତି ।

କଟକ ପ୍ରଥମେ ଯେମିତି ରାଜାମାନଙ୍କର ଶିକାରସ୍ଥଳୀ ବା ପ୍ରମୋଦ ଉଦ୍ୟାନ ଥିଲା ସେହିପରି ପରବର୍ତ୍ତୀ ସମୟରେ ଏହା କେତେ ସମ୍ରାଟ ବାଦଶାହାଙ୍କର ରାଜଧାନୀ ମଧ୍ୟ ହେବାର ସୌଭାଗ୍ୟ ପାଇଥିଲା ।

ତେଣୁ ନିଜର ପ୍ରତିପତ୍ତି ପାଇଁ ହେଉ ବା ଶିକ୍ଷା ସଂସ୍କୃତିର ସୁଯୋଗ ପାଇଁ ହେଉ ବିଭିନ୍ନ କାରଣରୁ ଓଡ଼ିଶାର ରାଜାମାନେ ଏହି ଭୂଖଣ୍ଡରେ ସେମାନଙ୍କର କୋଠା-ନିଅର ରାଜବାଟୀ ସ୍ଥାପନ କଲେ ।

ସେହି ଅଞ୍ଚଳର ରାଜାମାନେ ହେଲେ—ତାଳଚେର, କନିକା, ଆଳି, ହିନ୍ଦୋଳ, ଢେଙ୍କାନାଳ, ଦର୍ପଣୀ, ବଳରାମପୁର, ଗଡ଼ମଧୁପୁର,ସୁକିନ୍ଦା, ନୟାଗଡ଼, ରଣପୁର, ଘୁମୁସର, ମୟୂରଭଞ୍ଜ, ବଡ଼ମ୍ବା, ନରସିଂହପୁର, ବର୍ଦ୍ଧମାନ, କେଉଁଝର, ଜରଡ଼ା, ଭିଙ୍ଗାରପୁର, କୁଜଙ୍ଗ, ବାରବାଟୀ ।

କେତେକ ରାଜା ଅନ୍ୟରାଜ୍ୟରୁ ଆସି କଟକରେ ଜମି ନିଲାମ ନେଇ ନିଜର କୋଠୀ ସ୍ଥାପନ କରିଥିଲେ ।

ଅନେକ କୋଠୀ ଭୂତକୋଠୀ ଏବଂ ଅନେକ ଭଗ୍ନ ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ, ବନ୍ଧକୀ ଏବଂ ମକଦ୍ଦମା ଭିତରେ ଡିଷ୍ଟି ରହିଛନ୍ତି ତାଙ୍କର ପୂର୍ବ ଐତିହ୍ୟ ଧରି; ହେଲେ ସେଠାରୁ ତଥ୍ୟ ସଂଗ୍ରହ କରିବା ସମ୍ଭବ ହୋଇ ପାରୁନାହିଁ । ତେବେ ଏହି ସଦ୍‌ସାମାନ୍ୟ ତଥ୍ୟମୂଳକ ଲେଖାଟି ସମ୍ପୂର୍ଣ୍ଣ କରିବାରେ ଯେଉଁ ମହାନ୍ ଜ୍ଞାନୀଗଣ ସାହାଯ୍ୟ କରିଛନ୍ତି ସେମାନେ ହେଲେ ଅଧ୍ୟାପକ ପଠାଣି ପଟ୍ଟନାୟକ, ଅଧକ୍ଷ ସୁଧାଂଶୁ ମହାପାତ୍ର, ଶ୍ରୀ ଭଗବାନ ଦାସ ଓ ଶ୍ରୀଯୁକ୍ତ ଭୋଳ (ହିନ୍ଦୋଳକୋଠୀ) ।

**ବାରବାଟୀ :**

'ପ୍ରାଚୀନ ଉତ୍କଳ'ରେ କୃପାସିନ୍ଧୁ ସିଂହ ଲେଖିଛନ୍ତି ନୃପକେଶରୀ ବହୁତ ଯୁଦ୍ଧ କରିଥିଲେ । ମହାନଦୀ ଉତ୍ତରରେ କଟକ ବସାଇଥିଲେ ଓ ବାରବାଟୀ ତୋଳାଇ ଥିଲେ ।

ଏହାକୁ ଦୁର୍ଗ କୁହାଗଲା କାରଣ ଏହାର ଚାରିପଟେ ଗଡ଼ଖାଇ ଖୋଳା-ଯାଇଥିଲା । ରାଜା ରାଜରାଜଦେବ ବା ପୁରୁଷୋତ୍ତମଦେବ ପ୍ରଥମେ ଚଉଦ୍ୱାର କଟକରେ ରହୁଥିଲେ । ଦିନେ ରାଜା ମହାନଦୀ ପାର ହୋଇ ଆସିବା ସମୟରେ ଦେଖିଲେ ଦକ୍ଷିଣତୀରରେ କୋଦଣ୍ଡ ଦଣ୍ଡପାଟ ବାରବାଟୀ ଗ୍ରାମରେ ବିଶ୍ୱେଶ୍ୱର ମହାଦେବଙ୍କ ନିକଟରେ ଶାମଳ ପକ୍ଷୀକି ବଗ ମାଡ଼ବସିଚି । ଏହା ଏକ ଶୁଭସୂଚକ ଭାବି ଶୁଭଦିନ ଦେଖି ଏଠାରେ ନଗର ପ୍ରତିଷ୍ଠା କରିଥିଲେ । ଏହାର ନାମ ଦେଲେ ବାରବାଟୀ । ଚଉଦ୍ୱାରରୁ ଆସି ଏଠାରେ ରହିଲେ ।

ଏହା ୧୫ ଅଙ୍କ ବା ୧୧୧୭ ଶକାବ୍ଦର କଥା । ଏହାର ସୀମା ଥିଲା ୨୮୦ ଏକର । ବିଶ୍ୱେଶ୍ୱର ଘାଟଠାରୁ କଟକର ଓଡ଼ିଆ ବଜାର ପର୍ଯ୍ୟନ୍ତ ଏହାର ସୀମା ଛୁଇଁଥିଲା ।

ଏହାର ଧ୍ୱଂସାବଶେଷ ଏବେ ପ୍ରତ୍ନତତ୍ତ୍ୱବିତ୍ମାନେ ଖୋଳି ଅନୁସନ୍ଧାନ ଚଳାଇଛନ୍ତି । ଏହା ନ' ମହଲା ଥିଲା ଏବଂ ଇତିହାସର ଅନେକ ଆଲେଖ୍ୟ ଏହା ସହ ଜଡ଼ିତ ।

**କନିକା :**

ପ୍ରସିଦ୍ଧି ଓ ପ୍ରତ୍ୟକ୍ଷ ଦେବୀ ମା' କଟକଚଣ୍ଡୀଙ୍କ ଠାରୁ ମାତ୍ର ଗୋଟିଏ କିଲୋମିଟର ଗଲେ ପଡ଼େ କନିକା କୋଠୀ । କୋଠୀରେ ରହନ୍ତି ରାଜମାତା । ବୟସାଧିକ୍ୟ ହେତୁ ସେ ଅକ୍ଷମତା ପ୍ରକାଶ କରି କୋଠୀ ସମ୍ପର୍କରେ ତାଙ୍କ ପୁଅଙ୍କଠାରୁ ବୁଝିବାକୁ କହିଥିଲେ ।

ତାଙ୍କ ମଧ୍ୟମପୁତ୍ର ରାଜାସାହେବ ସୌରେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ସହ ସାକ୍ଷାତ କଲାପରେ ସେ ଯାହା କହିଥିଲେ ସଂକ୍ଷିପ୍ତରେ ତାହାହେଲା—୧୮୮୫ ମସିହାରେ ତାଙ୍କର ଜେଜେବାପା ସେ କ ପଦ୍ମନାଭ ଭଞ୍ଜଙ୍କ ପୁଅ ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ରାଜବାଟୀ ନିର୍ମାଣ କରିଥିଲେ । ରାଜବାଟୀର କମ୍ପାଉଣ୍ଡ ଥିଲା ଛତିଶ ଏକର । ଏଥିରେ ଆଠ ଏକର ପରିମିତ ଏକ ସୁଦୃଶ୍ୟ ପୁଷ୍କରିଣୀ ଥିଲା, ଜଳକେଳି ଓ ଅବସର ବିନୋଦନ କରିବାପାଇଁ । କେବଳ ରାଜବାଟୀଟି ଏକ ଏକର ପରିମିତ ସ୍ଥାନରେ ତିଆରି । ସେତେବେଳେ ଏହା ଫ୍ରାନ୍ସ ଡ଼ିଜାଇନରେ କରାଯାଇଥିଲା ।

ଏଥିରେ ଏକ ମହାମୂଲ୍ୟ ଗ୍ରନ୍ଥାଗାର ରହିଛି । ଏହାର ରକ୍ଷଣାବେକ୍ଷଣର ଅଭାବରୁ ଏହି ଦୁର୍ମୂଲ୍ୟ ପୁସ୍ତକ ସବୁ ଉଇହୁଙ୍କାରେ ପରିଣତ ହେବଣି ବୋଲି ରଜା କହିଥିଲେ ।

ରଜାଙ୍କର ବାପା ସ୍ୱର୍ଗତ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ଓଡ଼ିଶାର ପୂର୍ବତନ ମନ୍ତ୍ରୀ ଓ ଜେଜେ ରାଜେନ୍ଦ୍ର ନାରାୟଣ ସିଂହଦେଓ ଅବିଭକ୍ତ ବଙ୍ଗ ବିହାର ଓଡ଼ିଶାର ଅର୍ଥମନ୍ତ୍ରୀ ଥିଲେ ।

ରଜା ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ଖୁବ୍ ବହିପ୍ରେମୀ ଥିଲେ । ସେ ମଧ୍ୟ ରାଜକନିକାରେ ଏକ ମ୍ୟୁଜିୟମ କରିଥିଲେ । କଟକର କୋଠିଟି ଦୁଇମହଲା କଡ଼ିବର୍ଗା ଘ୍ରିତ ଏବଂ ଏଥିରେ ରାଜକର୍ମଚାରୀମାନଙ୍କ ଘରକୁ ଗ୍ଭଡ଼ ପ୍ରାୟ ୨୨ ବଖରାରୁ ଅଧିକ କକ୍ଷ ରହିଛି ।

ଭଙ୍ଗା କୋଠୀର କାନ୍ଥରେ ମୃତ ହରିଣ ଓ ବନ୍ୟ ପଶୁମାନଙ୍କର ଶିଙ୍ଗ ସଜା ଚମତ୍କାର ହେଲେ ବି କରୁଣ ।

କୋଠୀର ଅଧିଷ୍ଠାତ୍ରୀ ଦେବତା ହେଲେ ଦଧିବାମନ ।

## ଦର୍ପଣୀ କୋଠୀ :

କଟକ ଚୁଡ଼ଙ୍ଗଚୌକି ନିକଟରେ ଥିବା ଦେବୀ ମଣ୍ଡପକୁ ଲାଗି ଦର୍ପଣୀ କୋଠୀ । ଅନେକ ଅଫିସ ଓ ବସାଘର ରୂପେ ରାଜବାଟୀ ଏବେ ଅଖାଡ଼କୁ ଧର ଠିଆ ହୋଇ ରହିଛି । ରାଣୀ ଉମେଶ୍ୱରୀ ମୃଥ୍ । କେତେବେଳେ କେମିତି ଆସିଲେ କୋଠୀରେ ରହନ୍ତି ନଚେତ୍ ସେ ତାଙ୍କ ପୁଅ ପାଖରେ ଦିଲ୍ଲୀରେ ରହନ୍ତି ।

ଦର୍ପଣୀ କହିଲେ ଧର୍ମଶାଳା ଥାନାର ବଡ଼ଚଣା ଓ ଏହାର ଆଖପାଖ କେତେକ ଅଞ୍ଚଳକୁ ନେଇ ବୁଝାଏ ।

ଏହି କୋଠୀ ୧୮୯୮ରେ ପ୍ରଜାତନ୍ତ୍ରର କମ୍ପାଉଣ୍ଡକୁ ଲଗାଇ ଲକ୍ଷ୍ମୀ ନାରାୟଣ ମନ୍ଦିର ସହ ସାତ ଏକର ପରିମିତ ସ୍ଥାନଥିଲା । ପ୍ରଥମେ ଏହି ରଜା ଲକ୍ଷ୍ନୌରୁ ଆସି ଓଡ଼ିଶାରେ ରହି ନିଲାମ ଧରି ଏହିଠାରେ ରହିଯାଇଥିଲେ ବୋଲି କୁହାଯାଏ । ଏହାଙ୍କର କଟକ ଜିଲ୍ଲାର ପଦ୍ମପୁର ଓ ପୁରୀର ହେରାଗୋହିରୀ ସାହିରେ ମନ୍ଦିର ଓ ଯାଗା ରହିଛି ।

ପ୍ରଜାତନ୍ତ୍ର ପରିସର ରଜାଙ୍କର ପୁଷ୍କରିଣୀ ଓ ବାଗାନବାଡ଼ ଥିଲା ଏବଂ ଏହାଥିଲା ଉପଭୋଗସ୍ଥଳୀ ।

ଗଣେଶଲାଲ ମଧୁବାବୁଙ୍କୁ କଲିକତାରୁ କଟକ ନେଇ ଆସିଥିଲେ ତାଙ୍କ ଲ' ଏଜେଣ୍ଟ କରିବା ପାଇଁ ।

## ବଡ଼ମ୍ବା କୋଠୀ :

୭ କୃଷ୍ଣଚନ୍ଦ୍ର ଦେବ ୧୯୬୨ ମସିହାରେ ଢେଙ୍କାନାଳ ରଜାଙ୍କଠାରୁ ଜାଗା କିଣିଲେ ଏବଂ ୧୯୬୮ ରେ କୋଠୀ ନିର୍ମାଣ କଲେ । ଦୁଇ ମହଲା କୋଠୀରେ ଆଠ

ବଖରା ଘର ଥିଲା । ସମୁଦାୟ ସେ ଛ'ଗୁଣ୍ଠ କରିଥିଲେ ଏବଂ ପରବର୍ତ୍ତୀ ସମୟରେ ସେ ଗଡ଼କୃଷ୍ଣ ମିଶ୍ରଙ୍କୁ ତିନିଗୁଣ୍ଠ ବିକି ଦେଇଥିଲେ । ଅତି ଅଳ୍ପ ବୟସରେ ଅର୍ଥାତ୍ ୪୨ ବର୍ଷ ବୟସରେ (୧୯୭୯) ରେ ସେ ମୃତ୍ୟୁବରଣ କରିଥିଲେ । ତାଙ୍କର ଦୁଇପୁଅ ଓ ତିନିଝିଅ । ଦୁଇପୁଅ ହେଲେ—ନିରଞ୍ଜନଚନ୍ଦ୍ର ଦେବ ଓ ନିଭୁବନ ଚନ୍ଦ୍ର ଦେବ ।

ସ୍ୱାଧୀନତା ଆନ୍ଦୋଳନରେ ମହାରାଜ ନାରାୟଣଚନ୍ଦ୍ର ଦେବଙ୍କର ଭୂମିକା ଯଥେଷ୍ଟ ଥିଲା । ଏହାଙ୍କ ସହ ଗଞ୍ଜାମର ମଞ୍ଜୁଷା-ଜରଡା, ବିହାରର ବଣାମପୁରର ରାଜପରିବାରର ଘନିଷ୍ଠ ସମ୍ପର୍କ ଥିଲା ।

## ନରସିଂହପୁର କୋଠୀ :

ସ୍ୱର୍ଗତ ଅନନ୍ତ ନାରାୟଣ ସିଂହଦେଓ କଟକରେ କୋଠୀ ନିର୍ମାଣ କରିଥିଲେ । ବର୍ତ୍ତମାନର ରାଜା ତ୍ରିଲୋଚନ ସିଂହଦେଓ ଓଡ଼ିଶା ବିଧାନସଭାରେ ଲୋକପ୍ରତିନିଧି ଅଛନ୍ତି । ସେ ନରସିଂହପୁରରେ ଥିବା ପ୍ୟାଲେସକୁ କଲେଜ ପାଇଁ ଦାନ କରି ଦେଇଛନ୍ତି । କଟକରେ ଥିବା ପ୍ୟାଲେସ ତାଙ୍କର ବହୁ-ପୁରୁଣା ।

ଏହା ବିଜୁ ପଟ୍ଟନାୟକ ଛକରୁ ମଧୁସୂଦନ ନଗର ଯିବାରାସ୍ତାର କୋଣରେ ଅବସ୍ଥିତ । ଏହାର ପୂର୍ବ ପରିସୀମା ଥିଲା ୧୦ ଏକର, ଏବେ ମାତ୍ର ୪ ଏକର ରହିଛି ଏବଂ ସେଥିରେ କୋଠୀର ଅବସ୍ଥିତି ଦଶଗୁଣ୍ଠ ଜମି ଉପରେ ।

କୋଠୀ ଅତ୍ୟନ୍ତ ପୁରାତନ ଏବଂ ଚୂନ ସୁରୁକିରେ ତିଆରି । ଏକମହଲା ଘର ଏବଂ ପ୍ରଶସ୍ତ ଆଠ ବଖରାରୁ ବେଶି ଘର ରହିଛି । ଗଛରେ ଘେରା ତପୋବନ ଭଳି ରାଜବାଟୀ ବାହାରକୁ ଜଣାଯାଏ ନାହିଁ ।

ପିଲାମାନେ କଟକରେ ରହି ଶିକ୍ଷା କରିବା ପାଇଁ ଏହି କୋଠୀଟି ନିର୍ମିତ ହୋଇଥିଲା ବୋଲି ଶ୍ରୀଯୁକ୍ତ ରାଜାସାହେବ ପ୍ରକାଶ କରିଥିଲେ ।

## ମଧୁପୁର ଗଡ଼ କୋଠୀ :

ଚଣ୍ଡୀଖୋଲ ନିକଟରେ ମଧୁପୁର ଗଡ଼ । ରାଜାଙ୍କର ପୁଅ ନଥିଲା କେବଳ ଝିଅଟିଏ । ଝିଅକୁ ଧରାକୋଟରେ ଏକ ସର୍ତ୍ତରେ ବାହା ଦେଲେ ଯେ ଧରାକୋଟର ଜଣେ ରାଜପୁଅକୁ ସେ ପୋଷ୍ୟପୁତ୍ର କରିଆଣିବେ ।

ତେଣୁ ଆମର ବକ୍ସିବଜାର ନିକଟରେ ଥିବା ପୁରୁଣା ଆକାଶବାଣୀ କେନ୍ଦ୍ର ଯେଉଁଠି ଏବେ କୋଣାର୍କ ଗ୍ୟାସଅଫିସ ଓ ଅନ୍ୟାନ୍ୟ ଅଫିସ ଭଡ଼ାରେ ଅଛି ଏହା ପ୍ରଥମେ ଥିଲା 'ଧରାକୋଟ ହାଉସ' ପରେ ଏହାହେଲା 'ମଧୁପୁର ହାଉସ' । ଏହାର ଆୟତନ ଥିଲା ଛଅ ଏକର, ୨୦ ଗୁଣ୍ଠ ଉପରେ କୋଠୀ ତିଆରି ହୋଇଥିଲା ।

ଏହାର ପ୍ରକୃତ ସ୍ୱରୂପ ଆଉ ନାହିଁ । ପୀତାମ୍ବର ବଳ ଏହା ନିର୍ମାଣ କରିଥିବା ଜଣାଯାଏ ।

ମଧୁପୁର ରାଜା ତାଙ୍କ ବଡ ଭାଇଙ୍କର ପୁଅ ଅନନ୍ତନାରାୟଣ ଭଞ୍ଜଦେଓଙ୍କୁ ଏହା ହସ୍ତାନ୍ତର କରିଥିବାରୁ ବର୍ତ୍ତମାନ ଏହାର ଉତ୍ତରାଧିକାରୀ ଭାବେ ସେ ରହିଛନ୍ତି ।

## ନୟାଗଡ଼ କୋଠୀ :

ନୟାଗଡ଼ ରାଜା କୃଷ୍ଣଚନ୍ଦ୍ର ସିଂହ ମାନଧାତାଙ୍କର କଟକରେ କୋଠୀ ନଥିଲା । କନିକା ରାଜ ପରିବାରର ଲୋକ ଶ୍ରୀ ହରିଶଚନ୍ଦ୍ର ରାୟଙ୍କ ଠାରୁ ନୟାଗଡ଼ ରାଜା ବକ୍‌ସିବଜାରର ବଡ଼ୋଇ ସାହିରେ ଥିବା ଘର କିଣିଥିଲେ । ଏହା ଅତ୍ୟନ୍ତ ପୁରାତନ ଢାଞ୍ଚାରେ ନିର୍ମିତ । ଦଶଗୁଣ୍ଠ ଜମି ଉପରେ ନିର୍ମିତ ଏହି କୋଠୀରେ ପ୍ରଶସ୍ତ ଷୋହଳ ବଖରା ଘର ଅଛି ।

ସେ ଅତ୍ୟନ୍ତ ଶିକାର ପ୍ରିୟ ଥିଲେ ଏବଂ ରାଜପରିବାରର ପିଲାମାନେ କଟକରେ ରହି ଉଚ୍ଚଶିକ୍ଷା ପାଇବା ପାଇଁ ଏହା କିଣା ଯାଇଥିଲା ।

## ମୟୂରଭଞ୍ଜ କୋଠୀ :

କଟକର କ୍ୟାଣ୍ଟନମେଣ୍ଟ ରୋଡ଼ରେ ଥିବା '୧୦ ମାରଜାତ' ହେଉଛି ମୟୂରଭଞ୍ଜ ରାଜାଙ୍କର ପୂର୍ବର କୋଠୀ । ପରିଜା ସାହେବ ତାଙ୍କ ଠାରୁ ଏହାକୁ କିଣିଥିଲେ ।

ବଙ୍ଗଳା ଟାଇପ୍‌ର ଏହା ପ୍ରଶସ୍ତ କୋଠରୀ ଏବଂ ଏଥିରେ ଗୁଳଛପର ପୁରୁଣା ଘରଥିଲା । ଏହାର ସମୁଦାୟ ସୀମା ଥିଲା ପ୍ରାୟ ଛ' ଏକର ।

ଏହାକୁ କୃଷ୍ଣଚନ୍ଦ୍ର ଭଞ୍ଜଦେଓ ୧୮୭୦ରେ ନିର୍ମାଣ କରିଥିଲେ । ତାଙ୍କ ପୁଅ ହେଲେ ରାମଚନ୍ଦ୍ର ଭଞ୍ଜଦେଓ ଏବଂ ନାତି ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ ଓ ଅଣନାତି ହେଲେ ପ୍ରତାପଚନ୍ଦ୍ର ଭଞ୍ଜଦେଓ । ଏବେ ରାଜା ପ୍ରଦ୍ୟୋତଚନ୍ଦ୍ର ଭଞ୍ଜଦେଓ ଏହି କୋଠୀର ଉତ୍ତରାଧିକାରୀ ଅଛନ୍ତି ।

## ଘୁମୁସର କୋଠୀ :

ମାନସିଂପାଟଣା ମସ୍ତରାମ ମଠ ସାମ୍ନାରେ ଠାକୁର ମନ୍ଦିର ଓ ଗୁଳଛପର କୋଠୀ ଥିଲା । ବହୁ ପୁରାତନ । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ପରିବାରର ରାଜା ଶ୍ରୀକର ଭଞ୍ଜ ୧୮୭୧ରେ ଏହା ତୋଳାଇଥିଲେ । ତାଙ୍କ ପୁଅ ହେଲେ ନୀଳକଣ୍ଠ ଭଞ୍ଜ ଏବଂ ନାତି ହେଲେ ଉପେନ୍ଦ୍ର ଭଞ୍ଜ ।

ଏହାର ସୀମା ଥିଲା ଦଶ ଏକର । ଏହା କନିକା ରାଜାଙ୍କ କୋଠୀକୁ ଲାଗିଥିଲା । ଏବେ ଠାକୁର ମନ୍ଦିର ବ୍ୟତୀତ କୋଠୀର ସତ୍ତା ଦେଖିବାକୁ ମିଳେ ନାହିଁ ।

## ରଣପୁର କୋଠୀ :

ବଜୁ ପଟ୍ଟନାୟକ ଛକରୁ ତୁଳସୀପୁର ଯିବା ରାସ୍ତାରେ ବାମ ପାର୍ଶ୍ୱରେ ପୁରୁଣା ଟି. ଭି. ସେଣ୍ଟର ନିକଟରେ ଯେଉଁ ବିରାଟ ଖାଲଯାଗା ଉପରେ ଦୁଇ ମହଲା କୋଠୀ

ଦେଖାଯାଏ ତାହା ହେଲା ବିଖ୍ୟାତ ରଣପୁର କୋଠୀ । ରଣପୁରର ଇତିହାସରେ ଏହାର ଆଞ୍ଚଳିକ ପ୍ରତିପତ୍ତି ଥିଲା । କଟକରେ ମଧ୍ୟ କୋଠୀ ନିର୍ମାଣ କରିବାରେ ସେ ସମୟର ସମସାମୟିକ ରାଜାମାନଙ୍କ ସହ ରଣପୁର ରାଜପରିବାର ତାଳଦେଇ ୨୦ ଏକର ଜମି ନେଇ ତାଙ୍କର ରାଜବାଟୀ ନିର୍ମାଣ କରିଥିଲେ । ତାଙ୍କର କୋଠୀ ତିନି ଏକର ସ୍ଥାନରେ ନିର୍ମିତ । ଦୁଇ ମହଲା ବିଶିଷ୍ଟ କୋଠୀରେ 'ପ୍ରାୟ ଷୋଳବଖରା ଘର ରହିଛି ।'

ରାଣୀ ବସନ୍ତମଞ୍ଜରୀ ଦେବୀ ଓଡ଼ିଶାର ସ୍ୱାସ୍ଥ୍ୟମନ୍ତ୍ରୀ ଥିଲେ ଏବଂ କୋଠୀରେ ରାଜାଙ୍କର ସାନପୁଅ ଓ ସାନ ଝିଅ ରହୁଛନ୍ତି । ଏହାର ନିର୍ମାଣକାଳ ୧୮ ଶହ ମସିହାରେ ହୋଇଥିବା ଅନୁମିତ ହୁଏ । ରାଜା ବ୍ରଜେନ୍ଦ୍ର ନାରାୟଣ ସିଂହଦେଓ ସାରାଜୀବନ ସଙ୍ଗୀତ ଓ ମଦନଶାରେ ବିଭୋର ଥିଲେ । ଦିଲ୍ଲୀପଚନ୍ଦ୍ର ସିଂହଦେଓ ସମ୍ପ୍ରତି ଏହି ରାଜବଂଶର ଉତ୍ତର ଦାୟାଦ ଅଟନ୍ତି ।

## ବଲରାମପୁର କୋଠୀ :

ବଲରାମପୁର ମହାରାଜା କୃଷ୍ଣଚନ୍ଦ୍ର ଦେଓ ସାମନ୍ତ ତାଳଚେର ରାଜ ପରିବାରରୁ ପୋଷ୍ୟପୁତ୍ର ଭାବେ ଆସିଥିଲେ । ସେ ଷଡ଼େଇକଳା ରାଜକନ୍ୟାଙ୍କୁ ବିବାହ କରିଥିଲେ ।

ସେ ବର୍ଦ୍ଧମାନ ରାଜାଙ୍କଠାରୁ ତିନି ଏକର ଜାଗା କିଣିଥିଲେ । କୋଠୀ ଛ'ଗୁଣ୍ଠ ଜାଗା ଉପରେ ନିର୍ମିତ । ନୂଆ ଡିଜାଇନ୍‌ରେ ତିଆରି ଆଧୁନିକ କୋଠୀ । ପୁଷ୍କରଣୀ ଅଛି । ଏକ ମହଲା କୋଠୀ ପ୍ରଥମେ ଥିଲା ଏବଂ ପରେ ଆଧୁନିକ ରୂପେ ପୁନଃନିର୍ମାଣ କରିଥିଲେ । ଏକ ମହଲାକୁ ଦ୍ୱିମହଲା କରିଥିଲେ ।

ରାଜାଙ୍କର ସ୍ୱତନ୍ତ୍ର ଗୁଣ ଥିଲା ଯେ ସେ ଜଣେ ଦକ୍ଷ ଶିକାରୀ ଥିଲେ । ତାଙ୍କ ଘରେ ବାଘଛାଲ, ହାତୀଦାନ୍ତର ଅନେକ ନମୁନା ଏବେ ବି ରହିଛି । ସେ ଓ୍ୱାଇଲ୍ଡ଼ ଲାଇଫ୍ ସୋସାଇଟିର ମେମ୍ବର ଥିଲେ । ମଧୁସୂଦନ ଲ' କଲେଜ ପାଖ ଗଳିରେ ଗଲେ ବଲରାମପୁର କୋଠୀ ପଡ଼େ । ପ୍ରବୀରଚନ୍ଦ୍ର ଧୀରଦେବ ବଲରାମପୁର କୋଠୀର ଅଧିକାରୀ ଏବଂ ବର୍ତ୍ତମାନର ରାଜା ସାହେବ ଅଟନ୍ତି ।

## ଜରଡ଼ା କୋଠୀ :

କନିକା ଛକ ନିକଟରେ କେଉଁଝର କୋଠୀକୁ ଲାଗି ଜରଡ଼ା ହାଉସ । ଆଗରୁ ଜରଡ଼ା ରାଜାଙ୍କର କଟକରେ କୋଠୀ ନଥିଲା । କେଉଁଝର ରାଜା ବଳଭଦ୍ର ନାରାୟଣ ଭଞ୍ଜଦେଓଙ୍କ ଠାରୁ ଜରଡ଼ା ରାଜା କିଶୋରଚନ୍ଦ୍ର ସାମନ୍ତରାଏ ଦେଓ ତିନି ଏକର ଜମି ପାଇଥିଲେ । ତାଳଚେରରୁ ପ୍ରସନ୍ନଚନ୍ଦ୍ର ସାମନ୍ତରାୟ ଦେଓ ପୋଷ୍ୟପୁତ୍ର ହୋଇ ଆସିଥିଲେ ।

ରାଣୀ ସ୍ୱର୍ଣ୍ଣପ୍ରଭା ମଞ୍ଜରୀ ଦେବୀ ଯେ କି କେଉଁଝରର ରାଜାଙ୍କ କନ୍ୟା, ତିନି ଏକର ଜମି ତାଙ୍କ ବାପାଙ୍କଠାରୁ ପାଇଥିଲେ । ଦୁଇମହଲା କୋଠୀରେ ପ୍ରାୟ ପଚିଶ ବଖରା ଘର । ଏକ ଏକର ଜମିରେ କୋଠୀ ନିର୍ମିତ । ଏହାର ନିର୍ମାଣଶୈଳୀ ସମ୍ପୂର୍ଣ୍ଣ ଆଧୁନିକ ।

କୋଠୀରେ ରାଧାକୃଷ୍ଣ ମୁଖ୍ୟ ଆରାଧ୍ୟଦେବତା ଏବଂ ଜରଡ଼ାରେ ମୁଖ୍ୟ ଦେବୀ ହେଲେ ମୂଳକେଶ୍ୱରୀ ଦେବୀ ।

ବଡ଼ଖେମୁଣ୍ଡି ଓ ସାନଖେମୁଣ୍ଡିକୁ ସେ ଉପହାର ସ୍ୱରୂପ ପାଇଥିଲେ । ରାଜା କିଶୋରଚନ୍ଦ୍ର ଦେଓ ଅଷ୍ଟ୍ରେଲିଆରେ ବିବାହ କରିଥିଲେ ଏବଂ ସେଠାରେ ତାଙ୍କର ଫ୍ଲାଟ ଏବେ ବି ରହିଛି । ଏବେ ରାଜା ହେଉଛନ୍ତି ପ୍ରତାପଚନ୍ଦ୍ର ଦେବ । ତାଙ୍କର ଜରଡ଼ା କୋଠୀ ୧୯୫୪ ମସିହାରେ ତିଆରି ।

କୋଠୀରେ ଖୁବ୍ ସୂକ୍ଷ୍ମ କାରୁକାର୍ଯ୍ୟପୂର୍ଣ୍ଣ ଖେଳନା ଏବଂ ଗଛଲତାରେ ମଣ୍ଡି ରହିଥିବା ମଧୁର ପରିବେଶ ରହିଛି ।

## ହିନ୍ଦୋଳ କୋଠୀ :

ଏହି କୋଠୀ ବିଜୁ ପଟ୍ଟନାୟକ ଛକ ଠାରୁ ମାତ୍ର ଦୁଇ ଫର୍ଲଙ୍ଗ ଦୂରରେ ରାସ୍ତାର ଦକ୍ଷିଣପଟେ ଏକ ପୁରୁଣା ଭଙ୍ଗା ଗେଟ୍‌ର ପ୍ରତୀକ ଧରି ରହିଛି । ଏହି କୋଠୀ ୧୯୬୦ ମସିହାରେ ଜଣେ ପାଦ୍ରୀଙ୍କଠାରୁ ରାଜା ପ୍ରତାପଚନ୍ଦ୍ର ସିଂହ ମର୍ଦ୍ଦରାଜ ଜଗଦେବ କିଣିଥିଲେ । ସେ ଜାତିରେ ଥିଲେ କ୍ଷତ୍ରିୟ । ତାଙ୍କର କଟକରେ ସମୁଦାୟ ୧୫ ଏକର ଜମି ଥିଲା । ରାଜବାଟୀ ବା କୋଠୀର ଆୟତନ ଥିଲା ୫ ଏକର । କୋଠୀ କହିଲେ ମୟୂରଭଞ୍ଜ କୋଠୀ ଭଳି ଖୁଲଛପର ବଙ୍ଗଳା ଭଳି କୋଠୀ ଥିଲା । ପଚିଶବଖରା ଖୁଲଘର ଏବଂ ଛ' ବଖରା ଗ୍ରାଉଘର ।

ଏବେ କିନ୍ତୁ ରାଜାଙ୍କର ମାତ୍ର ପାଞ୍ଚଗୁଣ୍ଠ ଜମି ଅଛି । ସେଥିରେ ପୁଣି ମକଦମା ଚାଲିଛି ।

ବର୍ତ୍ତମାନର ହିନ୍ଦୋଳ ରାଜା ଶ୍ରୀଯୁକ୍ତ ରାଜେନ୍ଦ୍ର ନାରାୟଣ ସିଂହଦେଓ ଭୁବନେଶ୍ୱରର ଗୋପବନ୍ଧୁ ମାର୍ଗରେ ରହୁଛନ୍ତି ଏବଂ ସେ 'ଓଡ଼ିଶାରେ ରାଜପରିବାରର ଇତିହାସ' ଲେଖୁଥିବାର ଖବର ମିଳେ । ପ୍ରତାପଚନ୍ଦ୍ର ସିଂହ ମର୍ଦ୍ଦରାଜ ଜଗଦେବ ମଦ୍ୟପାନ କରୁନଥିଲେ । ରକ୍ଷିତା ମଧ୍ୟ ରଖିନଥିଲେ । ସୁବକ୍ତା ଥିଲେ । ତାଙ୍କର ସଉକ ଥିଲା ହାତୀ, ହରିଣ ପୋଷିବା ।

ଢେଙ୍କାନାଳ ଜିଲ୍ଲାର ହିନ୍ଦୋଳଠାରେ ମଧ୍ୟ ତାଙ୍କର ବହୁତ ସମ୍ପତ୍ତି ଥିଲା । ୫ ଏକର ଜମିରେ ରାଜବାଟୀ । ପ୍ରାୟ ୧୦୦ ବଖରା ଘର । ୫୦ ଜଣ ରାଜକର୍ମଚାରୀ ଥିଲେ । କଟକରେ ମଧ୍ୟ ସେହିପରି ୧୨ ଜଣ କର୍ମଚାରୀ ରହିଥିଲେ । ରାଜା ରାୟପୁର ରାଜକୁମାର କଲେଜରେ ପଢ଼ୁଥିଲେ । ତାଙ୍କର ନରସିଂହପୁର, ତମପଡ଼ା ଓ ଆଠଗଡ଼ ରାଜପରିବାର ସହ ସମ୍ପର୍କ ଥିଲା ।

## ସୁକନ୍ଦା କୋଠୀ :

କଟକର ଦକ୍ଷିଣପଟେ କାଠଯୋଡ଼ି କୂଳରେ ଥିବା ଗଣେଶଘାଟ ନିକଟ ସନ୍‌ସାଇନ ଫିଲ୍‌ଡ୍‌କୁ ଲାଗି ଯେଉଁ ପୁରୁଣାକାଳିଆ ରାଜାରାଜୁଡ଼ା କୋଠୀରେ କମରସିଆଲ ଟ୍ୟାକ୍‌ସ ଅଫିସ ହୋଇଛି ଏହାଥିଲା ସୁକନ୍ଦା ରାଜାଙ୍କ କୋଠୀ । ଏହାର ସମ୍ପୂର୍ଣ୍ଣ ଆୟତନ ଥିଲା ଦଶଗୁଣ୍ଠ । ଚାରିଗୁଣ୍ଠ ପରିମିତ ସ୍ଥାନରେ କୋଠୀ ଥିଲା ।

ପରବର୍ତ୍ତୀକାଳରେ ଗୋପାଳ ସାହୁ ରାଜାଙ୍କ ଠାରୁ ଏହା କିଣିଥିବାର ଜଣାଯାଏ । ଏହା ପୁରୁଣା ଦୁଇ ମହଲ କୋଠା ଏବଂ ମୋଗଲ ଦରବାର ଭଳି କବାଟ ଝର୍କା ଉପରେ କାଚର ରଙ୍ଗୀନ ସଜ୍ଜାଥିଲା ।

ସେ ପାଲଲହଡ଼ାରେ ବିବାହ କରିଥିଲେ । ଶିକାର ପ୍ରିୟ ଥିଲେ । ହାତୀ ତାଙ୍କର ପ୍ରିୟ ବାହକ ଥିଲା ।

## କେଉଁଝର କୋଠୀ :

ବର୍ତ୍ତମାନର କନକା ନିକଟରେ ଜରଡ଼ା କୋଠୀକୁ ଲାଗି କେଉଁଝର କୋଠୀର ଅବସ୍ଥିତି ଥିଲା । ଏହା ପ୍ରାୟ ୧୮୭୨ ମସିହାରେ ନିର୍ମିତ ହୋଇଥିଲା । ସମୁଦାୟ ୧୩ ଏକର ଥିଲା ରାଜବାଟୀର ଇଲାକା । ରାଜା ବଳଭଦ୍ର ନାରାୟଣ ସିଂହଦେଓ ୩ ଏକର ତାଙ୍କ ଝିଅଙ୍କୁ ଦାନ କରିଦେଇଥିଲେ । ବଙ୍ଗଳା ଫ୍ୟାଟର୍ଣ୍ଣର ଗୃହଘର ଥିଲା । କୋଠୀ ୧୫ ଗୁଣ୍ଠ ପରିମିତ ସ୍ଥାନରେ ହୋଇଥିଲା । କୋଠୀରେ ପ୍ରାୟ ୧୪।୧୫ଟି କୋଠରୀ ଥିଲା ।

ସେ ହାତୀ ଓ ହରିଣ ପ୍ରିୟ ଥିଲେ । ଶିକାର ପାଇଁ ସଉକ ଥିଲା । ୨୦।୨୫ ବର୍ଷ ପୂର୍ବରେ ସେ ତାଙ୍କର ସମସ୍ତ ସମ୍ପତ୍ତିକୁ ତାଙ୍କ ସମ୍ପର୍କୀୟ କିଶୋର ଚନ୍ଦ୍ର ଜଗଦେବଙ୍କୁ ବିକି ଦେଇଥିଲେ ।

## ତାଲଚେର କୋଠୀ :

ବକ୍ସି ପଟ୍ଟନାୟକ ଛକ ନିକଟରେ ନରସିଂହପୁର କୋଠୀ ଯେଉଁଠି ଶେଷ ସେଇଠୁ ତାଲଚେର କୋଠୀ ଆରମ୍ଭ ।

ଆଳିରାଜାଙ୍କ ବଡରାଣୀଙ୍କର ସାନ ଭଉଣୀଙ୍କୁ ତାଲଚେର ରାଜା ବିବାହ କରିଥିଲେ । ତାଲଚେର ରାଜାଙ୍କର ଏଗାର ପୁଅ ଗୋଟିଏ ଝିଅ ଥିଲେ । ସୌଭାଗ୍ୟ ଚନ୍ଦ୍ର ଦେବ ବର୍ତ୍ତମାନ ତାଲଚେରର ରାଜା ସାହେବ ।

ଏବେ ଢେଙ୍କାନାଳର ତାଲଚେରରେ ଦୁର୍ମୂଲ୍ୟ ରାଜବାଟୀ ଜୀର୍ଣ୍ଣ ଅବସ୍ଥାରେ ଥିଲେ ମଧ୍ୟ, କଟକରେ ଥିବା ରାଜବାଟୀର ଅବସ୍ଥା ଆହୁରି ଦୟନୀୟ ।

ଏହାର ସମୁଦାୟ ସୀମା ଥିଲା ଦଶ ଏକର । ଗୃହଘର କଣ୍ଟି, ଦୋଚାଲି ଏବଂ ବଙ୍ଗଳା ଢଙ୍ଗରେ ତିଆରି ବହୁ ପୁରୁଣା ଘର ଏକ ଏକର ପରିମିତ ସ୍ଥାନରେ ନିର୍ମିତ ।

## ଆଳ କୋଠୀ :

କଟକର ବାଦାମବାଡ଼ିରେ ଭରତଆ ଟାଓ୍ୱାର ପଛପଟେ ଏବଂ ଉତ୍ତରପଟେ ଥିବା ଜୟଶ୍ରୀ ସିନେମା ହଲ ପର୍ଯ୍ୟନ୍ତ ଅଞ୍ଚଳ ଥିଲା ଆଳ ରାଜାଙ୍କର । ବର୍ତ୍ତମାନ ଆଳର ରାଜା ସାହେବ ହେଲେ ବ୍ରଜକିଶୋର ଦେବ ।

ଏହା ପ୍ରାୟ ୨୦ ଏକର ପରିମିତ ଅଞ୍ଚଳ । ବଡ଼ଭାଇ ଓ ସାନଭାଇ ଉଭୟଙ୍କର ଘର ଲଗିଲଗି । ସାନଭାଇ ଶରତଚନ୍ଦ୍ର ଦେବ ଏମ୍.ପି. ଥିଲେ ଏବଂ ସେ ମରିଯିବା ପରେ ତାଙ୍କ ସ୍ତ୍ରୀ ଅର୍ଥାତ୍ ସାନରାଣୀ ଏମ୍.ଏଲ.ଏ ଅଛନ୍ତି । ସେ ଭୁବନେଶ୍ୱରରେ ଥାଆନ୍ତି । ତାଙ୍କ କୋଠୀ ଦୁଇମହଲା ଘର ଏବଂ ପ୍ରାୟ ଆଠବଖରା ରହିଛି । ବଡ଼-ଭାଇଙ୍କର ପୁନଃନିର୍ମାଣ ହୋଇଥିବା କୋଠୀ ସାତବଖରା । ଆଳ ଓ କନିକା ଦୁଇ ଭାଇ ଥିଲେ ବହୁ ଅତୀତରେ । ସେମାନେ ପୂର୍ବରୁ ଆସି ଆଳ ଓ କନିକାରେ ରାଜତ୍ୱ ଆରମ୍ଭ କରିଥିଲେ । ତାଙ୍କର ଖରିଆର, ଉତ୍ତରପ୍ରଦେଶ, ଧର୍ମକୋଟ୍ ରାଜ୍ୟ ସହ ପାରିବାରିକ ସମ୍ପର୍କ ରହିଛି । ଆଳରାଜା ମନ୍ତ୍ରସିଦ୍ଧଥିଲେ । ଜଙ୍ଗଲରୁ ବାଘ ତାଙ୍କ ପାଖକୁ ଚାଲି ଆସୁଥିଲା । ସେ ସର୍କସ ମଧ୍ୟ ଜାଣିଥିଲେ । ନାଣ୍ଟି ଘଷ 'ସଦନ ନିକଟରେ ତାଙ୍କର କୋଠୀ ଥିଲା ।

## ବର୍ଦ୍ଧମାନ କୋଠୀ :

ପଶ୍ଚିମ ବଙ୍ଗର ଜଣେ ରାଜା ଅଥବା ଜମିଦାର ଓଡ଼ିଶାରୁ କେତେକ ସ୍ଥାନରେ ଜମି ନିଲାମ ରଖିଥିଲେ ଏବଂ ତାଙ୍କର ଆଧିପତ୍ୟ ମଧ୍ୟ ବହୁ ଅତୀତରୁ ଅଛି । ୧୮ଶ ଶେଷ ବା ୧୯ଶ ଆରମ୍ଭରୁ ଏହି ଇଷ୍ଟେଟ ଆରମ୍ଭ ହୋଇପାରେ । କାରଣ ବଳରାମପୁର ଇଷ୍ଟେଟ ବର୍ଦ୍ଧମାନ ଇଷ୍ଟେଟରୁ ଜମି କିଣିଥିଲେ ।

କଟକର ମଧୁସୂଦନ ଲ' କଲେଜ ପାଖାପାଖି କଲେଜଛକ ପର୍ଯ୍ୟନ୍ତ ସବୁ ଜମିଥିଲା ବର୍ଦ୍ଧମାନ ରାଜାଙ୍କର ବା ବର୍ଦ୍ଧମାନ କୋଠୀର ।

ପରବର୍ତ୍ତୀ ସମୟରେ ସରକାରଙ୍କ ଅଧୀନକୁ ଯାହା ଆସିବା ପରେ ଅବଶିଷ୍ଟ ବସ୍ତି ହୋଇ ଯାଇଛି ।

ବର୍ଦ୍ଧମାନ କଂପାଉଣ୍ଡ କେବଳ ତାର ଏକ ପ୍ରତୀକ ମାତ୍ର ।

## କୁଜଙ୍ଗ କୋଠୀ : (କୁଟୀର)

ଜୋବ୍ରାରେ ନାରାୟଣ ବାରବର ସାମନ୍ତ ଓ ରତ୍ନମାଳୀ ଜେମାଙ୍କର ବିଶ୍ରାମ ଗୃହ ଭଳି ଏହା କୁଜଙ୍ଗ ରାଜ ପରିବାରର କ୍ଷୁଦ୍ର କୋଠୀ ବା କୁଟୀର । ସେଠାରେ ସେହି ପରିବାରର ଡଃ ବୀଣା ସାମନ୍ତ (ଜଟଣୀ କଲେଜରେ ଅଧ୍ୟାପିକା) ରହୁଛନ୍ତି ।

## ଢେଙ୍କାନାଳ କୋଠୀ :

ନରସିଂହପୁର, ବଡମ୍ବା, ତାଳଚେର ହିନ୍ଦୋଳକୁ ଲାଗି ଢେଙ୍କାନାଳ କୋଠୀ କଟକର ମଧୁସୂଦନ ନଗରରେ ଅବସ୍ଥିତ । ବର୍ତ୍ତମାନର କେନ୍ଦ୍ର ସୂଚନା ଓ ପ୍ରସାରଣ ମନ୍ତ୍ରୀ ଶ୍ରୀଯୁକ୍ତ କାମାକ୍ଷା ପ୍ରସାଦ ସିଂହଦେଓଙ୍କ ପିତା ଶ୍ରୀଯୁକ୍ତ ଶଙ୍କର ପ୍ରତାପ ସିଂହଦେଓ ମହେନ୍ଦ୍ର ବାହାଦୁର୍ ଏହି କୋଠୀ ନିର୍ମାଣ କରିଥିଲେ ।

ହିନ୍ଦ୍ ସିନେମା ଏବଂ ତା ପଛପଟ ଜାଗା କଲେଜ ଛକରେ ଥିବା ଷ୍ଟେଟବ୍ୟାଙ୍କ ବିଲଡ଼ିଂ ଢେଙ୍କାନାଳ ରାଜାଙ୍କ ଅଧୀନସ୍ଥ ଥିଲା ।

ଢେଙ୍କାନାଳ କୋଠୀର ସମୁଦାୟ ଅଞ୍ଚଳର ୧୫ ଏକର ଏବଂ କୋଠୀ ପାଞ୍ଚଗୁଣ୍ଠ ଜାଗାରେ ନିର୍ମିତ । ପ୍ରାୟ ୬ ବଖରା ଘର ରହିଛି । ପୁନଃନିର୍ମାଣ କରାଯାଇଥିଲେ ମଧ୍ୟ କର୍ତ୍ତୃପକ୍ଷଙ୍କ ସେଇ ପୁରୁଣା କୋଠୀ ରହିଛି ।

## ଭିଙ୍ଗାରପୁର କୋଠୀ :

କଟକର ଚୌଧୁରୀ ବଜାର ପୁରୀ ଜିଲ୍ଲାର ଭିଙ୍ଗାରପୁରର ବିଖ୍ୟାତ ଚୌଧୁରୀ ବଂଶଙ୍କ ନାମ ଅନୁସାରେ ରଖାଯାଇଛି ଏବଂ ସେହି ଚୌଧୁରୀବଜାରରେ ଭିଙ୍ଗାରପୁର ଜମିଦାରଙ୍କର କୋଠୀ ରହିଛି ।



# ପୁରୁଣା ରାଜଭବନ

ଶ୍ରୀ ସତ୍ୟପ୍ରିୟ ମହାପାତ୍ର

ଆଜିକାଲି ରାଜ୍ୟମାନଙ୍କରେ ଗଭର୍ଣ୍ଣର ବା ରାଜ୍ୟପାଳଙ୍କ ବାସ ଭବନ ହିଁ ରାଜଭବନ । ହଜାର ବର୍ଷ ତଳେ କୌଣସି ରାଜ୍ୟରେ ଭାରତ ସ୍ୱାଧୀନ ହେବା ପରର ରାଜ୍ୟ ପାଳ ନଥିଲେ । ତଥାପି ଆମ ଓଡ଼ିଶାରେ ଆମେ ଦୁଇଗୋଟି ରାଜଭବନ ଦେଖିବା ପାଇଁ ପାଉ ।

ଆଜିର କଟକ ନଗର ମଧ୍ୟରେ ଓଡ଼ିଶା ହାଇକୋର୍ଟ ନିକଟରେ ବାଇମୁଣ୍ଡି ମାର୍ଗ କଡ଼ରେ ପ୍ରାଚୀନ ମର୍କତକେଶ୍ୱରଙ୍କ ପଥର ବନ୍ଧ ଉପରେ ଯେଉଁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଶିଶୁଭବନ ବିଦ୍ୟମାନ, ତାହା କିଛିଦିନ ତଳେ ଓଡ଼ିଶାର ପୂର୍ବତନ ବା ପୁରୁଣା ରାଜଧାନୀର ରାଜଭବନ ଥିଲା । ଭାରତ ବର୍ଷରେ ଯେତେ ରାଜ୍ୟ ଅଛି ସେଗୁଡ଼ିକର ରାଜ୍ୟପାଳମାନେ କାରବାର କରୁଥିବା ସ୍ଥାନକୁ ରାଜଭବନ ବୋଲି କୁହାଯାଏ । ତତ୍ ସଂଲଗ୍ନ ହତାରେ ରାଜ୍ୟପାଳଙ୍କ ସରକାରୀ କାର୍ଯ୍ୟାଳୟ ମଧ୍ୟ ଅବସ୍ଥିତ ଥାଏ । ବର୍ତ୍ତମାନ ଭୁବନେଶ୍ୱର ଓଡ଼ିଶାର ନୂଆ ରାଜଧାନୀ । ସେଠାରେ ଥିବା ରାଜଭବନ ନିର୍ମିତ ହୋଇ ରାଜ୍ୟପାଳଙ୍କ ସରକାରୀ କାର୍ଯ୍ୟାଳୟ ତଥା ବସବାସ କରିବା ପାଇଁ ଉପଯୁକ୍ତ ହେବା ପୂର୍ବରୁ ତାହା ଏହି କଟକ ଶିଶୁଭବନ ପ୍ରାଙ୍ଗଣରେ ଯଥାବିଧି ଅବସ୍ଥିତ ଥିଲା ।

ପ୍ରାଙ୍ଗଣ ଏକ ଐତିହାସିକ ସ୍ଥାନ । ଏହାର ଭୂଗୋଳ ବିଷୟରେ ପରିବର୍ତ୍ତିତ ପରିସ୍ଥିତି ପାଇଁ ସାମାନ୍ୟ ସୂଚନା ସହିତ ଇତିହାସର ସମ୍ୟକ ଧାରଣା ପାଠକ ପାଠିକାମାନଙ୍କୁ ପ୍ରଦାନ କରିବା ଏହି ବିଷୟବସ୍ତୁର ଅବତାରଣା । ବର୍ତ୍ତମାନ ଦେଖାଯାଉ, କି ଥିଲା ଏ ରାଜ୍ୟ, କି ହୋଇଛି ଆଜି ।

ବାସ୍ତବିକ ଇତିହାସ ପୃଷ୍ଠା ଓଲଟାଇଲେ ଜଣାଯାଏ ଯେ ଉକ୍ତ ସ୍ଥାନର ପୂର୍ବନାମ ଲାଲବାଗ ଯାହା ଅନୁସାରେ ଲାଲବାଗ ଥାନା ମଧ୍ୟ ନାମିତ ଅଛି । ଏବେ ଏଠାରେ କୌଣସି ପୁରୁଣା ବାଗ୍ ବଗିଚା ଆଉ ନାହିଁ । ବର୍ତ୍ତମାନ ଲାଲବାଗର ଇତିହାସ କହିଲେ ଏହି ହଜାର ବର୍ଷର କଟକର ପୁରୁଣା ରାଜଭବନ କଥାକୁ ବୁଝାଯିବ । ଏହାହିଁ ପୁରୁଣା ରାଜଭବନ । କାରଣ ନୂଆ ରାଜ-

ଭବନ ବଂଶ ଶତାବ୍ଦୀର ଓଡ଼ିଶାର ନୂଆ ରାଜଧାନୀ ଭୁବନେଶ୍ୱରରେ ଆଜ ଅବସ୍ଥିତ ଅଛି । ଏହା ଭାରତର ସ୍ୱାଧୀନତା ପରବର୍ତ୍ତୀ ସ୍ୱତନ୍ତ୍ର ଓଡ଼ିଶାର ଅବସ୍ଥା । ପୁରୁଣା ରାଜଧାନୀ କଟକରେ ଥିବା ରାଜଭବନ ଭୁବନେଶ୍ୱରର ନବ ନିର୍ମିତ ଆଧୁନିକ ରାଜ ଭବନକୁ ୧୯୬୧ ମସିହା ଜାନୁଆରୀ ମାସ ୨୭ ତାରିଖରେ ସ୍ଥାନାନ୍ତରିତ ହେଲା । ମାତ୍ର ଆମ କଟକ ରାଜଭବନ ସେହି ଦିନଠାରୁ ପୁରୁଣା ରାଜଭବନ ହୋଇ ରେଡ଼କ୍ରସ ସୋସାଇଟି ଅଧୀନରେ ତା ୧ । ୪ । ୧୯୭୭ ମସିହା ପର୍ଯ୍ୟନ୍ତ ରହିଲା । ଉକ୍ତ ଦିନଠାରୁ ବର୍ତ୍ତମାନର ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଶିଶୁଭବନ ଅନ୍ୟ ନାମ ଧରି ଅର୍ଥାତ୍ ଓଡ଼ିଶା ଶିଶୁଭବନ ହୋଇ ରହିଥିଲା । କଟକରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲର କର୍ତ୍ତୃତ୍ୱାଧୀନ ତଥା ପରିଚାଳନାଧୀନ ହୋଇ ଏହି ଶିଶୁଭବନ ବା ଶିଶୁ ଚିକିତ୍ସାଳୟ କାର୍ଯ୍ୟ କରୁଅଛି । ଏହି ପୁରୁଣା ରାଜଭବନ କାର୍ଯ୍ୟାଳୟ ପରିସର ଭିତରେ ଆଜ ଏକ ଉଲ୍ଲେଖଯୋଗ୍ୟ ଅନୁଷ୍ଠାନ ମଧ୍ୟ କାର୍ଯ୍ୟକରେ । ତାହା ୧୯୭୨ ମସିହାରୁ ସ୍ଥାପିତ ହୋଇ ସ୍ୱର୍ଗତା ମା' ରମାଦେବୀଙ୍କ ସ୍ମୃତିରକ୍ଷା ପାଇଁ ରମାଦେବୀ ଶିଶୁବିହାର ନାମରେ ନାମିତ । ଏହା ଶ୍ରେଷ୍ଠ ଶ୍ରେଷ୍ଠ ଶାରୀରିକ ତଥା ମାନସିକ ଅକ୍ଷମ ଶିଶୁମାନଙ୍କୁ ଶାରୀରିକ ତଥା ମାନସିକ ଉନ୍ନତି ପାଇଁ ନିମ୍ନ ପ୍ରାଥମିକ ଶିକ୍ଷାର ପାଠ୍ୟକ୍ରମ ଅନୁସରଣରେ ଶିକ୍ଷାପ୍ରଦାନ କରେ ।

ଏହି ପୁରୁଣା ରାଜଭବନ ପରିସର ମଧ୍ୟରେ ଯେଉଁ କୋଠାବାଡ଼ି ଦେଖିବାକୁ ମିଳେ, ତାହା ଐତିହାସିକ ଲାଲବାଗ କୋଠାଘର ଅଟେ । ଆବଶ୍ୟକ ଅନୁଯାୟୀ ଏବେ କିଛି ନୂତନ କୋଠାଘର ଶିଶୁରୋଗୀ ଶଯ୍ୟା ବୃଦ୍ଧି ପାଇଁ ନିର୍ମିତ ହୋଇଛି । ଆଗ କାଳରେ ମନୋରମ ପରିବେଶ ତଥା ବାଗବଗିଚା ତତ୍କାଳୀନ କାଠଯୋଡ଼ି ନଦୀର ଧାରେ ଧାରେ ଅବସ୍ଥିତ ଥିବାରୁ ସେ କାଳର ଅଧିବାସୀମାନଙ୍କ ପାଇଁ ଅତ୍ୟନ୍ତ ଚିତ୍ତାକର୍ଷକ ଥିଲା ।

ତତ୍କାଳୀନ ନବାବ ଉକ୍ତ ଅଟ୍ଟାଳିକାକୁ କାଠଯୋଡ଼ି ନଦୀ କୂଳରେ ଏହି ମନୋରମ ପରିବେଶରେ ନିର୍ମାଣ କରିବାର ଦୃଶ୍ୟ ୧୬୩୩ ମସିହାରେ ଇଂରେଜ ଇଷ୍ଟ ଇଣ୍ଡିଆ କମ୍ପାନୀର ଜଣେ ପ୍ରଧାନ ବଣିକ ଉଇଲିୟମ ବ୍ରୁଟନ ଦେଖିଥିଲେ ବୋଲି ତାଙ୍କ ଭ୍ରମଣ ବୃତ୍ତାନ୍ତରୁ ଜଣାପଡ଼େ ।

ଏହି ଅଟ୍ଟାଳିକାରେ ତତ୍କାଳୀନ ଓଡ଼ିଶାର ମୋଗଲ ଗଭର୍ଣ୍ଣର ଏମ୍. ଖାଁ ମିର୍ଜା ମାକ୍କି ବାସକରି ୧୬୩୨ ରୁ ୧୬୪୨ ମସିହା ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

୧୭୮୬-୮୭ ମସିହାର ମୁଦ୍ରିତ ପର୍ସିଆନ୍ ରିୟାଜ-ଉର-ସଲତନ୍‌ରୁ ଗୁଲାମ ହୁସେନ ସାଲାମଙ୍କ ବିବୃତିରୁ ଜଣାପଡ଼େ ଯେ ଉକ୍ତ ଅଟ୍ଟାଳିକା ୧୭୪୧ ମସିହାରେ ମଧ୍ୟ ଅବସ୍ଥିତ ଥିଲା ଓ ଏହା ତତ୍କାଳୀନ ଓଡ଼ିଶାର ଡେପୁଟି ନିଜାମ ସୁଲତାନ ଜଙ୍ଗଙ୍କ ଦ୍ୱାରା ଅଧିକୃତ ହୋଇଥିଲା ।

୧୭୭୬ ମସିହାରେ ଥମାସ୍ ମୋଟେ ନାମକ ଜଣେ ଇଂରାଜ ପରିବ୍ରାଜକ କହିଛନ୍ତି ଯେ କାଠଯୋଡ଼ି ହିଁ ଲାଲବାଗର ଅନ୍ୟନାମ । ଏଠାରେ ପ୍ରଦେଶର ଗଭର୍ଣ୍ଣର ବାସ କରନ୍ତି । ଏହା ଏକ ବଡ଼ିଆ ମୂଳଦୁଆ ଉପରେ ଅବସ୍ଥିତ ହେଲେ ହେଁ ମରାମତି ଅଭାବରୁ ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ଥିଲା । ଏହା ୧୭୫୧ ମସିହା ପର୍ଯ୍ୟନ୍ତ ମୋଗଲ ସୁବେଦାରଙ୍କ ଦ୍ୱାରା ଅଧିକୃତ ଥିଲା । ଏହାପରେ ୧୭୫୧ ରୁ ୧୮୦୩ ଖ୍ରୀ ଏ. ଡି. ପର୍ଯ୍ୟନ୍ତ ନାଗପୁର ଭୋନ୍ସଲା ବଂଶର ସୁବେଦାରଙ୍କ ଅଧୀନରେ ବାସସ୍ଥାନ ରୂପେ ଥିଲା ।

୧୭୯୦ ମସିହାରେ "ଲେକି" ନାମକ ଜଣେ ବିଖ୍ୟାତ ଇଂରେଜ ପରିବ୍ରାଜକ କହିଛନ୍ତି ଯେ ଉକ୍ତ ସ୍ଥାନ ତତ୍କାଳୀନ ରାଜାଙ୍କର ବାସସ୍ଥାନ ଥିଲା । ଏହା କାଠଯୋଡ଼ି ନଦୀର ଖରସ୍ରୋତରୁ ରକ୍ଷା ପାଇବା ପାଇଁ ଗୋଟି ସହିତ ପଥର ନିର୍ମିତ ସୁଦୃଢ଼ ପ୍ରାଚୀର ତଥା ପଥରବନ୍ଧ ଦ୍ୱାରା ପରିବେଷ୍ଟିତ ହୋଇଥିଲା ।

୧୮୨୨ ମସିହାରେ ତତ୍କାଳୀନ କଟକର କମିଶନରଙ୍କ ସେକ୍ରେଟାରୀ ଷ୍ଟାର୍ଲିଂ ଲେଖି ଯାଇଛନ୍ତି ଯେ ଏହି କାଠଯୋଡ଼ି ନଦୀର ପଥରବନ୍ଧ ଉପରେ ଅବସ୍ଥିତ ଏହି ଲାଲବାଗ ପ୍ରାସାଦରେ ମୋଗଲ ଓ ମରହଟ୍ଟା ସମୟର ସୁବେଦାରମାନେ ସର୍ବଦା ବାସ କରୁଥିଲେ ।

ଭାରତରେ ବ୍ରିଟେନ୍‌ର ଇଂରାଜ ରାଜତ୍ୱ କାଳରେ ୧୮୦୩ ଏ. ଡ଼. ରେ ଯେତେବେଳେ ଆକ୍ରମଣକାରୀ ନାଗପୁରର ଭୋନ୍‌ସଲା ବଂଶର ଦ୍ୱିତୀୟ ରଘୁଜୀ ଓଡ଼ିଶାକୁ ପରାଜିତ କଲେ । ସେତେବେଳେ ଏହି ଲାଲ୍‌ବାଗ ସ୍ଥାନକୁ ଇଂରେଜମାନେ ପ୍ରଥମକରି ଦଖଲକୁ ନେଲେ ଏହା ପଞ୍ଚାସୂତ୍ରେ ଦଖଲ ଥିବାବେଳେ ଏହି ସ୍ଥାନକୁ ୧୮୬୨ ଜାନୁଆରୀ ମାସରେ ସରକାର ନିଜେ ଦଖଲକୁ ନେଇ ଅନ୍ୟକୁ ବିକି କଲେ ଏବଂ ଉକ୍ତ କ୍ରେତା ପୁଣି ଏହି ସ୍ଥାନକୁ ଜଳସେଚନର ସୁବିଧା ପାଇଁ ତତ୍କାଳୀନ ଜଳ-ସେଚନ କମ୍ପାନୀକୁ ପ୍ରାୟ ୧୫୦୦୦ ଟଙ୍କା ମୁଦ୍ରା ପାଇଁ ଲାଲ୍‌ବାଗ ପ୍ରାସାଦ ସହିତ ବିକି କଲେ ।

ପୁଣି ୧୮୬୩ ମସିହାରେ ତତ୍କାଳୀନ ସରକାର ଏହି ଲାଲ୍‌ବାଗ ଅଟ୍ଟାଳିକାକୁ ଦଖଲ ନେଲେ । କାରଣ ଉକ୍ତ ଜଳସେଚନ କମ୍ପାନୀକୁ ସେତେବେଳେ ସରକାର ହାତକୁ ନେଇ ପରିଚାଳନା ମଧ୍ୟ କଲେ ।

ଏହି ଭଳି କାଳକ୍ରମେ ୧୮୬୮ ଏ. ଡ଼. ଠାରୁ ଉକ୍ତ କୋଠାଘରଗୁଡ଼ିକୁ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ କମିଶନର ଓ ସମୟେ ସମୟେ ଜିଲ୍ଲା କଲେକ୍ଟରମାନେ ପ୍ରାୟ ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟ ୧୯୩୯ ଏ. ଡ଼. ପର୍ଯ୍ୟନ୍ତ ସରକାରୀ ବାସଗୃହ ଓ ଅଫିସ ଗୃହ ପ୍ରଭୃତି ପାଇଁ ବ୍ୟବହାର କରି ଆସୁଥିଲେ ।

ସେହି ସେହି କମିଶନରମାନଙ୍କ ମଧ୍ୟରୁ କେତେକ ଏଠାରେ ଉଲ୍ଲେଖଯୋଗ୍ୟ । ୧୮୪୭ରେ ଆର୍. ଜି. ଦତ୍ତ । ୧୮୬୮ରେ ଟି. ଇ. ରେଭେନ୍‌ସା । ୧୯୩୬ ଅପ୍ରେଲ

ପହିଲରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ପରେ ୧୯୪୧ ମସିହାରେ ଏହି ପୁରୁଣା ରାଜଭବନର ସ୍ଥାନ ଓଡ଼ିଶାର ପ୍ରଧାନମନ୍ତ୍ରୀ ତଥା ପାରଳାଖେମଣ୍ଡିର ମହାରାଜା ସାହେବ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେଓଙ୍କର ମଧ୍ୟ ବାସସ୍ଥାନ ଥିଲା । କଟକ ହିଁ ସେତେବେଳର ଓଡ଼ିଶାର ରାଜଧାନୀ ।

୧୯୪୨ ମସିହାଠାରୁ ଏହି ସ୍ଥାନ ଓଡ଼ିଶାର ଗଭର୍ଣ୍ଣରମାନଙ୍କ ଦ୍ୱାରା ୧୯୬୧ ମସିହା ଜାନୁଆରୀ ୨୬ ତାରିଖ ପର୍ଯ୍ୟନ୍ତ ରାଜଭବନଭାବେ ବ୍ୟବହୃତ ହେଉଥିଲା । ଏହିଠାରେ କେତେକ ସ୍ମରଣୀୟ ବ୍ୟକ୍ତି ହେଲେ ସାର୍ ହଥର୍ଣ୍ଣ ଲୁଇସ୍ (୧୮।୭।୪୨ ରୁ ୩୧।୩।୪୬ ), ଚନ୍ଦୁଲାଲ ତ୍ରିବେଦୀ (୧।୪।୪୬ ରୁ ୧୦।୮।୪୭), ଡଃ କୈଳାସନାଥ କାଟ୍‌ଜୁ (୧୫।୮।୪୭ ରୁ ୨୦।୬।୪୮), ଆସଫ୍ ଅଲ୍ଲୀ (୨୧।୬।୪୮ ରୁ ୫।୫।୫୧), ଭି. ପି. ମେନନ୍ (୭।୫।୫୧ ରୁ ୧୭।୭।୫୧), ସଏଦ୍ ଫଜଲ୍ ଅଲ୍ଲୀ (୭।୫।୫୨ ରୁ ୯।୨।୫୪) ପି. ଏସ୍. କୁମାର ସ୍ୱାମୀ ଓ ଭୀମସେନ ସାଚ୍ଚର ପ୍ରମୁଖ ।

ଉପରୋକ୍ତ ପ୍ରକାରରେ ଏହି ପୁରୁଣା ରାଜଭବନର ଭୂଗୋଳ ଆଜିର ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଶିଶୁଭବନ ବା ଶିଶୁ ଚିକିତ୍ସାଳୟ ଏବଂ ମା' ରମାଦେବୀ ଶିଶୁ ବିହାରରେ ପର୍ଯ୍ୟବସିତ ଥିବାରୁ ଏବଂ ତତ୍‌ସଂଲଗ୍ନ ସରକାରୀ ଡାକ୍ତର ପ୍ରଭୃତିଙ୍କ କ୍ୱାର୍ଟର ଏହି ସୀମା ଭିତରେ ହୋଇଥିବାରୁ ଆଜିର ଭୁବନେଶ୍ୱର ନୂଆ ରାଜଭବନର ଏହା ପୁରାତନ ଇତିହାସ ହୋଇଗଲା । ଫଳରେ ଲାଲ୍‌ବାଗ ଅଟ୍ଟାଳିକା ଆଜିର ପୁରୁଣା ରାଜଭବନ ହେଲା । ପୁରାତନ ରାଜାଙ୍କ ବଂଶଧରର କେହି ଶିଶୁ ସିନା ଏଠାରେ ଚିକିତ୍ସିତ ହେବେ । ମାତ୍ର କୌଣସି ରାଜାଙ୍କର ଏହା ଆଉ ନିବାସ ହୋଇ ରହିଲା ନାହିଁ । ଏଠାରେ ଚିକିତ୍ସା ପାଇଥିବା କୌଣସି ଶିଶୁ ସିନା ଦିନେ ଏ ରାଜ୍ୟର କିମ୍ବା ଭାରତବର୍ଷର ମନ୍ତ୍ରୀ ହୋଇପାରନ୍ତି । କେବଳ ନାମକୁ ମାତ୍ର ଏହା ପୁରୁଣା ରାଜଭବନ ହୋଇ ରହିଗଲା; ମନ୍ତ୍ରୀ ଭବନ ନାମ ମଧ୍ୟ ଧାରଣ କରିପାରିଲା ନାହିଁ । ଆମେ ମନୁଷ୍ୟ ଜଗତରେ ବାସ କରୁଥିବା ଏହି କ୍ଷଣିକ ଭୁବନର ଗତି ବିଚିତ୍ର । କାରଣ କରୁଣାମୟ ଭୁବନାନନ୍ଦ, ଭୁବନେଶ୍ୱର ତଥା କରୁଣାମୟୀ ଭୁବନେଶ୍ୱରୀଙ୍କର ଯାହା କୃପା । ଜନସାଧାରଣଙ୍କ ରୁଚି ତଥା ସ୍ପୃହା ବଦଳିବାରୁ ଏହି ଐତିହାସିକ ସ୍ଥାନ ପୁରୁଣା ରାଜଭବନର କେବଳ ଭୂଗୋଳ ସିନା ଟିକେ ବଦଳିଅଛି । ଶେଷକଥା ଏହି ଯେ ସଂସାର ବିଚିତ୍ର ଓ କ୍ଷଣସ୍ଥାୟୀ ।



# କଟକନଗର ଓ କାଠଯୋଡ଼ି ପଥର ବନ୍ଧ

ଶ୍ରୀ ଘନଶ୍ୟାମ ପାଣି

ଯେଉଁସବୁ ସୁବିଧାକୁ ଆଖିଆଗରେ ରଖି କଟକ ନଗର ସ୍ଥାପିତ ହୋଇଥିଲା ସେହି ସୁବିଧା ହିଁ ଶେଷରେ ହେଲା କଟକନଗରର ବିପଦର କାରଣ । ବର୍ଷ ବର୍ଷ ଧରି ମହାନଦୀ କାଠଯୋଡ଼ିରେ ଆସିଥିବା ପ୍ରଳୟଙ୍କରୀ ବନ୍ୟା କଟକ ବାସୀନ୍ଦାଙ୍କର ଜନଜୀବନକୁ ଅସ୍ତବ୍ୟସ୍ତ କରିଥିବ । ପ୍ରଜାଙ୍କର ଧନଜୀବନ ରକ୍ଷା କରିବା ରାଜାଙ୍କର କର୍ତ୍ତବ୍ୟ ଦୃଷ୍ଟିରୁ ସେତେବେଳର ରାଜା ମର୍କତକେଶରୀ ଶାନ୍ତରେ ରହି ପାରି ନଥିବେ । ପ୍ରତିବର୍ଷ ବର୍ଷାକାଳ ଆସିଲେ ଲୋକଙ୍କର ଦୁଶ୍ଚିନ୍ତା ବଢ଼ି ଯାଉଥିବ । କଟକନଗରକୁ ରକ୍ଷା କରିବା ପାଇଁ ରାଜା ପ୍ରଜାଙ୍କ ମଧ୍ୟରେ ଉପାୟ ଖୋଜା ଚାଲିଥିବ । ଉପାୟ ପ୍ରାପ୍ତି ପରେ ରାଜା ମର୍କତକେଶରୀ କଟକନଗରକୁ ରକ୍ଷା କରିବା ପାଇଁ କାଠଯୋଡ଼ିରେ ପଥର ବନ୍ଧ ନିର୍ମାଣ କରିଥିବେ ।

ଏ କାଠଯୋଡ଼ି ପଥର ବନ୍ଧ ନିର୍ମାଣ ସମ୍ପର୍କରେ ଇତିହାସ ଯଥେଷ୍ଟ ପ୍ରମାଣ ଦେଇ ନ ପାରିଲେ ମଧ୍ୟ ବର୍ଷ ବର୍ଷ ଧରି ଜନଶ୍ରୁତିରେ ରହିଆସିଥିବା କିମ୍ବଦନ୍ତୀକୁ ଭୁଲିଯିବା ଠିକ୍ ହେବନି । କାଠଯୋଡ଼ି ପଥର ବନ୍ଧ ନିର୍ମାଣ ସମ୍ପର୍କରେ ଯେଉଁ ମର୍ମସ୍ପର୍ଶୀ କିମ୍ବଦନ୍ତୀ ଶୁଣିବାକୁ ମିଳେ ତା' ଏଠାରେ ଉଲ୍ଲେଖ କରାଯାଇଛି ।

'କଟକ ଚିନ୍ତା ବାଇମୁଣ୍ଡିକୁ' ପ୍ରବାଦଟି ଆମ ସାହିତ୍ୟରେ, ଇତିହାସରେ ଏବଂ ଜନଶ୍ରୁତିରେ ବେଶ ଆସ୍ଥାନ ଜମାଇ ବସିଛି । ଦଶମ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ବାଇମୁଣ୍ଡି (ଭଲ ନାମ—ବାଇଧର ମୁଣ୍ଡି) ଯାହାର କୌଳିକ ପେଷାଥିଲା ପଥର କାଟିବା ଓ ଯୋଡ଼ିବା କାମ । ସେ ମହାନଦୀ ଓ କାଠଯୋଡ଼ିରେ ପ୍ରତିବର୍ଷ ଆସୁଥିବା ବନ୍ୟାକୁ ଦେଖି ଚିନ୍ତା କରୁଥିଲା ଯେ ଏତେ ସୁନ୍ଦର କଟକନଗର କ'ଣ ଗଭୀର ନଦୀ ଗର୍ଭରେ ଲୋପ ପାଇଯିବ ? ଏହାର କ'ଣ ସ୍ଥାୟୀ ପ୍ରତିକାର ହୋଇପାରିବ ନାହିଁ ? କଟକନଗର ରକ୍ଷାପାଇଁ ସେ ସତରେ ଚିନ୍ତିତ ଥିଲା । ଏପରିକି ନିଜର ଦୈନିକ ରୋଜଗାରରୁ କିଛି ସଞ୍ଚୟ କରି ରଖୁଥିଲା । କଟକନଗର ରକ୍ଷାକରିବା ପାଇଁ ଏକ ପଥର ବନ୍ଧ ନିତାନ୍ତ ଆବଶ୍ୟକ, ସେ କଥା ପଥରକଟାଳୀ (ସ୍ଥପତି)

ବାଇମୁଣ୍ଡି ଦିନରାତି ଭାବୁଥିଲା । ଗୁଣ୍ଡିଚମୂଷା 'ସେତୁବନ୍ଧ ନିର୍ମାଣରେ ସାହାଯ୍ୟ କରିବାରେ ସେ ଭାବୁଥିଲା କାଠଯୋଡ଼ିରେ ପଥର ବନ୍ଧ ହେଲେ ସେ ଗୁଣ୍ଡିଚମୂଷା ଭଳି ସାହାଯ୍ୟ କରନ୍ତା । କେଉଁଦିନ ସେ ସୁଯୋଗ ଆସିବ ସେହି ଦିନକୁ ସେ ଚାହିଁ ବସିଥିଲା ।

'ବରଡ଼ି ପହଞ୍ଚିଲେ ବେଲକୁ ଶିକା ଛିଣ୍ଡିବା' ନ୍ୟାୟରେ ଏକଦା ସୋମବଂଶ ରାଜା ଭୀମରଥ ଦ୍ୱିତୀୟ ମହାଭବ ଶିବଗୁପ୍ତ (ମର୍କତ କେଶରୀ) ଆସିଥାନ୍ତି କଟକ ନଗର ପରିଦର୍ଶନରେ । ହସ୍ତୀ ଉପରେ ବସି ରାଜା ଯାତ୍ରା କରୁଥାନ୍ତି । ତାଙ୍କ ସାଥିରେ ପାତ୍ର, ମନ୍ତ୍ରୀ, ଅମାତ୍ୟ ଏବଂ ସମସ୍ତ ରାଜପରିଷଦବର୍ଗ ଚାଲିଥାନ୍ତି ଅପୂର୍ବ ଥାଟରେ । ଶୋଭାଯାତ୍ରାର ଶେଷ ମୁଣ୍ଡରେ ବୃଦ୍ଧ ବାଇମୁଣ୍ଡି ଜରାଜୀର୍ଣ୍ଣ ଶରୀର ନେଇ ଗୋଟିଏ ହାତରେ ଖଣ୍ଡିଏ ବାଉଁଶ ବାଡ଼ିରେ ଭରାଦେଇ ଅନ୍ୟ ହାତରେ ଗୋଟିଏ କନାବନ୍ଧା ଥଳିଧରି ଉଦ୍‌ଗ୍ରୀବ ଅପେକ୍ଷା କରିଥାନ୍ତି ରାଜାଙ୍କୁ ଭେଟିବା ପାଇଁ…କିନ୍ତୁ ତାଙ୍କର ଅବସ୍ଥା ଦେଖି ରାଜକର୍ମଚାରୀମାନେ ଚାହୁଁଥିଲେ ତାଙ୍କୁ ରାଜାଙ୍କ ସାଥିରେ ଭେଟ ନ କରାଇବା ପାଇଁ । ହଠାତ୍ ଏ ଦୃଶ୍ୟ ରାଜାଙ୍କର ଆଖି ଆଗରୁ ବାଦ୍ ପଡ଼ିଲା ନାହିଁ । ରାଜା ମର୍କତ କେଶରୀ ସ୍ୱତଃପ୍ରବୃତ୍ତ ହସ୍ତୀ ଉପରୁ ଓହ୍ଲାଇପଡ଼ି ବୃଦ୍ଧ ବାଇମୁଣ୍ଡିକୁ ପଚାରିଲେ, "ତୁମେ କ'ଣ ଚାହୁଁଛ ?" ରାଜାଙ୍କର ପ୍ରଶ୍ନରେ ବୃଦ୍ଧ ବାଇମୁଣ୍ଡିଙ୍କର ଶୁଖିଲା ମୁହଁରେ ଫୁଟିଉଠିଲା ହସ । ସେ ଖୁବ୍ ଉଦ୍‌ଗ୍ରୀବ—ଭାବବିହ୍ୱଳ ହୋଇ କହିଉଠିଲେ, ହଜୁର, ମହିମା, ମୋର କିଛି ଦରକାର ନାହିଁ । ହଜୁର ଏ ରାଇଜର ବାପ, ମା' କଟକ ନଗର କ'ଣ କାଠଯୋଡ଼ିର ଗମ୍ଭୀର ଜଳରେ ଲୀନ ହୋଇଯିବ ? ମହିମା ଚାହିଁଲେ କ'ଣ ନ ହୋଇ ପାରିବ ? ଏ କଟକ ନଗର ପ୍ରଜାମାନଙ୍କର ଧନଜୀବନ ରକ୍ଷା ହେବା ପାଇଁ କାଠଯୋଡ଼ିରେ ଗୋଟିଏ ପଥରବନ୍ଧ ତିଆରି କରିଦିଅନ୍ତୁ । ଏତିକି ମୋର ଗୁହାରି, ଏତିକି ମୋର ନିବେଦନ । ମୁଁ ଜଣେ ନଗଣ୍ୟ ମୂଲିଆ ଲୋକ । ମୁଁ ବା' କ'ଣ କରି-ପାରିବି ! ଜୀବନଯାକ ସଞ୍ଚୟ କରି ଏତିକି ମାତ୍ର ରଖିଛି । ମହାରାଜ ! ଏ ଥଳିଟି ଗ୍ରହଣ କରି କାଠଯୋଡ଼ିରେ ଗୋଟିଏ ପଥରବନ୍ଧ ତିଆରି କରିଦିଅନ୍ତୁ । ଏହା କହି ସେ ମହାରାଜାଙ୍କ ହସ୍ତରେ ଥଳିଟି ଅର୍ପଣ କଲା । ରାଜା ମର୍କତକେଶରୀ ବାଇମୁଣ୍ଡିର କଟକ ଚିନ୍ତା—ସାହାଯ୍ୟ, କଟକ ନଗରକୁ ରକ୍ଷା କରିବାର ବ୍ୟାକୁଳତା ଦେଖି ଅଭିଭୂତ ହୋଇ ପଡ଼ିଲେ । କହିଲେ, ଧନ୍ୟ ତୁମେ ବାଇମୁଣ୍ଡି, ତୁମର ଇଚ୍ଛା ହିଁ ପୂର୍ଣ୍ଣ ହେବ ।

କାଠଯୋଡ଼ିରେ ପଥରବନ୍ଧ ନିର୍ମାଣ କରିବା କ୍ଷେତ୍ରରେ ବାଇମୁଣ୍ଡିର ପ୍ରେରଣା ଓ ସାହାଯ୍ୟ ଥିଲା ପ୍ରଥମ ପଦକ୍ଷେପ । ରାଜା ମର୍କତକେଶରୀ ବାଇମୁଣ୍ଡିର ପ୍ରାଥମିକ ସାହାଯ୍ୟ ଓ ପ୍ରେରଣାକୁ ପାଥେୟ କରି ସୁସମୃଦ୍ଧ କଟକ ନଗର ରକ୍ଷାକରିବା ପାଇଁ ମହାନଦୀ ଓ କାଠଯୋଡ଼ି ପଥରବନ୍ଧ ନିର୍ମାଣ କଲେ । ଏହି ପଥରବନ୍ଧ ୧୦୦୬ ଖ୍ରୀଷ୍ଟାବ୍ଦରେ ଶେଷ ହୋଇଥିଲା ବୋଲି ଐତିହାସିକମାନେ ମତ ଦିଅନ୍ତି ।

ହଜାର ବର୍ଷର ଏହି ପୁରାତନ କାଠଯୋଡ଼ି ପଥରବନ୍ଧ ଚଢ଼ଣାଘାଟ (ଆଜିର ବଡ଼ାନାଳୀ)ଠାରୁ ଆରମ୍ଭ ହୋଇ ସତୀଚଉରା, ହରହରଘାଟ, କଟେଶ୍ୱରଘାଟ, ଗଣେଶଘାଟ, ପୁରୀଘାଟ ସର୍ବଶେଷରେ ଖାନନଗରଘାଟ ପର୍ଯ୍ୟନ୍ତ ଲମ୍ବି ଯାଇଛି । 'ଏହି ଐତିହାସିକ ପଥରବନ୍ଧ ମୂକସାକ୍ଷୀ ସଦୃଶ ୧୯୮୩ ମସିହା ପର୍ଯ୍ୟନ୍ତ ରାଜା ମର୍କତକେଶରୀ ଓ ବାଇମୁଣ୍ଡିଙ୍କର ଯଶଗାନ କରୁଥିଲା । ଏହି ପଥରବନ୍ଧର ନିର୍ମାଣ କୌଶଳ ଆଧୁନିକ ବୈଷୟିକ ନିର୍ମାଣ କୌଶଳଠାରୁ କୌଣସି ଗୁଣରେ ନିକୃଷ୍ଟ ନଥିଲା ବୋଲି ଆଧୁନିକ ଜଗତର ଇଞ୍ଜିନିୟରମାନଙ୍କର ମତ । ଏହି ବନ୍ଧର ଉଚ୍ଚତା ସ୍ଥାନ ବିଶେଷରେ କେଉଁଠି ତିନି ମିଟରରୁ ଅଧିକ ଥିଲା ତ କେଉଁଠି ଛ' ମିଟର ପର୍ଯ୍ୟନ୍ତ ଥିଲା । ବନ୍ଧର ପାର୍ଶ୍ୱରେ ମାଙ୍କଡ଼ା ପଥର ଓ ମୃଗୁନି ପଥର ଦ୍ୱାରା ଆଚ୍ଛାଦିତ ହୋଇଥିଲା । କାଠଯୋଡ଼ିର ଏହି ପଥରବନ୍ଧ ପ୍ରାୟ ୧୮୫୦ ମସିହା ପର୍ଯ୍ୟନ୍ତ ବନ୍ୟା ପ୍ରକୋପରୁ କଟକ ନଗରକୁ ସୁରକ୍ଷା ପ୍ରଦାନ କରି ଆସିଥିଲା । ହଠାତ୍ ୧୮୫୫ ମସିହାରେ ମହାନଦୀ ଓ କାଠଯୋଡ଼ିରେ ପ୍ରଳୟଙ୍କରୀ ବନ୍ୟା ମାଡ଼ିଆସି କଟକ ନଗରର ବହୁ କ୍ଷତି ସାଧନା କଲା । ତତ୍କାଳୀନ ଇଂରେଜ ଶାସକମାନେ କର୍ତ୍ତବ୍ୟ ଦୃଷ୍ଟିରୁ ଏହି ମହାନ ନଗରକୁ ରକ୍ଷା କରିବା ପାଇଁ ଦୁର୍ବଳ କାଠଯୋଡ଼ି ବନ୍ଧର ମରାମତି କାର୍ଯ୍ୟ ହାତକୁ ନେଲେ । ଇଂରେଜ ଇଞ୍ଜିନିୟର ଜନ୍ ହ୍ୟାରିସ୍ ଏହି ମରାମତି ଦାୟିତ୍ୱ ବହନ କରିଥିଲେ । ତାଙ୍କର ନିର୍ଦ୍ଦେଶରେ ଭାଙ୍ଗି ପଡ଼ିଥିବା ବାରବାଟି ଦୁର୍ଗରୁ ପଥର ଆଣି କାଠଯୋଡ଼ି ପଥରବନ୍ଧର ଦୁର୍ବଳ ସ୍ଥାନମାନଙ୍କରେ ଖଞ୍ଜି ସୁନ୍ଦର ରୂପେ ମରାମତି କାର୍ଯ୍ୟ ସମାପନ କରିଥିଲେ । ଏମିତି ଶହ ଶହ ବର୍ଷର ଉତ୍ଥାନ ପତନ ଭିତରେ ଖରା, ବର୍ଷା, ବନ୍ୟାର ଘାତପ୍ରତିଘାତକୁ ପ୍ରତିହତ କରି କାଠଯୋଡ଼ି ପଥରବନ୍ଧ ଓଡ଼ିଶାର ସାଂସ୍କୃତିକ, ଐତିହାସିକ ଓ ବାଣିଜ୍ୟ କେନ୍ଦ୍ର କଟକ ନଗରକୁ ସୁରକ୍ଷା ପ୍ରଦାନ କରି ଆସିଥିଲା ।

ସ୍ୱାଧୀନତା ପ୍ରାପ୍ତି ପରେ ୧୯୫୫, ୧୯୭୧, ୧୯୮୦ ଏବଂ ୧୯୮୨ ମସିହାରେ ମହାନଦୀ ଓ କାଠଯୋଡ଼ିରେ ପ୍ରଳୟଙ୍କରୀ ବନ୍ୟା ମାଡ଼ିଆସି ସମୃଦ୍ଧ, ପରିବୃଦ୍ଧ କଟକ ନଗରର ସ୍ଥିତି ପ୍ରତି ଯେତେବେଳେ ଭୟଙ୍କର ବିପଦ ସୃଷ୍ଟି କଲା, ପଥରବନ୍ଧର ଅନେକ ଦୁର୍ବଳ ସ୍ଥାନମାନଙ୍କରୁ ଗଳିଆ ପଡ଼ି ଜଳ ଝରିଲା, ସେତେବେଳେ ଓଡ଼ିଶାର ବୁଦ୍ଧିଜୀବୀ, କଟକ ନଗରବାସୀ, ସମ୍ବାଦପତ୍ର ଓଡ଼ିଶାର ଶାସନକଳ ବିବ୍ରତ ହୋଇ ପଡ଼ିଲା । ଜଳସେଚନ ବିଭାଗ, ଜିଲ୍ଲା ପ୍ରଶାସନ, ନଗରପାଳିକା ରକ୍ଷୀ ବାହିନୀ, ବିଭିନ୍ନ ସ୍ୱେଚ୍ଛାସେବକ ବାହିନୀ ତରଫରୁ ପ୍ରତିଷେଧକ ସ୍ୱରୂପ ଜଳ ନିଷ୍କାସନର ବ୍ୟବସ୍ଥା ଗ୍ରହଣ କରାଯାଇଥିଲା । କଟକ ନଗର ପ୍ରତି ବନ୍ୟାର ଭୟାବହତା ଏବଂ କାଠଯୋଡ଼ି ପଥର ବନ୍ଧର କ୍ରମଶଃ ଦୁର୍ବଳ ଅବସ୍ଥା ଦେଖି ଜଳସେଚନ, ପୂର୍ତ୍ତ ବିଭାଗର ବିଶେଷଜ୍ଞମାନେ ଓଡ଼ିଶା ସରକାରଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଏହାର ଗୁରୁତ୍ୱ ଉପଲବ୍ଧି କରି ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସରକାର ଏକ ଐତିହାସିକ ନିଷ୍ପତ୍ତି ଗ୍ରହଣ କଲେ । ଏହା ଫଳରେ କଟକ ନଗର ଚତୁଃପାର୍ଶ୍ୱରେ ଏକ ରିଂରୋଡ଼ (ବଳୟ) ନିର୍ମାଣ କାର୍ଯ୍ୟ ୧୯୮୩ ଠାରୁ ଆରମ୍ଭ କରାଯାଇ ୧୯୯୦

ମସିହା ସୁଦ୍ଧା ସମାପ୍ତ ହୋଇଥିଲା । ଏହି ରିଂରୋଡ଼ର ଚଉଡ଼ା ପ୍ରାୟ ୧୩ ମିଟର ଏବଂ କାଠଯୋଡ଼ି ନଦୀ କୂଳରେ ଚହଟା ଘାଟଠାରୁ ପ୍ରେସ ଛକ ପର୍ଯ୍ୟନ୍ତ ପ୍ରାୟ ୯ କିଲୋମିଟର ଲମ୍ବ ଏବଂ ମହାନଦୀ କୂଳରେ ଚହଟାଘାଟଠାରୁ ଗଣ୍ଡରପୁର ପର୍ଯ୍ୟନ୍ତ ପ୍ରାୟ ୯ କିଲୋମିଟର ପର୍ଯ୍ୟନ୍ତ ଦୃଢ଼ ରାସ୍ତା ଲମ୍ବି ଯାଇଛି । ରିଙ୍ଗ୍ ରୋଡ଼ ନିର୍ମାଣ ହେବା ଫଳରେ କଟକ ନଗର ପ୍ରତି ବନ୍ୟାର ଯେଉଁ ବିପଦ ଥିଲା ତାହା ହ୍ରାସ ହେବା ସଙ୍ଗେ ସଙ୍ଗେ ନଗର ଭିତରେ ଯାନବାହାନ ଚଳାଚଳ କ୍ଷେତ୍ରରେ ଯେଉଁ ପ୍ରବଳ ଭିଡ଼ ସୃଷ୍ଟି ହେଉଥିଲା ତା' ମଧ୍ୟ କମିଯାଇଛି । ସହରର ମୁଖ୍ୟ ରାସ୍ତାମାନଙ୍କ ସହିତ ରିଂ ରୋଡ଼ର ସଂଯୋଗ ସ୍ଥାପନ କରାଯାଇଛି ଏବଂ ପାଦରେ ଚାଲିକରି ଯାଉଥିବା ଲୋକମାନଙ୍କର ସହଜ ନିରାପଦ ଯାତାୟତ ପାଇଁ ସ୍ୱତନ୍ତ୍ର ଫୁଟପାଥ୍ ବା ପାଦଚଲା ରାସ୍ତାର ବ୍ୟବସ୍ଥା କରାଯାଇଛି ।

ହଜାର ବର୍ଷ ତଳେ ନିର୍ମିତ ହୋଇଥିବା କାଠଯୋଡ଼ି ପଥରବନ୍ଧ କଟକ ନଗରକୁ ବନ୍ୟା ବିପଦରୁ ରକ୍ଷାକରି ସଗର୍ବରେ ବାଇମୁଣ୍ଡି ଓ ରାଜା ମର୍କତ-କେଶରୀଙ୍କର ଗୁଣଗାନ କରୁଥିଲା । ଆଜି ବାଇମୁଣ୍ଡି ନାହାନ୍ତି, ରାଜା ମର୍କତକେଶରୀ ନାହାନ୍ତି ସତ, ମାତ୍ର ତାଙ୍କର ଅମର କୃତିର ସ୍ମୃତି ରହିଛି କିମ୍ବଦନ୍ତୀରେ···ଜନ-ଶ୍ରୁତିରେ···ଆଜି ପ୍ରତିଟି କଟକବାସୀଙ୍କର ମନ ଭିତରେ । ସଂପ୍ରତି ପରିବର୍ତ୍ତିତ, ପରିବର୍ଦ୍ଧିତ ଏହି କାଠଯୋଡ଼ିର ପଥରବନ୍ଧ (ରିଂରୋଡ଼)କୁ ବାଇମୁଣ୍ଡିଙ୍କ ନାମରେ (ବାଇମୁଣ୍ଡି ମାର୍ଗ) ନାମିତ କରି ତାଙ୍କ ପ୍ରତି ଯଥାର୍ଥ ସମ୍ମାନ କରାଯାଇଛି ।

ଶତାବ୍ଦୀ ଶତାବ୍ଦୀ ବୟସ ଭାରରେ ନଇଁପଡ଼ିଛି କାଠଯୋଡ଼ି ପଥରବନ୍ଧ । ଅନେକ ଅମ୍ଳାନ ସ୍ମୃତିକୁସାଇତି ରଖିଛି ନିଜ ଭିତରେ ସେ ମୂକସାକ୍ଷୀ···ପଚାରିଲେ ସେ କହିବ ଚଣ୍ଡାଶୋକ ଅଶୋକର କଥା, ଦୁର୍ଜୟୀବୀର ସମ୍ରାଟ ଖାରବେଳର କଥା । ସେ କହିବ ରାଜା ଅନଙ୍ଗଭୀମର କଥା । ସେ ଶୁଣାଇବ ହିନ୍ଦୁଧର୍ମର ରକ୍ଷାକର୍ତ୍ତା ସନ୍ନ୍ୟାସି ଶଙ୍କରାଚାର୍ଯ୍ୟ—ଚୈତନ୍ୟର କଥା । ସେ କହିବ ନାନକ, ମହିମା ସ୍ୱାମୀର କାହାଣୀ— ସେ ଶୁଣାଇବ କବି ରବିଠାକୁର, ଆଜି ଗାନ୍ଧୀ ଗୋପବନ୍ଧୁଙ୍କର କଥା । ଅନନ୍ତ କାଳରେ ଉତ୍ଥାନ ପତନ ଭିତରେ ଏହି କାଠଯୋଡ଼ି ପଥରବନ୍ଧ ଉପରେ ସଂଘଟିତ ହୋଇଛି ଅନେକ କିଛି ଘଟଣା । ଏହି ବାଟ-ଘାଟ ଦେଇ ସମସ୍ତଙ୍କର ଯାତ୍ରା ହେଉଥିଲା··· ହେଉଛି···ହେଉଥିବ । ସମସ୍ତଙ୍କ ସାଥିରେ ତା'ର ପରିଚୟ । ଇତିହାସର ସେ ଗୋଟାଏ ଅଭିଧାନ । ଯେଉଁ ଐତିହାସିକଙ୍କର ଅନ୍ତଃଦୃଷ୍ଟି ଥିବ ତାକୁ ସେ ପଢ଼ିପାରିବ ଓ ବୁଝିପାରିବ ।

କାଠଯୋଡ଼ି ନଦୀକୁ ପାରହେବା ପାଇଁ ସେତେବେଳେ ଲୌହ କଂକ୍ରିଟ ତିଆରି ପୋଲ୍ ନଥିଲା । ବିଶେଷତଃ ନୌକା ବା ଭେଳାସାହାଯ୍ୟରେ ଲୋକମାନେ ଗୋଟିଏ ପାଖରୁ ଅନ୍ୟପାଖକୁ ଯିବାକୁ ପଡ଼ୁଥିଲା । ମହାନଦୀ ଓ କାଠଯୋଡ଼ି ନଦୀକୁ

ଅତିକ୍ରମ କରି ପୁରୀ, ଭୁବନେଶ୍ୱର ହେଉ ବା କଟକ ଭିତରକୁ ବାଣିଜ୍ୟ ବ୍ୟବସାୟ କରିବା ପାଇଁ ହେଉ ଯଦି ଆସିବାକୁ ପଡୁଥିଲା, ସେମାନେ ସ୍ଥାନୀୟ ହୁଅନ୍ତୁ ବା ବିଦେଶୀ ହୁଅନ୍ତୁ ସମସ୍ତେ ନୌକାଦ୍ୱାରା ନଦୀ ପାର ହେଉଥିଲେ । ନଦୀର ଯେଉଁସ୍ଥାନରେ ପାର ହେଉଥିଲେ ସାଧାରଣତଃ ତା' ଘାଟ ନାମରେ ପରିଚିତ ହେଉଥିଲା । ଆଧୁନିକ ଯୁଗରେ ସର୍ବସାଧାରଣ ଯିବା ଆସିବା ପାଇଁ ନଦୀନାଳରେ ଲୌହ କଂକ୍ରିଟ ଢାଳେଇ ପୋଲ ନିର୍ମିତ ହୋଇ ଯିବା ଆସିବାର ସୁବିଧା ସୃଷ୍ଟି ହୋଇଥିଲେ ମଧ୍ୟ ନୌକାଦ୍ୱାରା ପାରିହେବା ପ୍ରଥା ଲୋପ ପାଇନାହିଁ । ଏବେ ମଧ୍ୟ ଲୋକମାନେ ଯେଉଁଠାରେ ନୌକାଦ୍ୱାରା ନଦୀ ପାରହୁଅନ୍ତି, ବା ସ୍ନାନ ଇତ୍ୟାଦି କାର୍ଯ୍ୟ ସମାପନ କରନ୍ତି ତାକୁ ଘାଟ ବୋଲି କହିଥାନ୍ତି । କାଠଯୋଡ଼ି ପଥର ବନ୍ଧ ଉପରେ ଅନେକ ଘାଟ ଥିଲା । ସେ ଗୁଡ଼ିକ ମଧ୍ୟରୁ ଅନେକ ଲୋପ ପାଇ ଯାଇଥିଲେ ମଧ୍ୟ ବର୍ତ୍ତମାନ ସୁଦ୍ଧା ଅନେକ ଘାଟ ଅଛି, ଯାହାର କିଛି ନା କିଛି ଐତିହାସିକ ମୂଲ୍ୟ ଅଛି । ସେଥିମଧ୍ୟରୁ କେତୋଟି ଘାଟ ସମ୍ପର୍କରେ ଏଠାରେ ସାମାନ୍ୟ ସୂଚନା ଦେବା ଅପ୍ରାସଙ୍ଗିକ ହେବ ନାହିଁ ।

**ପୁରୀଘାଟ :**

କାଠଯୋଡ଼ି କୂଳରେ ପଥରବନ୍ଧ ଉପରେ ଥିବା ପୁରୀଘାଟ ହେଉଛି ଏକ ଐତିହାସିକ ଘାଟ । ଏହାକୁ କେତେକ କଟକର ପ୍ରବେଶଦ୍ୱାର ବୋଲି କହିବା ପାଇଁ କୁଣ୍ଠା ପ୍ରକାଶ କରନ୍ତି ନାହିଁ । ଏହି ଘାଟସହିତ ବହୁ ଐତିହାସିକ ସ୍ମୃତି ଜଡ଼ିତ । ବାଲେଶ୍ୱର, କେନ୍ଦୁଝର, ମୟୂରଭଞ୍ଜ ସହିତ ଓଡ଼ିଶା ବାହାର ରାଜ୍ୟର ତୀର୍ଥଯାତ୍ରୀମାନେ ବିଶ୍ୱର ଅନ୍ୟତମ ପ୍ରସିଦ୍ଧ ତୀର୍ଥସ୍ଥଳ ପୁରୀ, ଭୁବନେଶ୍ୱରକୁ ତୀର୍ଥ କରିବା ପାଇଁ ଆସିବାବେଳେ ମୁଖ୍ୟତଃ ଏଇ ଘାଟଦେଇ ପାର ହୋଇଥିବେ । ସେଥିପାଇଁ ଏହି ଘାଟର ନାମ ପୁରୀଘାଟ ରଖାଯାଇଛି ।

ବିଭିନ୍ନ ଋତୁରେ କଟକରେ ପାଳିତ ହେଉଥିବା ପର୍ବପର୍ବାଣୀମାନଙ୍କ ଉଦ୍ଦେଶ୍ୟରେ ନିର୍ମିତ ମୃଣ୍ମୟମୂର୍ତ୍ତି ଯଥା ଦେବୀଦୁର୍ଗା, ଗଣେଶ, ସରସ୍ୱତୀ, କାଳୀ, ବିଶ୍ୱକର୍ମା, କାର୍ତ୍ତିକେୟ ପ୍ରଭୃତି ପୂଜାଶେଷରେ ଏହିଠାରେ ବିସର୍ଜିତ ହୁଅନ୍ତି । ବିସର୍ଜନ ସମୟରେ ଏଠାରେ ଯେଉଁ ଉତ୍ସବ ପ୍ରତିଷ୍ଠିତ ହୁଏ ତାକୁ ଭସାଣି ଯାତ୍ରା ବୋଲି କହିଥାନ୍ତି । ଯେଉଁ ପଥଦେଇ ଦେବାଦେବୀ ମୂର୍ତ୍ତିମାନଙ୍କୁ କାଠଯୋଡ଼ି ନଦୀରେ ଭସାଇ ଦିଅନ୍ତି ସେହି ପଥ 'ଦେବୀଗଡ଼ା' ନାମରେ ପରିଚିତ । ଏଠାରେ ଭସାଣୀ ଉତ୍ସବକୁ ଉପଭୋଗ କରିବାପାଇଁ କେବଳ କଟକ ସହର ନୁହେଁ, ବାହାରର ହଜାର ହଜାର ସଂଖ୍ୟାରେ ଲୋକ ଆସିଥାନ୍ତି । ଏହି ଭସାଣି ଉତ୍ସବ ଦେଖିବାପାଇଁ ଯେପରି ଚିତ୍ତାକର୍ଷକ ସେମିତି ମନମୁଗ୍ଧକର । ଏ ଦୃଶ୍ୟ ଯିଏ ଥରେ ଦେଖିଛି ସେ କେବେ ଭୁଲିପାରିବ ନାହିଁ ।

କାଠଯୋଡ଼ି ନଦୀକୂଳ ଅଞ୍ଚଳର ଦ୍ରୁତ ଜନସଂଖ୍ୟା ବୃଦ୍ଧି ଏବଂ ତତ୍‌ଜନିତ ସୃଷ୍ଟ ସମସ୍ୟାମାନଙ୍କର ସମାଧାନ ଓ ଶାନ୍ତିଶୃଙ୍ଖଳା ରକ୍ଷା ଉଦ୍ଦେଶ୍ୟରେ ଏଠାରେ ପୁରୀଘାଟ

ଥାନା ପ୍ରତିଷ୍ଠିତ ହୋଇଛି । ଏଠାରେ ଏବେ ମଧ୍ୟ ନଦୀ ଆରପାଖର ଲୋକମାନେ ନୌକା ସାହାଯ୍ୟରେ ପାରହୋଇ କଟକ ଭିତରକୁ ଆସିଥାନ୍ତି ଏବଂ କଟକ ଭିତରର ବହୁ ସ୍ତ୍ରୀ ପୁରୁଷ, ସର୍ବସାଧାରଣ ଏହି ଘାଟରେ ସ୍ନାନାଦି କାର୍ଯ୍ୟ କରନ୍ତି ।

## କଚେରୀ ଘାଟ :

କାଠଯୋଡ଼ି ପଥର ବନ୍ଧକୁ ଲାଗି କଟକ ଜିଲ୍ଲା ପ୍ରଶାସନ ଅଫିସ ଅବସ୍ଥିତ । କଚେରୀ ପାଖ ଅଞ୍ଚଳର ସର୍ବସାଧାରଣ ଏହି ଘାଟ ବ୍ୟବହାର କରନ୍ତି । ନଦୀର ଅପର ପାର୍ଶ୍ୱର ଲୋକ ଯଥା ମୂଳିଆ, ବ୍ୟବସାୟୀ କର୍ମଚାରୀମାନେ ଏହି ଘାଟ ଦେଇ ଯିବା ଆସିବା କରିଥାନ୍ତି ।

## ଗଣେଶ ଘାଟ :

କାଠଯୋଡ଼ି ପଥର ବନ୍ଧ ଉପରେ ଏହା ଅନ୍ୟ ଏକ ଘାଟ । ଏଠାରେ ଗୋଟିଏ ସୁନ୍ଦର ଗଣେଶ ମନ୍ଦିର ରହିଛି । ଶୁଣାଯାଏ ଯେ ପଥର ବନ୍ଧ ନିର୍ମାଣ କାଳରେ ଏଠାରେ ଅଗ୍ରପୂଜ୍ୟ ଗଣେଶଙ୍କୁ ସ୍ଥାପନ କରି ଏ କାର୍ଯ୍ୟ ଆରମ୍ଭ କରାଯାଇଥିଲା । ବାଖରାବାଦ ଓ ଫିରିଙ୍ଗି ବଜାରର ଜନସାଧାରଣ ଏହି ଘାଟକୁ ବ୍ୟବହାର କରନ୍ତି ।

## ଖାନନଗର ଘାଟ :

କାଠଯୋଡ଼ି ନଦୀକୂଳର ପଥର ବନ୍ଧ ଉପରେ ପ୍ରତିଷ୍ଠିତ ଏହି ଘାଟ ଅବସ୍ଥିତ । ଏଠାରେ ଏକ ପ୍ରସିଦ୍ଧ କାଳୀମନ୍ଦିର ଅଛି ଏବଂ ଖାନନଗର ଶ୍ମଶାନ ଅଛି । ଶବଦାହ କରିବା ପାଇଁ ସରକାରଙ୍କ ଦ୍ୱାରା ପ୍ରତିଷ୍ଠିତ ବୈଦ୍ୟୁତିକ ଚୁଲି ମଧ୍ୟ ରହିଛି । ଖାନନଗର ବାସିନ୍ଦା ତଥା ବାହାରର ଲୋକମାନେ ଶବଦାହ କରିବାକୁ ଆସନ୍ତି ସେମାନେ ସ୍ନାନ ଶୌଚ ଇତ୍ୟାଦି ଏହି ଘାଟରେ କରିଥାନ୍ତି ।

## ସତୀଚଉରା ଘାଟ :

ଏହି ଘାଟକୁ କେହି କେହି ଉଗରପଡ଼ା ଘାଟ ବୋଲି କହିଥାନ୍ତି । ଉଗରପଡ଼ା ଅଞ୍ଚଳର ସର୍ବସାଧାରଣ ଏହି ଘାଟକୁ ବ୍ୟବହାର କରିଥାନ୍ତି । କଟକର ବହୁ କବି, କଳାକାର ଓ ବିଶିଷ୍ଟ ବ୍ୟକ୍ତିଙ୍କର ଏଠାରେ ଥିବା ଶ୍ମଶାନରେ ସମାଧି ଦେଖାଯାଏ ।

## ହନୁମାନ ମନ୍ଦିର ଘାଟ :

ନେତାଜୀ ନଗର ସନ୍ନିକଟ ଏହି ଘାଟ କିଛିବର୍ଷ ପୂର୍ବେ କୁଣ୍ଡାଗୋଲ ନାମରେ ପରିଚିତ ଥିଲା । କାଠଯୋଡ଼ି ପୋଲ କାମ ହେଉଥିବା ବେଳେ ଓଡ଼ିଶା ବାହାରର ଲୋକମାନେ ଏଠାରେ ହନୁମାନଙ୍କର ଛବି ରଖି ପୂଜାର୍ଚ୍ଚନା କରୁଥିଲେ । ସମୟ ପ୍ରବାହରେ ଏଠାରେ ହନୁମାନ ମନ୍ଦିର ଓ ମୂର୍ତ୍ତି ସ୍ଥାପିତ ହେଲା ଏବଂ ଏହି ସ୍ଥାନ ହନୁମାନ ଘାଟ ନାମରେ ପରିଚିତ ହେଲା । ବିଶେଷ କରି ମଧୁପାଟଣା ଅଞ୍ଚଳର ସର୍ବସାଧାରଣ ଏହି ଘାଟକୁ ବ୍ୟବହାର କରନ୍ତି ।

## ବୈଷ୍ଣବଣ ମୌଜା ଘାଟ :

ବୈଷ୍ଣବଣ ମୌଜା ନିକଟରେ ଯେଉଁ ଘାଟ ଥିଲା ତା'ର ମହତ୍ତ୍ୱ ଆଜି ନାହିଁ । ନଦୀ ବନ୍ଧ ରାସ୍ତା ନିର୍ମାଣ ହେବା ପରେ ଏହି ଘାଟର ମହତ୍ତ୍ୱ ହ୍ରାସ ପାଇଛି ।

'କାଠଯୋଡ଼ି ପଥର ବନ୍ଧ ଉପରେ ଏହି ଘାଟଗୁଡ଼ିକର ଆବଶ୍ୟକତା ବହୁ କାଳରୁ ଉପଲବ୍ଧ ହୋଇ ଆସିଛି । ପଥର ବନ୍ଧର ସ୍ମୃତିକୁ ଉଜ୍ଜୀବିତ କରି ରଖିବାରେ ଏହି ଘାଟଗୁଡ଼ିକର ମହତ୍ତ୍ୱ କିଛି କମ୍ ନୁହେଁ । ସେ ଯା'ହେଉନା କାହିଁକି ଏହି ନଦୀ କୂଳରେ ଇଂରେଜ ନିର୍ମିତ ହୋଇଥିଲେ ମଧ୍ୟ ଆଜି ଏହି ଘାଟଗୁଡ଼ିକର ଆବଶ୍ୟକତା ଲୋକମାନଙ୍କ ପାଇଁ କେତେ ଯେ ଅଧିକ ସେହି ଲୋକମାନେ କହିବେ, ଯେଉଁମାନେ ତାକୁ ସବୁଦିନେ ବ୍ୟବହାର କରୁଛନ୍ତି ।

କାଠଯୋଡ଼ି ପଥରବନ୍ଧ ଆଜି ନୂଆ କଳେବର ନେଇ ଆଧୁନିକ କଟକ ନଗରକୁ ରକ୍ଷା କରିବାରେ ସୁଦୃଢ଼ ଭାବରେ ଠିଆ ହୋଇଛି । ବିଗତ ଏକହଜାର ବର୍ଷଧରି ସେ କଟକ ନଗରକୁ ସୁରକ୍ଷା ଦେଇ ଆସିଛି । ମୋଗଲ, ମରହଟ୍ଟା, ଇଂରେଜ ଶାସକ ମାନଙ୍କର ସେ ଯେତିକି ଦୃଷ୍ଟି ଆକର୍ଷଣ କରିଥିଲା, ସ୍ୱାଧୀନତା ପ୍ରାପ୍ତି ପରେ ଗଣତାନ୍ତ୍ରିକ ସରକାରଙ୍କର ତତୋଧିକ ଦୃଷ୍ଟି ଆକର୍ଷଣ କରି ଅଧିକ ମଜଭୁତ ଏବଂ ଅଧିକ ପ୍ରଶସ୍ତ ହୋଇ ପାରିଛି । ଯେତେ ପରିପୁଷ୍ଟ, ପରିମାର୍ଜିତ, ପରିବର୍ତ୍ତିତ ହେଲେ ମଧ୍ୟ ଏ ଐତିହାସିକ କାଠଯୋଡ଼ି ପଥର ବନ୍ଧ ତା'ର ଘଟଣାବହୁଳ ସୁଦୀର୍ଘ ଅତୀତକୁ ଭୁଲି ପାରିବ ନାହିଁ । ଅଧିକନ୍ତୁ ପୁଣ୍ୟତୋୟା କାଠଯୋଡ଼ିର ନିତ୍ୟ ପ୍ରବାହିତ ନୀଳ ଜଳରାଶି ଏ ବନ୍ଧ ଦେହରେ ପିଟି ହୋଇ ଐତିହାସିକ ପୁରୁଷ ରାଜା ମର୍କତ କେଶରୀ ଓ ବାଇମୁଣ୍ଡିଙ୍କର ଗୁଣଗାନ କରୁଥିବ ଯୁଗ ଯୁଗ । ଯେତେଦିନ ପର୍ଯ୍ୟନ୍ତ ଏ ପଥରବନ୍ଧ ଥିବ, ସେତେଦିନ ପର୍ଯ୍ୟନ୍ତ ଓଡ଼ିଆ ଜାତି ସେମାନଙ୍କର ଅମ୍ଳାନ-ଅବଦାନର ସ୍ମୃତିଚାରଣ କରୁଥିବ ।



# କଳିଙ୍ଗ ଭାରତୀ
# ଓ
# ଉତ୍କଳ ଛାତ୍ରସାହିତ୍ୟ ସମାଜ

ଶ୍ରୀ ଶୈଳେଶ୍ୱର ନନ୍ଦ

ଓଡ଼ିଶାର ସାଂସ୍କୃତିକ ଇତିହାସରେ କଳିଙ୍ଗଭାରତୀ ଓ ତା'ର ପରିପୂରକ ଓ ପରିପୋଷକ ଅନୁଷ୍ଠାନ ଉତ୍କଳ ଛାତ୍ର ସାହିତ୍ୟ ସମାଜ ଏକ ବୈପ୍ଳବିକ ଚିନ୍ତାଧାରାର ଆହ୍ୱାନ ନେଇ ପାରମ୍ପରିକ ଓଡ଼ିଆ ସାହିତ୍ୟ, ସଙ୍ଗୀତର ପୁନରୁତ୍‌ଥାନ ଦିଗରେ ବିଗତ ୫୦ ବର୍ଷ ଧରି ପ୍ରଚେଷ୍ଟା କରି ଆସୁଅଛି । ୧୯୪୩ ମସିହାରେ ସାହିତ୍ୟରଥୀ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ଏହି ଅନୁଷ୍ଠାନକୁ ପ୍ରତିଷ୍ଠା କରିଥିଲେ ମାତ୍ର ସ୍ୱଳ୍ପ କେତେଜଣ ସ୍କୁଲ ଛାତ୍ରଙ୍କୁ ଧରି ।

ଓଡ଼ିଶାର ସାହିତ୍ୟ ଗଗନ ଯେତେବେଳେ ଧୂମାୟିତ, ବିଜାତିପ୍ରୀତିର ଘୂର୍ଣ୍ଣିବାତ୍ୟାରେ ଜାତୀୟ ସାହିତ୍ୟ ଯେତେବେଳେ ଶ୍ୱାସରୁଦ୍ଧ, ସେତିକିବେଳେ ଯେଉଁ କେତେଜଣ ଉଗ୍ରପନ୍ଥୀ ଯୁବକ ଓଡ଼ିଶୀ ସଂସ୍କୃତିର ସ୍ୱାତନ୍ତ୍ର୍ୟ ବୈଶିଷ୍ଟ୍ୟକୁ ସଂଜୀବିତ ରଖିବାକୁ ଆପ୍ରାଣ ଉଦ୍ୟମ କରିଥିଲେ, ସେମାନଙ୍କ ମଧ୍ୟରେ ବିଚ୍ଛନ୍ଦଚରଣ ଥିଲେ ଅଗ୍ରଗଣ୍ୟ । ଓଡ଼ିଶାର ସାଂସ୍କୃତିକ ଇତିହାସ ପ୍ରତି ସିଂହାବଲୋକନ କଲେ ଯେଉଁ ସବୁ ଅମଳିନ ଦୃଶ୍ୟାବଳୀ ଦୃଷ୍ଟିପଥାରୂଢ଼ ହୁଏ ତା'ର ସମ୍ୟକ ଆଲୋଚନା ହିଁ କଳିଙ୍ଗ-ଭାରତୀର ଜନ୍ମ ବୃତ୍ତାନ୍ତ ଉନ୍ମୋଚନ କରିବ ।

୧୯୨୬ ମସିହାରେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କର ପ୍ରତିଷ୍ଠିତ ପ୍ରାଚୀ ସମିତିରେ ସମ୍ପାଦକର ଦାୟିତ୍ୱ ନିଅନ୍ତି ବିଚ୍ଛନ୍ଦ ଚରଣ ପଟ୍ଟନାୟକ । ୧୧ ବର୍ଷର ପ୍ରାଚୀ ସମିତିର କାର୍ଯ୍ୟାବଳୀ ଭିତରେ 'ପ୍ରାଚୀ' ପତ୍ରିକାର ସମ୍ପାଦନା ସହିତ ଇଂରାଜୀ ମୁଖପତ୍ର 'ପ୍ରାଚୀ'ରେ ଓଡ଼ିଆ ଖ୍ୟାତ କବିମାନଙ୍କ କବିତାଦର୍ଶକୁ ଇଂରାଜୀରେ ଅନୁବାଦ କରି ଓଡ଼ିଶା ଓ ଓଡ଼ିଆମାନଙ୍କ ପାଇଁ ସେ ଯଥେଷ୍ଟ ଗର୍ବ ଓ ଗୌରବ ଆଣି ଦେଇଥିଲେ । ଏହାପରେ ଓଡ଼ିଶାର ଏକ ଶ୍ରେଷ୍ଠ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜରେ ସହ-ସମ୍ପାଦକ ଭାବେ କାର୍ଯ୍ୟ କରି ଓଡ଼ିଆ ସାହିତ୍ୟର ପୁନରୁତ୍‌ଥାନ ଦିଗରେ ପ୍ରଚେଷ୍ଟାରତ ରହି ମଧ୍ୟ ନିଜର ସ୍ୱପ୍ନକୁ ରୂପଦେବାରେ ଅସମର୍ଥ ହେବାପରେ ୧୯୪୩ ମସିହାରେ ସେ ଉତ୍କଳ

ଗ୍ରନ୍ଥ ସାହିତ୍ୟ ସମାଜ ଗଠନ କଲେ ଶତାଧିକ ସ୍କୁଲ ଗ୍ରନ୍ଥମାନଙ୍କୁ ନେଇ । ଅନୁଷ୍ଠାନର ସେଦିନର ସଭ୍ୟମାନେ ଥିଲେ—ହୃଦାନନ୍ଦ ଗୁପ୍ତ, ରଜତ କୁମାର କର, କିଶୋରୀ ମୋହନ ପଣ୍ଡା ଗୋପବନ୍ଧୁ ରଥ, ବିଜୟ କୁମାର କାନୁନ୍‌ଗୋ, ଅନ୍ନଦାଚରଣ ଦାସ, ପ୍ରମୋଦ ପତି ଓ ବିନାୟକ ଚୌଧୁରୀ ପ୍ରମୁଖ ।

ବଳ୍ପଦଚରଣଙ୍କ ଉଗରପଡ଼ାସ୍ଥ ବାସଭବନରେ ଏହି ଅନୁଷ୍ଠାନ ଜନ୍ମ ନେଇଥିଲା । ପ୍ରତି ଶନିବାର ଏବଂ ରବିବାର ସାହିତ୍ୟ ଆସର, ସଙ୍ଗୀତ ଆସର, ଧର୍ମାଲୋଚନା ଆଦି କରାଯାଇ କିଶୋର ପ୍ରାଣରେ ପ୍ରେରଣା ଓ ଜାଗରଣର ବହ୍ନିଶିଖା ପ୍ରଜ୍ଜ୍ୱଳିତ କରାଯାଉଥିଲା । ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜରୁ କଳିଙ୍ଗଭାରତୀ ଜନ୍ମଗ୍ରହଣ କଲା । ସାତ ନିୟମର ଶୃଙ୍ଖଳା ଭିତରେ ଅନୁଷ୍ଠାନର ସଭ୍ୟମାନେ ଶପଥ ପାଠକରି ଜୀବନକୁ ସୁଶୃଙ୍ଖଳିତ କରିବାର ବ୍ରତ ଗ୍ରହଣ କରିଥିଲେ । ଶପଥରେ ଲେଖାଥିଲା—

"ମୁଁ ଉତ୍କଳୀୟ ପରମ୍ପରାର ଉପାସକ ଏବଂ ତାହାକୁ ଭିତ୍ତିକରି ବିଜାତୀୟତା ପରିହାର ପୂର୍ବକ ଜାତୀୟ ସାହିତ୍ୟ ଓ କଳା ସୃଷ୍ଟି କରିବା ପାଇଁ ଏତଦ୍ୱାରା ଶପଥ ଗ୍ରହଣ କଲି । ଏ ଶପଥ ଲଙ୍ଘନ କଲେ ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜରେ ମୋର ସ୍ଥାନ ରହିବ ନାହିଁ ।

—ଜୟମା' କଳିଙ୍ଗ ଭାରତୀ—

ଆଜି ସୁଦ୍ଧା ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜ ଓ କଳିଙ୍ଗ ଭାରତୀର ବହୁ ସାଧକ ସଭ୍ୟ ଏହି ଦୃଢ଼ ଶପଥକୁ ଅଙ୍ଗୀକାର କରି କଳିଙ୍ଗ ଭାରତୀର ଆଦର୍ଶକୁ ଓଡ଼ିଶାର କୋଣ-ଅନୁକୋଣରେ ବିସ୍ତୃତ କରି ଚାଲିଛନ୍ତି । ୫୦ ବର୍ଷର ଇତିହାସ ତଳୁ ଆଜି ମଧ୍ୟ ବଳ୍ପଦଚରଣ ଏ ସଂସ୍କୃତିର ଦାୟାଦମାନଙ୍କୁ ନିଜସ୍ୱ, ସଂସ୍କୃତି ପ୍ରତି ପ୍ରଗାଢ଼ ଅନୁରକ୍ତି ଓ ସମ୍ମାନ ଜଣାଇବାକୁ ଆହ୍ୱାନ ଦେଉଛନ୍ତି । ଅନୁଷ୍ଠାନର ସଭ୍ୟମାନଙ୍କୁ ବାରମ୍ବାର କହି ଚାଲିଛନ୍ତି "ଯୁଦ୍ଧ ସରିନାହିଁ ଅରି ଫେରି ନାହିଁ ।" ଏବେ ବି ଓଡ଼ିଆ ସର୍ବଭାରତୀୟ ସ୍ତରରେ ତା'ର ନ୍ୟାଯ୍ୟ ଆସନ ପାଇପାରି ନାହିଁ । ଗୌରବୋଜ୍ଜ୍ୱଳ ଇତିହାସକୁ ନେଇ ଗର୍ବ କଲେତ ଖାଲି ଚଳିବ ନାହିଁ ବରଂ ଏକ ପରମ୍ପରାସମ୍ମତ ଉଜ୍ଜ୍ୱଳମାନ ଭବିଷ୍ୟତ ଗଠନ କରିବା ସମସ୍ତଙ୍କର କାମ୍ୟ ଓ ଧ୍ୟେୟ ହେବା ଉଚିତ । ଏହାହିଁ ଅନୁଷ୍ଠାନର ପ୍ରତିଷ୍ଠାତା ସଭାପତି ବଳ୍ପଦ ଚରଣଙ୍କର ନିର୍ଦ୍ଦେଶ ଥିଲା—ଅଛି ଓ ରହିଥିବ । ଅନୁଷ୍ଠାନ ଦ୍ୱାରା ଉତ୍କଳୀୟ ଦାୟାଦମାନଙ୍କୁ ଏହା ବାରମ୍ବାର ସୂଚାଇ ଚାଲିଛି ଓ ଚାଲିଥିବ ।

କଳିଙ୍ଗଭାରତୀ ତଥା ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜର ପ୍ରତିଷ୍ଠା ଦିବସରେ ହିଁ ଭଞ୍ଜଜୟନ୍ତୀର ଶୁଭାରମ୍ଭ ହେଲା ମେ ୧୬, ୧୯୪୪ରେ । ଭଞ୍ଜଜୟନ୍ତୀ ବ୍ୟତୀତ ଏହି ଅନୁଷ୍ଠାନ କବିସୂର୍ଯ୍ୟ, ଅଭିମନ୍ୟୁ, ଦୀନକୃଷ୍ଣ, ପଞ୍ଚସଖା କବି କଳହଂସ ଗୋପାଳକୃଷ୍ଣ, ବନମାଳୀ, ଗୌରଚରଣ ଆଦିଙ୍କର ଜୟନ୍ତୀ ପାଳନ କରି ଓଡ଼ିଆ ପାରମ୍ପରିକ କବି କୃତିକୁ ଲୋକଲୋଚନକୁ ଆଣିବାକୁ ସକ୍ଷମ ହେଲା । ସାରସ୍ୱତ ମହୋତ୍ସବ, କୋଣାର୍କ ଜୟନ୍ତୀ ଓ ଜଗନ୍ନାଥ ଜୟନ୍ତୀ ପାଳନ ଅବସରରେ ସାହିତ୍ୟ, ସଙ୍ଗୀତ, ସ୍ଥାପତ୍ୟକଳା

ଓ ଆଧ୍ୟାତ୍ମିକ ଚିନ୍ତା ଚେତନାର ଆଲୋଚନା ଚର୍ଚ୍ଚା ଓ ଆଦର କରାଗଲା । ବନ୍ଧୁ ପ୍ରବୀଣ ବୟୋଜ୍ୟେଷ୍ଠ ସମାଲୋଚକ ଓ ସାହିତ୍ୟିକଙ୍କ ସହ ଯୋଗଦେଲେ ଅନୁଷ୍ଠାନର ନବୀନ ଯୁବକଗଣ । କଟକ ଟାଉନହଲ, ଶ୍ରୀରାମଚନ୍ଦ୍ର ଭବନ ଠାରୁ ଆରମ୍ଭ କରି କଲେଜିଏଟ୍ ସ୍କୁଲ ପ୍ରାଙ୍ଗଣ, ମ୍ୟୁନିସିପାଲିଟି ପଡ଼ିଆ, ଶମ୍ଭୁପ୍ରସାଦଭବନ, ଏକାଡେମୀ ସ୍କୁଲ ପଡ଼ିଆ, ବାରବାଟୀ ଷ୍ଟାଡ଼ିଅମ ଓ ବାରବାଟୀ କ୍ଲବ ହାଉସ ଠାରେ ଭଞ୍ଜଜୟନ୍ତୀ ପାଳନ କରି କଳିଙ୍ଗଭାରତୀ କଟକର ପ୍ରତି ଧୂଳିକଣାରେ ସାହିତ୍ୟପ୍ରୀତିର ବୀଜ ବପନ କରି ଦେଇ ଯାଉଛି ।

୧୯୬୧ ମସିହାରେ ସରକାରୀ ସହାୟତାରେ ମିଶନରୋଡ଼ ଠାରେ ଭଞ୍ଜମଣ୍ଡପ ପାଇଁ ଏକ ଜମି ପାଇ ସେହିଠାରେ ଭଞ୍ଜମଣ୍ଡପ ନିର୍ମିତ ହୋଇଛି । ସେହିଠାରେ ୧୯୬୨ ଠାରୁ ଭଞ୍ଜଜୟନ୍ତୀ ପାଳନ କରାଯାଇ ଆସୁଅଛି । ମୁକ୍ତ ଆକାଶ ତଳେ ଆମ୍ରକୁଞ୍ଜ ପରିବେଶରେ ଗ୍ରୀଷ୍ମାବକାଶ ମଧ୍ୟରେ ମେ ୧୬ରୁ ୨୨ ତାରିଖ ପର୍ଯ୍ୟନ୍ତ ଭଞ୍ଜଜୟନ୍ତୀ ପାଳନ ଆଜି ଏକ ଜାତୀୟ ପର୍ବରେ ପରିଣତ ହେଲାଣି । ଏଥିପାଇଁ ସଂସ୍କୃତିପ୍ରେମୀ ଜନସାଧାରଣଙ୍କର ଅକୁଣ୍ଠ ଶ୍ରଦ୍ଧା ଓ ସହଯୋଗ ପ୍ରଶଂସନୀୟ । କଳିଙ୍ଗ-ଭାରତୀ ଯେ କେତେ କଷ୍ଟ, କେତେ ଦୁଃଖ ଗ୍ଲାନିରେ ଏ ପଚିଶ ବର୍ଷର କାର୍ଯ୍ୟକାରୀ ଜୀବନରେ ଆଗେଇ ଆସିଛି ତାହା ସମ୍ପୂର୍ଣ୍ଣ ଅପଠ୍ୟ । କିନ୍ତୁ ସବୁ ବ୍ୟଥା ବେଦନା ଓ ବିଘ୍ନବିପତ୍ତି ଅଙ୍ଗୀକାର କରି ସେ ଆଗେଇ ଚାଲିଛି ଆହୁରି ଆଗକୁ; ଏକ ଧର୍ମୀୟ ସଂସ୍କୃତିବନ୍ତ ଆସନ୍ତା କାଲିର ସୂର୍ଯ୍ୟୋଦୟ ଦେଖିବାକୁ ।

କଳିଙ୍ଗଭାରତୀର ବ୍ରତ ଥିଲା ତିନୋଟି—ସଂରକ୍ଷଣ, ସଂପ୍ରସାରଣ ଓ ସଂସୃଜନ । ଉତ୍କଳୀୟ ହୃତଗୌରବର ପୁନରୁଦ୍ଧାର ଓ ସଂରକ୍ଷଣ, ହଜିଯାଉଥିବା ଓଡ଼ିଶୀ ସଙ୍ଗୀତ, ନୃତ୍ୟ, ତଗଡ଼ମାଳ ଆଣିମା କାହାଣୀ, ଝୋଟି ମୁରୁଜ, ଗୁରୁକଲା, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ପାଲା, ଦାସକାଠିଆ, ଲୋକନୃତ୍ୟ ଯାହା ଓଡ଼ିଶାର ନିଜସ୍ୱ ତାକୁ ସଂରକ୍ଷଣ କରିବା ଥିଲା କଳିଙ୍ଗଭାରତୀର ପ୍ରଥମ କର୍ତ୍ତବ୍ୟ । ଉଇ, ଘରପୋଡ଼ି ଓ ବନ୍ୟାରେ ହଜାର ହଜାର ଅମୂଲ୍ୟ ପୋଥି ଓ ସାହିତ୍ୟ ଗନ୍ତାଘରର ବିଲୁପ୍ତି ଦେଖି ଜାତିପ୍ରାଣ ବିଚ୍ଛନ୍ଦଚରଣ ସମଗ୍ର ଓଡ଼ିଆ ଜାତିକୁ ଆହ୍ୱାନ ଦେଇ ଜାତୀୟ ବିଭବର ସଂରକ୍ଷଣ ପାଇଁ ନିର୍ଦ୍ଦେଶ ଦେଇଥିଲେ । ପୋଥି ସବୁ କଳିଙ୍ଗଭାରତୀ ଗ୍ରନ୍ଥାଳୟରେ ସଂଗୃହୀତ ହୋଇ ରହିଗଲା, ସଂରକ୍ଷଣ ପର୍ବ ଆଗେଇ ଚାଲିଲା, କିନ୍ତୁ କେବଳ ସଂରକ୍ଷଣ ହେଲେ ତ ହେବନାହିଁ । ତାର ପ୍ରଚାର ଓ ପ୍ରସାର ନିତାନ୍ତ ଆବଶ୍ୟକ । ଏଣୁ ସବୁର ଛପା ହେଲା ଓ ଓଡ଼ିଶାର ସାହିତ୍ୟିକମାନଙ୍କ ନିକଟରେ ମୂଲ୍ୟାୟନ କରାଗଲା ।

ଆଲୋଚନା ପର୍ଯ୍ୟାଲୋଚନା କରାଯାଇ ସେ ସବୁର ସାଂସ୍କୃତିକ ଅବଦାନ ନିରୂପିତ ହେଲା । କିନ୍ତୁ ଏତିକରେ ଗୁରୁଦେବ ଶାନ୍ତି ଲଭି କଲେନାହିଁ । ଅତୀତ ଓ ଐତିହ୍ୟକୁ କେବଳ ଝୁରି କ'ଣ କେଉଁ ଜାତି ଉନ୍ନତ ପଥରେ ଆଗେଇ ଯାଇପାରେ ?

ଦରକାର ନୂତନ ସୃଷ୍ଟି । ସୃଷ୍ଟି ପାଇଁ ଲୋଡ଼ାହୁଏ ସ୍ରଷ୍ଟା, ସୃଜନଶୀଳ ପ୍ରତିଭା । ବିଚ୍ଛନ୍ଦଚରଣ ଗଢ଼ିତୋଳିଲେ ବହୁ ପ୍ରତିଭାବାନ ଯୁବକ, ସାହିତ୍ୟ ସଙ୍ଗୀତ, କବିତା, ନାଟକ ସୃଷ୍ଟି ଦିଗରେ ସେମାନେ ଓଡ଼ିଆ ସାହିତ୍ୟକୁ ବୃଦ୍ଧିମନ୍ତ କଲେ । ଓଡ଼ିଆ ପରମ୍ପରାନୁସାରେ ସାହିତ୍ୟ ସଙ୍ଗୀତ ସୃଷ୍ଟି କରିବାକୁ ସମର୍ଥ ହେଲେ । ବିଚ୍ଛନ୍ଦଚରଣଙ୍କ ଭାଷାରେ—

ମା ଭାରତୀ
ନବ ଯୁଗ ଶଙ୍ଖ ବାଜେ
ନବ ସାରସ୍ୱତ ଗଉରବ ଟୀକା
କଳିଙ୍ଗ ଲଲାଟେ ରାଜେ ।

ସେଦିନର ବିଂଶୀରେ ଏକାଳ ତାନ ସଂଯୋଗ କରି ନବ ଯୁଗର ଶଙ୍ଖ ବାଜି ଉଠିଲା । କେଶରୀ ଗହ୍ୱର ସିଂହ ଶାବକମାନଙ୍କର ରଣହୁଂକାରରେ ନିନାଦିତ ହେଲା । ଶତାବ୍ଦୀର ସୁଷୁପ୍ତି ଭାଙ୍ଗିଲା । ଓଡ଼ିଆ ନିଜକୁ ଓ ନିଜ ସାହିତ୍ୟ ସଂସ୍କୃତି ଚିହ୍ନିବାକୁ ସମର୍ଥ ହେଲା ।

କଳିଙ୍ଗଭାରତୀ ତାର ଯାତ୍ରା ପଥରେ ବହୁ ପ୍ରତିଭାବାନ ଯୁବକମାନଙ୍କୁ ଗଢ଼ି-ତୋଳିଛି—ଯେଉଁମାନେ ଓଡ଼ିଆ ସଂସ୍କୃତି ପାଇଁ ହୋଇ ଉଠିଛନ୍ତି ପାଗଳ । ପ୍ରଥମ ପିଢ଼ିରେ ହୃଦାନନ୍ଦ ରାୟ, କେଶବ ମୋହନ ପରିଡ଼ା ଓ ଗୋପବନ୍ଧୁ ରଥ ଆଦି । ତାପରେ ଆସିଛନ୍ତି ରଜତ କୁମାର କର, ବିଷ୍ଣୁ ପ୍ରସାଦ ବାହାଲିଆ, ଅଗଣି ପୃଷ୍ଟି, ଅନ୍ନଦାଚରଣ ଦାସ ପ୍ରମୁଖ ଓ ପରେ ପରେ କବିପ୍ରସାଦ ମିଶ୍ର, ଶରତ କୁମାର କର ସୋମନାଥ ନନ୍ଦ, ଚନ୍ଦ୍ରଶେଖର ନନ୍ଦ ଓ ଆହୁରି ଅନେକ । ଏମାନଙ୍କ ପରବର୍ତ୍ତୀ ଗ୍ରୁବଗୋଷ୍ଠୀ ହେଲେ ଶୈଳେଶ୍ୱର ନନ୍ଦ, ପୁରୁଷୋତ୍ତମ ପଟ୍ଟନାୟକ, ଅଜିତ କୁମାର କର, ସୁଧୀର ଚନ୍ଦ୍ର ମହାନ୍ତି ପ୍ରଭୃତି । ଏହାପରେ ପ୍ରଫୁଲ୍ଲ ନାୟକ, ନିରଞ୍ଜନ ମହାନ୍ତି, ଚିତ୍ତରଞ୍ଜନ ପଣ୍ଡା, ରତିକାନ୍ତ ସ୍ୱାଇଁ, ହୃଦାନନ୍ଦ ପଣ୍ଡା ପ୍ରମୁଖ । ଏ ଯାବତ୍ ସମସ୍ତ ପିଢ଼ିର ଛାତ୍ରମାନେ ଏକମନ ଏକପ୍ରାଣ ହୋଇ ଗୁରୁଦେବଙ୍କ ସ୍ୱପ୍ନକୁ ସାର୍ଥକ କରିବାର ବ୍ରତ ଗ୍ରହଣ କରି ଆଗେଇ ଚାଲିଛନ୍ତି ।

୧୯୫୪-୫୫ ମସିହାରେ ଭଞ୍ଜଜୟନ୍ତୀ ଅନୁଷ୍ଠାନ ସାଂସ୍କୃତିକ ଜାଗରଣର ଏକ ତୁଙ୍ଗ ଶିଖରରେ ପହଞ୍ଚିଥିଲା । ଏତେ ବଡ଼, ଏତେ ଚିତ୍ତାକର୍ଷକ ସାହିତ୍ୟ ସଙ୍ଗୀତ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ସାରା ଓଡ଼ିଶାରେ ଆଗରୁ ହୋଇ.ନଥିବାର ଜଣାଯାଏ । ସେ ସମୟରେ କଳିଙ୍ଗଭାରତୀର ପ୍ରତିଷ୍ଠାତା ସଭାପତି ବିଚ୍ଛନ୍ଦଚରଣଙ୍କୁ ଯେଉଁମାନେ ସହାୟତା କରୁଥିଲେ ସେମାନେ ହେଲେ ପଣ୍ଡିତ ନୀଳକଣ୍ଠ ଦାଶ, ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ ରାଧାନାଥ ରଥ, ପ୍ରାଣନାଥ ମହାନ୍ତି, ଆର୍ତ୍ତବଲ୍ଲଭ ମହାନ୍ତି, ଜୟକୃଷ୍ଣ ମିଶ୍ର, ଚିନ୍ତାମଣି ଆଚାର୍ଯ୍ୟ, ଜଗବନ୍ଧୁ ସିଂହ, ଦେଓ୍ୱାନ ବାହାଦୁର, ଦୟାନିଧି ଦାସ, ଲିଙ୍ଗରାଜ ମିଶ୍ର, କାଳୀଚରଣ ପଟ୍ଟନାୟକ, ଭିକାରୀଚରଣ ପଟ୍ଟନାୟକ, ଲକ୍ଷ୍ମୀ ନାରାୟଣ ସାହୁ, ଗୌରୀ

କୁମାର ବ୍ରହ୍ମା, ଗୋପାଳଚନ୍ଦ୍ର ମିଶ୍ର, ଚନ୍ଦ୍ରଶେଖର ପଟ୍ଟନାୟକ, କାଳନ୍ଦୀଚରଣ ପାଣିଗ୍ରାହୀ, ନିତ୍ୟାନନ୍ଦ କାନୁନ୍‌ଗୋ, ଚିନ୍ତାମଣି ମିଶ୍ର, ଅନନ୍ତ ପଦ୍ମନାଭ ପଟ୍ଟନାୟକ, ପଣ୍ଡିତ ବିଶ୍ୱନାଥ ଆଚାର୍ଯ୍ୟ, ବ୍ରଜବିହାରୀ ମିଶ୍ର, ଯଦୁନାଥ ମିଶ୍ର, ବୀରକିଶୋର ରାୟ, ପରମାନନ୍ଦ ଆଚାର୍ଯ୍ୟ, ଗୋଲକ ଚନ୍ଦ୍ର ପ୍ରଧାନ, ସଦାଶିବ ରଥ ଶର୍ମା, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରମୁଖ ।

ଭଞ୍ଜଜୟନ୍ତୀ ଅବକାଶରେ ଗୋଟିପୁଅ ନାଚ, ପାଲା, ଦାସକାଠିଆ ଆଦିର ପ୍ରଚାର ଓ ପ୍ରସାର କରାଗଲା । ସେତେବେଳେ ଶିକ୍ଷିତ ଓଡ଼ିଆ ଲଳନାମାନେ ଓଡ଼ିଶୀ ନୃତ୍ୟ ପରିବେଷଣ କରିବାକୁ ଆଗେଇ ଆସୁ ନଥିଲେ । କିନ୍ତୁ ୧୯୫୨-୫୩ ମସିହାରୁ କଳିଙ୍ଗଭାରତୀର ପ୍ରଚେଷ୍ଟାରେ ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟ ପରିବେଷଣ କରିବାକୁ ସମ୍ଭ୍ରାନ୍ତ ପରିବାରର ଝିଅମାନେ ମଧ୍ୟ ଆଗେଇ ଆସିଲେ । ଦେଖାଦେଲା ଏକ ବୈପ୍ଳବିକ ପରିବର୍ତ୍ତନ—ରେନେସାଁ । ଓଡ଼ିଶାର ସାଂସ୍କୃତିକ ଇତିହାସରେ କଳିଙ୍ଗଭାରତୀ ଓ ଭଞ୍ଜଜୟନ୍ତୀର ଏ ଅବଦାନ ନିଶ୍ଚିତ ଭାବେ ଲିପିବଦ୍ଧ ରହିବ ।

ଓଡ଼ିଶୀ ନୃତ୍ୟର ଶାସ୍ତ୍ରୀୟତା ପ୍ରତିପାଦନ ଦିଗରେ କଳିଙ୍ଗ-ଭାରତୀର ପ୍ରଚେଷ୍ଟା ଥିଲା ସର୍ବପ୍ରଥମ । ପରେ ପରେ ବହୁ ଗୁରୁ କଳାକାର ଓ ନୃତ୍ୟ ସମାଲୋଚକମାନଙ୍କ ଆପ୍ରାଣ ଉଦ୍ୟମ ହେତୁ ଏହା ଆଜି ବିଶ୍ୱଦରବାରରେ ଆଦୃତ । ଛାନ୍ଦ ଓ ଓଡ଼ିଶୀ ଗାନ ତଥା ପ୍ରତିଯୋଗିତା ଆୟୋଜନ କରି କଳିଙ୍ଗ-ଭାରତୀ ବହୁ ଅବଲୁପ୍ତପ୍ରାୟ ଓଡ଼ିଶୀ ରାଗ ରାଗିଣୀର ପୁନରୁଦ୍ଧାର କରି ତାର ବିକାଶ ପାଇଁ କଳାକାରମାନଙ୍କୁ ପ୍ରୋତ୍ସାହିତ କରି ପାରିଛି । ଆକାଶବାଣୀରେ ଛାନ୍ଦ ଓ ଓଡ଼ିଶୀ ଗାନ ଦିଗରେ ପ୍ରଚେଷ୍ଟା ପାଇଁ କଳିଙ୍ଗଭାରତୀ ତଥା ଗୁରୁଦେବ ବିଚ୍ଛନ୍ଦଚରଣ ଓ କାଳୀଚରଣ ପଟ୍ଟନାୟକଙ୍କର ଅବଦାନ ଅବିସ୍ମରଣୀୟ ।

ଗୁରୁଦେବ ବିଚ୍ଛନ୍ଦଚରଣଙ୍କ ପ୍ରଚେଷ୍ଟାରେ ବହୁ ତାଳପତ୍ର ପୋଥିର ପୁନରୁଦ୍ଧାର ଓ ପ୍ରକାଶନ କରାଯାଇ ପାରିଛି । କଳିଙ୍ଗଭାରତୀ ବହୁ କାବ୍ୟ, ସମାଲୋଚନା ଗ୍ରନ୍ଥ, ସଙ୍ଗୀତ, ଜଣାଣ, ଭଜନ ସହ ପାରମ୍ପରିକ କବିମାନଙ୍କର କୃତିର ଇଂରାଜୀ, ହିନ୍ଦୀ ଓ ଜର୍ମାନ ଭାଷାରେ ଅନୁବାଦ ପ୍ରକାଶ କରି ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରି ପାରିଛି । ଗୁରୁଦେବ ୧୯୭୧ ମସିହା ଜାନୁଆରୀ ୧୫ରେ ଇହଲୀଳା ସମ୍ବରଣ କଲେ । ତାଙ୍କ ମାନସ ସନ୍ତାନ କଳିଙ୍ଗଭାରତୀର ବୟସ ସେତେବେଳେ ୧୭।୧୮ ବର୍ଷ । ତଥାପି ବିଚ୍ଛନ୍ଦ ଚରଣଙ୍କ ବଳିଷ୍ଠ ଆଦର୍ଶର ବିଜୟବାନା ତଳେ ଏ ଯାବତ୍ କଳିଙ୍ଗ-ଭାରତୀ ତାର ସଂଗ୍ରାମ ଚାଲୁ ରଖି ପାରିଛି । ପଦ ପଦବୀରେ ନୁହେଁ କଳିଙ୍ଗଭାରତୀ ଆଦର୍ଶର ପ୍ରଜ୍ୱଳିତ ମଶାଲ ତଳେ ସମସ୍ତ ସାଧକ ସଭ୍ୟ ଶୁଣିଛନ୍ତି ଗୁରୁଦେବ ବିଚ୍ଛନ୍ଦ ଚରଣଙ୍କର ସେଇ ବଜ୍ର ଗମ୍ଭୀର ବାଣୀ 'ଓଡ଼ିଶୀ ସଂସ୍କୃତି ବଞ୍ଚାଅ, ପାରମ୍ପରିକ

ସାହିତ୍ୟ ସଙ୍ଗୀତ ପୁନରୁଦ୍ଧାର କର । ଓଡ଼ିଶାର ସ୍ୱାତନ୍ତ୍ର୍ୟ ବିଶ୍ୱଦରବାରରେ ପ୍ରଖ୍ୟାପିତ କର ।' ସେଇ ପ୍ରାରମ୍ଭ ଦିବସର ଶପଥ ଆଜି ମଧ୍ୟ ସଭ୍ୟମାନଙ୍କୁ ମାର୍ଗ ନିର୍ଦ୍ଦେଶିତ କରୁଛି ।

ସମୟର ରଥଚକ୍ର ଚାଲି ପଚିଶ ବର୍ଷ ବିତିବାକୁ ବସିଲାଣି । କଳିଙ୍ଗଭାରତୀ ଓ ଉତ୍କଳଗ୍ରନ୍ଥ ସାହିତ୍ୟ ସମାଜ କିନ୍ତୁ ଏବେବି ଥକି ପଡ଼ିନି । କାରଣ ଏ ଯାବତ୍ ସାଂସ୍କୃତିକ ଅଭ୍ୟୁଥାନ ସମ୍ପୂର୍ଣ୍ଣ ହୋଇନାହିଁ । ଯଦିଓ ରାଉରକେଲା, ଟେନ୍‌ସା, ବରସୁଆଁ ବଡ଼ବିଲ, ଜାମସେଦପୁର, ଖଡ଼ଗପୁର, ସୁନାବେଡ଼ା ଠାରୁ କଲିକତା, ମାନ୍ଦ୍ରାଜ ଓ ଦିଲ୍ଲୀଠାରେ ଭଞ୍ଜଜୟନ୍ତୀ ପାଳିତ ହୋଇ ଓଡ଼ିଆମାନଙ୍କ ମଧ୍ୟରେ ଥିବା ବିଭିନ୍ନତାରେ ସୃଷ୍ଟି କରିଛି ଏକ ଅଭିନ୍ନ ଯୋଗସୂତ୍ର, ତଥାପି ଅନେକ କିଛି ବାକି ଅଛି । ସେଦିନ ଭଞ୍ଜଜୟନ୍ତୀ ଏକମାତ୍ର ସାଂସ୍କୃତିକ ଅନୁଷ୍ଠାନ ଭାବେ ସମସ୍ତଙ୍କୁ ଏକତ୍ରିତ କରି ପାରୁଥିଲା, କିନ୍ତୁ ଆଜିର ପରିସ୍ଥିତି ଭିନ୍ନ । ଜାତୀୟତାର ମହାସ୍ରୋତରେ ଭାସିଯାଇ ଆମେ ମାତୃଭୂମି, ମାତୃଭାଷା ପ୍ରତି ଯଥେଷ୍ଟ ଅବମାନନା କରି ଚାଲିଛୁ । ମହାଭାରତୀୟ ଚେତନା ଯଦିଓ ସ୍ୱାଗତଯୋଗ୍ୟ କିନ୍ତୁ ଓଡ଼ିଶୀ ସଂସ୍କୃତି ପ୍ରତି ଅବଜ୍ଞା ସହଣୀୟ ନୁହେଁ । ଏଣୁ ଆଜି ମଧ୍ୟ କଳିଙ୍ଗଭାରତୀର ଆଦର୍ଶର ଆବଶ୍ୟକତା ଅଛି । ସାଂସ୍କୃତିକ ଏକତା ପାଇଁ, ସାଂସ୍କୃତିକ ଜାଗରଣ ପାଇଁ କଳିଙ୍ଗଭାରତୀ ଆହ୍ୱାନ ଓ ସଙ୍କଳ୍ପ ଆଜି ପ୍ରତ୍ୟେକ ଓଡ଼ିଆର ଧ୍ୟେୟ ହେଉ ।



# ଦ' ୟୁନିଭର୍ସ

ଶ୍ରୀ ଗିରିଜା ଭୂଷଣ ପଟ୍ଟନାୟକ

୧୯୭୩ ମସିହାର କଥା । ଆମେ କେତେଜଣ ଏକାଠି ବସିଥିଲୁ । ଓଡ଼ିଶାକୁ ଜାତୀୟ ଓ ଆନ୍ତର୍ଜାତିକ ସ୍ତରରେ ପରିଚିତ କରାଇବା ପାଇଁ ଏବଂ ଅନ୍ୟ ଦେଶର ସଂସ୍କୃତିକୁ ଆମ ଦେଶ ସହିତ ପରିଚୟ କରାଇବା ପାଇଁ କ'ଣ କରାଯାଇ ପାରିବ ତାହା ଥିଲା ଆମର ଆଲୋଚନା । ଆମେ ଏକ ସୋସାଇଟି ଗଠନ କଲୁ । ନାଁ ଦେଲୁ "କାଉନସିଲ୍ ଅଫ୍ କଲ୍‌ଚରାଲ ଗ୍ରୋଥ୍ ଏଣ୍ଡ କଲ୍‌ଚରାଲ ରିଲେସନ୍‌ସ" ।

୧୯୭୩ରେ ଭାରତ ମୈତ୍ରୀ ସମିତି ଆନୁକୂଲ୍ୟରେ ପ୍ରଥମେ ଏକ ଚଳଚିତ୍ର ପ୍ରଦର୍ଶନୀରୁ କାର୍ଯ୍ୟ ଆରମ୍ଭ ହେଲା । ପରେ ପରେ ହଙ୍ଗେରୀ, ପୋଲାଣ୍ଡ, ଚୀନ୍, ରୁମାନିଆ, କ୍ୟୁବା, ଇଟାଲୀ, କାନାଡ଼ା, ଆରବ ରାଷ୍ଟ୍ର ସମୂହ, ମଙ୍ଗୋଲିଆ, ଅଷ୍ଟ୍ରେଲିଆ ପ୍ରଭୃତି ଦେଶ ସହିତ ମୈତ୍ରୀ ସମିତି ସ୍ଥାପିତ ହୋଇ ଚଳଚ୍ଚିତ୍ର ପ୍ରଦର୍ଶନୀ ଉକ୍ତ ଦେଶମାନଙ୍କର ଜାତୀୟ ଦିବସ ପାଳନ, ଉକ୍ତ ଦେଶମାନଙ୍କରୁ ଯାଇଥିବା ବ୍ୟକ୍ତିମାନଙ୍କୁ ଅଭିଭାଷଣ ଦେବା ପାଇଁ ନିମନ୍ତ୍ରଣ, ଉକ୍ତ ଦେଶମାନଙ୍କର ପ୍ରତିନିଧି ଦଳକୁ ନିମନ୍ତ୍ରଣ ଆମର କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା ।

୧୯୭୬ ମସିହା । 'ବୌଦ୍ଧ ଦର୍ଶନ' ଉପରେ ଏକ ଆନ୍ତର୍ଜାତିକ ସେମିନାର କରିବା ପାଇଁ ସ୍ଥିର ହେଲା । ୧୯୭୫ରୁ ୧୯୮୯ ମଧ୍ୟରେ କଟକ ନଗର ସହସ୍ର ବାର୍ଷିକୀ ଉତ୍ସବ ବାଦଦେଇ ଆଠୋଟି ଆନ୍ତର୍ଜାତିକ ସେମିନାର ଅନୁଷ୍ଠିତ ହୋଇଛି ବିଭିନ୍ନ ବିଷୟ ଉପରେ ଏବଂ ସେଗୁଡ଼ିକ ପୁସ୍ତକଆକାରରେ ପ୍ରକାଶିତ ହୋଇଛି ।

ସେଗୁଡ଼ିକ ହେଲା—

୧ । ବୌଦ୍ଧ ଓ ଜୈନ ଦର୍ଶନ (୧୯୭୬)
୨ । ଲୋକସଂସ୍କୃତି (୧୯୭୮)
୩ । ଉତ୍ତରଶିଳ୍ପ ସମାଜ ଓ ଭବିଷ୍ୟତର ବିକଳ୍ପ (୧୯୮୧)
୪ । ଗାନ୍ଧୀ ଓ ଅଧୁନାତନ ସମୟ (୧୯୮୨)
୫ । ତୁଳନାତ୍ମକ ଧର୍ମ ଓ ବର୍ତ୍ତମାନର ଆହ୍ୱାନ (୧୯୮୪)

୬ । ବିଂଶ ଓ ଏକବିଂଶ ଶତାବ୍ଦୀ (୧୯୮୬)
୭ । ପରିବର୍ତ୍ତନଶୀଳ ସମାଜରେ ଆଦିବାସୀ ସଂସ୍କୃତି (୧୯୮୮)

ସେମିନାରଗୁଡ଼ିକ ଆୟୋଜନ କରିବା ପାଇଁ ଏକ ନୂତନ ସଙ୍ଗଠନର ଆବଶ୍ୟକତା ପଡ଼ିଲା । ଗଠିତ ହେଲା 'ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଓରିଏଣ୍ଟାଲ ଏଣ୍ଡ ଓରିଶାନ ଷ୍ଟଡିଜ୍ । 'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ ସଭାପତି ଏବଂ ଡକ୍ଟର ସଦାଶିବ ମିଶ୍ର ଏହାର କାର୍ଯ୍ୟକାରୀ ସଭାପତି ରହିଛନ୍ତି । ଏହି ସଙ୍ଗଠନ ଆନୁକୂଲ୍ୟରେ ଆନ୍ତ-ର୍ଜାତିକ ସେମିନାର ସହିତ ଜାତୀୟ ସେମିନାରମାନ ମଧ୍ୟ ଅନୁଷ୍ଠିତ ହୋଇଛି ।

ବେସରକାରୀ ସ୍ତରରେ ଆୟୋଜିତ ହେଲେ ମଧ୍ୟ ଏହା ଜାତୀୟ ଏବଂ ଆନ୍ତର୍ଜାତିକ କ୍ଷେତ୍ରରୁ ଗବେଷକମାନଙ୍କୁ ଆକୃଷ୍ଟ କରିଛି । ଓଡ଼ିଶାର ଐତିହ୍ୟ ଓ ସଂସ୍କୃତି ଓଡ଼ିଶାର ଗବେଷକମାନେ ଜାତୀୟ ଓ ଆନ୍ତର୍ଜାତିକ କ୍ଷେତ୍ରରେ ପରିଚିତ ଲାଭ କରିଛନ୍ତି ।

୧୯୭୬ ମସିହା ପର୍ଯ୍ୟନ୍ତ ଏସବୁ କାର୍ଯ୍ୟ ସଙ୍ଗଠିତ ହେଉଥିଲା ୭, ଜୁନିଅର ଅଫିସର୍ସ କ୍ୱାର୍ଟର୍ସ, ରାଷ୍ଟ୍ରଭାଷା ରୋଡ଼, କଟକ ଏବଂ ପରେ ଉତ୍କଳ ଲାଇବ୍ରେରୀର ଉପର ମହଲାରୁ । କିନ୍ତୁ କାମ ପାଇଁ ଏହା କୁଳାନ ହେଲା ନାହିଁ । ଏକ ସ୍ଥାୟୀ ଘରର ଆବଶ୍ୟକତା ପଡ଼ିଲା ।

ଶ୍ରୀ ବିନାୟକ ଆଚାର୍ଯ୍ୟ ଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ଶ୍ରୀ ଲକ୍ଷ୍ମଣ ମଲ୍ଲିକ ଥିଲେ ଓଡ଼ିଶାର ପୂର୍ତ୍ତମନ୍ତ୍ରୀ । ରାଷ୍ଟ୍ରଭାଷା ରୋଡ଼ ଜୁନିଅର ଅଫିସର୍ସ କ୍ୱାର୍ଟର୍ସ ପାଖରେ ରହିଥିଲା ପରିତ୍ୟକ୍ତ ଛଅଟି ଭଙ୍ଗା ଗ୍ୟାରେଜ୍ । ସେଇ ଘରଗୁଡ଼ିକୁ ନେଇ ଏବଂ ସଂଲଗ୍ନ ଜମି ଉପରେ ନୂତନ ସାଂସ୍କୃତିକ କେନ୍ଦ୍ର ଗଠିତ ହେଲା ।

ମୁଖ୍ୟମନ୍ତ୍ରୀ ଏବଂ ପୂର୍ତ୍ତମନ୍ତ୍ରୀ ଆଗ୍ରହର ସହିତ ସରକାରୀ ଅନୁମତି ଦେଲେ ଏବଂ କଟକର ଜିଲ୍ଲାପାଳଙ୍କ ସଭାପତିତ୍ୱରେ ଏକ କମିଟି ଗଠନର ପ୍ରସ୍ତାବକୁ ଅନୁମୋଦନ କଲେ ।

ଶ୍ରୀ ବିନାୟକ ଆଚାର୍ଯ୍ୟ ଓ ଶ୍ରୀ ଲକ୍ଷ୍ମଣ ମଲ୍ଲିକ ଏହାର ଉନ୍ମୋଚନ କଲେ ଫେବୃୟାରୀ ୨୦ ତାରିଖ ୧୯୭୬ ମସିହାରେ । ସମଗ୍ର ପୃଥିବୀର ସଂସ୍କୃତିକୁ ଏଇ ସଂସ୍ଥା ଭିତରେ ସଙ୍ଗଠିତ କରିବା ପାଇଁ ଏହାର ନାମକରଣ ହେଲା 'ଦି ୟୁନିଭର୍ସ' ।

ସେଇଦିନ ଜାପାନର ପ୍ରତିନିଧି ମଧ୍ୟ ଉପସ୍ଥିତ ଥିଲେ ଏବଂ ଉପସ୍ଥିତ ସ୍କୁଲ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ଏକ ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା । ସେଇଦିନଠାରୁ ଫେବୃୟାରୀ ୧୬ରୁ ୨୦ ତାରିଖ ପର୍ଯ୍ୟନ୍ତ ୟୁନିଭର୍ସର ବାର୍ଷିକ ଉତ୍ସବ ଅନୁଷ୍ଠିତ ହୋଇ ଆସୁଛି ଏବଂ ବର୍ତ୍ତମାନ ପ୍ରାୟ ଦୁଇ ହଜାରରୁ ଊର୍ଦ୍ଧ୍ୱ ଛାତ୍ରଛାତ୍ରୀ ଏହି ପାଞ୍ଚ-ଦିନିଆ ଉତ୍ସବରେ ପ୍ରାୟ ୩୫ଟି ବିଭିନ୍ନ ପ୍ରତିଯୋଗିତାରେ ଅଂଶଗ୍ରହଣ କରନ୍ତି ।

ଓଡ଼ିଶାର ବୃହତ୍ତର ଶିଶୁମେଳାମାନଙ୍କ ମଧ୍ୟରେ ଏହା ଅନ୍ୟତମ । ଓଡ଼ିଶାର ରାଜ୍ୟପାଳ ବା ମୁଖ୍ୟମନ୍ତ୍ରୀ ପ୍ରତ୍ୟେକ ବର୍ଷ ଏଥିରେ ପୌରୋହିତ୍ୟ କରି ଆସିଛନ୍ତି । ଶିଶୁମାନଙ୍କ ପାଇଁ ମୈତ୍ରୀମଞ୍ଜରୀ ନାମକ ଅନୁଷ୍ଠାନ ଏଇଥିରୁ ଜନ୍ମଲାଭ କରିଛି ।

ପ୍ରତିବର୍ଷ ପୃଥିବୀର ବିଭିନ୍ନ ଦେଶରୁ ବହୁ ପ୍ରତିନିଧି ଗବେଷକ ୟୁନିଭର୍ସକୁ ଆସିଛନ୍ତି । କଟକ ସହରରେ ଏହି କାର୍ଯ୍ୟ କରିବା ସହିତ ବିଭିନ୍ନ ସହରକୁ ଏହା ସମ୍ପ୍ରସାରିତ ହୋଇଛି ଏବଂ ନିକଟରେ ଭୁବନେଶ୍ୱରରେ ଏହାର ଶାଖା ଗଠିତ ହୋଇଛି ।

ଆମେ ଛାତ୍ରଛାତ୍ରୀମାନଙ୍କ ପାଇଁ ଜର୍ମାନୀ ଏବଂ ଫରାସୀ ଭାଷା ଉଭୟ କଟକ ଓ ଭୁବନେଶ୍ୱରରେ ଶିକ୍ଷା ଦିଆଯାଉଛି ।

ବିଭିନ୍ନ ଦେଶମାନଙ୍କ ସହିତ ସାଂସ୍କୃତିକ ସମ୍ପର୍କ ପ୍ରତିଷ୍ଠା କରିବା ପାଇଁ ଗଢ଼ା ଯାଇଥିବା ଅନୁଷ୍ଠାନମାନଙ୍କର ସମନ୍ୱୟ ପାଇଁ ଗଢ଼ା ହୋଇଛି । 'କାଉନସିଲ ଅଫ କଲଚରାଲ ଗ୍ରୋଥ ଏବଂ କଲଚରାଲ ରିଲେସନ୍ସ' । ବିଭିନ୍ନ ରାଜନୈତିକ ଦଳର ନେତା ପାର୍ଲ୍ୟାମେଣ୍ଟ ସଭ୍ୟ ଶିକ୍ଷାବିତ୍‌ମାନେ ଏହା ସହିତ ସଂପୃକ୍ତ । ଦେଶ ଦେଶ ମଧ୍ୟରେ ସାଂସ୍କୃତିକ ସମ୍ପର୍କ ପ୍ରତିଷ୍ଠା କରିବା, ଦେଶମାନଙ୍କର ପ୍ରତିନିଧିମାନଙ୍କୁ ଓଡ଼ିଶାକୁ ନିମନ୍ତ୍ରଣ କରିବା ସେ ଦେଶମାନଙ୍କୁ ଓଡ଼ିଶାର ପ୍ରତିନିଧିମାନଙ୍କୁ ପଠାଇବା, ଏହି ଅନୁଷ୍ଠାନର ଲକ୍ଷ୍ୟ ଓ କାର୍ଯ୍ୟ । ପ୍ରତିନିଧିମାନେ ଚୀନ, ଥାଇଲଣ୍ଡ, ବର୍ମା, ରୁଷ, ବୁଲଗେରିଆ, ପୋଲଣ୍ଡ, ମଙ୍ଗୋଲିଆ ପ୍ରଭୃତି ଦେଶମାନ ପରିଭ୍ରମଣ କରିଛନ୍ତି ଏବଂ ବହୁ ଦେଶରୁ ପ୍ରତିନିଧି ଓଡ଼ିଶା ଆସିଛନ୍ତି ।

ବିଭିନ୍ନ ଅନ୍ତର୍ଜାତିକ, ଜାତୀୟ ସେମିନାରରେ ପଠିତ ନିବନ୍ଧାବଳୀ ପ୍ରକାଶନ କରିବା ପାଇଁ; ଓଡ଼ିଶା ତଥା ପୃଥିବୀର ସାଂସ୍କୃତିକ, ସାମାଜିକ ଜୀବନ ଉପରେ ଆଧାରିତ ନିବନ୍ଧ ପ୍ରଭୃତିକୁ ପୁସ୍ତକାକାରରେ ପ୍ରକାଶିତ କରିବା ପାଇଁ 'ପ୍ରିଣ୍ଟୋଭର୍ସ' ଗଠିତ ହୋଇଛି । ପ୍ରିଣ୍ଟୋଭର୍ସ ଏହି କାମ ଛଡ଼ା ଆପଣାକୁ ସ୍ୱାବଲମ୍ବନ କରିବାପାଇଁ ଅନ୍ୟାନ୍ୟ ଛାପା କାର୍ଯ୍ୟ ମଧ୍ୟ ଗ୍ରହଣ କରେ ।

ପ୍ରତି ଶୁକ୍ରବାର ଦିନ ସନ୍ଧ୍ୟାରେ ୟୁନିଭର୍ସରେ ଏକ ଆଲୋଚନା ସଭା ହୁଏ । ବିଭିନ୍ନ ବିଷୟରେ ଧୁରୀଣ ବ୍ୟକ୍ତିମାନେ ଭାଷଣ ଦିଅନ୍ତି ଏବଂ ଆଲୋଚନା ହୁଏ । ଓଡ଼ିଶାରେ ଏହା ଏକମାତ୍ର ଅନୁଷ୍ଠାନ, ଯେଉଁଠାରେ ଗତ ୧୮ ବର୍ଷ ଧରି ପ୍ରତି ଶୁକ୍ରବାର ଦିନ ସଭା ହୋଇ ଆସିଛି ।

କଟକ ନଗରରେ ୟୁନିଭର୍ସର କେନ୍ଦ୍ର ଅଫିସ ଅବସ୍ଥିତ । ଏହି କଟକ ନଗରର ପ୍ରାଚୀନତା ଯେ ଏକ ହଜାର ବର୍ଷର, ଏହା କଟକ ସହରର ସାଧାରଣ ମଣିଷର ଜ୍ଞାତସାରରେ ନଥିଲା । 'ୟୁନିଭର୍ସ'ର ସଭାପତି ଜଷ୍ଟିସ ହରିହର ମହାପାତ୍ର

ଏହାର ସୂଚନା ଦେଲେ । 'କଟକ ନଗର ସହସ୍ର ବାର୍ଷିକୀ' କମିଟି ତାଙ୍କର ସଭାପତିତ୍ୱରେ ଗଠିତ ହେଲା ଏବଂ ସହସ୍ର ବାର୍ଷିକୀ ପାଳିତ ହେଲା । ସରକାରୀ କୌଣସି ବିନା ସାହାଯ୍ୟରେ ଏହି ଉତ୍ସବ ଉଦ୍‌ଘାଟିତ ହେଲା ଭାରତ ରାଷ୍ଟ୍ରପତିଙ୍କ ଦ୍ୱାରା । ବାରବାଟୀ ଦୁର୍ଗ ଖନନ ଆରମ୍ଭ ହେଲା ଡାକଟିକଟ ପ୍ରକାଶିତ ହେଲା । ଭାରତୀୟ ବ୍ୟୋମ ବାହିନୀ କଟକ ନଗରକୁ ସମ୍ମାନ ଜଣାଇଲେ । କଟକ ସହରର ଗୌରବୋଜ୍ଜ୍ୱଳ ଇତିହାସ ବହନ କରି ଦୁଇ ଖଣ୍ଡ ବିଶିଷ୍ଟ ବହି ପ୍ରକାଶିତ ହୋଇଛି । ଆଗାମୀ କାଳ ପାଇଁ ଏହା ଉତ୍ତର ପୁରୁଷ ହାତରେ କେବଳ କଟକ ପାଇଁ ନୁହେଁ, ସମଗ୍ର ଓଡ଼ିଶାରେ ଇତିହାସ ଜାଣିବା ପାଇଁ ଏକ ହ୍ୟାଣ୍ଡବୁକ ।

କେବଳ ସାଂସ୍କୃତିକ କାର୍ଯ୍ୟରେ 'ପୁନର୍ଭବ'ର କାର୍ଯ୍ୟ ସୀମିତ ନୁହେଁ । କଟକରେ ଏବଂ କୁଜଙ୍ଗରେ ପ୍ରୌଢ଼ ଶିକ୍ଷା କେନ୍ଦ୍ର, କଟକ ସହରରେ ସ୍ୱାସ୍ଥ୍ୟ ସଚେତନତା ଅଭିଯାନ, କଟକ—ଭୁବନେଶ୍ୱର ରାସ୍ତାରେ ଲୋକେ ଯେପରି ମଳତ୍ୟାଗ ନ କରିବେ ସେଥିପାଇଁ ରାସ୍ତାର ଦୁଇ ପାଖ ଗ୍ରାମମାନଙ୍କରେ ସୁଦୂର ପାଇଖାନା ନିର୍ମାଣ, ପରିବେଶ, ପରିବାର କଲ୍ୟାଣ ଉପରେ ଆଧାରିତ 'ଷ୍ଟ୍ରିଟ ଥିଏଟର' ଅଭିନୟ ପାଇଁ ଏକ ଗ୍ରୁପ ଗଠନ, ସ୍କୁଲମାନଙ୍କର ଶିକ୍ଷକ ପାଇଁ ବିଭିନ୍ନ ତାଲିମ କେନ୍ଦ୍ର ଗଠନ ବି'ପୁନର୍ଭବ' କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ।

ପୁନର୍ଭବର ସଭାପତି ଜଷ୍ଟିସ ହରିହର ମହାପାତ୍ର, 'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ, ଇନଷ୍ଟିଚ୍ୟୁଟ ଅଫ୍ ଓରିଏଣ୍ଟାଲ ଆଣ୍ଡ ଓଡ଼ିଶାନ ଷ୍ଟଡ଼ିଜର ସଭାପତି, ଡକ୍ଟର ସଦାଶିବ ମିଶ୍ର କାର୍ଯ୍ୟକାରୀ ସଭାପତି, କାଉନସିଲ ଅଫ୍ କଲେଜେଟ ଏଜୁକେସନ ସଭାପତି ପାର୍ଲାମେଣ୍ଟ ସଭ୍ୟ ସନ୍ତୋଷ କୁମାର ସାହୁ କାଉନସିଲ ଅଫ୍ କଲେଜଟ ଗ୍ରୋଥ ଏଣ୍ଡ କଲେଜେଟ ଏଜୁକେସନ ସଭାପତି ଶ୍ରୀ ବିଶ୍ୱରାଜ ପଟେଲ, ଉପସଭାପତି ପାର୍ଲାମେଣ୍ଟ ସଭ୍ୟ ଶ୍ରୀ ପ୍ରଭାତ ସାମନ୍ତରାୟ । ଏହାଛଡ଼ା ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି ବିଭିନ୍ନ ଦଳର ପାର୍ଲାମେଣ୍ଟ ସଭ୍ୟ ବିଭିନ୍ନ କାର୍ଯ୍ୟକାରୀ ଅନୁଷ୍ଠାନର କର୍ମକର୍ତ୍ତା ।

'ପୁନର୍ଭବ' ବହୁ ମତବାଦ, ମତର ସମନ୍ୱୟ ପୀଠ । ଏହାର ଫାଟକ ବାହାରେ ମତବାଦର ସଂଘର୍ଷ । କିନ୍ତୁ ଏହା ଭିତରେ ସମସ୍ତେ ପୁନର୍ଭବ ପରିବାରର ସଭ୍ୟ । ପୁନର୍ଭବ ଏକ ବନ୍ଦର ନୁହେଁ ଏହା ଏକ ଯାତ୍ରା ।



# ସରସ ସାହିତ୍ୟ ସମିତି

**ଡଃ ଶ୍ୟାମସୁନ୍ଦର ମିଶ୍ର**

ଦିନେ କଟକ ଥିଲା ଓଡ଼ିଶାର ସର୍ବବୃହତ୍ ସହର, ରାଜଧାନୀ ସର୍ବପ୍ରଧାନ ବାଣୀ ଓ ଶିଳ୍ପକେନ୍ଦ୍ର ଏବଂ ଓଡ଼ିଆ ସଂସ୍କୃତି ଓ ସାହିତ୍ୟର ପାରମ୍ପରିକ ପୀଠସ୍ଥଳ । ଆଜି କିନ୍ତୁ ସେ ମହତ୍ତ୍ୱ ଅନେକ ପରିମାଣରେ କ୍ଷୁଣ୍ଣ ହୋଇଛି । ସ୍ୱାଧୀନତା ପରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ବହୁ ନୂତନ ଓ ପୁରାତନ ନଗର ଏ ସମସ୍ତ କ୍ଷେତ୍ରରେ କଟକର ପ୍ରତିଦ୍ୱନ୍ଦ୍ୱୀ ରୂପେ ମୁଣ୍ଡ ଟେକୁଛନ୍ତି । ତଥାପି ଆଜି ଓଡ଼ିଶାର ସାଂସ୍କୃତିକ ସାହିତ୍ୟିକ ଓ ରାଜନୀତିକ ଇତିହାସ ଆଲୋଚନା କଲେ ଏ ନଗରର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ ହୋଇପଡ଼େ । ସମୃଦ୍ଧବାହୀ ବହୁ ନଦୀ ପ୍ରବାହିତ, ଉର୍ବର, ଶସ୍ୟ-ଶ୍ୟାମଳ ଜନ-ସମୃଦ୍ଧ ମହାନଦୀର ତ୍ରିକୋଣ ଭୂମିରେ ଥିବା ଏହି ଐତିହାସିକ ନଗରକୁ ଯୁଗେ ଯୁଗେ ବହୁ ଗୁଣୀ, ମାନୀ, ଧନୀ, ସାହିତ୍ୟ ସଙ୍ଗୀତ କଳାବନ୍ତ ବିଭିନ୍ନ ସଙ୍ଗଠନ ମାଧ୍ୟମରେ ସେମାନଙ୍କର ଅବଦାନ ଦେଇଯାଇଛନ୍ତି । ଓଡ଼ିଆ ସାହିତ୍ୟର ବିସ୍ତୃତ ବେଳାଭୂମିରେ ଅନେକ ସୁସ୍ପଷ୍ଟ ପଦଚିହ୍ନ ଏଇ ନଗରରେ ରହିଯାଇଛି । ସେଥିରୁ ଗୋଟିଏ ହେଉଛି ସରସ ସାହିତ୍ୟ ସମିତି ।

ଅନ୍ୟାନ୍ୟ ଅନେକ ସାହିତ୍ୟାନୁଷ୍ଠାନଙ୍କ ଠାରୁ ସରସ ସାହିତ୍ୟ ସମିତିର ଲକ୍ଷ୍ୟ ସମ୍ପୂର୍ଣ୍ଣ ଭିନ୍ନ । କେବଳ ହାସ୍ୟରସର ସାହିତ୍ୟ, ସଙ୍ଗୀତ, କଳା ଇତ୍ୟାଦିକୁ ଉତ୍ସାହିତ କରି ତାହାର ପ୍ରସାର କରାଇବା ହେଉଛି ଏହାର ଉଦ୍ଦେଶ୍ୟ । ଏପରି ସୀମିତ କାର୍ଯ୍ୟ ପରିସରକୁ କେତେକ ସଂକୀର୍ଣ୍ଣତା ଦୋଷଦୁଷ୍ଟ କରିଥାନ୍ତି କିନ୍ତୁ ଏପରି ଏକ ଅନୁଷ୍ଠାନର ପ୍ରକୃତ ଉଦ୍ଦେଶ୍ୟ ହୃଦୟଙ୍ଗମ କରିପାରିଲେ ଏହି ସଙ୍ଗଠନର ପ୍ରକୃତ ମହତ୍ତ୍ୱ ଓ ଯଥାର୍ଥ ଆବଶ୍ୟକତା ଉପଲବ୍ଧ ହୁଏ ।

ଆଧୁନିକ ଓଡ଼ିଆ ସାହିତ୍ୟରେ ହାସ୍ୟରସ ଏକ ଅତ୍ୟନ୍ତ ଅବହେଳିତ ବିଭବ । ପ୍ରାଚୀନ ଓ ମଧ୍ୟଯୁଗର କବିମାନଙ୍କ ମଧ୍ୟରୁ ସାରଳା ଦାସଙ୍କ ଠାରୁ ଆରମ୍ଭ କରି କବିସୂର୍ଯ୍ୟ, ଯଦୁମଣି, ବ୍ରଜନାଥଙ୍କ ସାହିତ୍ୟରେ ସେହି ରସର ସୁଦୃଢ଼ ମୂଳଦୁଆ ପଡ଼ିଥିଲା, ଆଧୁନିକ ସାହିତ୍ୟରେ ଫକୀରମୋହନଙ୍କ ଠାରୁ ଆରମ୍ଭ କରି ଗୋପାଳଚନ୍ଦ୍ର

ପ୍ରହରାଜ, ଗୋବିନ୍ଦ ତ୍ରିପାଠୀ, କାନ୍ତକବି ଲକ୍ଷ୍ମୀକାନ୍ତ, ବୈଷ୍ଣବ ପାଣି, ଗୋଦାବରୀଶ ମହାପାତ୍ର ପ୍ରଭୃତିଙ୍କ ହାତରେ ଯାହା ପୁଷ୍ଟଲାଭ କରିଥିଲା, ତାହା ଏ ଯୁଗରେ ଏତେ ନିଗୃହୀତ ହେବାର କାରଣ ଅନେକ ପ୍ରକାର ହୋଇପାରେ । ହୁଏତ ଓଡ଼ିଆମାନେ ଏବେ ଆଉ ମନ ଖୋଲି ହସି ପାରୁନାହାନ୍ତି, ହୁଏତ ଅନ୍ୟକୁ ହସାଇବା ପାଇଁ ଯେଉଁ ନିର୍ମଳ, ନିଷ୍କପଟ, ନିରଭିମାନ ହୃଦୟବୃତ୍ତି ଆବଶ୍ୟକ ତାହା ଆମେ ହଜାଇ ଦେଇଛୁ । ହୁଏତ ହାସ୍ୟକୁ ଉପଲବ୍ଧି କରିବାପାଇଁ ଯେଉଁ ରସବନ୍ତ ମନ ବା Sense of Humour ଦରକାର ତାହାର ଅଭାବ ରହି ଯାଉଛି ।

ଅବଶ୍ୟ ଗୁରୁଗମ୍ଭୀର ପରିବେଶ ସୃଷ୍ଟିକରି ଜଣେ କବି, ଗାଳ୍ପିକ ବା ଔପନ୍ୟାସିକ ପାଠକକୁ କିଛି ସମୟ ଭାବାକୁଳ କରିଦେଇ ପାରେ କିନ୍ତୁ ନିର୍ମଳ ହାସ୍ୟ ସୃଷ୍ଟିକରି ପ୍ରାଣକୁ ହାଲୁକା କରିଦେବା ବ୍ୟାପାର କଷ୍ଟସାଧ୍ୟ ନିଶ୍ଚୟ । ଆଜିର ଓଡ଼ିଶାରେ ବହୁ ବଡ଼ ବଡ଼ ସାହିତ୍ୟିକ ମୁଣ୍ଡଟେକି ବହୁ ସୁନାମ ଅର୍ଜନ କଲେଣି କିନ୍ତୁ ସମସ୍ତେ ଗୁରୁଗମ୍ଭୀର, କଲରଫୋଇଡ୍ । ସେମାନେ ହୁଏତ ସମାଜରେ ଖୁବ୍ ଗଣ୍ୟମାନ୍ୟ ଉଚ୍ଚପଦାଧିକାରୀ । ସ୍ୱାର୍ଥାନୁକୂଳ ସହାନୁଭୂତିଶୀଳତାରେ ପରସ୍ପର ପ୍ରତି ଆକୃଷ୍ଟ ହୋଇ ଗୋଷ୍ଠୀବଦ୍ଧ ଭାବରେ ସାହିତ୍ୟର ସଂଜ୍ଞା ସେଇମାନେ ନିରୂପଣ କରନ୍ତି । ସାହିତ୍ୟର ମୂଲ୍ୟାୟନ ସେଇମାନଙ୍କ ଭିତରର କଥା । ଏପରିସ୍ଥଳେ ଓଡ଼ିଶାରେ ସରକାରୀ ବା ବେସରକାରୀ ସ୍ତରରେ ହାସ୍ୟରସର ସାହିତ୍ୟିକ ଯେ ସ୍ୱୀକୃତି ପାଇପାରୁ ନାହିଁ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଏହି ଅବସ୍ଥାର ପ୍ରତିକାର କରିବା ପାଇଁ ହାସ୍ୟରସକୁ ତା'ର ଉପଯୁକ୍ତ ମର୍ଯ୍ୟାଦା ଦେବାପାଇଁ ଏଇ କଟକ ନଗରରେ କୃଳିଶ ବର୍ଷତଳେ ଯେଉଁ ଉଦ୍ୟମ ଆରମ୍ଭ ହୋଇଥିଲା; ତାହାର ଆଜିର ରୂପ ହେଉଛି ସରସ ସାହିତ୍ୟ ସମିତି ଓ ହାସ୍ୟ ବିକାଶ କେନ୍ଦ୍ର ପ୍ରଭୃତି କେତେକ ସ୍ୱତନ୍ତ୍ର ଧରଣର ସାହିତ୍ୟାନୁଷ୍ଠାନ ।

୧୯୫୪ ସାଲର ଫେବୃୟାରୀ କିମ୍ବା ମାର୍ଚ୍ଚ ମାସର କୌଣସି ଏକ ସନ୍ଧ୍ୟାରେ ପିଠାପୁରସ୍ଥିତ ଉଗର ପ୍ରେସ (ବର୍ତ୍ତମାନ ଯେଉଁଠାରେ ଆନନ୍ଦ ପ୍ରେସ ଅବସ୍ଥିତ) ସ୍ୱତ୍ୱାଧିକାରୀ କୋଠରୀରେ ସମସାମୟିକ ଓଡ଼ିଶାର ହାସ୍ୟସମ୍ରାଟ ଫତୁରାନନ୍ଦଙ୍କ ନିକଟରେ ତାଙ୍କର ଦୁଇଟି ଅଧମ ତରୁଣ ପ୍ରଜା ଉପସ୍ଥିତ ଥିଲେ । ଜଣେ ଏଇ ଲେଖକ ଏବଂ ଅନ୍ୟ ଜଣକ କବି ମୁରାରୀମୋହନ ଜେନା । ସେତେବେଳେ ମୁଁ ଓଡ଼ିଆ ଏମ୍. ଏ. ପ୍ରଥମ ବର୍ଷର ଛାତ୍ର ଥିଲି ଓ ବନ୍ଧୁ ମୁରାରି ବି. ଏ. ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ହେଉଥିଲେ । ବିଭିନ୍ନ ଅଦ୍ଭୁତ ଯୋଜନା କରିବାରେ ଏବଂ କଳ୍ପନାର ପ୍ରାସାଦ ନିର୍ମାଣ କରିବାରେ ଫତୁରାନନ୍ଦ ହେଉଛନ୍ତି ଜଣେ ନିପୁଣ କାରିଗର । ନିଜେ ଚକ୍ଷୁହୀନ ଓ ଅସମର୍ଥ ଥିଲେ ମଧ୍ୟ ତରୁଣମାନଙ୍କ ପାଇଁ ଯୋଜନା ପ୍ରସ୍ତୁତ କରିବାରେ ତାଙ୍କର କାର୍ପଣ୍ୟ ନାହିଁ । ସେଦିନ ସେଇ କ୍ଷୁଦ୍ର ସଭାରେ ସେ ପ୍ରସ୍ତାବ କଲେ ଯେ କେବଳ ହାସ୍ୟରସର ସାହିତ୍ୟ ସୃଷ୍ଟି ପାଇଁ ଗୋଟିଏ ଅନୁଷ୍ଠାନ ଗଢ଼ାହେବ ଏବଂ ତାହାର

ମୁଖପତ୍ର ରୂପେ ଏକ ପତ୍ରିକା ପ୍ରକାଶିତ ହେବ । କେତେ ସମୟର ଆଲୋଚନା ପରେ ସ୍ଥିର କରାଗଲା ଯେ ଅନୁଷ୍ଠାନର ନାମ ହେବ ସରସ ସାହିତ୍ୟ ସମିତି ଓ ପତ୍ରିକାର ନାମ ରହିବ 'ତେନ୍ତୁଳିଗୁଣ୍ଠ' । ଯୋଜନା ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ ହେଲା । 'ସରସ ସାହିତ୍ୟ ସମିତି' ନାମରେ ଏକ ପ୍ୟାଡ୍ ଛପାଗଲା । ସେଥିରେ ମୁଁ ସଭାପତି, ମୁରାରି ସମ୍ପାଦକ ଓ ଫତୁରାନନ୍ଦ ଉପଦେଷ୍ଟା ରୂପେ ରହିଲୁ । ବିନା ଅର୍ଥ, ବିନା ସମ୍ବିଧାନ, ବିନା ସ୍ୱୀକୃତି ଓ ବିନା ପୃଷ୍ଠପୋଷକତାରେ କେବଳ ସମିତି ଗଢ଼ାଗଲା ନାହିଁ ତାହାର କାର୍ଯ୍ୟ ଆଗେଇ ନେବାଲାଗି, ତାରୁଣ୍ୟର ଉତ୍ସାହ ନେଇ ଆମେ ଲାଗିପଡ଼ିଲୁ ଏବଂ ସେହି ଉଦ୍ୟମର ପ୍ରଥମ ଫଳଶ୍ରୁତି ସ୍ୱରୂପ ଅଳ୍ପକିଛି ପାଣ୍ଠି ସଂଗ୍ରହ ଦ୍ୱାରା ଡଗର ପ୍ରେସରୁ ପ୍ରକାଶ ପାଇଲା 'ତେନ୍ତୁଳିଗୁଣ୍ଠ' ୧୯୫୪ ସାଲ ଅପ୍ରେଲ ମାସ ଆଡ଼କୁ ।

ସେତେବେଳେ 'ନଅାଁଖୁଣ୍ଟା' ଓ 'ଡଗର' ପତ୍ରିକା ଦୁଇଟି ଓଡ଼ିଶାରେ ହାସ୍ୟରସର ପରିବେଷଣରେ ଦୁଇଟି ପ୍ରଧାନ ସ୍ତମ୍ଭ ଥିଲେ । 'ଡଗର'ରେ ବିବିଧ ପ୍ରକାରର ହାସ୍ୟରସର ପରୀକ୍ଷା ଚାଲିଥିବା ବେଳେ, 'ନଅାଁଖୁଣ୍ଟା'ରେ ବ୍ୟଙ୍ଗବିଦ୍ରୂପ ମୂଳକ ହାସ୍ୟରସ ହିଁ ମୁଖ୍ୟ ସ୍ଥାନ ଅଧିକାର କରୁଥିଲା, ତାହା ପୁଣି ପ୍ରଧାନତଃ ରାଜନୀତିକ ବିଷୟ ସମ୍ବଳିତ । 'ତେନ୍ତୁଳି ଗୁଣ୍ଠ'ର ଲେଖା ପାଇଁ ଆମେ ଗୋଦାବରୀଶ ମହାପାତ୍ରଙ୍କ ନଅାଁଖୁଣ୍ଟୀୟ ଶୈଳୀକୁ ଆମର ଆଦର୍ଶ ରୂପେ ଗ୍ରହଣ କରିଥିଲେ ମଧ୍ୟ ରାଜନୀତି ବିଷୟଠାରୁ ଦୂରେଇ ରହୁଥିଲୁ । 'ତେନ୍ତୁଳିଗୁଣ୍ଠ'ର ଶରବ୍ୟ ଥିଲେ ଆମର ଘନିଷ୍ଠ ପରିସର ଭିତରେ ଥିବା ବ୍ୟକ୍ତିବୃନ୍ଦ ଆମର ବନ୍ଧୁ, ସହପାଠୀ, କଟକର ବିଭିନ୍ନ ଶିକ୍ଷା ଓ ସାଂସ୍କୃତିକ ଅନୁଷ୍ଠାନ ସହ ସମ୍ପୃକ୍ତ ବ୍ୟକ୍ତିବୃନ୍ଦ ଓ ଜଣାଶୁଣା ସାହିତ୍ୟିକ-ମାନେ ଯଥା—ସୁରେନ୍ଦ୍ର ମହାନ୍ତି, ଗୋପୀନାଥ ମହାନ୍ତି, ମାୟାଧର ମାନସିଂହ, ନିତ୍ୟାନନ୍ଦ ମହାପାତ୍ର, ଫତୁରାନନ୍ଦ ଓ ଆଉ କେତେକ ଯୁବ ସାହିତ୍ୟିକ । ତେନ୍ତୁଳି ଗୁଣ୍ଠର ଲେଖାଗୁଡ଼ିକରେ ଆମର ତାରୁଣ୍ୟର ଉଦ୍ଦାମତା ତଥା ଚପଳତା ପ୍ରକାଶ ପାଇଥିଲା । ସେସବୁର କିଛି ନମୂନା ମଧ୍ୟ ଏଠାରେ ଦିଆଯାଇପାରେ । ରେଭେନ୍‌ସା କଲେଜର ତତ୍କାଳୀନ ଜଣେ କର୍ମଚାରୀଙ୍କ କାର୍ଯ୍ୟକଳାପକୁ ଆକ୍ଷେପ କରି ଥରେ ଗୋଟିଏ ପ୍ୟାରୋଡ଼ି ପ୍ରକାଶ ପାଇଥିଲା ।

"ମୋତେ ଲଗାନା ଗୋ ବ୍ରଜବାବୁ ଲଟ
ତୁଣ୍ଡରୁ ଛୁଞ୍ଚ ପିଲାଏ କରିବେ କପଟ
କାଲି କଲେଜ ହଲରେ ଅଧ୍ୟାପକ ମହଲରେ
× ଲଜ୍ଜାର ଚରିତ ବସିଥିଲା ହାଟ × × ।"

ଓଡ଼ିଶାରେ ଭଞ୍ଜସାହିତ୍ୟକୁ ଲୋକପ୍ରିୟ କରାଇବାରେ ଅତ୍ୟନ୍ତ ନିଷ୍ଠାବାନ କବି ବିଚ୍ଛନ୍ଦ ଚରଣ ପଟ୍ଟନାୟକ (ଯେ କ ପଦରେ ଖଞ୍ଜି ଥିଲେ)ଙ୍କୁ ମୁଁ ଖୁବ୍ ସମ୍ମାନ କରେ । ତାଙ୍କର ପଟ୍ଟଶିଷ୍ୟ ଥିଲେ ମୋର ସହପାଠୀ ଶ୍ରୀ ରଜତ କର । ଥରେ ରଜତ କରଙ୍କ

ସମ୍ପର୍କରେ ଏକ ବ୍ୟଙ୍ଗାତ୍ମକ ଲେଖା ପ୍ରକାଶ ପାଇଥିଲା ଯାହାର ଶୀର୍ଷକ ଥିଲା— "ଖଞ୍ଜ ଶାର୍ଦ୍ଦୁଳର ରଜତ ଲାଙ୍ଗୁଳ ।"

ସେଇ ଲେଖାଗୁଡ଼ିକ ପାଇଁ ଆମେ ଖୁବ୍ ଆନନ୍ଦ ଓ ଗର୍ବ ଅନୁଭବ କରୁଥିଲେ ମଧ୍ୟ ବେଳେବେଳେ ସେସବୁ ଶାଳୀନତା ଓ ରୁଚିର ସୀମା ଟପିଯାଉଥିଲା ବୋଲି କେତେକ ବୟସ୍କ ସାହିତ୍ୟିକ ଅଭିଯୋଗ କରୁଥିବା ଆମେ ଶୁଣୁଥିଲୁ । ସେସବୁ ଲେଖା ଉତ୍କଳର ବିଶେଷ କରି କଟକର ସାହିତ୍ୟିକ ବାୟୁମଣ୍ଡଳକୁ ସରଗରମ କରୁଥିବାରୁ କୌଣସି ବ୍ୟକ୍ତି ପ୍ରତ୍ୟକ୍ଷ ଭାବରେ ଆମର ନିନ୍ଦା କରୁ ନ ଥିଲେ କିନ୍ତୁ କଟକର କଲେକ୍ଟର ଜିଲ୍ଲା ଜଜ୍‌କୋର୍ଟରେ ମୋ' ନାମରେ ଗୋଟିଏ ସେସନ୍ କେଶ୍ କରିଥିଲେ, କାରଣ ମୁଁ ଚେଲୁଲଏଡ୍‌ର ସମ୍ପାଦକ ଥିବା ସହ ପ୍ରକାଶକ ମଧ୍ୟ ଥିଲି । ସେ କେଶ୍ ପ୍ରାୟ ଏକବର୍ଷ ପର୍ଯ୍ୟନ୍ତ ଚାଲିଥିଲା । ତାହାରି ମଧ୍ୟରେ ଆମେ 'ଚେଲୁଲଏଡ୍' ବନ୍ଦକରି 'ଓଲୁଅ ଡାଙ୍ଗ' ନାମରେ ସେଇ ଧରଣର ଅନ୍ୟ ଏକ ପତ୍ରିକାର କେତେକ ସଂଖ୍ୟା ପ୍ରକାଶ କରିଥିଲୁ । ଆମର କେତେକ ଶିକ୍ଷକ, ବୁଦ୍ଧିଜୀବୀ ବନ୍ଧୁ ଓ ସାହିତ୍ୟିକ ଏସବୁ ଲେଖା ପାଇଁ ଆମକୁ ସାହାଯ୍ୟ ଓ ସମର୍ଥନ କରୁଥିଲେ ମଧ୍ୟ ଆମର ଆଦର୍ଶ ଗୁରୁସ୍ଥାନୀୟ ଗୋଦାବରୀଶ ମହାପାତ୍ର ତଥା ଶୁଭେଚ୍ଛୁ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଏସବୁ ଲେଖାରୁ ନିବୃତ୍ତ ରହିବା ପାଇଁ ଉପଦେଶ ଦେଉଥିଲେ । ପରିସ୍ଥିତିର ଚାପରେ ଉଭୟ ପତ୍ରିକା ବନ୍ଦ ହୋଇଗଲା ଓ ସେଥିପାଇଁ ପରବର୍ତ୍ତୀ ଜୀବନରେ ଯେଉଁ ଝଞ୍ଜାଳର ସମ୍ମୁଖୀନ ମୋତେ ହେବାକୁ ପଡ଼ିଲା, ସେ ସବୁର ଉଲ୍ଲେଖ ଏଠାରେ ଅନାବଶ୍ୟକ ।

ମୁରାରିମୋହନ ଓ ମୋର ପାଠପଢ଼ା ଶେଷ ହୋଇଗଲା । ମୁରାରିମୋହନ ଶ୍ରମ ବିଭାଗରେ ଚାକିରି କରି ନିଜର ଲଗାମହୀନ ଜୀବନକୁ ଭୁଲିଯାଇ ସମ୍ପୂର୍ଣ୍ଣ ସଂଯତ ହୋଇଗଲେ ଏବଂ ମୁଁ କେତେବର୍ଷ କାଳ ପତନ ଉତ୍ଥାନପୂର୍ଣ୍ଣ ବନ୍ଧୁର ଜୀବନ ପଥରେ ଗଡ଼ଗଡ଼ି ଶେଷକୁ ଅଧ୍ୟାପକଟିଏ ହେଲି କଟକର ପରିବେଶଠାରୁ ବହୁ ଦୂରରେ ।

ସରସ ସାହିତ୍ୟ ସମିତିର ପ୍ରାଣସ୍ପନ୍ଦନ କେତେ ବର୍ଷକାଳ ନୀରବ ରହିବା ପରେ ୧୯୭୨ ସାଲରେ ପୁଣି ସଜୀବ ହୋଇ ଉଠିଲା ଫଲ୍‌ଗୁନନ୍ଦଙ୍କ ଉଦ୍ୟମ ଫଳରେ । ଏଥର କାର୍ଯ୍ୟପରିସର ବ୍ୟାପକତର କରି ନୂତନ ସଭ୍ୟମାନଙ୍କୁ ଏଥିରେ ଅନ୍ତର୍ଭୁକ୍ତ କରାଗଲା । ସମିତିର ଏହି ନୂତନ ଜୀବନ୍ୟାସ ମଣ୍ଡପରେ ଯେଉଁ ସଦସ୍ୟମାନେ ଆଦ୍ୟ ପୁରୋଧା ହୋଇଥିଲେ, ସେମାନେ ହେଉଛନ୍ତି ସର୍ବଶ୍ରୀ ନିତ୍ୟାନନ୍ଦ ମହାପାତ୍ର ('ଜଗର'ର ସମ୍ପାଦକ), ସଚ୍ଚିଦାନନ୍ଦ ମିଶ୍ର (ଗବେଷକ), ନୀଳମଣି ମହାନ୍ତା, ରାମଚନ୍ଦ୍ର ମିଶ୍ର (ଫଲ୍‌ଗୁନନ୍ଦ), ସ୍ୱର୍ଗତ କୃଷ୍ଣଚନ୍ଦ୍ର ପାଣ୍ଡେ (ହାସ୍ୟ ଅଭିନେତା), ମଧୁସୂଦନ ଦାସ (ଅଧ୍ୟାପକ), ରବୀନ୍ଦ୍ର ନାଥ ପଣ୍ଡା, ଡଃ ପ୍ରଫୁଲ୍ଲ ଚନ୍ଦ୍ର ଦାସ, ଶ୍ରୀ ବଟକୃଷ୍ଣ ଦାସ ।

ଏହି ନୂତନ ପ୍ରସ୍ତାର ଆରମ୍ଭ ସମୟରେ ନୂତନ ସଭ୍ୟମାନଙ୍କ ପାଇଁ ଆଜୀବନ ସଭ୍ୟ ଶୁଳ୍କ ଟ ୩୦-୦୦ ରଖାଯାଇଥିଲା । ଆଜି ପର୍ଯ୍ୟନ୍ତ ତାହା ଅପରିବର୍ତ୍ତିତ ଅଛି । ପରବର୍ତ୍ତୀକାଳେ ଏହାର ନୂତନ ସଭାପତି ରହିଲେ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ଓ ସମ୍ପାଦକ ଶ୍ରୀ ଫଲ୍ଗୁନନ୍ଦ । ସମିତିର ବାଇ ଲ ବା ବିଧିବଦ୍ଧ ନିୟମାବଳୀ ପ୍ରଣୀତ ହେଲା । ଏହାର ମୁଖ୍ୟ କାର୍ଯ୍ୟାଳୟ କଟକଠାରେ ଅବସ୍ଥାପିତ ହେବ ବୋଲି ଉଲ୍ଲେଖ ରହିଲା । ଏହାର ଦୁଇଟି ପ୍ରଧାନ ଲକ୍ଷ୍ୟ ରହିଲା—(କ) ହାସ୍ୟରସାତ୍ମକ ଓଡ଼ିଆ ସାହିତ୍ୟ, ନାଟକ ଓ ବ୍ୟଙ୍ଗଚିତ୍ରର ବିକାଶ ଓ ପ୍ରକାଶ ଏବଂ (ଖ) ହାସ୍ୟରସର ଲେଖକ, ବ୍ୟଙ୍ଗ ଚିତ୍ରକାର ହାସ୍ୟରସ ଗବେଷକ ଓ ସମାଲୋଚକମାନଙ୍କ ମଧ୍ୟରେ ଭାବଗତ ସମ୍ପର୍କ ସ୍ଥାପନ ।

ଏହାର କାର୍ଯ୍ୟାବଳୀ ସମ୍ପର୍କରେ ଉଲ୍ଲେଖ ଥିଲା—(କ) ହାସ୍ୟରସ ଓ ହାସ୍ୟରସାତ୍ମକ ସାହିତ୍ୟର ଗବେଷଣା । (ଖ) ବିଶ୍ୱବିଶ୍ରୁ ହାସ୍ୟରସାତ୍ମକ ରଚନାର ଓଡ଼ିଆରୁ ଓ ଓଡ଼ିଆକୁ ଭାଷାନ୍ତରୀକରଣ । (ଗ) ହାସ୍ୟରସାତ୍ମକ ସାହିତ୍ୟର ପ୍ରକାଶ, ନାଟକର ଅଭିନୟ ଓ ବ୍ୟଙ୍ଗଚିତ୍ର ପ୍ରଦର୍ଶନ ବ୍ୟବସ୍ଥା । (ଘ) ହାସ୍ୟରସାତ୍ମକ ସାହିତ୍ୟର ଆଲୋଚନାଚକ୍ର ଅନୁଷ୍ଠାନ । (ଙ) ହାସ୍ୟରସ ସ୍ରଷ୍ଟା ବ୍ୟଙ୍ଗ ଚିତ୍ରକାର, ବ୍ୟଙ୍ଗାଭିନେତା ଆଦିଙ୍କୁ ସମ୍ବର୍ଦ୍ଧନା, ଉପାଧି ଓ ମାନପତ୍ର ପ୍ରଦାନ ଦ୍ୱାରା ସମ୍ମାନ ଜ୍ଞାପନ । (ଚ) ହାସ୍ୟରସାତ୍ମକ ସାହିତ୍ୟ, ତତ୍‌ସମ୍ପର୍କିତ ସମାଲୋଚନାମୂଳକ ଗ୍ରନ୍ଥ, ପୋଥି, ପାଣ୍ଡୁଲିପି, ଚିତ୍ର ଆଦିକୁ ନେଇ ଏକ ଗ୍ରନ୍ଥାଗାର ପରିଗଠନ । (ଛ) ହାସ୍ୟରସାତ୍ମକ ସାହିତ୍ୟ, ବ୍ୟଙ୍ଗଚିତ୍ର, ହାସ୍ୟରସ ବିଷୟକ ଗବେଷଣା ଓ ସମାଲୋଚନା ଆଦି ସମ୍ବଳିତ ଏକ ସାମୟିକ ପତ୍ରିକା ପ୍ରକାଶନ । (ଜ) ସାହିତ୍ୟ ଓ ସମାଜରେ ହାସ୍ୟରସକୁ ସମୁଚିତ ପ୍ରାଧାନ୍ୟ ଦେବା ନିମନ୍ତେ ତଥା ପୂର୍ବୋଲିଖିତ ଲକ୍ଷ୍ୟ ଓ କାର୍ଯ୍ୟାବଳୀକୁ କାର୍ଯ୍ୟକାରୀ କରିବା ନିମନ୍ତେ ଆବଶ୍ୟକ ଅନ୍ୟାନ୍ୟ ପଦକ୍ଷେପ ଗ୍ରହଣ କରିବା ।

ସମିତିର ଏହି ଉପବିଧି ସରକାରଙ୍କଠାରେ ପଞ୍ଜିକୃତ ହେଲା ଏବଂ ଏହାର ନମ୍ବର ହେଲା Regd No 6768/111-1972-73 । ଯେ କୌଣସି ହାସ୍ୟରସର ସ୍ରଷ୍ଟା ଓ ହାସ୍ୟରସାନୁରାଗୀ ଏହାର ସଭ୍ୟ ହୋଇପାରିବେ ବୋଲି ଉଲ୍ଲେଖ ଥିଲା । କାର୍ଯ୍ୟକାରୀ ସମିତିରେ ମୋଟ ସଭ୍ୟ ସଂଖ୍ୟା ୧୧ ରଖାଗଲା । ସମୟକ୍ରମେ ଏହି ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ଏକ ସହଯୋଗୀ ଅନୁଷ୍ଠାନ ରୂପେ ସ୍ୱୀକୃତି ଲାଭ କଲା ଓ ଉତ୍କଳ ସାହିତ୍ୟ ସମାଜ ତାଙ୍କର USS 17/82 of 9-5-82ର ଏକ ପତ୍ରରେ ଏହାକୁ ଏକ ସହଯୋଗୀ ଅନୁଷ୍ଠାନ ରୂପେ ଗ୍ରହଣ କରି ସମିତିର ଏକ ମନୋନୀତ ସଭ୍ୟଙ୍କୁ ସାହିତ୍ୟ ସମାଜର ସାଧାରଣ ପରିଷଦର ଜଣେ ସଭ୍ୟରୂପେ ଗ୍ରହଣ କରିବାକୁ ସମ୍ମତି ଦେଲେ । ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କରେ ଏହାର ଏକାଉଣ୍ଟ ଖୋଲାଗଲା ।

ସରସ ସାହିତ୍ୟ ସମିତିର ଏହି ନୂତନ ପ୍ରଷ୍ଟ ଆରମ୍ଭ ହେବା ପରଠାରୁ କଟକ ନଗରର ବସ୍ତ ଉପରେ ବାଇଶଟି ବସନ୍ତ ଅତିବାହିତ ହୋଇଗଲାଣି । ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ରାଜନୀତିକ ଜୀବନରୁ ଅବସର ନେଇ ସ୍ଥାୟୀରୂପେ ଭୁବନେଶ୍ୱରରେ ଅବସ୍ଥାନ କଲାପରେ ପର୍ଯ୍ୟାୟକ୍ରମେ ଓଡ଼ିଶାର ଆଉ କେତେକ ଲବ୍‌ଧପ୍ରତିଷ୍ଠ ବ୍ୟକ୍ତି ଏହାର ସଭାପତି ଆସନ ମଣ୍ଡନ କରିଛନ୍ତି । ସେମାନେ ହେଲେ ଡଃ ଶ୍ରୀରାମଚନ୍ଦ୍ର ଦାଶ ଓ ଡଃ କୃଷ୍ଣବିହାରୀ ଦାଶ । ଡଃ କୃଷ୍ଣବିହାରୀ ଦାଶ ୧୯୮୭ରେ ଏଥିରୁ ସ୍ୱେଚ୍ଛାକୃତ ଅବସର ନେବାପରଠାରୁ ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟପ୍ରେମୀ ଚାର୍ଟାର୍ଡ଼ ଏକାଉଣ୍ଟାଣ୍ଟ ଶ୍ରୀ ହୃଦୟାନନ୍ଦ ନାୟକ ଏହାର ସଭାପତି ରହିଛନ୍ତି । ସେହିପରି ପଞ୍ଜିକୃତ ହେବା ସମୟରେ ଏବଂ ପରବର୍ତ୍ତୀ କେତେବର୍ଷ ଫତୁରାନନ୍ଦ ଏହାର ସମ୍ପାଦକ ଥିଲେ । ତତ୍ପରେ କେତେ ବର୍ଷ ଡଃ ପ୍ରଫୁଲ୍ଲ ଦାଶ ସମ୍ପାଦକ ରହିବା ପରେ ବିଗତ ବୃଦ୍ଧବର୍ଷ ଧରି ଏହି ଲେଖକ ସମ୍ପାଦକ ଦାୟିତ୍ୱ ତୁଲାଉଛି ।

ପ୍ରତିବର୍ଷ ରଜସଂକ୍ରାନ୍ତି ଦିନ ସମିତି ତାହାର ବାର୍ଷିକ ଉତ୍ସବ ପାଳନ ଅବସରରେ ହାସ୍ୟ କବିତା ଓ ରଚନା ପାଠ ଓ ଆଲୋଚନା ସଙ୍ଗକୁ ପ୍ରତ୍ୟେକ ବର୍ଷ ଓଡ଼ିଶାର ଜଣେ ଜଣେ ପ୍ରସିଦ୍ଧ ହାସ୍ୟରସିକଙ୍କୁ 'ରସରାଜ' ଉପାଧି ପ୍ରଦାନ କରେ । ୧୯୭୩ଠାରୁ ୧୯୯୩ ପର୍ଯ୍ୟନ୍ତ ପର୍ଯ୍ୟାୟକ୍ରମେ ଯେଉଁମାନେ ଏହି ଉପାଧିଲାଭ କରିଛନ୍ତି ସେମାନେ ହେଲେ-ସର୍ବଶ୍ରୀ ଚୌଧୁରୀ ହେମକାନ୍ତ ମିଶ୍ର, କୃଷ୍ଣଚନ୍ଦ୍ର ପାଣ୍ଡେ, ଚନ୍ଦ୍ରମଣି ପଣ୍ଡା, ପୁଳିନବିହାରୀ ରାୟ, ସୁଶୀଲକୁମାର ମିଶ୍ର, ଡଃ କୁଳମଣି ମହାପାତ୍ର, ଡଃ ଶ୍ରୀଧର ସୂପକାର, ଚନ୍ଦ୍ରଭାନୁ ଶତପଥି, ବଂଶୀଧର ଦାସ, ଉଦୟନାଥ ଷଡ଼ଙ୍ଗୀ, ଶ୍ୟାମସୁନ୍ଦର ମହାପାତ୍ର (ମେଘାସନ), ବୈଦ୍ୟନାଥ ଶର୍ମା (ପାଲଗାୟକ) ଉଦୟନାଥ ମିଶ୍ର, ଶ୍ରୀମତୀ ପଙ୍କଜମଣି ଦାସ (ରସସାମ୍ରାଜ୍ଞୀ ଉପାଧି), ବସନ୍ତ କୁମାର ଶତପଥି, ରବୀନ୍ଦ୍ର ନାଥ ପଣ୍ଡା, ମୋହନ ଦାସ ରବିକାନ୍ତ ରାଓ, ହରେକୃଷ୍ଣ ଦାଶ, ଡଃ ପ୍ରଫୁଲ୍ଲ ଚନ୍ଦ୍ର ଦାଶ ଓ ମାଧବ ଚନ୍ଦ୍ର ସ୍ୱାଇଁ ।

ଏହାଛଡ଼ା ଭାରତର ଦୁଇଜଣ ଶ୍ରେଷ୍ଠ ହାସ୍ୟରସିକ ଶ୍ରୀ ମୁଜତବା ହୋସେନ (୧୯୮୦) ଓ ଶ୍ରୀ ନରେନ୍ଦ୍ର ଲୁଥରଙ୍କୁ ଭିନ୍ନ ସମୟରେ ବିଶେଷ ଅଧିବେଶନରେ ଅଭିନନ୍ଦିତ କରାଯାଇ ଉପାୟନମାନ ପ୍ରଦାନ କରାଯାଇଛି ।

ବାର୍ଷିକ ଅଧିବେଶନମାନଙ୍କରେ ସମୟେ ସମୟେ ଫତୁରାନନ୍ଦ, କାଶୀନାଥ ବାରିକ ପ୍ରଭୃତି ବ୍ୟଙ୍ଗ ଚିତ୍ରକାରମାନଙ୍କର ଚିତ୍ରକଳାର ଏକକ ପ୍ରଦର୍ଶନୀ କରାଯାଇ ଓଡ଼ିଶାରେ ଏହି କଳାର ବିକାଶ ଓ ପ୍ରସାର କ୍ଷେତ୍ରରେ ପ୍ରଥମ ପଦକ୍ଷେପ ନିଆଯାଇଛି ।

ସମିତି ତାହାର ସୀମିତ ସମ୍ବଳ ମଧ୍ୟରେ କେତୋଟି ହାସ୍ୟ ପୁସ୍ତିକା ପ୍ରକାଶନରେ ମଧ୍ୟ ସଫଳ ହୋଇ ପାରିଛି । ସେଥିରୁ କେତୋଟି ହେଉଛି କବିସୂର୍ଯ୍ୟଙ୍କ 'ହାସ୍ୟକଲ୍ଲୋଳ', ମୁଜତବା ହୋସେନଙ୍କ ଉର୍ଦ୍ଦୁ ହାସ୍ୟଗଳ୍ପର ଅନୁବାଦ ଇତ୍ୟାଦି ।

ଏହି ଅନୁଷ୍ଠାନ କଟକ ନଗରର ମୁଷ୍ଟିମେୟ ହାସ୍ୟରସପ୍ରେମୀ ବଦାନ୍ୟ ବ୍ୟକ୍ତିଙ୍କ ଆର୍ଥିକ ସାହାଯ୍ୟ ଓ ସହଯୋଗ ବଳରେ ଏପର୍ଯ୍ୟନ୍ତ ତାହାର କାର୍ଯ୍ୟକ୍ରମକୁ ଆଗେଇ ନେଇ ଆସିଛି । ସମିତିର ପଞ୍ଜିକରଣ ପରେ ୧୯୭୩ଠାରୁ ଦୁଇବର୍ଷ ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କ ସାଂସ୍କୃତିକ ବିଭାଗ ପକ୍ଷରୁ ଏହାକୁ କିଛି କିଛି ଆର୍ଥିକ ଅନୁଦାନ ଦିଆ ଯାଉଥିଲା । କିନ୍ତୁ ତା'ପରେ ବର୍ଷ ବର୍ଷ ଧରି ବାରମ୍ବାର ଆବେଦନ ସତ୍ତ୍ୱେ ଆଜି କୌଣସି ଅନୁଦାନ ମିଳିଲା ନାହିଁ । ଅମଲାତନ୍ତ୍ରର ଅଡୁଆ ଛଡୁଆ ସୂତା ମଧ୍ୟରେ ସମସ୍ତ ପ୍ରକାର ଆବେଦନ ନିବେଦନ ମିଳେଇ ଗଲା । ସମ୍ଭବତଃ ଏହି ବିଭାଗର ଶୀର୍ଷ-ମଣ୍ଡନ କରୁଥିବା କର୍ମକର୍ତ୍ତାମାନେ ଅନୁଭବ କଲେ ଯେ ଓଡ଼ିଶାରେ ଆଜି ହାସ୍ୟରସର ଆବଶ୍ୟକତା ନାହିଁ । ତଥାପି ସମିତି ତାହାର ଦ୍ୱିଗୁଣିତ ପ୍ରୟତ୍ନରେ ମଧ୍ୟ ବାଇଶି ବର୍ଷ ନିଜ କାର୍ଯ୍ୟ କରିଚାଲିଛି ଏବଂ ଆଗାମୀ ବର୍ଷମାନଙ୍କରେ ମଧ୍ୟ ତା'ର କାର୍ଯ୍ୟ କରିବ ବୋଲି ଆଶା ପୋଷଣ କରୁଛି ।



# ଓଡ଼ିଶାର ସାଂସ୍କୃତିକ ବିକାଶରେ ପ୍ରଜାତନ୍ତ୍ର

**ଶ୍ରୀ ମହେଶ୍ୱର ମୂଳିଆ**

ଭାରତର ସ୍ୱାଧୀନତା ସଂଗ୍ରାମରେ ସମ୍ବାଦପତ୍ରଗୁଡ଼ିକର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ବ୍ରିଟିଶ ଶାସନ ବିରୁଦ୍ଧରେ ଜନଜାଗରଣ ଓ ଜନମତ ସୃଷ୍ଟିର ଏହା ଥିଲା ଶକ୍ତିଶାଳୀ ମାଧ୍ୟମ । ଜାତୀୟ ନେତାମାନେ ସମ୍ବାଦପତ୍ରକୁ ସଂଗ୍ରାମର ପ୍ରଧାନ ଅସ୍ତ୍ର ରୂପେ ବ୍ୟବହାର କରୁଥିଲେ । ସମ୍ବାଦପତ୍ର ମାଧ୍ୟମରେ ସେମାନଙ୍କ ଆବେଗମୟ ଆହ୍ୱାନ ଓ ସଂଗ୍ରାମର ବାର୍ତ୍ତା ଭାରତବାସୀଙ୍କ ହୃଦୟରେ ଗଭୀର ଦେଶାତ୍ମବୋଧ ଓ ମୁକ୍ତିର ପିପାସା ଜାଗ୍ରତ କରି ପାରିଥିଲା ।

ଅସହଯୋଗ ଆନ୍ଦୋଳନ କାଳରେ ଓଡ଼ିଶାରେ ଯେଉଁ କେତେକ ଜାତୀୟବାଦୀ ସମ୍ବାଦପତ୍ରର ଅଭ୍ୟୁଦୟ ଘଟିଥିଲା, ପ୍ରଜାତନ୍ତ୍ର ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ । ପ୍ରଜାତନ୍ତ୍ର ଜରିଆରେ ମହତାବଜୀ ଓଡ଼ିଶାର ସ୍ୱାଧୀନତା ସଂଗ୍ରାମକୁ ବ୍ୟାପକ ଓ ଶକ୍ତିଶାଳୀ କରାଇଥିଲେ । ଇଂରେଜ ରାଜଶକ୍ତିର ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରି ଜନସାଧାରଣଙ୍କ ମନରୁ ଭୟ ଦୂର କରିବା ଅଭିଳାଷ ନେଇ ଏହାର ସୃଷ୍ଟି ହୋଇଥିଲା ।

୧୯୨୩ ମସିହା ଜୁନ୍ ମାସ । ମହତାବବାବୁ ବର୍ଷେ ଜେଲ ଭୋଗି ଭାଗଲପୁର ଜେଲରୁ ଫେରିଥାନ୍ତି । ସେଦିନ ସ୍ୱରାଜ ଆଶ୍ରମରେ ଗୋପବନ୍ଧୁ ଚୌଧୁରୀ, ନିରଞ୍ଜନ ପଟ୍ଟନାୟକଙ୍କ ସହିତ ବସି ଦେଶର ରାଜନୈତିକ ପରିସ୍ଥିତି ବିଷୟରେ ଆଲୋଚନା କରୁଥାନ୍ତି । ଗାନ୍ଧିଜୀ ଜେଲରେ । ଗୋପବନ୍ଧୁ ଦାସ, ଭଗୀରଥି ମହାପାତ୍ର ପ୍ରଭୃତି ଜେଲରୁ ଫେରି ନଥାନ୍ତି । ଚାରିଆଡ଼େ ନୈରାଶ୍ୟ ଓ ନିରୁତ୍ସାହର ବାତାବରଣ । ଏ ଅବସ୍ଥାରେ ଲୋକଙ୍କ ମନୋବଳ ଉପରି ଦୃଢ଼ ରଖିବାକୁ ହେବ, ଜନଜାଗରଣ ଉଜ୍ଜୀବିତ କରିବାକୁ ପଡ଼ିବ । ଆଲୋଚନା ପରେ ସ୍ଥିର ହେଲା ମହତାବବାବୁ ପ୍ରାଦେଶିକ କଂଗ୍ରେସ କମିଟି ଦାୟିତ୍ୱରେ ରହିବେ । ଗୋପବନ୍ଧୁ ଗ୍ରାମ୍ୟ ସଙ୍ଗଠନ ଏବଂ ନିରଞ୍ଜନ ଖଦୀ ପ୍ରସାର ଭାର ନେବେ । ଗାନ୍ଧିଜୀଙ୍କ ବାର୍ତ୍ତା ଏବଂ କଂଗ୍ରେସର ନୀତି ଓ କାର୍ଯ୍ୟକ୍ରମର ପ୍ରଚାର ପାଇଁ—ସେତେବେଳେ ଏକ ପତ୍ରିକାର ଆବଶ୍ୟକତା ଅନୁଭୂତ ହେଉଥିଲା ।

ମହତାବବାବୁ ସ୍ଥିର କଲେ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରାଯିବ । ତା'ର ମାଧ୍ୟମରେ ସ୍ୱରାଜ୍ୟର ବାର୍ତ୍ତା ଲୋକଙ୍କ ପାଖରେ ପହଞ୍ଚାଇବାକୁ ହେବ । ପତ୍ରିକାର ନାମକରଣ ପାଇଁ ବହୁ ପ୍ରସ୍ତାବ ଆସିଲା । ଶେଷରେ ଗୁଳା ପଡ଼ିବାରୁ 'ପ୍ରଜାତନ୍ତ୍ର' ନାମ ଉଠିଲା । ଏହାର ପ୍ରକାଶକ ଓ ମୁଦ୍ରାକର ହେଲେ ଜାଜପୁର କବି ଗୋରକିଶୋର ଦାସ । ମୁଦ୍ରଣ ଦାୟିତ୍ୱ ନେଲା ମୁକୁର ପ୍ରେସ । ପ୍ରାଥମିକ ଖର୍ଚ୍ଚ ପାଇଁ ପୁରୀ ଜିଲ୍ଲା ଯାଆଁଳା ଗ୍ରାମର କୁଳମଣି ସାମନ୍ତରାୟ ଏକଶହ ଟଙ୍କା ଦାନ ଦେଲେ । ଏତିକି ସମ୍ବଳକୁ ନେଇ 'ପ୍ରଜାତନ୍ତ୍ର' ଆତ୍ମପ୍ରକାଶ କଲା । ଓଡ଼ିଶାର ସମସ୍ତ ଆଶ୍ରମକୁ ଏହି ପତ୍ରିକା କଂଗ୍ରେସର ପ୍ରଚାରପତ୍ର ଭାବରେ ପଠାଯାଉ ଥିଲା । କଟକରେ ରହି ମହତାବବାବୁ, ଗୋରକିଶୋର ଦାସ ଓ ରାମପ୍ରସାଦ ସିଂହ ଏଥିରେ ନିୟମିତ ଲେଖୁଥିଲେ ।

ପ୍ରାଦେଶିକ କଂଗ୍ରେସ ସଙ୍ଗଠନ ଓ ପତ୍ରିକା ପରିଚାଳନା—ଏ ଦୁଇଟି ଦାୟିତ୍ୱ ଏକ ସଙ୍ଗରେ ତୁଲାଇବା ମହତାବବାବୁଙ୍କ ପକ୍ଷରେ କଷ୍ଟସାଧ୍ୟ ହୋଇ ପଡ଼ିଲା । ବହୁ ଚିନ୍ତା କରି କଟକରୁ ସେ ବାଲେଶ୍ୱର ଗଲେ । ସେଇଠାରୁ ୧୯୨୪ ମସିହାରେ ସାପ୍ତାହିକ 'ପ୍ରଜାତନ୍ତ୍ର' ଶ୍ରୀକାନ୍ତ ଦେଙ୍କ ଟାଉନ ପ୍ରେସରେ ପ୍ରକାଶ ପାଇଲା । ଅନ୍ୟ ପ୍ରେସରୁ ଛପାଯାଉଥିବାରୁ ନିୟମିତ ପ୍ରକାଶ ପାଇବାରେ ବହୁତ ଅସୁବିଧା ହେଉଥିଲା । ନିଜର ଗୋଟିଏ ପ୍ରେସ କରିବା ପାଇଁ ଘୋର ଅର୍ଥାଭାବ । ଲକ୍ଷ୍ମୀନାରାୟଣ ସାହୁଙ୍କ ଉତ୍ସାହ ଓ ପରାମର୍ଶରେ ପ୍ରଜାତନ୍ତ୍ରର ନିଜସ୍ୱ ପ୍ରେସ ପାଇଁ ସ୍ଥିର ହେଲା । ଲକ୍ଷ୍ମୀନାରାୟଣ ବାବୁ ୧୬୦୦ ଟଙ୍କାରେ ମେସିନ ପାଇଁ ଅର୍ଡ଼ର ଦେଲେ । ଏତେ ଟଙ୍କା ଆସିବ କୁଆଡ଼ୁ ? ମହତାବବାବୁ ବଡ଼ ଅଡୁଆରେ ପଡ଼ିଲେ । ଶେଷରେ ନିଜ ବାପାଙ୍କର ଜଣେ ଶତ୍ରୁ ମହାଜନଙ୍କ ଦ୍ୱାରସ୍ଥ ହୋଇ ତାଙ୍କଠାରୁ ହ୍ୟାଣ୍ଡନୋଟ କରି ଦୁଇଶହ ଟଙ୍କା କରଜ ଆଣିଲେ । ପାର୍ସଲ ଛଡ଼ାଗଲା । ହ୍ୟାଣ୍ଡପ୍ରେସଟି ବାଲେଶ୍ୱର ସ୍ୱରାଜ୍ୟ ମନ୍ଦିରରେ ପଡ଼ିଲା । ପ୍ରେସ ପରିଚାଳନା କଲେ ବିଶ୍ୱନାଥ ହୋତା, ବଂଶୀଧର ରଥ । ମୁଦ୍ରାକର ଓ ପ୍ରକାଶକ ଦାୟିତ୍ୱରେ ରହିଲେ କରୁଣାକର ପାଣିଗ୍ରାହୀ । ସମ୍ପାଦକ ଉପେନ୍ଦ୍ର ପଣ୍ଡା । ଲେଖୁଥିଲେ ମହତାବବାବୁ, ନନ୍ଦ କିଶୋର ଦାସ, ମଥୁରାମୋହନ ବେହେରା ପ୍ରମୁଖ । ଫୁଲସ୍କେପ ସାଇଜ ଚାରି ପୃଷ୍ଠାର ଏହି ପତ୍ରିକାର ଦାମ୍ ଥିଲା ଦୁଇ ପଇସା । ବ୍ରିଟିଶ ସରକାର ଓ ଗଡ଼ଜାତ ରାଜାଙ୍କ ଅତ୍ୟାଚାର ଏବଂ ଜନସାଧାରଣଙ୍କ ଦୁଃଖ ଦୁର୍ଦ୍ଦଶାର ବିବରଣୀ ଏଥିରେ ପ୍ରକାଶ ପାଉଥିବାରୁ ଏହା କ୍ରମେ ଜନପ୍ରିୟ ହୋଇ ଉଠିଥିଲା । ବାଲେଶ୍ୱରରୁ ପ୍ରକାଶ ପାଉଥିଲେ ବି ଏହାର ବିକ୍ରୀ କଟକ ଓ ପୁରୀରେ ମଧ୍ୟ ହେଉଥିଲା । କଟକରେ 'ପ୍ରଜାତନ୍ତ୍ର' ପ୍ରସାର ଦାୟିତ୍ୱରେ ଥିଲେ ଗୟାଧର ସାମଲ ।

୧୯୨୭ ମସିହାରେ ପ୍ରଜାତନ୍ତ୍ର ଫ୍ଲାଟବେଡ଼ ମେସିନରେ ଛପା ହେଲା । ଭାସ୍କର ଚନ୍ଦ୍ର ମହାପାତ୍ର ଏଥିପାଇଁ ଦୁଇ ହଜାର ଟଙ୍କା ଦାନ କରିଥିଲେ । ସେତେବେଳେ ବିଦ୍ୟୁତ୍ ନଥିବାରୁ ହାତରେ ମେସିନ ଚଲାଯାଉଥିଲା । ୧୯୩୦ ମସିହା ଲବଣ ସତ୍ୟାଗ୍ରହ ବେଳେ 'ପ୍ରଜାତନ୍ତ୍ର' ଦୈନିକରେ ପରିଣତ ହେଲା । ଉପେନ୍ଦ୍ର ପଣ୍ଡା ସମ୍ପାଦକ

ଥାନ୍ତି । ପୃଷ୍ଟପୋଷକତା କରୁଥିଲେ ସୁବୋଧ ଚନ୍ଦ୍ର ଦେ । ଏହି ସମୟରେ ମହତାବ-ବାବୁ ଗିରଫ ହୋଇ ହଜାରିବାଗ ଜେଲ ଗଲେ । ଜେଲରେ ଥାଇ ସେ 'ପ୍ରଜାତନ୍ତ୍ର'କୁ ଗୋପନରେ ଲେଖାମାନ ପଠାଉଥିଲେ । ତାଙ୍କର ଅନେକ ଲେଖା ବାଲେଶ୍ବର ଡାକଘରେ ସି. ଆଇ. ଡ଼ି. ଧରି ସରକାରଙ୍କ ପାଖକୁ ପଠାଇ ଦେଲେ । ଦଣ୍ଡ ସ୍ବରୂପ ତାଙ୍କୁ 'ଖ' ଶ୍ରେଣୀ ବନ୍ଦୀରୁ ଖସାଇ ଦିଆଯାଇଥିଲା ।

ସେତେବେଳେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ କଂଗ୍ରେସ ସଙ୍ଗଠନ ଓ ମହତାବବାବୁଙ୍କ ପ୍ରତିପତ୍ତି ନଷ୍ଟ କରିବା ଉଦ୍ୟମରେ ଲାଗି ପଡ଼ିଥାନ୍ତି । ଗଡ଼ଜାତ ରାଜା ଜମିଦାରମାନେ ଇଂରେଜ ସରକାରଙ୍କ ହାତବାରିସ ହୋଇ ଜାତୀୟ ଆନ୍ଦୋଳନକୁ ବିରୋଧ କରୁଥିଲେ । ଏହି ପ୍ରତିକ୍ରିୟାଶୀଳ ଦେଶଦ୍ରୋହୀମାନଙ୍କ ବିରୁଦ୍ଧରେ 'ପ୍ରଜାତନ୍ତ୍ର' ନିରବଚ୍ଛିନ୍ନ ଭାବରେ ସ୍ବର ଉତ୍ତୋଳନ କରି ଆସୁଥିଲା । ତାଳଚେର, ନୀଳଗିରି, କନିକା, ରଣପୁର, ଢେଙ୍କାନାଳ ଆଦି ଗଡ଼ଜାତ ରାଜ୍ୟରେ ପ୍ରଜା ଆନ୍ଦୋଳନ ଦମନ ପାଇଁ ସରକାର ପ୍ରଜାମାନଙ୍କ ଉପରେ ଅମାନୁଷିକ ଅତ୍ୟାଚାର ଚଳାଉଥିଲେ । ଏହି ଆନ୍ଦୋଳନ ଓ ଅତ୍ୟାଚାର ସମ୍ପର୍କରେ ମହତାବବାବୁ ଲେଖାମାନ ପ୍ରକାଶ କରି ଆନ୍ଦୋଳନକୁ ତେଜେଇ ରଖିଥିଲେ । ରାଜା ଜମିଦାରମାନଙ୍କ ଶୋଷଣ, ଅତ୍ୟାଚାର ପଦାରେ ପଡ଼ିଯାଉଥିବା ଫଳରେ ଗଡ଼ଜାତ ରାଜାମାନେ, ବିଶେଷତଃ କନିକା ଓ ନୀଳଗିରି ରାଜାମାନେ 'ପ୍ରଜାତନ୍ତ୍ର'କୁ ଲୋପ କରିଦେବା ପାଇଁ ନାନା ଷଡ଼ଯନ୍ତ୍ର ଚଳାଇ-ଥିଲେ । ଘୋର ଅର୍ଥାଭାବ ମଧ୍ୟରେ ମହତାବବାବୁ ବହୁ କଷ୍ଟରେ ପତ୍ରିକାଟି ବଞ୍ଚାଇ ରଖିଥିଲେ ।

୧୯୨୪ରୁ ୧୯୩୨ ମସିହା ମଧ୍ୟରେ 'ପ୍ରଜାତନ୍ତ୍ର' ବିରୁଦ୍ଧରେ ଦୁଇଟି ମକଦ୍ଦମା ହୋଇଥିଲା । ନୀଳଗିରି ପ୍ରଜା ଆନ୍ଦୋଳନ ସମ୍ପର୍କରେ ଲେଖା ପ୍ରକାଶିତ ହୋଇ ଥିବାରୁ ପ୍ରିନ୍‌ସେସ୍ ପ୍ରୋଟେକ୍ସନ ଆକ୍ଟ ଅନୁସାରେ ଏକ ମୋକଦ୍ଦମା କରାଯାଇଥିଲା । ଜିଲ୍ଲା ମାଜିଷ୍ଟ୍ରେଟ୍ ସମ୍ପାଦକଙ୍କୁ ତାଗିଦ୍ କରି ଛାଡ଼ି ଦେଇଥିଲେ । ଆଉ ଏକ ମାନହାନି ମକଦ୍ଦମା କରିଥିଲେ ବାମଣ୍ଡାର ଦେଓ୍ବାନ । ବାମଣ୍ଡା ଶାସନ ସମ୍ପର୍କରେ କେତେକ ଲେଖା ପ୍ରକାଶ ପାଇଥିବାରୁ ଦେଓ୍ବାନ୍ ସମ୍ବଲପୁରରେ ଏହି ମକଦମା କରିଥିଲେ । ସେତେବେଳେ ପ୍ରଜାତନ୍ତ୍ରର ସମ୍ପାଦକ ଥିଲେ କମଳାକାନ୍ତ ମହାପାତ୍ର । ସେ ଅସୁସ୍ଥ ହୋଇ ରାଞ୍ଚିରେ ରହୁଥିବାରୁ ତାଙ୍କ ନାମରେ ସମନ ଜାରି ହୋଇପାରି ନଥିଲା । ମକଦମାଟି ଉଠାଇ ନିଆଯାଇଥିଲା ।

୧୯୨୫ରେ ମହତାବବାବୁ ବାଲେଶ୍ବର ସ୍ବରାଜ୍ୟ ମନ୍ଦିରରୁ 'ସ୍ବରାଜ ସମାଚାର' ନାମରେ ଏକ ସାପ୍ତାହିକ ଲିଥୋ ପତ୍ରିକା ପ୍ରକାଶ କରି ସ୍ବାଧୀନତା ଆନ୍ଦୋଳନର ବାର୍ତ୍ତା ଘରିଆଡ଼େ ପ୍ରଚାର କରୁଥିଲେ । ୧୯୨୭ରେ ସେ 'ଆଡ୍‌ଭେଞ୍ଚର' ନାମରେ ଏକ ଇଂରାଜୀ ସାପ୍ତାହିକ ପତ୍ରିକା ମଧ୍ୟ ପ୍ରକାଶ କରିଥିଲେ । ଏହି ପତ୍ରିକା ପ୍ରକାଶର ଉଦ୍ଦେଶ୍ୟ ଥିଲା ଇଂରେଜ କର୍ମଚାରୀମାନଙ୍କୁ ପ୍ରଭାବିତ କରିବା ପାଇଁ ଲୋକମତ ସୃଷ୍ଟି ।

୧୯୨୭ ମସିହାରେ ଯାଜପୁର ଓ ବାଲେଶ୍ୱରରେ ପ୍ରଳୟଙ୍କରୀ ବନ୍ୟା ବିପର୍ଯ୍ୟୟ ସମୟରେ 'ପ୍ରଜାତନ୍ତ୍ର' ସରକାରୀ ଉଦାସୀନତାର କଠୋର ସମାଲୋଚନା କରୁଥିଲା । ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ସମ୍ପର୍କରେ ବିବରଣୀ ଫଟୋ ସହ ପ୍ରକାଶିତ ହେଉଥିଲା ।

ସେତେବେଳେ ପ୍ରଜାତନ୍ତ୍ର ପ୍ରେସ ଓ ପତ୍ରିକା କଂଗ୍ରେସର ଏକ କାର୍ଯ୍ୟକ୍ରମ ଭାବରେ ଚାଲିଥାଏ । ଗୋପବନ୍ଧୁ ଚଉଧୁରୀ ମଝିରେ ମଝିରେ ନିଜ ହାତରେ ମେସିନ୍ ଚଳାଇ କାଗଜ ବାହାର କରୁଥିଲେ । ମହତାବବାବୁ, କରୁଣାକର ପାଣିଗ୍ରାହୀ, ଉପେନ୍ଦ୍ର ପଣ୍ଡା, ବିଶ୍ୱନାଥ ହୋତା, ନନ୍ଦକିଶୋର ଦାସ ପ୍ରମୁଖ ଦରକାର ବେଳେ ମେସିନ ଚଳାଇବାଠାରୁ ଆରମ୍ଭ କରି କାଗଜ ବିକ୍ରୀ କରିବା ପର୍ଯ୍ୟନ୍ତ ସବୁ କାମ କରୁଥିଲେ । ସେମାନେ ଅନେକଥର ଘରର ଗହଣା ବନ୍ଧା ପକାଇ 'ପ୍ରଜାତନ୍ତ୍ର'କୁ ବଞ୍ଚାଇ ରଖିଥିଲେ । କଲିକତାର ପଦ୍ମଲୋଚନ ମହାନ୍ତି, ବୃନ୍ଦାବନ ମହାନ୍ତି, ଭୂୟାଁ ଭୀମର ଚନ୍ଦ୍ର ମହାପାତ୍ର ପ୍ରମୁଖ ବହୁ ଶୁଭେଚ୍ଛୁ ପ୍ରଜାତନ୍ତ୍ରକୁ ସାହାଯ୍ୟ ସହଯୋଗ କରି ଆସୁଥିଲେ । 'ପ୍ରଜାତନ୍ତ୍ର'ର କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଲିଖିତ 'ପଞ୍ଚାମୃତ', ନନ୍ଦକିଶୋର ଦାସଙ୍କ 'ବହୁରୂପୀ' ନାଟକ ଓ ମହତାବବାବୁଙ୍କ 'ବୁଲି ବାବାଜୀଙ୍କ ପତ୍ର' ସେକାଳରେ ରାଜନୈତିକ କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟି କରିଥିଲା । ମହତାବବାବୁ ନିଜେ ମଧ୍ୟ କେତେବର୍ଷ 'ପ୍ରଜାତନ୍ତ୍ର' ସମ୍ପାଦନା କରିଥିଲେ । କମଳାକାନ୍ତ ଜେଲ ଯିବା ପରେ ରମେଶ ଚନ୍ଦ୍ର ମହାନ୍ତି କିଛିଦିନ ସମ୍ପାଦକ ଥିଲେ । ସେ କାରାବରଣ କରିବାରୁ ଉପେନ୍ଦ୍ର ପଣ୍ଡା ସମ୍ପାଦକ ହେଲେ ।

ପ୍ରଜାତନ୍ତ୍ରର ବଳିଷ୍ଠ ନେତୃତ୍ୱରେ ୧୯୩୦ ଲବଣ ସତ୍ୟାଗ୍ରହରେ ଓଡ଼ିଶା ଭାରତରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲା । ଏହି ସମୟରେ ବ୍ରିଟିଶ ସରକାର ସ୍ୱରାଜ୍ୟ ମନ୍ଦିର ହତାକୁ ବେଆଇନ ଘୋଷଣା କରି ପ୍ରେସକୁ ଜବତ କରିନେଲେ । ପ୍ରେସକୁ ତିନିହଜାର ଟଙ୍କା ଓ ଖବରକାଗଜକୁ ଦୁଇହଜାର ଟଙ୍କା ଜାମିନ ରଖାଗଲା । ପରେ ଗାନ୍ଧୀ-ଇରଉଇନ୍ ଚୁକ୍ତି ଫଳରେ ପ୍ରେସ ଅବଶ୍ୟ ମୁକ୍ତ ହୋଇଥିଲା, କିନ୍ତୁ ୧୯୩୨ ମସିହା ସତ୍ୟାଗ୍ରହ ବେଳେ ସ୍ୱରାଜ୍ୟ ମନ୍ଦିର ପୁଣି ଜବତ ହୋଇ ଆଉ ଫେରିଲା ନାହିଁ । ବର୍ଷାଧିକ କାଳ ପ୍ରେସ ପୋଲିସ ଜିମାରେ ରହିବା ଫଳରେ ବହୁ ଜିନିଷପତ୍ର ଚୋରି ହୋଇଗଲା । ୧୯୩୩ ମସିହାରେ ସ୍ୱରାଜ୍ୟ ମନ୍ଦିର ମୁକ୍ତ ହେବା ପରେ ମହତାବବାବୁ 'ପ୍ରଜାତନ୍ତ୍ର' ବନ୍ଦ କରିଦେଇ ପ୍ରେସକୁ ଶ୍ରୀକୃଷ୍ଣ ଦେଙ୍କୁ ବିକ୍ରୀ କରିଦେଲେ । ସେତେବେଳେ ମହତାବବାବୁ ଏକ ପତ୍ରରେ କରୁଣାକର ପାଣିଗ୍ରାହୀଙ୍କୁ ଲେଖିଥିଲେ— "ଆଖିରୁ ଦୁଇବିନ୍ଦୁ ଲୁହ ଗଡ଼ାଇ ମୁଁ ଏ ସିଦ୍ଧାନ୍ତ କଲି । କିନ୍ତୁ 'ପ୍ରଜାତନ୍ତ୍ର' କେବେ ମରିବ ନାହିଁ । ଏହାର ତପସ୍ୟା ବଳରେ ଏ ବୀଜ ପୁଣି ସମସ୍ତ ଗୁପ ଭେଦ କରି ଏକ ବୃହତ୍ ବୃକ୍ଷ ହେବ ।"

'ପ୍ରଜାତନ୍ତ୍ର'ର ତ୍ୟାଗ ଓ ସଂଗ୍ରାମମୟ ପ୍ରଥମ ପର୍ଯ୍ୟାୟ ଏହିଠାରେ ଶେଷ ହେଲା । ଉପେନ୍ଦ୍ର ପଣ୍ଡାଙ୍କ ଭାଷାରେ, 'ପତ୍ରିକାର ଗୌରବ ରକ୍ଷା ଲାଗି ସମସ୍ତେ ମନପ୍ରାଣ ଢାଳି

ନେଉଥିଲେ । ଭୋଜନ ବ୍ୟତୀତ ଅନ୍ୟପ୍ରକାର ପାରିଶ୍ରମିକ ଗ୍ରହଣ କରୁନଥିଲେ । ଅଫିସର ଗୋଟିଏ କୋଣରେ ମୋର ବିଛଣାପତ୍ର ଗୁଡ଼ା ହୋଇ ରହୁଥିଲା । କେବଳ ରାତି ୧୧ଟାରେ ମେଲ୍ ହୁଏ ଏବଂ ଭୋର ୫ଟାରେ ବନ୍ଧା ହୋଇ ଅଫିସ ଟେବୁଲ ତଳେ ରହେ । ପ୍ରତ୍ୟହ ଭୋଜନରେ ମଧ୍ୟ ଅନଟନ । ବେଳେ ବେଳେ ଉପବାସରେ ଦିନ କଟିଯାଉଥିଲା । କାଗଜ ପଠାଇବାକୁ ଡାକଟିକେଟ ପାଇଁ ଅର୍ଥାଭାବ ହେଲେ ବନ୍ଧୁଙ୍କର ପକେଟ ଅଣ୍ଟାଳିବାଠାରୁ ନିଜର ସୁନାମୁଦି ବନ୍ଧା ପର୍ଯ୍ୟନ୍ତ ଯାଉଥିଲା ।

ପ୍ରଥମ ପର୍ଯ୍ୟାୟ 'ପ୍ରଜାତନ୍ତ୍ର' ପ୍ରକାଶନ ବନ୍ଦ ହେବାର ୧୫ ବର୍ଷ ପରେ— ୧୯୪୭ ମସିହା ସ୍ୱାଧୀନତାର ନବୀନ ସୂର୍ଯ୍ୟ ଜନପ୍ରାଣରେ ନୂତନ ଆଶା ଉତ୍ସାହର ଆଲୋକ ଖେଳାଇ ଦେଲା । ଦେଶ ଗଠନ ଓ ଜାତିର ବିକାଶ ପାଇଁ ଗୁରୁଆଡ ବ୍ୟାକୁଳତା । ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ସଙ୍ଗେ ସଙ୍ଗେ କଂଗ୍ରେସ ମତବାଦ, କାର୍ଯ୍ୟକ୍ରମ ଓ ଲୋକମତ ସଙ୍ଗଠନ ଉଦ୍ଦେଶ୍ୟରେ ଗୋଟିଏ ସମ୍ବାଦପତ୍ର ପ୍ରକାଶ ପାଇଁ ମହତାବ ବାବୁ, ନିତ୍ୟାନନ୍ଦ କାନୁନ୍‌ଗୋ ଓ ନବକୃଷ୍ଣ ଚୌଧୁରୀ ସ୍ଥିର କଲେ । ନିତ୍ୟାନନ୍ଦ ବାବୁ ଏଥିପାଇଁ ଏକହଜାର ଟଙ୍କା ଦାନ ଦେଲେ । ସମ୍ବାଦପତ୍ର ପ୍ରକାଶନ ଦାୟିତ୍ୱ ନେଲେ ମହତାବ ବାବୁ । ସେତେବେଳେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ସନ୍ଧ୍ୟା ୫ଟାରୁ ରାତି ୧୨ଟା ପର୍ଯ୍ୟନ୍ତ ସେ ଏ କାମରେ ଲାଗିଗଲେ ।

ଦ୍ୱିତୀୟ ପର୍ଯ୍ୟାୟ 'ପ୍ରଜାତନ୍ତ୍ର' ପ୍ରକାଶ ସମ୍ପର୍କରେ ମହତାବଜୀ ଲେଖିଛନ୍ତି— "ଏହା ଏକ ସମ୍ପୂର୍ଣ୍ଣ ନୂତନ ଉଦ୍ୟମ । ନୂତନ ପରିସ୍ଥିତିରେ ଓ ନୂତନ ଉଦ୍ଦେଶ୍ୟ ଘେନି ଏ ସମ୍ବାଦପତ୍ର ପ୍ରକାଶ କରିବାର ହେଲା । ୧୯୩୫ ମସିହାରୁ ବନ୍ଦ ହୋଇଥିବା 'ପ୍ରଜାତନ୍ତ୍ର' ନାମଟି ଏ ସମ୍ବାଦପତ୍ରକୁ ମୁଁ ଦେଇଛି, କେବଳ ନିଜକୁ ଅତୀତ ସହିତ ସଂପୃକ୍ତ କରି ରଖିବା ପାଇଁ । ନୂତନ 'ପ୍ରଜାତନ୍ତ୍ର'ର ପ୍ରକାଶ ଦାୟିତ୍ୱ ମୋ ଉପରେ ଲଦିଥିଲେ ନବକୃଷ୍ଣ ଚୌଧୁରୀ ଓ ନିତ୍ୟାନନ୍ଦ କାନୁନ୍‌ଗୋ । ସମ୍ବାଦପତ୍ରଟି ପ୍ରକାଶିତ ହେବା ପରେ ମୁଁ ଶାସନ କାର୍ଯ୍ୟରେ ଥାଇ ପୁଣି ସମ୍ବାଦକତାର ସମସ୍ତ ହେବାକୁ ପରିଶ୍ରମ କରିବାକୁ ବାଧ୍ୟ ହେଲି । ସେହିଦିନୁ ମୁଁ 'ପ୍ରଜାତନ୍ତ୍ର' ସହିତ ଜଡ଼ିତ । ଭଲମନ୍ଦ, ଲାଭ-କ୍ଷତି ସବୁ ପାଇଁ ମୁଁ ଦାୟୀ । ଏ ପତ୍ରିକାଟି ମୋର ଅନେକ ବନ୍ଧୁ ସୃଷ୍ଟି କରିଛି । କିନ୍ତୁ କାହାରି ଶତ୍ରୁତାକୁ ଭୟ ନକରି କେବଳ ଲୋକମତକୁ ଆଖି ଆଗରେ ରଖି ଓଡ଼ିଶାର ସର୍ବାଙ୍ଗୀନ ସାଂସ୍କୃତିକ ଉନ୍ନତି ସାଧନ ପାଇଁ ଯାହା ଆବଶ୍ୟକ ବୋଲି ମନେ କରିଛି, ତଦନୁସାରେ 'ପ୍ରଜାତନ୍ତ୍ର'କୁ ପରିଚାଳନା କରିଛି ।"

୧୯୪୭ ଅଗଷ୍ଟ ୭ ତାରିଖ ରାତିରେ 'ପ୍ରଜାତନ୍ତ୍ର'ର ନବଜନ୍ମ ହେଲା କଟକ ବାଲୁବଜାରସ୍ଥ ଦାଶରଥି ପ୍ରେସରେ । ସେହି ବର୍ଷ ସେପ୍ଟେମ୍ବର ମାସରେ ବିହାରୀବାଗରେ ମୋତିଲାଲ ପଣ୍ଡିତଙ୍କ ଦାନ ଜମିରେ ପ୍ରଜାତନ୍ତ୍ର ଭବନର ଭିତ୍ତିସ୍ଥାପନ କଲେ ମହତାବବାବୁଙ୍କ ଜେଲ ସାଥି ତତ୍କାଳୀନ କଂଗ୍ରେସ ସାଧାରଣ ସମ୍ପାଦକ

ଶଙ୍କର ବର୍ମ୍ମ ଦେଇ । ଏହା ପୂର୍ବରୁ ଛାଉନ ସାଇଜ ଥିଲା । ଦୁଇଟି ଫ୍ଲାଟବେଡ଼ ମେସିନ ଆସିବା ପରେ ଏହାର ଆକାର ଡ଼ିମାଇ ହେଲା । ଓଡ଼ିଶାରେ 'ପ୍ରଜାତନ୍ତ୍ର' ହିଁ ସର୍ବପ୍ରଥମ ଡ଼ିମାଇ ସାଇଜ ଦୈନିକ ସମ୍ବାଦପତ୍ର ।

୧୯୪୭ ନଭେମ୍ବର ୧୮ ତାରିଖରେ ନିଜସ୍ୱ ପ୍ରେସ୍‌ରୁ ଦ୍ୱିତୀୟ ପର୍ଯ୍ୟାୟରେ ପ୍ରଜାତନ୍ତ୍ର ପ୍ରକାଶିତ ହେଲା । ସେହିଦିନ ନୀଳଗିରି ଶାସନଭାର ଓଡ଼ିଶା ସରକାର ଗ୍ରହଣ କଲେ । ସେହିଦିନ ହୀରାକୁଦ ବନ୍ଧ ଯୋଜନାର ଚୁକ୍ତି ଦିଲ୍ଲୀରେ ସ୍ୱାକ୍ଷରିତ ହେଲା । ମହତାବବାବୁ ଦିଲ୍ଲୀରେ ଏବଂ ନବକୃଷ୍ଣ ଚୌଧୁରୀ ନୀଳଗିରି କାର୍ଯ୍ୟକ୍ଷେତ୍ରରେ ରହିଥିବାରୁ ଧୀରେନ୍ଦ୍ରବାବୁ ଓ ବୀରେନ ମିତ୍ର 'ପ୍ରଜାତନ୍ତ୍ର' ପ୍ରକାଶନ ଦାୟିତ୍ୱରେ ଥିଲେ । ସେମାନେ ମେସିନରେ ଛପିବାଠାରୁ ଆରମ୍ଭ କରି ବଜାରରେ ଖବରକାଗଜ ବିକ୍ରୀ କରିବା ପର୍ଯ୍ୟନ୍ତ ସବୁ କାମ କରୁଥିଲେ । ଦ୍ୱିତୀୟ ପର୍ଯ୍ୟାୟ 'ପ୍ରଜାତନ୍ତ୍ର' କେବଳ କଂଗ୍ରେସର ରାଜନୈତିକ ମୁଖପତ୍ର ହିସାବରେ ନୁହେଁ ଏକ ସାଂସ୍କୃତିକ ଅନୁଷ୍ଠାନର ମୁଖପତ୍ର ରୂପରେ ପ୍ରକାଶିତ ହେଲା । ଭୈରବଚନ୍ଦ୍ର ମହାନ୍ତି ହେଲେ ଏହାର ପ୍ରଥମ ସମ୍ପାଦକ ଏବଂ ନରେନ୍ଦ୍ର ଚନ୍ଦ୍ର ପ୍ରଧାନ ପ୍ରକାଶକ ଓ ମୁଦ୍ରାକର । 'ପ୍ରଜାତନ୍ତ୍ର'ର ଜଣେ ପୁରାତନ କର୍ମୀ ବନମାଳି ପଟ୍ଟନାୟକ ସେଦିନର ସ୍ମୃତିଚାରଣ କରି ଲେଖିଛନ୍ତି—"କି ଆନନ୍ଦ, କି ଉତ୍ସାହ । ନବକୃଷ୍ଣ ଚୌଧୁରୀ ପ୍ରଭୃତି କଟକ ବଜାରରେ ବୁଲି ବୁଲି ଯାଇ କାଗଜ ବିକିଛନ୍ତି । ଆଗେଇ ଆସିଲେ ଅନେକ ଯୁବକ । କ୍ରମେ 'ପ୍ରଜାତନ୍ତ୍ର' ଆଗେଇ ଚାଲିଲା । ବହୁ ଯୁବକ ଯୋଗ ଦେଲେ । ବିଭିନ୍ନ ବିଭାଗ ଖୋଲିଲା । ସେହି ପ୍ରଜାତନ୍ତ୍ରରୁ ସୃଷ୍ଟି ହେଲେ ଭୈରବ ଚନ୍ଦ୍ର ମହାନ୍ତି । ସେ ହେଉଛନ୍ତି ପ୍ରଥମ ସମ୍ପାଦକ । ପରେ ଦାୟିତ୍ୱ ନେଲେ ଚିନ୍ତାମଣି ପାଣିଗ୍ରାହୀ । ତାଙ୍କ ପରେ ଜାନକୀବଲ୍ଲଭ ପଟ୍ଟନାୟକ । ଆଜି ଯେଉଁମାନେ ସାଧାରଣ କ୍ଷେତ୍ରରେ ସାହିତ୍ୟିକ ଭାବରେ କିଛି ପ୍ରତିଷ୍ଠା ଲାଭ କରିଛନ୍ତି, 'ପ୍ରଜାତନ୍ତ୍ର' ସେମାନଙ୍କ ସାଧନାର କ୍ଷେତ୍ର ହୋଇଛି । 'ପ୍ରଜାତନ୍ତ୍ର' ବହୁ ବନ୍ଧୁ ସୃଷ୍ଟି କରିପାରିଛି । ବହୁ ଶତ୍ରୁ ବି ସୃଷ୍ଟି ହୋଇଛନ୍ତି । ମହତାବବାବୁଙ୍କୁ ଯେ ଭଲଭାବେ ଜାଣିଛି, ସେ କହିପାରିବ ଯେ ତାଙ୍କର ମୋହ ନାହିଁ କି ମାୟା ନାହିଁ । ତାଙ୍କର ସମସ୍ତେ ସନ୍ତାନ । କିନ୍ତୁ 'ପ୍ରଜାତନ୍ତ୍ର'ଟି ତାଙ୍କର ଏକମାତ୍ର ସନ୍ତାନ । ଏକମାତ୍ର ସନ୍ତାନ ଯେପରି ଅଳିଅଳ ହୋଇ ଉଠେ, କାହାରିକୁ ମାନେ ନାହିଁ, ଆଜି 'ପ୍ରଜାତନ୍ତ୍ର'ର ସେହି ଅବସ୍ଥା । 'ପ୍ରଜାତନ୍ତ୍ର' ବହୁ ସେବା କରିଛି । ନୂତନ ସାହିତ୍ୟ ଯୋଗାଇଛି । ନୂତନ ନେତୃତ୍ୱ ବି ଦେଇଛି । ଶକ୍ତିଶାଳୀ ଲେଖନୀ ଦ୍ୱାରା ସରକାର ଭାଙ୍ଗିଛି, ଗଢ଼ିଛି, ଚମକ ସୃଷ୍ଟି କରିଛି । ଏହାହିଁ 'ପ୍ରଜାତନ୍ତ୍ର'ର ସାଧନାମୟ ଇତିବୃତ୍ତି ।"

ଦ୍ୱିତୀୟ ପର୍ଯ୍ୟାୟ 'ପ୍ରଜାତନ୍ତ୍ର'ର ପ୍ରଥମ ସମ୍ପାଦକ ଭୈରବଚନ୍ଦ୍ର ମହାନ୍ତିଙ୍କ ଭାଷାରେ—"ପ୍ରଜାତନ୍ତ୍ର ମହତାବବାବୁଙ୍କ ମାନସ ପୁତ୍ର । କୌଣସି ପିତା ବୋଧହୁଏ ତାର ଶିଶୁପୁତ୍ର ବିଷୟରେ ଏତେ ଚିନ୍ତା କରେ ନାହିଁ—ଯେତେ ମହତାବ ବାବୁ କରନ୍ତି । 'ପ୍ରଜାତନ୍ତ୍ର ପାଇଁ କଟକରେ ଏପରି କୌଣସି ଦିନ ମୋର ମନେ ପଡ଼ୁନାହିଁ,

ଯେଉଁଦିନ ସେ ପୂର୍ବାହ୍ଣରେ ସେକ୍ରେଟେରୀଏଟ୍‌କୁ ଦିବା ପୂର୍ବରୁ ଓ ସେଠାରୁ କାର୍ଯ୍ୟ ଶେଷ କରି 'ପ୍ରଜାତନ୍ତ୍ର ଅଫିସ୍‌କୁ ଆସି ଘଣ୍ଟା ଘଣ୍ଟା ଅନ୍ୟମାନଙ୍କ ସହିତ 'ପ୍ରଜାତନ୍ତ୍ରର ଭବିଷ୍ୟତ ଉନ୍ନତି ବିଷୟରେ ଆଲୋଚନା ନ କରିଛନ୍ତି । ଆହୁରି ଆଲୋଚନା ହୁଏ ବହୁ ରାଜନୈତିକ, ସାହିତ୍ୟିକ, ସାଂସ୍କୃତିକ ବିଷୟ ମଧ୍ୟ । ରାତି ୯ଟା କିମ୍ବା ୧୦ଟା ବେଳେ କୋଠିକୁ ଫେରି ସେହି ରାତିରେ କିମ୍ବା ତା' ପରଦିନ ସକାଳେ ଅନ୍ୟ କୌଣସି କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ କିଛି ନା କିଛି ପ୍ରଜାତନ୍ତ୍ର ପାଇଁ ଲେଖି ପଠାଇବା ପ୍ରଥମ କାର୍ଯ୍ୟ ।

ବିଭିନ୍ନ ପାଠକଙ୍କୁ ସନ୍ତୁଷ୍ଟ କରିବାକୁ ହେବ, ସେଥିପାଇଁ ସ୍ଥିର ହେଲା 'ପ୍ରଜାତନ୍ତ୍ର'ର କ୍ରୀଡ଼ା ଜଗତ, ମୀନାବଜାର, ନାରୀଜଗତ ଓ ରବିବାର ପ୍ରଜାତନ୍ତ୍ର ଆଦି ବିଭାଗ ରହିବ । ଏ ଦିଗରେ 'ପ୍ରଜାତନ୍ତ୍ର' ଓଡ଼ିଆ ସାମ୍ବାଦିକତାର ପଥପ୍ରଦର୍ଶକ । କୌଣସି ଭଲ କାର୍ଯ୍ୟ କରିବାର ସୂଚନା ପାଇଲେ ତାକୁ କାର୍ଯ୍ୟକାରୀ କରିବାର ନିଷ୍ପତ୍ତି ନେବାରେ ମହତାବ ବାବୁ ସମୟ ନେବାର ଦେଖିନାହିଁ ।"

'ପ୍ରଜାତନ୍ତ୍ର'ରେ ନିଜର ଦୀର୍ଘ ୧୮ ବର୍ଷର ଅଭିଜ୍ଞତା ସ୍ମରଣ କରି ପୂର୍ବତନ ସମ୍ପାଦକ ଜାନକୀବଲ୍ଲଭ ପଟ୍ଟନାୟକ ଲେଖିଛନ୍ତି—"ଏ ଅନୁଷ୍ଠାନ କେବଳ ଏକ ସମ୍ବାଦପତ୍ର ଅନୁଷ୍ଠାନ ନଥିଲା । ଓଡ଼ିଶାର ସାଧାରଣ ଜୀବନରେ ଉତ୍ତୀର୍ଣ୍ଣ ବହୁ ଶିକ୍ଷିତ ଯୁବକଙ୍କର ଏହା ଥିଲା ପ୍ରାଣ କେନ୍ଦ୍ର । ଓଡ଼ିଶାର ଶାସନ ସେକ୍ରେଟେରିଏଟରେ ଚାଲୁଥିଲେ ମଧ୍ୟ ତା'ର ଭାଗ୍ୟ ନିୟନ୍ତ୍ରଣ ପାଇଁ ବହୁ ସିଦ୍ଧାନ୍ତ ଏଠାରେ ଆଲୋଚିତ ହୋଇ ଗୃହୀତ ହେଉଥିଲା । ଏହାର କର୍ତ୍ତୃତ୍ୱ ଓ ନେତୃତ୍ୱରେ ଥିଲେ ମହତାବବାବୁ । ଆମ୍ଭେ-ମାନେ ମୁଖ୍ୟତଃ ସମ୍ବାଦପତ୍ରରେ କାର୍ଯ୍ୟ କରୁଥିଲେ ମଧ୍ୟ ତତ୍କାଳୀନ ଓଡ଼ିଶାର ରାଜନୀତି, ଅର୍ଥନୀତି, ଶାସନ ଓ ସମାଜ ରଚନାରେ ନିଜକୁ ଅଂଶୀଦାର ମନେ କରୁଥିଲୁ ।

ସେତେବେଳେ ନୂଆ ଓଡ଼ିଶା ଗଠନରେ 'ପ୍ରଜାତନ୍ତ୍ର' ଏକ ଅସ୍ତ୍ର ରୂପେ କାର୍ଯ୍ୟ କରିଥିଲା । ଗଡ଼ଜାତ ମିଶ୍ରଣ, ହୀରାକୁଦ ବନ୍ଧ ଯୋଜନା ଏବଂ ବିଭିନ୍ନ ସାହସିକ ପଦକ୍ଷେପ ଓ ଅର୍ଥନୈତିକ କାର୍ଯ୍ୟକ୍ରମ ବଳରେ ଓଡ଼ିଶାକୁ ଭାରତର ମାନଚିତ୍ରରେ ପ୍ରତିଷ୍ଠିତ କରାଇବା ପାଇଁ ଯାହା ହେଉଥିଲା, ଏହି ସମ୍ବାଦପତ୍ର ସେଥିପାଇଁ ଜନମତ ସଙ୍ଗଠନର ଥିଲା ଏକ ଶାଣିତ ଅସ୍ତ୍ର । ଓଡ଼ିଶାର ତତ୍କାଳୀନ ବହୁ କ୍ଷୁଦ୍ର ଚିନ୍ତା, ରକ୍ଷଣ-ଶୀଳତା ଓ କୁସଂସ୍କାର ବିରୁଦ୍ଧରେ ତାହା ସଫଳ ସ୍ୱର ଉତ୍ତୋଳନ କରିଥିଲା । ବିଶେଷ ଭାବରେ ସ୍ମରଣ କରିବାର କଥା ଏଠାରେ କାର୍ଯ୍ୟ କରିବାର ସ୍ୱାତନ୍ତ୍ର୍ୟ । ଅତି ତରୁଣ ବୟସରେ ମହତାବବାବୁ ଯୁବକମାନଙ୍କୁ ଯେଉଁ ଦାୟିତ୍ୱ ଦେଉଥିଲେ ଏବଂ ଯେପରି ବିଶ୍ୱାସ ସ୍ଥାପନ କରୁଥିଲେ ତାହା ତାଙ୍କର କାର୍ଯ୍ୟ କରିବାର କୌଶଳ ଓ ନିଜଶକ୍ତି ଉପରେ ବିଶ୍ୱାସର ପ୍ରମାଣ ଦିଏ ।

କାକଟପାଟୋଦାରେ ବାବାଜୀମାନଙ୍କ ବିରୁଦ୍ଧରେ ଆନ୍ଦୋଳନ, ୧୯୫୪ର ମନ୍ତ୍ରୀ ଓ ୧୯୫୫ ମସିହାର ପ୍ରଳୟଙ୍କରୀ ବନ୍ୟାରେ ସରକାରୀ କଳର ଅପାରଗତା, ୧୯୫୬ର ସୀମା ଆନ୍ଦୋଳନ ଆଦିରେ 'ପ୍ରଜାତନ୍ତ୍ର'ର ନିର୍ଭୀକ ଭୂମିକା ଏହାକୁ ଅତ୍ୟନ୍ତ ଲୋକପ୍ରିୟ କରାଇ ପାରିଥିଲା । ୧୯୬୪ ମସିହାର ଛାତ୍ର ଆନ୍ଦୋଳନ ଓ ତାହା ସେତେବେଳେ ଗଣ ଆନ୍ଦୋଳନରେ ପରିଣତ ହେଲା, 'ପ୍ରଜାତନ୍ତ୍ର' ଥିଲା ତା'ର ପ୍ରଧାନ ପ୍ରାଣକେନ୍ଦ୍ର । ନିର୍ଦ୍ଦିଷ୍ଟ ରାଜନୈତିକ ଆଭିମୁଖ୍ୟରେ ମହତାବବାବୁ 'ପ୍ରଜାତନ୍ତ୍ର' ଆରମ୍ଭ କରିଥିଲେ ମଧ୍ୟ ସ୍ୱାର୍ଥପରତା କ୍ଷେତ୍ରରେ ସେ ଯେଉଁ ସ୍ୱାଧୀନତା ଦେଇଥିଲେ, ତାହା ଉଲ୍ଲେଖଯୋଗ୍ୟ ।"

ଡଃ ମହତାବ ଓ 'ପ୍ରଜାତନ୍ତ୍ର'ର ନିରବଚ୍ଛିନ୍ନ ଉଦ୍ୟମ ଫଳରେ ଓଡ଼ିଶାର ଗଡ଼ଜାତ ମିଶ୍ରଣ, ଭୁବନେଶ୍ୱରରେ ନୂତନ ରାଜଧାନୀ ନିର୍ମାଣ, ହୀରାକୁଦ ଜଳବିଦ୍ୟୁତ୍ ଯୋଜନା, ଓଡ଼ିଆ ଟେକ୍ସଟାଇଲ ମିଲ୍, ଓଡ଼ିଶା ବିଧାନସଭା, ମ୍ୟୁଜିୟମ, ସେକ୍ରେଟେରିଏଟ ନିର୍ମାଣ, ସାହିତ୍ୟ, ସଙ୍ଗୀତ ଓ ଲଳିତ କଳା ଏକାଡେମୀ, ଭୁବନେଶ୍ୱର କଳାମଣ୍ଡପ, ଉତ୍କଳ ବିଶ୍ୱବିଦ୍ୟାଳୟ, କଳାବିକାଶ କେନ୍ଦ୍ର, କଟକ ବେତାରକେନ୍ଦ୍ର, ବାରବାଟି ଷ୍ଟାଡ଼ିୟମ, କୃଷି ବିଶ୍ୱବିଦ୍ୟାଳୟ, ରାଷ୍ଟ୍ରଭାଷା ପ୍ରଚାର ସଭା, ରାଉରକେଲା ଇସ୍ପାତ କାରଖାନା, ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା, ପାରାଦ୍ୱୀପ ବନ୍ଦର, ନନ୍ଦନକାନନ, ଭୁବନେଶ୍ୱର ରାଜଭବନ, ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠା ଆଦି କାର୍ଯ୍ୟ ସମ୍ଭବ ହୋଇଛି । ରାଜ୍ୟର ବହୁମୁଖୀ ପ୍ରଗତିରେ 'ପ୍ରଜାତନ୍ତ୍ର'ର ଅବଦାନ ସ୍ମରଣୀୟ ହୋଇ ରହିବ ।

ବିସ ଜାତୀୟକରଣ, ପ୍ରଜାସତ୍ତ୍ୱ ଆଇନ ପ୍ରଣୟନ, ଜମିଦାରୀ ଉଚ୍ଛେଦ ଆଦି ବୈପ୍ଳବିକ ପଦକ୍ଷେପ ପ୍ରଜାତନ୍ତ୍ରର ବଳିଷ୍ଠ ଉଦ୍ୟମର ଫଳ ।

'ପ୍ରଜାତନ୍ତ୍ର' ବହୁ ପ୍ରଗତିଶୀଳ ସରକାର ଗଠନରେ ସହାୟତା କରିଛି । ଦୁର୍ବଳ, ଦୁର୍ନୀତିଗ୍ରସ୍ତ ଓ ସ୍ୱେଚ୍ଛାଚାରୀ ଶାସନର ପତନ ଘଟାଇଛି । 'ପ୍ରଜାତନ୍ତ୍ର' ଅନେକ ସମୟରେ ଦେଶର ଓ ଜାତିର ସ୍ୱାର୍ଥ ରକ୍ଷା ପାଇଁ ବିରୋଧୀ ଦଳର ଭୂମିକା ଗ୍ରହଣ କରି ଆସିଛି । ଜନସାଧାରଣଙ୍କର ସେବା ପାଇଁ ବହୁ ଦୁର୍ଦ୍ଦିନ ଓ ଦୁର୍ଗତିର ମୁକାବିଲା କରିବାକୁ ପଡ଼ିଛି । ୧୯୭୫ର ଜରୁରୀ ପରିସ୍ଥିତି କାଳରେ ସ୍ୱେଚ୍ଛାଚାରୀ ଶାସନର ବିରୋଧ କରି ଏହାର ପ୍ରତିଷ୍ଠାତା ଡକ୍ଟର ମହତାବଙ୍କୁ ଦେଢ଼ବର୍ଷ ଜେଲରେ ବହୁ ନିର୍ଯ୍ୟାତନା ସହିବାକୁ ପଡ଼ିଛି । ସୁଦୀର୍ଘ ୪୬ ବର୍ଷ ଧରି ଏହି ଅନୁଷ୍ଠାନ ବହୁ ପ୍ରତିକୂଳ ପରିସ୍ଥିତି ଓ ପ୍ରତିବନ୍ଧକ ସତ୍ତ୍ୱେ ଜାତୀୟ ଜୀବନର ବିକାଶରେ ନିଜକୁ ଉତ୍ସର୍ଗ କରି ଆସିଛି । ୧୯୬୬ ଫେବ୍ରୁଆରୀ ମାସରେ ତିନ ସପ୍ତାହ ପାଇଁ ତାକୁ କେତେକ କାରଣରୁ ବିଶ୍ରାମ ନେବାକୁ ପଡ଼ିଥିଲା ।

ଯୌତୁକ, ଅସ୍ପୃଶ୍ୟତା, ଦେବମନ୍ଦିରରେ ବଳିପ୍ରଥା ଆଦି ସାମାଜିକ କୁସଂସ୍କାର ବିରୁଦ୍ଧରେ 'ପ୍ରଜାତନ୍ତ୍ର' ସବୁବେଳେ ପ୍ରବଳ ଜନମତ ସୃଷ୍ଟି କରି ଆସିଛି । ଓଡ଼ିଶାର

ସର୍ବାଙ୍ଗୀନ ଉନ୍ନତି ଓ ଗଣତାନ୍ତ୍ରିକ ମୂଲ୍ୟବୋଧର ବିକାଶ ପାଇଁ ନିରବଚ୍ଛିନ୍ନ ଉଦ୍ୟମ ଚଳାଇ ଆସିଛି । ଅନ୍ୟାୟର ପ୍ରତିରୋଧ ଓ ସତ୍ୟର ଉନ୍ମୋଚନ ପାଇଁ ତାକୁ ବହୁ ଘାତପ୍ରତିଘାତର ସମ୍ମୁଖୀନ ହେବାକୁ ପଡ଼ିଛି । ରାଜତନ୍ତ୍ରର ଅବସାନ, ରାଜାମାନଙ୍କ ଭତ୍ତା ଉଚ୍ଛେଦ ପାଇଁ ଏବଂ ଭୂଦାନ ଆନ୍ଦୋଳନ, ପ୍ରତିରକ୍ଷା କ୍ଷେତ୍ରରେ ଦୁର୍ବଳତା ସମ୍ପର୍କରେ ସ୍ୱର ଉତ୍ତୋଳନ କରି ସେ ତୁଙ୍ଗ ନେତାମାନଙ୍କ ସମାଲୋଚନାର ଶରବ୍ୟ ହୋଇଛି । ଦେଶର ଜାଗ୍ରତ ଯୁବସମାଜକୁ ପୁରୋଭାଗରେ ରଖି 'ପ୍ରଜାତନ୍ତ୍ର' ଯୁଗଯୁଗର ଜଡ଼ତା ଓ ଶୋଷଣଶୀଳ ଶକ୍ତି ବିରୁଦ୍ଧରେ ଅବିଶ୍ରାନ୍ତ ସଂଗ୍ରାମ ଚଳାଇ ଆସିଛି । ଜନସେବା, ଜନମତ ପ୍ରକାଶ ଓ ଜନଚେତନା ସୃଷ୍ଟି ତାର ଏକମାତ୍ର ଆଦର୍ଶ । ସମାଜ ଓ ଶାସନରୁ ନୈରାଶ୍ୟ ଓ ଦୁର୍ନୀତି ଦୂର କରିବା ସଙ୍ଗେ ସଙ୍ଗେ ଜାତିଗଠନରେ ଏହି ଅନୁଷ୍ଠାନ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି ।

ମହତାବଙ୍କ ଥିଲେ ଆଧୁନିକ ସାମ୍ବାଦିକତାର ପ୍ରବର୍ତ୍ତକ ଓ ପ୍ରଚାରକ । ସୃଜନଧର୍ମୀ ସମ୍ବାଦ ଓ ସାହିତ୍ୟର ସମନ୍ୱୟରେ ସମ୍ବାଦପତ୍ର ଜଗତରେ ସେ ଏକ ସମ୍ପୂର୍ଣ୍ଣ ନୂତନ ଧାରାର ପ୍ରବର୍ତ୍ତନ କରି ଯାଇଛନ୍ତି । ସାହିତ୍ୟ ଓ ସାମ୍ବାଦିକତାକୁ ସେ ପରସ୍ପରର ପରିପୂରକ ଓ ଅବିଚ୍ଛିନ୍ନ ଅଙ୍ଗ ଭାବରେ ଗ୍ରହଣ କରିଥିଲେ । ୧୯୪୮ରେ ମୀନାବଜାର, ୧୯୪୯ରେ ଝଙ୍କାର ଓ ଇଂରାଜୀ ଦୈନିକ ଇଷ୍ଟର୍ଣ୍ଣ ଟାଇମସ୍, ୧୯୮୧ରେ ସମ୍ବଲପୁରରୁ ପ୍ରାଗଖଣ୍ଡ ପ୍ରକାଶ କରି ସ୍ୱାଧୀନୋତ୍ତର ସାହିତ୍ୟ ଓ ସାମ୍ବାଦିକତା କ୍ଷେତ୍ରରେ ଏକ ନୂତନ ଯୁଗର ଭିତ୍ତି ସ୍ଥାପନ କରିଥିଲେ । ତାଙ୍କର 'ଗାଁ ମଜଲିସ' ସମ୍ବାଦ ସାହିତ୍ୟ କ୍ଷେତ୍ରରେ ଏକ ଅନନ୍ୟ ଓ ଅଭିନବ ସୃଷ୍ଟି । ଏଥିରେ ଦେଶର, ବିଶେଷତଃ ଗାଁଗହଳର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ସମସ୍ୟାକୁ ସର୍ବଜନବୋଧ ସରଳ ଭାଷା ଓ ଶୈଳୀରେ ପ୍ରକାଶ କରି ଜନମତ ଜାଗ୍ରତ କରିବା ସଙ୍ଗେ ସଙ୍ଗେ ଶାସନକୁ ଦିଗ୍‌ଦର୍ଶନ ଦେଇ ଆସୁଥିଲେ । ଏହି 'ଗାଁ ମଜଲିସ' ସ୍ତମ୍ଭଟି ଥିଲା 'ପ୍ରଜାତନ୍ତ୍ର'ର ମୁଖ୍ୟ ଆକର୍ଷଣ ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଶାର ରାଜନୈତିକ, ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ବିକାଶରେ 'ପ୍ରଜାତନ୍ତ୍ର' ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରି ଆସିଛି ।

ସ୍ୱାଧୀନତା ପ୍ରାପ୍ତି ପରେ ରାଜନୀତି କ୍ଷେତ୍ର ଯେତେବେଳେ ବିସ୍ତୃତ ହୋଇଗଲା ଏବଂ ମତପ୍ରକାଶର ଅଧିକାର ସମସ୍ତଙ୍କୁ ମିଳିଲା, ସେତେବେଳେ ସାହିତ୍ୟ ଓ ସାଂସ୍କୃତିକ ସଙ୍ଗଠନର ଆବଶ୍ୟକତା ବିଶେଷ ଅନୁଭୂତ ହୋଇଥିଲା । ଏ ଦିଗରେ 'ପ୍ରଜାତନ୍ତ୍ର' ହିଁ ଓଡ଼ିଶାର ସାଂସ୍କୃତିକ ଜୀବନରେ ଏକ ନୂତନ ଜାଗରଣ ସୃଷ୍ଟି କରି ଓଡ଼ିଆ ସାହିତ୍ୟରେ ନୂତନ ଚେତନା ଓ କର୍ମପ୍ରେରଣା ଜାଗ୍ରତ କରିଥିଲା । ମୁକ୍ତି ଆନ୍ଦୋଳନର ଆବର୍ତ୍ତ ଭିତରେ ଓଡ଼ିଶାର ଗୌରବବୋଧକ ସାଂସ୍କୃତିକ ଧାରା ଯେତେବେଳେ ସ୍ଥିର ଓ

ବପର୍ଯ୍ୟସ୍ତ, ସାଧନାର କ୍ଷେତ୍ର ସଙ୍କୁଚିତ ହୋଇ ସେହି ଅନ୍ଧକାରମୟ ଯୁଗର ସନ୍ଧିକ୍ଷଣରେ 'ପ୍ରଜାତନ୍ତ୍ର' ଅନୁଷ୍ଠାନ ହିଁ ପ୍ରଥମେ ସ୍ୱାଧୀନୋତ୍ତର ଓଡ଼ିଆ ସାହିତ୍ୟ ଓ ସାଂସ୍କୃତିକ ଜଗତରେ ନୂଆ ଜୀବନର ବାର୍ତ୍ତା ଶୁଣାଇଥିଲା । ନୂତନ ଉତ୍ସାହ ଓ ସମ୍ଭାବନାର ପରିବେଶ ପ୍ରସ୍ତୁତ କରିଥିଲା ।

ସ୍ୱାଧୀନତା ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟାକାଶରେ 'ସହକାର', 'ନବଭାରତ', 'ଉତ୍କଳସାହିତ୍ୟ', 'ଚତୁରଙ୍ଗ', 'ଶଙ୍ଖ', 'କୁଙ୍କୁମ', 'ନବୀନ' ଅଳ୍ପକାଳ ପାଇଁ ପୁନରୁଦିତ ହୋଇ ଅସ୍ତମିତ ହୋଇ ଯାଇଥିଲେ । ସ୍କୁଲ, କଲେଜର ସାମୟିକ ମୁଖପତ୍ର ଏବଂ କେଉଁଠି କେତୋଟି ସୌଖୀନ ହାତଲେଖା ପତ୍ରିକା ଛଡ଼ା ତରୁଣ ଲେଖକମାନଙ୍କ ପାଇଁ ସମ୍ଭ୍ରାନ୍ତ ପତ୍ରିକାର ଦ୍ୱାର ଅବରୁଦ୍ଧ । ସାହିତ୍ୟ ସେବା କ୍ଷେତ୍ରରେ ଅନୁକୂଳ ଉତ୍ସାହ ସୃଷ୍ଟି ପାଇଁ ଉପଯୁକ୍ତ ସଙ୍ଗଠନର ଅଭାବ । ଉତ୍କଳ ସାହିତ୍ୟ ସମାଜରେ କେବଳ ପ୍ରତିଷ୍ଠିତ ସାହିତ୍ୟିକଙ୍କ ସ୍ଥାନ । ସ୍ୱାଧୀନ ଭାରତରେ ଅନ୍ୟାନ୍ୟ ପ୍ରାଦେଶିକ ସାହିତ୍ୟର ବିପୁଳ ପ୍ରଗତି ଦେଖି ତରୁଣ ଓଡ଼ିଆ ପ୍ରାଣରେ ଅସୀମ ବ୍ୟାକୁଳତା । ନାନା ସ୍ୱପ୍ନ, ସମ୍ଭାବନା, ଆଶା ବ୍ୟର୍ଥତା ଭିତରେ ଯୁବଚିତ୍ତ ଆନ୍ଦୋଳିତ । ସେତିକିବେଳେ 'ପ୍ରଜାତନ୍ତ୍ର' ଯୁବମାନସରେ ଗଭୀର ଆତ୍ମବିଶ୍ୱାସ ସୃଷ୍ଟି କରି ସାଧନା ଓ କର୍ମପ୍ରେରଣାର ସ୍ରୋତରେ ସାମ୍ପ୍ରତିକ ଓଡ଼ିଆ ସାହିତ୍ୟକୁ ପ୍ଲାବିତ କରିଥିଲା ।

ଦୈନିକ ସମ୍ବାଦପତ୍ର ମାଧ୍ୟମରେ ସାହିତ୍ୟ ସୃଷ୍ଟି କରିବା ଉଦ୍ଦେଶ୍ୟରେ ୧୯୪୮ ମସିହାରେ ପ୍ରକାଶ ପାଏ ପ୍ରଜାତନ୍ତ୍ରର ସାପ୍ତାହିକ ସାହିତ୍ୟ ସଂସ୍କରଣ ରବିବାର ପ୍ରଜାତନ୍ତ୍ର । ପରବର୍ତ୍ତୀ କାଳରେ ରବିବାର ପ୍ରଜାତନ୍ତ୍ର ହିଁ ଓଡ଼ିଆ ସାହିତ୍ୟର ପଥ ପ୍ରଦର୍ଶକ ରୂପେ ଲେଖକ ଓ ପାଠକ ସଂଖ୍ୟା ବୃଦ୍ଧିରେ ସହାୟକ ହୋଇଥିଲା । ଆଜିର ପ୍ରତିଷ୍ଠିତ ବହୁ କବି, କଥାକାର, ଗବେଷକ, ଔପନ୍ୟାସିକ, କଳାକାରଙ୍କୁ 'ରବିବାର ପ୍ରଜାତନ୍ତ୍ର' ସୃଷ୍ଟି କରିବାର ସୌଭାଗ୍ୟ ଲାଭ କରିଛି ।

'ପ୍ରଜାତନ୍ତ୍ର'ର ସାଂସ୍କୃତିକ ସଙ୍ଗଠନର ପୁରୋଭାଗରେ ଥିଲେ ଅନାଗତ ଭବିଷ୍ୟତର ବାର୍ତ୍ତାବହ ଏ ଦେଶର ତରୁଣ-ତରୁଣୀ ଗୋଷ୍ଠୀ । ନବାଗତ ସ୍ୱାଧୀନତାର ପ୍ରେରଣା ଉନ୍ମାଦନା ମଧ୍ୟରେ ସେମାନଙ୍କ ଜନ୍ମ ଯେତେବେଳେ ଚଞ୍ଚଳ, ପ୍ରାଣ ଉଚ୍ଛଳ ଯୁଗର ଅଗ୍ରଗତିର ଦୂତ, ଉତ୍ସାହର ଶିଖା ରୂପେ ସେମାନଙ୍କ ଅଙ୍କାବଙ୍କା ସାଧନାର ଆଗାମୀ ପଥକୁ ସଳଖ କରିବାର ଗୁରୁ ଦାୟିତ୍ୱ ବହନ କରିବାକୁ ପଞ୍ଚତି ଏ ଅନୁଷ୍ଠାନକୁ ।

•

ସାଂପ୍ରତିକ ଓଡ଼ିଆ ଗଳ୍ପ 'କବିତା'ର ନୂତନ ପରୀକ୍ଷା ନିରୀକ୍ଷାକୁ 'ରବିବାର ପ୍ରଜାତନ୍ତ୍ର ହିଁ ପ୍ରଥମେ ଉତ୍ସାହିତ କରିଥିଲା । ଫ୍ରଏଡ଼ ଓ ମାର୍କସ ଦର୍ଶନର ଆନ୍ତର୍ଜାତୀୟ ଚେତନା, ଆଙ୍ଗିକ ଓ ଆତ୍ମିକ ରୂପ ବୈଚିତ୍ର୍ୟ ଭିତରେ ଆଧୁନିକ ଓଡ଼ିଆ ସାହିତ୍ୟ

ନବଭୂଷଣରେ ଭୂଷିତ ହୋଇଥିଲା । ଏ କାଳର ଲେଖକ ବ୍ୟକ୍ତି ଓ ସମାଜର ପରିବର୍ତ୍ତିତ ମୂଲ୍ୟବୋଧକୁ ଦୃଷ୍ଟିରେ ରଖି ଯେତେବେଳେ ସମସ୍ତ କାବ୍ୟିକ ପରମ୍ପରା ଓ ରୀତି ନିଗଡ଼କୁ ଭାଙ୍ଗି ଅଗ୍ରସର ହେଲା, ତା'ର ପଥରୋଧ କରିବାକୁ 'ପ୍ରଜାତନ୍ତ୍ର' କେବେ ପ୍ରୟାସ କରିନାହିଁ, ବରଂ ଏ ନୂଆ ଭାବଧାରାର ଆବାହକ ରୂପେ ସେ ତା'ର ଯାତ୍ରା ପଥକୁ ବାଧାମୁକ୍ତ ଓ କଣ୍ଟକଶୂନ୍ୟ ହେବାରେ ସାହାଯ୍ୟ କରିଛି ।

ରବିବାର ପ୍ରଜାତନ୍ତ୍ରରେ ପ୍ରକାଶିତ ଅଧିକାଂଶ କବିତା ଥିଲା ସୁବୋଧ୍ୟ, ଛନ୍ଦୋବଦ୍ଧ ଓ ସଙ୍ଗୀତମୟ । ସାହିତ୍ୟ, ସଂସ୍କୃତି, ଧର୍ମ, ଦର୍ଶନ, ଇତିହାସ 'ରାଜନୀତି' ଅର୍ଥନୀତି ଆଦି ବିଭିନ୍ନ ବିଷୟରେ ଉଚ୍ଚକୋଟିର ନିବନ୍ଧ ଓ ସମାଲୋଚନା ପ୍ରକାଶ ପାଉଥିଲା । ଗଳ୍ପଗୁଡ଼ିକ ଅତ୍ୟନ୍ତ ରସୋତ୍ତୀର୍ଣ୍ଣ ଓ ପ୍ରାଣସ୍ପର୍ଶୀ ହେଉଥିଲା । 'ଆନ୍ତର୍ଜାତିକ ସମୀକ୍ଷା' ବିଭାଗଟି ବିଶେଷ ଜନପ୍ରିୟତା ଲାଭ କରିଥିଲା । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟ ଜଗତରେ 'ରବିବାର ପ୍ରଜାତନ୍ତ୍ର' ସାରା ଓଡ଼ିଶାର ଲେଖକ ଓ ପାଠକ ପ୍ରାଣରେ ଅଫୁରନ୍ତ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କରିଥିଲା ।

ଓଡ଼ିଶାର ମହିଳାମାନଙ୍କୁ ସୁଲେଖିକା ଓ ସୁଗୃହିଣୀ କରିବାର ଲକ୍ଷ୍ୟ ନେଇ 'ପ୍ରଜାତନ୍ତ୍ର'ର 'ନାରୀଜଗତ' ବିଭାଗ ଅତୀତରେ ଉଦ୍ୟମ କରି ଆସିଥିଲା । ନାରୀ ପ୍ରଗତି କ୍ଷେତ୍ରରେ 'ପ୍ରଜାତନ୍ତ୍ର' ହିଁ ସର୍ବପ୍ରଥମ ପଦକ୍ଷେପ ନେଇଥିଲା । 'ନାରୀ ଜଗତ' ମାଧ୍ୟମରେ ପୁରପଲ୍ଲୀର ବହୁ ନାରୀ ପ୍ରତିଭା ଆଲୋକକୁ ଆସି ପାରିଛନ୍ତି । ସାମାଜିକ ଓ ସାଂସ୍କୃତିକ ବିକାଶ କାର୍ଯ୍ୟକ୍ରମରେ ପୁରୁଷମାନଙ୍କ ଭଳି ନାରୀମାନଙ୍କୁ ଅବତୀର୍ଣ୍ଣ କରାଇବାରେ ଏ ଅନୁଷ୍ଠାନର ଭୂମିକା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

'ମୀନାବଜାର' ପ୍ରଜାତନ୍ତ୍ର ସାହିତ୍ୟ ମନ୍ଦିରର ଭିତ୍ତିଭୂମି ରୂପେ ବିଦ୍ୟମାନ । ଓଡ଼ିଶାର ଅଗଣିତ କିଶୋର-କିଶୋରୀମାନଙ୍କର ଏହା ଏକ ପ୍ରିୟତମ ଅନୁଷ୍ଠାନ । ୧୯୪୮ ମସିହାରୁ ଏହା ପ୍ରକାଶିତ ହୋଇ ପିଲାଙ୍କ ମଧ୍ୟରେ ସାହିତ୍ୟ ସାଧନା, ଦେଶ-ସେବା ଓ ଜ୍ଞାନ ଆହରଣର ପିପାସା ଜାଗ୍ରତ କରି ପାରିଛି । ୧୯୫୭ ମସିହାରୁ ଓଡ଼ିଶାର ଏକମାତ୍ର ମାସିକ ଶିଶୁସାହିତ୍ୟ ପତ୍ରିକା ରୂପେ ମୀନାବଜାର ପ୍ରକାଶିତ ହୋଇ ନୂତନ ଲେଖକ ସୃଷ୍ଟି ସଙ୍ଗେ ସଙ୍ଗେ ଶିଶୁସାହିତ୍ୟର ବିକାଶରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରି ଆସିଛି । ୧୯୫୭ ମସିହା ପର୍ଯ୍ୟନ୍ତ କଟକ, ପୁରୀ, କୁଜଙ୍ଗ ଆଦି ଗୁଡ଼ିଏ ସ୍ଥାନରେ 'ମୀନାବଜାର' ଅନୁଷ୍ଠାନ ପକ୍ଷରୁ ମୀନାମେଳା ଏବଂ ବିଭିନ୍ନ ମୀନାମଣ୍ଡଳୀ ପକ୍ଷରୁ ଶିଶୁଉତ୍ସବମାନ ଅନୁଷ୍ଠିତ ହୋଇ ଶିଶୁମାନଙ୍କୁ ସଙ୍ଗଠିତ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ମାନସିକ ଓ ବୌଦ୍ଧିକ ବିକାଶ ତଥା ଉନ୍ନତ ଭବିଷ୍ୟତ ଗଠନରେ ସହାୟକ ହୋଇଥିଲା ।

ଓଡ଼ିଶାର ରଙ୍ଗମଞ୍ଚ, ଚଳଚିତ୍ର ଓ ନାଟ୍ୟକଳାର ବିକାଶ ଏବଂ କଳାକାର-ମାନଙ୍କର ଉନ୍ନତି ସାଧନ ପାଇଁ ଏକଦା ପ୍ରଜାତନ୍ତ୍ରର 'ରୂପମଞ୍ଚ' ବିଭାଗ ସତତ

ଉଦ୍ୟମ କରି ଆସିଥିଲା । ଏବେ ସାପ୍ତାହିକ ରୂପ-ରସ-ଛନ୍ଦ ବିଭାଗ ଆକର୍ଷଣୀୟ ରୂପ ସଜ୍ଜା ସହିତ ଓଡ଼ିଶାର କଳାଜଗତକୁ ଋଦ୍ଧିମନ୍ତ କରୁଛି ।

ଏହାଛଡ଼ା ଅତୀତରେ ପ୍ରଜାତନ୍ତ୍ର ପୃଷ୍ଠାରେ ପ୍ରକାଶିତ ମନୋମୋହନ, ଗ୍ରାମ କୃଷି-କୃଷକ, ଜ୍ଞାନ-ବିଜ୍ଞାନ ଆଦି ସାପ୍ତାହିକ ବିଭାଗଗୁଡ଼ିକ ପାଠକ ମହଲରେ ବିଶେଷ ଆଦୃତ ହୋଇ ପାରିଥିଲା । ଯୁବଜଗତ ବିଭାଗ ଯୁବମାନସର ଅଭିବ୍ୟକ୍ତି ଓ ଯୁବ-ସମାଜର ଦିଗ୍‌ଦର୍ଶକ ରୂପେ ଏକ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିଥିଲା ।

ପ୍ରଜାତନ୍ତ୍ରର 'ମୀନାବଜାର', ରବିବାର ପ୍ରଜାତନ୍ତ୍ର ଓ ନାଟ୍ୟଜଗତର ଭିତ୍ତି ଉପରେ ସାଂସ୍କୃତିକ ସଙ୍ଗଠନର ଯେଉଁ ମନ୍ଦିର ନିର୍ମିତ ହୋଇଥିଲା, 'ଝଙ୍କାର' ହେଉଛି ତାର ଚୂଡ଼ା ସ୍ୱରୂପ । ୧୯୪୯ ମସିହାରେ ଓଡ଼ିଆ ଭାଷାର ସ୍ଥାଣୁ ଓ ମୁମୂର୍ଷୁ ଅବସ୍ଥାରେ 'ଝଙ୍କାର'ର ଶୁଭଜନ୍ମ । ଓଡ଼ିଆ ଭାଷାରେ ଏକମାତ୍ର ସମ୍ଭ୍ରାନ୍ତ ମାସିକ ପତ୍ରିକା ଭାବରେ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଗତିରେ ଏହା ପ୍ରମୁଖ ଅଂଶ ଗ୍ରହଣ କରି ଆସିଛି । 'ରବିବାର ପ୍ରଜାତନ୍ତ୍ର' ଜନ୍ମର ବର୍ଷକ ମଧ୍ୟରେ ଲେଖକ ଓ ପାଠକଙ୍କ ଠାରୁ ଯେଉଁ ଅକୁଣ୍ଠ ମନୋଯୋଗ, ସମର୍ଥନ ଲାଭ କରିଥିଲା, ତାକୁ ସମ୍ବଳ କରି ଝଙ୍କାର ପ୍ରକାଶ ସମ୍ଭବ ହେଲା । ଦ୍ୱିତୀୟ ମହାଯୁଦ୍ଧୋତ୍ତର ଆଧୁନିକ ଓଡ଼ିଆ ସାହିତ୍ୟ ସାଧକଙ୍କ ସାରସ୍ୱତ ସମ୍ଭାରରେ ଝଙ୍କାର ସମୃଦ୍ଧ ହୋଇଥିଲା । ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ସମସ୍ତ ପ୍ରକାର ନୂତନ ଚେଷ୍ଟା ନିରୀକ୍ଷାକୁ ଝଙ୍କାର ସବୁବେଳେ ଉତ୍ସାହିତ କରି ଆସିଛି ।

ବିଗତ ୪୭ ବର୍ଷ ଧରି ଲେଖକ ସଂଖ୍ୟା ବୃଦ୍ଧି, ସାହିତ୍ୟର ବିକାଶ ତଥା ସାହିତ୍ୟ ସଙ୍ଗଠନ କ୍ଷେତ୍ରରେ ସଂହତି ଓ ସମନ୍ୱୟ ପ୍ରତିଷ୍ଠାରେ ପ୍ରଜାତନ୍ତ୍ର ଅନୁଷ୍ଠାନ ଯେଉଁ ବୈପ୍ଳବିକ ଭୂମିକା ଗ୍ରହଣ କରିଛି, ତାହା ବାସ୍ତବିକ ଅଭିନବ ଓ ଅତୁଳନୀୟ । 'ବିଷୁବ ମିଳନ' ପ୍ରଜାତନ୍ତ୍ର ସାହିତ୍ୟ ପରିବାରର ଏକ ମହାନ ସାରସ୍ୱତ ପର୍ବ । ୧୯୫୦ରେ ଏହାର ଶୁଭାରମ୍ଭ । ବିଭିନ୍ନ ପ୍ରାନ୍ତରର ଶିଳ୍ପୀ, ସାହିତ୍ୟ ସାଧକଙ୍କୁ ଏହି ସାଂସ୍କୃତିକ ପୀଠରେ ଏକତ୍ର କରି ପରସ୍ପର ଆଲାପ-ଆଲୋଚନା ଓ ଭାବ ବିନିମୟର ସୁଯୋଗ ଦେଇ ଆସିଛି । ଲେଖକମାନଙ୍କ ମଧ୍ୟରେ ଭାବଗତ ଏକତା ପ୍ରତିଷ୍ଠା ତଥା ବିଭିନ୍ନ ମତବାଦ ଓ ଦୃଷ୍ଟିଭଙ୍ଗୀର ସମନ୍ୱୟରେ ଏକ ନିର୍ଦ୍ଦିଷ୍ଟ ସାହିତ୍ୟଧାରାର ସୃଷ୍ଟି ପାଇଁ ବିଷୁବ ମିଳନ ନିରବଚ୍ଛିନ୍ନ ଉଦ୍ୟମ ଚଳାଇ ଆସିଛି । ଭାରତୀୟ ସାହିତ୍ୟର ପ୍ରଗତିର ସ୍ରୋତରେ ଓଡ଼ିଆ ସାହିତ୍ୟ ନିଜକୁ ମିଶାଇ ଦେବାପାଇଁ ବିଭିନ୍ନ ଭାଷାର ପ୍ରଖ୍ୟାତ ସାହିତ୍ୟିକମାନେ ପ୍ରତିବର୍ଷ ବିଷୁବମିଳନ ମଣ୍ଡପରେ ଉଦ୍‌ବୋଧନ ଦେଇ ଆସୁଛନ୍ତି । ବିଷୁବ ମିଳନରେ ପ୍ରୀତ୍ୟୁପହାର ପ୍ରଦାନଦ୍ୱାରା ନବୀନ ଲେଖକମାନଙ୍କୁ ପ୍ରେରଣା ଏବଂ ପ୍ରବୀଣ ସାହିତ୍ୟ ସାଧକମାନଙ୍କୁ ସମ୍ମାନ ପ୍ରଦର୍ଶନ କରି ପ୍ରଜାତନ୍ତ୍ର ଓଡ଼ିଶାରେ ପ୍ରତିଭାପୂଜାର ଗୌରବମୟ ପରମ୍ପରାକୁ ଉଜ୍ଜୀବିତ ରଖି ଆସିଛି ।

'ବିଷୁବମିଳନ'ର ବିଭିନ୍ନ ଅଧିବେଶନରେ ବରେଣ୍ୟ ଅତିଥିଭାବରେ ପ୍ରଖ୍ୟାତ ସାହିତ୍ୟିକ ଡଃ ମାୟାଧର ମାନସିଂହ, ଆର୍ତ୍ତବଲ୍ଲଭ ମହାନ୍ତି, ଡଃ ରଘୁବୀର, ଡଃ ସୂର୍ଯ୍ୟ-

କୁମାର ଭୂୟାଁ, ଡଃ ସୁମନ୍ତ କୁମାର ବନ୍ଦ୍ୟୋପାଧ୍ୟାୟ, ଡଃ କାଳିଦାସ ନାଗ, ପ୍ରଫେସର କୃଷ୍ଣଚନ୍ଦ୍ର ପାଣ୍ଡୁରଙ୍ଗ କୁଲକର୍ଣ୍ଣି, ମାମା ବ୍ୟାରେରକର, ମନୋଜ ବସୁ, ବିଶ୍ୱନାଥ ସତ୍ୟନାରାୟଣ, ରାମଧାରୀ ସିଂହ, ଦିନକର, ଉମାଶଙ୍କର ଯୋଶୀ, ଚୈତନ୍ୟ କୁମାର, ଡଃ ହୁମାୟୁନ୍ କବିର, ପ୍ରେମଚନ୍ଦ୍ର ମିତ୍ର, ତୈଳୋକ୍ୟନାଥ ଗୋସ୍ୱାମୀ, ସଚ୍ଚିଦାନନ୍ଦ ହୀରାନନ୍ଦ 'ବାତ୍ସାୟନ', ରାମଚନ୍ଦ୍ର ନାରାୟଣ ଦାଣ୍ଡେକର, ସୁକୁମାର ସେନ, ଡଃ ଆଶୁତୋଷ ଭଟ୍ଟାଚାର୍ଯ୍ୟ ପ୍ରମୁଖ ଅଭିଭାଷଣ ପ୍ରଦାନ କରିଛନ୍ତି ।

ବିଭିନ୍ନ ବର୍ଷର ସାହିତ୍ୟ ସଭା, କବିତା ପାଠୋତ୍ସବ, ଶିଳ୍ପୀସମ୍ମିଳନୀ, ଲେଖିକା ସମ୍ମିଳନୀ, ଲଳିତକଳା ଶିଳ୍ପୀ ସମ୍ମିଳନୀରେ ପଣ୍ଡିତ ନୀଳକଣ୍ଠ ଦାସ, କାଳିନ୍ଦୀଚରଣ ପାଣିଗ୍ରାହୀ, ରାଜକିଶୋର ରାୟ, ଚିନ୍ତାମଣି ଆଚାର୍ଯ୍ୟ, ଡଃ ସଦାଶିବ ମିଶ୍ର, ଡଃ ପ୍ରଫୁଲ୍ଲ କୁମାର ଘୋଷ, ଜଷ୍ଟିସ୍ ବୀରକିଶୋର ରାୟ, ଚକ୍ରଧର ମହାପାତ୍ର, ଗୋଲକ ବିହାରୀ ଧଳ, ଡଃ ପ୍ରାଣକୃଷ୍ଣ ପରିଜା, ସଚ୍ଚିଦାନନ୍ଦ ରାଉତରାୟ, ଗୋପୀନାଥ ମହାନ୍ତି, କୁଞ୍ଜବିହାରୀ ଦାଶ, ବଂଶୀଧର ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, କାହ୍ନୁଚରଣ ମହାନ୍ତି, ପ୍ରାଣବନ୍ଧୁ କର, ଅନନ୍ତ ପଟ୍ଟନାୟକ, ନଟବର ସାମନ୍ତରାୟ, ଲକ୍ଷ୍ମୀନାରାୟଣ ସାହୁ, ପି. ଭି. କୃଷ୍ଣମୂର୍ତ୍ତି; ପବିତ୍ରମୋହନ ପ୍ରଧାନ, ପାହାଡ଼ି ସାନ୍ୟାଲ, ନୟନ କିଶୋର ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ରାଧାମୋହନ ଗଡ଼ନାୟକ, ଜ୍ଞାନୀନ୍ଦ୍ର ବର୍ମା, ଦୁର୍ଗାମାଧବ ମିଶ୍ର, ଜାନକୀବଲ୍ଲଭ ମହାନ୍ତି, ଉପେନ୍ଦ୍ର କିଶୋର ଦାସ, ଗୋପାଳ କାନୁନ୍‌ଗୋ; ମୁରଲୀଧର ଟାଲି, ଅଜିତ କେଶରୀ ରାୟ, ଆନି ଯୋଶେଫ୍, ବାଣୀ ରାୟ, ମୈତ୍ରେୟୀ ଦେବୀ, ମନ୍ମଥନାଥ ଦାଶ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଗୋପାଳ ଚନ୍ଦ୍ର ମିଶ୍ର ପ୍ରମୁଖ ଆଲୋଚନାରେ ଅଂଶ ଗ୍ରହଣ କରି ବିଷୁବମିଳନ ସମାରୋହକୁ ସାର୍ଥକ ଓ ପ୍ରାଣବନ୍ତ କରିଛନ୍ତି ।

ଓଡ଼ିଶାର ସାହିତ୍ୟ, କଳା ଓ ସାଂସ୍କୃତିକ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ପାଇଁ ଯେଉଁମାନଙ୍କୁ ସମ୍ମାନିତ କରାଯାଇଛି, ସେମାନଙ୍କ ମଧ୍ୟରେ ଗଣକବି ବୈଷ୍ଣବ ପାଣି, ରଙ୍ଗନାଥ ମହାପାତ୍ର; ଶିଳ୍ପୀ ବିଦ୍ୟାଧର ବର୍ମା, ଗୋପାଳ କାନୁନ୍‌ଗୋ, କବି ବୀର କିଶୋର ଦାସ, କରୁଣାକର କର, ପରମାନନ୍ଦ ଆଚାର୍ଯ୍ୟ, ପଣ୍ଡିତ ବିନାୟକ ମିଶ୍ର, ବଂଶୀଧର ମହାନ୍ତି, ରାଜକିଶୋର ପଟ୍ଟନାୟକ, ବାମାଚରଣ ମିତ୍ର, ରାଧାମୋହନ ଗଡ଼ନାୟକ, ରାଜକିଶୋର ରାୟ, ଗୋପାଳ ଛୋଟରାୟ, ମନୋଜ ଦାସ, ଅଚ୍ୟୁତାନନ୍ଦ ପତି, ରମାକାନ୍ତ ରଥ, ପ୍ରତିଭା ରାୟ, ସୀତାକାନ୍ତ ମହାପାତ୍ର ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ ।

'ପ୍ରଜାତନ୍ତ୍ର' ଅନୁଷ୍ଠାନ ପକ୍ଷରୁ ପ୍ରକାଶିତ 'ପ୍ରଜାତନ୍ତ୍ର ସାପ୍ତାହିକୀ' ସାଂପ୍ରତିକ ରାଜନୈତିକ, ସାମାଜିକ, ଅର୍ଥନୈତିକ, ସାଂସ୍କୃତିକ ଘଟଣାବଳୀର ଏକ ଅନୁପମ ଆଲେଖ୍ୟ । ୧୯୮୭ ମସିହା ସେପ୍‌ଟେମ୍ବର ୭ ତାରିଖରୁ ପ୍ରକାଶିତ ଏହି ସୁଦୃଶ୍ୟ

ଲୋକପ୍ରିୟ ଶିକ୍ଷଣୀୟ ଓ ସଂଗ୍ରହଣୀୟ ପତ୍ରିକା ପାଠକମହଲରେ ବିଶେଷ ଆଦୃତ ହୋଇ ଆସୁଛି । ଧର୍ମ, ସଂସ୍କୃତି, ଶିକ୍ଷା, ସ୍ୱାସ୍ଥ୍ୟ, ଇତିହାସ, ଚଳଚ୍ଚିତ୍ର, ଦୂରଦର୍ଶନ, ସାହିତ୍ୟ, ରାଜନୀତି, କ୍ରୀଡ଼ା, ପର୍ଯ୍ୟଟନ ଆଦି ବିଭିନ୍ନ ବିଷୟ ନେଇ ଏହି ପତ୍ରିକାଟି ସମୃଦ୍ଧ ।

'ପ୍ରଜାତନ୍ତ୍ର ପ୍ରହରୀ' ସବୁ ଶ୍ରେଣୀର ପାଠକଙ୍କ ମନୋରଞ୍ଜନ ଓ ଜ୍ଞାନର ବିକାଶ ପାଇଁ ଓଡ଼ିଆ ଭାଷାର ଏକ ଜନପ୍ରିୟ ଡାଇଜେଷ୍ଟ ରୂପେ ଗତ ୧୯୮୮ ଜୁଲାଇ ମାସରୁ ପ୍ରକାଶିତ ହୋଇ ଆସୁଛି ।

ପ୍ରଜାତନ୍ତ୍ର 'ମାସିକ ପାଠଚକ୍ର' ସମାଜର ସାଂପ୍ରତିକ ସମସ୍ୟାର ପର୍ଯ୍ୟାଲୋଚନା ଏବଂ ତା'ର ସମାଧାନ ପାଇଁ ପନ୍ଥା ନିର୍ଦ୍ଧାରଣ କ୍ଷେତ୍ରରେ ଏକ ବୌଦ୍ଧିକ ଆଲୋଚନା ପୀଠ । ଗତ ୧୯୮୭ ମସିହା ଅକ୍ଟୋବର ୩୦ ତାରିଖରୁ ମାସର ପ୍ରତି ଶେଷ ଶନିବାର ଦିନ ଏହା ଅନୁଷ୍ଠିତ ହୋଇ ଆସୁଛି । ଏହି ପାଠଚକ୍ର ଜନମତ ସୃଷ୍ଟିର ଏକ ମାଧ୍ୟମ ହେବା ସଙ୍ଗେ ସଙ୍ଗେ ସମାଜ ଓ ଶାସନକୁ ଯଥାର୍ଥ ଦିଗ୍‌ଦର୍ଶନ ଦେଇ ଆସୁଛି ।

୧୯୪୭ରେ ଦ୍ୱିତୀୟ ପର୍ଯ୍ୟାୟ 'ପ୍ରଜାତନ୍ତ୍ର' ପ୍ରକାଶ କାଳରୁ ବିଭିନ୍ନ ସମୟରେ ଭୈରବ ଚନ୍ଦ୍ର ମହାନ୍ତି, ଚିନ୍ତାମଣି ପାଣିଗ୍ରାହୀ, ଜାନକୀ ବଲ୍ଲଭ ପଟ୍ଟନାୟକ, ଶ୍ରୀହର୍ଷ ମିଶ୍ର, ଚନ୍ଦ୍ରଶେଖର ମହାପାତ୍ର ସମ୍ପାଦକ ଦାୟିତ୍ୱରେ ରହି ଏହାର ଐତିହ୍ୟ ଓ ପରମ୍ପରା ବଜାୟ ରଖିବା ସଙ୍ଗେ ସଙ୍ଗେ 'ପ୍ରଜାତନ୍ତ୍ର'ର ଶ୍ରୀବୃଦ୍ଧିରେ ସହାୟକ ହୋଇଛନ୍ତି ।

ସମ୍ପ୍ରତି ଭର୍ତ୍ତୃହରି ମହତାବ 'ପ୍ରଜାତନ୍ତ୍ର'ର ସମ୍ପାଦକ ଓ 'ପ୍ରଜାତନ୍ତ୍ର ପ୍ରଚାର ସମିତି'ର ଅଧ୍ୟକ୍ଷ ଦାୟିତ୍ୱରେ ରହି ମହତାବଙ୍କ ସ୍ୱପ୍ନ ଓ ସଂକଳ୍ପକୁ ସାର୍ଥକ କରିବା ସଙ୍ଗେ ସଙ୍ଗେ 'ପ୍ରଜାତନ୍ତ୍ର'ର ବହୁମୁଖୀ ବିକାଶରେ ବ୍ରତୀ ହୋଇଛନ୍ତି ।

ଅତୀତରେ ନୀଳମଣି ରାଉତରାୟ, ବନମାଳୀ ପଟ୍ଟନାୟକ, ସୁରଜମଲ୍ଲ ସାହା ଟେଲେକଟାୱାଲା ଏବଂ ମିହିର କୁମାର ରାଉତ, ଗୌରାଙ୍ଗ ଦାସ, ନନ୍ଦକିଶୋର ମିଶ୍ର, ଜଗଦୀଶ ପାଣି ପ୍ରମୁଖ ଜେନେରାଲ ମ୍ୟାନେଜର ଭାବରେ 'ପ୍ରଜାତନ୍ତ୍ର'ର ସୁପରିଚାଳନାରେ ସହାୟତା କରି ଆସିଛନ୍ତି । ସମ୍ପ୍ରତି ପ୍ରଫୁଲ୍ଲ କୁମାର ସାହୁ ଜେନେରାଲ ମ୍ୟାନେଜର ଦାୟିତ୍ୱରେ ଅବସ୍ଥାପିତ ।

ଯେଉଁମାନଙ୍କ କର୍ମନିଷ୍ଠା ଓ ଉତ୍ସର୍ଗୀକୃତ ଉଦ୍ୟମରେ 'ପ୍ରଜାତନ୍ତ୍ର'ର ଉତ୍ତରୋତ୍ତର ବିକାଶ ସମ୍ଭବ ହୋଇଛି, ସେମାନଙ୍କ ମଧ୍ୟରେ ଚକ୍ରଧର ସାମଲ, ଶଶିଭୂଷଣ ମିଶ୍ର, ପଠାଣି ପଟ୍ଟନାୟକ, ସତ୍ୟାନନ୍ଦ ଚମ୍ପତିରାୟ, ବୈଦ୍ୟନାଥ ମିଶ୍ର, ଗୋପାଳ ମିଶ୍ର, ରାମପ୍ରସାଦ ମହାନ୍ତି, ନଗେନ ବେଉରିଆ, ନାରାୟଣ ରଥ, ଚିନ୍ତାମଣି ମହାପାତ୍ର, ମହାପାତ୍ର ନୀଳମଣି ସାହୁ, ମାର୍କଣ୍ଡ ସୁକୁମାର ଦାସ, ରାମପ୍ରସାଦ ସିଂହ, କେଶବ ଚନ୍ଦ୍ର ସାମଲ, ଘନଶ୍ୟାମ ନାୟକ, ଦେବେନ୍ଦ୍ର ନାଥ ମହାନ୍ତି, ରାଜକିଶୋର ମହାନ୍ତି, ମାୟାଧର ମହାନ୍ତି, ଅକ୍ଷୟ କୁମାର ଦାସ, ଆର୍. ପି. ଶାସ୍ତ୍ରୀ, ଲମ୍ବୋଦର ପ୍ରଧାନ, ଗୋବର୍ଦ୍ଧନ

ମିଶ୍ର, ନନ୍ଦଦୁଲାଲ ଚୌଧୁରୀ, ଡ. ସୁବ୍ରମନ ମ୍, ସତ୍ୟନାରାୟଣ ମହାପାତ୍ର, ବାଳକୃଷ୍ଣ କାନୁନ୍‌ଗୋ, ମହେନ୍ଦ୍ର କୁମାର ଦାସ, ରାଜେନ୍ଦ୍ର ବର୍ମା, ହରିହର ବାହିନୀପତି, ଗୌରାଙ୍ଗ ଚରଣ ମହାପାତ୍ର, ଅର୍ଦ୍ଧେନ୍ଦୁ ମୋହନ ଦେ, ମହେନ୍ଦ୍ର ପଟ୍ଟନାୟକ, ଜଗନ୍ନାଥ ପୃଷ୍ଟି, ଧନେଶ୍ୱର ସାସମଲ, ଭୁବନ ଘୋଷ, ଶଙ୍କର ପ୍ରଧାନ, ବଙ୍କିମ ଚନ୍ଦ୍ର ଦାସ, ଶିବପ୍ରସାଦ ଦାସ, ସାଗର ଚରଣ ମହାପାତ୍ର, ଆଶାନନ୍ଦ ଦାସ, ନରସିଂହ ପାଣିଗ୍ରାହୀ, ଗଣେଶ ଚନ୍ଦ୍ର ଗୁପ୍ତ, ଭ୍ରମରବର ନାୟକ, ବିଶ୍ୱନାଥ ବାନାର୍ଜୀ, ରାଧାନାଥ ଚୌଧୁରୀ, ବଳଦେବ ଦାସ, ପ୍ରହ୍ଲାଦ ମହାନ୍ତି, କୁଞ୍ଜ ସାରଙ୍ଗି, ଅନ୍ତର୍ଯ୍ୟାମୀ ନାୟକ, ତ୍ରୈଲୋକ୍ୟନାଥ ମହାନ୍ତି, ଜନ୍ତନ୍ ବୋଷ, ଦିଗମ୍ବର ରଥ, ଦୁର୍ଗାଚରଣ ମହାନ୍ତି, ପୀତାମ୍ବର ମିଶ୍ର, ଯୁଗଳ କିଶୋର ସାରଙ୍ଗି ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ ।

ମହତାବଙ୍କ ତିରୋଧାନ ପରେ ଜଷ୍ଟିସ୍ ହରିହର ମହାପାତ୍ର 'ଝଙ୍କାର'ର ମୁଖ୍ୟ ସମ୍ପାଦକ ଦାୟିତ୍ୱ ଗ୍ରହଣ କରି ଏହାର ଉନ୍ନତି ପାଇଁ ନିରବଚ୍ଛିନ୍ନ ଉଦ୍ୟମ କରି ଆସିଛନ୍ତି ।

'ପ୍ରଜାତନ୍ତ୍ର' ଅନୁଷ୍ଠାନରୁ ପ୍ରେରଣା ପାଇ ଆଜି ବହୁ ସାହିତ୍ୟିକ, ସାମ୍ବାଦିକ, ଶିଳ୍ପୀ, କଳାକାର, ସମାଜସେବୀ ଓ ସଂଗଠକ ସମାଜର ବିଭିନ୍ନ କ୍ଷେତ୍ରରେ ସମ୍ମାନିତ ଓ ସୁପ୍ରତିଷ୍ଠିତ । ବ୍ୟକ୍ତିତ୍ୱର ବିକାଶରେ ଏ ଅନୁଷ୍ଠାନର ଅବଦାନ ଉଲ୍ଲେଖଯୋଗ୍ୟ ।

'ପ୍ରଜାତନ୍ତ୍ର' ସବୁ ଦଳ ଓ ମତବାଦର ମିଳନ କ୍ଷେତ୍ର । ସ୍ୱାଧୀନତା ପରେ ଯେତେ ଜନଆନ୍ଦୋଳନ ମୁଣ୍ଡ ଟେକିଛି 'ପ୍ରଜାତନ୍ତ୍ର' ତା'ର ନେତୃତ୍ୱ ନେଇଛି । ଦେଶର ବିକାଶ ପାଇଁ ଯେତେ ପ୍ରଗତିଶୀଳ କାର୍ଯ୍ୟକ୍ରମର ଆବଶ୍ୟକ ପଡ଼ିଛି, ଏହି ଅନୁଷ୍ଠାନ ସେଥିରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛି । 'ପ୍ରଜାତନ୍ତ୍ର' କେବେ କୌଣସି ସରକାରର ଅନୁଗାମୀ ହୋଇନାହିଁ । ବିପ୍ଳବର ଆୟୁଧ ଓ ପ୍ରଗତିର ବାର୍ତ୍ତାବହ ରୂପେ ଜନଗଣର ସେବାରେ ନିଜକୁ ସେ ଉତ୍ସର୍ଗ କରି ଦେଇଛି ।

ଆଜି ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ତଥା ପ୍ରବାସରେ ଅଗଣିତ ସାହିତ୍ୟ ସଂଗଠନ, ପାଠଚକ୍ର, ସାହିତ୍ୟ-ଗୋଷ୍ଠୀ ପ୍ରତିଷ୍ଠିତ ହୋଇଛି । ନବ ନବ ପ୍ରତିଭାର ଉନ୍ମେଷ ଘଟିଛି । ଅସଂଖ୍ୟ ସାହିତ୍ୟ ପତ୍ରିକା ପ୍ରକାଶ ଲାଭ କରିଛି । ଏ ସବୁର ପ୍ରତିଷ୍ଠା ମୂଳରେ ବିଦ୍ୟମାନ 'ପ୍ରଜାତନ୍ତ୍ର' ଅନୁଷ୍ଠାନର ପ୍ରତ୍ୟକ୍ଷ ବା ପ୍ରଚ୍ଛନ୍ନ ପ୍ରେରଣା ।

ଟ୍ରେଡ୍‌ଲ ମେସିନରୁ ଡ଼ି. ଟି. ପି. ଯାଏ ପ୍ରକାଶନର ବିଭିନ୍ନ ପର୍ଯ୍ୟାୟରେ ଏହାର ପ୍ରଗତିର ଧାରା ପ୍ରବହମାନ ।

'ପ୍ରଜାତନ୍ତ୍ର'ର ଇତିହାସ ବିଗତ ଅର୍ଦ୍ଧ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳର ଓଡ଼ିଶାର ରାଜନୀତି, ସାହିତ୍ୟ, ସଂସ୍କୃତି ଓ ପ୍ରଗତିର ଇତିବୃତ୍ତି । ଏହାର ପ୍ରତିଷ୍ଠାତା ଡକ୍ଟର ହରେକୃଷ୍ଣ ମହତାବଙ୍କ ଜୀବନବ୍ୟାପୀ ସାଧନା, ସ୍ୱପ୍ନ ଓ ସଂକଳ୍ପର ସଙ୍କେତ ।



# ଦୈନିକ 'ମାତୃଭୂମି'ର ଇତିହାସ

ଶ୍ରୀମତୀ ରମା କର

ଯେ କୌଣସି ଇତିହାସ ତା'ର ସମସାମୟିକ, ସାମାଜିକ, ପାରିପାର୍ଶ୍ୱିକ, ଆର୍ଥିକ ଓ ରାଜନୈତିକ ଘଟଣାବଳୀକୁ ଭିତ୍ତିକରି ଗଢ଼ିଉଠିଥାଏ । ଜୀବନାବର୍ତ୍ତର ଘୂର୍ଣ୍ଣନ ସବୁବେଳେ ପିଚ୍ଛିଳ । ନାନା ଉତ୍ଥାନ ପତନ ମଧ୍ୟ ଦେଇ ଏହା ଗତି କରିଥାଏ । ଏହି ଚିରାଚରିତ ପ୍ରଥାରୁ ଅବା 'ମାତୃଭୂମି' ବର୍ତ୍ତୀଯାଆନ୍ତା କପରି ?

ମାତୃଭୂମିର ଇତିହାସ ଗୋଟିଏ ବଂଶର ତିନିପିଢ଼ିର ଇତିହାସ ସହିତ ଓତଃପ୍ରୋତ ଭାବେ ଜଡ଼ିତ । ତାହାକୁ ଅଲଗା କରିଦେଲେ ଏହା ସମ୍ପୂର୍ଣ୍ଣ ହେବା ଅସମ୍ଭବ ।

ସାହିତ୍ୟିକ ବାଳକୃଷ୍ଣ କର ମାତୃଭୂମିର ଜନ୍ମଦାତା । ସେ ଗୋଟିଏ ନିମ୍ନ ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ ଓ ଜଣେ ସ୍କୁଲ ଶିକ୍ଷକ ଥିଲେ । କିନ୍ତୁ ସ୍ୱାଧୀନଚେତା ବାଳକୃଷ୍ଣଙ୍କୁ ଶିକ୍ଷକତା ଶୃଙ୍ଖଳ ବେଶୀଦିନ ବାନ୍ଧି ରଖିପାରିଲା ନାହିଁ । ନିର୍ଦ୍ଦିଷ୍ଟ ଆୟକୁ ପଛରେ ପକାଇ ଏକ ଅନିଶ୍ଚିତ ଓ ଅସ୍ଥିର ପଥରେ ପାଦ ଥାପି ସେ ଜୀବନ ସହିତ ଲଢ଼େଇ କରିବାକୁ ଆଗେଇ ଆସିଲେ । ନିସ୍ୱଃ ହାତରେ ସେ କଲମ ଧରିଲେ । ତାଙ୍କ ଲେଖାଗୁଡ଼ିକ ଅତ୍ୟନ୍ତ ଉପାଦେୟ ଥିଲା । କ୍ରମେ ତାଙ୍କର ପୁସ୍ତକ ପାଠ୍ୟପୁସ୍ତକ ହେଲା । ସମାଜରେ ବେଶ୍ ଆଦୃତି ଲଭିକଲା । ସେ ବାବଦରେ ସେ କିଛି ଅର୍ଥ ଉପାର୍ଜନ କରି ସ୍ଥାପନା କଲେ ଏକ କ୍ଷୁଦ୍ର ମୁଦ୍ରଣଶାଳା । ସମୟ କ୍ରମେ ଏହି ମୁଦ୍ରଣାଳୟଟି ପରିବ୍ୟାପ୍ତ ହୋଇ ସାହିତ୍ୟ ଓ ସାମ୍ବାଦିକତା କ୍ଷେତ୍ରରେ ବହୁ ଲେଖକଙ୍କୁ ଲେଖକଲେଖିକାଙ୍କୁ ଆଣି ପ୍ରତିଷ୍ଠିତ କରାଇ ପାରିଲା ।

ସ୍ୱଳ୍ପସମ୍ବଳ ଓ ସୀମିତ ଜନବଳରେ ବାଳକୃଷ୍ଣ ଆଗେଇ ଚାଲିଲେ ମନର ଅସୀମ ତୃଷ୍ଣା ମେଣ୍ଟାଇବା ପାଇଁ । ସେ ଏକାନ୍ତ ସମବାୟ ପ୍ରେମୀ ଥିଲେ । ବିଭିନ୍ନ ସମବାୟ ସମିତି ଓ ସମବାୟ ବ୍ୟାଙ୍କରେ ସଭାପତି ରୂପେ ସେ ସୁନାମ ଅର୍ଜନ କରିଥିଲେ । ଜେଲ ପରିଦର୍ଶନ କମିଟିର ସେ ସଭ୍ୟ ଥିଲାବେଳେ ଜେଲ ଶାସନ ଓ କଏଦୀମାନଙ୍କର ଖବରଖାକୁ ତତ୍ପରତା ସହ ବୁଝୁଥିଲେ ।

ନିର୍ଭୀକ ସାମ୍ବାଦିକ ବାଳକୃଷ୍ଣ କରଙ୍କର ସାହସ ବିଷୟରେ ପ୍ରଣିଧାନର ଆବଶ୍ୟକ । ନିଜର ସୀମିତ ସମ୍ବଳକୁ ପାଥେୟ କରି ସେ ସାହସର ସହିତ ପ୍ରକାଶ କରିଥିଲେ 'ମାତୃଭୂମି' ସମ୍ବାଦପତ୍ର, 'ପଛଘୁଞ୍ଚା ନାହିଁ ବୀରର ଜାତକେ' ଉକ୍ତିଟି ପ୍ରକୃତରେ ତାଙ୍କ ପାଇଁ ପ୍ରଯୁଜ୍ୟ ।

ବାଳକୃଷ୍ଣ କୌଣସି ରାଜନୈତିକ ଦଳରେ ନ ଥିଲେ, କିନ୍ତୁ ରାଜନୀତି ଏବଂ ସମାଜନୀତି ପ୍ରତି ତାଙ୍କର ଆଗ୍ରହ ଓ ଶ୍ରଦ୍ଧା ଥିଲା । ବାସ୍ତବିକ୍ ସେ ଥିଲେ ଓଡ଼ିଆ ଜାତୀୟତାର ଜଣେ ପୃଷ୍ଠପୋଷକ । ସାଂସ୍କୃତିକ ଓ ସାହିତ୍ୟ କ୍ଷେତ୍ରରେ ଓଡ଼ିଶାର ସମୃଦ୍ଧି ଘଟାଇବା ଥିଲା ତାଙ୍କର ଲକ୍ଷ୍ୟ । ପଦାଧିକାରୀଙ୍କୁ ତୋଷାମଦ ପରିବର୍ତ୍ତେ ପ୍ରଜାଙ୍କ ସମସ୍ୟା ନିର୍ଭୀକ ଭାବେ ଉପସ୍ଥାପିତ କରିବା ତାଙ୍କର କାମ ଥିଲା । ସେହି ଦୃଷ୍ଟିରୁ ଓଡ଼ିଆ ସାହିତ୍ୟର ପ୍ରସାର ପାଇଁ ସେ ବହୁ ନୂତନ ଦିଗ ସୃଷ୍ଟି କରି, ଅନେକ ନୂତନ ଲେଖକ ସୃଷ୍ଟି କରି ପାରିଥିଲେ । ସାହିତ୍ୟ ଓ ସଂସ୍କୃତି ଜାତି ଗଠନର ମାଧ୍ୟମ । ତାହାରି ବଳରେ ସେ ଓଡ଼ିଆ ପ୍ରାଣରେ ନବଉନ୍ମାଦନା ଖେଳାଇବାର ପ୍ରଚେଷ୍ଟାଭି-ମୁଖୀ ହୋଇ ନିଜର ଗୋଟିଏ ମୁଦ୍ରଣାଳୟ ସ୍ଥାପନ କରିଥିଲେ । ପରେ ବ୍ୟକ୍ତିଗତ ପ୍ରଚେଷ୍ଟାରେ ନିର୍ଭୀକମତ ପରିବେଷଣ କରିବା ନିମନ୍ତେ ଏକ ସମ୍ବାଦପତ୍ରର ପରିକଳ୍ପନା ତାଙ୍କୁ ଅସ୍ଥିର କରିପକାଇ ଥିଲା । ଏହିପରି ଏକ ବିରାଟ ପ୍ରକଳ୍ପ ଯେ ବ୍ୟକ୍ତିଗତ ପ୍ରଚେଷ୍ଟାରେ ସଫଳ ହୋଇ ପାରିବ ମନରେ ଏହି ଆତଙ୍କ ଥିଲେ ବି ସାହସର ସହିତ ସେ ଏହାର ମୁକାବିଲା କରିବାକୁ ବାହାରି ପଡ଼ିଲେ ।

ସେକାଳର ଦେଶମିଶ୍ରଣ ଆନ୍ଦୋଳନକୁ ବାଳକୃଷ୍ଣ ପୂର୍ଣ୍ଣପ୍ରାଣରେ ସମର୍ଥନ ଜଣାଇ ଥିଲେ । ସେ ଥିଲେ ଓଡ଼ିଆ ଜାତି-ପ୍ରେମର ଏକ ଉଜ୍ଜ୍ୱଳ ନିଦର୍ଶନ । ବହୁ କ୍ଷେତ୍ର ରେ ସେ ଏଭଳି କାର୍ଯ୍ୟରେ ସଂପୃକ୍ତ ଥିଲେ ଏବଂ ନିଜର କଲମ ଜୋର୍‌ରେ ଏସବୁ ଆନ୍ଦୋଳନର ଜଣେ ବଡ଼ ପୃଷ୍ଠପୋଷକ ହୋଇଥିଲେ । ସରକାରୀ କୋପ ହେତୁ କିମ୍ବା ଭୟାତୁର ହୋଇ ଯଦି କୌଣସି ମୁଦ୍ରଣାଳୟ କୌଣସି ବିଷୟବସ୍ତୁକୁ ଛପାଇବା ନିମନ୍ତେ ପଛଘୁଞ୍ଚା ଦେଉଥିଲେ, ତେବେ ସେଥିରେ ଅଧିକ ଆତୁର ହେବାର ଆବଶ୍ୟକତା ପଡ଼ୁନଥିଲା । କାରଣ ବାଳକୃଷ୍ଣ କରଙ୍କର 'ସାରସ୍ୱତ ପ୍ରେସ' ସର୍ବଦା ସେଥିଲାଗି ପ୍ରସ୍ତୁତ ଥିଲା । ସହଜ ଓ ସୁବିଧାବାଦୀ ଆଭିମୁଖ୍ୟ ଗ୍ରହଣ କରି କୌଣସି ବିପଦକୁ ଏଡ଼ାଇ ଦେବା ଥିଲା ତାଙ୍କର ପ୍ରକୃତି ବିରୋଧୀ କାର୍ଯ୍ୟ । ତାଙ୍କର ନିଷ୍ଠା, ସଚ୍ଚୋଟପଣିଆ ଓ ଆନ୍ତରିକତା ହେତୁ ଏଭଳି କାର୍ଯ୍ୟରେ ସେ ସମସ୍ତ ବାଧାବିଘ୍ନକୁ ସାହସର ସହ ମୁକାବିଲା କରୁଥିଲେ ।

ଦେଶମିଶ୍ରଣ ଓ ଓଡ଼ିଆ ସାହିତ୍ୟର ବିକାଶ ତଥା ପ୍ରସାର କରି ଓଡ଼ିଆ ଜାତି ଭିତରେ ସ୍ୱାଭିମାନ ଜାଗ୍ରତ କରାଇବା ଥିଲା ତାଙ୍କର କାମ୍ୟ । ଏକଦା ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନର ମୁଖପତ୍ର 'କୃଷକ' ପତ୍ରିକା ଛପାଇବା ଲାଗି କୌଣସି ଛାପାଖାନା ରାଜି ହେଉନଥିଲେ । କିନ୍ତୁ ବାଳକୃଷ୍ଣ କର ଅତି ଆଗ୍ରହର ସହ ତାହାର

ସ୍ୱୀୟ ଦାୟିତ୍ୱ ନେଇ ଲିପ୍ସିତ ପ୍ରକାଶ ପାଇବାର ସମସ୍ତ ପ୍ରକାର ସୁବିଧା କରାଇ ଦେଇଥିଲେ । ସ୍ୱାଧୀନତା ଆନ୍ଦୋଳନରେ ଯେଉଁମାନେ ଯୋଗ ଦେଇଥିଲେ, ସେମାନଙ୍କ ପ୍ରତି ତାଙ୍କ ମନରେ ଥିଲା ଅପାର ଶ୍ରଦ୍ଧା ଓ ଆଦର ।

ଦୁଃଖକଷ୍ଟ ସହି ନିଜ ଗୋଡ଼ରେ ଠିଆହେବା ପାଇଁ ସ୍ୱୀୟ ଜୀବନରୁ ସେ ଥିଲେ ଦୃଢ଼ ପ୍ରତିଜ୍ଞ । ଏକ ନିର୍ଭୀକ, ନିରପେକ୍ଷ, ଆଲୋଚନାମୂଳକ ପତ୍ରିକାଟିଏ ପ୍ରକାଶନ ପାଇଁ ବାଳକୃଷ୍ଣ ବ୍ୟାକୁଳ ହୋଇ ପଡ଼ିଲେ । ମାତୃଭୂମିର ସେବା ଉଦ୍ଦେଶ୍ୟରେ ସେ ପତ୍ରିକାର ନାମ ରଖିଲେ 'ମାତୃଭୂମି' ।

୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖ ଭାରତର ସ୍ୱାଧୀନତା ଦିବସରେ ଏହା ପ୍ରଥମେ ଆତ୍ମପ୍ରକାଶ କଲା ଅର୍ଦ୍ଧ ସାପ୍ତାହିକ ଭାବରେ । ୧୯୪୯ ମସିହାରେ ବର୍ଦ୍ଧିତ କଳେବରରେ ମାତୃଭୂମି ସାପ୍ତାହିକ ରୂପ ନେଲା । କ୍ରମେ ଏହାର ଆଦୃତି ବଢ଼ିଲା । ୧୯୫୦ ମସିହା କଲେଜ ଛାତ୍ର ଆନ୍ଦୋଳନ ସମୟରେ 'ମାତୃଭୂମି' ଖୁବ୍ ବେଶୀ ଜନପ୍ରିୟ ହୋଇ ଉଠିଲା । ତା'ପରେ ୧୯୫୧ ମସିହା ସେପ୍ଟେମ୍ବର ଚଉଦ ତାରିଖ ସୁନିଆଁ ଦିନ ଏହାର ନୂତନ ରୂପ ପ୍ରକାଶ ପାଇଲା ଦୈନିକ ଭାବରେ ।

ଦୈନିକ ମାତୃଭୂମି ପ୍ରକାଶନ ବେଳେ ପ୍ରାଣକୃଷ୍ଣ ପରିଜା, ଶ୍ୟାମସୁନ୍ଦର ମିଶ୍ର, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଗୁରୁଚରଣ ପଟ୍ଟନାୟକ, ରାମକୃଷ୍ଣ ପତି, ମଧୁସୂଦନ ମହାନ୍ତି, ବୀରକିଶୋର ରାୟ (ଓଡ଼ିଶା ହାଇକୋର୍ଟର ପ୍ରଥମ ପ୍ରଧାନ ବିଚାରପତି), ପାଟଣା ରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ, କନିକା ରାଜା ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ପ୍ରମୁଖଙ୍କର ସାହାଯ୍ୟ ଓ ପରାମର୍ଶ ନେଇଥିଲେ ବାଳକୃଷ୍ଣ କର । ପରେ ଚିନ୍ତାମଣି ଆଚାର୍ଯ୍ୟ, ବାଞ୍ଛାନିଧି ମହାପାତ୍ର, ବିମଳକୃଷ୍ଣ ପାଲ ପ୍ରମୁଖ ବରିଷ୍ଠ ଆଇନଜ୍ଞମାନେ ମାତୃଭୂମି ସହିତ ବିଭିନ୍ନ ଭାବରେ ସମ୍ପୃକ୍ତ ହୋଇଥିଲେ ।

ପ୍ରବୀଣ ବ୍ୟବସ୍ଥାପକ ଚିନ୍ତାମଣି ପାଣିଗ୍ରାହୀ ଓ ଗୌରଚନ୍ଦ୍ର ରାଉତ ମାତୃଭୂମିର ସମ୍ପାଦକ ଭାବରେ ଏବଂ ଶ୍ରୀ ନରସିଂହ ତ୍ରିପାଠୀ, ବସନ୍ତ କୋକିଲ ଭଗବାନ ପତି, ରାମ ପ୍ରସାଦ ସିଂହ, ନବ କିଶୋର ଦାସ (ନବ୍ୟବାଦୀ), ଶ୍ୟାମସୁନ୍ଦର ନନ୍ଦୀ, ଯୋଗେନ୍ଦ୍ର ଚନ୍ଦ୍ର ବସୁ, ଶଶିଭୂଷଣ ରାୟ, ଦେବେନ୍ଦ୍ର ନାଥ ପଟ୍ଟନାୟକ, କୃଷ୍ଣପ୍ରସାଦ ପଟ୍ଟନାୟକ ପ୍ରମୁଖ ସହ-ସମ୍ପାଦକ ଭାବରେ ମାତୃଭୂମି ସହିତ ଓତଃପ୍ରୋତ ସମ୍ପୃକ୍ତ ଥିଲେ ।

ଦୈନିକ 'ମାତୃଭୂମି' ପ୍ରକାଶିତ ହେବାର ପ୍ରାୟ ତିନିବର୍ଷ ପର୍ଯ୍ୟନ୍ତ ବାଳକୃଷ୍ଣ ବହୁ ଆର୍ଥିକ କ୍ଷତି ସହିଥିଲେ । ଦୈନନ୍ଦିନ ଜୀବନ ନିର୍ବାହ ତାଙ୍କ ପକ୍ଷେ ଅତି କଷ୍ଟସାଧ୍ୟ ହୋଇପଡ଼ିଲା । ଏହି କାରଣରୁ 'ମାତୃଭୂମି' ପ୍ରକାଶନରୁ ନିବୃତ୍ତ ହେବାପାଇଁ ଅନେକ ବନ୍ଧୁ ତାଙ୍କୁ ପରାମର୍ଶ ଦେଲେ । କିନ୍ତୁ ତାଙ୍କର ମନବଳ ଥିଲା ଦୃଢ଼ । ସେ ତାଙ୍କର ବକ୍ତବ୍ୟ ପ୍ରକାଶ କରିବାକୁ ଯାଇ କହିଥିଲେ—"ଜୀବନରେ ଉପାର୍ଜନ

କରିଥିବା ଅର୍ଥକୁ ସ୍ୱାର୍ଥ କରିବାରେ ଖର୍ଚ୍ଚ ନକରି ମୁଁ ଦେଶ ସେବାରେ ଖର୍ଚ୍ଚ କରୁଛି, ସେଥିରେ ପରିବାରର ଲୋକେ ବ୍ୟସ୍ତ ହେବାର କିଛି ନାହିଁ ।"

ବାଳକୃଷ୍ଣଙ୍କର ଏହି ପଦକ୍ଷେପ ଥିଲା ଦୁଃସାହସିକ । ଦୈନିକ 'ମାତୃଭୂମି' ଓଡ଼ିଶାରେ ରାଜନୀତି କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ପ୍ରଭାବ ଓ ପ୍ରତିଷ୍ଠା ଖୁବ୍ ଅଳ୍ପ ସମୟ ମଧ୍ୟରେ ହାସଲ କରି ପାରିଥିଲା । 'ସାପ୍ତାହିକ ମାତୃଭୂମି' ଥିଲା ଭାରତବିଖ୍ୟାତ ବ୍ଲିଜ ପତ୍ରିକା ପରି ଏକ ଉଲ୍ଲେଖଯୋଗ୍ୟ ପତ୍ରିକା ଏବଂ ତତ୍କାଳୀନ ଓଡ଼ିଶାରେ ଏହାଥିଲା ଖୁବ୍ ପ୍ରଭାବଶାଳୀ । ବୟସ, ଜ୍ଞାନ, ଅଭିଜ୍ଞତା ଓ ଯୋଗ୍ୟତାରେ ଜଣେ ତାଙ୍କଠାରୁ ଯେତେ ନ୍ୟୁନ ହେଲେ ମଧ୍ୟ ସେ କେବେ ହେଲେ କାହାରି ସ୍ୱାଭିମାନକୁ ଆଘାତ କରୁନଥିଲେ ।

'ମାତୃଭୂମି' ସମ୍ପାଦନା କରିବାକୁ ଯାଇ ସେ ଯେତେ ତ୍ୟାଗ ସ୍ୱୀକାର କରିଥିଲେ, ଯେପରି ସଂଘର୍ଷର ସମ୍ମୁଖୀନ ହୋଇଛନ୍ତି ଏବଂ ଦୁର୍ନୀତି ଓ ଅନ୍ୟାୟର ବିପକ୍ଷରେ ନିରପେକ୍ଷ ସମାଲୋଚନା କରି ଅକୁତୋଭୟ ପ୍ରଦର୍ଶନ କରିଛନ୍ତି, ତାହା ଓଡ଼ିଆ ଜାତିର ଇତିହାସରେ ଚିରସ୍ମରଣୀୟ ହୋଇ ରହିବ ।

ବାଳକୃଷ୍ଣ ଥିଲେ ଭିନ୍ନ ରୁଚିର ଲୋକ । ସେ ପ୍ରଚାରର ପକ୍ଷପାତି ନଥିଲେ । ତେଣୁ ନିଜର ମାସିକ, ସାପ୍ତାହିକ ଏପରିକି ଦୈନିକ ପତ୍ରିକାରେ ନିଜର ପ୍ରୌଢ଼ି ଜାହିର କରିବାକୁ ସେ ପସନ୍ଦ କରୁନଥିଲେ । ଥରକର ଘଟଣା—ସେ ପୀଡ଼ିତ ହୋଇ ପଡ଼ିବାରୁ ପତ୍ରିକା ସମ୍ପାଦନା ଦାୟିତ୍ୱରୁ କିଛିଦିନ ବିଶ୍ରାମ ନେଲେ । ତାଙ୍କ ଅଜାଣତରେ ଜଣେ ସହ-ସମ୍ପାଦକ ମାତୃଭୂମିରେ ଏହି ସମ୍ବାଦ ପ୍ରକାଶ କରିଦେଲେ । ସେ ଦିନ ସନ୍ଧ୍ୟା ସଂସ୍କରଣରେ ବାଳକୃଷ୍ଣ ବାବୁ ସେହି ସମ୍ବାଦଟି ପଢ଼ି ଅତ୍ୟନ୍ତ ଦୁଃଖ ପ୍ରକାଶ କରିଥିଲେ ଏବଂ ସଂପୃକ୍ତ ସହ-ସମ୍ପାଦକଙ୍କୁ ଡକାଇ କହିଥିଲେ—ସମ୍ବାଦପତ୍ରର ପାଠକମାନେ ସମ୍ବାଦପତ୍ର କିଣନ୍ତି ଦେଶ-ବିଦେଶର ବହୁ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ଜାଣିବା ପାଇଁ । ମୋର ସ୍ୱାସ୍ଥ୍ୟ ସମ୍ପର୍କରେ ଜାଣିବାକୁ ସେମାନେ ଆଗ୍ରହୀ ନୁହନ୍ତି । ତେଣୁ ଏପରି କେବେ କରିବେ ନାହିଁ । ସେ ଥିଲେ ଆଜିକାଲିର ସମ୍ପାଦକମାନଙ୍କ ଠାରୁ ଏକ ବ୍ୟତିକ୍ରମ ।

୧୯୫୨ ମସିହା 'ମାତୃଭୂମି' ପାଇଁ ଅତ୍ୟନ୍ତ ଦୁର୍ଭାଗ୍ୟଜନକ ବର୍ଷ ଥିଲା । 'ମାତୃଭୂମି'ର ନିର୍ଭୀକ କଟୁ ସମାଲୋଚନା ତତ୍କାଳୀନ ଶାସକଗୋଷ୍ଠୀ ଓ କ୍ଷମତାଧର-ଙ୍କର ବିଶେଷ ଚକ୍ଷୁଶୂଳ ହୋଇଥିଲା । ସେଥିପାଇଁ 'ମାତୃଭୂମି' ବହୁବାର ସରକାରୀ ବିଜ୍ଞାପନରୁ ବଞ୍ଚିତ ହୋଇଥିଲା । ଡଃ ହରେକୃଷ୍ଣ ମହତାବ କେନ୍ଦ୍ରରେ ଶିଳ୍ପମନ୍ତ୍ରୀ ଥିଲାବେଳେ ତାଙ୍କର କାର୍ଯ୍ୟ ସମ୍ପର୍କରେ 'ମାତୃଭୂମି'ରେ ପ୍ରକାଶିତ ଗୋଟିଏ ସମ୍ବାଦ ଯୋଗୁ ସେତେବେଳେ ସମ୍ପାଦକ ବାଳକୃଷ୍ଣ କରଙ୍କ ବିରୁଦ୍ଧରେ କୋର୍ଟରେ ମାନହାନୀ ମକଦମା କରି ଏକଲକ୍ଷ ଟଙ୍କା କ୍ଷତି ପୂରଣ ଦାବୀ କରିଥିଲେ । ସେ ସମୟରେ

ବଶିଷ୍ଟ ଶିଳ୍ପପତି ତଥା ଆଜିର ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁପଟ୍ଟନାୟକ ମଧ୍ୟ ତାଙ୍କ ସମ୍ପର୍କରେ ମାତୃଭୂମିରେ ପ୍ରକାଶିତ ସମ୍ବାଦରେ କ୍ଷୁର୍ଣ୍ଣହୋଇ ସମ୍ପାଦକ—ବାଳକୃଷ୍ଣଙ୍କ ବିରୁଦ୍ଧରେ ମାନହାନି ମକଦମା କରି ଏକଲକ୍ଷ ଟଙ୍କା ଦାବୀ କରିଥିଲେ । ତତ୍କାଳୀନ କଂଗ୍ରେସ ନେତା ବୀରେନ୍ ମିତ୍ର ମଧ୍ୟ ମାତୃଭୂମି ପାଇଁ ବାଳକୃଷ୍ଣଙ୍କ ବିରୁଦ୍ଧରେ ମାନହାନି ମକଦମା କରିଥିଲେ । ଏହିପରି ଏକାବେଳକେ ଏକାଧିକ ମକଦମାର ସମ୍ମୁଖୀନ ହୋଇଥିଲେ ମାତୃଭୂମିର ପ୍ରତିଷ୍ଠାତା-ସମ୍ପାଦକ ବାଳକୃଷ୍ଣ କର । ତଥାପି ସେ ଭାଙ୍ଗି ପଡ଼ି ନଥିଲେ । ତାଙ୍କ ମନବଳରେ ମୁଗ୍ଧ ହୋଇ ସେତେବେଳେ ମାତୃଭୂମି ଓ ବାଳକୃଷ୍ଣ କରଙ୍କୁ ସାହାଯ୍ୟ ଦେବା ଲାଗି ଗଠିତ ହୋଇଥିଲା 'ମାତୃଭୂମି ସହାୟକ କମିଟି' । ଉକ୍ତ କମିଟିରେ ଥିଲେ ପଣ୍ଡିତ ନୀଳକଣ୍ଠ ଦାସ, ଡଃ ପ୍ରାଣକୃଷ୍ଣ ପରିଜା, ପଣ୍ଡିତ ଗୋଦାବରୀଶ ମିଶ୍ର, ଶ୍ରୀ ଶ୍ୟାମସୁନ୍ଦର ମିଶ୍ର, ଶ୍ରୀ ଗୋଦାବରୀଶ ମହାପାତ୍ର, କମ୍ୟୁନିଷ୍ଟ ନେତା ଶ୍ରୀ ଶରତ ଚନ୍ଦ୍ର ପଟ୍ଟନାୟକ ଓ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ପ୍ରମୁଖ ବଶିଷ୍ଟ ବ୍ୟକ୍ତିମାନେ ।

ଅନ୍ୟ ମକଦମାଗୁଡ଼ିକ କିଛିଦିନ ପରେ ଖାରଜ ହୋଇଯାଇଥିଲେ ମଧ୍ୟ ଡଃ ମହତାବଙ୍କ ମକଦମା ଚାଲିଥିଲା । ଡଃ ମହତାବ ୧୯୫୪ ମସିହାରେ ବମ୍ବେର ରାଜ୍ୟପାଳ ହୋଇଯିବାରୁ ସେହି ମକଦମାର ସମାପ୍ତି ଘଟିଥିଲା ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟଙ୍କ ମଧ୍ୟସ୍ଥତାରେ ।

ପରେ ପୁଣି ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ଶ୍ରୀ ଯଶୋବନ୍ତ ନାରାୟଣ ସୁକ୍‌ଙ୍କର 'ମାତୃଭୂମି'ରେ ତାଙ୍କ ସମ୍ପର୍କରେ ପ୍ରକାଶିତ ଏକ ସମ୍ବାଦ ପାଇଁ ସମ୍ପାଦକ ଓ ଓ ପ୍ରକାଶକଙ୍କ ନାମରେ ଏକ ମାନହାନି ମକଦମା କରିଥିଲେ । ସେହି ମକଦମାରେ ତଳକୋର୍ଟ ଓ ଓଡ଼ିଶା ହାଇକୋର୍ଟ ମାତୃଭୂମିର ସମ୍ପାଦକ, ମୁଦ୍ରାକର-ପ୍ରକାଶକଙ୍କୁ ଦଣ୍ଡିତ କରିଥିଲେ । କିନ୍ତୁ ସୁପ୍ରିମକୋର୍ଟରେ ମକଦମା ଲଢ଼ି ମାତୃଭୂମି ଜିଣିଥିଲା ଓ ନିଜର ପ୍ରତିଷ୍ଠା ବଜାୟ ରଖିଥିଲା ।

ମାତୃଭୂମିର ଏହିସବୁ ମକଦମା ବେଳେ ଆଡ଼ଭୋକେଟ୍ ଶ୍ରୀ ଅଶୋକ ଦାସ, ଶ୍ରୀ ଅମିତାଭ ମହାପାତ୍ର, ଶ୍ରୀ ଶ୍ରୀନିବାସ ମିଶ୍ର (ଖ), ଶ୍ରୀ ଲିଙ୍ଗରାଜ ରଥ ଓ ଶ୍ରୀ ବିପିନ୍ ବିହାରୀ ରଥ ପ୍ରମୁଖ କଟକର ବଶିଷ୍ଟ ଆଇନଜୀବୀମାନେ ବାଳକୃଷ୍ଣ କରଙ୍କୁ ସାହାଯ୍ୟ କରିବାଲାଗି ସ୍ୱତଃପ୍ରବୃତ୍ତ ହୋଇ ଆଗେଇ ଆସିଥିଲେ । ବର୍ତ୍ତମାନ ଶ୍ରୀ ଲିଙ୍ଗରାଜ ରଥ ଓଡ଼ିଶା ହାଇକୋର୍ଟର ମାନ୍ୟବର ବିଚାରପତି ଅଛନ୍ତି ।

'ମାତୃଭୂମି' ବାଳକୃଷ୍ଣ କରଙ୍କର ଶେଷ କୃତି । ୧୯୫୭ ମସିହା ଅଗଷ୍ଟ ମାସ ୫ ତାରିଖରେ ବାଳକୃଷ୍ଣଙ୍କର ଦେହାନ୍ତ ହେଲା । ବାଳକୃଷ୍ଣ ଅସୁସ୍ଥ ହେବାରୁ ସେ ଚିନ୍ତାମଣି ପାଣିଗ୍ରାହୀଙ୍କୁ ସମ୍ପାଦନା ଦାୟିତ୍ୱ ନ୍ୟସ୍ତ କରିଥିଲେ । ପରେ ଶ୍ରୀ ଗୌରଚନ୍ଦ୍ର

ଗତ ହେଲେ 'ମାତୃଭୂମି'ର ସମ୍ପାଦକ ୧୯୬୯ ମସିହା ପର୍ଯ୍ୟନ୍ତ ଏବଂ ବାଳକୃଷ୍ଣଙ୍କର ଜ୍ୟେଷ୍ଠପୁତ୍ର ଶ୍ରୀ ବିଚିତ୍ରାନନ୍ଦ କର ଯୁଗ୍ମ ସମ୍ପାଦକ ଭାବରେ ତାଙ୍କୁ ସହଯୋଗ କରୁଥିଲେ ।

୧୯୭୦ ମସିହାରେ ବିଚିତ୍ରା ନନ୍ଦ କର ହେଲେ 'ମାତୃଭୂମି'ର ସମ୍ପାଦକ । 'ମାତୃଭୂମି' ବ୍ୟକ୍ତିଗତ ଉଦ୍ୟମରେ ଆରମ୍ଭ ହୋଇଥିଲା ସତ; ମାତ୍ର ବ୍ୟକ୍ତିଗତ ଲାଭ ପାଇଁ ନୁହେଁ । ଓଡ଼ିଆ ଜାତିର ସେବା ଓ ସ୍ୱାଧୀନ ଭାବରେ ମତପ୍ରକାଶ ଥିଲା ତାହାର ଅସଲ ଉଦ୍ଦେଶ୍ୟ । ମାତ୍ର, ବ୍ୟକ୍ତିଗତ ସ୍ୱାର୍ଥ ଓ ପାରିବାରିକ ବିବାଦ ଏ ଅନୁଷ୍ଠାନଟିକୁ ଗ୍ରାରଖାର କରିଦେଲା ।

ଦୁରୂହ ପାରିବାରିକ ଦ୍ୱନ୍ଦ୍ୱ ଯୋଗୁଁ 'ମାତୃଭୂମି', ସାରସ୍ୱତ ପ୍ରେସ୍ ଓ ଅନ୍ୟାନ୍ୟ ସମ୍ପତ୍ତି ମାଲିମକଦମାଭୁକ୍ତ ହୋଇ ପଡ଼ିବାରୁ ମାତୃଭୂମିର ଉନ୍ନତିରେ ଘୋର ବାଧା ଉପୁଜିଲା । ମାତୃଭୂମି ୧୯୭୮ ମସିହା ଜାନୁୟାରି ମାସରୁ ୧୯୮୦ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ ଅଢ଼େଇ ବର୍ଷକାଳ ଅଲ୍ ଓଡ଼ିଶା ନନ୍ ଜର୍ଣ୍ଣାଲିଷ୍ଟ ଏମ୍ପ୍ଲଇଜ୍ ୟୁନିଅନ୍ ଦ୍ୱାରା ପରିଚାଳିତ ହେଲା । ସେତେବେଳେ ପୂର୍ବତନ କେନ୍ଦ୍ରମନ୍ତ୍ରୀ ଶ୍ରୀଯୁକ୍ତ ବିବୁଧେନ୍ଦ୍ର ମିଶ୍ର ଅଳ୍ପ କେତେମାସ ପାଇଁ ମାତୃଭୂମିର ସମ୍ପାଦକ ହୋଇ-ଥିଲେ । ମୁଖ୍ୟତଃ ମାତୃଭୂମିର ପରିଚାଳନା ଭାର ତା'ର କେତେକ କର୍ମଚାରୀ ସେତେବେଳେ ନେଇଥିଲେ । ଯାହା ଫଳରେ ମାତୃଭୂମି ମାଟିରେ ମିଶିଗଲା ପରି ସୁପ୍ତ ଓ ମୁମୂର୍ଷ ହୋଇଗଲା ।

୧୯୮୦ ମସିହାରେ ମାତୃଭୂମି ପୁଣି ତା'ର ପୈତୃକ ବଂଶୋଦ୍ଭବଙ୍କ ହାତକୁ ଆସିଲା । ସତ୍ୟ ଓ ନ୍ୟାୟର ଜୟ ଯୁଗେ ଯୁଗେ । ୧୯୮୦ ମସିହା ଜୁଲାଇ ମାସରେ ବାଳକୃଷ୍ଣ କରଙ୍କର ଜ୍ୟେଷ୍ଠ ପୁତ୍ର ଶ୍ରୀ ବିଚିତ୍ରାନନ୍ଦ କର ଓଡ଼ିଶାର ଉଚ୍ଚ ନ୍ୟାୟାଳୟ ଦ୍ୱାରା ମାତୃଭୂମିର ରିସିଭର ଭାବେ ନିଯୁକ୍ତ ହେଲେ । ୧୯୮୦ରୁ ୧୯୮୭ ଏହି ସାତବର୍ଷ ମଧ୍ୟରେ ମାତୃଭୂମିର ସମୃଦ୍ଧି ପାଇଁ ସେ ନିରବଚ୍ଛିନ୍ନ ଉଦ୍ୟମ କରିଥିଲେ । ପାରି-ବାରିକ ଗଣ୍ଡଗୋଳ ଓ ଆର୍ଥିକ ଅସ୍ୱଚ୍ଛଳତା ସତ୍ତ୍ୱେ ମାତୃଭୂମିର ଗୁଣାତ୍ମକ ବିକାଶ ହୋଇଥିଲା ଓ ପୂର୍ବର ମାନ ଅକ୍ଷୁଣ୍ଣ ରହିଥିଲା । ମାତ୍ର ବିଧିର ବିଧାନ ବଡ଼ ବିଚିତ୍ର । ମର୍ଯ୍ୟାଦା ପୁରୁଷୋତ୍ତମ ରାମଚନ୍ଦ୍ରଙ୍କୁ ମଧ୍ୟ ଚଉଦ ବର୍ଷ ବନବାସ କରିବାକୁ ପଡ଼ିଥିଲା ସତ୍ୟରକ୍ଷା ପାଇଁ । ମାତୃଭୂମି ଜୀବନରେ ଅନେକ ଝଡ଼ ମାଡ଼ିଆସିଲା । ୧୯୮୭ ମସିହା ଅକ୍ଟୋବର ମାସ ୩୧ ତାରିଖରେ ବିଚିତ୍ରାନନ୍ଦ କରଙ୍କର ଅକାଳ ବିୟୋଗ ଯୋଗୁଁ ମାତୃଭୂମିର ସଂସାରରେ ପୁଣି ସୃଷ୍ଟି ହେଲା ଘୂର୍ଣ୍ଣିବାତ୍ୟା ।

ତା'ପରେ ୧୯୮୭ ନଭେମ୍ବର ୧୧ ତାରିଖରେ ମାନ୍ୟବର ହାଇକୋର୍ଟଙ୍କ ଦ୍ୱାରା ଶ୍ରୀଯୁକ୍ତ ବିଚିତ୍ରାନନ୍ଦ କରଙ୍କ ଜ୍ୟେଷ୍ଠ ପୁତ୍ର ଶ୍ରୀମାନ୍ ବିକାଶ କର ରିସିଭର୍ ଭାବେ

ମାତୃଭୂମିର ପରିଚାଳନା ଦାୟିତ୍ୱ ଗ୍ରହଣ କଲେ । କିନ୍ତୁ ଶ୍ରୀଭେଦକାଶୀଙ୍କ କୁଚକ୍ରାନ୍ତର କ୍ରୀଡ଼ା ପୁତ୍ତଳିକା ସାଜି କେତେକ କର୍ମଚାରୀ ଧାରାବାହିକ ଗଣ୍ଡଗୋଳ ଘଟାଇବାରେ ଲାଗିରହିଲେ । ଏହି ସମୟରେ ପଣ୍ଡିତ ପ୍ରବୋଧ ମିଶ୍ର ମଧ୍ୟ କିଛିଦିନ ପାଇଁ ମାତୃଭୂମିର ସମ୍ପାଦକ ହୋଇଥିଲେ ।

ଶ୍ରୀମାନ୍ ପ୍ରକାଶ କରଙ୍କ ରିସିଭରସିପ୍ ଏକକାଳୀନ ଦୀର୍ଘକାଳ ନ ହୋଇ ମାତ୍ର କ୍ଷଣିକିଆ ହେଉଥିବାରୁ ଏବଂ ବାରମ୍ବାର ମାନ୍ୟବର କୋର୍ଟଙ୍କ ଦ୍ୱାରା ପରିବର୍ତ୍ତିତ ହେଉଥିବାର ସୁଯୋଗ ନେଇ ଶତ୍ରୁପକ୍ଷ ଅଧିକ ଗଣ୍ଡଗୋଳର ସୂତ୍ରପାତ ଆରମ୍ଭ କଲେ । ଏହି ଅବସରରେ ୧୯୮୯ରେ ପଣ୍ଡିତ ମିଶ୍ର ସମ୍ପାଦକ ପଦରୁ ସ୍ୱଇଚ୍ଛାରେ ଇସ୍ତଫା ଦେଇ ଚାଲିଗଲେ ।

ଅତି ଅଳ୍ପ ବୟସରୁ ମାତ୍ର ୩୩ ବର୍ଷ ବୟସରେ ଶ୍ରୀମାନ୍ ପ୍ରକାଶ ଉଭୟ ସମ୍ପାଦନା ଓ ପରିଚାଳନା ଦାୟିତ୍ୱ ଗ୍ରହଣ କରି ଅତି ସାହସିକତା ଓ କର୍ତ୍ତବ୍ୟ ନିଷ୍ଠାର ପରିଚୟ ପ୍ରଦାନ କରିଥିଲେ । ମାତ୍ର ଶତ୍ରୁଙ୍କ ଗାତ୍ରଦାହ ପ୍ରବଳ ହେଲା । ଏକଥା ନିଶ୍ଚିତ ଯେ, ଯେଉଁ ଲୋକ ନିଜେ କିଛି କରିପାରେ ନାହିଁ; ସେ ଅନ୍ୟର ନିଷ୍ଠା ଓ କାର୍ଯ୍ୟଦକ୍ଷତାରେ ଅସହଣି ହୋଇ ଉଠେ ।

ଗୋଟିଏ ଅନୁଷ୍ଠାନ ଗଢ଼ିବା ଯେ କେତେ କଷ୍ଟକର ତା' ସେ ହୃଦୟଙ୍ଗମ କରିପାରେ ନାହିଁ । ତେଣୁ, ଅନୁଷ୍ଠାନରେ ବିଭ୍ରାଟ ଓ ବିଭ୍ରାନ୍ତି ସୃଷ୍ଟି କରି ତାହାକୁ ଚଳଚଞ୍ଚଳ କରିଦେବାରେ ନିଜର ପାରଦର୍ଶିତା ପ୍ରତିପାଦନ କରିବାକୁ ବିଶେଷ ଯୋଗ୍ୟତା ବୋଲି ମନେ କରେ । କାଳେ ପ୍ରକାଶଙ୍କ ତତ୍ତ୍ୱାବଧାନରେ ମାତୃଭୂମି ପୁଣି ତା'ର ହୃତଗୌରବ ଫେରିପାଇବ, ଅତୀତ ବୈଭବର କାହାଣୀ ଜନମୁଖରେ ଗୁଞ୍ଜରିତ ହେବ, ଏହି ଆଶଙ୍କାରେ ବିଗଳିତ ହେଲା ବିରୋଧୀମାନଙ୍କ ଅନ୍ତର । ଈର୍ଷାରେ ସେମାନେ ସଡ଼ିଯିବାକୁ ଲାଗିଲେ । ତେଣୁ ବାରମ୍ବାର ବିଭ୍ରାଟ ସୃଷ୍ଟି କରି, ନାନା ପ୍ରତିଘାତ ଦେଇ ଉଦୀୟମାନ ଗୋଟିଏ ଯୁବକର ମନର ଆଣ୍ଠୁ ଭାଙ୍ଗିବା ଲକ୍ଷ୍ୟରେ ସେମାନେ ବ୍ରତୀ ହେଲେ । ଯାହା ଫଳରେ ଗତ ୧୯୯୧ ଡିସେମ୍ବର ୧୧ ତାରିଖରୁ ୧୯୯୨ ଫେବୃୟାରୀ ୨୬ ତାରିଖ ପର୍ଯ୍ୟନ୍ତ ମାତୃଭୂମି ପ୍ରକାଶନ ବନ୍ଦ ରହିଥିଲା । ତା'ପରେ ପୁଣି ୧୯୯୨ ଏପ୍ରିଲ ୩୦ ତାରିଖ ପର୍ଯ୍ୟନ୍ତ ମାତୃଭୂମି ପ୍ରକାଶ ପାଇଲା ସତ, ମାତ୍ର ଶ୍ରମିକ ଦିବସ ମଇ ୧ ତାରିଖ ଠାରୁ ଶ୍ରମିକଙ୍କ ଅସହଯୋଗ ଯୋଗୁଁ ତାହାର ପ୍ରକାଶନ ପୁଣି ବନ୍ଦ ରହିବାକୁ ପରିସ୍ଥିତି ବାଧ୍ୟକଲା ।

ତଥାପି ଶ୍ରୀମାନ୍ ପ୍ରକାଶ ପିତାମହଙ୍କ କୃତିକୁ ଯଥାସମ୍ମାନ ଦେଖାଇ ନାନା ପ୍ରତିଘାତ ସତ୍ତ୍ୱେ ୧୯୯୩ରେ ତାହା ଚଳାଇବାକୁ ଚେଷ୍ଟା କରିଥିଲେ । କିନ୍ତୁ କର୍ମଚାରୀଙ୍କ ଅନାବଶ୍ୟକ ଅନାହୂତ ଆଚରଣ ଓ ଜିଦ୍ ଯୋଗୁଁ ତାହା ନିୟମିତ ସମ୍ଭବ ହୋଇ ପାରିନାହିଁ ।

ଆଇନର ଆବଷ୍ଟନୀ ଭିତରୁ ସେ ବାହାର ପାଇପାରି ନାହାନ୍ତି ଆଇନାନୁମୋଦିତ କାର୍ଯ୍ୟ ସମ୍ପାଦନ ହିଁ ମାନବିକତାର ଧର୍ମ ।

ମାତୃଭୂମିର ପୁନଃ ପ୍ରକାଶନ ଓ ଜାଗରଣ ପାଇଁ ଏବେ ବି ଚେଷ୍ଟା ଅବ୍ୟାହତ ରହିଛି । ସମାଜ, ସାହିତ୍ୟ ଓ ସଂସ୍କୃତିର ବାର୍ତ୍ତାବହ ରୂପେ ମାତୃଭୂମିର ଅବଦାନ ସ୍ମରଣୀୟ ।

ମାତୃଭୂମି ସମ୍ବାଦ ପରିବେଷଣ ବ୍ୟତୀତ ସାହିତ୍ୟର ବିଭିନ୍ନ ବିଭାଗର ଉନ୍ନତି ପାଇଁ ଜାଗ୍ରତ ଥିଲି । ଶିଶୁସାହିତ୍ୟର ବିକାଶ ପାଇଁ ସେ 'ଫୁଲଗୁଚ୍ଛ' ଓ 'କିଶୋର ସଉଜ' ପ୍ରକାଶ କରିଥିଲି । ସମ୍ବାଦପତ୍ରରେ ନିୟମିତ ଫଟୋ ପ୍ରକାଶ କରିବାରେ ମାତୃଭୂମି ଅଗ୍ରଣୀ ଥିଲି । ସମାଜରେ ନାରୀଶିକ୍ଷା, ନିରକ୍ଷରତା ଓ ବିଧବା ବିବାହପରି ବହୁ ସାମାଜିକ କୁସଂସ୍କାର ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରିଥିଲି । ସୁନାକୁ ନିଆଁରେ ପୋଡ଼ିଲେ ସେ ଯେପରି ଅଧିକ ଉଜ୍ଜ୍ୱଳ ହୋଇଉଠେ ସେହିପରି ବାରମ୍ବାର ପ୍ରତିଘାତ ଅଗ୍ନିରେ ଦଗ୍ଧ ହୋଇ ମାତୃଭୂମି ପୁଣି ତା'ର ମାର୍ଜିତ ଓ ରୁଚିପୂର୍ଣ୍ଣ କଳେବରରେ ଉଦ୍ଭାସିତ ହେବ । ଏହାହିଁ ଓଡ଼ିଶାବାସୀ ଓ ପରିବାରବର୍ଗ ଆଶା କରନ୍ତି, ତେବେ ମାନ୍ୟବର ବିଗୃହଳପୃ ଉପରେ ସବୁ ନିର୍ଭର କରେ ।



# କଟକ ପୌରପାଳିକା

ଶ୍ରୀ ଅପୂର୍ବ ରଞ୍ଜନ ରାୟ

୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲେ ହେଁ, ୧୯୫୦ରେ ସ୍ୱତନ୍ତ୍ର ଓଡ଼ିଶା ପୌରସଂସ୍ଥା ଆଇନ ପ୍ରଣିତ ହୋଇ, ଏହା ୧୯୫୧ ଠାରୁ କାର୍ଯ୍ୟକାରୀ ହେଲା । ୧୯୩୬ରୁ ୧୯୫୦ ପର୍ଯ୍ୟନ୍ତ ଓଡ଼ିଶାର ପୌରସଂସ୍ଥାଗୁଡ଼ିକ ବିହାର-ଓଡ଼ିଶା ପୌର ଆଇନ୍ ଦ୍ୱାରା ପରିଚାଳିତ ହେଉଥିଲା । ଏହି ସମୟରେ ୧୯୨୨ରେ ପ୍ରଣିତ ବିହାର-ଓଡ଼ିଶା ପୌର ଆଇନ୍ ଅଧୀନରେ ବାଲେଶ୍ୱର, କଟକ, ପୁରୀ ଓ ସମ୍ବଲପୁର ଜିଲ୍ଲା ରହିଥିଲା । ୧୯୨୦ ପ୍ରଣିତ ମାନ୍ଦ୍ରାଜ ପୌର ଆଇନ ଦ୍ୱାରା ଗଞ୍ଜାମ ଓ କୋରାପୁଟ ଜିଲ୍ଲା ଦ୍ୱୟର ପୌରପାଳିକାଗୁଡ଼ିକ ପରିଚାଳିତ ହେଉଥିଲା । ଓଡ଼ିଶା ଇତିହାସ କହେ ଯେ, ୧୮୦୩ରୁ ୧୮୫୭ ମସିହା ପର୍ଯ୍ୟନ୍ତ ଇଷ୍ଟଇଣ୍ଡିଆ କମ୍ପାନୀ ଓଡ଼ିଶାର ଉନ୍ନତି ପାଇଁ ସେପରି କିଛି ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିନଥିଲେ । ୧୮୫୭ ମସିହାରେ ହୋଇଥିବା ଐତିହାସିକ ସିପାହୀ ବିଦ୍ରୋହ ଇଂରେଜ ସରକାରଙ୍କୁ ଭାରତୀୟମାନଙ୍କର ବିଭିନ୍ନ ସମସ୍ୟାକୁ ସମାଧାନ ଦିଗରେ ଯତ୍ନବାନ ହେବାପାଇଁ ସଚେତନ କରିଦେଲା । ଏହି ସମୟରେ କଟକ ଏକ ପୁରାତନ ସହର ଏବଂ ଏଠାରେ ତତ୍କାଳୀନ ଇଂରେଜ କମିଶନରଙ୍କ ମୁଖ୍ୟ କାର୍ଯ୍ୟାଳୟ ଥିବାରୁ ୧୮୭୬ ମସିହା ଜୁଲାଇ ୪ ତାରିଖରେ କଟକ ପୌରପାଳିକା ଗଠିତ ହେଲା । କିନ୍ତୁ ଏହା ପୂର୍ବରୁ ୧୮୬୯ ମାର୍ଚ୍ଚ ୧୦ ତାରିଖରେ କେନ୍ଦ୍ରାପଡ଼ା ଓ ୧୮୬୯ ଅପ୍ରେଲ ୧ ତାରିଖରେ ଯାଜପୁର ପୌରସଂସ୍ଥା ଗଠିତ ହୋଇ ସାରିଥିଲା । ୧୮୬୬ରେ ଓଡ଼ିଶାରେ ସୃଷ୍ଟି ହୋଇଥିବା ଦୁର୍ଭିକ୍ଷଜନିତ ଅଭାବ ଅନାଟନ ପାଇଁ ଓଡ଼ିଶାର ସାମାଜିକ ଜୀବନ ବିପର୍ଯ୍ୟସ୍ତ ହୋଇଯାଇଥିବା ଯୋଗୁଁ କଟକ ପୌରପାଳିକା ଗଠନ ବିଳମ୍ବ ଘଟିଥିଲା ।

୧୮୮୪ ମଇ ୧୮ ତାରିଖରେ ଲର୍ଡ଼ ରିପନ୍‌ଙ୍କ ଦ୍ୱାରା ସ୍ୱାୟତ୍ତଶାସନ ସମ୍ପର୍କିତ ନୂତନ ଆଇନ ପ୍ରଣିତ ହେବା ଯୋଗୁଁ, ଭାରତରେ ସ୍ଥାନୀୟ ଲୋକପ୍ରତିନିଧି ମୂଳକ ଶାସନ ବ୍ୟବସ୍ଥାକୁ ଅଧିକ ଗୁରୁତ୍ୱ ଦିଆଯାଇ ପାରିଲା । ଏହି ନୂତନ ଚିନ୍ତାଧାରା

ଅନୁଯାୟୀ ବଙ୍ଗଳା କାଉନ୍‌ସିଲ ପୌରପାଳିକା ପାଇଁ ୧୮୭୬ର ୫ ଧାରାକୁ ପରିବର୍ତ୍ତନ ଓ ପରିମାର୍ଜନ କଲା ।

ପୌରପାଳିକା ଗଠନ ପୂର୍ବରୁ କଟକ ସହରର କାର୍ଯ୍ୟକଳାପ 'ଟାଉନ କମିଟି' ହାତରେ ନ୍ୟସ୍ତ ଥିଲା । ଜିଲ୍ଲା ଟାଉନ ଆଇନ ୧୮୬୮ର ୬ଷ୍ଠ ଧାରା ଅଧୀନରେ କଟକ ଟାଉନ କମିଟି ରହିଥିଲା । ଏହି କଟକ ଟାଉନ କମିଟିରେ ୧୯ ଜଣ ସଦସ୍ୟ ରହିଥିଲେ । ସେମାନଙ୍କ ଭିତରୁ ୧୨ ଜଣ କଟକ ସହରବାସିନ୍ଦା ଓ ୭ ଜଣ ଇଉରୋପୀୟ ସଦସ୍ୟ ଥିଲେ । ଏହା ୧୮୬୪ରୁ ୧୮୭୫ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲା । ଏହି ଧାରାକୁ ସଂଶୋଧନ କରି ବଙ୍ଗଳା କାଉନସିଲର କଟକ ଟାଉନ କମିଟିକୁ ପୌରପାଳିକା ଆଇନ ପରିସରଭୁକ୍ତ କଲା । ୧୮୭୬ ଜୁଲାଇ ୧ ତାରିଖରେ ୧୮୭୬ର ପୌରପାଳିକା ଆଇନର ୫ ଧାରାକୁ ବଙ୍ଗଳା କାଉନସିଲ ଗ୍ରହଣ କରିବା ଯୋଗୁଁ, ସେହିବର୍ଷ ଜୁଲାଇ ୪ ତାରିଖରେ କଟକ ପୌରସଂସ୍ଥା ଗଠିତ ହୋଇପାରିଲା । ୧୯୨୨ରେ ୬ଷ୍ଠ ଧାରା ଅନୁଯାୟୀ ବିହାର-ଓଡ଼ିଶା ପାଇଁ ପ୍ରବର୍ତ୍ତିତ ପୌରସଂସ୍ଥା ଆଇନ୍ କଟକ ପୌରସଂସ୍ଥା ପାଇଁ ୧୯୨୩ ମସିହା ଜାନୁଆରୀ ୧ ତାରିଖରେ ଲାଗୁହେଲା । ଏହି ଆଇନର ଧାରା ପାଟଣାଠାରେ ଉତ୍କଳ ଗୌରବ ମଧୁସୂଦନଙ୍କ ଦ୍ୱାରା ଉପସ୍ଥାପିତ ହୋଇଥିଲା । ୧୯୧୨ ଅପ୍ରେଲ ୧ ତାରିଖରେ ବଙ୍ଗଳାଠାରୁ ବିହାର-ଓଡ଼ିଶା ପ୍ରଦେଶ ସ୍ୱତନ୍ତ୍ର ହୋଇଥିଲେ ସୁଦ୍ଧା, ୧୮୮୪ର ୩ ଧାରା ବଙ୍ଗଳା ପୌରପାଳିକା ଆଇନ, ୧୯୧୨ରୁ ୧୯୨୨ ପର୍ଯ୍ୟନ୍ତ ବିହାର-ଓଡ଼ିଶାରେ କାର୍ଯ୍ୟକାରୀ ହେବାପାଇଁ ସରକାରୀ ଅନୁମତି ଲାଭ କରିଥିଲା । ୧୮୮୪ର ୩ ଧାରା ବଙ୍ଗଳା ପୌରସଂସ୍ଥା ଆଇନ, ପ୍ରଥମେ ୧୮୮୪ ଅଗଷ୍ଟ ୧ ତାରିଖରେ କାର୍ଯ୍ୟକାରୀ ହୋଇଥିଲା ।

୧୯୦୩ ମସିହା ଜୁଲାଇ ୨ ତାରିଖରେ କଟକ ପୌରପାଳିକାର ସୀମା ଥିଲା ୪.୩ ସ୍କୋୟାର ମାଇଲ । କାଳକ୍ରମେ ଏହାର ସୀମା ବଢ଼ିବାକୁ ଲାଗିଲା । ୧୯୩୪-୩୫ ମସିହା ମଧ୍ୟରେ ଏହାର ସୀମା ୨୦ ସ୍କୋୟାର ମାଇଲକୁ ବୃଦ୍ଧି ପାଇଥିଲା । ୧୯୧୧ ମସିହା ଜୁଲାଇ ୧ ତାରିଖରେ କ୍ୟାଣ୍ଟନମେଣ୍ଟ ଅଞ୍ଚଳ ପୌରସଂସ୍ଥା ପରିସରଭୁକ୍ତ ହେଲା । ୧୯୨୦ ମଇ ୧୮ ତାରିଖର ସରକାରୀ ସିଦ୍ଧାନ୍ତ ଅନୁଯାୟୀ ଦେଉଳସାହି ଓ ବିଡ଼ାନାସୀ ଗ୍ରାମଗୁଡ଼ିକ ଏହା ସହିତ ମିଶିବା ଯୋଗୁଁ ପୌରସଂସ୍ଥାର ପଶ୍ଚିମାଞ୍ଚଳର ସୀମା ପରିବର୍ଦ୍ଧିତ ହୋଇପାରିଲା । ୧୯୨୧ ଅକ୍ଟୋବର ୪ ତାରିଖରେ ତତ୍କାଳୀନ ଓଡ଼ିଶା ଡିଭିଜନ କମିଶନର ଜେ. ଏଫ୍. ଗ୍ରୁନଙ୍କ ସୁପାରିଶ କ୍ରମେ, ତାଳଦଣ୍ଡା ଓ ରେଲଲାଇନ ଭିତରେ ଅନ୍ତର୍ଭୁକ୍ତ ଅଞ୍ଚଳ ସମେତ ରେଭେନ୍‌ସା କଲେଜକୁ ପୌରସଂସ୍ଥାଭୁକ୍ତ କରାଗଲା । ପୂର୍ବାଞ୍ଚଳ ସୀମା ପରିବର୍ଦ୍ଧିତ ହେବାଯୋଗୁଁ ଏହାର ସୀମା ଆହୁରି ୧୭ ସ୍କୋୟାର ମାଇଲ ଅଧିକ ହୋଇଗଲା । ଧୀରେ ଧୀରେ ଏହାର ଚତୁଃସୀମା ବୃଦ୍ଧି ପାଇଥିଲା ।

ପ୍ରଥମ ନିର୍ବାଚନ ହେବା ପୂର୍ବରୁ ଏହା ୬ଟି ୱାର୍ଡ଼କୁ ନେଇ ଗଠିତ ହୋଇଥିଲା । ପରେ ଏହାକୁ ୯ଟି ୱାର୍ଡରେ ବିଭକ୍ତ କରାଯାଇଥିଲା । ୧୮୮୪ ଡିସେମ୍ବର ମାସ

ପ୍ରଥମ ପୌର ନିର୍ବାଚନରେ ଏହି ୱାର୍ଡଗୁଡ଼ିକ ପାଇଁ ୧୮ ଜଣ ମ୍ୟୁନିସିପାଲ୍ କାଉନସିଲରଙ୍କୁ ନିର୍ବାଚିତ କରାଯାଇଥିଲା । ଅଞ୍ଚଳ ସଂଖ୍ୟା ବଢ଼ିବା ସହିତ, କମିଶନରଙ୍କ ସଂଖ୍ୟା ମଧ୍ୟ ବଢ଼ିଥିଲା । ୧୮୭୨ର ଜନଗଣନା ଅନୁଯାୟୀ କଟକ ସହରର ଜନସଂଖ୍ୟା ୪୨୬୬୭ ଥିଲା । କ୍ୟାଣ୍ଟନମେଣ୍ଟ ଅଞ୍ଚଳ ମିଶ୍ରଣ ପରେ ଏହାର ଜନସଂଖ୍ୟା ୫୧୩୬୪ ହୋଇଥିଲା ।

୧୯୩୨ ମସିହାରେ କଟକ ପୌର ସଂସ୍ଥା ପାଇଁ ଏକ୍ଜିକ୍ୟୁଟିଭ ଅଫିସର ନିଯୁକ୍ତି ପାଇଁ ଓଡ଼ିଶା ଡିଭିଜନ କମିଶନର ମିଷ୍ଟର ଫିଲିପ୍ ସୁପାରିଶ କରିଥିଲେ । ଏହାର ଅଧିକ କାର୍ଯ୍ୟ ଓ ସମସ୍ୟାପାଇଁ ସେ ଏପରି ମତାମତ ଦେଇଥିଲେ ସୁଦ୍ଧା, ତାହା ହଠାତ୍ କାର୍ଯ୍ୟକାରୀ ହୋଇ ନଥିଲା । ୧୯୩୩ ମସିହାରେ ଏହି ମତାମତ କାର୍ଯ୍ୟକାରୀ ହୋଇଥିଲା ।

କଟକ ମ୍ୟୁନିସିପାଲିଟି ଦ୍ୱାରା ସେତେବେଳେ ୩୦ଟି ଭର୍ଣ୍ଣାକୁଲର ସ୍କୁଲ ପରିଚାଳିତ ହେଉଥିଲା । ୧୮୮୩-୮୪ ମସିହାରେ ଶିକ୍ଷା ପାଇଁ ବାର୍ଷିକ ୨୩୨୯ ଟଙ୍କା ଖର୍ଚ୍ଚ କରାଯାଉଥିଲା । ସେତେବେଳେ କୌଣସି ହାଇସ୍କୁଲ କିମ୍ବା ଏମ୍.ଇ. ସ୍କୁଲ ପୌରସଂସ୍ଥା ଦ୍ୱାରା ପରିଚାଳିତ ହେଉ ନ ଥିଲା । ୧୯୧୯-୧୯୨୦ ମସିହାରେ ପୌରସଂସ୍ଥା ୨ଟି ନୈଶ ବିଦ୍ୟାଳୟ କେବଳମାତ୍ର ବାଳକମାନଙ୍କ ପାଇଁ ଖୋଲିଥିଲା । ଏହି ସମୟ ମଧ୍ୟରେ ୨ଟି ସଂସ୍କୃତ ଟୋଲ ମଧ୍ୟ ପ୍ରତିଷ୍ଠା କରାଯାଇଥିଲା । କ୍ରମେ ଧୀରେ ଧୀରେ ଅଧିକ ଶିକ୍ଷାନୁଷ୍ଠାନ ସହରରେ ଗଢ଼ି ଉଠିଥିଲା ।

କଟକ ସହର ଓଡ଼ିଶା ଡିଭିଜନର ମୁଖ୍ୟ କାର୍ଯ୍ୟାଳୟ ହୋଇଥିବାରୁ ୧୮୮୨-୮୩ରେ ସରକାରୀ ସ୍ତରରେ କଟକ ପୌରାଞ୍ଚଳରେ ରାସ୍ତା ଲାଇଟର ବ୍ୟବସ୍ଥା କରାଯାଇଥିଲା । ସେତେବେଳେ କଟକ ସହରରେ ବିଦ୍ୟୁତ୍ ଆଲୋକର ସୁବିଧା ନଥିଲା ।

୧୯୨୯-୩୦ରେ ପୌର ସଂସ୍ଥା କଟକ ଇଲେକଟ୍ରିକ୍ ସପ୍ଲାଇ କମ୍ପାନୀ ସହିତ ଯୋଗାଯୋଗ କରି, ସହରରେ ବିଜୁଳି ଆଲୁଅର ବ୍ୟବସ୍ଥା କରିଥିଲା । ୨୦୦ ବିଜୁଳି ଆଲୋକ ସହିତ, ୬୮୮ଟି କିରୋସିନ ଷ୍ଟ୍ରୀଟ ଲାଇଟ, ସହର ପାଇଁ ପୌର ସଂସ୍ଥା ସୁବିଧା କରିଥିଲା ।

କାଳକ୍ରମେ ଏହାର ରୂପରେଖ ଭିନ୍ନ ହୋଇଗଲା । ପୌରସଂସ୍ଥା ୩୦ଟି ୱାର୍ଡରେ ବିଭକ୍ତ ହୋଇଛି । ୩୦ ଜଣ କାଉନ୍‌ସିଲର, ଏହି ୱାର୍ଡଗୁଡ଼ିକରୁ ନିର୍ବାଚିତ ହେଉଛନ୍ତି । ସଂପ୍ରତି ଚେୟାରମ୍ୟାନ ନିର୍ବାଚନ ସିଧାସଳଖ ଭାବେ କରାଯାଉଛି । ଶ୍ରୀ ତ୍ରିଲୋଚନ କାନୁନ୍‌ଗୋ ଚେୟାର୍‌ମ୍ୟାନ ଓ ଶ୍ରୀ ରଘୁନାଥ ପଣ୍ଡା ଓ.ଏ.ଏସ. (୧) ଏକ୍‌ଜିକ୍ୟୁଟିଭ ଅଫିସର ଅଛନ୍ତି । ସଂପ୍ରତି ଏହାର ଲୋକ ସଂଖ୍ୟା ୧୯୯୧ ଜନଗଣନା ଅନୁଯାୟୀ ୪ ଲକ୍ଷ ୧୪ ହଜାର । ଏହି ସଂସ୍ଥାର ସୀମା ୧୫୨ ସ୍କୋୟାର କିଲୋମିଟର । ପୂର୍ବର କଟକ ଧାନ ଗବେଷଣା କେନ୍ଦ୍ରଠାରୁ ପଶ୍ଚିମରେ ନରାଜ ପର୍ଯ୍ୟନ୍ତ, ଉତ୍ତରରେ ବିରୂପା କୂଳ ଜଗତପୁର ସମେତ ଅଞ୍ଚଳଠାରୁ ଦକ୍ଷିଣରେ କାଠଯୋଡ଼ି ପୋଲ ପର୍ଯ୍ୟନ୍ତ ଏହାର ସୀମା ବ୍ୟାପି ରହିଛି ।



# କଟକରେ ଖ୍ରୀଷ୍ଟିୟାନ ମିଶନାରୀ

ବିଶପ୍ ମହାଚାର୍ଯ୍ୟ ଧୀରେନ୍ଦ୍ର କୁମାର ମହାନ୍ତି

ଇଂଲଣ୍ଡସ୍ଥ ବାପ୍ଟିଷ୍ଟ ମିଶନାରୀ ସୋସାଇଟୀ ଖ୍ରୀଷ୍ଟଧର୍ମ ପ୍ରଚାର ଓ ପ୍ରସାର ନିମନ୍ତେ ଓଡ଼ିଶାକୁ ପ୍ରକୃଷ୍ଟ କ୍ଷେତ୍ର ସ୍ୱରୂପେ ମନୋନୀତ କଲେ । ତେଣୁ ଉକ୍ତ ସୋସାଇଟୀ ଦ୍ୱାରା ପ୍ରେରିତ ହୋଇ ୱିଲିୟମ୍ ବାମ୍ପଟନ୍ ଏବଂ ଜେମ୍ସ୍ ପେଗ୍ସ—୧୮୨୨ ସାଲ ଫେବୃୟାରୀ ୭ ତାରିଖରେ ଓଡ଼ିଶାର ଉପକୂଳ ପଣ୍ଟାମୁଣ୍ଡାଇଠାରେ ପହଞ୍ଚି ସେଠାରୁ ପାଲିଙ୍କି ଯୋଗେ ଯାତ୍ରାକରି ୧୨ ତାରିଖରେ ଓଡ଼ିଶାର ତତ୍କାଳୀନ ରାଜଧାନୀ କଟକ ସହରରେ ପହଞ୍ଚିଲେ । ସେତେବେଳେ ଓଡ଼ିଶା ଇଂରେଜ ଶାସନାଧୀନ ଥିଲା ଏବଂ ଓଡ଼ିଶାରେ ବ୍ରିଟିଶ୍ ଆଇନ୍‌କାନୁନ୍ ପ୍ରଚଳିତ ଥିଲା । ସୁଖର କଥା, ପଶ୍ଚିମବଙ୍ଗର ଶ୍ରୀରାମପୁର ମିଶନ ପ୍ରେସରେ ଓଡ଼ିଆ ଭାଷାରେ ଅନୁବାଦିତ ବାଇବଲ ୧୮୦୯ ସାଲରେ ମୁଦ୍ରିତ ହୋଇ ସାରିଥିଲା ଏବଂ ଖ୍ରୀଷ୍ଟଧର୍ମ ସଂକ୍ରାନ୍ତ କେତେକ ପ୍ରଚାରପତ୍ର, ନୂତନ ନିୟମ ପ୍ରଭୃତି ଓଡ଼ିଆ ଭାଷାରେ ଛପାଯାଇ ଓଡ଼ିଶାରେ ବିତରଣ କରାଯାଇଥିଲା । ଏସବୁ ଦେଖି ସେହି ଦୁଇଜଣ ମିଶନାରୀ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଏବଂ ଖ୍ରୀଷ୍ଟଧର୍ମ ପ୍ରଚାର ଓ ସମାଜ ସେବା ପାଇଁ ଐତିହାସିକ ଭୂମି ଓଡ଼ିଶାକୁ ଆସିଥିଲେ । ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ମିଶନାରୀମାନଙ୍କର ଯେଉଁ ଅବଦାନ ରହିଛି ତାହା ଅବିସ୍ମରଣୀୟ ଦେଶୀୟ ଭାଷାର ଉନ୍ନତି ସାଧନ, ମୁଦ୍ରାଯନ୍ତ୍ର ସ୍ଥାପନ, ପତ୍ରିକା ଓ ପୁସ୍ତକ ପ୍ରଚଳନ ଏବଂ ସ୍କୁଲ ଓ କଲେଜ ସ୍ଥାପନ କରି ଆଧୁନିକ ଶିକ୍ଷା ବ୍ୟବସ୍ଥା ପ୍ରଚଳନ ଦିଗରେ ମିଶନାରୀମାନଙ୍କ ସାଧୁ ଉଦ୍ୟମ ଅବଶ୍ୟ ସ୍ମରଣୀୟ । ସେଥିପାଇଁ ଖ୍ରୀଷ୍ଟିୟାନମାନଙ୍କୁ ଊନବିଂଶ ଶତାବ୍ଦୀର ଭାରତରେ ସଙ୍ଗଠିତ ନବ ଜାଗରଣର ଅଗ୍ରଦୂତ ବୋଲି ବର୍ଣ୍ଣନା କରାଯାଇଥାଏ ।

କଟକ ସହରରେ ମିଶନାରୀମାନଙ୍କ ଧର୍ମପ୍ରଚାର ଫଳରେ ଅନେକଙ୍କୁ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରିବାର ସୌଭାଗ୍ୟ ମିଶନାରୀମାନଙ୍କର ଘଟିଥିଲା । ଏହି ନବଦୀକ୍ଷିତ ଖ୍ରୀଷ୍ଟିୟାନମାନଙ୍କୁ ହିନ୍ଦୁମାନେ ଘୃଣା ଚକ୍ଷୁରେ ଦେଖିବାରୁ ସେମାନେ ବାଧ୍ୟ ହୋଇ ନିମ୍ନଲିଖିତ ସତନ୍ତ୍ର ଗ୍ରାମମାନଙ୍କରେ ବସତି ସ୍ଥାପନ କଲେ ।

(୧) ଖ୍ରୀଷ୍ଟିୟାନପୁର ବା ଯାଚକ୍ ଲେନ୍ ୧୮୦୩ ସାଲରେ କଟକ ସହରରେ ସ୍ଥାପିତ ପ୍ରଥମ ଖ୍ରୀଷ୍ଟିୟାନ ସାହି ।

(୨) ସୋସାଇଟୀ ପୁର ବା କଟକ ଚଣ୍ଡୀ (୧୮୩୩)

(୩) ଲେଣୀ ସାହି ବା ସୁତା ହାଟ (୧୮୪୫)

(୪) ପେଟିନ୍‌ସାହି (୧୮୬୧) ପେଟିନ୍ ନାମକ ଜଣେ ଜଜ୍‌ଙ୍କ ନାମାନୁସାରେ ଏହି ସାହି ନାମିତ । ଏହା କଟକର ଦ୍ୱିତୀୟ ବୃହତ୍ତମ ଖ୍ରୀଷ୍ଟିୟାନ ବସତି ।

ଏହାପରେ ଷ୍ଟୁଆର୍ଟ ପାଟଣା, ମକରବାଗ ଇତ୍ୟାଦି ଖ୍ରୀଷ୍ଟିୟାନ ସାହି ମଧ୍ୟ ସ୍ଥାପିତ ହୋଇଥିଲା ।

୧୮୨୨ ସାଲରେ ୟୁରେପିଆନ୍ ଓ ଆଙ୍ଗ୍ଲୋଇଣ୍ଡିଆନ ଏବଂ ଅଳ୍ପ କେତେକ ଓଡ଼ିଆ ପିଲାଙ୍କ ପାଇଁ କଟକରେ ଓଡ଼ିଶାର ପ୍ରଥମ ଇଂରାଜୀ ସଣ୍ଡେ ସ୍କୁଲ ବାମ୍ପଟନ ଓ ପେଗ୍ ସାହେବଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ।

୧୮୨୫ ସାଲ ଅକ୍ଟୋବର ପହିଲା ତାରଖରେ ମିଶନାରୀମାନଙ୍କ ବଙ୍ଗଳାରେ ୫୦ ଜଣ ଅଣଖ୍ରୀଷ୍ଟିୟାନ ଓଡ଼ିଆ ଯୁବକଯୁବତୀଙ୍କୁ ନେଇ କଟକରେ ପ୍ରଥମ ଓଡ଼ିଆ ସଣ୍ଡେ ସ୍କୁଲ ଆରମ୍ଭ ହେଲା । ୧୮୩୩ରୁ ୧୮୬୬ ସାଲ ମଧ୍ୟରେ କଟକରେ ଆଉ କୋଡ଼ୋଟି ଖ୍ରୀଷ୍ଟିୟାନ ସାହି ସ୍ଥାପିତ ହେଲା ଏବଂ ପ୍ରତ୍ୟେକଟି ସ୍ଥାନରେ ସଣ୍ଡେସ୍କୁଲ ପ୍ରତିଷ୍ଠା କରାଯାଇ ପୃଥକ୍ ଭାବରେ ସେଗୁଡ଼ିକ ପରିଚାଳିତ ହେଉଥିଲା । ସେଗୁଡ଼ିକ ମଧ୍ୟରେ କୌଣସି ସମ୍ପର୍କ ନ ଥିଲା । ସଣ୍ଡେସ୍କୁଲ କାର୍ଯ୍ୟର ଅଧିକତର ଶୃଙ୍ଖଳା ଓ ଉନ୍ନତି କାମନା କରି କଟକ ମଣ୍ଡଳୀର ଉଦ୍‌ଯୋଗୀ କର୍ମୀ ଅନାମ ଚନ୍ଦ୍ର ଦାସ ୧୮୭୪ ସାଲ ଜାନୁୟାରୀ ମାସରେ ୮୦ ଜଣ ଖ୍ରୀଷ୍ଟିୟାନ ବାଳକ ବାଳିକାଙ୍କୁ ନେଇ ସମ୍ମିଳିତ ଓଡ଼ିଆ ସଣ୍ଡେ ସ୍କୁଲ ସ୍ଥାପନ କଲେ । ଏହି ସଣ୍ଡେ ସ୍କୁଲର ନାମ ହେଲା "କଟକ ଓଡ଼ିଆ ସଣ୍ଡେ ସ୍କୁଲ" । ଏହି ସଣ୍ଡେ ସ୍କୁଲର ଶତବାର୍ଷିକୀ ଉତ୍ସବ ୧୯୭୪ ସାଲ ଜାନୁୟାରୀ ମାସରେ ମହାସମାରୋହରେ ପାଳିତ ହୋଇଯାଇଛି ।

ଓଡ଼ିଶା ର ଆଧୁନିକ ଶିକ୍ଷା ବିସ୍ତାର ଦିଗରେ ମିଶନାରୀମାନେ ଆଗ୍ରହୀ ହୋଇ ଏହାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଯେଉଁ ଉଦ୍ୟମ କରିଥିଲେ, ସେହି ଉଦ୍ୟମର ଫଳସ୍ୱରୂପେ ୧୯୨୩ ସାଲ ଅକ୍ଟୋର ମାସରେ କଟକ ସହରରେ ଆଙ୍ଗ୍ଲୋଇଣ୍ଡିଆନ୍ ପିଲାଙ୍କ ପାଇଁ "ଇଂଲିଶ୍ ଚ୍ୟାରିଟି ସ୍କୁଲ" ନାମରେ ଗୋଟିଏ ସ୍କୁଲ୍ ସ୍ଥାପିତ ହୋଇଥିଲା । ଏହି ସ୍କୁଲ୍ ସ୍ଥାନୀୟ ବଦାନ୍ୟ ବ୍ୟକ୍ତିଙ୍କ ଦାନରେ କିଛିଦିନ ଚାଲିଲା । ପରେ ୧୮୪୧ ସାଲରେ କଟକରେ ଏହି ସ୍କୁଲକୁ ନେଇ ଅନ୍ୟ ଏକ ଇଂରାଜୀ ସ୍କୁଲ ପ୍ରତିଷ୍ଠିତ ହେଲା ।

ମିଶନାରୀମାନଙ୍କ ଉଦ୍ୟମରେ ଏହି ସ୍କୁଲ ଆରମ୍ଭ ହୋଇଥିଲେ ମଧ୍ୟ ଏହା ସରକାରୀ ସାହାଯ୍ୟ ପାଉଥିଲା । ପାଠ୍ୟ ନିର୍ଘଣ୍ଟରୁ ଜଣାଯାଏ ଯେ ପ୍ରଥମ ଶ୍ରେଣୀ ପିଲାମାନେ ଲିଖନ, ପଠନ, ବନାନ ଏବଂ ସାଧାରଣ ବ୍ୟାକରଣ ଶିକ୍ଷା ପାଉଥିଲେ ।

ଚଳ ଶ୍ରେଣୀର ପିଲାମାନେ କେବଳ ଲିଖନ, ପଠନ ଏବଂ ବନାନ ଶିଖୁଥିଲେ । ସ୍କୁଲର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ଥିଲା ।

୧୮୨୯ ସାଲ ଫେବୃୟାରୀ ୨ ତାରିଖ ଦିନ କଟକ ସହରରେ ପ୍ରଥମଥର ପାଇଁ ଏକ ବୋର୍ଡିଂ ସ୍କୁଲ ସ୍ଥାପିତ ହେଲା । ଏହି ସ୍କୁଲରେ ପ୍ରଥମ ୧୭ ଜଣ ଆଂଗ୍ଲୋ ଇଣ୍ଡିଆନ ପିଲାଙ୍କୁ ନିଆଗଲା । ଅନ୍ୟ ଯେଉଁମାନେ ଆବେଦନ କରିଥିଲେ, ସେମାନଙ୍କ ମଧ୍ୟରୁ ପିତୃହୀନ ଓ ଦରିଦ୍ର ପରିବାରର ପିଲା ଥିଲେ । ସେମାନେ ଏଠାରେ ରହି ଭବିଷ୍ୟତରେ ଜୀବିକା ନିର୍ବାହ କରିବାର ଶିକ୍ଷା ପାଉଥିଲେ । ଏମାନଙ୍କ ଖର୍ଚ୍ଚ ବହନ କରିବା ପାଇଁ ସ୍ୱେଚ୍ଛାସେବୀ ଅନେକ ସହୃଦୟ ବ୍ୟକ୍ତି ଦାନ ଦେଇଥିଲେ । କଟକର ତତ୍କାଳୀନ ଜଜ୍ ସାହେବ ଏଚ୍. ମିକ୍ସନ୍ ପିଗୁ ଓ ତାଙ୍କ ସ୍ତ୍ରୀ ଏହି ଗରିବ ପିଲାଙ୍କ ପାଇଁ ବାର୍ଷିକ ଦୁଇଶହ ପଚିଶ ଟଙ୍କା ଚାନ୍ଦା ଦେଉଥିଲେ ଏବଂ ଅନ୍ୟମାନଙ୍କଠାରୁ ମଧ୍ୟ ଦାନ ସଂଗ୍ରହ କରୁଥିଲେ । ଏହି ସ୍କୁଲରେ ଖ୍ରୀଷ୍ଟଧର୍ମ ସମ୍ବନ୍ଧୀୟ ପାଠ୍ୟପୁସ୍ତକ ପଢ଼ାଇବା ବ୍ୟବସ୍ଥା ହେଲା ପରେ ଏହି ବୋର୍ଡିଂ ସ୍କୁଲ ଅନାଥାଶ୍ରମରେ ପରିଣତ ହେବାର ବିଭିନ୍ନ କାରଣ ସମ୍ପର୍କରେ ସଟନ୍ ସାହେବ ଲେଖିଛନ୍ତି । କ୍ରମାଗତ ତିନିବର୍ଷ (୧୮୩୬ରୁ ୩୮ ସାଲ) କାଳ ଅନାବୃଷ୍ଟି ଯୋଗୁଁ ଦେଶରେ ଦୁର୍ଭିକ୍ଷ ପଡ଼ିଲା । ବାପା, ମାଆମାନେ ମୁଠାଏ ଭାତ ପାଇଁ ନିଜ ପିଲାମାନଙ୍କୁ ବିକ୍ରୀକରି ଦେଉଥିଲେ । ବହୁତ ଲୋକ ପେଟ ବିକଳରେ କେଉଁ କୁଆଡ଼େ ଚାଲିଗଲେ, ଆଉ ଫେରିଲେ ନାହିଁ ।

ଏପରି ଅବସ୍ଥାରେ ଅନେକ ପିତାମାତା ଖୁସି ମନରେ ସେମାନଙ୍କ ପିଲାମାନଙ୍କୁ ଆମ୍ଭମାନଙ୍କ ହାତରେ ସମର୍ପଣ କରିଦେଲେ—ଏମାନଙ୍କୁ ବୋର୍ଡିଂ ସ୍କୁଲରେ ରଖାଗଲା । ଅନେକ ପିଲାଙ୍କୁ ଆମ୍ଭେମାନେ ଡାକ୍ତରଖାନାରୁ ପାଇଲୁ । ଦୁର୍ଭିକ୍ଷ ଏବଂ ରଥଯାତ୍ରା ସମୟରେ ପୁରୀକୁ ଆସି ବହୁ ଯାତ୍ରୀ କଲେରା ପ୍ରଭୃତି ସଂକ୍ରାମକ ରୋଗରେ ଆକ୍ରାନ୍ତ ହୋଇ ଡାକ୍ତରଖାନାରେ ମରିଯାଉ ଥିଲେ । ସେମାନଙ୍କ ପିଲାମାନେ ଅନାଥ ହୋଇ ଅନାହାର ଏବଂ ରୋଗରେ ଜୀର୍ଣ୍ଣଶୀର୍ଣ୍ଣ ହୋଇ ଯାଉଥିଲେ । ସେମାନଙ୍କୁ ଆଣି ସେବା-ଶୁଶ୍ରୂଷା କରି ବୋର୍ଡିଂ ସ୍କୁଲରେ ରଖିବାକୁ ପଡ଼ୁଥିଲା । ସେମାନେ ଲେଖାପଡ଼ା, କାରିଗରି, ଶିକ୍ଷା ଓ ଧର୍ମଜ୍ଞାନ ପାଇ ମନୁଷ୍ୟ ହେଲେ । ଉକ୍ତ ଦୁର୍ଭିକ୍ଷ ସମୟରୁ ବୋର୍ଡିଂ ସ୍କୁଲର ନାମ "ଅନାଥାଶ୍ରମ" ହେଲା । ଏମାନଙ୍କ ନିମନ୍ତେ କଟକ ଆଶ୍ରମରେ ସ୍ଥାନ ନ ହେବାରୁ ବ୍ରହ୍ମପୁର, ଗଞ୍ଜାମ ଓ ପିପିଲିଠାରେ ଅନାଥାଶ୍ରମ ସ୍ଥାପିତ ହେଲା । କଟକ ଅନାଥାଶ୍ରମରେ ୭୮୨ ପିଲା ଆସି ରହିଲେ । ସେମାନଙ୍କ ମଧ୍ୟରୁ ବାଳକ ସଂଖ୍ୟା ୩୫୩ ଏବଂ ବାଳିକା ସଂଖ୍ୟା ୪୨୯ ଥିଲା । ମିଲର୍ ଓ ବକ୍ଲି ସାହେବ ସେ ସମୟରେ ଯଥାକ୍ରମେ ବାଳକ ଓ ବାଳିକା ଅନାଥାଶ୍ରମର ଭାର ନେଇଥିଲେ । କଟକରେ ଅନାଥା-ଶ୍ରମର ତତ୍ତ୍ୱାବଧାନ କାର୍ଯ୍ୟରେ ଯେଉଁ ମିଶନାରୀମାନେ ଅକ୍ଲାନ୍ତ ପରିଶ୍ରମ କରି ଅନାଥ ପିଲାଙ୍କୁ ନିଜର ପୁତ୍ରକନ୍ୟାତୁଲ୍ୟ ଲାଳନପାଳନ କରିଥିଲେ ସେମାନଙ୍କ ମଧ୍ୟରେ ସଟନ୍, ଲେସୀ, ବକ୍ଲି ଓ ମିଲର୍ ସାହେବଙ୍କ ନାମ ଚିରସ୍ମରଣୀୟ ।

## ମିଶନ ବାଳିକା ସ୍କୁଲ :

ଏହି ସ୍କୁଲଟି ପ୍ରଥମେ ବୋର୍ଡିଂ ସ୍କୁଲ (୧୮୩୬)ରୁ ଆରମ୍ଭ ହୋଇଥିଲା । ଏହା ପ୍ରଥମାବସ୍ଥାରେ ମିଷ୍ଟର ଓ ମିସେସ୍ ସଟନ୍‌ଙ୍କ ତତ୍ତ୍ୱାବଧାନରେ ଚାଲୁଥିଲା । ପରେ ମିସ୍ ଡେଭିସ୍ (ବିବାହ ପରେ ମିସେସ୍ ବକ୍‌ଲି) ଏହାର ପ୍ରଥମ ପ୍ରଧାନ ଶିକ୍ଷୟିତ୍ରୀ ହେଲେ । ଝିଅମାନେ ଯେପରି ଭଲ ଗୃହିଣୀ ହେବେ; ଏହି ଆଶା ରଖି ଝିଅମାନଙ୍କୁ ସାଧାରଣ ଶିକ୍ଷା ସହିତ କୁଟୀର ଶିଳ୍ପ ଓ ରନ୍ଧନ ସମ୍ପର୍କରେ ଶିକ୍ଷା ଦିଆଯାଉଥିଲା । ପ୍ରଥମେ ଅଣଖ୍ରୀଷ୍ଟିୟାନ ଝିଅମାନେ ଏଠାରେ ପଢ଼ୁ ନ ଥିଲେ, କିନ୍ତୁ ପରେ ଏହାର ସୁଖ୍ୟାତି ଦେଖି ହିନ୍ଦୁ ଓ ମୁସଲମାନ ଝିଅମାନେ ଏହି ସ୍କୁଲରେ ପାଠପଢ଼ିବା ପାଇଁ ଆଗ୍ରହ ପ୍ରକାଶ କଲେ । ଏହି ସ୍କୁଲଟି 'ବକ୍‌ଲି ବାଳିକା ଉଚ୍ଚ ବିଦ୍ୟାଳୟ' ନାମରେ ନାମିତ ଏବଂ ଏହା ବର୍ତ୍ତମାନ କଟକର ଏକ ଉଚ୍ଚସ୍ତର ସ୍କୁଲ ରୂପେ ପରିଚିତ ।

## ଓଡ଼ିଆ ମିଶନ ଏକାଡେମୀ :

ଖ୍ରୀଷ୍ଟଧର୍ମ ପ୍ରଚାରକମାନଙ୍କୁ ତାଲିମ୍ ଦେବା ନିମନ୍ତେ କଟକ ସହରରେ ଉକ୍ତ ଏକାଡେମୀ ୧୮୪୫ ସାଲ ନଭେମ୍ବର ମାସରେ ସ୍ଥାପିତ ହେଲା । ବର୍ତ୍ତମାନ ତାହା 'ସମ୍ମିଳିତ ପରମାର୍ଥ ବିଦ୍ୟାଳୟ' ନାମରେ ପରିଚିତ । ଏହାର ପ୍ରତିଷ୍ଠାତା ହେଉଛନ୍ତି ସୁନାମଧନ୍ୟ ମିଶନାରି ଡକ୍ଟର ଆମୋସ ସଟନ୍ ଏବଂ ସେ ମଧ୍ୟ ଉକ୍ତ ଏକାଡେମୀର ପ୍ରଥମ ଅଧ୍ୟକ୍ଷ । ୧୯୪୫ ସାଲ ଅକ୍ଟୋବର ମାସରେ ଏହି ବିଦ୍ୟାଳୟର ଶତବାର୍ଷିକୀ ଉତ୍ସବ ବହୁ ଉତ୍ସାହ ମଧ୍ୟରେ ପ୍ରତିପାଳିତ ହୋଇପାଇଛି ।

## ଷ୍ଟୁଆର୍ଟ ସ୍କୁଲ :

୧୮୮୨ ସାଲରେ କ୍ୟାଥଲିକ୍ ମିଶନ୍‌ରେ କନଭେଣ୍ଟ ସ୍କୁଲ ଆଦର୍ଶରେ ବାପ୍ଟିଷ୍ଟ ମିଶନାରି ସୋସାଇଟି କଟକରେ ଅନ୍ୟ ଏକ ସ୍କୁଲ ଖୋଲିଥିଲେ । କଟକରେ ତତ୍କାଳୀନ ସିଭିଲ ସର୍ଜନ ଡା: ଉଇଲିୟମ୍ ଷ୍ଟୁଆର୍ଟ ଏହାର ପ୍ରତିଷ୍ଠାତା । ସେ ଏହି ସ୍କୁଲ ଓ ତତ୍‌ସଂଲଗ୍ନ ଛାତ୍ରାବାସ ନିମନ୍ତେ କୋଠା ତିଆରି କରିଥିଲେ । ସ୍କୁଲରେ ଖ୍ରୀଷ୍ଟିୟାନ ପିଲାଙ୍କ ସହିତ ଅଣଖ୍ରୀଷ୍ଟିୟାନ ପିଲା ମଧ୍ୟ ପାଠ ପଢ଼ିବାର ସୁଯୋଗ ପାଇଲେ । ସିନିୟର କ୍ୟାମ୍ବ୍ରିଜ୍ ପରୀକ୍ଷାର ପାଠ ଏଠାରେ ଶିକ୍ଷା ଦିଆଯାଏ । ଏହି ସ୍କୁଲର ଲେଖାପଢ଼ା, ବ୍ୟାୟାମ ପ୍ରଭୃତି ବିଷୟରେ ସୁନାମ ରହିଛି । ସ୍କୁଲର ପ୍ରତିଷ୍ଠାତା ଡକ୍ଟର ଷ୍ଟିୱାର୍ଟଙ୍କ ନାମାନୁସାରେ ଏହା ବର୍ତ୍ତମାନ 'ଷ୍ଟୁଆର୍ଟ ସ୍କୁଲ' ନାମରେ ପରିଚିତ । ୧୯୮୨ ସାଲ ଡିସେମ୍ବର ମାସରେ ଏହି ସ୍କୁଲର ଶତବାର୍ଷିକୀ ଉତ୍ସବ ମହାସମାରୋହରେ ପାଳିତ ହୋଇପାଇଛି । ଉଲ୍ଲେଖଯୋଗ୍ୟ ବିଷୟ ଏହି ଯେ ଭାରତର କୃତିସନ୍ତାନ ନେତାଜୀ ସୁଭାଷଚନ୍ଦ୍ର ବୋଷ ଏହି ସ୍କୁଲରେ ଶିକ୍ଷାଲାଭ କରିବା ନିମନ୍ତେ ୧୯୦୨ ସାଲ ଜାନୁୟାରି ୮ ତାରିଖରେ ନାମ ଲେଖାଇଥିଲେ ଏବଂ ସପ୍ତମ ଶ୍ରେଣୀକୁ ଉନ୍ନୀତ ହେବା ପରେ ୧୯୦୮ ସାଲ ଡିସେମ୍ବର ମାସରେ ଏହି ସ୍କୁଲ ପରିତ୍ୟାଗ କରିଥିଲେ ।

## ମିଶନ ହାଇସ୍କୁଲ :

ସ୍ଥାନୀୟ ଖ୍ରୀଷ୍ଟିୟାନ ସମ୍ପ୍ରଦାୟର ଆବେଦନକ୍ରମେ ଏହି ସ୍କୁଲ ୧୮୮୨ ସାଲରେ ସ୍ଥାପିତ ହୋଇଥିଲା । ଜର୍ଜ ଡ଼. ସେଡ଼ିନ୍ ଏହାର ପ୍ରଥମ ପ୍ରଧାନ ଶିକ୍ଷକ ଥିଲେ । ବୟଃପ୍ରାପ୍ତ ବାଳକ-ବାଳିକାମାନଙ୍କୁ ଏକତ୍ର ଶିକ୍ଷା ଦେବାର ବ୍ୟବସ୍ଥା (କୋ-ଏଜୁକେସନ୍) ଓଡ଼ିଶାର ଏହି ସ୍କୁଲରେ ସର୍ବପ୍ରଥମେ କରାଯାଇଥିଲା । ଏହି ସ୍କୁଲଟିର ପରିଚାଳନା ସନ୍ତୋଷଜନକ । ବର୍ତ୍ତମାନ ଏହି ସ୍କୁଲ 'ଖ୍ରୀଷ୍ଟ କଲେଜିଏଟ୍ ସ୍କୁଲ' ନାମରେ ନାମିତ ।

## ଓଡ଼ିଶା ମିଶନ ପ୍ରେସ :

ଏହି ଛାପାଖାନା ପ୍ରତିଷ୍ଠିତ ହେବା ପୂର୍ବରୁ ଓଡ଼ିଶାର କୌଣସି ସ୍ଥାନରେ ଛାପାଖାନା ନଥିଲା । ବାଇବଲର ଅନୁବାଦ, ସଂଶୋଧନ ଓ ଖ୍ରୀଷ୍ଟୀୟ ସାହିତ୍ୟ ପ୍ରକାଶନର ଭାର ପ୍ରଥମାବସ୍ଥାରେ ଶ୍ରୀରାମପୁରର ମିଶନାରୀମାନେ ନେଇଥିଲେ । ତେଣୁ ସୁଦୂର ଶ୍ରୀରାମପୁର ମିଶନ ଛାପାଖାନାରେ ଓଡ଼ିଆ ଭାଷାରେ ସେସବୁର ମୁଦ୍ରଣ ହୋଇ ଓଡ଼ିଶାକୁ ଆସୁଥିଲା । ସଟନ୍ ସାହେବ ଏହାର ଅସୁବିଧା ହୃଦୟଙ୍ଗମ କରି ଓଡ଼ିଶାରେ ପ୍ରଥମେ ଛାପାଖାନା ସ୍ଥାପନ କରିବା ପାଇଁ ଉଦ୍ୟମ କଲେ । ଏହା ଫଳରେ ଲେସି ସାହେବ ୧୮୩୭ ସାଲରେ ଇଂଲଣ୍ଡରୁ ଫେରିବା ସମୟରେ ଗୋଟିଏ ଛାପାକଳ ସଙ୍ଗରେ ନେଇ ଆସିଥିଲେ । ଏହି ଛାପାକଳ କଟକରେ ୧୮୩୮ ସାଲରେ ପ୍ରତିଷ୍ଠିତ ହେଲ ଏବଂ ସେହି ସମୟରୁ ଏହା 'ଓଡ଼ିଶା ମିଶନ୍ ପ୍ରେସ' ନାମରେ ସୁପରିଚିତ । ଓଡ଼ିଶା ମିଶନ ପ୍ରେସ ଓଡ଼ିଶାର ସର୍ବପ୍ରଥମ ଛାପାଖାନା ।

ଖ୍ରୀଷ୍ଟଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଏହି ଛାପାଖାନାଟି ଓଡ଼ିଶାରେ ସର୍ବପ୍ରଥମେ ସ୍ଥାପିତ ହୋଇଥିଲେ ସୁଦ୍ଧା ଓଡ଼ିଶାବାସୀଙ୍କ ମଙ୍ଗଳ ସାଧନରେ ଏହା ଯଥେଷ୍ଟ ସହାୟକ ହୋଇଥିଲା । ପୁସ୍ତକ ଓ ପତ୍ରିକା ପ୍ରକାଶନ ଦିଗରେ ଏହି ମିଶନ ଛାପାଖାନାର ଯଥେଷ୍ଟ ଅବଦାନ ରହିଛି । ପରବର୍ତ୍ତୀ ସମୟରେ ଓଡ଼ିଆମାନଙ୍କ ଦ୍ୱାରା ଓଡ଼ିଶା ମାଟିରେ ଯେଉଁସବୁ ଛାପାଖାନା ସ୍ଥାପିତ ହେଲ, ସେମାନଙ୍କୁ ମିଶନ ପ୍ରେସ ଯଥେଷ୍ଟ ଭାବେ ଉତ୍ସାହିତ କରିଛି । ତେଣୁ ଏ ଦିଗରେ ମିଶନାରୀ ସଟନ ସାହେବଙ୍କ ପ୍ରଥମ ଉଦ୍ୟମ ପ୍ରଶଂସନୀୟ ।

ଦେଶର ଜନସାଧାରଣଙ୍କ ଆସ୍ଥାଭାଜନ ହେବାକୁ ହେଲେ ଏବଂ ସେମାନଙ୍କ ମନର କଥା ବୁଝିବାକୁ ହେଲେ ଦେଶୀୟ ଭାଷା ଶିଖିବାକୁ ହେବ । ଲୋକମାନଙ୍କୁ ସେମାନଙ୍କ କଥିତ ଭାଷାରେ କଥା ନ କହିବା ପର୍ଯ୍ୟନ୍ତ ଧର୍ମ ପ୍ରଚାର କାର୍ଯ୍ୟ ସୁରୁଖୁରୁରେ ହୋଇପାରିବ ନାହିଁ, ଏକଥା ମିଶନାରୀମାନେ ଭଲ ଭାବରେ ବୁଝିଥିଲେ । ତେଣୁ ମିଶନାରୀମାନେ ଓଡ଼ିଆ ଭାଷା ଶିକ୍ଷା କରିବାପାଇଁ ଉଦ୍ୟମ କରିଥିଲେ, କିନ୍ତୁ ଦୁଃଖର କଥା; ଓଡ଼ିଆ ଭାଷା ଶିକ୍ଷା କରିବା ନିମନ୍ତେ ସହାୟକ ଗ୍ରନ୍ଥ ବିଶେଷ କିଛି ନଥିଲା ।

କେବଳ ବଙ୍ଗଳା ଭାଷା ସହିତ ଏମାନଙ୍କର ସମ୍ପର୍କ ଥିଲା । ଏହା ମାଧ୍ୟମରେ ସେମାନେ ଓଡ଼ିଆ ଭାଷା ସହିତ ପରିଚିତ ହେଲେ, କିନ୍ତୁ ଏହାଦ୍ୱାରା ଖାଣ୍ଟି ଓଡ଼ିଆ ଭାଷାରେ କହିବା ଓ ଲେଖିବା କଷ୍ଟକର ହେଲା । ଓଡ଼ିଆ ଭାଷାର ସହାୟକ ପାଠ୍ୟପୁସ୍ତକର ଅଭାବ ଉପଲବ୍ଧି କରି କ୍ରମେ କ୍ରମେ ଓଡ଼ିଆ ବ୍ୟାକରଣ, ଅଭିଧାନ ଏବଂ କେତେକ ପ୍ରାଥମିକ ପୁସ୍ତକ ରଚନା କରି ପ୍ରକାଶ କରିବା ଦିଗରେ ମିଶନାରୀମାନେ ବିଶେଷ ଆଗ୍ରହ ପ୍ରକାଶ କରିଥିଲେ ଏବଂ ବହୁ ସଂଖ୍ୟକ ଓଡ଼ିଆ ପୁସ୍ତକ ରଚନା କରି ମୁଦ୍ରଣ କରିଥିଲେ । ମିଶନାରୀମାନେ କଠୋର ପରିଶ୍ରମ କରି ବିଭିନ୍ନ ଗ୍ରନ୍ଥ ରଚନା ଓ ପ୍ରକାଶ କରି ସାହିତ୍ୟର ଅଭିବୃଦ୍ଧି ଦିଗରେ କାର୍ଯ୍ୟ କରିଥିଲେ ।

ମିଶନାରୀ ପତ୍ରିକା ଆତ୍ମପ୍ରକାଶ କରିବା ପୂର୍ବରୁ ଓଡ଼ିଶାର କୌଣସି ପତ୍ରିକା ପ୍ରକାଶ ପାଇ ନଥିଲା ଏବଂ ପ୍ରକାଶ ପାଇବାପାଇଁ ଅନୁକୂଳ ବାତାବରଣ ମଧ୍ୟ ସମାଜରେ ଦେଖା ଦେଇନଥିଲା । ଶିକ୍ଷାଗତ ଓ ସାଂସ୍କୃତିକ ଜୀବନରେ ଘୋର ଅଭାବ ପରିଲକ୍ଷିତ ହୋଇଥିଲା । ତେଣୁ ସଟନ ଓ ଲେସୀ ସାହେବ ପତ୍ରିକା ପ୍ରକାଶନ ନିମନ୍ତେ ଯଥେଷ୍ଟ ଉଦ୍ୟମ କରିଥିଲେ ଏବଂ ସେହି ଉଦ୍ୟମର ଫଳ ସ୍ୱରୂପ 'ଜ୍ଞାନାରୁଣ' ନାମକ ମାସିକ ଓଡ଼ିଆ ପତ୍ରିକା ଲେସୀ ସାହେବଙ୍କ ସମ୍ପାଦନାରେ ୧୮୪୯ ସାଲରେ ପ୍ରଥମେ ପ୍ରକାଶ ପାଇଲା । ଅଳ୍ପଦିନ ପରେ ଏହା ବନ୍ଦ ହୋଇଯିବା ଫଳରେ ୧୮୫୬ ସାଲରେ 'ପ୍ରବୋଧ ଚନ୍ଦ୍ରିକା' ନାମକ ଅନ୍ୟ ଏକ ମାସିକ ପତ୍ରିକା ଲେସୀ ସାହେବଙ୍କ ସମ୍ପାଦନାରେ ପ୍ରକାଶ ପାଇଲା । କିନ୍ତୁ ଦୁଃଖର କଥା, ୧୮୫୮ ସାଲବେଳକୁ ଗ୍ରାହକ-ମାନଙ୍କ ଅଭାବ ହେତୁ ଏହି ପତ୍ରିକା ବନ୍ଦ ହୋଇ ଯାଇଥିଲା । ପରେ ୧୮୬୧ ସାଲରେ 'ଅରୁଣୋଦୟ' ପତ୍ରିକା ପ୍ରକାଶ ପାଇ ତିନିବର୍ଷ ପାଇଁ 'ଖ୍ରୀଷ୍ଟିୟାନ ଭର୍ଣ୍ଣାକୁଲାର ଲିଟରେଚର ସୋସାଇଟି' ଦ୍ୱାରା ପରିଚାଳିତ ହେଲା । ଏହିସବୁ ପତ୍ରିକାରେ ଧର୍ମମୂଳକ ଆଲୋଚନା ସହ ସାମୟିକ ସମ୍ବାଦ ପ୍ରକାଶ ପାଉଥିଲା । ଓଡ଼ିଶାର ଲୋକ-ମାନଙ୍କୁ ପତ୍ରିକା ମାଧ୍ୟମରେ ଜ୍ଞାନାଲୋକ ପରିବେଷଣ କରିବା ପାଇଁ ମିଶନାରୀମାନଙ୍କ ମୌଳିକ ଲକ୍ଷ୍ୟ ଏବଂ ସରକାରଙ୍କ ଉଦ୍ଦେଶ୍ୟ ଥିଲା ଯେପରି ଜନସାଧାରଣ ପତ୍ରିକା ପାଠକଲେ ଆଧୁନିକ ଶିକ୍ଷା ପ୍ରତି ସେମାନଙ୍କର ଆଗ୍ରହ ଜନ୍ମିବ । ଏହି କାରଣରୁ ପତ୍ରିକାକୁ ଲୋକପ୍ରିୟ କରିବା ସକାଶେ ସରକାରଙ୍କ ପକ୍ଷରୁ ମଧ୍ୟ ଉଦ୍ୟମ ଆରମ୍ଭ ହୋଇଥିଲା । ନାନା ଝଡ଼ଝଞ୍ଜା ମଧ୍ୟରେ ପତ୍ରିକା ପ୍ରକାଶନ ଦିଗରେ ମିଶନାରୀମାନେ ପ୍ରଥମେ ପଥପ୍ରଦର୍ଶକ ହୋଇ ନଥିଲେ ପରବର୍ତ୍ତୀ କାଳରେ ଏ ଦେଶର ଆତ୍ମ ସଚେତନ ଶିକ୍ଷିତ ଶ୍ରେଣୀ ଦ୍ୱାରା ଖାଣ୍ଟି ଓଡ଼ିଆ ପତ୍ରିକା ପ୍ରକାଶ ପାଇବାରେ ନାନା ଅସୁବିଧା ଦେଖାଦେଇଥାନ୍ତା ।

ମିଶନାରୀମାନେ ଓଡ଼ିଆ ଭାଷା ଶିକ୍ଷାକରି ଓଡ଼ିଆ ଭାଷାରେ ଧର୍ମଗ୍ରନ୍ଥଗୁଡ଼ିକର ଅନୁବାଦ, ଓଡ଼ିଆ ବ୍ୟାକରଣ, ଅଭିଧାନ, ପାଠ୍ୟପୁସ୍ତକ ପ୍ରଣୟନ, ମୁଦ୍ରାଯନ୍ତ୍ର ସ୍ଥାପନ ଓ ପତ୍ରିକା ପ୍ରକାଶନ ମାଧ୍ୟମରେ ଓଡ଼ିଶାର ସାମାଜିକ ତଥା ସାଂସ୍କୃତିକ

ଜୀବନରେ ନବଜାଗରଣର ସୂତ୍ରପାତ କଲେ । ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ସେମାନେ ଯେଉଁ ଜୀବନୀଶକ୍ତି ସଞ୍ଚାର କରିଥିଲେ, ତାହା ସର୍ବାଦୌ ସମୟୋପଯୋଗୀ ଓ ପ୍ରଶଂସନୀୟ ।

## ନିଶାନିବାରଣ ସମିତି :

୧୮୭୧ ସାଲରେ କଟକରେ ମିଲର ସାହେବଙ୍କ ସଭାପତିତ୍ବରେ ଏହି ସମିତି ଗଠିତ ହୋଇ ଓଡ଼ିଶାର ବିଭିନ୍ନ ଖ୍ରୀଷ୍ଟୀୟ ମଣ୍ଡଳୀମାନଙ୍କରେ ଏହାର ଶାଖା ସ୍ଥାପିତ ହେଲା । ନିଶା ସେବନକୁ ଘୃଣା ଏବଂ ବର୍ଜନ କରିବା ଉଦ୍ଦେଶ୍ୟରେ ଏହି ସମିତି ଗଠିତ ହୋଇ ନିଶା ନିବାରଣ ସକାଶେ ପ୍ରଚୁର କାର୍ଯ୍ୟ ଆରମ୍ଭ କରିଥିଲା ।

ରେଭ୍. ଉଇଲିୟମ ବାମ୍‌ଟନ ଓ ରେଭ୍. ଜେମ୍‌ସ ପେଗ୍‌ସ ୧୮୨୨ ସାଲ ଫେବୃୟାରି ମାସ ୧୨ ତାରିଖରେ କଟକରେ ପହଞ୍ଚି ପ୍ରଥମ ରବିବାର ଦିନ ଈଶ୍ବରଙ୍କ ଉପାସନା କରିଥିଲେ । ସେତେବେଳେ କଟକରେ ବାସ କରୁଥିବା କେତେକ ୟୁରୋପୀୟ ଖ୍ରୀଷ୍ଟିୟାନ, ଆଙ୍ଗ୍ଲୋ-ଇଣ୍ଡିଆନ ଏବଂ କାର୍ଯ୍ୟୋପଲକ୍ଷେ ଏଠାକୁ ଅନ୍ୟାନ୍ୟ ପ୍ରଦେଶରୁ ଆସିଥିବା ଅଳ୍ପ କେତେକ ଭାରତୀୟ ଖ୍ରୀଷ୍ଟିୟାନଙ୍କୁ ନେଇ ସେମାନେ କଟକରେ ଏକ ଖ୍ରୀଷ୍ଟୀୟମଣ୍ଡଳୀ (Church) ସ୍ଥାପନ କଲେ । ୧୮୨୮ରେ ଜଣେ ଶିକ୍ଷିତ ବ୍ରାହ୍ମଣ ଗଙ୍ଗାଧର ଷଡ଼ଙ୍ଗୀଙ୍କଠାରୁ ଆରମ୍ଭ କରି କ୍ରମେ ଅନେକ ଓଡ଼ିଆ ଖ୍ରୀଷ୍ଟିୟାନ ହେଲେ ।

୧୮୨୨ରୁ ୧୮୨୬ ସାଲ ପର୍ଯ୍ୟନ୍ତ ଈଶ୍ବରଙ୍କ ଉପାସନା କାର୍ଯ୍ୟ ମିଶନାରୀମାନଙ୍କ ବଙ୍ଗଳାରେ କରାଯାଉଥିଲା । ୧୮୨୬ ସାଲରେ ତିନିକୋଣିଆ ବଗିଚାରେ ଏକ ପ୍ରଶସ୍ତ ହତାରେ ଗୋଟିଏ ଉପାସନା ଗୃହ ବା ଭଜନାଳୟ ନିର୍ମିତ ହେଲା । ମାତ୍ର ଦୁଇ ବର୍ଷ ପରେ ବାତ୍ୟା ଦ୍ୱାରା ତାହା ଭାଙ୍ଗିଯିବାରୁ ୧୮୨୮ ସାଲରେ ସେଠାରେ ଆଉ ଗୋଟିଏ ଭଜନାଳୟ ନିର୍ମିତ ହେଲା । ଦଶବର୍ଷ ପରେ ଖ୍ରୀଷ୍ଟିୟାନମାନଙ୍କ ସଂଖ୍ୟା ବୃଦ୍ଧି ପାଇବାରୁ ସ୍ଥାନାଭାବ ସକାଶୁ ୧୮୩୮ ସାଲରେ ତାହାକୁ ପୁନର୍ବାର ଭାଙ୍ଗି ଦୁଇଗୁଣ ବଡ଼ କରାଗଲା ଏବଂ ସେଠାରେ ପ୍ରାୟ ୩୪ ବର୍ଷ ପର୍ଯ୍ୟନ୍ତ ଈଶ୍ବରଙ୍କ ଉପାସନା କରାଗଲା । କିନ୍ତୁ କଟକରେ ଖ୍ରୀଷ୍ଟିୟାନମାନଙ୍କ ସଂଖ୍ୟା ଅତ୍ୟଧିକ ବୃଦ୍ଧି ପାଇବାରୁ ୧୮୭୨ ସାଲରେ ୧୪ ହଜାର ଟଙ୍କା ବ୍ୟୟରେ ମିଶନରୋଡ଼ରେ ଥିବା ବର୍ତ୍ତମାନର ସୁବୃହତ୍ ଭଜନାଳୟ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ୧୮୭୪ ସାଲ ମଇ ମାସରେ ଶେଷ କରାଯାଇଥିଲା । ସେହି ମାସ ୧୭ ତାରିଖରେ ତାହା ଆନୁଷ୍ଠାନିକ ଭାବରେ ଉଦ୍‌ଘାଟିତ ହୋଇଥିଲା । ଏହି ଭଜନାଳୟର ଶିଳ୍ପୀ ଥିଲେ ଜନ୍ ଫ୍ରେଡ଼େରିକ୍ ବଣ୍ଡ ।

ଜୁବିଲି ବର୍ଷ ସ୍ମରଣାର୍ଥେ ଏହି ଭଜନାଳୟର ନାମ 'ଜୁବିଲି ଭଜନାଳୟ' ରଖାଯାଇଥିଲା । ପରେ ଏହି ନାମ ପରିବର୍ତ୍ତନ କରାଯାଇ 'କଟକ ବାପ୍‌ଟିଷ୍ଟ ଭଜନାଳୟ' ନାମରେ ଅଭିହିତ ହେଲା । ସମଗ୍ର ଓଡ଼ିଶାରେ ଏହା ହେଉଛି ସର୍ବବୃହତ୍

ଭଜନାଳୟ । ୧୯୭୪ ସାଲ ମଇ ମାସ ୧୫ ତାରିଖରୁ ୨୨ ତାରିଖ ପର୍ଯ୍ୟନ୍ତ ଏହି ଭଜନାଳୟର ଶତବାର୍ଷିକୀ ଉତ୍ସବ ବହୁ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ପ୍ରତିପାଳିତ ହୋଇପାରିଛି ।

## ମାତୃସଭା :

୧୮୮୫ ସାଲରେ କଟକରେ ପ୍ରଥମେ ଏହା ସ୍ଥାପିତ ହୋଇଥିଲା । ଦରିଦ୍ରମାନଙ୍କ ନିମନ୍ତେ ଲୁଗାପଟା ସିଲାଇ କରିବା, ଧର୍ମଶାସ୍ତ୍ର ଅଧ୍ୟୟନ ଓ ପ୍ରାର୍ଥନାରେ କିଛି ସମୟ କ୍ଷେପଣ କରିବା ଉଦ୍ଦେଶ୍ୟରେ ମହିଳାମାନଙ୍କୁ ନେଇ ଏହି ସଭା ଗଠିତ ହୋଇଥିଲା । ଏହା ଫଳରେ କଟକରେ ମହିଳାମାନେ ନାନାପ୍ରକାର ସୂଚୀ-କାମ ଶିକ୍ଷା କରିଥିଲେ ଏବଂ ଏହି ଅନୁଷ୍ଠାନ ମହିଳା ମହଲରେ ସାଂସ୍କୃତିକ ଚେତନା ଉଦ୍ରେକ କରିଥିଲା ।

ମିଶନାରୀମାନେ ୧୮୨୨ ସାଲରୁ କଟକରେ ସ୍କୁଲ ପ୍ରତିଷ୍ଠା କରି ଆଧୁନିକ ଶିକ୍ଷାକୁ ଲୋକପ୍ରିୟ କରିବାପାଇଁ ଯଥେଷ୍ଟ ଉଦ୍ୟମ କରିଥିଲେ ଏବଂ ମିଶନାରୀମାନେ କଟକରେ ପ୍ରଥମେ ନାରୀଶିକ୍ଷାର ପ୍ରଚଳନ କରିଥିଲେ ।

## ମହିଳା ପ୍ରଶିକ୍ଷଣ ବିଦ୍ୟାଳୟ :

୧୯୦୨ ସାଲରେ ବକ୍ସି ବାଳିକା ବିଦ୍ୟାଳୟ ପ୍ରାଙ୍ଗଣ ମଧ୍ୟରେ ମିଶନାରୀମାନେ ଶିକ୍ଷୟିତ୍ରୀମାନଙ୍କ ତାଲିମ୍ ନିମନ୍ତେ ଗୋଟିଏ ସ୍କୁଲ ସ୍ଥାପନ କଲେ । ଉକ୍ତ ସ୍କୁଲର ନାଁ ଥିଲା 'ବାପ୍ଟିଷ୍ଟ ମିଶନ ଟ୍ରେନିଂ ସ୍କୁଲ' । ସେଠାରେ ପ୍ରଥମେ କେବଳ Junior training ଦିଆଯାଉଥିଲା ମାତ୍ର ପରବର୍ତ୍ତୀ ସମୟରେ Junior training ସହିତ Senior training ଦେବାର ମଧ୍ୟ ବ୍ୟବସ୍ଥା ହେଲା । ୧୯୭୪ ସାଲ ପର୍ଯ୍ୟନ୍ତ ଏହିପରି ତାଲିମ୍ ଦେବାର ବ୍ୟବସ୍ଥା ହେଲା । ୧୯୭୫ ସାଲରେ ରାଜ୍ୟ ସରକାର ଉକ୍ତ ସ୍କୁଲକୁ ଏକ ମାଧମିକ ପ୍ରଶିକ୍ଷଣ ବିଦ୍ୟାଳୟକୁ ଉନ୍ନୀତ କଲେ । ଏହି ସ୍କୁଲରେ ବାଳିକାମାନଙ୍କୁ ଶିକ୍ଷୟିତ୍ରୀ ତାଲିମ୍ ଦେବା ଦିଗରେ ମିସ୍ ଥମ୍ପସନ୍‌ଙ୍କର ଯଥେଷ୍ଟ ଅବଦାନ ଥିଲା । ସେହି ସମୟରୁ ଉକ୍ତ ସ୍କୁଲର ନାମ ପରିବର୍ତ୍ତନ ହୋଇ ମିଶନାରୀ ମହିଳା ଥମ୍ପସନ୍‌ଙ୍କ ନାମାନୁସାରେ 'ଥମ୍ପସନ୍ ମହିଳା ପ୍ରଶିକ୍ଷଣ ବିଦ୍ୟାଳୟ' ନାମରେ ନାମିତ ହେଲା । ଏହି ବିଦ୍ୟାଳୟ ଅଧୁନା ରାଜ୍ୟ ସରକାର ଓ କଟକ ଡାୟୋସିସ୍‌ର ଆର୍ଥିକ ସହାୟତାରେ ପରିଚାଳିତ ହୋଇ ଆସୁଅଛି ।

## ମିଶନ ପ୍ରାଇମେରୀ ସ୍କୁଲ :

ମିଶନ ହାଇସ୍କୁଲ ପ୍ରାଙ୍ଗଣ ମଧ୍ୟରେ ମିଶନାରୀମାନେ ସାନ ପିଲାମାନଙ୍କ ନିମନ୍ତେ ଏକ ନିମ୍ନ ପ୍ରାଇମେରୀ ସ୍କୁଲ ୧୯୦୦ ସାଲ ପୂର୍ବରୁ ସ୍ଥାପନ କରିଥିଲେ । କିନ୍ତୁ କ୍ରମେ ଛାତ୍ରଛାତ୍ରୀ ସଂଖ୍ୟା ବୃଦ୍ଧି ପାଇବାରୁ ଉକ୍ତ ସ୍କୁଲକୁ ମିଶନରୋଡ଼ରେ ଥିବା ମିଶନ ଜାଗାକୁ ୧୯୦୮ ସାଲରେ ସ୍ଥାନାନ୍ତରିତ ହେଲା । ଉକ୍ତ ସ୍କୁଲର ନାମ 'ମିଶନ ନିମ୍ନ

ପ୍ରାଇମେରୀ ସ୍କୁଲ୍' । ଏହାର ପ୍ରଥମାବସ୍ଥାରେ ଦୁଇଜଣ ଶିକ୍ଷକ ମିଶନରୁ ଦରମା ପାଉଥିଲେ । ମାତ୍ର ଛାତ୍ରଛାତ୍ରୀ ସଂଖ୍ୟା ବୃଦ୍ଧି ପାଇବାରୁ ୧୯୪୮ ସାଲରେ କଟକ ମ୍ୟୁନିସିପାଲିଟି ପକ୍ଷରୁ ପ୍ରଥମେ ଜଣେ ଶିକ୍ଷୟିତ୍ରୀଙ୍କୁ ନିଯୁକ୍ତ କରାଗଲା । ୧୯୪୯ ସାଲରେ ଦ୍ୱିତୀୟ ଶିକ୍ଷୟିତ୍ରୀଙ୍କୁ ନିଯୁକ୍ତ ଦିଆଗଲା ଏବଂ ୧୯୬୭ ସାଲରେ ତୃତୀୟ ଶିକ୍ଷୟିତ୍ରୀଙ୍କୁ ନିଯୁକ୍ତ ଦିଆଗଲା । ୧୯୭୧ ସାଲରେ D I. ଙ୍କ ଦ୍ୱାରା ଆଉଜଣେ ଶିକ୍ଷୟିତ୍ରୀ ନିଯୁକ୍ତ ପାଇଲେ । ୧୯୭୫ ସାଲରେ ଉକ୍ତ ସ୍କୁଲ ଉଚ୍ଚ ପ୍ରାଥମିକ ସ୍କୁଲକୁ ଉନ୍ନୀତ ହେବାରୁ ଡି. ଆଇ. ମହୋଦୟ ଆଉଜଣେ ଶିକ୍ଷୟିତ୍ରୀଙ୍କୁ ନିଯୁକ୍ତ ଦେଲେ ଏବଂ ୧୯୮୯ ସାଲରେ ଡି. ଆଇ.ଙ୍କ ଦ୍ୱାରା ଜଣେ ଶିକ୍ଷାକର୍ମୀଙ୍କୁ ନିଯୁକ୍ତ ଦିଆଗଲା । ବର୍ତ୍ତମାନ କଟକ ମ୍ୟୁନିସିପାଲିଟି ପକ୍ଷରୁ ନିଯୁକ୍ତ ତିନିଜଣ ଶିକ୍ଷୟିତ୍ରୀ ଏବଂ ଡି. ଆଇ. ମହୋଦୟଙ୍କ ଦ୍ୱାରା ନିଯୁକ୍ତ ତିନିଜଣ ଶିକ୍ଷୟିତ୍ରୀ ଏହିପରି ଛଅଜଣ ଶିକ୍ଷୟିତ୍ରୀ ଉକ୍ତ ସ୍କୁଲରେ ଶିକ୍ଷାଦାନ କରୁଛନ୍ତି ଏବଂ ସର୍ବମୋଟ ୩୭୦ ଜଣ ଛାତ୍ରଛାତ୍ରୀ ଅଧ୍ୟୟନ କରୁଛନ୍ତି ।

ସାଧାରଣ ଶିକ୍ଷା, ବୈଷୟିକ ଶିକ୍ଷା ଓ ନାରୀ ଶିକ୍ଷାର ଅଗ୍ରଗତି ଦିଗରେ ଏବଂ ପାଠ୍ୟ ପୁସ୍ତକ ପ୍ରଣୟନ ଓ ମୁଦ୍ରାଯନ୍ତ୍ର ସ୍ଥାପନ ଦିଗରେ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଅବଦାନ ଓଡ଼ିଶାର ସାଂସ୍କୃତିକ ଇତିହାସରେ ସର୍ବାଦୌ ସ୍ମରଣୀୟ । ଆଧୁନିକ ପାଠ୍ୟପୁସ୍ତକ ପ୍ରଣୟନ, ପତ୍ରିକା ସମ୍ପାଦନ, ଆଧୁନିକ ଜ୍ଞାନବିଜ୍ଞାନର ପରିପ୍ରଚାର ପାଇଁ ଅନୁବାଦ ଓ ମୌଳିକ ସାହିତ୍ୟ ସୃଷ୍ଟି କରି ଦେଶକୁ ନବ ଜୀବନରେ ଉଦ୍‌ଜୀବିତ କରିବା ମିଶନାରୀମାନଙ୍କର ଆନ୍ତରିକ ଅଭିଳାଷ ଥିଲା । ତେଣୁ ସେମାନେ ପାଠ୍ୟପୁସ୍ତକ ବ୍ୟତୀତ ଓଡ଼ିଆରେ ଅନୁବାଦ ଏବଂ ମୌଳିକ ସାହିତ୍ୟ ସୃଷ୍ଟି କରି ନିଜର ସୃଜନଶୀଳ ପ୍ରତିଭାର ପରିଚୟ ଦେଇଅଛନ୍ତି । ମିଶନାରୀମାନଙ୍କର ସଂହତିବୋଧ ଯେପରି ଭାବେ ବହୁ ପରିମାଣରେ ହିନ୍ଦୁଧର୍ମ ସଂସ୍କାରର ସହାୟକ ହୋଇପାରିଛି, ସେହିପରି ଭାବେ ଆଧୁନିକ ଶିକ୍ଷା ନୂତନ ଜୀବନ ଗଠନ ଦିଗରେ ଏକ ଅଭିନବ ପରମ୍ପରା ସୃଷ୍ଟି କରିଛି । ସୁତରାଂ ଊନବିଂଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଖ୍ରୀଷ୍ଟିୟାନ ମିଶନାରୀମାନଙ୍କର ଅବଦାନ ଅବିସ୍ମରଣୀୟ ।



# ସର୍ଦ୍ଦାର ବଲ୍ଲଭଭାଇ ପଟେଲ
# ଶିଶୁ ଚିକିତ୍ସାଳୟ (ଶିଶୁଭବନ)

**ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ**

"କଟକ ସହର ବଡ଼ ମହରଗ"—ଓଡ଼ିଶାର ଲୋକମୁଖରେ ଏହି କଥାଟି କେବେଠାରୁ ପ୍ରଚଳିତ ହେଲା, ତାହା କହିବା କାଠିକର ପାଠ। ତଥାପି ଏଥିରେ କଟକ ସହରର ଅର୍ଥନୈତିକ ଚିତ୍ରଟି ନଗ୍ନଭାବରେ ପରିସ୍ଫୁଟ ହୋଇଛି।

## ରାଜଧାନୀ କଟକ :

ମହାନଦୀ ଓ କାଠଯୋଡ଼ି ନଦୀର ମଧ୍ୟବର୍ତ୍ତୀ ସ୍ଥଳରେ ଅବସ୍ଥିତ ଆଧୁନିକ ଜନାକୀର୍ଣ୍ଣ ନଗରୀଟି ଏକଦା ଉତ୍କଳର ରାଜଧାନୀ ରୂପେ ଖ୍ୟାତି ଅର୍ଜ୍ଜନ କରିଥିଲା। କେଶରୀବଂଶ, ଗଙ୍ଗବଂଶର ରାଜାମାନେ ପ୍ରାୟ ଏକ ହଜାରରୁ ଅଧିକ ବର୍ଷ ରୂପେ ଏଠାରେ ଅଭିନବ ବାରାଣସୀ ନଗର ପ୍ରତିଷ୍ଠା କରି ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ। ପରବର୍ତ୍ତୀ କାଳରେ ମୋଗଲ, ମରହଟ୍ଟା ଏବଂ ଇଂରେଜମାନେ ମଧ୍ୟ କଟକ ସହରକୁ ରାଜଧାନୀ ରୂପେ ବାଛି ନେଇଥିଲେ। ଏପରିକି ଦେଶ ସ୍ୱାଧୀନତା ପାଇବାର କିଛିକାଳ ପର୍ଯ୍ୟନ୍ତ କଟକଠାରେ ରାଜ୍ୟ ବିଧାନସଭା, ସଚିବାଳୟ ଏବଂ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟାଳୟ, ବିଶ୍ୱବିଦ୍ୟାଳୟ ଆଦି ରହିଥିଲା। ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଉଛି କଟକ ସହର ଏକାଧାରରେ ଉତ୍କଳର ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ରାଜଧାନୀ ଭାବରେ ପ୍ରସିଦ୍ଧି ଲାଭ କରିଥିଲା। ତାଛଡ଼ା ପୂର୍ବାଞ୍ଚଳର ଏକ ନାମଯାଦା ବ୍ୟବସାୟ କେନ୍ଦ୍ର ତଥା ଓଡ଼ିଶାବାସୀଙ୍କର ସେବାରେ ନିୟୋଜିତ ତିନୋଟି ଚିକିତ୍ସା କେନ୍ଦ୍ର ଆଧୁନିକ ଯୁଗରେ ଏହାର ପ୍ରାଧାନ୍ୟକୁ ବୃଦ୍ଧି କରିପାରିଥିଲା। ଓଡ଼ିଶାର ଉଚ୍ଚନ୍ୟାୟାଳୟରେ ନ୍ୟାୟ ପାଇବା ଆଶାରେ ଯେତେ ଲୋକ ଏଠାକୁ ନ ଆସନ୍ତି, ତା'ଠାରୁ ଅଧିକ ସଂଖ୍ୟକ ବୃଦ୍ଧ, ଶିଶୁ ଓ ମହିଳା ରୋଗୀ ପ୍ରତିଦିନ ଚିକିତ୍ସା ପାଇବା ଆଶାରେ ଏହି ସହରକୁ ଆସିଥାଆନ୍ତି।

## ଶିଶୁଭବନର ବିଶେଷତ୍ୱ :

କଟକ ସହରରେ ତିନୋଟି ପ୍ରମୁଖ ଚିକିତ୍ସାଳୟ ରହିଛି। ଗୋଟିଏ ହେଲା ଶ୍ରୀରାମଚନ୍ଦ୍ର ଭଞ୍ଜ ଚିକିତ୍ସା ମହାବିଦ୍ୟାଳୟ ଓ ସ୍ୱାସ୍ଥ୍ୟସେବା କେନ୍ଦ୍ର। ଏହା "ବଡ଼-

ମେଡ଼କାଲ୍" ନାମରେ ଲୋକମୁଖରେ ପ୍ରଚଳିତ । ଆଜି ଗୋଟିଏ ହେଲା ସିଟିହସ୍-ପିଟାଲ । ଏହା ସହିତ ଜିଲ୍ଲାର ମୁଖ୍ୟ ଚିକିତ୍ସାଧିକାରୀଙ୍କ କାର୍ଯ୍ୟାଳୟ ଏବଂ ପରିବାର କଲ୍ୟାଣ କେନ୍ଦ୍ର ସମ୍ପୃକ୍ତ ହୋଇ ରହିଛି । ତନ୍ମଧ୍ୟ ଚିକିତ୍ସାଳୟଟି କେବଳ ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ । ତେଣୁ ସମଗ୍ର ରାଜ୍ୟରେ ଏହାର ବୈଶିଷ୍ଟ୍ୟ ପରିଲକ୍ଷିତ ହୋଇଥାଏ ।

## ଅବସ୍ଥିତି :

କାଠଯୋଡ଼ି ନଦୀକୂଳରେ ଶ୍ରଦ୍ଧାପାଟେ୍ରିକ ଅଞ୍ଚଳରେ ହାଇକୋର୍ଟ ଏବଂ ହରିହର ଘାଟ ମଧ୍ୟବର୍ତ୍ତୀ ସୁରମ୍ୟ ଅଟ୍ଟାଳିକାରେ ଶିଶୁଭବନ ନିର୍ମିତ ହୋଇଛି । ରୋଗ ପ୍ରପୀଡ଼ିତ ଶିଶୁଟିକୁ କୋଳରେ ଧରି ହତାଶାଜର୍ଜ୍ଜରିତ ପିତାମାତା ଶିଶୁଭବନ ପରିସରରେ ପ୍ରବେଶ ମାତ୍ରକେ ମନ ଓ ହୃଦୟରେ ଆଶାର କ୍ଷୀଣ ଆଲୋକରେଖା ଦେଖିପାରନ୍ତି ।

## ଅନୁଷ୍ଠାନର ଇତିହାସ :

ଅକବର ସାଲବେଗଙ୍କ ପିତା ଲାଲବେଗ ମୋଗଲ ସୁବେଦାର ନିଯୁକ୍ତ ହୋଇଥିଲେ । ଆଜିର ଶିଶୁଭବନଟି ସୁବେଦାର ଲାଲବେଗଙ୍କର ଲାଲକିଲ୍ଲା ଥିଲା । ଲାଲରଙ୍ଗରେ ନିର୍ମିତ କୋଠିଟି ମୋଗଲ ସ୍ଥାପତ୍ୟକଳା ମଣ୍ଡିତ ହୋଇ ପ୍ରାଚୀନ କଟକ ସହରର ଶୋଭାସମ୍ପଦକୁ ବୃଦ୍ଧି କରିବାରେ ସହାୟକ ହୋଇଥିଲା । ବିରାଟ ପରିସର ମଧ୍ୟରେ ସୁବେଦାରଙ୍କର ପେଶକସ ଆଦାୟର କଚେରୀ, ନୃତ୍ୟଶାଳା, ଅତିଥିଶାଳା, ରନ୍ଧନଶାଳା, ଭୋଜନାଳୟ, ଅଶ୍ୱଶାଳା ଇତ୍ୟାଦି ରହିଥିଲା ।

ତା'ଛଡ଼ା କାଠଯୋଡ଼ିର ସୁଶୀତଳ ସମୀରଣକୁ ସ୍ୱାଗତ କରୁଥିଲେ ଫଳପୁଷ୍ପ ମଣ୍ଡିତ ସବୁଜ ତରୁଲତାଗଣ । ବସନ୍ତ ଋତୁର ଆଗମନରେ କୋକିଳର କୁହୁ କୁହୁ ସ୍ୱନ, ବର୍ଷାର ରିମ୍‌ଝିମ୍ ସ୍ୱର ସହିତ ତାଳଦେଇ ହଳଧରସଙ୍ଗୀତର ମଧୁର ନର୍ତ୍ତନ ପରିବେଶଟିକୁ ମୋଗଲ ଯୁଗର ମାଧୁର୍ଯ୍ୟ ମଣ୍ଡିତ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ପ୍ରବଳ ପ୍ରତାପୀ ସୁବେଦାରଙ୍କ ନାମରେ ଏହି ଅଞ୍ଚଳ ଲାଲବାଗ ନାମରେ ଖ୍ୟାତି ଅର୍ଜ୍ଜନ କରିଥିଲା । ଏବେ ବି ଶିଶୁଭବନ ସମ୍ମୁଖସ୍ଥ ଥାନାଟିର ନାମ ରଖା-ଯାଇଛି ଲାଲବାଗ ଥାନା । ପାଖକୁ ଲାଗି ରହିଛି ଶ୍ରଦ୍ଧାପାଟେ୍ରିକ ଅଞ୍ଚଳର ବଡ଼ ଡାକଘର ବା କଟକ ସହରର ଉପ ମୁଖ୍ୟ ଡାକଘର ଏବଂ କଟକ ସହରର ତହସିଲ ଦାରଙ୍କ କାର୍ଯ୍ୟାଳୟ ।

ପରବର୍ତ୍ତୀ କାଳରେ ଇଷ୍ଟଇଣ୍ଡିଆ କମ୍ପାନୀର ସାର ଟମାସ୍ ରୋ ଏହି ସୁରମ୍ୟ ଅଟ୍ଟାଳିକା ସମ୍ପର୍କରେ ତାଙ୍କ ବିବରଣୀରେ ଉଲ୍ଲେଖ କରିଛନ୍ତି । ବ୍ରିଟିଶ ରାଜତ୍ୱ କାଳରେ ଏହି ମର୍ଯ୍ୟାଦାସମ୍ପନ୍ନ ଲାଲକିଲାକୁ ଜିଲ୍ଲା କଲେକ୍ଟର ଏବଂ କମିଶନରଙ୍କ କୋଠିଭାବେ ବ୍ୟବହାର କରାଗଲା । ଜନ୍‌ବିମ୍‌ସ, ରେଭେନ୍‌ସା ଆଦି ସୁନାମଧନ୍ୟ ସାହେବମାନେ ଏହି କୋଠିରେ ଅବସ୍ଥାନ କରୁଥିଲେ ।

ସ୍ୱାଧୀନତା ଲାଭ ପରେ ଏହି କୋଠି ରାଜଭବନ ନାମରେ ପରିଚିତ ହେଲା । ଚନ୍ଦୁଲାଲ ତ୍ରିବେଦୀ ଏବଂ ଯଶୋବନ୍ତ ନାରାୟଣ ସୁକଠଣକରଙ୍କ ଭଳି ଓଡ଼ିଶାର

ରାଜ୍ୟପାଳମାନେ ଏହି କୋଠିରେ ଅବସ୍ଥାନ କରୁଥିଲେ । ଗଡ଼ଜାତ ମିଶ୍ରଣ କାଳରେ ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଏହିଠାରେ ଆସି ଅବସ୍ଥାନ କରୁଥିଲେ । ଡଃ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଓଡ଼ିଶାର ଗଡ଼ଜାତ ରାଜାମାନେ ଭାରତୀୟ ଜନତାଙ୍କୁ ଆଶ୍ଚର୍ଯ୍ୟଚକିତ କରି ସର୍ବପ୍ରଥମେ ଏହିଠାରେ ଚୁକ୍ତି ସ୍ୱାକ୍ଷର କଲେ ଯେ ସେମାନେ ସ୍ୱତନ୍ତ୍ର ନ ରହି ସ୍ୱାଧୀନ ଭାରତ ଶାସନ ସହିତ ସମ୍ପୃକ୍ତ ହୋଇଯିବେ । ୧୯୬୧ ମସିହାରେ ରାଜଭବନ କଟକରୁ ଭୁବନେଶ୍ୱରକୁ ଉଠିଯାଇଥିଲା ଏବଂ ତତ୍‌କାଳୀନ ରାଜ୍ୟପାଳ ଯଶୋବନ୍ତ ନାରାୟଣ ସୁକଠଣ୍‌କର ଏହି କୋଠିକୁ ଭାରତୀୟ ରେଡ଼କ୍ରସ ସଂସ୍ଥା ହାତରେ ସମର୍ପଣ କରିଦେଲେ । ୧୯୬୨ ମସିହାରୁ ରାଜ୍ୟ ସରକାରଙ୍କ ସହାୟତାରେ ଏଠାରେ ଶିଶୁମାନଙ୍କ ପାଇଁ ଏକ ଚିକିତ୍ସାଳୟ ନିର୍ମିତ ହେଲା ।

## ଶିଶୁରୋଗ ବିଶେଷଜ୍ଞଙ୍କ ଭୂମିକା :

ଶିଶୁମାନଙ୍କ ଚିକିତ୍ସାର ପ୍ରଥମ ଦାୟିତ୍ୱ ଗ୍ରହଣ କରିଥିଲେ ସ୍ୱନାମଧନ୍ୟ ଚିକିତ୍ସକ ଡାକ୍ତର କାଶୀନାଥ ମିଶ୍ର । ତାଙ୍କର ପରିଚାଳନା ଦକ୍ଷତା ଯୋଗୁଁ ଅନୁଷ୍ଠାନଟି ଉତ୍ତରୋତ୍ତର ଉନ୍ନତି କରିବାକୁ ଲାଗିଲା । ଦେବୋପମ ଚିକିତ୍ସକ ତଥା ସ୍ୱନାମଧନ୍ୟ ସମାଜସେବୀ ଡାକ୍ତର ଶରତଚନ୍ଦ୍ର ମିଶ୍ର ଏହି ଅନୁଷ୍ଠାନର ମହତ୍ତ୍ୱକୁ ଦ୍ୱିଗୁଣିତ କରିଦେଇଥିଲେ । ପରବର୍ତ୍ତୀ କାଳରେ ଡାକ୍ତର ଗୋପାଳଚରଣ ଦାସ, ଡାକ୍ତର ସଂଗ୍ରାମକେଶରୀ ବେହେରା, ଡାକ୍ତର କ୍ଷୀରୋଦ ଚନ୍ଦ୍ର ପ୍ରହରାଜ, ଡାକ୍ତର କୁଶଧର ମହାନ୍ତି ପ୍ରମୁଖ ଅନୁଷ୍ଠାନର ଶ୍ରୀବୃଦ୍ଧି ସାଧନରେ ମନୋନିବେଶ କରିଥିଲେ । ପ୍ରଥମେ ଏହି ଚିକିତ୍ସାଳୟଟି ବଡ଼ ଡାକ୍ତରଖାନା ସହିତ ସଂଯୁକ୍ତ ଥିଲା । ୧୯୮୧ ମସିହାରେ ଏହାକୁ ସ୍ୱତନ୍ତ୍ର ମର୍ଯ୍ୟାଦା ଦିଆଗଲା । ତେଣୁ ଏଠାରେ ସ୍ନାତକୋତ୍ତର ଶ୍ରେଣୀର ଛାତ୍ରମାନଙ୍କ ଶିକ୍ଷାପାଇଁ ବ୍ୟାବହାରିକ ଜ୍ଞାନ ଦାନ ବ୍ୟବସ୍ଥା ଏବଂ ପ୍ରଫେସର ପଦବୀ ସୃଷ୍ଟି କରାଗଲା ।

ଶିଶୁମାନଙ୍କର ବିଭିନ୍ନ ରୋଗର ସହଜ ଚିକିତ୍ସା ଉଦ୍ଦେଶ୍ୟରେ ଭେଷଜ, ଶଲ୍ୟ, ଅସ୍ଥି ଶଲ୍ୟ, ଗଳା କର୍ଣ୍ଣ ନାସା, ମନୋବୈଜ୍ଞାନିକ ଚିକିତ୍ସାପଦ୍ଧତି ପାଇଁ ବ୍ୟବସ୍ଥା କରାଗଲେ । ନିଦାନ ବିଭାଗ, ରଞ୍ଜନରଶ୍ମି କେନ୍ଦ୍ର, ଜରୁରୀ ଚିକିତ୍ସାକେନ୍ଦ୍ର, ପରିବାର କଲ୍ୟାଣ ସହାୟକ କେନ୍ଦ୍ର ଏହି ଚିକିତ୍ସାଳୟର ବିଶେଷ ଆକର୍ଷଣ ।

## ଆଗନ୍ତୁକ ଏବଂ ଅନ୍ତେବାସୀଙ୍କ ଚିକିତ୍ସା ବ୍ୟବସ୍ଥା :

ସର୍ବମୋଟ ୨୦୦ ଜଣ ଶିଶୁରୋଗୀ ଏଠାରେ ରହିପାରିବାର ବ୍ୟବସ୍ଥା ରହିଛି । ଭେଷଜ ବିଭାଗରେ ୧୪୫, ଶଲ୍ୟବିଭାଗରେ ୨୦ ଏବଂ ସଂକ୍ରାମକ ରୋଗପାଇଁ ୩୫ ଜଣ ରୋଗଗ୍ରସ୍ତ ଶିଶୁ ରହିପାରିବେ ।

## କର୍ମଚାରୀ :

ଏହି ସଂସ୍ଥା ପାଇଁ ଦୁଇ ଜଣ ଭେଷଜ ପ୍ରଫେସର, ଦୁଇ ଜଣ ସହଯୋଗୀ ପ୍ରଫେସର ଏବଂ ଚାରି ଜଣ ସହକାରୀ ପ୍ରଫେସର ଏବଂ ଛଅ ଜଣ ଅଧ୍ୟାପକ ରହିବାର ବ୍ୟବସ୍ଥା ରହିଛି । ଶଲ୍ୟବିଭାଗ ପାଇଁ ସେହିପରି ଜଣେ ସହଯୋଗୀ ପ୍ରଫେସର, ଜଣେ ସହକାରୀ ପ୍ରଫେସର ଏବଂ ଜଣେ ଅଧ୍ୟାପକ ରହିବାର ବ୍ୟବସ୍ଥା ରହିଛି । ନିଶ୍ଚେତନ, ବାଇଓକେମିଷ୍ଟ୍ରି, ରେଡ଼ିଓଲୋଜି ଓ ମନୋବିଜ୍ଞାନ ଚିକିତ୍ସା ପାଇଁ ଜଣେ ଜଣେ ଅଧ୍ୟାପକ ରହିଛନ୍ତି । ଚିକିତ୍ସାରେ ସାହାଯ୍ୟ କରିବା ପାଇଁ ୪୦ ଜଣ ସେବିକା, ଛଅ ଜଣ ଫାର୍ମାସିଷ୍ଟ, ସାତ ଜଣ ଗବେଷଣା ସହକାରୀ ଏବଂ ଦୁଇ ଜଣ ରେଡ଼ିଓଗ୍ରାଫର ନିଯୁକ୍ତ ହୋଇଛନ୍ତି ।

ଏହା ବ୍ୟତୀତ ପ୍ରଶାସନ ପରିଚାଳନା ପାଇଁ ୧୧ ଜଣ ତୃତୀୟ ଶ୍ରେଣୀ ଏବଂ ୧୦୦ ଜଣ ଚତୁର୍ଥ ଶ୍ରେଣୀ କର୍ମଚାରୀ ନିଯୁକ୍ତ ହୋଇଛନ୍ତି । ଏଠାକାର ପ୍ରଫେସରମାନେ ବଡ଼ ମେଡ଼ିକାଲକୁ ଯାଇ ସ୍ନାତକୋତ୍ତର ଛାତ୍ରଛାତ୍ରୀଙ୍କୁ ଶିକ୍ଷାଦାନ କରିଥାନ୍ତି । ସେଠାକାର ସ୍ନାତକୋତ୍ତର ତଥା ଫାର୍ମାସୀ ଛାତ୍ରଛାତ୍ରୀମାନେ ଏଠାକୁ ଆସି ବ୍ୟାବହାରିକ ଜ୍ଞାନ ଆହରଣ ପାଇଁ ଶିଶୁରୋଗୀମାନଙ୍କୁ ପରୀକ୍ଷା କରିଥାଆନ୍ତି ।

## ରଜତ ଜୟନ୍ତୀ ସମାରୋହ :

୧୯୯୨ ମସିହାରେ ଶିଶୁଭବନ ୨୫ ବର୍ଷରେ ପଦାର୍ପଣ କଲା । ଅନୁଷ୍ଠାନର ରଜତଜୟନ୍ତୀ ଅବସରରେ ଭାରତର ପ୍ରଥମ ଉପପ୍ରଧାନମନ୍ତ୍ରୀ ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କର ଜନ୍ମ ଶତବାର୍ଷିକୀ ଦେଶସାରା ପାଳିତ ହେଉଥାଏ । ତାଙ୍କ ଭଳି ସ୍ୱଦେଶବତ୍ସଳ ବ୍ୟକ୍ତିଙ୍କ ସ୍ମୃତିକୁ ମନେରଖିବା ପାଇଁ ଏକଦା ଏହି କୋଠି ସହିତ ଜଡ଼ିତ ସର୍ଦ୍ଦାରଙ୍କ ନାମରେ ଶିଶୁଭବନକୁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଶିଶୁ ଚିକିତ୍ସାଳୟ (ଶିଶୁଭବନ) ଭାବରେ ନାମିତ କରାଗଲା ।

ଗବେଷଣାରୁ ଜଣାପାଇଛି ଯେ ଓଡ଼ିଶା ଶିଶୁ ମୃତ୍ୟୁହାର ସଂଖ୍ୟାରେ ଭାରତରେ ଦ୍ୱିତୀୟ ସ୍ଥାନ ଅଧିକାର କରିଛି । ଏକ ହଜାର ଶିଶୁରୋଗୀଙ୍କ ମଧ୍ୟରୁ ପ୍ରାୟ ୧୨୨ ଜଣ ମୃତ୍ୟୁମୁଖରେ ପଡ଼ିଥାନ୍ତି । ୟୁନିସେଫ୍ ସହାୟତାରେ ଶିଶୁମାନଙ୍କ ପାଇଁ ବିଶେଷ ସେବା ବ୍ୟବସ୍ଥା, ପୁଷ୍ଟିକର ଖାଦ୍ୟ ଯୋଗାଣ ବ୍ୟବସ୍ଥା ଏବଂ ଭ୍ରାମ୍ୟମାଣ ସଂକ୍ରାମକ ରୋଗ ନିରାକରଣ ବ୍ୟବସ୍ଥା କରିପାରିଲେ ଶିଶୁଭବନ ଯେ ରୋଗଗ୍ରସ୍ତ ଶିଶୁ ତଥା ନିରାଶ ପିତା ମାତାଙ୍କର ପ୍ରାଣରେ ନୂତନ ଆଶାର ଉଜ୍ଜ୍ୱଳ ଆଲୋକ ପ୍ରଦାନ କରିବ— ଏଥିରେ ସନ୍ଦେହର ଅବକାଶ ନାହିଁ ।



# କଟକର ଶ୍ମଶାନ

**ଡଃ ସଚ୍ଚିଦାନନ୍ଦ ମହାନ୍ତି**

ଶ୍ମଶାନଗୁଡ଼ିକ ସାଧାରଣତଃ ନଦୀ କୂଳରେ ହୋଇଥାଏ । ବିଭିନ୍ନ ସ୍ଥାନରେ ଏଗୁଡ଼ିକ ଶ୍ମଶାନଘାଟ ଭାବରେ ପରିଚିତ । ନଈ କୂଳରେ ବା ସମୁଦ୍ର କୂଳରେ ହେବାର କାରଣ ହେଲା ଶବ ସତ୍କାର ପରେ ମାଲଭାଇମାନଙ୍କର ସ୍ନାନାଦିର ସୁବିଧା ।

କଟକ ସହରରେ କାଠଯୋଡ଼ି ନଦୀ କୂଳରେ ପଶ୍ଚିମ ଭାଗରେ ସତୀଚୌରା ଓ ପୂର୍ବ ଭାଗରେ ଖାନନଗର । ମହାନଦୀର ପଶ୍ଚିମ ଭାଗରେ ଗୋରାକବର ଓ ପୂର୍ବ ଭାଗରେ କାଳିଆବୋଦା । ସତୀଚଉରାର ଅଳ୍ପ ଦୂରରେ ମୁସଲମାନ ଭାଇମାନଙ୍କ ପାଇଁ ଉଦ୍ଦିଷ୍ଟ ଇଦ୍‌ଗା ପଡ଼ିଆ । ସହରର ମଧ୍ୟବର୍ତ୍ତୀ ସ୍ଥଳରେ କଦମରସୁଲ ଓ କେଶରପୁର ଠାରେ ଥିବା ଦୁଇଟି ଶ୍ମଶାନ ।

ଶ୍ମଶାନଗୁଡ଼ିକ ଗ୍ରାମାଞ୍ଚଳରେ ଗ୍ରାମ ସୀମାରେ ଓ ସହରାଞ୍ଚଳରେ ସହରର ସୀମାରେ ରହିଥାଏ । କଟକ ସହରର ସତୀଚଉରା ପୂର୍ବେ ସେହିପରି ସହରର ଶେଷ ସୀମାରେ ଥିଲା, ମାତ୍ର ରିଙ୍ଗ୍ ବନ୍ଧ ହୋଇ ଅଭିନବ ବାରାଣସୀ କଟକ ନାମକ କଟକ ଉନ୍ନୟନ ସଂସ୍ଥା ଦ୍ୱାରା ଏକ ନୂତନ ବୃଦ୍ଧି ଅଞ୍ଚଳ ହେବା ଫଳରେ କାଠଯୋଡ଼ି ନଦୀ ବହୁଦୂର ଘୁଞ୍ଚିଗଲା ଓ ସତୀଚଉରା କଟକର ଏକ ଜନାକୀର୍ଣ୍ଣ ଅଞ୍ଚଳରେ ରହିଲା ।

ଖାନନଗର ଶ୍ମଶାନରେ ଏବେ ବୈଦ୍ୟୁତିକ ଚୁଲ୍ଲୀର ବ୍ୟବସ୍ଥା ହେବାଦ୍ୱାରା ଏଠାରେ ଆଉ ଶ୍ମଶାନର ନିର୍ଜନତା ନାହିଁ । ବରଂ ବ୍ୟାପକ ବିଦ୍ୟୁତ୍ ଆଲୋକର ବ୍ୟବସ୍ଥା ଯୋଗୁଁ ଏହି ସ୍ଥାନରେ ଦିବାରାତ୍ରର ପାର୍ଥକ୍ୟ ଅନୁଭୂତ ହୁଏ ନାହିଁ ।

ମହାନଦୀର ପୂର୍ବତଟରେ ଥିବା ଗୋରାକବର ଖ୍ରୀଷ୍ଟାନମାନଙ୍କର କବରଭୂମି ।

କଟକ ସହରରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ୍, ଜୈନ, ଶିଖ୍ ଓ ମହିମାଧର୍ମୀ ବ୍ୟକ୍ତିମାନେ ବସବାସ କରନ୍ତି । ହିନ୍ଦୁ, ଜୈନ, ଶିଖ ଓ ମହିମାଧର୍ମାବଲମ୍ବୀମାନେ ହିନ୍ଦୁମାନଙ୍କ ପାଇଁ ଉଦ୍ଦିଷ୍ଟ ସତୀଚଉରା, ଖାନନଗର ଆଦି ଶ୍ମଶାନଭୂମି ବ୍ୟବହାର କରନ୍ତି ।

ମୃତ ବ୍ୟକ୍ତିମାନଙ୍କ ଶବକୁ ପୋଡ଼ିବା କିମ୍ବା ଜଳରେ ଭସାଇଦେବା ଏହିପରି ଦୁଇଗୋଟି ପ୍ରକ୍ରିୟାରେ ସଂସ୍କାର କରାଯାଏ । ବସନ୍ତ, କଲେରା ଆଦି ରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିବା ବ୍ୟକ୍ତିମାନଙ୍କ ଶବକୁ ଜଳରେ ଭସାଇ ଦିଆଯାଏ । ଶିଶୁ ଓ ଅବିବାହିତ ବ୍ୟକ୍ତିଙ୍କ ଶବ ପୋତାଯାଏ ଓ ଅନ୍ୟାନ୍ୟ ଶବକୁ ନିଆଁରେ ଜଳାଯାଏ । ଏହି ପୋତା ବା ଜାଳିବା ସ୍ଥାନରେ ସମାଧି ନିର୍ମାଣ କରାଯାଏ ।

ମୃତ ବ୍ୟକ୍ତିକୁ ଗୃହରୁ ଶ୍ମଶାନକୁ ନେବାପାଇଁ ଦୁଇଟି ଲମ୍ବ ବାଉଁଶ ଓ ତା' ଉପରେ ୪ଟି ଫାଳ ରଖିବାରେ ପାଲଟଉଡ଼ରେ ବନ୍ଧାଯାଏ । ସେଥିପାଇଁ ଭକ୍ତକବି ଭକ୍ତଚରଣ କହନ୍ତି—

"ଛ' ଖଣ୍ଡି କାଠ ହେବ ତୋ ପାଇଁ ଲୋଡ଼ାରେ" ।

ଏହି ଛ'ଖଣ୍ଡି ବାଉଁଶ ମିଶି ପ୍ରାୟ ବନ୍ଧା ହୋଇଥାଏ । ଏହାକୁ 'କୋକେଇ' କୁହାଯାଏ । ଏହି କୋକେଇରେ ଶବକୁ ଶୁଆଇ ଓ ବାନ୍ଧି ମାଲଭାଇମାନେ ମଶାଣିକୁ ନେଇଯାନ୍ତି । ମଶାଣିରେ ମୃତ ଶରୀରକୁ ଦାହ କରିବାରେ ସାହାଯ୍ୟ କରୁଥିବା ବ୍ୟକ୍ତିଙ୍କୁ 'ମଡ଼ାଚଣ୍ଡିଆ' କୁହାଯାଏ ।

ଶିବ ଧ୍ୱଂସର ଦେବତା । ତାହାଙ୍କ ନିବାସସ୍ଥଳ ଶ୍ମଶାନ । ଶିବଙ୍କ ଘରଣୀ କାଳୀ ବା ଚଣ୍ଡୀ ମଧ୍ୟ ଶ୍ମଶାନ ନିବାସିନୀ । କେତେକ ଶ୍ମଶାନରେ ଶିବ, କାଳୀ ବା ଚଣ୍ଡୀଙ୍କ ମନ୍ଦିର ଦେଖାଯାଏ । ଖାନନଗର ଶ୍ମଶାନରେ ଶିବଙ୍କର ମନ୍ଦିର ଥିବାବେଳେ ସତୀଚଉରା ନିକଟରେ ଶିବଙ୍କର ମନ୍ଦିର ରହିଛି । କାଳିଆବୋଦାରେ ଦେବୀଙ୍କ ମନ୍ଦିର ଅଛି ଓ ଏହା ଏବେ ବାପୁ-ପାଗଳା ବାବାଙ୍କ ଆଶ୍ରମ ଅନ୍ତର୍ଭୁକ୍ତ ।

କଟକ ସହରର ଶ୍ମଶାନମାନଙ୍କ ମଧ୍ୟରେ ସତୀଚଉରାରେ ବହୁ କବି, କଳାକାର ଓ ପ୍ରସିଦ୍ଧ ଲୋକମାନଙ୍କର ସମାଧି ରହିଛି । ଖାନନଗରଠାରେ କଟକ ମୁନିସିପାଲିଟି ପକ୍ଷରୁ ବିଜୁଳି ଚୁଲି ସ୍ଥାପନ ହେବାବେଳେ ପ୍ରାଚୀନ ସମାଧିଗୁଡ଼ିକ ପୋଡ଼ିହୋଇ ଯାଇଛି । ଏଠାରେ ଦିନେ ଦୁର୍ଦ୍ଧର୍ଷ ବ୍ରିଟିଶ ଫଉଜଙ୍କୁ ଜବାବ ଦେଇ ସେମାନଙ୍କ ଗୁଳିରେ ଶିକାର ହୋଇଥିବା ସାହସୀ ବୀର ବାଳକ ବାଜିରାଉତର ଚିତା ଜଳିଥିଲା । ପୁଣି ସୀମା ଆନ୍ଦୋଳନ ବେଳେ ପ୍ରାଣବଳି ଦେଇଥିବା ଶହୀଦ ସୁନିଲ ଦେ'ର ଚିତା ଜଳି ଉଠି ଲିଭି ଯାଇଥିଲା । ସେହି ଚିତାର ଶେଷଶିଖା ସହିତ ଶେଷ ହୋଇଯାଇଥିଲା ସୀମା ଆନ୍ଦୋଳନ । ଅନୁଗୁଳର ରକ୍ତଲେଇରୁ ନେପାଳବାବାଙ୍କ ହୁକୁମର ବିଫଳତା ପରେ କୁଡ଼ କୁଡ଼ ହଇଜା ଆକ୍ରାନ୍ତ ରୋଗୀଙ୍କ ଶବରେ ଭରପୁର ହୋଇଯାଇଥିଲା କାଳିଆବୋଦାର ଶ୍ମଶାନ ଘାଟ । ସେଇ ସବୁ ଶବ ଗଦିକୁ ପେଟ୍ରୋଲ ପକାଇ ଜାଳି ଦିଆଯାଇଥିଲା ।

ପିଲ୍‌ଗ୍ରୀମ୍ ରୋଡ଼ ଦେଇ ପୁରୀକୁ ଯାଉଥିବା ପୂର୍ବକାଳର ତୀର୍ଥଯାତ୍ରୀମାନେ କାଳଆବୋଦା ବା ଖାନନଗର ଶ୍ମଶାନରେ ଶେଷଶଯ୍ୟା ଆଶ୍ରୟ କରୁଥିଲେ ।

ଯାତ୍ରୀମାନେ ଚୌଦ୍ୱାରଆଡ଼ୁ ମହାନଦୀର କାଳିଆଘାଇର ଗଣ୍ଡ ପାର ହୋଇ ଜୋବ୍ରା ଘାଟଠାରେ ଉଠି କଟକ ଭିତରକୁ ପ୍ରବେଶ କରୁଥିଲେ ଏବଂ ବଜ୍ରକବାଟି ବାଟେ ଆସି କାଠଯୋଡ଼ି ବନ୍ଧରେ ଯାଇ ପୁରୀଘାଟଠାରେ ପାରହୋଇ ମୁକାମେଶ୍ୱର ଦେଇ ଜଗନ୍ନାଥ ସଡ଼କରେ ପୁରୀ ଯାତ୍ରା କରୁଥିଲେ । ସମ୍ବଲପୁରଆଡ଼ର ଯାତ୍ରୀମାନେ ଚୌଦ୍ୱାର ପୂର୍ବରୁ ପାର ହୋଇ ଚହଟାଘାଟଠାରେ ମହାନଦୀ ପାର ହୋଇ ବଡ଼ାନାସୀ ବାଟଦେଇ କାଠଯୋଡ଼ି ନଦୀ ପାର ହୋଇ ପୁରୀକୁ ଯାଉଥିଲେ । ମହାନଦୀର ଉଭୟ କୂଳର ଗଡ଼ଜାତ ଅଞ୍ଚଳ ବଲାଙ୍ଗୀର, ସୋନପୁର, ବଉଦ, ଦଶପଲ୍ଲା, ଖଣ୍ଡପଡ଼ା, ବଡ଼ମ୍ବା, ତିଗିରିଆ, ନରସିଂହପୁର ଏବଂ ସମ୍ବଲପୁର, ଆଠମଲ୍ଲିକ, ଅନୁଗୁଳ, ଆଠଗଡ଼ ଆଦି ଅଞ୍ଚଳରେ ଅଧିବାସୀଗଣ ଏହି ପଥରେ ଯାତାୟାତ କରୁଥିଲେ । ପଥରେ ମହାମାରୀରେ ଆକ୍ରାନ୍ତ ହେଲେ କଟକ ସହରରେ ଶେଷନିଃଶ୍ୱାସ ତ୍ୟାଗ କରୁଥିଲେ ।

ଏ ତ ଗଲା ଯାତ୍ରୀମାନଙ୍କ କଥା । ମାତ୍ର କଟକ ସହରର ବାସିନ୍ଦାଙ୍କ ଶେଷ ବିଶ୍ରାମ ବିଷୟ ବିସ୍ତୃତରେ ନଆଯାଉ । କଟକରେ ଜନବସତି ଯେବେଠାରୁ ହେଲା ତା' ସହିତ ମୃତ୍ୟୁ ଲାଗି ରହିଥିବ ଓ ଶ୍ମଶାନର ଆବଶ୍ୟକତା ଦେଖାଦେଇଥିବ । ଏହି ସହରର ବୟସ ଏକହଜାର ବର୍ଷ ହୋଇଗଲା ବୋଲି ଏହାର ସହସ୍ରବାର୍ଷିକୀ ପୂର୍ତ୍ତି ପାଳିତ ହୋଇଯାଇଛି ।

ଏହି ନଗରନାଗରୀର ଜନ୍ମ ନକ୍ଷତ୍ର ବିଷୟରେ ଇତିହାସ ନୀରବ । ଧରଣୀ ଉପରେ ସୁନ୍ଦରୀର ପ୍ରଥମ ପଦଧ୍ୱନି କେବେ ଶ୍ରୁତ ହେଲା ସେ ସମ୍ପର୍କରେ କେହି ଜୋର୍‌ଦେଇ କହିପାରିବେ ନାହିଁ । ବିଖ୍ୟାତ ଓଡ଼ିଆ ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ସମ୍ପାଦକ ଗୋପାଳଚନ୍ଦ୍ର ପ୍ରହରାଜ କହନ୍ତି, ରାଜା ନୃପକେଶରୀ ୯୧୪ ଖ୍ରୀଷ୍ଟାବ୍ଦରେ ଏହି ସହର ସ୍ଥାପନ କରିଥିଲେ । ଜନଶ୍ରୁତିରେ ଅଛି 'ବାଇମୁଣ୍ଡି' ନାମକ ଜଣେ ବାସିନ୍ଦା କଟକ ସହରକୁ କାଠଯୋଡ଼ି ଓ ମହାନଦୀର ବନ୍ୟା ଦାଉରୁ ରକ୍ଷା ପାଇଁ ରାଜା ମର୍କତ କେଶରୀଙ୍କୁ ଜଣାଇବାରୁ ସେ ୧୦୦୬ ଖ୍ରୀଷ୍ଟାବ୍ଦରେ ପଥରବନ୍ଧ ନିର୍ମାଣ କରାଇଥିଲେ । ବାଇମୁଣ୍ଡି ଥିଲେ ବଡ଼ାନାସୀର ଅଧିବାସୀ । କାଠଯୋଡ଼ି ନଦୀ ଆଜି ପରି ଏତେ ପ୍ରଶସ୍ତ ନଥିଲା । ମାତ୍ର ଦୁଇଟି କାଠ ଯୋଡ଼ି ଏହାକୁ ପାର ହୋଇପାରୁଥିବାରୁ ଏହାର ନାମ କାଠଯୋଡ଼ି ହେଲା । ସେହି କାଠ ହୁଏତ ଭେଳା ଆକାରରେ ଭସା ଯାଉଥିଲା । ଯାହା ଫଳରେ ସେହି ଭେଳା ବା ବଡ଼ାର ନାସି ଅଞ୍ଚଳ ବଡ଼ାନାସି ନାମରେ ଓ ଅପର ପାର୍ଶ୍ୱ ମୁଣ୍ଡ ପାଖରେ ଥିବାରୁ ମୁଣ୍ଡମୁହାଣ ଭାବରେ ଲୋକମୁଖରେ ପ୍ରଚଳିତ ଥିଲା । ବାଇମୁଣ୍ଡିଙ୍କ ଗୃହ ବଡ଼ାନାସୀ ହୋଇଥିବାରୁ ସେତେବେଳେ ସତୀଚୌରା-ଶ୍ମଶାନ ବ୍ୟବହୃତ ହେଉଥିବ । କିମ୍ବା ମହାନଦୀ ଓ କାଠଯୋଡ଼ି ନଦୀ କୂଳରେ ଶବଗୁଡ଼ିକର ସଂସ୍କାର ବ୍ୟବସ୍ଥା ହେଉଥିବ ।

ଶ୍ରୀଜଗନ୍ନାଥ ମନ୍ଦିରର ମାଦଳାପାଞ୍ଜି ଅନୁସାରେ କେତେକ ବିଦ୍ୱାନ ମତବ୍ୟକ୍ତ କରନ୍ତି ଯେ ଏହି ମନ୍ଦିର ୯୮୯ ଖ୍ରୀଷ୍ଟାବ୍ଦରେ ସ୍ଥାପିତ ହୋଇଥିଲା । ଗୋଟିଏ ସହର କେବେ ମାସେ ବା ବର୍ଷକରେ ସ୍ଥାପିତ ହୋଇ ନ ପାରେ । ଏଥିପାଇଁ ଶତ ଶତ ବର୍ଷ ଲାଗି ବର୍ତ୍ତମାନର ଅବସ୍ଥାକୁ ଆସିଥିବ ।

ସାରଳା ଦାସ ମହାଭାରତ ସ୍ୱର୍ଗାରୋହଣ ପର୍ବରେ ଉଲ୍ଲେଖ କରିଛନ୍ତି ଯେ ସ୍ୱର୍ଗାରୋହଣ ପୂର୍ବରୁ ପାଣ୍ଡବମାନେ କଳିଙ୍ଗ ଦେଶକୁ ଆସି ଅମରାବତୀ କଟକ (ଛତିଆ)ରେ ୭୫ ବର୍ଷ କଟାଇଥିଲେ । (୧) ସ୍ଥାନୀୟ ଅଧିବାସୀ ହରିସାହୁ ପୁଣ୍ୟ ଅର୍ଜନ କରିବା ଆଶାରେ ପାଣ୍ଡବଜ୍ୟେଷ୍ଠ ଯୁଧିଷ୍ଠିରଙ୍କୁ ଆପଣାର 'ସୁହାଣିକନ୍ୟା'କୁ ବିଭା ଦେଲେ । ପାଣ୍ଡବମାନେ ନାତି ପରୀକ୍ଷିତଙ୍କୁ ଯାଜନ ନଗର ବା ବୈତରଣୀଦ୍ୱାରର ରାଜା କରାଇଲେ । (୨)

ଚନ୍ଦ୍ରଭାଗା ନଦୀ (ମହାନଦୀ) ପାର ହୋଇ ପାଣ୍ଡବମାନେ ବିଶ୍ୱେଶ୍ୱର (ଗଡ଼ଗଡ଼ିଆ ଘାଟରେ ପ୍ରତିଷ୍ଠିତ ଶିବ) ଶିବଙ୍କୁ ପୂଜା କରି ପୁଣି ଯାଇ ଅମର ଲିଙ୍ଗ (ବକ୍ସିବଜାରଠାରେ ପ୍ରତିଷ୍ଠିତ ଅମରେଶ୍ୱର ଶିବ) ଦର୍ଶନରେ ସନ୍ତୁଷ୍ଟ ହେଲେ । ସେଠାରୁ ଯାତ୍ରାକରି ଏକାମ୍ର ତୀର୍ଥରେ ପ୍ରବେଶ କରି ବିନ୍ଦୁ ସରୋବରରେ ସ୍ନାନ ପରେ ବିଶ୍ୱନାଥ (ଲିଙ୍ଗରାଜ)ଙ୍କୁ ଦର୍ଶନ କଲେ । (୩)

ଚୋଡ଼ଗଙ୍ଗଦେବ ୧୧୧୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଅଧିକାର କଲେ ଓ ୧୧୩୫ ଖ୍ରୀଷ୍ଟାବ୍ଦରେ ବାରଣସୀ କଟକକୁ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ । ଗଙ୍ଗବଂଶୀ ରାଜା

(୧) ଶୁଣ ବୈବସ୍ୱତମନୁ ବଦନ୍ତି ଅଗସ୍ତି,
ପାଣ୍ଡବମାନେ ରହିଲେ ଯେ ଅମରାବତୀ ।
ସୁହାଣି କନ୍ୟାକୁ ବିଭା ହେଲେ ଧର୍ମସୁତ,
ରହିଲେ ଯେ ପଞ୍ଚସ୍ତରୀ ବର୍ଷ ପରିଯନ୍ତ ।

(୨) ପରୀକ୍ଷିତେ ରାଜ୍ୟ ଦେଲେ ଯାଜନ ନଗରୀ
ପଞ୍ଚ କଟକର ମଧ୍ୟେ ଏକ ଅଧିକାରୀ ।

ପଞ୍ଚ କଟକ—(୧) ଯାଜପୁର କଟକ (୨) ଯଜନ ନଗର ବା ବୈଦ୍ୱାର କଟକ (୩) ଅମରାବତୀ କଟକ ବା ଛତିଆ କଟକ (୪) ଚୂଡ଼ଙ୍ଗ କଟକ ବା ସାରଙ୍ଗ-ଗଡ଼ (୫) ଅଭିନବ ବାରାଣସୀ କଟକ ।

(୩) ଚଳନ୍ତି ଚଳନ୍ତେ ପାଣ୍ଡବେ ହୋଇ ହୃଷ୍ଟମତି,
ଚନ୍ଦ୍ରଭାଗା ନଦୀ ପାର ହୋଇଣ ଯାଆନ୍ତି ।
ଚନ୍ଦ୍ରଭାଗା ନଦୀ ତୀରେ ବିଶ୍ୱେଶ୍ୱର ପୂଜି,
ଅମର ଲିଙ୍ଗ ଦର୍ଶନେ ବହୁ ତୋଷ ଭଜି ।
ପ୍ରବେଶ ହୋଇଲେ ଯାଇ ଏକାମ୍ରର ତୀର୍ଥେ,
ବିନ୍ଦୁ ହ୍ରଦେ ସ୍ନାନ କରି ଦେଖି ବିଶ୍ୱନାଥେ ।

୨ୟ ଅନଙ୍ଗଭୀମ ଦେବଙ୍କ ନାଗସି ତାମ୍ରଲେଖରୁ ଜଣାଯାଏ ଯେ ସେ ୧୨୩୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସରେ କଟକରେ ଗୋଟିଏ ଶ୍ରୀପୁରୁଷୋତ୍ତମ ମନ୍ଦିର ନିର୍ମାଣ କରିଥିଲେ। ଏହି ସମୟରେ ବାରବାଟୀଠାରେ ଦୁର୍ଗ ପ୍ରତିଷ୍ଠା କଲେ।

କଟକରେ ବାରବାଟୀଠାରେ ଗୋଟିଏ ଦୁର୍ଗ ଓ ତନ୍ମଧ୍ୟରେ ନବତଳ ପ୍ରାସାଦ ଥିବା ବିଭିନ୍ନ ସ୍ଥାନରେ ଉଲ୍ଲେଖ ରହିଛି। ଏତଦ୍‌ବ୍ୟତୀତ ମାଣିଖଣ୍ଡି ଶ୍ରୀନଗର ନାମରେ ଗୋଟିଏ ରାଜପ୍ରାସାଦ ଥିଲା। ଏହା ଗଙ୍ଗାମନ୍ଦିର ପୁଷ୍କରିଣୀ ସମୀପବର୍ତ୍ତୀ ଜେଲ ପରିସର ମଧ୍ୟରେ ଥିବା ମନେହୁଏ। ଏହି ରାଜପ୍ରାସାଦର ସମ୍ମୁଖରେ ଅନଙ୍ଗଭୀମଙ୍କ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥ ମନ୍ଦିର ରହିଥିଲା। ଫିରୋଜ ସାହା ୧୩୬୦-୬୧ ଖ୍ରୀଷ୍ଟାବ୍ଦରେ ବାରାଣସୀ କଟକ ଅଧିକାର କରିଥିଲେ। ଆଓରଙ୍ଗଜେବଙ୍କ ଶାସନ କାଳରେ ନାଏବ ନାଜିମ ଜଗନ୍ନାଥ ମନ୍ଦିର ଭଗ୍ନ କରିଥିଲେ। ୧୭୧୫ ଖ୍ରୀଷ୍ଟାବ୍ଦରେ ସେହି ସ୍ଥାନରେ କଦମରସୁଲ ସୁଜାଉଦ୍ଦିନ ଖାଁଙ୍କ ଦ୍ୱାରା ପ୍ରତିଷ୍ଠା ହୋଇଛି। ଏହି କଦମ ରସୁଲରେ ଆରବର ନଜଫଠାରୁ ଆସିଥିବା ମହାପୁରୁଷ ମହମ୍ମଦଙ୍କ ଦେହାବଶେଷ ରହିଛି ବୋଲି କୁହାଯାଏ। ଏହା ମଧ୍ୟରେ ବହୁ ମୁସଲମାନ ନବାବ ଓ ମରହଟ୍ଟା ସେନାମାନଙ୍କ କବର ଥିବା ଜଣାଯାଏ। ମରହଟ୍ଟା ସେନାପତି ଫତେ ଖାଁଙ୍କ କବର ମଧ୍ୟ ବିଦ୍ୟମାନ।

ହନୁମାନ ଘାଟ ନିକଟବର୍ତ୍ତୀ ରାଧାନାଥ ପ୍ରଶିକ୍ଷଣ ମହାବିଦ୍ୟାଳୟ ପାର୍ଶ୍ୱରେ କାଠଯୋଡ଼ି ନଦୀକୂଳ ବନ୍ଧରେ ଗୋଟିଏ ମୁସଲମାନଙ୍କ କବର ରହିଥିବା ଦେଖାଯାଏ। ଏହା ସାହେବଜାଦା ବଜାର ଅଞ୍ଚଳର 'ମୁସଲମାନ ବାସିନ୍ଦାଙ୍କ ବ୍ୟବହାରରେ ଲାଗିଥିବା ସମ୍ଭବପର।

ଶ୍ରୀନଗର ଅଞ୍ଚଳସ୍ଥ 'ନାକେଇ ପଡ଼ିଆ' ଗୋଟିଏ ଶ୍ମଶାନ। ଏହା ଛତିବଜାର, କମଲପୁର, ଦାସସାହି ଓ ଶ୍ରୀନଗର ବାସିନ୍ଦାଙ୍କ ଶ୍ମଶାନ ଭୂମି। ପୂର୍ବରୁ ଆଲୋଚିତ ଶ୍ମଶାନଗୁଡ଼ିକ ବ୍ୟତୀତ ଆହୁରି କେତେକ ସ୍ଥଳରେ ଛୋଟ ଛୋଟ ମଶାଣିମାନ ରହିଥିଲା। ସମସ୍ତଙ୍କର ଆଶ୍ରୟସ୍ଥଳୀ ଶ୍ମଶାନ। କବିବର ରାଧାନାଥ 'ଦରବାର'ରେ କବିସୂର୍ଯ୍ୟଙ୍କୁ ସ୍ମରଣ କରି ଯାହା ଲେଖିଥିଲେ, ତାହା ପ୍ରତ୍ୟେକ ପ୍ରତିଭାଧରଙ୍କ ପାଇଁ ପ୍ରଯୁଜ୍ୟ। "ତୁମ ମାଟିଦେହ ଗ୍ରାସିଛି ଶ୍ମଶାନ, ମାତ୍ର ଯଶୋଦେହେ ତୁମେ ଆୟୁଷ୍ମାନ।"

ଭକ୍ତକବି ମଧୁସୂଦନ କହିଛନ୍ତି—

"ତୋର ମଙ୍ଗଳ ବିଧାନ,
ମରଣକୁ କରିଅଛୁ ଅମୃତ ସୋପାନ।"

ବାସ୍ତବରେ ମୃତ୍ୟୁ ନ ହେଲେ ସ୍ୱର୍ଗକୁ ଯାଇପାରିବ ନାହିଁ କିମ୍ବା ଅମୃତର ସ୍ୱାଦ ଚାଖିପାରିବ ନାହିଁ। ତେଣୁ ମୃତ ହେଲେ ସିନା ଅମୃତ ପାଇ ହେବ ଏବଂ ମୃତ ହେଲେ ହିଁ ଶ୍ମଶାନ କୋଳେଇ ନେବ। ତାହା ହିଁ ପ୍ରାଣୀର ଶେଷ ଆଶ୍ରୟସ୍ଥଳ।



# ରାଣୀହାଟ ହାଇସ୍କୁଲ

ଶ୍ରୀ ବନମାଳୀ ଦାଶ

ରାଣୀହାଟର ଯେଉଁଠାରେ ସ୍କୁଲଟି ଅବସ୍ଥିତ ତାର ଦୁଇ କଡ଼ରେ ଓ ପଛରେ ବହୁତ ଯାଗା ସେତେବେଳେ ଜିଲ୍ଲା ବୋର୍ଡ଼ ଅଧିନରେ ଥିଲା । ସେଠିକୁ ପ୍ରଥମେ ଆସିଥିଲେ ଗୁରୁ ଶ୍ରୀ ଅନନ୍ତଚରଣ ଚୌଧୁରୀ ସୁଦୂର କେନ୍ଦ୍ରାପଡ଼ାରୁ—ତାଙ୍କ ସହ ସହଯୋଗୀ ଭାବରେ କାର୍ଯ୍ୟ କରୁଥିଲେ ଗୁରୁ ଶ୍ରୀ ଗୁରୁଚରଣ ରାଉତରାୟ ଓ ଶ୍ରୀ ଚିନ୍ତାମଣି ମିଶ୍ର ମହାଶୟ ! ଉପରୋକ୍ତ ଅଧ୍ୟାପକଗଣ ତାଙ୍କ ମଧ୍ୟରୁ ପଙ୍କଜର ଉତ୍ପତ୍ତି ହେବା ଭଳି କଲେଜର ଛାତ୍ରମାନଙ୍କ ମଧ୍ୟରୁ ଏକ ଛାତ୍ର ଶ୍ରୀ ବାଞ୍ଛାନିଧି ଶତପଥିଙ୍କୁ ୧୯୩୨ ମସିହାରେ ଆଣି ହାଇସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱ ନ୍ୟସ୍ତ କରିଥିଲେ । ଅଧ୍ୟାପକମାନଙ୍କ ନିର୍ଦ୍ଦେଶ ପାଇ ଯୁବକ ବାଞ୍ଛାନିଧି ଶତପଥି ସୁଦୂର ବୈତରଣୀର ସମସ୍ତ ମାୟା-ମମତା ତୁଟାଇ ଏହି ରାଣୀହାଟ ଭୂମିରେ ପାଦ ଦେଲେ । ତାଙ୍କ ଜୀବନର ବ୍ରତ ହେଲା ଅଧ୍ୟାପନା—ସେହି ଦିନଠାରୁ ସୁଦୂର ବାରିପଦାର ସୌନ୍ଦର୍ଯ୍ୟ, ବିଭବ ସବୁ ଭୁଲି ଏକମାତ୍ର ଧ୍ୟେୟ ଅଧ୍ୟାପନାକୁ ଗ୍ରହଣ କରିବା ସଙ୍ଗେ ସଙ୍ଗେ ସେ ତାଙ୍କ ମାତୃଭୂମିକୁ ମଧ୍ୟ ସବୁଦିନ ପାଇଁ ଭୁଲି ଯାଇଥିଲେ । ୧୯୩୨ ମସିହାରେ ରାଣୀହାଟର ସେହି ପରିସର ମଧ୍ୟରେ ହାଇସ୍କୁଲ ସ୍ଥାପନ କରନ୍ତି ଯୋଗଜନ୍ମା, ତଥା ଆଦର୍ଶର ମୂର୍ତ୍ତିମନ୍ତ ପ୍ରତୀକ ଗୁରୁ ଶ୍ରୀ ବାଞ୍ଛାନିଧି ଶତପଥି ।

ବିଦ୍ୟାଳୟଟିଏ ନିର୍ମାଣ ହେବ, ସେଥିରେ କୁନି କୁନି ଛାତ୍ରଛାତ୍ରୀମାନେ ଅଧ୍ୟୟନ କରିବେ । ସେ ତାଙ୍କର କେତେଗୁଡ଼ିଏ ସହକାରୀ, ସହଯୋଗୀ ବାଛିଲେ । ସେମାନେ ହେଲେ ଗୁରୁ ସର୍ବଶ୍ରୀ ରାମଚନ୍ଦ୍ର ମହାପାତ୍ର (କ) ପଣ୍ଡିତ ରାମଚନ୍ଦ୍ର ମହାପାତ୍ର (ଖ) ଜୟକୃଷ୍ଣ ମହାପାତ୍ର, ଜୟକୃଷ୍ଣ ମହାନ୍ତି, କାଶୀନାଥ ମହାପାତ୍ର (ଐତିହାସିକ) ରାଧାମୋହନ ପ୍ରଧାନ, ଗଜେନ୍ଦ୍ର ନାଥ ଖଣ୍ଡିଆ, ଉଦୟନାଥ ଦାଶ, ଶ୍ରୀଧର ମିଶ୍ର, ସତ୍ୟବାଦୀ ମିଶ୍ର ତଥା ପ୍ରାଇମେରୀ ବିଦ୍ୟାଳୟର ଗୁରୁଗଣ ଏହି ଆଦର୍ଶ ରତ୍ନମାନଙ୍କୁ ନେଇ ଯୋଗଜନ୍ମା ଗୁରୁ ଶ୍ରୀ ବାଞ୍ଛାନିଧି ଆଗେଇ ଗଲେ ନିଜ ଗନ୍ତପଥରେ—ଧନ୍ୟ

ସାଧକ—ସାଧନା ବିଫଳ ହୋଇନ ତିଳତିଳ କରି ସମସ୍ତ ଶିକ୍ଷକ ତଥା ପ୍ରଧାନ ଶିକ୍ଷକ ନିଜର ସମସ୍ତ ଲୁହଲହୁ ଦେଇ ଗଢ଼ି ତୋଳିଲେ ବିରାଟ ରାଣୀହାଟ ବିଦ୍ୟାଳୟ ଯାହା ୧୯୮୭ ମସିହାଠାରୁ ସରକାରୀ ସ୍କୁଲ ଭାବରେ କାର୍ଯ୍ୟ କରୁଛି । ତାଙ୍କର ଅତି ପ୍ରିୟ ଛାତ୍ରଗୁରୁ ଶ୍ରୀ ଦୈତାରୀ ତ୍ରିପାଠୀ, ଗୁରୁ ଶ୍ରୀ ଅର୍ଜୁନ ଚରଣ ସେନାପତି, ଶ୍ରୀଯୁକ୍ତ ବିଶ୍ୱନାଥ ମହାନ୍ତି ପର୍ଯ୍ୟାୟକ୍ରମେ ଏହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ତଥା ସେନାପତିତ୍ୱ ଗ୍ରହଣ କରିଥିଲେ । ଶ୍ରୀଯୁକ୍ତ ବିଶ୍ୱନାଥ ମହାନ୍ତି ମୋର ଜଣେ ପରମ ବନ୍ଧୁ ଭାବରେ ପାଠ ପଢ଼ିବା ସଙ୍ଗେ ସଙ୍ଗେ ସେଠାରେ ଶିକ୍ଷକତା କରିଥିଲୁ ଏବଂ ସେ ତାଙ୍କର ପ୍ରଧାନ ଶିକ୍ଷକତ୍ୱ ବେଳେ ସରକାରଙ୍କୁ ଯଥାରୀତି ବିଦ୍ୟାଳୟକୁ ହସ୍ତାନ୍ତର କରିଥିଲେ ଓ କିଛିଦିନ ପ୍ରଧାନ ଶିକ୍ଷକ ଭାବରେ ଅବସ୍ଥାନ କରିବା ପରେ ଆସିଲେ ସରକାରୀ କଳରୁ ଏକ ବିକ୍ଷ୍ୟାତ ଗୁରୁ ପ୍ରଧାନ ଶିକ୍ଷକ ଭାବରେ ଏହି ବିଦ୍ୟାଳୟକୁ । ସେ ଥିଲେ ଗୁରୁ ଶ୍ରୀ କେଶରୀ ଚରଣ ମହାନ୍ତି, ପୁରୁଣା ଗୁରୁ ଶ୍ରୀ ବାଞ୍ଛାନିଧି ଶତପଥିଙ୍କ କାର୍ଯ୍ୟକଳାପର କିଛିଟା ଦେଖିବାକୁ ମିଳେ, ଗୁରୁ ଶ୍ରୀ କେଶରୀ ଚରଣଙ୍କଠାରେ । ତାଙ୍କ ସମୟରେ ଉଚ୍ଚ ପ୍ରାଥମିକ ସ୍ତରର ସକାଳ ସମୟରେ କାର୍ଯ୍ୟ କରୁଥିବା ଶ୍ରେଣୀ ଗୁଡ଼ିକର ଦାୟିତ୍ୱରେ ଲେଖକ କିଛିବର୍ଷ କାର୍ଯ୍ୟ କରିଥିଲେ ।

ଗୁରୁ ଶ୍ରୀ ବିଜୟ କୁମାର ଖୁଣ୍ଟିଆ ମଧ୍ୟ ଏହାର କିଛିଦିନ ପ୍ରଧାନ ଶିକ୍ଷକ ଦାୟିତ୍ୱ ଗ୍ରହଣ କରିବା ପରେ ଆସିଲେ ଶ୍ରୀଯୁକ୍ତ ରୁଦ୍ରନାରାୟଣ ମହାନ୍ତି ଓ ତାଙ୍କ ପରେ ପ୍ରଧାନ ଶିକ୍ଷକ ବର୍ତ୍ତମାନ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ପଟ୍ଟନାୟକ ପୁଣି ମୁଁ ଫେରିବି ପୁରୁଣା ଗୁରୁ ଶ୍ରୀ ବାଞ୍ଛାନିଧି ବାବୁଙ୍କ ସମୟକୁ । ସେ କେବଳ ନିଜର ସବୁକିଛି ଜଳାଞ୍ଜଳି ଦେଇ ଯେ ରାଣୀହାଟ ହାଇସ୍କୁଲକୁ ଗଢ଼ିଥିଲେ ତା ନୁହେଁ, ଛାତ୍ରବତ୍ସଳ ଶତପଥିଙ୍କ ଆପ୍ରାଣ ଚେଷ୍ଟା ଫଳରେ ସ୍କୁଲ ଉନ୍ନତି ପଥରେ ଅଗ୍ରଗାମୀ ହୋଇଥିଲା । ସ୍ୱାର୍ଥ ଦେଶ ତଥା ଯଶର ଏକମାତ୍ର ଶତ୍ରୁ କହିଲେ ଅତ୍ୟୁକ୍ତି ହେବନାହିଁ । ଯେଉଁ କଳଙ୍କିତ ଶତ୍ରୁ ସ୍ୱାର୍ଥ, ସେ ଥିଲେ ତାଠାରୁ ବହୁତ ଦୂରରେ, ଯା ଫଳରେ ଅନୁଷ୍ଠାନର ଉନ୍ନତି ସମ୍ଭବପର ହୋଇଥିଲା । ଅନୁଷ୍ଠାନର ଉନ୍ନତି ସେତିକିବେଳେ ସମ୍ଭବପର ହୁଏ ଯେତେବେଳେ ଅନୁଷ୍ଠାନର ଅଙ୍ଗନରେ ଦେଖାଦିଏ ନିସ୍ୱାର୍ଥପର ସାରଥି । ଆଜ ତା'ର ପ୍ରତିଫଳନ ଦେଖା ଦେଇଥିଲା ରାଣୀହାଟ ହାଇସ୍କୁଲ ପ୍ରାଙ୍ଗଣରେ । ପ୍ରଧାନ ଶିକ୍ଷକ ତଥା ସ୍କୁଲର ପ୍ରାଣ ପ୍ରତିଷ୍ଠାତା କର୍ମବୀର ବାଞ୍ଛାନିଧିଙ୍କ ନିକଟରେ । ସେ ଥିଲେ ରାଣୀହାଟ ହାଇସ୍କୁଲର ନେତା, ଯେକ ନିର୍ଭିକ, ନିଃସ୍ୱାର୍ଥପର ଓ ନିଷ୍ଠାପର କର୍ମଯୋଗୀ । ୧୯୪୯ ମସିହା—ରାତି ପାହିଲେ ରାମ ବନବାସ । ସକାଳର ନୂତନ ସୂର୍ଯ୍ୟ ଦେଖିବେ ପରୀକ୍ଷା କୋଠରୀର ବୃଦ୍ଧକାଳର ଷେଷଫଳ ଉପରେ କୁନି କୁନି ଛାତ୍ରଛାତ୍ରୀମାନେ— ପୂର୍ବ ରାତିରେ ସମସ୍ତ ପରୀକ୍ଷା କାର୍ଯ୍ୟ ଶେଷ କରି ଶିକ୍ଷକମାନେ ଗୃହାଭିମୁଖୀ ହେଲେ । ତାପରେ ହଠାତ୍ ଏକ ଦୁର୍ଘଟଣା—ରାଣୀହାଟ ଆକାଶ ହେଲା ନାଲି ରକ୍ତ ରଞ୍ଜିତ— ବିଦ୍ୟାଳୟର ଗୃହଗୁଡ଼ିକ ହେଲା ଭସ୍ମୀଭୂତ !

ଘରପୋଡ଼ାଠାରୁ ବିପତ୍ତି ନାହିଁ । ଦେଖାଗଲା ଘରପୋଡ଼ି ଯିବାବେଳେ ପ୍ରଧାନ ଶିକ୍ଷକ ପାଟିକର ଗଣିହାଟ ଦାଣ୍ଡରେ ଗଡ଼ କରୁଛନ୍ତି । ଏ କଅଣ ହେଲା—କିଏ ଏହା କଲା···ସତେ ଯେପରି ସେତେବେଳେ ମନେ ହେଉଥିଲା ଯେ ଏ ସ୍କୁଲଟା କଅଣ ବାଞ୍ଛାନିଧି ଶତପଥିର ପୈତୃକ ସମ୍ପତ୍ତିକି ?···

ସେ ଥିଲେ ସ୍ଥିତପ୍ରଜ୍ଞ, ଅଟଳ, ଅଚଳ, ସଙ୍ଗେ ସଙ୍ଗେ ଅଣ୍ଟାଭିଡ଼ି ବାହାରି ପଡ଼ିଲେ ସ୍କୁଲଗୃହ ସଜାଡ଼ିବାକୁ । ସଙ୍ଗରେ ତାଙ୍କର ଅତି ପ୍ରିୟ ବନ୍ଧୁ ଓ ଶିକ୍ଷକଗଣ··· ସେମାନଙ୍କ ମଧ୍ୟରେ ସ୍ୱର୍ଗତଃ ମାଧବାନନ୍ଦ ଦାସ, ଦାଶରଥି ବାବୁ ଓ ପରମାନନ୍ଦ ବାବୁ ପ୍ରମୁଖ ।

ବାଞ୍ଛାନିଧି ବାବୁଙ୍କର ନିଷ୍ଠାପରତା ଓ ନିସ୍ୱାର୍ଥ ସେବା ଯାଙ୍କୁ ନିସ୍ୱାର୍ଥପର ଓ ସାହାଯ୍ୟକାରୀ ବନ୍ଧୁ ୰ ମାଧବାନନ୍ଦ ତଥା ପ୍ରଫେସରପଢ଼ାର ଆଚାର୍ଯ୍ୟ ବାବୁଙ୍କ ସର୍ବବିଧ ସାହାଯ୍ୟ ତାଙ୍କୁ ସୁଦୂର ପ୍ରସାରି କରି ପାରିଥିଲା···

ଏ ଦୁର୍ଘଟଣା ସମ୍ବାଦ କଟକର କୋଣେ କୋଣେ ସକାଳ ନ ହେଉଣୁ ପ୍ରଚରିତ ହୋଇ ଯାଇଥିଲା । ତତ୍କାଳୀନ ରେଭେନ୍ସା କଲେଜର ଅଧ୍ୟକ୍ଷ ଶ୍ରୀଯୁକ୍ତ ମଜୁମଦାର ମହାଶୟ ବିଦ୍ୟାଳୟ ପ୍ରାଙ୍ଗଣରେ ଉପସ୍ଥିତ ହୋଇ ପ୍ରବୋଧନ ଦେଇ କହିଥିଲେ, "ବାଞ୍ଛାନିଧି ତୁମେ ବ୍ୟସ୍ତ ହୁଅନାହିଁ । ପିଲାଙ୍କୁ କଲେଜଠିକୁ ପଠାଇ ଦିଅ—ମୁଁ ପରୀକ୍ଷା ପାଇଁ ସମସ୍ତ ସୁବନ୍ଦୋବସ୍ତ କରି ଦେଉଛି । ବିଶ୍ୱବିଖ୍ୟାତ୍ ବୈଜ୍ଞାନିକ ଡଃ ପ୍ରାଣକୃଷ୍ଣ ପରିଜାଙ୍କ ସହଧର୍ମିଣୀ ଖବର ଦେଲେ । ବାଞ୍ଛାନିଧି ବାବୁ ବ୍ୟସ୍ତହେବେ ନାହିଁ, ନୂତନ ଗୃହ ନିର୍ମାଣର ବ୍ୟବସ୍ଥାରେ ଲାଗିପଡ଼ନ୍ତୁ, ବହୁ ସାହାଯ୍ୟ ମିଳିବ । କଟକର ତତ୍କାଳୀନ ବିଧାୟକ ଶ୍ରୀ ବିରେନ ମିତ୍ର ମହାଶୟ ତଥା ମୁଖ୍ୟମନ୍ତ୍ରୀ ମହତାବଜୀ ସରକାରୀ ସାହାଯ୍ୟ ଅକୁଣ୍ଠ ଚିତ୍ତରେ ପ୍ରଦାନ କରିଥିଲେ ।

ସର୍ବୋପରି ବିଦ୍ୟାଳୟ ଗୃହ ଅଗ୍ନି ଦଗ୍ଧ ହେବାପରେ ନୂତନ ଗୃହ ପାଇଁ ଯେଉଁ ନୂତନ ଉତ୍ସାହ ଓ ଉଦ୍ୟମ ଆରମ୍ଭ ହେଲା ତା'ର ମୁଖ୍ୟ କର୍ଣ୍ଣଧାର ହେଲେ ଗୁଣୀଗଣାଗ୍ରଗଣ୍ୟ ସ୍ୱର୍ଗତ ବାଞ୍ଛାନିଧି ସଙ୍ଗରେ ତାଙ୍କର କେତେକ ସାଥି ଓ ସହକାରୀ ଗୁରୁ ସ୍ୱର୍ଗତ ଗଜେନ୍ଦ୍ର ନାଥ ଓ ଗୁରୁଚରଣ ।

ଖୁବ୍ ଜୋର୍‌ସରରେ ନୂତନ ଗୃହ କାର୍ଯ୍ୟ ଆରମ୍ଭ ହେଲା ଓ ବହୁ ଆଡ଼ରୁ ବହୁ ପ୍ରକାର ସାହାଯ୍ୟ ସହାନୁଭୂତି ଆସି ଠୁଳ ହେଲା ଗଣିହାଟ ବିଦ୍ୟାଳୟର ପ୍ରାଙ୍ଗଣରେ । ଛତା ଖଣ୍ଡେ ଧରି ବାଞ୍ଛାନିଧି ବାବୁ ଲାଗିପଡ଼ିଥାନ୍ତି ଦିନରାତି ସ୍କୁଲଗୃହ ନିର୍ମାଣ ପାଇଁ । ତା'ର ସାମୟିକ ପରିସମାପ୍ତି ଘଟିଲା । ତା'ପର ଅବସ୍ଥା ଗୁରୁଭାବରେ ସେ ବିଦ୍ୟାଳୟରେ ଯୋଗ ଦେଇଥାଏ ଏ ଅକିଞ୍ଚନ । ଶିକ୍ଷକମାନଙ୍କୁ ନିଜେ ବାଞ୍ଛାନିଧି ବାବୁ ବାଛି ବାଛି ରଖିଥାନ୍ତି । ସମସ୍ତଙ୍କ ଡର, ଭୟ ତଥା ଭକ୍ତି ଗୋଟିଏ ଲୋକକୁ ସେଠାରେ ।

ଛାତ୍ରମାନଙ୍କୁ ପ୍ରଧାନ ଶିକ୍ଷକଙ୍କ ଭଳି ଅନ୍ୟ ଶିକ୍ଷକମାନେ ଏତେ ଭଲ ପାଆନ୍ତି, ଆଦର କରନ୍ତି ଯେ ତାଙ୍କର୍ ପଟାନ୍ତର ନାହିଁ । ସେପରି ଶିକ୍ଷକ ଆଜି ଆଉ କୌଣସି କୋଣରେ ମୁଁ ଦେଖିବାକୁ ପାଉନାହିଁ । କୌଣସି ଆପତ୍ତିକର ପରିବେଶ ସେ ବିଦ୍ୟାଳୟକୁ ଛୁଇଁବା ଭଳି ମୁଁ ସେତେବେଳେ ଦେଖିବାକୁ ପାଇ ନ ଥିଲି । ତା'ର ମୂଳରେ ଆଦର୍ଶ ପ୍ରଧାନ ଶିକ୍ଷକ ହିଁ ଏକମାତ୍ର ଥିଲେ ।

ପ୍ରତ୍ୟେକ ଶିକ୍ଷକ ତାଙ୍କ ଆଦର୍ଶରେ ଅନୁପ୍ରାଣିତ ଥିଲେ । ଛାତ୍ର ଖରାପ କାର୍ଯ୍ୟ କରିବା ସ୍ୱାଭାବିକ୍ । କିନ୍ତୁ ଯଦି ଭୁଲବଶତଃ କୌଣସି ଶିକ୍ଷକଙ୍କ ନିକଟରେ ସେ ପଡ଼ି ଯାଇଛି ତା'ହେଲେ ତା'ର ଗତି ନିଶ୍ଚିତ ବଦଳିଛି ଏଥିରେ ସନ୍ଦେହ ନାହିଁ ।

ସର୍ବୋପରି ପ୍ରଧାନ ଶିକ୍ଷକଙ୍କ ଆଖିରେ ପଡ଼ିଲେ ତାର ସଦ୍‌ଉଦୟ ସଙ୍ଗେ ସଙ୍ଗେ ନିଶ୍ଚିତ ହେବ ଯାହାକି ମୁଁ ମୋର ଛାତ୍ରାବସ୍ଥାରେ ଅନୁଭବ କରିଛି—ଗରିବ ଛାତ୍ରଙ୍କ ପ୍ରତି ତାଙ୍କର ତଥା ସ୍କୁଲର ବହୁତ ଅନୁକମ୍ପା ଥିଲା—ରାଣୀହାଟ ହାଇସ୍କୁଲ ଯେଉଁ ବସ୍ତି ଅଞ୍ଚଳରେ ଅବସ୍ଥିତ ତାହା ସମସ୍ତେ ଜାଣନ୍ତି । ଗୋଟିପଟେ ହରିଜନ ତଥା ମେଡ଼ିକାଲର ୪ର୍ଥ ଶ୍ରେଣୀ କର୍ମଚାରୀଙ୍କର ଆବାସସ୍ଥଳୀ ଆଉ ଗୋଟେପଟେ ସାହିବସ୍ତି । ରାଣୀହାଟ ହାଇସ୍କୁଲ ପରିବେଷ୍ଟନୀ ଭଳି କୌଣସି ତତ୍‌କାଳୀନ କଟକ ଟାଉନ ସ୍କୁଲ ମାନଙ୍କ ନିକଟରେ ଦେଖିବାକୁ ମିଳେ ନାହିଁ । ତଥାପି ପଙ୍କରେ ପଙ୍କଜର ଜନ୍ମଭଳି, ରାଣୀହାଟ ସ୍କୁଲର ପରିବେଶ ।

ଯଦି କୌଣସି ଶିକ୍ଷକ କହୁଥିଲେ ସାର୍ ଏ ପିଲାକୁ ଆଡ଼ମିଶନ କରିବା ନାହିଁ— ସେ କହୁଥିଲେ "ଆରେ ମୂର୍ଖ, କେହିତ ଆଡ଼ମିଶନ କଲେନି । ଆମେତ ନବାବ, ସେ କଅଣ ମୂର୍ଖ ହେବ ? ରାସ୍ତାରେ ଚନାବାଦାମ ବିକିବ ? ନା, ସେ ପାଠପଢ଼ି ମାଟ୍ରିକ୍ ପର୍ଯ୍ୟନ୍ତ, ଯାଇ କିଛି ନହେଲେ ମେକାନିକ୍ ଟ୍ରେନିଂ ଯାଇ ପାରିବ । କେବଳ ସେ ଏତିକ ନୁହେଁ । ଏହି ପରିବେଶ ମଧ୍ୟରୁ ଶିକ୍ଷକମାନଙ୍କର ଅକ୍ଳାନ୍ତ ପରିଶ୍ରମ ତଥା ସନ୍ତାନ ବତ୍ସଳ ପ୍ରଧାନ ଶିକ୍ଷକଙ୍କର ସ୍ନେହଶ୍ରଦ୍ଧା ମଧ୍ୟରୁ ଓଡ଼ିଶାର କାହିଁକି ସମଗ୍ର ପୃଥିବୀରେ ଏଠାକାର ବହୁ ଛାତ୍ର ନାମ କରିଛନ୍ତି । ସେ ହେଉଛନ୍ତି, ସ୍ୱର୍ଗତ ପଣ୍ଡିତ ଗୋଦାବରୀଶଙ୍କ ଭଳି ଅର୍ଦ୍ଧଶତାବ୍ଦୀର ଇତିହାସ ତାଙ୍କର କୌଣସି ସଂଗ୍ରାମ ନଥିଲେ ତେଣୁ ସେ କହୁଥିଲେ ଏହିମାନେହିଁ ମୋର ସଂଗ୍ରାମୀ ।

ସବୁ ପିଲାମାନଙ୍କୁ ଶ୍ରେଣୀ ଉତ୍ତୀର୍ଣ୍ଣ କରିବାରେ ଲୋକେ କହନ୍ତି ସେଠିତ ଡେକ୍‌ସ ବେଞ୍ଚ ପାଶ୍, କିନ୍ତୁ ତା'ମଧ୍ୟରେ ବିଶ୍ୱବିଦ୍ୟାଳୟ ଓ ମାଟ୍ରିକ ପରୀକ୍ଷାରେ ନିଶ୍ଚିତ ଭାବରେ ରାଣୀହାଟ ହାଇସ୍କୁଲ ଆଣିଥିବ ଏକାଧିକ ପ୍ରଥମ ଦଶଜଣଙ୍କ ଭିତର ଛାତ୍ର ।

ଅସଂଖ୍ୟ ଆଇ. ଏସ୍. ଆଇ. ପି. ଏମ୍. ଏହି ସ୍କୁଲର । ପଦ୍ମଶ୍ରୀ, ପଦ୍ମଭୂଷଣ, ତଥା ବୈଜ୍ଞାନିକ, ବିଦେଶରେ ନାମ କରିଥିବା ବ୍ୟକ୍ତି ଏହି ସ୍କୁଲର ଛାତ୍ର । ଆଜି ଯଦି ଲୋକଙ୍କର ଖାଦ୍ୟ ଖାଉଥା ଶୁଣି ଥାଆନ୍ତେ ବାଞ୍ଛାନିଧିବାବୁ—ତାହେଲେ ସ୍କୁଲର ଉନ୍ନତି କରିପାରି ନଥାନ୍ତେ । ପ୍ରକୃତରେ ଦେଖିବାକୁଗଲେ ଯଦି ଆଜି ତାହାର ପକ୍ଷଚ୍ଛେଦନ କରିଯାଇଛି ଓ ବାଞ୍ଛାନିଧିବାବୁଙ୍କ ପରବର୍ତ୍ତୀ ଅବସ୍ଥାରେ ତାର ଅବନତି ଘଟିଛି ତଥା ଶୋଚନୀୟ ଶ୍ରେଣୀକୁ ଖସି ଆସିଛି ତାହା କେବଳ ତାହାର ଅନ୍ତେବାସୀ ଓ ଗ୍ରାମବାସୀ-ମାନଙ୍କ ପାଇଁ ।

ଏ ବିଦ୍ୟାଳୟରୁ ବହୁଛାତ୍ର ଉଚ୍ଚ ପଦପଦବୀରେ ଓଡ଼ିଶା ତଥା ବାହାରେ ନାମ କରିଛନ୍ତି । ଏ ବିଦ୍ୟାଳୟରେ ବହୁ ନାମକରା ଶିକ୍ଷକ ମଧ୍ୟ ଶିକ୍ଷା ଦେଇଛନ୍ତି । ତନ୍ମଧ୍ୟରେ ନାଗଭୂଷଣ ପଟ୍ଟନାୟକ, ଭବାନୀଶଙ୍କର ପ୍ରହରାଜ ତଥା ଆଉ ଅନେକ । ଛାତ୍ରମାନଙ୍କ ମଧ୍ୟରୁ ଅନେକ ଏହି ବିଦ୍ୟାଳୟରେ କାର୍ଯ୍ୟକରି ଆସିଛନ୍ତି । ଯଥା— ସ୍ୱର୍ଗତ ଦୈତାରି ତ୍ରିପାଠୀ, ଶ୍ରୀ ଅର୍ଜ୍ଜୁନ ଚରଣ ସେନାପତି, ପ୍ରଥମ ଛାତ୍ର ଶ୍ରୀ କରୁଣାକର ସାହୁ, ଅଲେଖ ଚନ୍ଦ୍ର ଦାସ, ବିଶ୍ୱନାଥ ମହାନ୍ତି, ଶ୍ରୀ ଦତ୍ତହରି ମହାପାତ୍ର, ଶ୍ରୀ ବାଳକୃଷ୍ଣ ମାଝି, ଶ୍ରୀ ବନମାଳୀ ଦାସ, ଡଃ ବିଜୟ କୁମାର ଖୁଣ୍ଟିଆ, ଶ୍ରୀ ମହେଶ୍ୱର ସାମନ୍ତରାୟ ଓ ଆଉ ଅନେକ । ଶରୀର ତତ୍ତ୍ୱ ପଢ଼ାଇବାକୁ କଟକ ସେଲଫାର୍ମାସୀର ମାଲିକ ଓ ଡଃ କେଶବ ଚନ୍ଦ୍ର ସାହୁ ଏଠାକୁ ଆସିଛନ୍ତି ।

ଉଚ୍ଚ ପଦପଦବୀରେ ଅଧିଷ୍ଠିତ ଛାତ୍ରମାନଙ୍କ ମଧ୍ୟରେ କଟକ ଜିଲ୍ଲାପାଳ ଶ୍ରୀ ପଦ୍ମଲୋଚନ ମିଶ୍ର, ଶ୍ରୀ ଅଜୟ କୁମାର ତ୍ରିପାଠୀ, **I. A. S.,** ଶ୍ରୀ ମନମୋହନ ପ୍ରହରାଜ, **I. P. S**, ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ, (କଟକ ଏମ୍. ପି.) ଜର୍ମାନରେ ଅବସ୍ଥାପିତ ଇଞ୍ଜିନିୟର ଡଃ ରାଜେନ୍ଦ୍ର ନାରାୟଣ ଦାସ, ଡଃ ପ୍ରଭାତ କୁମାର ମିଶ୍ର, ରେଭେନ୍‌ସା କଲେଜ ପ୍ରିନ୍‌ସିପାଲ, ଶ୍ରୀ ରବୀନ୍ଦ୍ର ନାଥ ମହାନ୍ତି, ଏଡ଼ଭୋକେଟ୍, ଶ୍ରୀ ହେମେନ୍ଦ୍ର ନାରାୟଣ ଦାସ, ଡଃ ଯଦୁନାଥ ପ୍ରସାଦ ଦାସ, ଶ୍ରୀ ରବୀନ୍ଦ୍ର ନାଥ ମାଝି ଆଉ ଅନେକ ବଡ଼ ବଡ଼ **I.A.S., O.A.S., I.P.S.** ତଥା ବିଭିନ୍ନ ଅଫିସ-ମାନଙ୍କରେ ରାଣୀହାଟ ହାଇସ୍କୁଲର ଛାତ୍ର ଓ ଛାତ୍ରୀ । ଶ୍ରୀଯୁକ୍ତ ବିମଳେନ୍ଦୁ ମହାନ୍ତି ବର୍ତ୍ତମାନର Sports Director ଇତ୍ୟାଦି । ରାଣୀହାଟ ହାଇସ୍କୁଲରେ ରାଧାନାଥ ଟ୍ରେନିଂ କଲେଜ ଓ ରେଭେନ୍‌ସା କଲେଜର ଏକ୍‌ଟେନ୍‌ସନ ଛାତ୍ରଛାତ୍ରୀମାନେ ଗୁରୁ ଛାତ୍ର ଭାବରେ ଶିକ୍ଷା ପ୍ରଦାନ କରିଥାନ୍ତି । ଏହା ଏକ ଏକ୍‌ଟେନ୍‌ସନର ପରୀକ୍ଷା କେନ୍ଦ୍ର ମଧ୍ୟ ।

ଯେଉଁ ବିଦ୍ୟାଳୟ ଦିନେ କେତେକ ବଦାନ୍ୟ ବ୍ୟକ୍ତିଙ୍କର 'ଶ୍ରଦ୍ଧା' ଅର୍ଥରେ ଚଳୁଥିଲା, ସେ ଯେ ଦିନେ ଓଡ଼ିଶା ପ୍ରଦେଶର ସର୍ବବୃହତ୍ତମ ବିଦ୍ୟାଳୟରେ ପରିଣତ ହୋଇ ପାରିବ ଏକଥା କେହି ସ୍ୱପ୍ନ ବି ଦେଖି ନଥିଲେ । କିନ୍ତୁ ଏହା କେବଳ ସମ୍ଭବ

ହୋଇ ପାରିଥିଲା ପ୍ରଗାଢ଼ ଚେଷ୍ଟା, ନିସ୍ୱାର୍ଥପର ଉଦ୍ୟମ ଓ ନିରବଚ୍ଛିନ୍ନ ସଂଗ୍ରାମ ଫଳରେ ।

ଘରପୋଡ଼ିର ଅଳଆ ମଧ୍ୟରୁ ମୃତବତ୍ ରାଣୀହାଟ ହାଇସ୍କୁଲକୁ ଟେକିଆଣି ଯିଏ କେହି ଜୀବଦାନ ପ୍ରଦାନ କରିଥାଏ ସେ ହେଉଛନ୍ତି, କର୍ମବୀର, କୋଗଜନ୍ମା ପ୍ରଥମ ପ୍ରଧାନ ଶିକ୍ଷକ ଶ୍ରୀ ବାଞ୍ଛାନିଧି ଶତପଥି ଓ ଶ୍ରୀ ଅନନ୍ତ ଚରଣ ଚୌଧୁରୀ ।

ଆମ୍ଭେମାନେ ପାଠ ପଢ଼ୁଥିବା ବେଳେ ୨୦୦୦ରୁ ଅଧିକ ଛାତ୍ରଛାତ୍ରୀ ଏଠାରେ ଅଧ୍ୟୟନ କରୁଥିଲେ । ବର୍ତ୍ତମାନ ମଧ୍ୟ ସେହି ପର୍ଯ୍ୟାୟରେ ତାହା ରହିଅଛି । ମୋର ମନେପଡ଼େ ବି. ଏଡ଼ ରେଭେନ୍ସା ଟ୍ରେନିଂ କଲେଜରେ ପଢ଼ିବାବେଳେ ଆମର ଅଧ୍ୟାପକ ସେଠାରେ **School Adminstration** ପଢ଼ାଇବା ବେଳେ କହିଥିଲେ ଭାରତରେ ବହୁତ ବଡ଼ ସ୍କୁଲ୍ ଅଛି ଯଥା, ରାମଦାସ ହାଇସ୍କୁଲ୍ ଦିଲ୍ଲୀ ଓ ଟାଟା ହାଇସ୍କୁଲ । କିନ୍ତୁ ସେଠାରେ ରାମଦାସ ହାଇସ୍କୁଲରେ ୭୦୦୦ ପିଲା ପଢ଼ୁଥିଲେ ୭ଟି ବିଭିନ୍ନ ସ୍ଥାନରେ ଥିବା ଓ ଭିନ୍ନ **Adminstration**ରେ ଥିବା ଏବଂ ଟାଟାରେ ମଧ୍ୟ ସେହି ଅବସ୍ଥା ୩ଟି ସିଫ୍ଟରେ ୩ ଜଣ ଅଧ୍ୟକ୍ଷଙ୍କ ଅଧୀନରେ ୩୦୦୦ ଛାତ୍ରଛାତ୍ରୀ ପଢ଼ୁଥିଲେ । କିନ୍ତୁ ରାଣୀହାଟ ଏକ ହାଇସ୍କୁଲ ୨୦୦୦ରୁ ଅଧିକ ଛାତ୍ରଛାତ୍ରୀ ଓ ଜଣେ ପ୍ରଧାନ ଶିକ୍ଷକଙ୍କ ଅଧୀନରେ ଗୋଟିଏ ସ୍ଥାନରେ । ଏହାହିଁ ହେଉଛି ଏହାର ବୈଶିଷ୍ଟ୍ୟ ।



# ସମ୍ବିଦ ସେମିନାରୀ

**ପ୍ରଭାତନଳିନୀ ମହାନ୍ତି**

ସଂସ୍କୃତର ପୀଠ, ପ୍ରାଚୀନ ଐତିହ୍ୟର ମୂକସାକ୍ଷୀ ଏଇ କଟକ ମାଟିରେ ପ୍ରାୟ ଡଜନେଟିରୁ ଊର୍ଦ୍ଧ୍ୱ ଉଚ୍ଚ ବିଦ୍ୟାଳୟ ଅଛି । ପ୍ରତିବର୍ଷ ଅଗଣିତ ଛାତ୍ରଛାତ୍ରୀଙ୍କୁ ସୁଶିକ୍ଷିତ କରିବାରେ ଯେଉଁ ମହାନ ପ୍ରତିଷ୍ଠା ଲାଭ କରିଛନ୍ତି ତାର କାଣିଚାଏ ପ୍ରତିଦାନ କିଏ ବା ଦେଇ ପାରିବ ?

ସେହି ମହାମାୟ ଶିକ୍ଷାନୁଷ୍ଠାନମାନଙ୍କ ମଧ୍ୟରୁ 'ମୁସଲିମ୍ ସେମିନାରୀ' ବା 'ସମ୍ବିଦ ସେମିନାରୀ' ହେଉଛି କଟକ ସହରର ବହୁ ପ୍ରାଚୀନ ଶିକ୍ଷା ନିକେତନ ।

ଏହା ୧୯୧୩ ମସିହାରେ ପ୍ରତିଷ୍ଠିତ ହୋଇଥିଲା । ଏହା କଟକ ସହରରେ ଥିବା ମୁଖ୍ୟ ଉଚ୍ଚ ବିଦ୍ୟାଳୟମାନଙ୍କ ମଧ୍ୟରେ ପ୍ରାଚୀନ ଓ ସୁପରିଚିତ ।

ପ୍ରଥମେ ଏହାର ନାଁ ଥିଲା 'ମୁସଲିମ୍ ସେମିନାରୀ' । ପରବର୍ତ୍ତୀ କାଳରେ ପ୍ରତିଷ୍ଠାତା ମୌଲବୀ ମହମ୍ମଦ ସମ୍ବିଦଙ୍କ ନାମ ଅନୁସାରେ ଏହାକୁ ସମ୍ବିଦ ସେମିନାରୀ ଭାବେ ନାମିତ କରାଯାଇଥିଲା ।

ଓଡ଼ିଆ ଓ ଊର୍ଦ୍ଦୁ ଏଇ ଦ୍ୱିଭାଷାରେ ଶିକ୍ଷା ଦିଆଯାଉଥିବା ଏହି ଅନୁଷ୍ଠାନ ପ୍ରଥମେ ହିଁ କଟକରେ ଗଢ଼ି ଉଠିଥିଲା ।

ବ୍ରିଟିଶ ଅମଳରେ ଢେଙ୍କାନାଳ ଷ୍ଟେଟର ମୌଲବୀ ମହମ୍ମଦ ଅଥର ଯେ କି ଜଣେ ଦେଓ୍ୱାନ ଥିଲେ ଏବଂ ତାଙ୍କ ପୁଅ ମୌଲବୀ ମହମ୍ମଦ ସମ୍ବିଦ ନିଜର ଅକ୍ଳାନ୍ତ ଶ୍ରମ ଓ ତ୍ୟାଗର ପରାକାଷ୍ଠା ସ୍ୱରୂପ ଏତେ ବଡ଼ ଅନୁଷ୍ଠାନ ଗଢ଼ିବାରେ ସକ୍ଷମ ହୋଇଥିଲେ ।

ମୌଲବୀ ମହମ୍ମଦ ସମ୍ବିଦ କଟକର ଭିକ୍ଟୋରିଆ ହାଇସ୍କୁଲ (ଯାହା କି ଆଜି ଭକ୍ତମଧୁ ବିଦ୍ୟାପୀଠ ଭାବେ ନାମିତ)ରେ ଜଣେ ସହକାରୀ ଶିକ୍ଷକ ଭାବେ କାର୍ଯ୍ୟ କରୁଥିଲେ । ସେ ଜଣେ ଉଦାରଚେତା, ହୃଦୟବାନ ଶିକ୍ଷକ ଭାବେ ସବୁରି ପରିଚିତ

ଥିଲେ । କଟକ ସହରର ଅନେକ ଦରିଦ୍ର ଛାତ୍ରଛାତ୍ରୀ ଯେଉଁମାନେ କି ଅର୍ଥାଭାବରୁ ଅଜ୍ଞାନ ଅନ୍ଧକାର ମଧ୍ୟରେ ସାରାଜୀବନ ଦୁଃଖରେ ସଡ଼ି ମରୁଚନ୍ତି । ଏହା ଦେଖି ଦେଖି ସେ ଆତ୍ମବଳ ନେଇ ଦୃଢ଼ତାର ସହ ଚେଷ୍ଟାକଲେ କେମିତ ଏକ ଶିକ୍ଷାନୁଷ୍ଠାନଟିଏ ଆରମ୍ଭ କରିବେ ।

ତାଙ୍କ ଭିତରେ କଟକର ଅସଂଖ୍ୟ ଗରିବ ଛାତ୍ରଛାତ୍ରୀଙ୍କ ଲାଗି ଅକୁହା ଦୁଃଖ କୁହୁଳି ଉଠୁଥିଲା ।

ତେଣୁ ସେ ଭିକ୍ଟୋରିଆ ହାଇସ୍କୁଲରୁ ନଜର ଶୁଙ୍କରି ଛାଡ଼ିଦେଇ ସ୍କୁଲଟିଏ କରିବାପାଇଁ ଲାଗିପଡ଼ିଲେ ।

ଈଶ୍ୱର ସବୁବେଳେ ସତ୍‌କର୍ମ ପରାୟଣ ଓ ନିଷ୍ଠାପର ଉଦ୍ୟମୀ ଉପରେ ସଦୟ ଥାଆନ୍ତି ।

ସେ ଏହି ମହାନ ଉଦ୍ୟମ ପାଇଁ କେତେକ ଗୁରୁତ୍ୱପୂର୍ଣ୍ଣ ଲୋକମାନଙ୍କ ସହ ଆଲୋଚନା କରିବାରୁ କେତେକ ସଂସ୍କୃତ ସମ୍ପର୍ଣ୍ଣ ବ୍ୟକ୍ତି ତାଙ୍କ ହାତରେ ହାତ ମିଳେଇ ନୂଆ ଅନୁଷ୍ଠାନଟିଏ ଗଢ଼ିବାକୁ ପ୍ରେରଣା ଦେଇଥିଲେ । କଟକରେ ଆବଶ୍ୟକତା ଅନୁଯାୟୀ ଶିକ୍ଷାନୁଷ୍ଠାନର ଅଭାବ ମଧ୍ୟ ସେମାନେ ବେଶ୍ ବୁଝିପାରିଥିଲେ ।

ସେତେବେଳେ ଉର୍ଦ୍ଦୁ ଶିକ୍ଷାର ପ୍ରଚଳନ ପାଇଁ ମଧ୍ୟ କୌଣସି ସ୍କୁଲ ନଥିଲା । ଯେଉଁ ବିଶିଷ୍ଟ ବ୍ୟକ୍ତିମାନେ ମୌଲବୀ ମହମ୍ମଦ ସୟିଦଙ୍କର ଏହି ପବିତ୍ର ପ୍ରଚେଷ୍ଟାର ସଫଳତାରେ ସହଯୋଗ ଓ ଉତ୍ସାହ ଦେବାକୁ ଆଗେଇ ଆସିଥିଲେ ସେମାନେ ହେଲେ— (୧) ମୌଲବୀ କମିରୁଦ୍ଦିନ ଖାଁ, ଆଡ଼ଭୋକେଟ, (୨) ମୌଲବୀ ଆଲ୍ଲା ବକ୍ସ, (୩) ମୌଲବୀ ଆବ୍ଦୁସ ସାକୁର, (୪) ମୌଲବୀ ମହମ୍ମଦ ୟୁନୁସ୍ ଏବଂ ଅନ୍ୟମାନେ ।

ତାପରେ ସେମାନେ ଏକତ୍ରିତ ହୋଇ କଟକର କେତେକ ବିଶିଷ୍ଟ ନାଗରିକ ଓ ଧନୀମାନଙ୍କୁ ଏ ବିଷୟରେ ଅବଗତ ଓ ସହଯୋଗ ପାଇଁ ପ୍ରାର୍ଥନା କରିଥିଲେ ।

ମୌଲବୀ ହାକିମ ନୁର ମହମ୍ମଦ (ଚୁନୁ ମିଆଁ)ଙ୍କ ସହାୟତାରେ ସେମାନେ ଜଣେ ଧନୀ ବ୍ୟବସାୟୀ ଜନାବ କସମ୍ ଓ ରାଜୀଙ୍କୁ ତାଙ୍କର ଏହି ଉଦ୍ୟମ ଲାଗି ଅନ୍ତର୍ଭୁକ୍ତ କରି ତାଙ୍କଠାରୁ ସେ ସମୟରେ ପ୍ରଥମେ ସାତଶହ ଟଙ୍କା ସ୍ୱେଚ୍ଛାକୃତ ଦାନ ଗ୍ରହଣ କରିଥିଲେ ।

ଏହା ଏକ ବିରାଟ କାଳଜୟୀ ଅନୁଷ୍ଠାନ ପ୍ରତିଷ୍ଠା ନିମନ୍ତେ କୌଣସି ଭାବେ କମ୍ ଗୁରୁତ୍ୱପୂର୍ଣ୍ଣ ଆର୍ଥିକ ସହାୟତା ନୁହେଁ । ମୌଲବୀ ମହମ୍ମଦ ସୟିଦଙ୍କ ପ୍ରାଣ ବ୍ୟଥିତ ହୋଇ ଉଠିଥିଲା ।

କଭଳ ଘତେ ସେ ଶୁଭ ଉଦ୍‌ଘାଟନ କରିବେ ସେଥିପାଇଁ ନିର୍ବିଗ୍ନରେ ନିଜ ସ୍ତ୍ରୀଙ୍କର ଗହଣା ବଦଳରେ ଅର୍ଥ ସଂଗ୍ରହ କରି ୧୯୧୩ ମସିହା ଅଗଷ୍ଟ ୮ ତାରିଖ ଦିନ 'ମୁସଲମ୍ ସେମିନାରୀ' ଆରମ୍ଭ କଲେ ।

ଏହି ଅନୁଷ୍ଠାନଟି ଓଡ଼ିଆ ବଗିଚ୍ଚାରେ ଥିବା ସ୍ୱର୍ଗତ ଜ. ମି. ମୁସ୍ତିଙ୍କର ଏକ ଗ୍ରେଟ ବଙ୍ଗଲାରେ ଆରମ୍ଭ ହୋଇଥିଲା ।

ସ୍ଥାନ ସଂକୀର୍ଣ୍ଣ ହେବାରୁ ଖଟବନ୍ ସାହିରେ ଥିବା ଏକ ଭଡ଼ାଘରେ ପରବର୍ତ୍ତୀ କାଳରେ ସ୍କୁଲ କାର୍ଯ୍ୟ ଚାଲିଥିଲା । ସେତେବେଳେ ସ୍କୁଲର ପ୍ରଥମ ପ୍ରଧାନ ଶିକ୍ଷକ ଥିଲେ ସ୍ୱର୍ଗତ ଅକ୍ଷୟ କୁମାର ରାୟ ।

୧୯୧୪ ମସିହାରେ ବର୍ତ୍ତମାନ ସ୍କୁଲ ଚାଲୁଥିବା କୋଠାରେ ସ୍କୁଲ ଚାଲିଲା । ସେହି କୋଠାଟି ଥିଲା, ସିଦ୍ଦିକ୍ ହାଜି ହୁସେନଙ୍କର । ସେ ବର୍ଷକୁ ୯୦୦ ଟଙ୍କା ଭଡ଼ାରେ ସ୍କୁଲ କରିବାପାଇଁ ରାଜି ହୋଇଥିଲେ ।

ସ୍କୁଲର ମ୍ୟାନେଜିଂ କମିଟିରେ ପ୍ରଥମ ପ୍ରେସିଡେଣ୍ଟ ଥିଲେ—ମୌଲବୀ ଗୁଲାମ ମହମ୍ମଦ ସାହେବ ଜାଗିରଦାର ଏବଂ ସେକ୍ରେଟେରୀ ଥିଲେ—ମୌଲବୀ କମିରୁଦ୍ଦିନ ଖାଁ ଆଡ଼ଭୋକେଟ୍ ।

ସେହି ଦିନଠାରୁ ସ୍କୁଲ ସୁରୁଖୁରୁରେ ଅନେକ ଘାତ ପ୍ରତିଘାତ ମଧ୍ୟରେ ଚାଲିଥିଲା । ଏଥିରେ ନୈତିକ ଶିକ୍ଷା ଓ ଅସାମ୍ପ୍ରଦାୟିକ ଶିକ୍ଷା ସମ୍ବନ୍ଧି ସମ୍ପର୍କୀୟ ପାଠ ପ୍ରତି ଆକୃଷ୍ଟ ହୋଇ ସବୁ ସମ୍ପ୍ରଦାୟ ଛାତ୍ରଛାତ୍ରୀମାନେ ଯୋଗ ଦେଲେ । ଏଠାରେ ବିଶେଷ କରି ଦ୍ୱିଭାଷୀ ଯଥା ଓଡ଼ିଆ ଓ ଉର୍ଦ୍ଦୁ ଭାଷାରେ ଶିକ୍ଷା ଦିଆଯାଏ ।

ପ୍ରାୟତଃ ଗରିବ ଶ୍ରେଣୀୟ ଛାତ୍ରଛାତ୍ରୀମାନଙ୍କ ପାଇଁ 'ସୟଦ ସେମିନାରୀ' ଏକ ମାତ୍ର ବିଦ୍ୟା ନିକେତନ ଭାବେ ପରିଚିତ ।

ଧୀରେ ଧୀରେ ସ୍କୁଲର ଉପସ୍ଥାନ ବଢ଼ିବାରୁ ଅଭାବ ମଧ୍ୟ ଦେଖାଦେଲା । ତେଣୁ ୧୯୧୪ ମସିହାରେ ହାଇଦ୍ରାବାଦ ନିଜାମଙ୍କ ଅନୁକମ୍ପାରୁ ମାସିକ ପଚିଶ ଟଙ୍କା ଲେଖାଏଁ ସ୍କୁଲକୁ ଅନୁଦାନ ମିଳିଥିଲା । ସ୍କୁଲର ସମସ୍ତ ସୁପରିଚାଳନା ପାଇଁ ପ୍ରାୟତଃ ଘରର ସବୁ ମୂଲ୍ୟବାନ ପଦାର୍ଥ ସେ ବିନିଯୋଗ କରିସାରିଥିଲେ ।

ସେ ଖୁବ୍ ଚିନ୍ତିତ ଥିଲେ କେମିତି ସ୍କୁଲର ଡେକ୍ସ, ବେଞ୍ଚ କିଣାଗଲେ ପିଲାମାନେ ସୁବିଧାରେ ବସି ଶିକ୍ଷାପାଇବେ । ସେତେବେଳେ ଘରର ସବୁ ଆସବାବ ଖାଲି ଏବଂ ନିଜ ପାଖରେ ଅର୍ଥର ଘୋର ଅଭାବ । ଅକସ୍ମାତ ସେ ଲକ୍ଷ୍ୟକଲେ ତାଙ୍କ ଝିଅ ବେକରେ ସୁନା ଚେନ୍‌ଟିଏ ଶେଷ ସମ୍ବଳ ରୂପେ ରହିଛି ।

ତେଣୁ ସେ କାହାକୁ କିଛି ନ ଜଣାଇ ଚୁପ କରି ଝିଅକୁ ତାଙ୍କ ଅନ୍ୟଘରେ ତାଙ୍କୁ ବାହାନା କରି କହିଥିଲେ ସେ ମଇଳା ଚେନକୁ ସଫା କରି ଆଣିବେ । କିନ୍ତୁ ସେହି ତ୍ୟାଗୀ ପୁରୁଷ ଚେନ୍‌ଟିକୁ ବନ୍ଧକ ଦେଇ ତା ବଦଳରେ ସ୍କୁଲର ଆବଶ୍ୟକ ଫର୍ଣ୍ଣିଚର କିଣି ଆଣିଥିଲେ ।

ଏଭଳି ଉଦାହରଣ ଖୁବ୍ ବିରଳ । ତାପରେ ସେ ସ୍କୁଲର ଉନ୍ନତି ପାଇଁ ଦ୍ୱାର ଦ୍ୱାର ବୁଲି ଅର୍ଥସଂଗ୍ରହ କରିବୁଲିଲେ । ବର୍ଷା ଓ ଖରାରେ ବୁଲି ବୁଲି ସେ କାହିଁ କେନ୍ଦ୍ରାପଡ଼ା, କାହିଁ କେଉଁ ଦୂର ସ୍ଥାନକୁ ଦେହ ଦୁର୍ବଳତା ସତ୍ତ୍ୱେ ସ୍କୁଲ ପାଇଁ ଆତ୍ମ ବଳୀ ଦେବାକୁ ଆଗୁଆ ହୋଇ ପଡ଼ିଥିଲେ । ସେ ବୁଲି ବୁଲି କେନ୍ଦ୍ରାପଡ଼ା ପାଖାପାଖି ଏକ ଗଛତଳେ ରାସ୍ତାରେ ଅଚେତ ହୋଇ ପଡ଼ିଥିଲେ । ପାଖ ଗାଁର ଲୋକେ ତାଙ୍କୁ ଟେକି ନେଇଥିଲେ ଜମିଦାରଙ୍କ ଘରକୁ ।

ଜମିଦାର ତାଙ୍କର ଏହି ସାଧୁ ଉଦ୍ୟମ ପ୍ରତି ଶ୍ରଦ୍ଧାଳୁ ହୋଇ ତାଙ୍କୁ ମୋଟା ଅଙ୍କରେ ସାହାଯ୍ୟ କରିଥିଲେ ।

ତାପରେ ସେ ୧୯୧୭ ମସିହାରେ ସ୍କୁଲ ଲାଗି ଆର୍ଥିକ ସାହାଯ୍ୟ ପାଇଁ ବୁଲି ବୁଲି ରୋଗାକ୍ରାନ୍ତ ହୋଇ ମୃତ୍ୟୁବରଣ କରିଥିଲେ ।

୯୦୦ ଟଙ୍କା ସ୍କୁଲ ପାଇଁ ବାର୍ଷିକ ଭଡ଼ା ଦେବାକୁ ପଡ଼ୁଥିବାରୁ ୧୯୨୨ ମସିହାରେ ସ୍କୁଲର ମ୍ୟାନେଜିଂ କମିଟିର ପ୍ରେସିଡେଣ୍ଟ ଖାଁ ବାହାଦୁର ଅହମ୍ମଦ ବକ୍ସ ବିଲ୍‌ଡିଂ ଫଣ୍ଡ ଗଠନ କରିଥିଲେ । ସେତେବେଳର ଓଡ଼ିଶା ଡ଼ିଭିଜନର କମିଶନର ମିଃ ହବାକ୍ ବ୍ୟକ୍ତିଗତ ଭାବେ ପଚାଶଟଙ୍କା ଦାନ କରିଥିଲେ ।

ମ୍ୟାନେଜିଂ କମିଟିର ଦୁଇଜଣ ସଭ୍ୟ ମୌଲଭୀ ଏମ୍.ଏ. ଜଲିଲ୍, ଏମ୍.ଏଲ୍.ସି ଏବଂ ମୌଲଭୀ ଆବୁଲ ହାଫିଜ ସେକ୍ରେଟେରୀ ମାଡ୍ରାସର ନବାବ ମି. ଆବୁଲ ହକିମ ସାହେବଙ୍କୁ ଭେଟି ସ୍କୁଲର ଅର୍ଥିକ ସମସ୍ୟା ଉପସ୍ଥାପନ କରିଥିଲେ ।

୧୯୩୨ ମସିହାରେ ନବାବ ଏବଂ ସଇଫ ୟାକୁବ୍ ହସନ ଏମ୍. ଏଲ. ସିଙ୍କୁ ସ୍କୁଲ ପରିଦର୍ଶନ କରି ୧୨୦୮୦ ଟଙ୍କା ଦାନ କରିଥିଲେ । ଫଳତଃ ସେଇ ଅର୍ଥରେ ସ୍କୁଲ ଜମି ଓ ଘର ହେବା ସମ୍ଭବ ହୋଇ ପାରିଥିଲା । ସେତେବେଳର ଡ଼. ପି ଆଇ ମିଃ ଜି. ଇ. ଫାଉକସ୍ (ପାଟନା) କଟକ ପରିଦର୍ଶନରେ ଆସିଥିବାବେଳେ ସେକ୍ରେଟାରୀ ମଧ୍ୟ ସ୍କୁଲର ସମସ୍ୟା ଉପସ୍ଥାପନ କରିବାରୁ ସେ ୧୦,୦୦୦ ଟଙ୍କା ବିଲ୍‌ଡିଂ ଫଣ୍ଡ ପାଇଁ ଅନୁମୋଦନ କରିଥିଲେ ।

ଏହି ସ୍କୁଲ ଘରର ଭିତ୍ତିପ୍ରସ୍ତର ମାଡ୍ରାସର ନବାବ ସି. ଅବଦୁଲ ହକିମ ସାହେବଙ୍କ ଦ୍ୱାରା ସ୍ଥାପନ କରାଯାଇଥିଲା ଏବଂ ବର୍ତ୍ତମାନର ବିଲଡ଼ିଂ ୧୯୩୯ ମସିହାରେ ଶେଷ ହୋଇଥିଲା ।

୧୯୭୪ ମସିହାଠାରୁ ଏହା ସରକାରଙ୍କ ଅଧିନସ୍ଥ ସମ୍ପୂର୍ଣ୍ଣ ଅନୁଦାନ ବିଦ୍ୟାଳୟ । ଏହାର ଛାତ୍ର ସଂଖ୍ୟା ୭୦୦ ଏବଂ ୨୧ ଜଣ ଶିକ୍ଷୟିତ୍ରୀ ଓ ଶିକ୍ଷକ କାର୍ଯ୍ୟରତ । ଏହାର ବର୍ତ୍ତମାନର ପ୍ରଧାନଶିକ୍ଷକ କଟକର ବହୁ ପରିଚିତ ସୁଗୁହାର । ଯାହାଙ୍କ ନାଁ ହେଲା—ଏମ୍. ଏ. ଆଲମ୍ ।

ସର୍ବଧର୍ମ ସମନ୍ୱୟ ଭିତ୍ତିକ ଅସାମ୍ପ୍ରଦାୟିକ ଆଦର୍ଶ ବିଦ୍ୟାଳୟ ଭାବେ ଏଠାରେ ସବୁ ଧର୍ମର ଛାତ୍ରଛାତ୍ରୀ ଶିକ୍ଷକ ଓ ଶିକ୍ଷୟିତ୍ରୀ ଯୋଗ ଦିଅନ୍ତି । ହିନ୍ଦୁମାନଙ୍କର ଦେବଦେବୀ ପୂଜା ଏକାପରି ପାଳନ କରାଯାଏ । ମୁସଲମାନମାନଙ୍କର ପର୍ବ ମଧ୍ୟ ଉପଭୋଗ କରାଯାଇଥାଏ ।

କଟକର ମଧ୍ୟସ୍ଥଳରେ ଏହା ଏକ ଦ୍ୱିତଳ ସୁଦୃଶ୍ୟ ଏବଂ ବିଦ୍ୟାର୍ଥୀମାନଙ୍କ ପାଇଁ ଚମତ୍କାର ପରିବେଶ ଦୃଷ୍ଟେ ନିର୍ମିତ ହୋଇ ଏବେ ବି ସମ୍ପୃଦଙ୍କ କୀର୍ତ୍ତିଗାଏ ।



# ରେଭେନ୍‌ସା କଲେଜ

**ଶ୍ରୀ ପ୍ରସନ୍ନ ଦାଶ ଓ ଶ୍ରୀ ବୀର ସାହୁ**

କେବଳ ଓଡ଼ିଶାର ଭୌଗୋଳିକ ବା ଐତିହାସିକ ଇତିହାସ ନୁହେଁ, ଏହାର ସାଂସ୍କୃତିକ ଇତିହାସ ମଧ୍ୟ ଗତି କରିଛି ବହୁ ଉତ୍‌ଥାନ ପତନ ମଧ୍ୟରେ । ଏହାର ଭୌଗୋଳିକ ଚତୁଃସୀମା ଏବଂ ଐତିହାସିକ ଶାସନ ପଦ୍ଧତି ଯେପରି ବାରମ୍ବାର ଶତ୍ରୁମାନଙ୍କ ଦ୍ୱାରା ବିପର୍ଯ୍ୟସ୍ତ, ଆକ୍ରାନ୍ତ ଓ ଲୁଣ୍ଠିତ ସେହିପରି ସାଂସ୍କୃତିକ ଇତିହାସ ମଧ୍ୟ ବହୁ ଧର୍ମ, ଧର୍ମ ପ୍ରଚାରକ ତଥା ସମ୍ପ୍ରଦାୟମାନଙ୍କ ଦ୍ୱାରା ନଷ୍ଟଭ୍ରଷ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ, ତଥାପି ଏହାର ଶିକ୍ଷା, ସଂସ୍କୃତି ବଞ୍ଚିଛି ଏକ ନୂତନ ରୂପ ନେଇ । ଆଧୁନିକ ଯୁଗରେ ସେହି ଶିକ୍ଷା ସଂସ୍କୃତିର ପ୍ରାଣକେନ୍ଦ୍ର ହୋଇଛି କଟକରେ ଅବସ୍ଥାପିତ ରେଭେନ୍‌ସା କଲେଜ ।

ଏହି କଲେଜର ଶୁଭାରମ୍ଭ ଏକ ଶୁଭ ମୁହୂର୍ତ୍ତରେ ଘଟିଛି । ଏହି ରେଭେନ୍‌ସା କଲେଜକୁ ଆଧୁନିକ ଓଡ଼ିଶାର ଶିକ୍ଷା, ସଂସ୍କୃତି, ରାଜନୀତି ସବୁର ଭିତ୍ତିଭୂମି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆଧୁନିକ ଓଡ଼ିଶାର ପ୍ରତ୍ୟେକ ବୁଦ୍ଧିଜୀବୀ ତଥା ଜନସେବୀ, ଅଇନଜ୍ଞ, ଶିକ୍ଷାଦାତା, ଶିକ୍ଷାଗ୍ରହୀତା ଏବଂ ପ୍ରତ୍ୟେକ ସ୍ତରର ମାନ୍ୟଗଣ୍ୟ ବ୍ୟକ୍ତିଗଣ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ରେଭେନ୍‌ସା କଲେଜ ନିକଟରେ ଋଣୀ । ଅବଶ୍ୟ ଏହାର ଅତୀତ ଇତିହାସ ବେଶ୍ ରୋମାଞ୍ଚକର ଓ କୌତୁହଳପ୍ରଦ ।

ଏହି ଶିକ୍ଷାନୁଷ୍ଠାନର ଭିତ୍ତିଭୂମି ସୃଷ୍ଟି ହୁଏ ୧୮୪୨ରେ ଆରମ୍ଭ ହୋଇଥିବା କଟକ ହାଇସ୍କୁଲ ଠାରୁ । ୧୮୫୮ରେ ସର୍ବପ୍ରଥମେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା ଦେବାପାଇଁ ମାଟ୍ରିକ ପରୀକ୍ଷାର୍ଥୀ ସୁଯୋଗ ପାଆନ୍ତି । ୧୮୬୮ ମସିହାରେ ଓଡ଼ିଶାର ତତ୍‌କାଳୀନ କମିଶନର ଟି. ଇ. ରେଭେନ୍‌ସାଙ୍କ ପ୍ରଚେଷ୍ଟାରେ କଟକ ହାଇସ୍କୁଲ ଠାରେ ରେଭେନ୍‌ସା କଲେଜର ସୂତ୍ରପାତ ହୁଏ କେବଳ ଛଅଜଣ ଛାତ୍ରଙ୍କୁ ନେଇ । ରେଭେନ୍‌ସା କଲେଜ ପରେ କଟକ ହାଇସ୍କୁଲର ନାମାନ୍ତର ହୋଇ ରେଭେନ୍‌ସା କଲେଜିଏଟ୍ ସ୍କୁଲ ହେଲା ।

ନ'ଅଙ୍କ ଦୁର୍ଭିକ୍ଷର ପରବର୍ତ୍ତୀ କାଳ ୧୮୭୭ ମସିହାରେ ରେଭେନ୍‌ସା ସାହେବ ଓଡ଼ିଶାରୁ ବିଦାୟ ନିଅନ୍ତି । ତାଙ୍କପାଇଁ ବିଦାୟ ଉତ୍ସବ ଅନୁଷ୍ଠିତ ହୁଏ ଏବଂ ସେତେବେଳକାର ରାଜାରାଜୁଡ଼ାମାନେ ବିଦାୟ ଉତ୍ସବ ପାଇଁ କିଛି ପାଣ୍ଠି ସଂଗ୍ରହ କରିଥିଲେ । ଉଦାରମନା, ମହାମତି ରେଭେନ୍‌ସା ସାହେବ ସେ ପାଣ୍ଠିକୁ ନିଜ ଉଦ୍ଦେଶ୍ୟରେ ବ୍ୟୟ ନ କରି କଟକ ହାଇସ୍କୁଲରେ ଆରମ୍ଭ ହୋଇଥିବା ଏଫ୍. ଏ. (ପରବର୍ତ୍ତୀ ସମୟର ଆଇ. ଏ. ଶ୍ରେଣୀ) ଥିବା କଲେଜରେ ସ୍ନାତକ ଶ୍ରେଣୀ ନିମିତ୍ତ ସେହି ପାଣ୍ଠିକୁ ବିନିଯୋଗ କରିବାପାଇଁ ଇଚ୍ଛା ପ୍ରକାଶ କରିଥିଲେ । ୧୮୭୮ ମସିହାରେ ଏହି କଲେଜର ସୁପରିଚାଳନା ପାଇଁ ମୟୂରଭଞ୍ଜ ମହାରାଜ ୨୫,୦୦୦ ଟଙ୍କା ଏବଂ ଜନସାଧାରଣ ୨୦,୦୦୦ ଟଙ୍କା ସାହାଯ୍ୟ କରିଥିଲେ । କମିଶନର ରେଭେନ୍‌ସା ସାହେବଙ୍କ ଅନବଦ୍ୟ ଅବଦାନ ଏବଂ ମହନୀୟତା ପାଇଁ କଲେଜକୁ ତାଙ୍କ ନାମରେ ନାମିତ କରିବା ପାଇଁ ମୟୂରଭଞ୍ଜ ମହାରାଜା ହିଁ ପ୍ରସ୍ତାବ ଦେଇଥିଲେ ଯାହା ପରବର୍ତ୍ତୀ କାଳରେ ରେଭେନ୍‌ସା କଲେଜ ଭାବେ ସୁଖ୍ୟାତି ଅର୍ଜନ କଲା । କାଳକ୍ରମେ ରେଭେନ୍‌ସା କଲେଜ କାଠଯୋଡ଼ି କୂଳରୁ ସ୍ଥାନାନ୍ତର ହୋଇ ଗୁଡ଼ିଆଗଞ୍ଜ ନିକଟରେ ଥିବା ୮୭ ଏକର ପରିମିତ ଚତୁର୍ଦ୍ଦିଗ ପଡ଼ିଆରେ ନଭେମ୍ବର ୧୧ ତାରିଖ ୧୯୧୯ ମସିହାରେ ଭିତ୍ତି ପ୍ରସ୍ତର ସ୍ଥାପିତ ହେଲା । ତଦାନୀନ୍ତନ ବିହାର ଏବଂ ଓଡ଼ିଶାର ଲେଫ୍‌ଟେନାଣ୍ଟ ସାର୍ ଏଡ୍‌ୱାର୍ଡ଼ ଗେଟ୍‌ଙ୍କ ଦ୍ୱାରା ଏହି ଭିତ୍ତି ପ୍ରସ୍ତର ସ୍ଥାପିତ ହୋଇଥିଲା । ସେହି ଭିତ୍ତି ପ୍ରସ୍ତର ଉତ୍ସବରେ ଗେଟ୍ ସାହେବଙ୍କ ଭବିଷ୍ୟବାଣୀ ଥିଲା—ଏହି କଲେଜଟି ଦିନେ ଭବିଷ୍ୟତ ବିଶ୍ୱବିଦ୍ୟାଳୟର ମୂଳଦୁଆ ହେବ । ଯାହା ବାସ୍ତବିକ ସତ୍ୟରେ ପରିଣତ ହୋଇଥିଲା । ସମୟାନୁକ୍ରମେ ଏହି ଅଞ୍ଚଳକାରେ ଓଡ଼ିଶାର ପ୍ରଥମ ବିଶ୍ୱବିଦ୍ୟାଳୟ ଉତ୍କଳ ବିଶ୍ୱବିଦ୍ୟାଳୟ ଜନ୍ମ ନେଇଥିଲା ୨୭ ନଭେମ୍ବର ୧୯୪୩ ମସିହାରେ ଯାହାର ପ୍ରଥମ କୁଳପତି ଭାବେ କାର୍ଯ୍ୟଭାର ଗ୍ରହଣ କଲେ ରେଭେନ୍‌ସା କଲେଜର ପୂର୍ବତନ ଅଧ୍ୟକ୍ଷ କୃତବିଦ୍ୟ ବୈଜ୍ଞାନିକ ଡଃ ପ୍ରାଣକୃଷ୍ଣ ପରିଜା ।

ବହୁ ଉତ୍ଥାନ ପତନ ଦେଇ ବିବର୍ତ୍ତନର ପୃଷ୍ଠଦେଶରେ ପହଞ୍ଚି ଉଚ୍ଚତର ଗବେଷଣା, ଉନ୍ନତ ମାନର ଶିକ୍ଷାଦାନ ଓ ସର୍ବବୃହତ୍ ଶିକ୍ଷାନୁଷ୍ଠାନ ଭାବେ ଭାରତର ତିନୋଟି କଲେଜ ମଧ୍ୟରୁ ଅନ୍ୟତମ କଲେଜ ଭାବେ ୨୪ ଡ଼ିସେମ୍ବର ୧୯୭୮ ମସିହାରେ ସ୍ୱକୀୟ ସ୍ମାରକୀ ଡାକଟିକଟ (Commemorative Stamp) ପ୍ରକାଶ କରିବାର ଗୌରବ ଅର୍ଜନ କରିପାରିଛି ।

ରେଭେନ୍‌ସା କଲେଜରେ ୧୮୮୧ ସାଲରେ ଆଇନ ଶ୍ରେଣୀ (B.L) ଏବଂ ୧୮୯୭ ସାଲରେ ବିଜ୍ଞାନରେ ସ୍ନାତକ ଶ୍ରେଣୀ (B.Sc) ଖୋଲିଗଲା । ୧୯୦୮ ମସିହାରେ କଲିକତା ବିଶ୍ୱବିଦ୍ୟାଳୟର ପରିବର୍ତ୍ତିତ ନିୟମ ଯୋଗୁଁ ବି.ଏଲ୍ ଶ୍ରେଣୀ ବନ୍ଦ ହୋଇଗଲା ଏପରିକି କେତେକ ସ୍ନାତକୋତ୍ତର ଶ୍ରେଣୀ ପାଇଁ ଥିବା ସାମୟିକ ପାଠ ବ୍ୟବସ୍ଥାରେ ମଧ୍ୟ ପୂର୍ଣ୍ଣଚ୍ଛେଦ ପଡ଼ିଗଲା । ବି.ଏରେ ପଢ଼ା ହେଉଥିବା କେତେକ ବିଷୟକୁ

ମଧ୍ୟ ଅନ୍ତର କରଦିଆଗଲା । ୧୯୧୨ ରେ ବିହାର ଏବଂ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇଯିବା ପରବର୍ତ୍ତୀ କାଳରେ ୧୯୧୭ ସାଲରେ ରେଭେନ୍‌ସା କଲେଜ କଲିକତା ବିଶ୍ୱବିଦ୍ୟାଳୟରୁ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନକୁ ଚାଲି ଆସିଲା । ଏହା ସହ ଶିକ୍ଷା ପ୍ରସାରରେ କେତେକ ଉନ୍ନତିର ଲକ୍ଷଣ ପ୍ରକାଶ ପାଇଲା ଏବଂ ୧୯୨୦ ସାଲରେ ପୁନର୍ବାର ବି. ଏଲ ଶ୍ରେଣୀ ଆରମ୍ଭ ହେଲା । ୧୯୨୧ ଠାରୁ ସମସ୍ତ ଶ୍ରେଣୀ ସ୍ୱାଭାବିକ ଭାବେ ନୂତନ ଭବନଠାରେ ସ୍ଥାନିତ ହୋଇ ସାରିଥିଲା । ପଦାର୍ଥ ବିଜ୍ଞାନ, ରସାୟନ, ଉଦ୍‌ଭିଦ, ପ୍ରାଣୀବିଜ୍ଞାନ, ଭୂଗୋଳ ଏବଂ କଳା ବିଭାଗର ନିଜସ୍ୱ ଗୃହସହ ଓଡ଼ିଶାର ସର୍ବବୃହତ୍ ପାଠାଗାର କନିକା ଲାଇବ୍ରେରୀ କାର୍ଯ୍ୟକାରୀ ହେଲା । ରେଭେନ୍‌ସା କଲେଜର ସର୍ବବିଧ ଉନ୍ନତି ପାଇଁ ମୟୂରଭଞ୍ଜ ମହାରାଜା ଓଡ଼ିଆ ଜାତିର ନମସ୍ୟ । ରେଭେନ୍‌ସାର ଉନ୍ନତି ପାଇଁ ସୋନପୁର ମହାରାଜା ମହାରାଣୀ ପ୍ରଭାବତୀ ଦେବୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ଲକ୍ଷ ଏକସ୍ତରୀ ହଜାର ପାଞ୍ଚଶହ ଟଙ୍କା ଦାନ କରିଥିଲେ । ୧୯୪୬ ରେ ଓଡ଼ିଆ ଭାଷା, ଇତିହାସ, ଅର୍ଥନୀତିରେ, ୧୯୪୭ ସାଲରେ ଗଣିତ ଓ ରସାୟନ ଶାସ୍ତ୍ରରେ, ୧୯୫୯ ରେ ଉଦ୍‌ଭିଦ ବିଜ୍ଞାନ, ୧୯୫୧ ରେ ପଦାର୍ଥ ବିଜ୍ଞାନରେ ସ୍ନାତକୋତ୍ତର ଶ୍ରେଣୀରେ ଶିକ୍ଷା ପ୍ରଚଳନ ହେଲା । ପରବର୍ତ୍ତୀ କାଳରେ ୧୯୫୯ ରେ ଭୂତତ୍ତ୍ୱ ଓ ୧୯୬୦ ରେ ପ୍ରାଣୀବିଜ୍ଞାନରେ ମଧ୍ୟ ଅନୁରୂପ ବ୍ୟବସ୍ଥା ପ୍ରଚଳନ ହେଲା । ୧୯୬୨ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ବର୍ତ୍ତମାନର ବାଣୀବିହାର ପରିସର, ଭୁବନେଶ୍ୱରକୁ ଉଠିଯିବା ପ୍ରକ୍ରିୟା ସହ କେତେକ ବିଷୟରେ ଥିବା ସ୍ନାତକୋତ୍ତର ଶ୍ରେଣୀ ସେଠାକୁ ଉଠିଗଲା । ଜନସାଧାରଣଙ୍କର ତୀବ୍ର ପ୍ରତିକ୍ରିୟା ଓ ଚାପ ଫଳରେ ପୁନଶ୍ଚ ଇତିହାସ, ରାଜନୀତି ବିଜ୍ଞାନ, ପ୍ରାଣୀବିଜ୍ଞାନ ଆଦିରେ ସ୍ନାତକୋତ୍ତର ଶ୍ରେଣୀ ରେଭେନ୍‌ସା କଲେଜରେ ପ୍ରଚଳିତ ହେଲା । ଇତ୍ୟବସରରେ ଆଇନ ଶ୍ରେଣୀ ବିଶ୍ୱ-ବିଦ୍ୟାଳୟ ଅଧୀନସ୍ଥ କଲେଜ ଭାବେ ମଧୁସୂଦନ ଆଇନ କଲେଜର ସ୍ୱୀକୃତି ପାଇ ୧୯୬୩ ରେ ବର୍ତ୍ତମାନ କୋଠୀରେ ସ୍ଥାନିତ ହୁଏ ।

୧୯୫୭ ରେ ବାଣିଜ୍ୟ ବିଭାଗର ଆଇ. କମ୍, ୧୯୬୦ ରେ ବି. କମ୍ ଏବଂ ୧୯୬୮ ରେ ବି. କମ୍ ଅନର୍ସ ଶ୍ରେଣୀ ଖୋଲି ଶିକ୍ଷାଦାନର ବ୍ୟବସ୍ଥା ହୁଏ । ପ୍ରଥମତଃ ସୁରମ୍ୟ ପ୍ରାସାଦ ତୁଲ୍ୟ ରେଭେନ୍‌ସା କଲେଜ ୫୦୦-୬୦୦ ଛାତ୍ରଛାତ୍ରୀଙ୍କ ଶିକ୍ଷା ପାଇଁ ଉଦ୍ଦିଷ୍ଟ ଥିଲା । ବର୍ଦ୍ଧିଷ୍ଣୁ ଛାତ୍ରଛାତ୍ରୀଙ୍କ ସଂଖ୍ୟାକୁ ନେଇ କ୍ରମଶଃ ସରକାରୀ ଅନୁଦାନ, ସର୍ବସାଧାରଣ ବ୍ୟକ୍ତିବିଶେଷ ଏବଂ ପୂର୍ବତନ ରାଜା ମହାରାଜାଙ୍କ ଦାନକୁ ପାଥେୟ କରି ମନସ୍ତତ୍ତ୍ୱ, ରସାୟନ ଶାସ୍ତ୍ର, ଉଦ୍‌ଭିଦ ଓ ପ୍ରାଣୀବିଜ୍ଞାନ, ପଦାର୍ଥ ବିଜ୍ଞାନ ପାଇଁ ଉନ୍ନତ ମାନର ବିଜ୍ଞାନାଗାର ସହ ଆହୁରି ଅନେକ କୋଠାବାଡ଼ି ନିର୍ମାଣ କରାଯାଇଛି ।

ସ୍ୱର୍ଗତ ହରିରାମ ମୋଦୀଙ୍କ ପ୍ରଦତ୍ତ ଏକଲକ୍ଷ ଟଙ୍କା ଦାନ ଯୋଗୁଁ ୧୯୬୬ ସାଲରେ କମର୍ସ ବ୍ଲକ ସ୍ଥାପିତ ହେଲା ଯେଉଁଠାରେ ବର୍ତ୍ତମାନ ବାଣିଜ୍ୟ, ଇଂରାଜୀ ଏବଂ ଅର୍ଥନୀତିର ସ୍ନାତକୋତ୍ତର ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷାଦାନର ସୁବନ୍ଦୋବସ୍ତ ହୋଇପାରିଛି ।

୧୯୪୭ ଠାରୁ ରେଭେନ୍‌ସା କଲେଜରେ ସ୍ୱତନ୍ତ୍ର ଭାବେ ଗୋଟିଏ **Wireless training wing** କାର୍ଯ୍ୟକାରୀ ହୋଇ ଆସୁଅଛି । ସମଗ୍ର ଭାରତବର୍ଷରେ ଏହାର ଏକ ବିଶେଷତ୍ୱ ରହିଅଛି । ଭାରତରେ ଏତାଦୃଶ ତିନି-ଚାରିଗୋଟି ଅନୁଷ୍ଠାନ ମଧ୍ୟରୁ ଏହା ଗୋଟିଏ । ଏଠାରୁ ଉତ୍ତୀର୍ଣ୍ଣ ହୋଇ ଅନେକ ଶିକ୍ଷାର୍ଥୀ ଉଚ୍ଚ ବେତନରେ ବିଭିନ୍ନ ସ୍ଥାନରେ **Radio Officer** ଭାବେ ନିଯୁକ୍ତ ପାଇଥାନ୍ତି । ଭାରତୀୟ ପ୍ରଶାସନିକ ସେବା, ସିଭିଲ ସର୍ଭିସ ଏବଂ ଓଡ଼ିଶା ପ୍ରଶାସନିକ ପରୀକ୍ଷା ପ୍ରସ୍ତୁତି ପାଇଁ ପ୍ରାକ୍ ତାଲିମ କେନ୍ଦ୍ର ଏସ୍. ସି. ଏବଂ ଏସ୍. ଟି ଛାତ୍ରଙ୍କ ପାଇଁ ସ୍ଥାପିତ ହୋଇଅଛି । ବର୍ତ୍ତମାନ ଏଠାରେ ଅଧ୍ୟୟନରତ ଛାତ୍ରଛାତ୍ରୀଙ୍କ ସଂଖ୍ୟା ପାଞ୍ଚହଜାରରୁ ଊର୍ଦ୍ଧ୍ୱ ଏବଂ ଅଧ୍ୟାପକ ଓ ଅଧ୍ୟାପିକାଙ୍କ ସଂଖ୍ୟା ମଧ୍ୟ ତିନିଶହରୁ ବେଶି । ରେଭେନ୍‌ସା ମହାବିଦ୍ୟାଳୟର ଅନ୍ୟ ଏକ ବିଶେଷତ୍ୱ ଏହାର ସାନ୍ଧ୍ୟ କଲେଜ ଏବଂ ଇନ୍ଦିରା ଗାନ୍ଧି ମୁକ୍ତ ବିଶ୍ୱବିଦ୍ୟାଳୟର ଏକ ପ୍ରଧାନ ଶାଖା ମଧ୍ୟ ଏଠାରେ କାର୍ଯ୍ୟକାରୀ ହେଉଅଛି । ବିଭିନ୍ନ ବିଜ୍ଞାନ ଏବଂ କଳାରେ ଏମ୍. ଏସ୍. ସି ଏବଂ ଏମ୍. ଏ ବ୍ୟତୀତ ଇଂରାଜୀ, ଇତିହାସ, ଓଡ଼ିଆ ଭାଷା, ଅର୍ଥନୀତି, ଗଣିତ, ପଦାର୍ଥବିଦ୍ୟା, ରସାୟନଶାସ୍ତ୍ର ଏବଂ ଉଦ୍‌ଭିଦ ବିଜ୍ଞାନରେ ଏମ୍. ଫିଲ୍ ପାଠ୍ୟକ୍ରମର ବ୍ୟବସ୍ଥା ରହିଛି ।

ଓଡ଼ିଶାର ସର୍ବବୃହତ୍ ପାଠାଗାର କନିକା ଲାଇବ୍ରେରୀ ମଧ୍ୟ ରେଭେନ୍‌ସା କଲେଜର ଗର୍ବ ଏବଂ ଗୌରବ । ୧୯୨୧ ପୂର୍ବରୁ ଏହି ଲାଇବ୍ରେରୀ କଟକ କଚେରୀ ପାଖରେ ଗୋଟିଏ ଗୃହ ଭିତରେ ଥିଲା । ଦୁର୍ଭାଗ୍ୟବଶତଃ ଅଗ୍ନିଉତ୍ପାତ ଯୋଗୁଁ ସବୁ ବହି ନଷ୍ଟ ହୋଇ ଯାଇଥିଲା । ୧୯୨୨ ସାଲରେ କନିକା ମହାରାଜା ଆର୍. ଏନ୍. ଭଞ୍ଜଦେଓଙ୍କ ମହତ୍ତ୍ୱଦାନ ୫୫୦୦୦ ଟଙ୍କା ଯୋଗୁଁ ପୁଣି ପାଠାଗାରର ପୁନର୍ବିନ୍ୟାସ ହୋଇ ତାଙ୍କର ନାମାନୁସାରେ "କନିକା ପାଠାଗାର" ଭାବେ ନାମିତ ହେଲା । ୧୯୨୮ ମସିହାରେ ମୟୂରଭଞ୍ଜ ମହାରାଜା ଦାନ ସୂତ୍ରରେ ୨୦,୦୦୦ ଟଙ୍କା ଦେଇ କନିକା ଲାଇବ୍ରେରୀର ଉନ୍ନତି ସାଧନ କରନ୍ତି । ପରବର୍ତ୍ତୀକାଳରେ ପଦ୍ମଶ୍ରୀ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ୧୯୪୧ ମସିହାରେ ୧୬୮୦ ଖଣ୍ଡ ବହି ଓ ୧୯୬୧ରେ **British Council** ୧୦୧୭ ଖଣ୍ଡ ପାଠ୍ୟପୁସ୍ତକ ଏହି ଲାଇବ୍ରେରୀକୁ ପ୍ରଦାନ କରନ୍ତି । ବର୍ଦ୍ଧିଷ୍ଣୁ ଛାତ୍ରଛାତ୍ରୀ, ଅଧ୍ୟାପକ, ଅଧ୍ୟାପିକା ଓ କଲେଜର ଅନ୍ୟାନ୍ୟ କର୍ମଚାରୀଙ୍କ ପାଇଁ ୯୦୦୦ ବର୍ଗଫୁଟ ପରିମିତ କନିକା ଲାଇବ୍ରେରୀର ବ୍ୟବହାରୋପଯୋଗୀ ପ୍ରକୋଷ୍ଠ ସ୍ୱଳ୍ପ ହୋଇ ପଡ଼େ । ୧୯୬୮ ସାଲ ନଭେମ୍ବର ମାସରେ ଭାରତର ତାଦାନୀନ୍ତନ ଶିକ୍ଷାମନ୍ତ୍ରୀ ଡଃ ତ୍ରିଗୁଣା ସେନଙ୍କ ଦ୍ୱାରା କେନ୍ଦ୍ରୀୟ ପାଠାଗାର (**Central Library**) ର ଭିତ୍ତି ପ୍ରସ୍ତର ସ୍ଥାପନ ହୋଇ ୧୯୭୫ ସାଲ ଡ଼ିସେମ୍ବର ୬ ତାରିଖ ଠାରୁ କାର୍ଯ୍ୟକାରୀ ହୋଇ ଆସୁଅଛି । ଅତୀତର କନିକା ଲାଇବ୍ରେରୀ ଏହାର ବର୍ତ୍ତମାନ ଅଂଶବିଶେଷ ଯେଉଁଥିରେ ଅନେକ ଦୁଷ୍ପ୍ରାପ୍ୟ ପୁସ୍ତକ ଏବଂ ମାଗାଜିନ୍‌ମାନ ସଂରକ୍ଷିତ ଏବଂ **Reference Section** ଭାବେ ବ୍ୟବହୃତ । ବର୍ଷସାରା ଏହି କେନ୍ଦ୍ରୀୟ ପାଠାଗାର ଖୋଲା ରହି

ଜ୍ଞାନ ପିପାସୁମାନଙ୍କୁ ସ୍ୱାଗତ କରି ଜ୍ଞାନ ବିତରଣ କରିବାରେ ସହାୟକ ହୋଇପାରିଛି, ଯେଉଁଠାରେ ଲକ୍ଷାଧିକ ଗ୍ରନ୍ଥ ଯତ୍ନ ସହକାରେ ରଖାଯାଇଅଛି ।

ରେଭେନ୍‌ସା କଲେଜର ପୂର୍ବ ଏବଂ ପଶ୍ଚିମ ଛାତ୍ରାବାସ ଓଡ଼ିଶା ଏବଂ ଭାରତର ବହୁ ଜ୍ଞାନୀଜନଙ୍କୁ ନିଜ କୋଳରେ ସ୍ଥାନ ଦେଇ ଜ୍ଞାନଲାଭର ସୁଯୋଗ ତାଙ୍କୁ ଦେଇ ଥିବାରୁ ଗୌରବାନ୍ୱିତ । ଏଠାରେ ୪୫୦ ଅନ୍ତେବାସୀଙ୍କ ପାଇଁ ବ୍ୟବସ୍ଥା ଥିଲା । ପରବର୍ତ୍ତୀ କାଳରେ ୧୯୭୧ ସାଲରେ ବର୍ଦ୍ଧିତ ଭାବେ ନୂତନ ଛାତ୍ରାବାସରେ ୨୭୨ ଏବଂ ଛାତ୍ରୀନିବାସରେ ୨୫୦ ଜଣଙ୍କର ରହିବା ବ୍ୟବସ୍ଥା ହୁଏ । କଲେଜ ପରିସର ମଧ୍ୟରେ ଟି. ଆର୍. ଡବ୍ଲ୍ୟୁ ଛାତ୍ରାବାସ ୧୯୭୮ ସାଲରେ ୨୦୦ ଛାତ୍ରଙ୍କ ପାଇଁ ନିଉ ପି. ଜି. ହଷ୍ଟେଲ ନିର୍ମିତ । ଏତଦ୍‌ବ୍ୟତୀତ ମଙ୍ଗଳାବାଗଠାରେ କେନ୍ଦ୍ରୀୟ ଛାତ୍ରାବାସ । ଜୋବ୍ରା ରହେମାନ ଛକ ଠାରେ ଜଗନ୍ନାଥ ଛାତ୍ରାବାସ, ମୟୂରଭଞ୍ଜ କୋଠୀରେ ପିଜି ହଷ୍ଟେଲରେ ଅନେକ ଛାତ୍ରଙ୍କ ରହିବାର ବନ୍ଦୋବସ୍ତ ହୋଇପାରିଛି । ୧୯୯୨ରେ ନିର୍ମିତ ଆଉ ଏକ ନୂତନ ହଷ୍ଟେଲ କଲେଜ ପରିସର ମଧ୍ୟରେ ନିର୍ମିତ ହୋଇ ସାରିଛି । ଦୁଇଟି **N. C. C Block** ମଧ୍ୟ ଏହି ପରିସର ମଧ୍ୟରେ ଅବସ୍ଥିତ । ଅଧ୍ୟାପକ, ଅଧ୍ୟାପିକା ଏବଂ କଲେଜର ଅନ୍ୟ କର୍ମଚାରୀଙ୍କ ପାଇଁ ବାସଗୃହ ଯଥେଷ୍ଟ ନୁହେଁ ଯାହାର ବହୁଳତା ନିଶ୍ଚିତ ଭାବେ ଛାତ୍ରଛାତ୍ରୀଙ୍କ ପାଇଁ ସହାୟକ ହେବ । କଲେଜର **Outdoor** ଏବଂ **Indoor sports** ର ବ୍ୟବସ୍ଥା ଥିବା ସତ୍ତ୍ୱେ ପରିବର୍ତ୍ତିତ ପରିସ୍ଥିତିରେ ଏହାର ବ୍ୟାପକତା ଅପରିହାର୍ଯ୍ୟ ।

ବହୁ ଅଧ୍ୟାପକ, ଅଧ୍ୟାପିକା ବିଭିନ୍ନ ଗବେଷଣାରେ କର୍ମରତ ଏବଂ ରେଭେନ୍‌ସା କଲେଜର ଯଶ ଦେଶ ବିଦେଶରେ ପ୍ରତିଧ୍ୱନିତ ହୋଇଥାଏ । ଏଣୁ ରେଭେନ୍‌ସାକୁ ଅନେକେ କଲିକତାର ପ୍ରେସିଡ଼େନ୍‌ସି ଏବଂ ମାନ୍ଦ୍ରାଜର ଲୟଲା କଲେଜ ସହ ତୁଳନା କରିଥାନ୍ତି । ଅନେକେ ଏହାକୁ ବିଶ୍ୱବିଦ୍ୟାଳୟର ମାନ୍ୟତା ପ୍ରଦାନ କରିଥାନ୍ତି । ୧୯୮୯ ଠାରୁ ଏହା ସ୍ୱୟଂଶାସିତ କଲେଜରେ ପରିଣତ ହେବାର ଗୌରବ ଅର୍ଜନ କରି ସାରିଛି ।

ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତିର ମୂକସାକ୍ଷୀ ଏହି ରେଭେନ୍‌ସା କଲେଜର ସମ୍ମିଳନୀ କକ୍ଷ ଥିଲା ଓଡ଼ିଶା ବିଧାନସଭାର ସମ୍ମିଳନୀ କକ୍ଷ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟର ଉପାଧି ପ୍ରଦାନ ଉତ୍ସବ ଏହିଠାରେ ହିଁ ଅନୁଷ୍ଠିତ ହେଉଥିଲା । ପ୍ରାକ୍ ସ୍ୱାଧୀନତା କାଳର ରାଜନୈତିକ ଏବଂ ସାମାଜିକ କର୍ମସ୍ଥଳୀ ହିଁ ରେଭେନ୍‌ସା କଲେଜ । ଓଡ଼ିଶାର ଭାଗ୍ୟର ସ୍ୱରୂପ ଏହିଠାରେ ସାକାର ରୂପ ନେଇଥିଲା । ରେଭେନ୍‌ସାର ଇତିହାସ ହିଁ ଆଧୁନିକ ଓଡ଼ିଶାର ଇତିହାସ । ଏ ମାଟିର ବହୁ ବରପୁତ୍ର ଉତ୍କଳ ଗୌରବ ମଧୁସୂଦନ, ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପଣ୍ଡିତ ଲିଙ୍ଗରାଜ, ଆଚାର୍ଯ୍ୟ ହରିହର, ଭୁବନାନନ୍ଦ ଦାସ, ବିଶ୍ୱନାଥ ଦାସ, ଡଃ ହରେକୃଷ୍ଣ ମହତାବ, ସ୍ୱର୍ଗତ ନିତ୍ୟାନନ୍ଦ କାନୁନ୍‌ଗୋ, ସୁରେନ୍ଦ୍ରନାଥ ଦ୍ୱିବେଦୀ,

ରବି ରାୟ, ବିଜୁ ପଟ୍ଟନାୟକ, ମନମୋହନ ମିଶ୍ର, ନନ୍ଦିନୀ ଶତପଥୀଙ୍କ ପରି ରାଜନୈତିକ ଓ ସାମାଜିକ ନେତୃବୃନ୍ଦଙ୍କ ସୃଷ୍ଟି ଏହିଠାରୁ । ଡଃ ପ୍ରାଣକୃଷ୍ଣ ପରିଜାଙ୍କ ସଦୃଶ ବିଶ୍ୱବିଖ୍ୟାତ ବୈଜ୍ଞାନିକ, ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ସୁରେନ୍ଦ୍ର ନାଥ ମହାନ୍ତି, ମନୋଜ ଦାସ, ୰ ଗୋପୀନାଥ ମହାନ୍ତି, ସଚ୍ଚି ରାଉତରାୟ ଏବଂ ବହୁ ସାହିତ୍ୟ ସ୍ରଷ୍ଟା, ଗୁଣୀଜ୍ଞାନୀଜନଙ୍କର ବ୍ୟକ୍ତିତ୍ୱର ଜୀବନ୍ୟାସ ଏହିଠାରୁ ହିଁ ସମ୍ଭବ ହୋଇ ପାରିଥିଲା । ଆଚାର୍ଯ୍ୟ ଯୋଗେଶଚନ୍ଦ୍ର ରାୟ, ଡଃ ବଳଭଦ୍ର ପ୍ରସାଦ, ଡଃ ମହେନ୍ଦ୍ର ରାଉତ, ଡଃ ଗୋକୁଳାନନ୍ଦ ମହାପାତ୍ରଙ୍କ ସଦୃଶ ପ୍ରଥିତଯଶା ବୈଜ୍ଞାନିକଗଣ ମଧ୍ୟ ରେଭେନ୍ସାର ସୁଯୋଗ୍ୟ ଦାୟାଦ ।

ଏହି ମହାବିଦ୍ୟାଳୟର ଏକଦା ଅଧ୍ୟାପକ (୧୯୧୯-୨୩) କୃତବିଦ୍ ଐତିହାସିକ ସାର୍ ଯଦୁନାଥ ସରକାରଙ୍କ ଭାଷାରେ—"Ravenshaw, in deed, is all wisdom and happiness-the institution that combines a centurian's wisdom."



ନବଜାଗରଣର ବାର୍ତ୍ତାବହ :

# ରେଭେନ୍‌ସା କଲିଜିଏଟ୍ ସ୍କୁଲ

**ଶ୍ରୀ ନୀଳମାଧବ ବୋଷ**

ଊନବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଇଂରେଜମାନଙ୍କ ଶାସନାଧୀନ ହେଲାପରେ ଓଡ଼ିଶାରେ ପାଶ୍ଚାତ୍ୟ ଭାବଧାରା ଓ ଇଂରାଜୀ ଭାଷା ଶିକ୍ଷାର ପ୍ରସାର କ୍ଷେତ୍ରରେ କଟକର ରେଭେନ୍‌ସା କଲିଜିଏଟ୍ ସ୍କୁଲ ଏକ ଅତୁଳନୀୟ ଭୂମିକା ଗ୍ରହଣ କରିଥିଲା । ସମୟକ୍ରମେ ଏହି ନୂତନ ଭାବଧାରା ଛାତ୍ରମାନଙ୍କ ମନରୁ ଅନଗ୍ରସର ସଙ୍କୀର୍ଣ୍ଣ ଚିନ୍ତାଧାରା ଦୂର କରି ଏକ ଅଗ୍ରଗାମୀ ବୈଜ୍ଞାନିକ ମନୋଭାବ ସୃଷ୍ଟି କରିଥିଲା । ଏହି ନୂତନ ଭାବଧାରା ଛାତ୍ରମାନଙ୍କୁ ପାଶ୍ଚାତ୍ୟାଭିମୁଖୀ ଅନ୍ଧ ଅନୁକରଣପ୍ରିୟ ନ କରି ସେମାନଙ୍କୁ ସତ୍ୟର ସନ୍ଧାନ ଲାଗି ଅନୁପ୍ରାଣିତ କରିଥିଲା । ଫଳରେ ମୁକ୍ତମନର ଅଧିକାରୀ ହୋଇ ଏହି ବିଦ୍ୟାଳୟର ଛାତ୍ରମାନେ ଉତ୍ତର-ଜୀବନରେ ଆତ୍ମବିଶ୍ୱାସ ଅର୍ଜନ କରିଥିଲେ ଏବଂ ନିଜର ମୂଳାଧାରର ସନ୍ଧାନ ଲାଗି ଆଗ୍ରହୀ ହୋଇଥିଲେ । ଏହି ପୁରାତନ ଛାତ୍ରମାନେ ସୃଷ୍ଟିଧର୍ମୀ ପ୍ରୟାସରେ ମଗ୍ନ ରହି ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି, ମାତୃଭୂମିର ମୁକ୍ତି ଓ ସେବା ଏବଂ ଜ୍ଞାନ ବିଜ୍ଞାନର ବିକାଶରେ ନିଜକୁ ନିୟୋଜିତ କରିଥିଲେ ।

ଛାତ୍ରମାନଙ୍କୁ ମୁଖ୍ୟତଃ ଖ୍ରୀଷ୍ଟଧର୍ମ ଶିକ୍ଷା ଦେବା ଉଦ୍ଦେଶ୍ୟରେ ୧୮୨୨ ମସିହାର ମେ ମାସରେ ଖ୍ରୀଷ୍ଟଧର୍ମ ପ୍ରଚାରକ ରେଭରେଣ୍ଡ ଉଇଲିୟମ୍ ବାମ୍ପଟନ୍ସ କଟକଠାରେ 'ଇଂଲିଶ୍ ସ୍କୁଲ୍' ନାମରେ ଏକ ବେସରକାରୀ ବିଦ୍ୟାଳୟ ସ୍ଥାପନ କରିଥିଲେ । ଏହି ବିଦ୍ୟାଳୟଟି କ୍ରମ ବିକଶିତ ହୋଇ ୧୮୭୫ ମସିହାରେ 'ରେଭେନ୍‌ସା କଲିଜିଏଟ୍ ସ୍କୁଲ୍' ନାମ ଧାରଣ କରିଥିଲା ଏବଂ ଓଡ଼ିଶାର ନବଜାଗରଣର ଇତିହାସରେ ଅମ୍ଳାନ ପଦଚିହ୍ନ ସ୍ଥାପନ କରିବାରେ ସମର୍ଥ ହୋଇଥିଲା ।

'ଇଂଲିଶ୍ ସ୍କୁଲ୍' ସୁପରିଚାଳନା ଲାଗି ତଦାନୀନ୍ତନ ଇଂରେଜ ସରକାର ୧୮୪୧ ମସିହାରେ ଏହି ଅନୁଷ୍ଠାନକୁ ନିଜ ହାତକୁ ନେଇ ଥିଲେ । ପୂର୍ବରୁ ବ୍ୟାପ୍‌ଟିଷ୍ଟ ମିଶନ ମଧ୍ୟ ସରକାରଙ୍କୁ ଅନୁରୂପ ପ୍ରସ୍ତାବ ଦେଇଥିଲା । ସରକାରଙ୍କ ପ୍ରତ୍ୟକ୍ଷ

ଶାସନାଧୀନ ହେଲାପରେ ଏହି ବିଦ୍ୟାଳୟଟି 'କଟକ ସ୍କୁଲ୍' ନାମ ଗ୍ରହଣ କଲା । ପୁରାତନପନ୍ଥୀ ଲୋକଙ୍କ ଅସହଯୋଗ ସତ୍ତ୍ୱେ ଏହି ବିଦ୍ୟାଳୟ କ୍ରମୋନ୍ନତି ପଥରେ ଆଗେଇ ଚାଲିଲା । ସରକାରଙ୍କ ଦ୍ୱାରା ନିଯୁକ୍ତ ୧୧ ଜଣ ସଭ୍ୟ ବିଶିଷ୍ଟ ଏକ ସ୍ଥାନୀୟ ପରିଚାଳନା ସମିତି ବିଦ୍ୟାଳୟର ପରିଚାଳନା ଦାୟିତ୍ୱ ଗ୍ରହଣ କଲେ । ଜିଲ୍ଲା ମାଜିଷ୍ଟ୍ରେଟ୍ ଏହି ପରିଚାଳନା ସମିତିର ସଭାପତି ରହିଲେ । ବିଦ୍ୟାଳୟରେ ମାଇନର୍ ଶ୍ରେଣୀ ପର୍ଯ୍ୟନ୍ତ ଶିକ୍ଷା ଦିଆଯାଉଥିଲା । ଇଂରାଜୀ ସାହିତ୍ୟ, ଇଂରାଜୀ ବ୍ୟାକରଣ, ଦର୍ଶନ, ଇତିହାସ, ଭୂଗୋଳ, ଗଣିତ, ପ୍ରକୃତି ଇତିହାସ ଏବଂ ମାତୃଭାଷା ପାଠ୍ୟକ୍ରମର ଅନ୍ତର୍ଭୁକ୍ତ ହେଲା । ପାଠ୍ୟକ୍ରମଟି ଛାତ୍ରମାନଙ୍କ ପାଇଁ କଠିଣ ଥିଲା । ଛାତ୍ରମାନେ ବାଧ୍ୟ ହୋଇ ପାଠ୍ୟପୁସ୍ତକ କଣ୍ଠସ୍ଥ କରି ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲେ । ତା'ଛଡ଼ା ଦେଶର ପରମ୍ପରା, ସମାଜ ଓ ଇତିହାସ ସହିତ ପାଠ୍ୟପୁସ୍ତକ ଅନ୍ତର୍ଭୁକ୍ତ ବିଷୟଗୁଡ଼ିକର ମଧ୍ୟ କୌଣସି ସମ୍ପର୍କ ରହୁନଥିଲା । ୧୮୪୯-୫୦ ମସିହାରେ 'କଟକ ସ୍କୁଲ୍'ର ମୋଟ ଛାତ୍ର ସଂଖ୍ୟା ଥିଲା ୮୩ ଏବଂ ଏମାନଙ୍କ ମଧ୍ୟରେ ଅଧିକାଂଶ ଥିଲେ ଧନୀ ଜମିଦାର ଓ ସରକାରୀ କର୍ମଚାରୀଙ୍କ ପିଲା ।

୧୮୫୧ ମସିହାରେ 'କଟକ ସ୍କୁଲ୍' ହାଇସ୍କୁଲ ସ୍ତରକୁ ଉନ୍ନୀତ ହୋଇ 'କଟକ ଜିଲ୍ଲାସ୍କୁଲ୍' ନାମ ଗ୍ରହଣ କରିଥିଲା । ବିଦ୍ୟାଳୟର ନିଜସ୍ୱ ଘର ନଥିଲା । ଏକ ଜୀର୍ଣ୍ଣ ଭଡ଼ା ଘରେ ପାଠପଢ଼ା ହେଉଥିଲା । ଶ୍ରେଣୀ-ଗୃହଗୁଡ଼ିକ ଥିଲା ଅପ୍ରଶସ୍ତ ଓ ଅନ୍ଧାରୁଆ । ଫଳରେ ସ୍କୁଲର ମୂଲ୍ୟବାନ ଆସବାବପତ୍ର ଓ ଗ୍ରନ୍ଥାଗାର ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଅଫିସଗୃହକୁ ଅସ୍ଥାୟୀ ଭାବରେ ସ୍ଥାନାନ୍ତରିତ ହୋଇଥିଲା । ୧୮୫୫-୫୬ ମସିହାରେ ସ୍କୁଲର ମୋଟ ଛାତ୍ରସଂଖ୍ୟା ଥିଲା ୧୦୯ । ୧୮୬୫-୬୬ରେ ଏହି ସଂଖ୍ୟା ୧୭୪କୁ ବୃଦ୍ଧି ପାଇଥିଲା । ସ୍କୁଲର ଶିକ୍ଷାଦାନର ମାଧ୍ୟମ ଥିଲା ଇଂରାଜୀ । ପାଠ୍ୟକ୍ରମ ଅନ୍ତର୍ଭୁକ୍ତ ବିଷୟ ଥିଲା, ଇଂରାଜୀ, ସଂସ୍କୃତ, ଆରବୀ, ଫାର୍ସି, ଇତିହାସ, ଭୂଗୋଳ, ଗଣିତ ଏବଂ ମାତୃଭାଷା (ଓଡ଼ିଆ, ବଙ୍ଗଳା, ଉର୍ଦ୍ଦୁ) । ଏହି ସ୍କୁଲ କଲିକତା ବିଶ୍ୱ-ବିଦ୍ୟାଳୟର କର୍ତ୍ତୃତ୍ୱାଧୀନ ଥିଲା । ୧୮୫୯ ମସିହାରୁ ସ୍କୁଲର ଛାତ୍ରମାନେ ଏନ୍‌ଟ୍ରାନସ୍ ପରୀକ୍ଷା ଦେବାକୁ ଆରମ୍ଭ କରିଥିଲେ ।

ଓଡ଼ିଶା ସେତେବେଳେ ବଙ୍ଗ ପ୍ରଦେଶର ଅନ୍ତର୍ଭୁକ୍ତ ଥିଲା । ଓଡ଼ିଶା ଡିଭିଜନରେ 'କଟକ ଜିଲ୍ଲା ସ୍କୁଲ୍' ବ୍ୟତୀତ ପୁରୀ ଓ ବାଲେଶ୍ୱରଠାରେ ମଧ୍ୟ ଗୋଟିଏ ଗୋଟିଏ ଜିଲ୍ଲା ସ୍କୁଲ ସରକାରୀ ଉଦ୍ୟମରେ ସ୍ଥାପିତ ହୋଇଥିଲା । ଏହି ସ୍କୁଲମାନଙ୍କରୁ ଏନ୍‌ଟ୍ରାନସ୍ ପରୀକ୍ଷାରେ କୃତକାର୍ଯ୍ୟ ହେଉଥିବା ଛାତ୍ରମାନଙ୍କୁ ଉଚ୍ଚଶିକ୍ଷା ନିମନ୍ତେ କଲିକତା ସହରକୁ ଯିବାକୁ ପଡ଼ୁଥିଲା । ଓଡ଼ିଶାର ଛାତ୍ରମାନଙ୍କର ଏହି ଅସୁବିଧା ଦୂର କରିବା ଉଦ୍ଦେଶ୍ୟରେ ସରକାର ୧୮୬୭-୬୮ ଶିକ୍ଷାବର୍ଷରେ 'କଟକ ଜିଲ୍ଲା ସ୍କୁଲ୍' ସହିତ ଏକ ମହାବିଦ୍ୟା-ଳୟ ବିଭାଗ ଯୋଗ କଲେ ଏବଂ ପ୍ରଥମେ ୭ ଜଣ ଛାତ୍ରଙ୍କୁ ନେଇ ପ୍ରଥମ (କଳା) ଶ୍ରେଣୀରେ ଶିକ୍ଷାଦାନ କାର୍ଯ୍ୟ ଆରମ୍ଭ ହେଲା । ୧୮୭୭ ମସିହାରେ କଲିକତା ବିଶ୍ୱ-

ବିଦ୍ୟାଳୟ ଏହି ମହାବିଦ୍ୟାଳୟକୁ ଏକ ପ୍ରଥମ ଶ୍ରେଣୀର ମହାବିଦ୍ୟାଳୟ ରୂପେ ସ୍ୱୀକୃତି ପ୍ରଦାନ କଲା ।

୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ଯୋଗୁଁ 'କଟକ ଜିଲ୍ଲା ସ୍କୁଲ୍'ରେ ଛାତ୍ର ସଂଖ୍ୟା ହ୍ରାସ ପାଇଥିଲା । ଏହାସତ୍ତ୍ୱେ ସେହି ବର୍ଷ ଏନ୍‌ଟ୍ରାନସ୍ ପରୀକ୍ଷାର ଫଳ ଅତ୍ୟନ୍ତ ସନ୍ତୋଷଜନକ ହୋଇଥିଲା । ସ୍କୁଲର ଦୁଇଜଣ ଛାତ୍ର ଜୁନିୟର ବୃତ୍ତି ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲେ । ତେଣୁ ସରକାର ଖୁସି ହୋଇ ସ୍କୁଲର ଶିକ୍ଷକ-ମାନଙ୍କୁ ଆର୍ଥିକ ପୁରସ୍କାର ପ୍ରଦାନ କରିଥିଲେ । ୧୮୭୨ ମସିହାରେ ସ୍କୁଲର ପାଠ୍ୟ-କ୍ରମରେ ସର୍ଭେ ଏବଂ ମେନ୍‌ସୁରେସନ୍ ସ୍ଥାନ ପାଇଲା । ସଂସ୍କୃତ ଶିକ୍ଷାଦାନ କେବଳ ଉଚ୍ଚ ଶ୍ରେଣୀମାନଙ୍କରେ ସୀମାବଦ୍ଧ ରହିଲା ।

୧୮୭୫ ମସିହାରେ 'କଟକ ଜିଲ୍ଲା ସ୍କୁଲ୍'ର ନାମ ପରିବର୍ତ୍ତନ କରାଯାଇ ଓଡ଼ିଶା ଡିଭିଜନର କମିଶନର ଟି. ଇ. ରେଭେନ୍‌ସାଙ୍କ ନାମାନୁସାରେ 'ରେଭେନ୍‌ସା କଲିଜିଏଟ୍ ସ୍କୁଲ୍' ରଖାଗଲା । କ୍ରମଶଃ ସ୍କୁଲର ଛାତ୍ର ସଂଖ୍ୟା ବୃଦ୍ଧି ପାଇବାକୁ ଲାଗିଲା । ୧୮୮୬ ମସିହାରେ ସ୍କୁଲର ମୋଟ ଛାତ୍ରସଂଖ୍ୟା ଥିଲା ୩୨୩ । ସେହି ବର୍ଷ ବହିରାଗତ ଛାତ୍ରଙ୍କ ପାଇଁ ଏକ ଛାତ୍ରାବାସ ମଧ୍ୟ ନିର୍ମାଣ କରାଗଲା ।

ଉଭୟ ସ୍କୁଲ ଓ କଲେଜର ଉତ୍ତରୋତ୍ତର ବିକାଶ ନିମନ୍ତେ ଏହି ଦୁଇଗୋଟି ଶିକ୍ଷାନୁଷ୍ଠାନକୁ ପରସ୍ପର ଠାରୁ ଭିନ୍ନ କରିବା ଦରକାର ପଡ଼ିଲା । ତେଣୁ ୧୯୧୨ ମସିହାରେ ରେଭେନ୍‌ସା କଲିଜିଏଟ୍ ସ୍କୁଲକୁ ଅସ୍ଥାୟୀ ଭାବରେ କଟକରେ ଥିବା ବକ୍ସୀ ଭଗତଙ୍କ କୋଠାକୁ ଉଠାଇ ନିଆଗଲା । ପୁଣି ତିନି ବର୍ଷ ପରେ, ୧୯୧୫ ମସିହାରେ ଏହି ସ୍କୁଲକୁ ପୁରୁଣା ସିଭିଲ୍ କୋର୍ଟର କୋଠାକୁ ସ୍ଥାନାନ୍ତରିତ କରାଯାଇଥିଲା । ପରେ କଟକ ରେଲଷ୍ଟେସନ୍ ନିକଟରେ ରେଭେନ୍‌ସା, ପରେ ୧୯୨୧ ମସିହାରେ ରେଭେନ୍‌ସା କଲିଜିଏଟ୍ ସ୍କୁଲ ତାହାର ପୂର୍ବ ତଥା ବର୍ତ୍ତମାନର କୋଠାକୁ ସ୍ଥାୟୀ ଭାବରେ ଉଠି ଆସିଥିଲା । ୧୯୪୮ରୁ ୧୯୬୪ ପର୍ଯ୍ୟନ୍ତ ଏହି ସ୍କୁଲ ଉଚ୍ଚ ମାଧ୍ୟମିକ ସ୍କୁଲ ରୂପେ କାର୍ଯ୍ୟ କରିଥିଲା । ୧୯୬୫ ମସିହାରେ ଏହା ପୁଣି ମାଧ୍ୟମିକ ସ୍ତରକୁ ଫେରିଆସିଲା ।

ଏହାହିଁ ହେଲା ରେଭେନ୍‌ସା କଲିଜିଏଟ୍ ସ୍କୁଲର ସ୍ଥାପନ ଓ କ୍ରମବିକାଶର ଏକ ସଂକ୍ଷିପ୍ତ ବିବରଣୀ । କିନ୍ତୁ କେବଳ ଏହି ବିବରଣୀ ପାଠ କରି ଏହି ସ୍କୁଲ ଜ୍ଞାନ ବିଜ୍ଞାନର ବିକାଶ ଓ ଦେଶ ପ୍ରେମର ଅଭିବୃଦ୍ଧିରେ କି ଭୂମିକା ଗ୍ରହଣ କରିଥିଲା ସେ ସମ୍ବନ୍ଧରେ କିଛି ଜାଣି ହେବ ନାହିଁ । ସେଥିଲାଗି ପାଠକଙ୍କୁ ଏହି ସ୍କୁଲର ଅତୀତ ଦିନର ସ୍ୱନାମଧନ୍ୟ ଶିକ୍ଷକ ଏବଂ କୃତୀ ଛାତ୍ରଙ୍କ ନାମ ସହିତ ପରିଚିତ ହେବାକୁ ପଡ଼ିବ । ସେହି ସ୍ମରଣୀୟ ବ୍ୟକ୍ତିମାନେ ନିଜର ଜୀବନବ୍ୟାପୀ ସାଧନା ଦ୍ୱାରା କେବଳ ଯେ ନିଜ ବିଦ୍ୟାଳୟକୁ ଗୌରବମଣ୍ଡିତ କରିଛନ୍ତି ତାହା ନୁହେଁ; ସମଗ୍ର ଜନଜୀବନକୁ ମଧ୍ୟ ନିଜ କାର୍ଯ୍ୟଦ୍ୱାରା ଋଦ୍ଧିମନ୍ତ କରିଛନ୍ତି ।



# ଉତ୍କଳମଧୁ ବିଦ୍ୟାପୀଠ

**ଶ୍ରୀ ଆର୍ତ୍ତବନ୍ଧୁ ପ୍ରଧାନ**

ଶତାବ୍ଦୀ ଅତିକ୍ରାନ୍ତ ଉତ୍କଳମଧୁ ବିଦ୍ୟାପୀଠ (ଟାଉନ୍‌ଭିକ୍ଟୋରିଆ ହାଇସ୍କୁଲ) ୧୮୮୧ ମସିହା ଫେବ୍ରୁୟାରୀ ମାସ ଦୁଇ ତାରିଖରେ ସ୍ଥାପିତ ହୋଇଥିଲା । ପୁଣ୍ୟଶ୍ଳୋକ, ଋଷିପ୍ରାଣ, ଭକ୍ତକବି ମଧୁସୂଦନ ରାଓଙ୍କ ଦ୍ୱାରା ପ୍ରତିଷ୍ଠିତ ଏହି ବିଦ୍ୟାପୀଠ ଶିକ୍ଷାର ପ୍ରସାର ନିମନ୍ତେ ସମୟ ସ୍ରୋତରେ ବହୁ ଘାତ ପ୍ରତିଘାତ ସହ୍ୟ କରି ଆଜି ସାରା ଦେଶରେ ଏକ ସୁମହାନ ଶିକ୍ଷାନୁଷ୍ଠାନ ରୂପେ ପରିଗଣିତ ହୋଇପାରିଛି ।

ସେ ସମୟରେ ରାଜ୍ୟର ଅଗଣିତ ମେଧାବୀ ଗରିବ ଅର୍ଥାଭାବ ହେତୁ ଅଧ୍ୟୟନ ଆକାଂକ୍ଷାରୁ ବଞ୍ଚିତ ହେଉଥିଲେ । ବିଶେଷତଃ ଏକମାତ୍ର ସରକାରୀ ବିଦ୍ୟାଳୟ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ବହୁ ସଂଖ୍ୟକ ଗରିବ ସ୍ଥାନାଭାବରୁ ଅଧ୍ୟୟନ କରିପାରୁନଥିଲେ । ତେଣୁ ଏପରି ସମୟରେ ବିଦ୍ୟାଳୟର ଏକାନ୍ତ ଆବଶ୍ୟକତାକୁ ଉପଲବ୍ଧି କରି ଶିକ୍ଷାର ପ୍ରସାର ନିମନ୍ତେ ଶିକ୍ଷାପ୍ରେମୀ ମଧୁସୂଦନ ରାଓ ୧୮୮୧ ରେ ନିଜ ବାସଗୃହ ସଂଲଗ୍ନସ୍ଥ କୋଠରୀରେ 'ଟାଉନ୍ ଏମ୍. ଇ. ସ୍କୁଲ'ର ଶୁଭାରମ୍ଭ କରିଥିଲେ । ତତ୍କାଳୀନ ପୁରୀର ମାଜିଷ୍ଟ୍ରେଟ୍ ଓ ଶ୍ରୀମନ୍ଦିରର ପରିଚାଳକ ବ୍ରାହ୍ମଧର୍ମୀ କେଦାରନାଥ ଦତ୍ତ ଧର୍ମବୀର ମଧୁସୂଦନଙ୍କ ଆହ୍ୱାନରେ ଚାକିରିରୁ କିଛିକାଳ ନିବୃତ୍ତ ହୋଇ ଅବୈତନିକ ପ୍ରଧାନ ଶିକ୍ଷକ ରୂପେ ଏହି ଆଦର୍ଶ ଶିକ୍ଷାଳୟରେ ଯୋଗ ଦେଇଥିଲେ । ବିନା ସରକାରୀ ସାହାଯ୍ୟରେ ବହୁ ଶ୍ରମ ଓ କଷ୍ଟରେ ନାନା ସ୍ଥାନରୁ ଅର୍ଥ ସଂଗ୍ରହ କରି ଭକ୍ତକବି ଏହି ମଧ୍ୟ ଇଂରାଜୀ ସ୍କୁଲକୁ ୧୮୮୯ ରେ ହାଇସ୍କୁଲରେ ଉନ୍ନୀତ କରିବା ସହିତ ଏହାର ନାମ 'ଟାଉନ ହାଇ ଇଂଲିସ ସ୍କୁଲ' ରଖିଥିଲେ ଏବଂ ବ୍ରାହ୍ମଧର୍ମୀ ଶ୍ରୀ ବିଜୟଚନ୍ଦ୍ର ମଜୁମଦାର ହାଇସ୍କୁଲର ପ୍ରଥମ ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ । ସେ 'ଓଡ଼ିଆ ସାହିତ୍ୟ ଇତିହାସ'ର ପ୍ରଥମ ଲେଖକ ଭାବରେ ସୁପରିଚିତ । ତତ୍ପରେ ଏହି ବିଦ୍ୟାପୀଠ ଲାଲବାଗ୍ ଥାନା ନିକଟବର୍ତ୍ତୀ ଫାଦର୍ ବକ୍‌ସି ପ୍ରାସାଦକୁ ସ୍ଥାନାନ୍ତରିତ ହୋଇଥିଲା । ଏହାପରେ କଲିକତା ବିଶ୍ୱବିଦ୍ୟାଳୟ ଏହି ବିଦ୍ୟାପୀଠକୁ ଦୁଇବର୍ଷ ପାଇଁ ସ୍ୱୀକୃତି ପ୍ରଦାନ କରିଥିଲା । କିନ୍ତୁ ନିଜସ୍ୱ ଗୃହ ନ ଥିବାରୁ ତାହା ଦୁଇବର୍ଷ ପରେ ବନ୍ଦ ହୋଇ ଯାଇଥିଲା । ତେଣୁ ବିଜୟଚନ୍ଦ୍ର

ମଜୁମଦାର ପ୍ରଧାନ ଶିକ୍ଷକରୁ ପରିତ୍ୟାଗ କରି କଲିକତା ଚାଲିଯାଇଥିଲେ ଏବଂ ମାସିକ 'ଉତ୍କଳ ସାହିତ୍ୟ' ପତ୍ରିକାର ସମ୍ପାଦକ ବାଗ୍ମୀ ବିଶ୍ୱନାଥ କର ପ୍ରଧାନ ଶିକ୍ଷକ ରୂପେ ଯୋଗଦାନ କରିଥିଲେ । ସେତେବେଳେ ବିଦ୍ୟାପୀଠର ପ୍ରତିଷ୍ଠାତା ମଧୁସୂଦନ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ପ୍ରଥମ ଓଡ଼ିଆ ପ୍ରଧାନ ଶିକ୍ଷକ ରୂପେ ଯୋଗଦାନ କରିଥିଲେ ।

୧୮୯୮ ମସିହାରେ ବିଦ୍ୟାପୀଠର ଗୃହ ନିର୍ମାଣ ନିମନ୍ତେ କାଜିବଜାରରେ ଜମିକ୍ରୟ କରାଯାଇ ନିଜସ୍ୱ ଗୃହ ନିର୍ମିତ ହୋଇଥିଲା । ୧୯୦୧ ମସିହାରେ ବିଲାତେଶ୍ୱରୀ ମହାରାଣୀ ଭିକ୍ଟୋରିଆଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏହି ବିଦ୍ୟାପୀଠର ନାମ ପରିବର୍ତ୍ତିତ ହୋଇ 'କଟକ ଟାଉନ ଭିକ୍ଟୋରିଆ ହାଇସ୍କୁଲ' ନାମରେ ନାମିତ ହେଲା । ଏହି ହାଇସ୍କୁଲ ସେତେବେଳେ କଟକ ସହରର ତୃତୀୟ ଏବଂ ଓଡ଼ିଶାର ପଞ୍ଚମ ହାଇସ୍କୁଲ । ୧୯୬୭ ମସିହା ପର୍ଯ୍ୟନ୍ତ ଏହି ବିଦ୍ୟାପୀଠ କୌଣସି ସରକାରୀ ଅନୁଦାନ ଗ୍ରହଣ ନକରି ପରିଚାଳିତ ହୋଇ ଆସିଥିଲା ।

ଏହି ବିଦ୍ୟାପୀଠ ଓଡ଼ିଶାରେ ପ୍ରଥମେ ସହଶିକ୍ଷା ପ୍ରଚଳନ କରି ୧୮୯୨ ମସିହାରେ ପ୍ରଥମ ବାଳିକା ଉତ୍ତୀର୍ଣ୍ଣ କରାଇବାରେ ସାହାଯ୍ୟ କରିଥିଲା । ୧୯୦୩ ମସିହାରେ କବିବର ରାଧାନାଥ ରାୟଙ୍କ ସଭାପତିତ୍ୱରେ ଏହି ବିଦ୍ୟାପୀଠରେ 'ଉତ୍କଳ ସାହିତ୍ୟ ସମାଜ'ର ପ୍ରଥମ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ଏବଂ ସେହି ବର୍ଷ ବିଦ୍ୟାପୀଠର ମୁଖପତ୍ର 'ମଧୁବାଣୀ' ସେ ସମୟର ଶିକ୍ଷକ ପଲ୍ଲୀକବି ନନ୍ଦକିଶୋର ବଳଙ୍କ ସମ୍ପାଦନାରେ ପ୍ରକାଶିତ ହୋଇଥିଲା ।

୧୯୪୭ ମସିହାରେ ପ୍ରଧାନ ଶିକ୍ଷକ ଶ୍ରୀ ଜ୍ଞାନେନ୍ଦ୍ର କୁମାର ମୁଖାର୍ଜୀଙ୍କ ସମୟରେ ଭାରତର ଅମର ସନ୍ତାନ ନେତାଜୀ ସୁଭାଷଚନ୍ଦ୍ର ବୋଷଙ୍କ ପିତା ଜାନକୀନାଥ ବୋଷ ବିଦ୍ୟାପୀଠ ପରିଚାଳନା ସମିତିର ସଭାପତି ହୋଇଥିଲେ । ପ୍ରତିଷ୍ଠାତା ମଧୁସୂଦନ ରାଓଙ୍କ ମହାପ୍ରୟାଣ ପରେ ବିଦ୍ୟାପୀଠ 'ଭକ୍ତମଧୁ ବିଦ୍ୟାପୀଠ' ନାମରେ ନାମିତ ହୋଇଅଛି ।

ଶତାଧିକ ବର୍ଷରେ ଉପନୀତ ଭକ୍ତମଧୁ ବିଦ୍ୟାପୀଠ ଜନସାଧାରଣଙ୍କର ସହଯୋଗ ଲାଭ କରି ଏବେ ମଧ୍ୟ ଉଜ୍ଜ୍ୱଳ ଭବିଷ୍ୟତ ପଥରେ ଆଗେଇ ଚାଲିଛି ।



# ପ୍ୟାରୀମୋହନ ଏକାଡେ଼ମୀ

**ଶ୍ରୀ ନଗେନ୍ଦ୍ର କୁମାର ମିଶ୍ର**

ଆଜି ଆମ ଦେଶରେ ବିଦ୍ୟାଳୟର ଅଭାବ ନାହିଁ । କେତେକ ଏହାକୁ ବ୍ୟବସାୟରେ ପରିଣତ କରି ଦେଲେଣି । ଅନେକଙ୍କ ମତରେ ଏବେ ବିଦ୍ୟାଳୟ ପ୍ରତିଷ୍ଠା କରିବା ଏକ ଲାଭଜନକ ବ୍ୟବସାୟ । ମାତ୍ର ଯେଉଁ ସମୟରେ ପ୍ୟାରୀମୋହନ ଏକାଡେ଼ମୀ ପ୍ରତିଷ୍ଠା ହୋଇଥିଲା ସେ ସମୟରେ ବିଦ୍ୟାଳୟ ପ୍ରତିଷ୍ଠା ଅତ୍ୟନ୍ତ କଷ୍ଟ ସାଧ୍ୟ ଥିଲା ।

ପ୍ୟାରୀମୋହନଙ୍କ ଜନ୍ମ ଖ୍ରୀ. ୧୮୫୨ ଜୁଲାଇ ମାସରେ ଓ ମୃତ୍ୟୁ ୧୮୮୧ ମସିହା ଡିସେମ୍ବର ମାସରେ । ତାଙ୍କର ଜୀବଦ୍ଦଶା ମାତ୍ର ଅଣତିରିଶ ବର୍ଷ । ଏହି ୨୯ ବର୍ଷ ମଧ୍ୟରେ ସେ ଏଭଳି ଗୋଟିଏ ଜ୍ଞାନର ପ୍ରଦୀପ ଜାଳି ଦେଇଥିଲେ, ଯାହାକି ଏକଶତ କୋଡ଼ିଏ ବର୍ଷ ଅତିକ୍ରମ କରିଗଲାଣି । ବର୍ତ୍ତମାନ ଏହି ସ୍କୁଲର ଛାତ୍ର ସଂଖ୍ୟା ଏକହଜାରରୁ ଅଧିକ ଓ ଶିକ୍ଷକ ସଂଖ୍ୟା ପଞ୍ଚତିରିଶରୁ ଅଧିକ ।

୧୮୭୦ ମସିହାରେ ଅଠର ବର୍ଷ ବୟସରେ ସେ ଏଣ୍ଟ୍ରାନ୍ସ ପାସକଲେ । ୧୮୭୨ ମସିହାରେ କଲେଜରେ ପଢୁଥିବା ସମୟରେ 'ଉତ୍କଳ ପୁତ୍ର' ନାମରେ ଏକ ପତ୍ରିକା ପ୍ରକାଶନ କଲେ । ସେଥିରେ ବ୍ରିଟିଶ ସରକାରଙ୍କ ବିରୋଧରେ କେତେକ ଲେଖା ପ୍ରକାଶିତ ହୋଇଥିଲା । ତେଣୁ ତାଙ୍କୁ କଲେଜରୁ ବହିଷ୍କୃତ କରାଯାଇଥିଲା । କ୍ଷମା ପ୍ରାର୍ଥନା ମାଗିଥିଲେ ସେଠାରେ ପଢ଼ିବାକୁ ଅନୁମତି ଦିଆଯାଇଥାନ୍ତା ମାତ୍ର ପ୍ୟାରୀମୋହନ ତାହା କଲେନଥିଲେ । ତେଣୁ ସେ ବେସରକାରୀ ସ୍କୁଲ ପ୍ରତିଷ୍ଠା କରିବା ପାଇଁ ଦୃଢ଼ପ୍ରତିଜ୍ଞ ହୋଇଥିଲେ; ତାହାର ଫଳସ୍ୱରୂପ ୧୮୭୫ ମସିହାର ଏହି ଏକାଡେ଼ମୀ ।

ପ୍ୟାରୀମୋହନଙ୍କ ଜନ୍ମ ଯେଉଁ ସମୟରେ, ସେତେବେଳେ ଓଡ଼ିଶାରେ ଶିକ୍ଷାର ଘନ ଅନ୍ଧକାର । ୧୮୦୩ ରେ ଓଡ଼ିଶା ଇଂରେଜ ଅଧୀନସ୍ଥ ହେଲା । ଏହାର ପଚାଶ ବର୍ଷ ପୂର୍ବରୁ ବଙ୍ଗ, ବିହାର ପ୍ରଭୃତି ଅଞ୍ଚଳରେ ଶିକ୍ଷାର ପ୍ରସାର ହୋଇ ସାରିଥିଲା । ମାତ୍ର ଅର୍ଦ୍ଧଶତାବ୍ଦୀ ପରେ ଓଡ଼ିଶା ଶିକ୍ଷାଦାନରୁ ବଞ୍ଚିତ ହୋଇଥିଲା । ଏହା ପ୍ୟାରୀମୋହନଙ୍କ

ହୃଦୟକୁ ବ୍ୟଥିତ କରିଥିଲା । କିନ୍ତୁ ତାଙ୍କର ଆର୍ଥିକ ସ୍ୱଚ୍ଛଳତା ନଥିଲା । ତାଙ୍କର ବାପା ଜଣେ ମଧ୍ୟବିତ୍ତ ଓକିଲ ଥିଲେ । ଓଡ଼ିଶାରେ ଶିକ୍ଷାର ପ୍ରସାର ପାଇଁ ସେ ଚିନ୍ତିତ ଥିଲେ ।

୧୮୮୨ ମସିହା ବେଳକୁ ଓଡ଼ିଶାରେ ମାତ୍ର ଛଅଟି ହାଇସ୍କୁଲ ଥିଲା । ସେଥି-ମଧ୍ୟରୁ ତିନୋଟି ସରକାରୀ—ରେଭେନ୍‌ସା କଲେଜିଏଟ୍, ବାଲେଶ୍ୱର ଓ ପୁରୀ ଜିଲ୍ଲା ସ୍କୁଲ । କଟକ ଇଉ ସେପିଏନ୍ ସ୍କୁଲ ଓ ଲକ୍ଷ୍ମଣନାଥ ହାଇସ୍କୁଲ ଗ୍ରାଣ୍ଟ-ଇନ୍-ଏଡ୍ ସ୍କୁଲ ଥିଲା । ଏକ ମାତ୍ର ପ୍ରାଇଭେଟ୍ ସ୍କୁଲ କଟକ ଏକାଡେମୀ ଥିଲା । ପରେ ତାହା ପ୍ୟାରୀମୋହନ ଏକାଡେମୀ ହୋଇଅଛି । ପ୍ୟାରୀମୋହନଙ୍କୁ ଯେତେବେଳେ ପଚିଶ ବର୍ଷ ସେ ସ୍କୁଲଟିକୁ ସ୍ଥାପନ କରିଥିଲେ । ତାଙ୍କୁ ଗୋବିନ୍ଦ ରଥ ଓ ମଧୁସୂଦନ ରାଓ ସାହାଯ୍ୟ କରିଥିଲେ । ମାତ୍ର ମଧୁସୂଦନ ରାଓ ସରକାରୀ ଚାକିରିରେ ଥିବାରୁ ଶୁଭେଚ୍ଛା ବ୍ୟତୀତ ସକ୍ରିୟ ସାହାଯ୍ୟ କରିପାରୁ ନଥିଲେ । ପ୍ୟାରୀମୋହନ ଡମପଡ଼ା ରାଜାଙ୍କର ବିଶ୍ୱସ୍ତ କର୍ମଚାରୀ ହିସାବରେ ଯେଉଁ ଅର୍ଥ ଉପାର୍ଜ୍ଜନ କରୁଥିଲେ ତାକୁ ସ୍କୁଲ ପରି-ଚାଳନାରେ ବ୍ୟୟ କରୁଥିଲେ । ଏବେ ଏହା ବେସରକାରୀ ପୂର୍ଣ୍ଣ ସାହାଯ୍ୟପ୍ରାପ୍ତ ହାଇସ୍କୁଲ ।

ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଲାଲ-ବାଲ୍-ପାଲ୍‌ଙ୍କ ମଧ୍ୟରୁ ବିପିନ ଚନ୍ଦ୍ର ପାଲ ୧୮୭୯ ମସିହାରେ ପ୍ରଧାନ ଶିକ୍ଷକ ପଦ ଅଳଂକୃତ କରିଥିଲେ । ଏହା ଏକାଡେମୀର ଏକ ବିଳକ୍ଷଣ ଐତିହ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସ୍କୁଲଟି କ୍ରମେ ବଢ଼ି ଚାଲିଲା । ଗାଁ ଅଞ୍ଚଳରୁ ପିଲାମାନେ ଆସି ଏଠାରେ ପାଠ ପଢ଼ିଲେ ଓ କ୍ରମେ ତାହା ଏକ ସୁନାମଧନ୍ୟ ସ୍କୁଲ ହୋଇଗଲା । ପ୍ରଥମ ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ପ୍ରଧାନ ଶିକ୍ଷକ ସ୍ୱର୍ଗତ ବସନ୍ତ କୁମାର ଦାସ ଏହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥିଲେ । ବର୍ତ୍ତମାନର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ପ୍ରେମାନନ୍ଦ ରାୟ ମଧ୍ୟ ଜଣେ ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ ଶିକ୍ଷକ ।

ପ୍ୟାରୀମୋହନ ଏକାଡେମୀ ରହିଛି, ଏଥିରୁ କେତେ ଯେ କୃତୀ ଛାତ୍ର ଉଭୁରୁଛନ୍ତି ତାହାର କଳନା ନାହିଁ । ବିଶିଷ୍ଟ ଜନସେବୀ ସ୍ୱର୍ଗତ ଯଦୁମଣି ମଙ୍ଗରାଜ, ସାମ୍ବାଦିକ ବାଳକୃଷ୍ଣ କର, ସର୍ବୋଦୟ ନେତା ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ, ଅର୍ଥନୀତିଜ୍ଞ ଡଃ ସଦାଶିବ ମିଶ୍ର, ସୁପ୍ରିମ କୋର୍ଟର ପୂର୍ବତନ ପ୍ରଧାନ ବିଚାରପତି ତଥା ଆନ୍ତର୍ଜାତିକ କୋର୍ଟର ବିଚାରପତି ରଙ୍ଗନାଥ ମିଶ୍ର, ପ୍ରଶାସକ ରବୀନ୍ଦ୍ର ମୋହନ ସେନାପତି, ଶ୍ରୀ ଚରଣକାନ୍ତ ମିଶ୍ର, ଡାକ୍ତର ରଘୁନାଥ ସାହୁ ମଧ୍ୟ ଏହି ବିଦ୍ୟାଳୟର କୃତୀଛାତ୍ର ।

ପି. ଏମ୍. ଏକାଡେମୀ ତା'ର କୋଳରେ ସହସ୍ର ସହସ୍ର ଛାତ୍ରଙ୍କୁ ଧରି ଆସିଛନ୍ତି; କିନ୍ତୁ ତା ଭିତରୁ କେତେ ହୋଇଛନ୍ତି 'ମଣିଷ' ଓ 'ଅମଣିଷ' ତାହା ସେଇ ହିଁ

ଜାଣିଥିବ । ତଥାପି ମନରେ ଗର୍ବ ଆସେ ପି. ଏମ୍. ଏକାଡେମୀର ଗୁପ୍ତ ଗୌରବରେ ଏବଂ ପି. ଏମ. ଏକାଡେମୀ ଶିକ୍ଷକ ଓ କର୍ମଚାରୀ ଗର୍ବ କରନ୍ତି ଯେ ସେମାନେ ଏହି ମହତ ମନ୍ଦିରର ସେବା କରିବାର ସୁଯୋଗ ପାଇଛନ୍ତି । ଏହି ନିକେତନର ଗୋଟିଏ ଗୌରବମୟ ଐତିହ୍ୟ ଓ ପରମ୍ପରା ରହିଛି । ଏ ଅନୁଷ୍ଠାନର ପୃଷ୍ଠଭୂମିରେ କେତେ ତ୍ୟାଗ ଓ ଲୁହ ଲହୁ ଜମାଟ ବାନ୍ଧିଛି ।

ପି. ଏମ ଏକାଡେମୀ ଓଡ଼ିଶାର ପ୍ରଥମ ବେସରକାରୀ ବିଦ୍ୟାଳୟ ଓ ଏହା ମଧ୍ୟ ଶେଷ ସାହାଯ୍ୟପ୍ରାପ୍ତ ବେସରକାରୀ ବିଦ୍ୟାଳୟ ହୋଇ ରହିପାରେ, କିଏ ତା କହିବ ? କେବଳ କାଳ ହିଁ କହିବ । ବର୍ତ୍ତମାନ ବିଦ୍ୟାଳୟର ପୂର୍ବ ଗୌରବ ନ ଥିଲେ ମଧ୍ୟ ମୁଁ ଆଶାବାଦୀ ଯେ ପୂର୍ବ ଗୌରବ ଫେରି ଆସିବ ଏବଂ ଏହି ବିଦ୍ୟାଳୟର ପ୍ରତ୍ୟେକ ବିଦ୍ୟାର୍ଥୀ ପ୍ରକୃତ 'ମଣିଷ' ହେବେ ଏବଂ ଦେଶ, ଜାତି, ସମାଜ ଓ ବ୍ୟକ୍ତିର କଲ୍ୟାଣ ସାଧନରେ ବ୍ରତୀ ହେବେ ।



# ଉତ୍କଳ ପାଠକ ସଂସଦର ଅତୀତ ଓ ବର୍ତ୍ତମାନ

**ଶ୍ରୀ ବିଜୟ ଶଙ୍କର ପାତ୍ର**

ଊନବିଂଶ ଶତାବ୍ଦୀର ପୂର୍ବରୁ ଓଡ଼ିଶାରେ ମୁଦ୍ରଣ ଯନ୍ତ୍ର ସ୍ଥାପିତ ହୋଇ ନ ଥିଲା କିମ୍ବା ଛାପାଖାନାରେ ବ୍ୟବହୃତ ସ୍ୱତନ୍ତ୍ର ଢଙ୍ଗର ଅକ୍ଷର ସୃଷ୍ଟି ହୋଇନଥିଲା । ସେ ସମୟରେ ବିଦ୍ୟାଶିକ୍ଷା କରିବାର ମାଧ୍ୟମ ଥିଲା କରଣୀ ଅକ୍ଷର । ଏହା ଏକ ସ୍ୱତନ୍ତ୍ର ଶୈଳୀର ଅକ୍ଷର । ତେଲଗୁ ଏବଂ ବଙ୍ଗଳା ଅକ୍ଷର ସହିତ ଏହାର ସାଦୃଶ୍ୟ ଥିଲା । କିନ୍ତୁ ୧୮୦୩ ମସିହାରେ ଓଡ଼ିଶାକୁ ଇଂରେଜମାନଙ୍କର ଆଗମନ ପରେ ଉତ୍କଳୀୟ ସଭ୍ୟତା ଧୀରେ ଧୀରେ ଭିନ୍ନ ରୂପ ନେଲା । ଆଧୁନିକତାର ସ୍ୱତନ୍ତ୍ର ଛାପ ପ୍ରତ୍ୟେକ କ୍ଷେତ୍ରରେ ଅନୁଭୂତ ହେଲା । ଅର୍ଥାତ୍ ଓଡ଼ିଶାର ପାରମ୍ପରିକ କଳା, ସ୍ଥାପତ୍ୟ, ନୃତ୍ୟ, ଗୀତ ସହିତ ପୁସ୍ତକ ପ୍ରକାଶନ, ପତ୍ରପତ୍ରିକାର ପ୍ରକାଶନ, ରାସ୍ତାଘାଟର ସଂଯୋଗ, ଜଳସେଚନ, ଜଳଯୋଗାଣ, ବିଦ୍ୟୁତକରଣ, ଓଡ଼ିଶାର ବିକାଶକୁ କ୍ରମେ ତ୍ୱରାନ୍ୱିତ କରିବାକୁ ଲାଗିଲା । ଭାରତର ସ୍ୱାଧୀନତା ପୂର୍ବରୁ ଏହି ବିକାଶ କ୍ଷିପ୍ରତର ହୋଇପାରୁ ନଥିଲା, କାରଣ ଏ ଦେଶ ଓ ରାଜ୍ୟର ଲୋକମାନେ ବ୍ୟସ୍ତ ଥିଲେ ସ୍ୱାଧୀନତା ସଂଗ୍ରାମରେ । ତଥାପି ମୁଦ୍ରଣ ଯନ୍ତ୍ରର ବ୍ୟବହାର ପରେପରେ ଓଡ଼ିଶାର ଗାଁ ଗହଳରେ ଏବଂ ସହରାଞ୍ଚଳରେ ଏକ ଭିନ୍ନ ରୂପ ଦେଖା ଦେଲା । ଲୋକେ ତାଳପତ୍ର ପୋଥିର ପୁରାଣ ଏବଂ ଅନ୍ୟାନ୍ୟ ସାରସ୍ୱତ ସମ୍ଭାରକୁ ଛପାଇ ପ୍ରକାଶ କରିବାରେ ଲାଗିଗଲେ ।

ଏହି ସମୟରେ ବହୁଳାଂଶରେ ପ୍ରକାଶିତ ହେଲା ପୁରାଣ, ମହାଭାରତ, ରାମାୟଣ, ଓଷାବ୍ରତ କଥା ଇତ୍ୟାଦି । ଏଗୁଡ଼ିକ ଗ୍ରାମାଞ୍ଚଳର ଅଭିଜାତ ଗୃହମାନଙ୍କରେ ଗୃହ ଦେହରେ ଶିକାଭିଳି ଏକ ଜିନିଷ ଦେହରେ ସ୍ଥାନ ଲାଭକଲା । ଫଳରେ ପୂର୍ବରୁ ଏହି ଅଭିଜାତ ଗୃହଗୁଡ଼ିକରେ ଯେଉଁ ଠାକୁରଗୋସେଇଁ ବା ଭାଗବତ ଗୋସାଇଁ ସ୍ଥାନ ପାଇଥିଲେ ତାହା କ୍ରମଶଃ ଅପସାରିତ ହୋଇଗଲେ । ଠିକ୍ ଏହାର ପରେ ପରେ ଶିକ୍ଷାର ନବୀକରଣ ଫଳରେ ଆବଶ୍ୟକ ପଡ଼ିଲା ପାଠ୍ୟପୁସ୍ତକ ।

ଆଧୁନିକ ଶିକ୍ଷାରେ ଶିକ୍ଷିତ ହୋଇଥିବା ବ୍ୟକ୍ତିମାନେ ଏହି ପାଠ୍ୟପୁସ୍ତକ ପ୍ରଣୟନ କଲେ ।

କିନ୍ତୁ ଆଧୁନିକ ଶିକ୍ଷାର ପ୍ରବର୍ତ୍ତନ ଫଳରେ ଏକ ଭିନ୍ନ ସମସ୍ୟା ମଧ୍ୟ ଦେଖା ଦେଲା । ତରୁଣ ଗ୍ରନ୍ଥଗ୍ରାହୀମାନେ ଆଉ ପୋଥିପାଠ କଲେନାହିଁ କିମ୍ବା ଭାଗବତ ଟୁଙ୍ଗୀମାନଙ୍କରେ ପୁରାଣ ପାଠ କରିବା ଲାଗି ପୋଥି ବ୍ୟବହୃତ ହେଲନାହିଁ । ଗ୍ରାମାଞ୍ଚଳର ଭାଗବତ ଟୁଙ୍ଗୀଗୁଡ଼ିକ ଭାଙ୍ଗିଗଲା । ପୁରାଣ ପଣ୍ଡାମାନେ ତାଙ୍କ ଜୀବିକାର୍ଜନ କରିବା ହେଲା କଷ୍ଟକର । ଯେଉଁ ଭାଗବତ ଟୁଙ୍ଗୀ ଏକ ଦେବପୀଠ, ବିଶ୍ୱବିଦ୍ୟାଳୟ ଓ ସାମାଜିକ ବ୍ୟବସ୍ଥାର ଏକ ପେଣ୍ଠସ୍ଥଳୀ ଭାବେ କାର୍ଯ୍ୟ କରୁଥିଲା ତା'ର ଆବଶ୍ୟକତା କମି କମି ଆସିଲା ଏବଂ ମୁଦ୍ରଣ ଯନ୍ତ୍ରର ପ୍ରଚଳନ ଫଳରେ ଯେଉଁ କେତେକ ପୁସ୍ତକ ବା ପାଠ୍ୟପୁସ୍ତକ ପ୍ରକାଶିତ ହେଲା ତାହା ସିଧାସଳଖ ଚାଲିଗଲା ପାଠକଙ୍କ ହାତକୁ । କିନ୍ତୁ ଭାରତୀୟ ତଥା ଉତ୍କଳୀୟ ନାଗରିକଙ୍କ ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନଥିଲା ଓ ବିଦେଶୀ ଶାସନର ଅଙ୍କୁଶାଘାତରେ ଭାରତୀୟ ଅର୍ଥନୀତି ଦୋହଲି ଯାଇଥିଲା । ଏପରି ଅବସ୍ଥାରେ ସହର ଓ ଗ୍ରାମାଞ୍ଚଳରେ ଆବଶ୍ୟକ ପଡ଼ିଲା ପାଠାଗାର—ଯାହା ସମୂହଙ୍କ କଲ୍ୟାଣ ପାଇଁ କାର୍ଯ୍ୟ କରିପାରିବ ।

ଏଣେ ମୁଦ୍ରଣ ଯନ୍ତ୍ରର କ୍ରମବିକାଶ ଫଳରେ ପାଶ୍ଚାତ୍ୟ ସଭ୍ୟତାର ଅନୁକରଣରେ ଓଡ଼ିଶା ତଥା ଭାରତରେ ବିଭିନ୍ନ ବିଷୟ ଉପରେ ପୁସ୍ତକ ଆତ୍ମପ୍ରକାଶ କଲା । ଯଥା—କାବ୍ୟ, କବିତା, ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ନାଟକ, ସମାଲୋଚନା, ଜୀବନୀ ପୁସ୍ତକ, ବିଜ୍ଞାନ ପୁସ୍ତକ, ବୈଷୟିକ ଜ୍ଞାନ ସମ୍ବଳିତ ପୁସ୍ତକ ଏବଂ ଅନ୍ୟାନ୍ୟ । ଏହି ପୁସ୍ତକଗୁଡ଼ିକ ସଭ୍ୟତାର ବିକାଶକୁ ତ୍ୱରାନ୍ୱିତ କଲା ଏବଂ ଆଧୁନିକ ଶିକ୍ଷାର ପ୍ରସାର ଦିଗରେ ସହଯୋଗ କଲା । ତେଣୁ ଜନସାଧାରଣ ତଥା ପାଠକଙ୍କୁ ଏହି ପୁସ୍ତକ ଯୋଗାଇ ଦେବା ପାଇଁ ଆବଶ୍ୟକ ହେଲେ ଏକ ପ୍ରକାଶକ ଗୋଷ୍ଠୀ । ଏମାନେ ପୁସ୍ତକ ପ୍ରସାରକୁ ବ୍ୟବସାୟ ଭାବେ ଗ୍ରହଣ କରି ଜୀବିକାର୍ଜନ କଲେ । ସମୟ କ୍ରମେ ପ୍ରକାଶକମାନେ ପାଠ୍ୟପୁସ୍ତକ ପ୍ରକାଶନ କରିବା ଦ୍ୱାରା ତାହା ଏକ ଲାଭଜନକ ବ୍ୟବସାୟରେ ପରିଣତ ହୋଇଉଠିଲା । ଅନ୍ୟ ପକ୍ଷରେ ଗଳ୍ପ, ଉପନ୍ୟାସ, ପତ୍ରପତ୍ରିକା ତଥା ସମ୍ବାଦପତ୍ର ପ୍ରକାଶିତ ହେବା ଫଳରେ ଏକ ସ୍ୱତନ୍ତ୍ର ପାଠକ ଗୋଷ୍ଠୀ ସୃଷ୍ଟି ହେଲେ । ମୁଖ୍ୟତଃ ବିଂଶ ଶତାବ୍ଦୀରେ ପୁସ୍ତକ ଗଣମାଧ୍ୟମରେ ଏକ ଅଙ୍ଗ ରୂପେ ସମାଜର କଲ୍ୟାଣ କରିବା ପାଇଁ ଆଗେଇ ଆସିଲା ।

ଏହି ପୁସ୍ତକ ପାଠ କରିବା ଦ୍ୱାରା ଏକ ଅଭିଜାତ ଏବଂ ଶିକ୍ଷିତ ଗୋଷ୍ଠୀ ସମାଜରେ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ ହୋଇ ସମ୍ମାନଜନକ ଆସନରେ ଆସୀନ ହେଲେ । ସେ ପାଠକଙ୍କ ମଧ୍ୟରେ ମଧ୍ୟ ସ୍ତର ଭେଦ ରହିଲା । ଯଥା—ପାଠ୍ୟପୁସ୍ତକର ପାଠକ, ପୁରାଣ ପାଠକ ଏବଂ ଅନ୍ୟାନ୍ୟ ପୁସ୍ତକର ପାଠକ । ଶେଷୋକ୍ତ ଅନ୍ୟାନ୍ୟ

ପୁସ୍ତକର ପାଠକମାନେ ବିଭିନ୍ନ ଶ୍ରେଣୀରେ ମଧ୍ୟ ବିଭକ୍ତ ହୋଇଗଲେ । ଯଥା—ଉଚ୍ଚାଙ୍ଗ ପୁସ୍ତକର ପାଠକ ଏବଂ ଲଘୁ ପୁସ୍ତକର ପାଠକ ।

ମୋଟାମୋଟି ସମଗ୍ର ପୃଥିବୀରେ ଅନୁଭୂତ ହେଲ ଯେ ସଭ୍ୟତାର ବିକାଶ ଓ ଦେଶର ଉନ୍ନତି ପାଇଁ ଅଧିକ ସଂଖ୍ୟାରେ ପୁସ୍ତକ ପ୍ରକାଶନ ଓ ପାଠକଙ୍କ ସଂଖ୍ୟା ବୃଦ୍ଧି ଏକାନ୍ତ ଆବଶ୍ୟକ । କିନ୍ତୁ ଦୁଃଖର କଥା ହେଲ ଯେ ଚଳଚିତ୍ର ପ୍ରଭୃତି କେତେକ ଗଣମାଧ୍ୟମ ପାଠକଙ୍କୁ ପଠନ କ୍ଷେତ୍ରରୁ ନିବୃତ୍ତ କରିବା ପାଇଁ ଚେଷ୍ଟାକଲ । ତେଣୁ ଅଧିକ ସଂଖ୍ୟାରେ ଆଉ ପୁସ୍ତକ ପ୍ରସାର ଲଭ କଲନାହିଁ କିମ୍ବା ପାଠକମାନେ ଅଭ୍ୟାସ କରି ପୁସ୍ତକ ପାଠକଲେ ନାହିଁ । ପେଟର ଖାଦ୍ୟପରି ପୁସ୍ତକ ଯେ ମାନସିକ ଖାଦ୍ୟ ଯୋଗାଇବ ଏହା ଅନେକେ ଅନୁଭବ କରିପାରିଲେ ନାହିଁ । ଏପରି ଏକ ଜଟିଳ ସମୟରେ ଏଇ ମାତ୍ର ୧୯୭୦ ମସିହାରେ ଜାତିସଙ୍ଘ ପକ୍ଷରୁ ଆନ୍ତର୍ଜାତୀୟ ପୁସ୍ତକ ବର୍ଷ ପାଳନ ପାଇଁ ସ୍ଥିର କରାଗଲ । ଏହାର ଲକ୍ଷ୍ୟ ରହିଲ ପୁସ୍ତକ ପ୍ରସାର ଏବଂ ପୁସ୍ତକ ପ୍ରକାଶନକୁ ତ୍ୱରାନ୍ୱିତ କରିବା । ଏଥିପାଇଁ ପାଠାଗାର ପ୍ରତିଷ୍ଠା ଓ ପୁସ୍ତକ ପ୍ରଦର୍ଶନୀର ବ୍ୟବସ୍ଥା ମଧ୍ୟ କରାଗଲ । ସେହି ଆହ୍ୱାନର ଉତ୍ତର ଦେଇ ଆନ୍ତର୍ଜାତୀୟ ପୁସ୍ତକ ବର୍ଷ ଅବସରରେ ଓଡ଼ିଶାରେ ଜନ୍ମନେଲ "ଉତ୍କଳ ପାଠକ ସଂସଦ" ।

ଏହି ସଂସଦର ଲକ୍ଷ୍ୟ କେବଳ ପୁସ୍ତକ ପ୍ରସାରରେ ସୀମିତ ରହିଲ ନାହିଁ । ଏହାର ପ୍ରାଥମିକ ଉଦ୍ଦେଶ୍ୟ ରହିଲ ପୁସ୍ତକ ପ୍ରସାର, ସାଂସ୍କୃତିକ ଜାଗରଣ, ଓଡ଼ିଆ ସାହିତ୍ୟର ବିକାଶ ସାଧନ ଓ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ପ୍ରଦାନ । ସେ ସମୟରେ ଯେଉଁମାନେ ଏହି ସଂସଦର କର୍ମୀ ଭାବେ ଯୋଗ ଦେଇଥିଲେ ସେମାନଙ୍କ ଭିତରେ ଥିଲେ ସର୍ବଶ୍ରୀ ଡଃ ସଦାଶିବ ମିଶ୍ର, ଡଃ ବ୍ରଜମୋହନ ମହାନ୍ତି, ସୁଭାଷ ଚନ୍ଦ୍ର ମହାନ୍ତି, ଡଃ ଦାମୋଦର ରାଉତ, ଭିକାରୀ ଚରଣ ମିଶ୍ର, ଗୋବର୍ଦ୍ଧନ ମହାନ୍ତି, ସୁଜାତା ମହାନ୍ତି, ମହେଶ୍ୱର ନାୟକ, ଗଦାଧର ଦତ୍ତ, କାହ୍ନୁ ଚରଣ ମହାନ୍ତି, ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ, କୃଷ୍ଣ ଚରଣ ବେହେରା, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଜଷ୍ଟିସ ହରିହର ମହାପାତ୍ର, କାଳନ୍ଦୀ ଚରଣ ପାଣିଗ୍ରାହୀ, ସ୍ନେହ ମହାପାତ୍ର, ନମିତା ମହାନ୍ତି, ବିହାସ ରାୟ ଏବଂ ବୀଣାପାଣି ମହାନ୍ତି ପ୍ରମୁଖ ।

ପରେ ପରେ ଏମାନଙ୍କ ସହିତ ଯୋଗ ଦେଲେ ସର୍ବଶ୍ରୀ ପରମେଶ୍ୱର ତ୍ରିପାଠୀ, ଶ୍ରୀଭନାରାୟଣ ସ୍ୱାଇଁ, ନବୀନ କିଶୋର ପଟ୍ଟନାୟକ, ଚନ୍ଦ୍ରଶେଖର ପ୍ରଧାନ, ବରଦା ପ୍ରସନ୍ନ ପଟ୍ଟନାୟକ, ମହେଶ୍ୱର ମୂଳିଆ, ଗୋକୁଳାନନ୍ଦ ଦାସ, ଗୋବିନ୍ଦ ଚରଣ ପାତ୍ର, ରାଧାଶ୍ୟାମ ମହାନ୍ତି ଏବଂ କନକ ମଞ୍ଜରୀ ମହାନ୍ତି ପ୍ରଭୃତି ।

ଏହା ପରେ ଡଃ ସୂର୍ଯ୍ୟନାରାୟଣ ଦାଶ, ଡଃ ବିଶ୍ୱାନନ୍ଦ ମହାନ୍ତି, ଶ୍ରୀମତୀ ବୀଣାଦେବୀ, ନନ୍ଦିଆ ବିହାରୀ ମହାନ୍ତି, କାକଲି ପାଲ୍, ଉର୍ବଶୀ ଯୋଷୀ, ବିବୁଧ କୁମାର ମହାନ୍ତି, ପଠାଣି ପଟ୍ଟନାୟକ, ବସନ୍ତ କୁମାର ମହାନ୍ତି, ବସନ୍ତ କୁମାର ସାହୁ, ପ୍ରସନ୍ନ କୁମାର ଦାଶ, ତପନ ମିତ୍ର, ଅର୍ଜ୍ଜୁନ ଦାଶ, ବୀରକିଶୋର ସାହୁ, ଡଃ ବୀଣାପାଣି

ସିଂହ, ଡଃ ବୈଷ୍ଣବ ଚରଣ ସାମଲ, ଡଃ ରତ୍ନାକର ଚଇନି, ଦୁଃଖୀଶ୍ୟାମ ମହାପାତ୍ର, ପ୍ରଫୁଲ୍ଲ ପଟ୍ଟନାୟକ, କୃଷ୍ଣଚନ୍ଦ୍ର ମହାପାତ୍ର, ଧ୍ରୁବ ଚରଣ ସାହୁ, ହରିହର ବାହିନୀପତି, ଦେବଦତ୍ତ ସାମନ୍ତସିଂହାର, ଜଗନ୍ନାଥ ପଟ୍ଟନାୟକ, ସୂର୍ଯ୍ୟମଣି ଖୁଣ୍ଟିଆ, କାଳିଶାର ଚନ୍ଦ୍ର ସାହୁ, ଶୁକଦେବ ସାହୁ, ଡଃ ଶୈଳେଶ୍ୱର ନନ୍ଦ, ଡଃ ଗୀର୍ଥାନନ୍ଦ ମିଶ୍ର, ନାରାୟଣ ମହାପାତ୍ର, ଜୟକୃଷ୍ଣ ମହାନ୍ତି, ଅରୁଣ କୁମାର ପଣ୍ଡା, ଧନକୃଷ୍ଣ ମହାନ୍ତି, କମଳାକାନ୍ତ ମହାନ୍ତି, ଅପୂର୍ବ ରଞ୍ଜନ ରାୟ, ସୁବ୍ରତ ପ୍ରିୟବ୍ରତ ମହାନ୍ତି, ଡଃ ପ୍ରହ୍ଲାଦ ଚରଣ ମହାନ୍ତି, ଚନ୍ଦ୍ରମଣି ପଣ୍ଡା, ଡଃ ଗୁରୁପ୍ରସାଦ ମହାନ୍ତି, ପୃଥ୍ୱୀରାଜ ପଟ୍ଟନାୟକ, ଡଃ ହରିହର କାନୁନ୍‌ଗୋ, ପଙ୍କଜ ସାହୁ, ନରହରି ଉପାଧ୍ୟାୟ, ସତ୍ୟବ୍ରତ ରାୟ, ହରିଶଙ୍କର ବଡ଼ପଣ୍ଡା, ପ୍ରମିଳା ନାୟକ, ନିର୍ମଳ ଚନ୍ଦ୍ର ପତ୍ରୀ, ଶଙ୍କର୍ଷଣ ମଙ୍ଗରାଜ, ଡଃ କୁଞ୍ଜବିହାରୀ ଦାଶ, ବିଜୟାନନ୍ଦ ସିଂ, ରାମକୃଷ୍ଣ ପତି (ଗୁରୁଣ), ଡଃ ପ୍ରଭାତ କୁମାର ମିଶ୍ର, ଶ୍ରୀମତୀ ଅପର୍ଣ୍ଣା ମିଶ୍ର, ଗଙ୍ଗାଧର ମହାରଣା, ଚିତ୍ତରଞ୍ଜନ କର, ଭଗବାନ ଜୟସିଂ, ସ୍ୱର୍ଣ୍ଣଲତା ସିଂହସାମନ୍ତ, କାଞ୍ଚନାରାୟଣ ମହାନ୍ତି, ଡଃ ଶ୍ରୀଚରଣ ଦାସ, ଦିଗମ୍ବର ଦାସ, ଚଣ୍ଡୀଚରଣ ରାଉତରାୟ, ବିଚିତ୍ରାନନ୍ଦ କାନୁନ୍‌ଗୋ, ଦୁର୍ଗାଚରଣ ଷଡ଼ଙ୍ଗୀ, ଚକ୍ରଧର ଦାସ, ଉଦୟନାରାୟଣ ପାଢ଼ୀ, ଅମିତା ବେହେରା, ବରଦାକାନ୍ତ ମହାନ୍ତି, ସଞ୍ଜିତ୍ କୁମାର ପଟ୍ଟନାୟକ, କୁଳମଣି ଜେନା, ଘନଶ୍ୟାମ ପାଣି ଓ ପ୍ରମୋଦ କିଶୋର ପଣ୍ଡା ପ୍ରମୁଖ ଯୋଗଦେଇ ସଂସଦର କାର୍ଯ୍ୟକ୍ରମକୁ ସଫଳ କରିବାରେ ସାର୍ଥକ ଭୂମିକା ଗ୍ରହଣ କରିଛନ୍ତି ।

ଏହି ସଦସ୍ୟ ବା କର୍ମୀମାନଙ୍କର ସହଯୋଗ କଥା ଚିନ୍ତା କଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ଏମାନେ ନିଜର ପରିଚୟ ଦିଅନ୍ତି କର୍ମୀ ଭାବେ । କେଉଁଠି କୁହାଯାଏ— କିଛି ଶ୍ରମ କରିପାରିବ ? ତେବେ ପାଠକ ସଂସଦର ସଭ୍ୟ ହେବା ସମ୍ଭବପର । ସେଇଥିପାଇଁ ଜଣକର କାର୍ଯ୍ୟ ଦୁଇ ତିନିବର୍ଷ ଦେଖିବାପରେ ତାଙ୍କୁ ସଭ୍ୟ ଭାବରେ ଗ୍ରହଣ କରାଯାଏ । ଏବେ ସେହି ସଭ୍ୟ ବା କର୍ମୀମାନଙ୍କର ସଂଖ୍ୟା କମି କମି ଆସୁଛି । ଅବସର ଗ୍ରହଣ କରିବା ପରେ କେତେଜଣ ଗାଁକୁ ଫେରି ଯାଇଛନ୍ତି ପୁଣି ନୂଆ କର୍ମୀ ଯୋଗ ଦେଉଛନ୍ତି ଅନୁଷ୍ଠାନରେ । ଏହି କର୍ମୀମାନଙ୍କର ନିଷ୍ଠା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ।

ଉଦାହରଣ ସ୍ୱରୂପ ସଂସଦ ପକ୍ଷରୁ ପ୍ରତ୍ୟେକ ବର୍ଷ କଟକ ବାହାରେ କୌଣସି ସାହିତ୍ୟ ଅନୁଷ୍ଠାନ ଆନୁକୂଲ୍ୟରେ ଦୁଇ ଦିନ ଧରି ଉଦ୍‌ଘାଟନ ଉତ୍ସବ ପାଳିତ ହୁଏ । ଓଡ଼ିଶାର ବିଭିନ୍ନ ସ୍ଥାନରୁ ଆଗତ ଶହ ଶହ ସାହିତ୍ୟିକ ଏହି ଉତ୍ସବରେ ଯୋଗ ଦିଅନ୍ତି । ଅଧିକ ସଂଖ୍ୟକ ସାହିତ୍ୟିକ କଟକ ଓ ଭୁବନେଶ୍ୱରରୁ ଯାତ୍ରା କରୁଥିବା ହେତୁ ସାରସ୍ୱତ ପୀଠ ଶ୍ରୀରାମଚନ୍ଦ୍ର ଭବନ ନିକଟରୁ ଯାତ୍ରା ଆରମ୍ଭ ହୁଏ ଉତ୍ସବ ସ୍ଥାନକୁ । ପୂର୍ବଦିନରୁ କେତେଜଣ କର୍ମୀ ଠିକ୍ ସକାଳ ୭ ଘଣ୍ଟା ସମୟରୁ ୨।୩ ଖଣ୍ଡ ଗାଡ଼ିରେ ଯାତ୍ରା କରିଥାଆନ୍ତି ସେହି ସ୍ଥାନକୁ । ସେମାନେ 'ପୁସ୍ତକ ପ୍ରଦର୍ଶନୀ ଓ

ବୈଷୟିକ ପ୍ରଦର୍ଶନୀର ଆୟୋଜନ କରନ୍ତି । ନିଜ ହାତରେ ଟେବୁଲ ଚେୟାର ସଜେଇ, ମଞ୍ଚ ପ୍ରସ୍ତୁତ କରି ଗୃହକୁ ଆଣନ୍ତି । ସ୍କୁଲ କଲେଜ ପିଲାମାନଙ୍କୁ ଏକତ୍ରିତ କରି ବିଭିନ୍ନ ପ୍ରତିଯୋଗିତାର ଆୟୋଜନ କରନ୍ତି ।

କେବଳ ସେତିକି ନୁହେଁ, ସେହି ପ୍ରତ୍ୟେକ ଦିନ ସାଂସ୍କୃତିକ ସଭାର ଆୟୋଜନ କରାଯାଏ, ଆଲୋଚନାରେ ଅଂଶ ଗ୍ରହଣ କରନ୍ତି ସ୍ଥାନୀୟ ସାହିତ୍ୟିକମାନେ । ଏହି କର୍ମୀମାନେ ଖାଇବା ପିଇବା ପାଇଁ ମୋଟେ ଚିନ୍ତିତ ହୁଅନ୍ତି ନାହିଁ, ଯାହା ମିଳିଲା ତାହା ଖାଇ ସ୍କୁଲ ବାରଣ୍ଡା କିମ୍ବା ପଡ଼ିଆରେ ଶୋଇ କାର୍ଯ୍ୟକରି ଚାଲନ୍ତି । ରାତିରେ ଉଠା ସିନେମା ଦେଖାଇ ଜନସାଧାରଣଙ୍କୁ ଆପ୍ୟାୟିତ କରନ୍ତି । ପରଦିନ ବିଭିନ୍ନ ସ୍ଥାନରୁ ସାହିତ୍ୟିକମାନେ ଆଗମନ କଲାପରେ ସ୍ଥାନୀୟ ସାହିତ୍ୟିକମାନେ ସେମାନଙ୍କୁ ଆଦରରେ ପାଛୋଟି ନିଅନ୍ତି । ବେଳେ ବେଳେ ବ୍ୟାଣ୍ଡବଜାଇ, ଫୁଲମାଳ ପିନ୍ଧାଇ, ଚନ୍ଦନ ସିନ୍ଦୁର ମୁଣ୍ଡରେ ଦେଇ ଶୋଭାଯାତ୍ରାରେ ପାଛୋଟି ନିଆଯାଏ ସାହିତ୍ୟିକମାନଙ୍କୁ । ମଞ୍ଚ ନିକଟରେ ସମସ୍ତେ ପହଞ୍ଚିବା ପରେ ଖେଳିଯାଏ ଆନନ୍ଦର ହିଲ୍ଲୋଳ ।

ତା'ପରେ ଆରମ୍ଭ ହୋଇଯାଏ କବିତା ପାଠ, କବି ସମ୍ମିଳନୀ । ଅପରାହ୍ଣରେ ଚାଲେ ବୈଷୟିକ ଆଲୋଚନା ଅର୍ଥାତ୍ କୃଷି, ଶିଳ୍ପ, ଗୋପାଳନ ଏବଂ ମତ୍ସ୍ୟଚାଷ ଇତ୍ୟାଦି ପାଇଁ ଗ୍ରାମାଞ୍ଚଳରେ କିଣ କରାଯାଇ ପାରିବ ସେ ସମ୍ପର୍କୀୟ ଆଲୋଚନା । ବିଭାଗୀୟ ମୁଖ୍ୟମାନେ ଆଗମନ କରିଥାଆନ୍ତି ଆଲୋଚନାରେ ଅଂଶ ଗ୍ରହଣ କରିବା ନିମନ୍ତେ । ପରେ ପରେ ଚାଲେ ସାହିତ୍ୟ ବା ସଂସ୍କୃତି ସମ୍ପର୍କିତ ସଭା । ଏଭଳି ସଭା ଗ୍ରାମବାସୀମାନଙ୍କୁ ଉଦ୍ଦୀପିତ କରେ ।

ଏହି ଉତ୍କଳ ପାଠକ ସଂସଦର ଉଦ୍‌ଘାଟନ ଉତ୍ସବ ମଞ୍ଚରେ ସୁରେନ୍ଦ୍ର ମହାନ୍ତି, ଜଷ୍ଟିସ୍ ହରିହର ମହାପାତ୍ର, ଗୋପୀନାଥ ମହାନ୍ତି, କାଳନ୍ଦୀ ଚରଣ ପାଣିଗ୍ରାହୀ, କାହ୍ନୁଚରଣ ମହାନ୍ତି, କାଳୀଚରଣ ପଟ୍ଟନାୟକ, ସଚ୍ଚିଦାନନ୍ଦ ରାଉତରାୟ, ବିନୋଦ କାନୁନ୍‌ଗୋ, ଡଃ ସଦାଶିବ ମିଶ୍ର, ମନମୋହନ ମିଶ୍ର, ଡଃ କୁଞ୍ଜବିହାରୀ ଦାଶ, ଉଦୟନାଥ ଷଡ଼ଙ୍ଗୀ, ରାମକୃଷ୍ଣ ନନ୍ଦ, ଡଃ କୁଞ୍ଜବିହାରୀ ତ୍ରିପାଠୀ ଏବଂ ରାଧାମୋହନ ଗଡ଼ନାୟକ ପ୍ରମୁଖ ଏକ ସଙ୍ଗରେ ଗୋଟିଏ ମଞ୍ଚରେ ବସିଥିବାର ଅନେକ ଦେଖିଥିବେ । ଏହି ମହାନ ଅତିଥିମାନଙ୍କୁ ନିଜ ଅଞ୍ଚଳରେ ଲାଭ କରି ବେଳେ ବେଳେ ଆନନ୍ଦିତ ହୋଇ ଭୂଇଁରେ ଗଡ଼ିଯାଆନ୍ତି ସ୍ଥାନୀୟ ବାସିନ୍ଦାମାନେ ।

ଏଭଳି ଉଦ୍‌ଘାଟନ ଉତ୍ସବ ଯାଜପୁର, ମୁଗୁପାଳ, ଜଗନ୍ନାଥ ପ୍ରସାଦ, କୋଟରେଇ, କଶୋର ନଗର, ଏରସମା, କୁଜଙ୍ଗ, ଗୃହୋଳ, ନିଆଳୀ, ବ୍ରହ୍ମଗିରି, ଢେଙ୍କାନାଳ, ଘୁଣ୍ଡ ଓ ସାଲେପୁର ପ୍ରଭୃତି ଅଞ୍ଚଳରେ 'ସଫଳତାର ସହିତ ଅନୁଷ୍ଠିତ ହୋଇଯାଇଛି । ଉତ୍ସବ ଶେଷରେ ସ୍ଥାନୀୟ ବାସିନ୍ଦାମାନେ ଅନୁରୋଧ କରନ୍ତି ଉତ୍କଳ

ପାଠକ ସଂସଦ ଆଉଥରେ ଆମ ଅଞ୍ଚଳକୁ ଆସୁ । ଗ୍ରାମାଞ୍ଚଳରେ ସୃଷ୍ଟି ହେଉଥିବା ଏହି ସାଂସ୍କୃତିକ ଜାଗରଣରେ ହିଁ ଉତ୍କଳ ପାଠକ ସଂସଦର ସାଫଲ୍ୟ । ଏହି ଉଦ୍‌ଘାଟନ ଉତ୍ସବର ଶେଷରେ ବେଳେ ବେଳେ କର୍ମୀମାନେ ଦେଖନ୍ତି ଯେ ଆଉ ଗାଡ଼ି ନାହିଁ, ଘରକୁ ଫେରିବାର ସୁବିଧା ନାହିଁ । ବିନା ଦ୍ୱିଧାରେ ସେମାନେ ପୁଣି ରାତି କଟାନ୍ତି ସ୍କୁଲ ପଡ଼ିଆରେ କିମ୍ବା ଡାକବଙ୍ଗଳାର ବାରଣ୍ଡାରେ ।

ଏଇ କର୍ମୀମାନଙ୍କ ସହିତ ସାମିଲ ହୋଇ ଝଡ଼ ବର୍ଷାକୁ ବେଖାତର କରି ଉଦ୍‌ଘାଟନ ଉତ୍ସବକୁ ସଫଳ କରିବା ପାଇଁ ଅଣ୍ଟା ଭିଡ଼ନ୍ତି ପ୍ରକାଶକ ଗୋବିନ୍ଦ ଚରଣ ପାଢ଼ି ଓ ରାଧାଶ୍ୟାମ ମହାନ୍ତି । ପୁସ୍ତକ ପ୍ରଦର୍ଶନୀର ଦାୟିତ୍ୱ ହାତକୁ ନିଅନ୍ତି ଏମାନେ । ସୁଖର କଥା ଯେ ଏବେ ଅବସ୍ଥା ବଦଳି ଯାଇଛି । ବଡ଼ ବଡ଼ ପୁସ୍ତକମେଳା ଅନୁଷ୍ଠିତ ହେଉଛି କଟକ, ଭୁବନେଶ୍ୱର ଏବଂ ରାଉରକେଲା ପ୍ରଭୃତି ସ୍ଥାନରେ । ପାଠକ ସଂସଦର ଲକ୍ଷ୍ୟ ଯେ ସମ୍ପୂର୍ଣ୍ଣ ସଫଳ ହୋଇଛି ତାହା ନୁହେଁ, ଅନେକ କାର୍ଯ୍ୟ ବାକି ରହିଛି କରିବା ପାଇଁ ।

ଏହି ସଂସଦର ବାର୍ଷିକ ଉତ୍ସବ ଅନୁଷ୍ଠିତ ହୁଏ କଟକରେ । ମୁଖ୍ୟତଃ ଶ୍ରୀରାମଚନ୍ଦ୍ର ଭବନରେ । ସେହି ଉତ୍ସବ ଅବସରରେ ପୁସ୍ତକ ପ୍ରଦର୍ଶନୀ, ପ୍ରଥମଦିନ ପୂର୍ବାହ୍ଣରେ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବିଭିନ୍ନ ପ୍ରତିଯୋଗିତା, ମଧ୍ୟାହ୍ନରେ ସାଂସ୍କୃତିକ ଆଲୋଚନା, ସନ୍ଧ୍ୟାରେ ସାହିତ୍ୟିକ ଆଲୋଚନା, ପରଦିନ ପୂର୍ବାହ୍ଣରେ କବି ସମ୍ମିଳନୀ ଓ ସନ୍ଧ୍ୟାରେ ପ୍ରତିଭା ପୂଜା ଅନୁଷ୍ଠିତ ହୁଏ । ପ୍ରତିଭା ପୂଜା କାର୍ଯ୍ୟକ୍ରମରେ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିବା ବ୍ୟକ୍ତିମାନଙ୍କୁ ସମ୍ମାନିତ କରାଯାଇ ଉପାୟନ ଓ ମାନପତ୍ର ପ୍ରଦାନ କରାଯାଏ । ସେହି ସମ୍ମାନିତ ବ୍ୟକ୍ତିମାନଙ୍କ ଜୀବନୀ ଗୋଟିଏ ପୁସ୍ତକ ଆକାରରେ ପ୍ରକାଶ ପାଏ । ଏତଦ୍‌ବ୍ୟତୀତ ସେହି ଶେଷ ଦିନ ପାଠକ ସଂସଦ ଦ୍ୱାରା ସଙ୍କଳିତ ଏକ ବିଶେଷ ସଙ୍କଳନ ଉନ୍ମୋଚିତ ହୁଏ । ସେହି ସଙ୍କଳନଗୁଡ଼ିକ ମଧ୍ୟରୁ କେତୋଟି ପ୍ରମୁଖ ସଙ୍କଳନ, ଯଥା—ପୁରୀର ପରିକ୍ରମା, ଓଡ଼ିଶାର ନାରୀ, ଓଡ଼ିଶୀ ସଙ୍ଗୀତ, ଯାହା ଓଡ଼ିଶାର ତାହା ଓଡ଼ିଶୀ, ଓଡ଼ିଶାର ମଠ-ମନ୍ଦିର ଓ ଶୋଭିତ ଯାନଯାତ୍ରା, ଓଡ଼ିଶାର ଦେବାଦେବୀ ୧ମ ଭାଗ ୨ୟ ଭାଗ ୩ୟ ଭାଗ, ଓଡ଼ିଶାର ସାଧୁସନ୍ଥ ୧ମ ଭାଗ, ୨ୟ ଭାଗ ୩ୟ ଭାଗ, ଓଡ଼ିଶାର ଭକ୍ତ କବି ୧ମ ଭାଗ ୨ୟ ଭାଗ, ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥ ୧ମ ଭାଗ, ୨ୟ ଭାଗ, ୩ୟ ଭାଗ, ଓଡ଼ିଶାର ସାଂସ୍କୃତିକ ପରମ୍ପରା ୧ମ ଭାଗ, ୨ୟ ଭାଗ, ନଗର କଟକ, ନଗର କଟକ ଓ ପଞ୍ଚ କଟକ, ଆଧୁନିକ ନଗର କଟକ ଓ କୋଣାର୍କ କ୍ଷେତ୍ର ଇତ୍ୟାଦି ।

ସେହିପରି ପ୍ରତିଭାଧର ବ୍ୟକ୍ତିମାନଙ୍କ ଉଦ୍ଦେଶ୍ୟରେ ଯେଉଁ ଜୀବନୀ ପୁସ୍ତକଗୁଡ଼ିକ ପ୍ରକାଶ ଲାଭ କରିଛି ସେଗୁଡ଼ିକ ମଧ୍ୟରେ ପ୍ରତିଭା ପରିଚୟ, ସପ୍ତ ରଶ୍ମି, ସପ୍ତ ଶିଖା, ସପ୍ତ ପ୍ରଦୀପ, ସପ୍ତର୍ଷି, ସପ୍ତ ଜ୍ୟୋତି, ସପ୍ତପୁଷ୍ପ, ସପ୍ତସ୍ୱର, ସପ୍ତ ସୁମନ, ସପ୍ତ ସ୍ତବକ, ସପ୍ତ ତରଙ୍ଗ, ସପ୍ତ ପ୍ରଭା, ସପ୍ତ ଧାରା, ସପ୍ତ ଶାଖା, ସପ୍ତ ତାରକା, ସପ୍ତ ସୌରଭ, ସପ୍ତ ସାଧକ, ସପ୍ତର୍ଷି, ସପ୍ତ ଗୌରବ ଇତ୍ୟାଦି ପ୍ରଧାନ ।

ଏହି ସଙ୍କଳନ ଗୁଡ଼ିକରେ ମୁଖ୍ୟତଃ ସାହିତ୍ୟିକ, ଗବେଷକ, ଶିଳ୍ପୀ, ଅଭିନେତା, ନୃତ୍ୟଶିଳ୍ପୀ, ନାଟ୍ୟକାର, ସାମ୍ବାଦିକ ଏବଂ ସେହିଭଳି ଅନ୍ୟାନ୍ୟ ପ୍ରତିଭାଧର ବ୍ୟକ୍ତି-ମାନଙ୍କ ଜୀବନୀ ସ୍ଥାନଲାଭ କରିଛି । ଏହି ସଂସଦ ଦ୍ୱାରା ଯେଉଁମାନେ ସମ୍ମାନିତ ହୋଇଛନ୍ତି ସେମାନଙ୍କ ମଧ୍ୟରେ ପ୍ରମୁଖ ହେଉଛନ୍ତି କାହ୍ନୁଚରଣ ମହାନ୍ତି, ରାଧାମୋହନ ଗଡ଼ନାୟକ, ରାଜକିଶୋର ପଟ୍ଟନାୟକ, ତାରିଣୀ ଚରଣ ପାତ୍ର, କେଳୁଚରଣ ମହାପାତ୍ର, ଭଗବାନ ପତି, ଡଃ କୁଞ୍ଜବିହାରୀ ଦାଶ, ସରଳା ଦେବୀ, ଶ୍ରୀଧର ମହାପାତ୍ର, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ, ଡଃ. ମିନତି ମିଶ୍ର, ସାମୁଏଲ ସାହୁ, କାଳନ୍ଦୀ ଚରଣ ପାଣିଗ୍ରାହୀ, କାଳୀଚରଣ ପଟ୍ଟନାୟକ, ଉଦୟ ନାଥ ଷଡ଼ଙ୍ଗୀ, କାର୍ତ୍ତିକ କୁମାର ଘୋଷ, ରାମଚନ୍ଦ୍ର ମାଣିଆ, ନିମାଇଁ ଚରଣ ହରିଚନ୍ଦନ, ଅନନ୍ତ ମିଶ୍ର, ଡଃ ରାଧାନାଥ ରଥ, ଗୋପୀନାଥ ମହାନ୍ତି, ଡଃ ହରେକୃଷ୍ଣ ମହତାବ, ବିପିନ୍‌ବିହାରୀ ଚୌଧୁରୀ, ଲଲ ନଗେନ୍ଦ୍ର କୁମାର ରାୟ, ବାଳକୃଷ୍ଣ ଦାଶ, ସତ୍ୟନାରାୟଣ ରାଜଗୁରୁ, ଗୋକୁଳ ଚନ୍ଦ୍ର କର, ରାଜକୃଷ୍ଣ ବୋଷ, ଯଜ୍ଞାନ୍ ଦାସ, ମୁରଲୀଧର ଟାଲି, ଶ୍ରୀହର୍ଷ ମିଶ୍ର, ସୁରେନ୍ଦ୍ର ମହାନ୍ତି, ଶ୍ୟାମସୁନ୍ଦର ଧୀର, ଗୋବିନ୍ଦ ଚରଣ ପାତ୍ର, ଚନ୍ଦ୍ରଶେଖର ଭଞ୍ଜ, ହରିଶରଣ ମହାପାତ୍ର, ଜଗବନ୍ଧୁ ସାହୁ, ଜଗନ୍ନାଥ ଦେବ ବର୍ମା, ନିତ୍ୟାନନ୍ଦ କାନୁନ୍‌ଗୋ, ପ୍ରହ୍ଲାଦ ପ୍ରଧାନ, ଶ୍ରଦ୍ଧାକର ସୂପକାର, ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ରାମପ୍ରସାଦ ସିଂ ପ୍ରିୟନାଥ ମିଶ୍ର, ପଣ୍ଡିତ ଗଣେଶ୍ୱର ରଥ, ବୈଦ୍ୟନାଥ ଶର୍ମା, ପରମାନନ୍ଦ ଶରଣ, ଗୋପାଳ ଛୋଟରାୟ, ନନ୍ଦକିଶୋର ଦାସ, ଡଃ ନବୀନ କୁମାର ସାହୁ, ସୁଧାକର ପଟ୍ଟନାୟକ, କେଦାରନାଥ ମହାପାତ୍ର, ଜଗନ୍ନାଥ ମହାପାତ୍ର, ଭଗବାନ ସାହୁ, ଫକୀରାନନ୍ଦ, ନିରଞ୍ଜନ କର, ଦୁର୍ଲଭ ଚନ୍ଦ୍ର ସିଂହ, ଶ୍ରୀଧର ମହାପାତ୍ର, ରାମକୃଷ୍ଣ ନନ୍ଦ, ଅନନ୍ତ ତ୍ରିପାଠୀ ଶର୍ମା, ମୋହନ ନାୟକ, କୁଞ୍ଜବିହାରୀ ତ୍ରିପାଠୀ, ଲମ୍ବୋଦର ପାଣିଗ୍ରାହୀ, ସଚ୍ଚିଦାନନ୍ଦ ରାଉତରାୟ, ପି. ଭି. କୃଷ୍ଣମୂର୍ତ୍ତି, ମନୋରଞ୍ଜନ ଦାସ, ଭୁବନେଶ୍ୱର ମହାପାତ୍ର, ଅନନ୍ତ ଚରଣ ସାହୁ, ଡଃ ଭୁବନେଶ୍ୱର ବେହେରା, ଭଞ୍ଜକିଶୋର ପଟ୍ଟନାୟକ, ଡଃ ଶରତ ଚନ୍ଦ୍ର ମିଶ୍ର, ସତ୍ୟନାରାୟଣ ପଣ୍ଡା, କ୍ଷୀତିଶଚନ୍ଦ୍ର ମୈତ୍ର, ନଟବର ସାମନ୍ତରାୟ, କେଦାର ନାଥ ସାହୁ, ବାଞ୍ଛାନିଧି ଶତପଥୀ, ବାବୁଲାଲ୍ ଦୋଷୀ, ଅନନ୍ତ ପ୍ରସାଦ ପଣ୍ଡା, ବିନୋଦ କାନୁନ୍‌ଗୋ, ଭୁବନେଶ୍ୱର ମିଶ୍ର, ଲକ୍ଷ୍ମୀନାରାୟଣ ଆଚାର୍ଯ୍ୟ, ବସନ୍ତ କୁମାର ଶତପଥୀ, ଡଃ ମନ୍ମଥ ନାଥ ଦାସ, ରଘୁନାଥ ପଣ୍ଡା, ମାର୍କଣ୍ଡେୟ ମହାପାତ୍ର, ଶ୍ୟାମସୁନ୍ଦର ମିଶ୍ର, ପଙ୍କଜ ଚରଣ ଦାସ, ଅନନ୍ତ ପଟ୍ଟନାୟକ, ଦାଶରଥି ପଟ୍ଟନାୟକ, ଅନୁପ ସିଂହଦେଓ, ଡଃ ବଂଶୀଧର ମହାନ୍ତି, ଡଃ ଗୋକୁଳାନନ୍ଦ ମହାପାତ୍ର, ଡଃ ପ୍ରିୟମ୍ବଦା ମହାନ୍ତି (ହେଜମାଡ଼ି), କାଶୀନାଥ ପୂଜାପଣ୍ଡା, ଅସିତ୍ ମୁଖାର୍ଜୀ, ଶୁକଦେବ ସାହୁ, ପଣ୍ଡିତ ଚିନ୍ତାମଣି ମିଶ୍ର, କୃଷ୍ଣଚନ୍ଦ୍ର ତ୍ରିପାଠୀ, ମଣିମାଳା ଦେବୀ, ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ସଂଯୁକ୍ତା ପାଣିଗ୍ରାହୀ, ରମ୍ଭା ଦେବୀ, ବୀଣାପାଣି ମିଶ୍ର, ଡଃ ଜାନକୀବଲ୍ଲଭ ମହାନ୍ତି; ନୃସିଂହନାଥ ଖୁଣ୍ଟିଆ, ନିତ୍ୟାନନ୍ଦ ମହାପାତ୍ର, କୁଞ୍ଜବିହାରୀ ମେହେର, ମନମୋହନ ଚୌଧୁରୀ, ହରପ୍ରିୟା ମହାନ୍ତି,

ବିନୋଦ ରାଉତରାୟ, ଦୁଃଖୀରାମ ସ୍ୱାଇଁ, ରଘୁନାଥ ଦତ୍ତ, ସୁକୁମାର ସାହୁ, ମନମୋହନ ମିଶ୍ର, ରାଜକିଶୋର ପଟ୍ଟନାୟକ, ପୀତାମ୍ବର ମିଶ୍ର, ଯୁଗଳ କିଶୋର ପାଣିଗ୍ରାହୀ, ରାଜକିଶୋର ରାୟ, ବ୍ୟୋମକେଶ ତ୍ରିପାଠୀ, କେଶବଚନ୍ଦ୍ର ମେହେର, କୋହ୍ଲ ଚରଣ ସାହୁ, ପାର୍ବତୀ ଗିରି, ରାଧାଶ୍ୟାମ ମହାନ୍ତି, ବିନୋଦ ଚନ୍ଦ୍ର ନାୟକ, ପ୍ରାଣବନ୍ଧୁ କର, କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମା, ଧନବନ୍ଧୁ ଦାସ (ଝୀମା), ନିତାଇ ଚରଣ ସିହ୍ନା, ରାମଚନ୍ଦ୍ର ଦାଶ, ସହଦେବ ପ୍ରଧାନ, ହରିଶ୍ଚନ୍ଦ୍ର ବଡ଼ାଳ, ଡଃ ବେଣୀମାଧବ ପାଢ଼ୀ, ଭକ୍ତବତ୍ସଳ ପାତ୍ର, ଅଜିତ୍ କେଶରୀ ରାୟ, ଗୋଲକ ଚନ୍ଦ୍ର ପ୍ରଧାନ, ନିରଞ୍ଜନ ଶତପଥୀ, ମାୟାଧର ରାଉତ, ଲକ୍ଷ୍ମୀଧର ନାୟକ, ଡଃ ଗଙ୍ଗାଧର ବଳ, ପ୍ରୟାଗଦତ୍ତ ଯୋଷୀ, ନବକିଶୋର ପଟ୍ଟନାୟକ, ରଘୁନାଥ ପାଠୀ ଶାସ୍ତ୍ରୀ, ଶରତ ପୂଜାରୀ ଏବଂ ଅଭିରାମ ମହାପାତ୍ର ।

ସେହି ପ୍ରତିଭା ପୂଜାର ଶୈଳୀ ମଧ୍ୟ ଭିନ୍ନ ଧରଣର । ସେଦିନ ଶ୍ରୀରାମଚନ୍ଦ୍ର ଭବନରେ ସ୍ଥାନ ପାଇଥିବା ମହାନ ବ୍ୟକ୍ତିମାନଙ୍କର ପ୍ରତିକୃତିରେ ପୁଷ୍ପମାଲ୍ୟ ପ୍ରଦାନ କରାଯାଏ ଓ ଉତ୍ସବ ସମୟରେ ଏକ ମନୋରମ ପରିବେଶ ମଧ୍ୟରେ ପ୍ରତିଭା ପୂଜା ଆରମ୍ଭ ହୁଏ । ମଞ୍ଚର ପଶ୍ଚାଦ୍‌ଭାଗରେ ଦଣ୍ଡାୟମାନ ହୋଇ ବନ୍ଦେ ଉତ୍କଳ ଜନନୀ ସଙ୍ଗୀତ ଗାନ କରୁଥାଆନ୍ତି ବାଳିକାମାନେ । ଏଣେ ଦୁଇଜଣ ଘୋଷକ ବୈଦିକ ଯୁଗରୁ ଆଜି ପର୍ଯ୍ୟନ୍ତ ପ୍ରତିଭାଧର ବ୍ୟକ୍ତିମାନଙ୍କର ନାମୋଚ୍ଚାରଣ କରି ସେମାନଙ୍କର ଗୁଣ କୀର୍ତ୍ତନ କରନ୍ତି ଓ କେତେଜଣ ସୁସଜ୍ଜିତ ବାଳିକା ପାରମ୍ପରିକ ଶୈଳୀରେ ପୀଠଦାନ କରନ୍ତି ସେହି ମହାନ୍ ଆତ୍ମାମାନଙ୍କ ଉଦ୍ଦେଶ୍ୟରେ । ଶଙ୍ଖ, ଘଣ୍ଟ, ହୁଳହୁଳି ଏବଂ ବାଦ୍ୟ ଧ୍ୱନି ମଧ୍ୟରେ ସମ୍ମାନିତ ବ୍ୟକ୍ତିମାନଙ୍କୁ ମଞ୍ଚ ଉପରକୁ ଆବାହନ କରାଯାଏ । ଶେଷରେ ମଞ୍ଚକୁ ଆଗମନ କରନ୍ତି ମୁଖ୍ୟଅତିଥି ଏବଂ ସଭାପତି । ପରେ ପରେ ଜଣେ ସୁ-ସାହିତ୍ୟିକ ଏହି ଅତିଥିମାନଙ୍କୁ ଉତ୍ତରୀୟ ପ୍ରଦାନ କରି ସମ୍ମାନ ଜଣାନ୍ତି । ଚନ୍ଦନ, ସିନ୍ଦୂର ଓ ପୁଷ୍ପମାଲ୍ୟରେ ଭୂଷିତ କରାଯାଏ ଅତିଥିମାନଙ୍କୁ । ତହିଁପରେ ମାନପତ୍ର ପାଠ କରାଯାଇ ଅତିଥିମାନଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥାଏ । ଏ ଉତ୍ସବ ଆଖିରେ ନ ଦେଖିଲେ କେବଳ କାନରେ ଶୁଣି ଉତ୍ସବ ସମ୍ପର୍କରେ ସଠିକ ଧାରଣା କରିହେବ ନାହିଁ । ଏ ଅନୁଭୂତି ଅଲୌକିକ ଓ ରୋମାଞ୍ଚକର ।

ଉତ୍କଳ ପାଠକ ସଂସଦର ବାର୍ଷିକ ଉତ୍ସବକୁ ସଫଳ ଓ ମନୋରମ କରିବା ଦିଗରେ ଯେଉଁ ସାଂସ୍କୃତିକ ସଙ୍ଗଠନଗୁଡ଼ିକ ଅପରିସୀମ ତ୍ୟାଗ ସ୍ୱୀକାର କରିଛନ୍ତି ସେମାନଙ୍କ ମଧ୍ୟରେ ପୁଷ୍କର ସାଂସ୍କୃତିକ ଅନୁଷ୍ଠାନ ଉଦୟନ ସାଂସ୍କୃତିକ ଏକାଡେମୀ, ଗଞ୍ଜାମ ନରେନ୍ଦ୍ରପୁର କଳାକେନ୍ଦ୍ର, ବାରଦୋର ଛଉନୃତ୍ୟ, ଆଠଗଡ଼ ପାହାଡ଼ପୁର ଦଣ୍ଡନାଚ, ବୈଦ୍ୟନାଥ ଶର୍ମାଙ୍କ ଦାସକାଠିଆ, ବ୍ରଜମୋହନ ଦାସ ଏବଂ ଜଗନ୍ନାଥ ବେହେରାଙ୍କ ପାଲା, ମୋଚିରାମ ମୁନିଙ୍କ ଶଙ୍ଖବାଦନ, ଉଦ୍ଧବ ଚରଣ ଦାସଙ୍କ ଘୋଡ଼ାନାଚ, ଶ୍ରାବନ୍ତୀ ସେନ୍, ବନ୍ଦିପ୍ରିୟା ମହାପାତ୍ରଙ୍କ ଓଡ଼ିଶୀ ନୃତ୍ୟ, ଉତ୍କଳ ସଙ୍ଗୀତ ସମାଜ, କଳିଙ୍ଗ ଅନୁଷ୍ଠାନ, ବକୁଳ ଅନୁଷ୍ଠାନ, ନ୍ୟାସନାଲ ମ୍ୟୁଜିକ୍ ଆସୋସିଏସନ, କଳାବିକାଶ କେନ୍ଦ୍ର, ଗୌରାଙ୍ଗ ନାୟକଙ୍କ ମୃଦଙ୍ଗ ବାଦନ ଓ ଅକ୍ଷୟ ମହାନ୍ତି, ଭିକାରୀ ବଳ,

ପ୍ରଫୁଲ୍ଲ କର, ସୁବାସ ଦାସ, ରଖାଲ ମହାନ୍ତି, ଶେଖର ଘୋଷ, ଧନଞ୍ଜୟ ଶତପଥୀ, ସଙ୍ଗୀତା ମହାପାତ୍ର, ସୁଚେତା ମହାପାତ୍ର ଇତ୍ୟାଦି ଆହୁରି ଅନେକ କଳାକାରଙ୍କୁ ଏହି ଅବସରରେ ଆମେ ସ୍ମରଣ କରୁଛୁଁ । ସେମାନଙ୍କ ଅକ୍ଲାନ୍ତ ପରିଶ୍ରମ ଓ ତ୍ୟାଗ ଏହି ଅନୁଷ୍ଠାନକୁ ମହାନ ଅନୁଷ୍ଠାନରେ ପରିଣତ କରିଛି ।

ଏହି କାର୍ଯ୍ୟକ୍ରମର ଘୋଷଣାରେ ବରିଷ୍ଠ ମହାନ୍ତି ଓ ଉର୍ବଶୀ ଯୋଶୀ ତଥା ବସନ୍ତ ମହାନ୍ତି ଏବଂ କାକଳି ପାଲ୍‌ଙ୍କର ଦାନ ଅପରିସୀମ । ସେହିପରି ବନ୍ଦେ ଉତ୍କଳ ଜନନୀ ସଙ୍ଗୀତ ପରିବେଷଣରେ ନବୀନ ପଟ୍ଟନାୟକଙ୍କର କଳିକା ଅନୁଷ୍ଠାନର ଭୂମିକା ସ୍ୱୀକାର୍ଯ୍ୟ । ମାନପତ୍ର ପ୍ରସ୍ତୁତି ମଧ୍ୟ ଏକ ସ୍ୱତନ୍ତ୍ର ଶୈଳୀର । ଏ ଦିଗରେ ଶ୍ରୀମତୀ ସୁଜାତା ମହାନ୍ତି ଓ ସୁନାମଣି ସାମଲଙ୍କ ପରିଶ୍ରମ ନିଶ୍ଚୟ ପ୍ରଣିଧାନଯୋଗ୍ୟ । ପୂର୍ବେ ଶ୍ରୀମତୀ ସୁଜାତା କାଚର ମଣ୍ଡଳ ଭିତରେ ମାନପତ୍ର, କାଚର ମନ୍ଦିର ଦେହରେ ମାନପତ୍ର, ବିଭିନ୍ନ ସାଜସଜ୍ଜାର ବାକ୍‌ସ ଭିତରେ ମାନପତ୍ର, ପଟ୍ଟଚିତ୍ର ଦେହରେ ମାନପତ୍ର, କାଚ ଦେହରେ ଚିତ୍ରିତ ଛବି ଓ ମାନପତ୍ର ପ୍ରସ୍ତୁତ କରି ଉତ୍କଳ ପାଠକ ସଂସଦକୁ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିଛନ୍ତି । ଏହି ମାନପତ୍ରଗୁଡ଼ିକରେ ଶ୍ରୀଜଗନ୍ନାଥଙ୍କ ଚତୁର୍ଦ୍ଧା ମୂର୍ତ୍ତି ସ୍ଥାନଲାଭ କରନ୍ତି ।

ସେହିପରି ଫୁଲଦାନ ପାଇଁ ଯେଉଁ ବାଳିକାମାନେ ଆଗମନ କରନ୍ତି ସେମାନଙ୍କୁ ତାଲିମ ଦେଇ ଏକତ୍ରିତ କରି ମଞ୍ଚସ୍ଥାନକୁ ଆଣିବାର ଦାୟିତ୍ୱ ନିଅନ୍ତି ଶ୍ରୀମତୀ ସାବିତ୍ରୀ ପଟ୍ଟନାୟକ ଏବଂ ପ୍ରତିଭା ପୂଜାରି ପରିଚାଳନାରେ ଶ୍ରୀମତୀ ବୀଣାପାଣି ମହାନ୍ତି, ରହାସ ରାୟ, ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ, ଚନ୍ଦ୍ରଶେଖର ପ୍ରଧାନ, ଅର୍ଜ୍ଜୁନ ଦାଶ ଏବଂ ବରଦା ପ୍ରସନ୍ନ ପଟ୍ଟନାୟକ ପ୍ରମୁଖ ଯେଉଁ ଭୂମିକା ଗ୍ରହଣ କରନ୍ତି ତାହା ଅତୁଳ । ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ହେଉଛି ଯେ ପ୍ରକାଶକ ଗୋବିନ୍ଦଚରଣ ପାତ୍ର ବିରାଟ ବିରାଟ ସଙ୍କଳନ ଓ ଜୀବନୀ ପୁସ୍ତକଗୁଡ଼ିକୁ ଯଥା ସମୟରେ ପ୍ରକାଶ କରି ଉତ୍କଳ ପାଠକ ସଂସଦକୁ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ କରାଇ ପାରିଛନ୍ତି । ଏ କ୍ଷେତ୍ରରେ ରେଖା ପ୍ରେସର ସ୍ୱତ୍ୱାଧିକାରୀ ଚନ୍ଦ୍ରଶେଖର ପ୍ରଧାନଙ୍କ ଅବଦାନ ମଧ୍ୟ ସ୍ୱୀକାର୍ଯ୍ୟ ।

ପାଠକ ସଂସଦର ବାର୍ଷିକ ଉତ୍ସବକୁ ସାଫଲ୍ୟ ମଣ୍ଡିତ କରିବା ଦିଗରେ ରହାସ ରାୟ, ପରମେଶ୍ୱର ତ୍ରିପାଠୀ, ଶୁଭନାରାୟଣ ସ୍ୱାଇଁ, ଗୋକୁଳାନନ୍ଦ ଦାସ, ସୁଭାଷଚନ୍ଦ୍ର ମହାନ୍ତି, ବସନ୍ତ କୁମାର ସାହୁ, ପ୍ରସନ୍ନ କୁମାର ଦାଶ ଓ ବୀରକିଶୋର ସାହୁ ପ୍ରମୁଖ ସଦସ୍ୟମାନଙ୍କ ପରିଶ୍ରମ ଓ ସାଧନା ଅପରିସୀମ । ବର୍ଷାସାରା ପ୍ରାୟ ପ୍ରତ୍ୟେକ ଦିନ ଏମାନଙ୍କ ମଧ୍ୟରୁ ଅନେକେ ଆସି ଶହ ଶହ ଚିଠିଲେଖି ଅନୁଷ୍ଠାନଟିକୁ ଏକ ଜୀବନ୍ତ ଅନୁଷ୍ଠାନରେ ପରିଣତ କରିଛନ୍ତି ।

ସେହିପରି ପୋଣି ପଟ୍ଟନାୟକ, ଡଃ ବିଚିତ୍ରାନନ୍ଦ ମହାନ୍ତି ଡଃ ବୈଷ୍ଣବ ଚରଣ ସାମଲ, ଡଃ ରତ୍ନାକର ଚଇନି, ଡଃ ତୀର୍ଥାନନ୍ଦ ମିଶ୍ର ପ୍ରମୁଖ ଲେଖାଗୁଡ଼ିକର ସମ୍ପାଦନା

କ୍ଷେତ୍ରରେ ନିଜ ସାଫଲ୍ୟର ପରିଚୟ ପ୍ରଦାନ କରି ଅକ୍ଲାନ୍ତ ପରିଶ୍ରମ ଦ୍ୱାରା ସଙ୍କଳନଗୁଡ଼ିକୁ ସର୍ବାଙ୍ଗ ସୁନ୍ଦର ସଙ୍କଳନରେ ପରିଣତ କରିଛନ୍ତି ।

ଏଥିପାଇଁ ଅନେକେ ଘରକଥା ଭୁଲିଛନ୍ତି, ପରିବାର କଥା ଭୁଲିଛନ୍ତି । ଗୋଟିଏ ଛୋଟିଆ ଉଦାହରଣ ଦିଆଯାଉ । ଏକଦା ଛଉନୃତ୍ୟ ଶିଳ୍ପୀ ଅନନ୍ତ ଚରଣ ସାୟୁଙ୍କ ଜୀବନୀ ସହିତ ନିଜ ଝିଅର ଗୋଟିଏ ସୁନାହାର ହଜିଗଲା ପାଠକ ସଂସଦର ଜଣେ ସଦସ୍ୟ ଶୁଭନାରାୟଣ ସ୍ୱାଇଁଙ୍କର । ସେ ସୁନାହାର କଥା ଭ୍ରୂକ୍ଷେପ ନ କରି ଧାଇଁଲେ ବାରିପଦା ଅନନ୍ତ ସାୟୁଙ୍କ ସହିତ ସାକ୍ଷାତ କରି ଜୀବନୀ ସମ୍ବନ୍ଧୀୟ ତଥ୍ୟ ସଂଗ୍ରହ ନିମନ୍ତେ । ସେହିପରି ଅନ୍ୟାନ୍ୟମାନେ ବ୍ରହ୍ମପୁରରେ ମୋହନ ନାୟକଙ୍କୁ ସାକ୍ଷାତ, ଭୁବନେଶ୍ୱର ବେହେରାଙ୍କୁ କଳାହାଣ୍ଡିରେ ସାକ୍ଷାତ, ପଣ୍ଡିତ ଗଣେଶ୍ୱର ରଥଙ୍କୁ କଳାହାଣ୍ଡିରେ ସାକ୍ଷାତ, ପାର୍ବତୀ ଗିରିଙ୍କୁ ପଦ୍ମପୁରରେ ସାକ୍ଷାତ ଇତ୍ୟାଦି ସଦସ୍ୟଙ୍କ ନିଷ୍ଠାର ପରିଚୟ ପ୍ରଦାନ କରେ ।

ଏହି ସାମାନ୍ୟ ୨୫ ବର୍ଷର ତରୁଣ ଅନୁଷ୍ଠାନଟିର ବାସ୍ତବ ଅନୁଭୂତି ଓ ଅଭିଜ୍ଞତା ଯଥେଷ୍ଟ ବେଶି । ଏ ଅନୁଷ୍ଠାନ ପକ୍ଷରୁ ପ୍ରତ୍ୟେକ ବର୍ଷ ଶ୍ରେଷ୍ଠ ସ୍ମରଣିକାଟିଏ ପ୍ରକାଶ ପାଏ । ସେ ସ୍ମରଣିକାର ବିଷୟ ମଧ୍ୟ ସୁ-ନିର୍ବାଚିତ । କେବଳ ଗୋଟିଏ ବିଷୟରେ ସ୍ମରଣିକାଟି ବିମଣ୍ଡିତ ହୋଇଥାଏ । ଉଦାହରଣ ସ୍ୱରୂପ ଓଡ଼ିଶାର ମନ୍ଦିର, ଓଡ଼ିଶାର ଅବହେଳିତ ପ୍ରତିଭା ଇତ୍ୟାଦି । ଏହି ସ୍ମରଣିକାଗୁଡ଼ିକ ଓଡ଼ିଆ ସାହିତ୍ୟର ମଧ୍ୟ ଅମୂଲ୍ୟ ସମ୍ପଦ ।

ଏହି ସଂସଦର ପ୍ରତିଭା ପୂଜା କାର୍ଯ୍ୟକ୍ରମରେ ଯୋଗ ଦେବା ପାଇଁ ମହାନ୍ ବ୍ୟକ୍ତିମାନେ ଆଗ୍ରହ ପ୍ରକାଶ କରିଥାଆନ୍ତି । ମନେଅଛି ସେଉଁବର୍ଷ ଡଃ ହରେକୃଷ୍ଣ ମହତାବଙ୍କୁ ମାନପତ୍ର ପ୍ରଦାନ କରାଯିବା ପାଇଁ ପତ୍ର ଲେଖାଗଲା, ସେ ଉତ୍ତରରେ ଲେଖିଲେ—"ବରକର୍ତ୍ତା ବର ହେବା ପାଇଁ ରାଜି ।" ସେହିପରି ଆଉ କେତୋଟି ମଜା କଥା । ଶ୍ରୀଯୁକ୍ତ ଶ୍ରୀହର୍ଷ ମିଶ୍ର, ଡଃ ରାଧାନାଥ ରଥ ପ୍ରମୁଖ ନିର୍ଦ୍ଧାରିତ ଦିନ ମଞ୍ଚ ଉପରୁ ମାନପତ୍ର ଗ୍ରହଣ କରି ନ ପାରି ପରବର୍ଷ ସେହି ମଞ୍ଚ ଉପରେ ମାନପତ୍ର ଗ୍ରହଣ କରି ଆନନ୍ଦ ଗଦ୍‌ଗଦ୍ ଚିତ୍ତରେ ସଂସଦକୁ ବହୁ ପ୍ରଶଂସା କରିଥିଲେ ।

ଏ ସଂସଦର ପ୍ରାଥମିକ ନିୟମାବଳୀରେ ସ୍ଥିର ନିର୍ଦ୍ଧାରିତ ହୋଇଥିଲା ଯେ ଆମେ ସରକାରୀ ଅନୁଦାନ ଗ୍ରହଣ କରିବୁ ନାହିଁ । ଏକଥା ଜାଣି ଅତୀତରେ ସେ ସମୟର ମୁଖ୍ୟ ବିଚାରପତି ମାନ୍ୟବର ଶ୍ରୀଯୁକ୍ତ ରଙ୍ଗନାଥ ମିଶ୍ର ସର୍ବସାଧାରଣଙ୍କୁ ଆହ୍ୱାନ ଜଣାଇଥିଲେ—ମୁକ୍ତହସ୍ତରେ ଦାନ କରିବା ପାଇଁ । ସେହିପରି ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ଆକବର ଅଲ୍ଲୀ ଖାଁ ମଧ୍ୟ ଅନୁରୂପ ଆହ୍ୱାନ ଜଣାଇଥିଲେ । ସଂସଦର ବାର୍ଷିକ ଉତ୍ସବରେ ପ୍ରାୟ ପ୍ରତ୍ୟେକ ବର୍ଷ ମାନ୍ୟବର ରାଜ୍ୟପାଳ, ମାନ୍ୟବର ବାଚସ୍ପତି, ଉଚ୍ଚ ନ୍ୟାୟାଳୟର ପ୍ରଧାନ ବିଚାରପତି କିମ୍ବା ଅବସରପ୍ରାପ୍ତ ନ୍ୟାୟାଧୀଶମାନେ ମୁଖ୍ୟ

ଅଂଶ ଭାବେ ଯୋଗ ଦେଇ ଥାଆନ୍ତି । ମୋଟାମୋଟି କହିହେବ ଯେ—ଉତ୍କଳ ପାଠକ ସଂସଦ ରାଜ୍ୟର ସାହିତ୍ୟ, ସଂସ୍କୃତି, କଳା, ଭାସ୍କର୍ଯ୍ୟ, ଅଭିନୟ, ନୃତ୍ୟ ଇତ୍ୟାଦିର ଉନ୍ନତି ସାଧନ ଦିଗରେ କିଛି କିଛି କାର୍ଯ୍ୟ କରିବା ସହିତ ପୁସ୍ତକ ପ୍ରସାରର ବ୍ୟବସ୍ଥା କରେ ।

ପ୍ରାଥମିକ ଅବସ୍ଥାରେ ଏହି ଅନୁଷ୍ଠାନ ପକ୍ଷରୁ ବିଭିନ୍ନ ପୁସ୍ତକ ନେଇ ସ୍କୁଲ କଲେଜମାନଙ୍କରେ ଯୋଗାଇ ଦିଆଯାଉଥିଲା । ଏଥିପାଇଁ ଯାତାୟାତ ଖର୍ଚ୍ଚ ମଧ୍ୟ ପ୍ରକାଶକମାନଙ୍କଠାରୁ ଗ୍ରହଣ କରାଯାଉ ନଥିଲା । ଏହାଛଡ଼ା ଲୋକନୃତ୍ୟ, ଲୋକବାଦ୍ୟ, ଲୋକସଙ୍ଗୀତ, ଓଡ଼ିଶୀ ସଙ୍ଗୀତ, ଓଡ଼ିଶୀ ନୃତ୍ୟର ଆୟୋଜନ କରି ଉତ୍କଳ ପାଠକ ସଂସଦ ତା'ର ଜନ୍ମକାଳରୁ ଶ୍ରୋତା ତଥା ପାଠକମାନଙ୍କୁ ଆନନ୍ଦ ପ୍ରଦାନ କରି ଆସୁଛି । କଟକ ଜେଲ୍‌ରୁ ବେଞ୍ଚ, ଡେକ୍‌ସ ଇତ୍ୟାଦି ଆଣି ପୁସ୍ତକ ପ୍ରଦର୍ଶନୀର ଆୟୋଜନ, ଉତ୍କଳ ସାହିତ୍ୟ ସମାଜର ଉତ୍କଳ ଗୌରବ ମଧୁସୂଦନ ଗ୍ରନ୍ଥାଗାରର ଏ ଦିଗରେ ଯେଉଁ ସାହାଯ୍ୟ ତାହା ଭୁଲିବାର ନୁହେଁ ।

ପ୍ରଥମ କିଛି ବର୍ଷ ଉତ୍କଳ ପାଠକ ସଂସଦର ବାର୍ଷିକ ଉତ୍ସବରେ ଡଃ ପ୍ରାଣକୃଷ୍ଣ ସେନା ଯୋଗ ଦେଉଥିଲେ । ସେ ପରାମର୍ଶ ଦେଇ କହିଲେ ଯେ ସଂସଦର ଆଲୋଚନା ସଭା ସହିତ ପୁସ୍ତକ ପ୍ରଦର୍ଶନୀର ସଂଯୋଗ କରାଯାଉ । ତାଙ୍କର ପରାମର୍ଶ ଅନୁସାରେ ସେହି କାର୍ଯ୍ୟକ୍ରମଟି ହାତକୁ ନିଆଯାଇଥିଲା । ସେହିପରି ଡଃ ହରେକୃଷ୍ଣ ମହତାବଙ୍କ ପରାମର୍ଶକ୍ରମେ ସମ୍ମାନିତ କରାଗଲା ପ୍ରତିଭାଧର ବ୍ୟକ୍ତିମାନଙ୍କୁ ।

ଏହାଛଡ଼ା ଜଷ୍ଟିସ ହରିହର ମହାପାତ୍ରଙ୍କ ପରାମର୍ଶ ଅନୁସାରେ ଗ୍ରାମାଞ୍ଚଳରେ ଉଦ୍‌ଘାଟନ ଉତ୍ସବ, ଡଃ କୁଞ୍ଜବିହାରୀ ଦାଶଙ୍କ ପରାମର୍ଶକ୍ରମେ ଜୀବନୀ ପୁସ୍ତକ ପ୍ରକାଶ, କାଳନ୍ଦୀ ଚରଣ ପାଣିଗ୍ରାହୀ ଓ କାହ୍ନୁଚରଣ ମହାନ୍ତିଙ୍କ ପରାମର୍ଶ କ୍ରମେ ସ୍ମରଣିକା ପ୍ରକାଶ ଉତ୍କଳ ପାଠକ ସଂସଦର ଇତିହାସରେ ଗୋଟିଏ ସ୍ମରଣୀୟ ଘଟଣା ।

ପ୍ରତ୍ୟେକ ବର୍ଷ ଠିକ୍ ଦୁର୍ଗା ପୂଜା ପରେ ପରେ ପରାମର୍ଶଦାତା କମିଟିର ବୈଠକ ବସେ ସ୍ଥାୟୀ ସଭାପତି ଡଃ ସଦାଶିବ ମିଶ୍ରଙ୍କ ବାସଭବନରେ । କେଉଁଠାରେ ବାର୍ଷିକ ଉତ୍ସବ ହେବ, କେଉଁ ବିଷୟରେ ସଙ୍କଳନମାନ ପ୍ରକାଶ କରାଯିବ, କେଉଁ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନିତ କରାଯିବ ଇତ୍ୟାଦି ବିଷୟ ସ୍ଥିର କରାଯାଏ । ସେହିପରି ଉତ୍ସବର ଶେଷରେ ଏକ ବନ୍ଧୁମିଳନର ଆୟୋଜନ କରାଯାଏ ସମ୍ପାଦକ ଡଃ ବ୍ରଜମୋହନ ମହାନ୍ତିଙ୍କ ବାସଭବନରେ ।

ଶ୍ରୀଯୁକ୍ତ ମହାନ୍ତିଙ୍କ ମାନସପ୍ରସୂତ ଏହି ସଙ୍ଗଠନଟିର ପୂର୍ବରୁ ଅନ୍ୟ ଏକ ସଙ୍ଗଠନ ମଧ୍ୟ ମୁଣ୍ଡ ଟେକିଥିଲା । ତାହାର ନାମ ଥିଲା—ସାହିତ୍ୟପ୍ରେମୀ ସଂସଦ । କିନ୍ତୁ ଏହା ଅଧିକ ଦିନ ସ୍ଥାୟୀ ହୋଇ ରହିପାରିଲା ନାହିଁ । ସେ ସ୍ଥାନରେ ସୃଷ୍ଟି ହେଲା ଉତ୍କଳ ପାଠକ ସଂସଦ । ଏହାର ଏକ ଆନୁଷଙ୍ଗିକ ଅଙ୍ଗଭାବେ 'ଚନ୍ଦ୍ରିକା'

ନାମରେ ଏକ ଶ୍ରେଷ୍ଠ ଅନୁଷ୍ଠାନ ଗଠିତ ହୋଇଛି । ଏ ପକ୍ଷରୁ ମଧ୍ୟ କେତୋଟି ପୁସ୍ତକ ପ୍ରକାଶ ପାଇଲଣି ଓ କେତୋଟି ପୁସ୍ତକର ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହେଲଣି । ଏହି ଚନ୍ଦ୍ରିକା ଆନୁକୂଲ୍ୟରେ ପ୍ରକାଶିତ ପୁସ୍ତକଗୁଡ଼ିକ—ଭକ୍ତକବି ଜଗନ୍ନାଥ ଦାସ, ଜଗନ୍ନାଥ ଦାସ ଓ ଓଡ଼ିଆ ଭାଗବତ, ଭକ୍ତକବି ବଳରାମ ଦାସ ଓ ମନୋଜ୍ଞ ମହୋଦଧି ଇତ୍ୟାଦି ।

ଏହି ପୁସ୍ତକମାନଙ୍କ ମଧ୍ୟରୁ ମନୋଜ୍ଞା ମହୋଦଧି ପୁସ୍ତକଟିର ପ୍ରକାଶନ ବେଶ୍ ଉଲ୍ଲେଖଯୋଗ୍ୟ । ସେହି ପୁସ୍ତକରେ ୧୦୭ ଜଣ କବିଙ୍କର କବିତା ପ୍ରକାଶିତ ହୋଇଛି । ଉଦ୍ଦେଶ୍ୟ ଥିଲା ଯେ—ପୁସ୍ତକଟିର ପ୍ରକାଶ ପରେ ଲେଖକମାନଙ୍କୁ ଏବଂ ଅନ୍ୟମାନଙ୍କୁ ଏହି ପୁସ୍ତକ ଖଣ୍ଡିକୁ ପଚିଶ ଟଙ୍କା କରି ବିକ୍ରୟ କରାଯିବ ଏବଂ ବିକ୍ରୟ ଲବ୍ଧ ଧନରେ ରୌପ୍ୟଜୟନ୍ତୀ ଉତ୍ସବ ପାଳିତ ହେବ । କିନ୍ତୁ ଦେଖାଗଲା ୬ ମାସ ମଧ୍ୟରେ ଏ ବହିରୁ ମାତ୍ର ୭ ଖଣ୍ଡ ବିକ୍ରୟ କରାଯାଇପାରିଛି ଏବଂ ବିକ୍ରୟ ପାଇଁ ଯେଉଁ ରାସ୍ତା ଖର୍ଚ୍ଚ ହୋଇଛି ତାହା ବିକ୍ରୟ ଲବ୍ଧ ଅର୍ଥର ପରିମାଣ ସହିତ ପ୍ରାୟ ସମାନ ।

ତେବେ ସେ ଯାହାହେଉ ଅନେକ ଉତ୍ସାହଜନକ ଓ ତିକ୍ତ ଅନୁଭୂତିକୁ ନେଇ ପାଠକ ସଂସଦ ଧୀର ଅଗ୍ରଗତି ପଥରେ ଧାବମାନ । ଆଗାମୀ ବର୍ଷମାନଙ୍କରେ ପାଠକ ସଂସଦ ଆହୁରି ନୂଆ ନୂଆ କାର୍ଯ୍ୟକ୍ରମ ଗ୍ରହଣ କରିବ ଏବଂ ଓଡ଼ିଆ ଭାଷାରେ ଅଭାବ ଥିବା ବିଭିନ୍ନ ବିଷୟ ଉପରେ ସଙ୍କଳନମାନ ପ୍ରକାଶ କରି ଜାତିର ମଙ୍ଗଳ କରିବା ସହିତ ପ୍ରତିଭାଧର ବ୍ୟକ୍ତିମାନଙ୍କୁ ସମ୍ମାନ ଜଣାଇ ପୂଜ୍ୟପୂଜାର ପରମ୍ପରାକୁ ଅକ୍ଷୁର୍ଣ୍ଣ ରଖିବ ।

ବିଗତ ପଚିଶ ବର୍ଷର ଚଲାପଥରେ ବହୁତ ବନ୍ଧୁ ଆସିଛନ୍ତି, ହାତକୁ ହାତ ଓ କାନ୍ଧକୁ କାନ୍ଧ ମିଳାଇ କାମ କରିଛନ୍ତି, ସେ ସବୁ ଅଗଣୋର । "ସ୍ମୃତି ତ' ନୁହଁଇ କେବେ ଭୁଲିବାର ।" ଅନିଚ୍ଛାକୃତ ଭାବେ ଯଦି କାହାର ନାମୋଲ୍ଲେଖ କରାଯାଇପାରି ନଥାଏ, ସେଥିପାଇଁ ସମସ୍ତଙ୍କ ପାଖରେ ପ୍ରାର୍ଥନା କରୁଛୁ, ସ୍ନେହଗୁଣରେ କ୍ଷମା ଦେବେ ।

॥ ଜୟ ଜଗନ୍ନାଥ ॥



୧୪୦ ବର୍ଷର ଶିକ୍ଷାନୁଷ୍ଠାନ--

# ରେଭେନ୍‌ସା କଲଜିଏଟ୍ ସ୍କୁଲର ସଂକ୍ଷିପ୍ତ ଇତିହାସ

ଶ୍ରୀ ଭୂପେନ୍ ଘୋଷ

୧୮୨୨—ତା ୨୨।୪।୧୮୨୨ ମସିହାରେ ରେଭେରଣ୍ଡ ଉଇଲିୟମ୍ ବାମ୍ପଟନ୍ କଟକ ସ୍କୁଲ ନାମରେ କଟକରେ ଏହି ଅନୁଷ୍ଠାନକୁ ପ୍ରତିଷ୍ଠା କରିଥିଲେ।

୧୮୪୧—ଓଡ଼ିଶା ସରକାର କଟକ ସ୍କୁଲର ପରିଚାଳନା ଭାର ଗ୍ରହଣ କଲେ।

୧୮୫୧—ଉକ୍ତ ସ୍କୁଲଟି ଜିଲ୍ଲା ସ୍କୁଲ ନାମରେ ନାମିତ ହେଲା ଏବଂ ଏହି ସ୍କୁଲକୁ ହାଇସ୍କୁଲର ସ୍ୱୀକୃତି ମିଳିଲା। ଏ ସ୍ୱୀକୃତି ମିଳିବା ପର୍ଯ୍ୟନ୍ତ ଏହା ମାଇନର ସ୍କୁଲ ରୂପେ କାର୍ଯ୍ୟ କରୁଥିଲା।

୧୮୫୪—ଏଣ୍ଟ୍ରାନ୍ସ ପରୀକ୍ଷା (ମାଟ୍ରିକୁଲେସନ୍ ପରୀକ୍ଷା) ପାଇଁ ଶିକ୍ଷାଦାନ ନିମନ୍ତେ କଲିକତା ବିଶ୍ୱବିଦ୍ୟାଳୟରେ ପାଠ୍ୟକ୍ରମ କାର୍ଯ୍ୟକାରୀ ହେଲା।

୧୮୫୫—ପ୍ରାକୃତିକ ବିଜ୍ଞାନ ଓ ପାଶ୍ଚାତ୍ୟ ଖେଳ ଓ କ୍ରୀଡ଼ା ପ୍ରଚଳିତ ହେଲା।

୧୮୫୯—ପ୍ରଥମଥର ପାଇଁ ଏଣ୍ଟ୍ରାନ୍ସ ପରୀକ୍ଷା ଦେବାକୁ ସ୍କୁଲ ପ୍ରାର୍ଥୀମାନଙ୍କୁ ଉପସ୍ଥାପନ କରିଥିଲା।

୧୮୬୪—ଉତ୍କଳ ଗୌରବ ମଧୁସୂଦନ ଦାସ ଏଣ୍ଟ୍ରାନ୍ସ ପରୀକ୍ଷା ପାସ୍ କରିଥିଲେ।

୧୮୬୬—ପରିଚାଳନା ଦ୍ୱାରା ଓଡ଼ିଶା ଡିଭିଜନ୍‌ସ କମିଶନରଙ୍କ ନିୟନ୍ତ୍ରଣକୁ ଆସିଲା। ଇନ୍‌ସପେକ୍ଟର ଅଫ୍ ସ୍କୁଲ ଡବ୍ଲ୍ୟୁ. ଡବ୍ଲ୍ୟୁ. ହଣ୍ଟର୍ (W. W. Hunter) ତାଙ୍କ ବିବରଣୀରେ ଲେଖିଥିଲେ ଯେ ଓଡ଼ିଶା ଡିଭିଜନର ସବୁ ହାଇସ୍କୁଲର ଛାତ୍ରମାନଙ୍କ ମଧ୍ୟରେ ଏ ସ୍କୁଲର ସବୁ ଛାତ୍ର କୃତିତ୍ୱ ସହ ପ୍ରଥମ ଶ୍ରେଣୀରେ ପାସ୍ କରିଥିଲେ।

ଏ ସ୍କୁଲର ସର୍ବାଙ୍ଗୀନ କାର୍ଯ୍ୟାବଳୀ ପ୍ରଶଂସନୀୟ । ନଅଙ୍କ ଦୁର୍ଭିକ୍ଷ ହେତୁ ଏ ସ୍କୁଲର ଶତକଡ଼ା ୭୫ ଭାଗ ଛାତ୍ର ଖାଦ୍ୟ ଅନାଟନରେ ରୋଗାକ୍ରାନ୍ତ ହେଲେ । ଏସବୁ ସତ୍ତ୍ୱେ ସ୍କୁଲର ପରୀକ୍ଷାଫଳ ସନ୍ତୋଷଜନକ ଓ ସ୍କୁଲର ଦୁଇଜଣ ଛାତ୍ର ଜୁନିୟର ବୃତ୍ତି ଲାଭ କରିଥିଲେ ।

୧୮୬୨—ଆଇ. ଏ. ଶ୍ରେଣୀ ଏ ସ୍କୁଲରେ ଖୋଲିଲା ।

୧୮୬୮— ଆଇନ ଅଧ୍ୟୟନ ନିମନ୍ତେ ଆଇନ ଶ୍ରେଣୀ ଏଠାରେ ଖୋଲିଲା ।

୧୮୭୦—ଏହି ସ୍କୁଲରୁ ଶ୍ରୀ ପ୍ୟାରୀମୋହନ ଆଚାର୍ଯ୍ୟ ଏଣ୍ଟ୍ରାନ୍ସ ପରୀକ୍ଷାରେ ପାସ୍ କରିଥିଲେ ।

୧୮୭୧—ବଙ୍ଗଳା, ବିହାର ଓ ଓଡ଼ିଶା ପ୍ରଦେଶମାନଙ୍କ ମଧ୍ୟରେ ଉକ୍ତ ତିନୋଟି ପ୍ରଦେଶର ଛାତ୍ରବୃନ୍ଦଙ୍କ ମଧ୍ୟରେ ଓଡ଼ିଶା ପ୍ରଦେଶର ଏହି ସ୍କୁଲ ୭ମ ସ୍ଥାନ ଅଧିକାର କରିଥିଲା ।

୧୮୭୫—ଓଡ଼ିଶା ଡିଭିଜନର ତତ୍କାଳୀନ ରେଭିନ୍ୟୁ କମିଶନର ମିଷ୍ଟର ଟି. ଇ. ରେଭେନ୍‌ସାଙ୍କ ଉତ୍ତମ କାର୍ଯ୍ୟ ଓ ଅବଦାନ ପାଇଁ ତାଙ୍କର ସ୍ମୃତିରେ କଟକ ଜିଲ୍ଲା ସ୍କୁଲ ରେଭେନ୍‌ସା କଲେଜିଏଟ୍ ସ୍କୁଲ ନାମରେ ନାମିତ ଏବଂ ପରିଚିତ ହେଲା ।

୧୮୭୬—ଏଠାରେ କାର୍ଯ୍ୟ କରୁଥିବା କଲେଜ ପ୍ରଥମ ଶ୍ରେଣୀ କଲେଜ ଭାବେ ସ୍ୱୀକୃତି ପାଇଲା ଓ ହଷ୍ଟେଲର ସୁବିଧା ହେଲା ।

୧୮୯୧—ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍ସ ପରୀକ୍ଷା ପାସ୍ କରିଥିଲେ ।

୧୮୯୨—ଶ୍ରୀ ଶଶିଭୂଷଣ ରାୟ ଏଣ୍ଟ୍ରାନ୍ସ ପାଶ୍ କରିଥିଲେ ।

୧୯୦୮—ଶ୍ରୀ ଗୋପବନ୍ଧୁ ଚୌଧୁରୀ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍ସ ପାଶ୍ କରିଥିଲେ ।

୧୯୦୯—ଡକ୍ଟର ପ୍ରାଣକୃଷ୍ଣ ପରିଜା ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍ସ ପାଶ୍ କଲେ ।

୧୯୧୦—ରେଭେନ୍‌ସା ସାହେବ ଅବସର ନେଇ ଇଂଲଣ୍ଡରେ ରହୁଥିବା ସମୟରେ ରେଭେନ୍‌ସା ପ୍ରବନ୍ଧ (Ravenshaw Es ay) ପ୍ରତିଯୋଗିତା ଆରମ୍ଭ କରିବାକୁ ପୁରସ୍କାର ନିମନ୍ତେ କୃତିଛାତ୍ରମାନଙ୍କୁ ଦେବାକୁ ପାଞ୍ଚଶହ ଟଙ୍କା ଗଚ୍ଛିତ ଦେଇଥିଲେ । ପ୍ରତିଷ୍ଠିତ ସାହିତ୍ୟିକ ଶିକ୍ଷକ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ସମ୍ପାଦନାରେ ସ୍କୁଲର ମୁଖପତ୍ର "ଛାତ୍ରବନ୍ଧୁ" ପ୍ରକାଶିତ ହୋଇଥିଲା ।

୧୯୧୧—ଅସ୍ଥାୟୀ ଭାବେ ବଲ୍ଲ ଭଗତଙ୍କ କୋଠାକୁ ସ୍କୁଲ ସ୍ଥାନାନ୍ତରିତ ହେଲା ।

୧୯୧୩—ନେତାଜୀ ସୁଭାଷଚନ୍ଦ୍ର ବୋଷ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍‌ସ ପରୀକ୍ଷା ପାଶ୍ କରିଥିଲେ ।

୧୯୧୫—ରେଭେନ୍‌ସା କଲେଜ କଲିଜଏଟ୍ ସ୍କୁଲ କୋଠାରେ କାର୍ଯ୍ୟ କରୁଥିବାରୁ କଲିଜଏଟ୍ ସ୍କୁଲ ପୁରୁଣା ଅଦାଲତ କୋଠାକୁ ସ୍ଥାନାନ୍ତରିତ ହେଲା ।

୧୯୧୭—ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ପ୍ରଥମ ଶ୍ରେଣୀରେ ଏଣ୍ଟ୍ରାନ୍‌ସ ପରୀକ୍ଷା ପାଶ୍ କଲେ ।

୧୯୧୭—ଦୈନିକ 'ସମାଜ'ର ସମ୍ପାଦକ ଦେଶୀ ରାଧାନାଥ ରଥ ଏଣ୍ଟ୍ରାନ୍‌ସ ପରୀକ୍ଷା ପାଶ୍ କଲେ ।

୧୯୨୧—ରେଭେନ୍‌ସା କଲିଜଏଟ୍ ସ୍କୁଲ ତା'ର ପୁରାତନ କୋଠାକୁ ସ୍ଥାନାନ୍ତରିତ ହୋଇ ପୁନରାୟ କାର୍ଯ୍ୟ କଲା, ଯେଉଁ କୋଠାରେ ବର୍ତ୍ତମାନ ସ୍କୁଲ କାର୍ଯ୍ୟ କରୁଛି । ଏହି ବର୍ଷ ମାନୁଏଲ ଟ୍ରେନିଂ କ୍ଲାସ ଏହି ସ୍କୁଲରେ ସଂଯୋଗ ହୋଇ କାର୍ଯ୍ୟ-କଲା ।

୧୯୨୩—ରେଭେନ୍‌ସା କଲିଜଏଟ୍ ସ୍କୁଲର ପରିଚାଳନା ଭାର ରାଧାନାଥ ଟ୍ରେନିଂ କଲେଜ ଅଧ୍ୟକ୍ଷଙ୍କ ନିୟନ୍ତ୍ରଣକୁ ଆସିଲା ।

୧୯୩୦—ଭାରତର ପୂର୍ବତନ ଚିଫ୍ ନାଭାଲ ଷ୍ଟାଫ୍ ଏଣ୍ଟ୍ରାନ୍‌ସ ପରୀକ୍ଷା ପାଶ୍ କରିଥିଲେ ।

୧୯୫୪—ପୁରାତନ ଛାତ୍ର ସଂସଦ ପକ୍ଷରୁ ରେଭେନ୍‌ସା କଲିଜଏଟ୍ ସ୍କୁଲର ଶତବାର୍ଷିକ ଉତ୍ସବ ପାଳିତ ହୋଇଥିଲା ।

୧୯୫୮—ବହୁମୁଖୀ ହାୟାର ସେକେଣ୍ଡେରୀ ସ୍କୁଲ ରୂପେ କଲିଜଏଟ୍ ସ୍କୁଲ ପରିବର୍ତ୍ତିତ ହେଲା ।

୧୯୬୪—ପୁନର୍ବାର କଲିଜଏଟ୍ ସ୍କୁଲ ହାୟାର ସେକେଣ୍ଡାରୀ ହାଇସ୍କୁଲରୁ ମୁକ୍ତହୋଇ ହାଇସ୍କୁଲ ଭଳି କାର୍ଯ୍ୟ ଆରମ୍ଭ କଲା ।

୧୯୬୭—ଭାରତ ସରକାରଙ୍କ ଦ୍ୱାରା ସମଗ୍ର ଓଡ଼ିଶାରେ କଲିଜଏଟ୍ ସ୍କୁଲ ରେସିଡେନ୍‌ସିଏଲ ସ୍କୁଲ ଭାବେ ମନୋନୀତ ହେଲା ।

୧୯୬୯—ଷଷ୍ଠ ଶ୍ରେଣୀ ଓ ସପ୍ତମ ଶ୍ରେଣୀର ସେକ୍‌ସନ ପ୍ରତିଷ୍ଠା ହେଲା ।



# ଷ୍ଟିଓ୍ୱାର୍ଟ ବିଜ୍ଞାନ ମହାବିଦ୍ୟାଳୟ

ଅଧ୍ୟକ୍ଷ **ଗିରୀଶଚନ୍ଦ୍ର ପଟ୍ଟନାୟକ**

ଐତିହାସିକ କଟକ ସହରର ମଧ୍ୟଭାଗରେ ଅବସ୍ଥିତ ଏହି ଷ୍ଟିଓ୍ୱାର୍ଟ ବିଜ୍ଞାନ ମହାବିଦ୍ୟାଳୟ ୧୯୪୪ ମସିହା ଜୁଲାଇ ମାସରେ ଧର୍ମାଧ୍ୟକ୍ଷ ରେଭରେଣ୍ଡ ଡ଼. ଟି. ରବର୍ଟସଙ୍କ ଆନ୍ତରିକ ଉଦ୍ୟମରେ ପ୍ରତିଷ୍ଠିତ । ଲଣ୍ଡନସ୍ଥିତ ବାପ୍ଟିଷ୍ଟ ମିସନାରୀ ସୋସାଇଟିର ଆନୁକୂଲ୍ୟରେ ସର୍ବପ୍ରଥମେ ରେଭରେଣ୍ଡ ରବର୍ଟସଙ୍କ ଅଧ୍ୟକ୍ଷତାରେ କେବଳ ଆଇ. ଏସ୍. ସି. ଶ୍ରେଣୀର ଆରମ୍ଭ ହୋଇଥିଲା । ଏହାର ଅଳ୍ପ ଶ୍ରେଣୀଗୃହ ଥିବାରୁ ଏହା ପ୍ରଥମେ ଷ୍ଟିଓ୍ୱାର୍ଟ ସ୍କୁଲ ଗୃହରେ ଚାଲୁଥିଲା । ପରେ ପରେ ବାମ୍ଫିଲ୍ଡ ସାହେବଙ୍କ ଅମଳରେ କଲେଜର ସର୍ବାଙ୍ଗୀନ ଉନ୍ନତି ସାଧିତ ହୋଇଥିଲା । କଲେଜର ଛାତ୍ରସଂଖ୍ୟା ସୀମିତ ହେଲେ ମଧ୍ୟ ଏହା ସେ ସମୟଠାରୁ ଆଜି ପର୍ଯ୍ୟନ୍ତ ଏକ ଆଦର୍ଶ କଲେଜ ଭାବରେ ନିଜର ଟେକ ରଖିଆସିଛି । ୧୯୫୯ ମସିହାରେ ଏ ମହାବିଦ୍ୟାଳୟ ସ୍କୁଲଠାରୁ ଅଲଗା ହୋଇ ସ୍ୱାଧୀନ ଭବନରେ ଏକ ମନୋରମ ଅଟ୍ଟାଳିକା ଆରମ୍ଭ ହୋଇଥିଲା । ୧୯୬୦ ମସିହାରେ ଏହା ଏକ ପୂର୍ଣ୍ଣାଙ୍ଗ ବିଜ୍ଞାନ ମହାବିଦ୍ୟାଳୟ ଭାବେ ପ୍ରତିଷ୍ଠିତ ହୋଇ ପାରିଥିଲା ।

ଏହି କଲେଜର ବିଶେଷତ୍ୱ ହେଉଛି ଏହା ଓଡ଼ିଶାର ଏକମାତ୍ର ବିଜ୍ଞାନ ମହାବିଦ୍ୟାଳୟ । ଏହାର ଛାତ୍ରଛାତ୍ରୀ ସଂଖ୍ୟା ପ୍ରାୟ ଏକହଜାର । ପାଠ୍ୟକ୍ରମ ଓ ପାଠ୍ୟକ୍ରମ ବହିର୍ଭୂତ ଅନ୍ୟାନ୍ୟ ଦିଗରେ ମଧ୍ୟ ଏ ମହାବିଦ୍ୟାଳୟ ବହୁ ସୁନାମ ଅର୍ଜନ କରି ଆସିଅଛି । ଏଠି ଛାତ୍ର ଓ ଶିକ୍ଷକମାନଙ୍କ ମଧ୍ୟରେ ସୁସମ୍ପର୍କ ରହିଆସିଛି ଏବଂ ପରୀକ୍ଷା ଫଳ ଦୃଷ୍ଟିରୁ ମଧ୍ୟ ଏହା ଉତ୍କଳ ବିଶ୍ୱବିଦ୍ୟାଳୟରେ ଓ ମାଧ୍ୟମିକ ଶିକ୍ଷା ପରିଷଦରେ ଏକ ବିଶିଷ୍ଟ କଲେଜ ଭାବରେ ପରିଗଣିତ ହୋଇ ପାରିଛି ।

ଇଂଲଣ୍ଡସ୍ଥ ବାପ୍ଟିଷ୍ଟ ମିଶନ ସୋସାଇଟି ଇତିମଧ୍ୟରେ କଲେଜର ମାଲିକାନା-ସ୍ୱତ୍ୱ ଚର୍ଚ୍ଚ ଅଫ୍ ନର୍ଥ ଇଣ୍ଡିଆକୁ ହସ୍ତାନ୍ତର କରିଛନ୍ତି । କଟକ ଡାୟୋସିସ୍ ଉପରୋକ୍ତ ସଂସ୍ଥା ତରଫରୁ ଏହାର ପରିଚାଳନା ଦାୟିତ୍ୱରେ ଅଛନ୍ତି । କଲେଜର ପରିଚାଳନା ସମିତି ନିୟମାନୁଯାୟୀ ଗଠିତ ହୁଏ । ବିଶପ୍ ଧୀରେନ୍ଦ୍ର କୁମାର ମହାନ୍ତି ପରିଚାଳନା ସମିତିର ସଭାପତି ଏବଂ ଷ୍ଟିଓ୍ୱାର୍ଟ ସ୍କୁଲ ଅଧ୍ୟକ୍ଷ ଶ୍ରୀ ଅଶୋକ କୁମାର ପାତ୍ର ସମ୍ପାଦକ ଭାବରେ ଅଛନ୍ତି ।



# ସନତନକନୀ ଗାର୍ଲସ ହାଇସ୍କୁଲ

ଶ୍ରୀ ରାଧାମୋହନ ସାହୁ

ସେଲ୍‌ଟର ଇଂରାଜୀ ଶବ୍ଦର ଆକ୍ଷରିକ ଅର୍ଥ ହେଲା—ଆଶ୍ରୟ । ଆଶ୍ରୟ ଦେଉଥିବା ବ୍ୟକ୍ତି ବା ଅନୁଷ୍ଠାନ ସମାଜରେ ସଦା ସମ୍ମାନିତ ହୁଏ । ଆଶ୍ରୟ ଦାନ ଏକ ମହତ୍ ଦାନ ।

୧୯୦୫ ମସିହା । ଓଡ଼ିଶାର ରାଜନୈତିକ, ସାମାଜିକ ତଥା ସାଂସ୍କୃତିକ ଜୀବନ ବିପର୍ଯ୍ୟସ୍ତ । ଇଂରେଜ ସରକାରର ରାଜତ୍ୱ । ସାଂସ୍କୃତିକ ଜୀବନର ସରସତା କିଛି ନଥିଲା କହିଲେ ଚଳେ । ଆଉ ସାମାଜିକ ! ସମାଜରେ ଅନ୍ଧ କୁସଂସ୍କାରର ହୀନମନ୍ୟତା । ନାରୀଶିକ୍ଷାର ପ୍ରସାର ତ ଦୂରର କଥା ; ସାଧାରଣ ଶିକ୍ଷାକ୍ଷେତ୍ରରେ ମଧ୍ୟ ଜନଚେତନାର ବହୁ ଅଭାବ ରହିଥିଲା । ଏହିପରି ଏକ ସନ୍ଧିସନ୍ଧ ବେଳାରେ ପାଶ୍ଚାତ୍ୟ ଶିକ୍ଷାରେ ଉଦ୍‌ବୁଦ୍ଧ ହୋଇ କଲିକତାର ଏକ ମିଶନାରୀ ଦଳ କଟକ ଆଗମନ କରିଥିଲେ ଅନେକ ଆଶା ଓ ଆଲୋକ ସ୍ଥାପନାର ଦୃଢ଼ ମନୋଭାବ ନେଇ । ସେମାନଙ୍କର ଲକ୍ଷ୍ୟ ଥିଲା ସମାଜରେ ଅବହେଳିତ, ନିରାଶ୍ରୟ, ପିତୃମାତୃହୀନ ବାଳକ ବାଳିକାଙ୍କୁ ଆଶ୍ରୟ ଦେବା । ତାଙ୍କର ନୀରସ, ଶୁଷ୍କ ମନରେ ହସର ଫୁଲ ଫୁଟାଇବା ।

ତତ୍କାଳୀନ କଟକ ସହରର ପଶ୍ଚିମାଞ୍ଚଳ ଅର୍ଥାତ୍ କନିକା ରାଜବାଟୀ, ସତି-ଚଉରା, ତେଲିଙ୍ଗା ସାହି, ସିଦ୍ଧେଶ୍ୱର ସାହିର ପରିବେଷ୍ଟନୀ ଏକ ଜନମାନବଶୂନ୍ୟ ବଣ-ଜଙ୍ଗଲରେ ପୂର୍ଣ୍ଣ ଖୋଲା ସ୍ଥାନରେ ଅନୁଷ୍ଠାନଟିଏ ସ୍ଥାପନ କରିଥିଲେ । ତାର ନାମ ଦେଇଥିଲେ—ସେଲ୍‌ଟର । ଏହି ଅନୁଷ୍ଠାନକୁ କ୍ରମେ କ୍ରମେ ବହୁ ନିରାଶ୍ରୟା ପିତୃମାତୃହୀନ ବାଳକ ବାଳିକାମାନେ ଆଶ୍ରୟ ଆଶାରେ ଆସିଲେ । ଖାଦ୍ୟ, ବାସ, ବସନର ଅଭାବରେ ସେମାନଙ୍କର ମନ ମରିଯାଇଥିଲା । ଏହି ମିଶନାରୀର ସେବକା-ମାନଙ୍କ ସ୍ନେହ, ଶ୍ରଦ୍ଧା, ମମତା ଓ ଆଶ୍ରୟରେ ସେମାନେ ଯେପରି ନୂତନ ଜୀବନ ଫେରି ପାଇଥିଲେ । ଧୀରେ ଧୀରେ ଆଶ୍ରୟ ନେଉଥିବା ପିଲାମାନଙ୍କର ସଂଖ୍ୟା ବଢ଼ିବାରେ ଲାଗିଲା ଏବଂ ତାଙ୍କର ଭରଣପୋଷଣ ଏବଂ ସ୍ୱାସ୍ଥ୍ୟର ଯତ୍ନ ନେବା ସଙ୍ଗେ ସଙ୍ଗେ ପ୍ରାଥମିକ ଶିକ୍ଷାଦାନର ସୃଷ୍ଟି ହେଲା ।

କଲିକତାରୁ ଆସିଥିବା ଏହି ମିଶନାରୀ ଦଳର ନେତୃତ୍ୱ ନେଇଥିଲେ ଏକ ବଙ୍ଗୀୟ ଖ୍ରୀଷ୍ଟୀୟ ପରିବାରର ଦୁଇ ଭଗ୍ନୀ—ସନତ୍ ମଣ୍ଡଳ ଓ ନଳିନୀ ମଣ୍ଡଳ । ସେମାନେ ଅବିବାହିତା ଥିଲେ । ତାଙ୍କର ହୃଦୟର ଭାଷା ଥିଲା—Service to mankind is service to God ତାଙ୍କର ଅଦମ୍ୟ ତ୍ୟାଗ, ଦୃଢ଼ମନା, ସ୍ନେହଭରା କଥା ଏବଂ ନିଃସ୍ୱାର୍ଥ ସେବାରେ ଅନୁଷ୍ଠାନଟି ସମାଜର ସବୁ ଶ୍ରେଣୀର ଲୋକଙ୍କଠାରୁ ଉତ୍ସାହ ଓ ପ୍ରେରଣା ପାଇପାରି ଥିଲେ । ସ୍ୱର୍ଣ୍ଣାକ୍ଷରରେ ସତେ ଯେପରି ଲିପିବଦ୍ଧ ହୋଇଗଲା ଦୁଇ ଭଉଣୀଙ୍କ ନାମ ସନତ୍ ଓ ନଳିନୀ ।

ସମୟାନୁକ୍ରମେ ନାମିତ ସେଇ ସେଲଟର ପ୍ରାଥମିକ ସ୍କୁଲଟି ୧୯୫୧ ମସିହା ବେଳକୁ ତାର କଳେବର ବୃଦ୍ଧି କରି ହାଇସ୍କୁଲର ସୌଭାଗ୍ୟ ଲାଭକଲା । ଏହି ସ୍କୁଲଟିର ନାମ ରଖାଗଲା—ସନତନଳିନୀ ଗାର୍ଲସ ହାଇସ୍କୁଲ । ଜନମୁଖରେ ସ୍କୁଲ ପାଖ ଛକଟିକୁ ସେଲଟର ଛକ ନାମରେ ନାମିତ ହୋଇ ରହି ଆସୁଅଛି । ୧୯୫୪ ମସିହାରେ ଏହି ସ୍କୁଲଟି ସରକାରୀ ସ୍ୱୀକୃତି ଲାଭ କରିଥିଲା ।

ଘନ ଜନବସତି, ସରକାରୀ ରାସ୍ତା, ହାଟ ବଜାରରେ ପରିପୂର୍ଣ୍ଣ—ଏକ ପାର୍ଶ୍ୱରେ ନିର୍ମିତ ହୋଇଛି ଆଜିର ଦ୍ୱିତଳବିଶିଷ୍ଟ ହାଇସ୍କୁଲଟିର ବାସଗୃହ । ତାର ଗୃହ-ପାଖରେ ରହିଛି କିଛି କିଛି ସମତଳ ଭୂଇଁ । ନାନା ପ୍ରକାରର ବୃକ୍ଷରାଜିରେ ଶୋଭିତ ପରିସର ମଧ୍ୟରେ ରହିଛି ଏକ ଛାତ୍ରୀନିବାସ । ଏକ ପରିଚାଳନା କମିଟି ମାଧ୍ୟମରେ ପରିଚାଳିତ ହୁଏ—ସନତନଳିନୀ ଗାର୍ଲ ହାଇସ୍କୁଲ, ସେଲଟର ପ୍ରାଥମିକ ସରକାରୀ ଅନୁଦାନରେ ଶିକ୍ଷୟିତ୍ରୀମାନଙ୍କ ଦରମା ପୂରଣ ହେଉଥିବା ବେଳେ ସ୍କୁଲର ଅନ୍ୟାନ୍ୟ ଖର୍ଚ୍ଚ ଛାତ୍ରୀମାନଙ୍କ ସାମାନ୍ୟ ଦରମାରେ ଚଳାଇ ନିଆଯାଇଥାଏ । ହଷ୍ଟେଲରେ ରହୁଥିବା ଆଶ୍ରୟହୀନା ଛାତ୍ରୀମାନଙ୍କ ପାଇଁ ବିଦେଶୀ ସାହାଯ୍ୟ ବହୁ ପରିମାଣରେ ଆସିଥାଏ । ଏହି ବିଦ୍ୟାଳୟମାନଙ୍କରେ ସମୁଦାୟ ୮୦୦ ଛାତ୍ରୀ ଥିଲାବେଳେ ହଷ୍ଟେଲରେ ପ୍ରାୟ ୮୦ ଜଣ ଛାତ୍ରୀ ରହିଥାନ୍ତି । ଏହି ନିରାଶ୍ରୟା ଛାତ୍ରୀମାନଙ୍କର ଉପଯୁକ୍ତ ଶିକ୍ଷାଦାନରେ ସେମାନଙ୍କୁ ଉପଯୁକ୍ତ ଅନୁଷ୍ଠାନର ଦାୟିତ୍ୱ ପରିଚାଳନା କମିଟି ବ୍ୟବସ୍ଥା କରିଥାଏ । ବର୍ତ୍ତମାନର ପ୍ରଧାନ ଶିକ୍ଷୟିତ୍ରୀ ଶ୍ରୀମତୀ ଅନୁପମା ସାହୁଙ୍କ ସମେତ ସରକାରୀ ଶିକ୍ଷୟିତ୍ରୀ ଓ ଅଫିସ କର୍ମଚାରୀ ମିଶି ପ୍ରାୟ ୨୫ ଜଣ ।

କଟକ ସହରର ଅନ୍ୟାନ୍ୟ ହାଇସ୍କୁଲ ତୁଳନାରେ ସନତନଳିନୀ ଗାର୍ଲସ ହାଇସ୍କୁଲର ବେଶ ସୁନାମ ରହିଛି । ବାର୍ଷିକ ହାଇସ୍କୁଲ ପରୀକ୍ଷାରେ ଏହି ସ୍କୁଲର ଛାତ୍ରୀମାନେ ବେଶ୍ ସୁନାମର ଅଧିକାରୀ ହୋଇଆନ୍ତି । ଶିକ୍ଷୟିତ୍ରୀମାନଙ୍କ ସ୍ନେହ, ତ୍ୟାଗ ଓ ନିଷ୍ଠା ଯୋଗୁ ଛାତ୍ରୀମାନେ କେବଳ ଶିକ୍ଷାକ୍ଷେତ୍ରରେ ନୁହନ୍ତି—ସାଂସ୍କୃତିକ କ୍ରୀଡ଼ା କ୍ଷେତ୍ରରେ ତଥା ଅନ୍ୟାନ୍ୟ ଜାତୀୟ ଉତ୍ସବମାନଙ୍କରେ ବେଶ ଗୌରବର ଅଧିକାରୀ ହୋଇ ପାରିଛନ୍ତି ଏବଂ ବିଭିନ୍ନ ପ୍ରତିଯୋଗିତାରେ ଭାଗନେଇ ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଛନ୍ତି । କିନ୍ତୁ କ୍ରୀଡ଼ା କ୍ଷେତ୍ରରେ ଏହି ସ୍କୁଲର ଐତିହ୍ୟ ଏକ ସୁବର୍ଣ୍ଣ ସୃଷ୍ଟି ।

ଜାତୀୟ ସ୍ତରରେ ଦୌଡ଼ରାଣୀ ନନ୍ଦିତା ମହାନ୍ତି ଏବଂ ଆନ୍ତର୍ଜାତୀୟ କ୍ଷେତ୍ରରେ ଉଡ଼ନ୍ତା-ରାଣୀ ଉଷା ମିଶ୍ରଙ୍କ ଭାରତୀୟ କ୍ରୀଡ଼ା ଜଗତକୁ ଏକ ମହାନ୍ ଅବଦାନ । ଜାତୀୟ ସ୍ତରରେ ଏବଂ ଆନ୍ତର୍ଜାତୀୟ ସ୍ତରରେ ଏହି ବିଦ୍ୟାଳୟର ଛାତ୍ରୀମାନେ ବହୁ ସୁନାମର ଅଧିକାରୀ ହୋଇ ବିଦ୍ୟାଳୟକୁ ଗୌରବାନ୍ୱିତ କରିଛନ୍ତି ।

ଏହି ବିଦ୍ୟାଳୟକୁ ବିଭିନ୍ନ ସମୟରେ ଦେଶ ବିଦେଶରୁ ବହୁ ମନୀଷୀଗଣ ପରିଦର୍ଶନରେ ଆସିଛନ୍ତି । ବାର୍ଷିକ ପୁରସ୍କାର ବିତରଣ ଉତ୍ସବ, ବାର୍ଷିକ ଛାତ୍ରୀମାନଙ୍କର ବଣଭୋଜି ବା ପରିଭ୍ରମଣର ସୁବିଧା ଯଥା ସମୟରେ ହୋଇଥାଏ । ବିଦ୍ୟାଳୟ ପରିସରରେ ଏକ ପାଠାଗାର ରହିଛି । ଛାତ୍ରୀମାନେ ଏହାର ସୁବିଧା ଓ ସୁଯୋଗ ପାଇ ପାରିଥାନ୍ତି । ବିଦ୍ୟାଳୟର ବାର୍ଷିକ ମୁଖପତ୍ର 'ସନାତନଲକ୍ଷ୍ମୀ' ନାମରେ ପ୍ରକାଶିତ ହୋଇ ଆସୁଅଛି । ଛାତ୍ରୀ ଏବଂ ଶିକ୍ଷୟିତ୍ରୀମାନଙ୍କ ଭାବପୂର୍ଣ୍ଣ, ଉପଦେଶାତ୍ମକ ଗଳ୍ପ, କବିତା, ପ୍ରବନ୍ଧ ଏବଂ ରମ୍ୟରଚନାରେ ଭରପୂର୍ଣ୍ଣ ଏହି ମାଗାଜିନ୍‌ଟି ବେଶ୍ ମନୋମୁଗ୍ଧକର ।

ଓଡ଼ିଶାର ଅନ୍ୟ ଏକ ମହିଳା ମହାବିଦ୍ୟାଳୟ **Indira Gandhi Women's College** ତାର ପ୍ରାରମ୍ଭରେ ଏହି ବିଦ୍ୟାଳୟ ଗୃହରେ **Morning College** ଭାବରେ ଆରମ୍ଭ ହୋଇଥିଲା । ନାରୀଶିକ୍ଷାର ପ୍ରସାର ପାଇଁ—ସନାତନଲକ୍ଷ୍ମୀ ଗାର୍ଲସ୍ ହାଇସ୍କୁଲର ପରିଚାଳନା କର୍ତ୍ତୃପକ୍ଷ ଏହି ମହାବିଦ୍ୟାଳୟକୁ ଆଶ୍ରୟ ଦେଇ, ତାର ସୁଦୃଢ଼ ହେବା ପର୍ଯ୍ୟନ୍ତ ଉତ୍ସାହିତ କରିଥିଲେ । ଏହା ଏକ ମହାନୁଭବତାର ପରିଚୟ ଦେଇଥାଏ । ୧୯୮୮ ମସିହାରେ ଏହି କଲେଜଟି ତାର ସ୍ୱଗୃହକୁ ସ୍ଥାନାନ୍ତରିତ ହୋଇ ଯାଇଅଛି ।

ଛାତ୍ରୀମାନଙ୍କୁ ଗୋଟିଏ ଉପଯୁକ୍ତ ଛାତ୍ରୀ, ଉତ୍ତମ ନାଗରିକ, ଗୋଟିଏ ସୁଗୃହିଣୀ, ଆଦର୍ଶଭିତ୍ତି ଉପଯୁକ୍ତ କନ୍ୟା ରୂପେ ଗଢ଼ିବାରେ ଶିକ୍ଷୟିତ୍ରୀମାନେ ସତତ ଯେପରି ସତ୍ୟ, ଧର୍ମ, ନ୍ୟାୟ, ତ୍ୟାଗ, ନିଷ୍ଠା ଏବଂ ସେବାକୁ ତାଙ୍କର ଅଳଙ୍କାର ରୂପେ ବାଛି ନେଇଛନ୍ତି । ତେଣୁ ପ୍ରତିବର୍ଷ ଶିକ୍ଷାବର୍ଷ ଆରମ୍ଭରୁ ପିତାମାତାମାନେ ତାଙ୍କ କନ୍ୟାଟିକୁ କିପରି ଏହି ମହାନ୍ ବିଦ୍ୟାଳୟରେ ଛାତ୍ରୀ ରୂପେ ପ୍ରବେଶ କରାଇ ତାର ଭବିଷ୍ୟତ ଉଜ୍ଜଳ କରାଇ ପାରିବେ, ଆଶ୍ରୟ ଆଶାରେ ଉପସ୍ଥିତ ହୋଇଥାନ୍ତି । କାରଣ ଦୁଇଅନ୍ତ ନାହିଁ ।

●

# ଆଧୁନିକ ଶିକ୍ଷାର ଦୀପ୍ତିସ୍ତମ୍ଭ
# ଖ୍ରୀଷ୍ଟ ମହାବିଦ୍ୟାଳୟ

ଶ୍ରୀ ମୃତ୍ୟୁଞ୍ଜୟ ନାୟକ

ଓଡ଼ିଶାର ପୁରାତନ ରାଜଧାନୀ ଶିକ୍ଷା ଓ ସଂସ୍କୃତିର ପ୍ରାଣକେନ୍ଦ୍ର କଟକ ନଗରୀ କ୍ରମେ ଉଚ୍ଚତର ଶିକ୍ଷା ବିକାଶ ନିମନ୍ତେ ସଜାଗ ହୋଇ ଉଠିଥିଲା । କଟକରେ ଆଧୁନିକ ଶିକ୍ଷା ବିସ୍ତାରରେ ଗୁର୍ଲସ ଲେସି, ଆମସ୍ ସଟନ, ଲର୍ଡ କ୍ୟାମ୍ପବେଲ, ରେଭେନ୍‌ସା ସାହେବ, ବାରିଷ୍ଟର ମଧୁସୂଦନ ଦାସ, ପ୍ୟାରୀମୋହନ ଆଚାର୍ଯ୍ୟ, ମଧୁସୂଦନ ରାଓ ପ୍ରଭୃତିଙ୍କ ଅବଦାନ ଭୁଲିବାର ନୁହେଁ । ଓଡ଼ିଶାରେ ଆଧୁନିକ ଶିକ୍ଷା ବିସ୍ତାରରେ ସରକାରଙ୍କ ସାହାଯ୍ୟ ବ୍ୟତୀତ ରାଜା-ମହାରାଜା, ଜମିଦାର ତଥା ବଦାନ୍ୟ ବ୍ୟକ୍ତି—ବୃନ୍ଦଙ୍କ ସାହାଯ୍ୟ ଓ ସହାନୁଭୂତି ଯଥେଷ୍ଟ ସହାୟକ ହୋଇଅଛି ।

୧୮୪୧ରେ ପ୍ରତିଷ୍ଠିତ କଟକ ଜିଲ୍ଲା ସ୍କୁଲ ବା ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଆରମ୍ଭ ହୋଇଥିବା କଲେଜଟି ୧୮୬୮ ମସିହାରେ ଓଡ଼ିଶାର ସର୍ବବୃହତ ଅନୁଷ୍ଠାନ ରେଭେନ୍‌ସା କଲେଜରେ ପରିଣତ ହୋଇଥିଲା । ଏହି ଅନୁଷ୍ଠାନଟି ଉଭୟ ସରକାରୀ ଓ ବେସରକାରୀ ସାହାଯ୍ୟରେ ମଣ୍ଡିତ ହୋଇଅଛି । ୧୯୧୩ ମସିହାରେ ଶୈଳବାଳା ମହିଳା କଲେଜ, ୧୯୨୩ରେ ରାଧାନାଥ ଟ୍ରେନିଂ କଲେଜ, ୧୯୪୦ ମସିହାରେ ମଧୁସୂଦନ ଆଇନ୍ କଲେଜ, ୧୯୪୪ ମସିହାରେ ଉତ୍କଳ ଖ୍ରୀଷ୍ଟିୟାନ କଲେଜ, ଷ୍ଟୁଆର୍ଟ ସାଇନ୍‌ସ କଲେଜ, ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ପ୍ରଭୃତି ସ୍ଥାପିତ ହୋଇଥିଲା ।

କଟକ ସହର ବ୍ୟତୀତ ଓଡ଼ିଶାରେ ୧୮୭୮ ମସିହାରେ ଖଲିକୋଟ କଲେଜ, ୧୮୮୬ ମସିହାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି କଲେଜ, ପାରଳାଖେମୁଣ୍ଡି, ଓଡ଼ିଶାର ସାମନ୍ତ ଚନ୍ଦ୍ରଶେଖର କଲେଜ ପୁରୀ, ଫକୀରମୋହନ କଲେଜ ବାଲେଶ୍ୱର, ଗଙ୍ଗାଧର ମେହେର କଲେଜ ସମ୍ବଲପୁର, ରାଜେନ୍ଦ୍ର କଲେଜ ବଲାଙ୍ଗୀର ପ୍ରଭୃତି ପ୍ରତିଷ୍ଠିତ ହୋଇ ସାରିଥିଲା ।

୧୯୩୬ ମସିହାରେ ସ୍ଵତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଅବକାଶରେ ପ୍ରଥମ ପ୍ରଧାନମନ୍ତ୍ରୀ ବିଶ୍ଵନାଥ ଦାସଙ୍କ ନେତୃତ୍ଵରେ ୧୯୩୭-୩୮ ମସିହାରେ ଏକ ଶିକ୍ଷାକମିଟି ଗଠିତ ହୋଇ ଓଡ଼ିଶାରେ ଏକ ବିଶ୍ଵବିଦ୍ୟାଳୟ ପ୍ରତିଷ୍ଠା ସହ ଉଚ୍ଚଶିକ୍ଷା ବିସ୍ତାରର ପରିକଳ୍ପନା କରାଯାଇଥିଲା । ୧୯୪୩ ମସିହାରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରଧାନମନ୍ତ୍ରିତ୍ଵ ବେଳେ ମନ୍ତ୍ରିମଣ୍ଡଳ ସୁପାରିଶକ୍ରମେ ତା ୨୭ । ୧୧ । ୧୯୪୩, ଦିନ 'ଉତ୍କଳ ବିଶ୍ଵବିଦ୍ୟାଳୟ' ସ୍ଥାପିତ ହେଲା । ଏହି ସମୟରେ ମାତ୍ର ୧୨ ଗୋଟି କଲେଜ ଓଡ଼ିଶାରେ ଥିଲା ।

## ଖ୍ରୀଷ୍ଟ ମହାବିଦ୍ୟାଳୟର ଜନ୍ମ-ଜାତକ :

ଉତ୍କଳ ବିଶ୍ଵବିଦ୍ୟାଳୟ ସ୍ଥାପିତ ହୋଇଚିବାପରେ ସମଗ୍ର ଉତ୍କଳରେ ଉଚ୍ଚତର ଶିକ୍ଷାନୁଷ୍ଠାନ ଗଠନ ନିମିତ୍ତ ଚତୁର୍ଦ୍ଦିଗରୁ ଉତ୍ସାହ ଓ ଉଦ୍ଦୀପନା ପ୍ରକାଶ ପାଇବାରେ ଲାଗିଲା । ତା ১୪ । ୨ । ୧୯୪୩ 'କଟକ ଖ୍ରୀଷ୍ଟିୟାନ ଏଜୁକେଶନ ବୋର୍ଡ'ର ସାଧାରଣ ପରିଷଦ ସଭା ମିଶନ ସ୍କୁଲରେ ସଭା କରି ଏକ କଲେଜ ଖୋଲିବାର ଯୋଜନା ହାତକୁ ନେଲେ । ଅନୁଷ୍ଠାନ ପାଇଁ ଜନସାଧାରଣଙ୍କଠାରୁ ଟଙ୍କା ଗୃନ୍ଦା ଉଠାଇବା ପାଇଁ "ଖ୍ରୀଷ୍ଟିୟାନ ବୋର୍ଡ କଲେଜ ଫଣ୍ଡ" ଗଠନ କରାଗଲା ।

କଲେଜ ପରିଚାଳନା ନିମିତ୍ତ ଏକ ସବ୍‌କମିଟି ଓ କାମଚଲା ପରିଚାଳନା ବୋର୍ଡ ଗଠିତ ହେଲା । ଏଥିରେ ରେଭେରେଣ୍ଡ ବ୍ରଜାନନ୍ଦ ମହାନ୍ତି, ରେଭେରେଣ୍ଡ ବେଞ୍ଜାମିନ ପ୍ରଧାନ, ରେଭେରେଣ୍ଡ ବ୍ରଜାନନ୍ଦ ଦାସ, ମିଶନ ସ୍କୁଲର ହେଡ୍‌ମାଷ୍ଟର ରଜନୀ ଲାଲ ରାୟ, ପ୍ରଫେସର ବିପିନବିହାରୀ ରାୟ, ପ୍ରଫେସର ବାମାଚରଣ ଦାସ, ପ୍ରଫେସର ଗୁରୁଚରଣ ମହାନ୍ତି, ମିସ୍ ଇରେନ୍ ଲୀନା ଖାନ, ଓ କାର୍ଯ୍ୟଚଳା ସମ୍ପାଦକ ତଥା କୋଷାଧ୍ୟକ୍ଷ ଭାବେ ପ୍ରଫେସର ଯୋନାଥନ୍ ମହାନ୍ତି ନିର୍ବାଚିତ ହୋଇଥିଲେ । ଏତଦ୍‌ବ୍ୟତୀତ ସ୍ଵତନ୍ତ୍ର ପ୍ରତିନିଧି ଭାବେ ଡଃ ଆର୍ତ୍ତବଲ୍ଲଭ ମହାନ୍ତି, କମିଶନର ସାମୁଏଲ ଦାସ ଓ ନରେନ୍ଦ୍ର କୁମାର ପାତ୍ର ଯୋଗଦାନ ଦେଇଥିଲେ ।

ପୂର୍ବର କଟକ ୟୁରୋପିଆନ ମିଶନ ସ୍କୁଲ ଖ୍ରୀଷ୍ଟ କଲିଜଏଟ୍ ସ୍କୁଲ ଗୃହରେ ୧୯୪୩ ମସିହା ଜୁଲାଇ ମାସରେ ଆଇ.ଏ. ଶ୍ରେଣୀର ଶୁଭାରମ୍ଭ ହେଲା । ସମଗ୍ର ଉତ୍ତର ପୂର୍ବ ଓଡ଼ିଶାର ପ୍ରଥମ ଘରୋଇ କଲେଜ ଭାବେ ଉତ୍କଳ ଖ୍ରୀଷ୍ଟିୟାନ କଲେଜ ପ୍ରତିଷ୍ଠା ଲାଭ କରି ଆଧୁନିକ ଶିକ୍ଷା ଜଗତରେ ନୂତନ ଦିଗନ୍ତର ସନ୍ଧାନ ଦେଲା । ମିଶନ ସ୍କୁଲରେ ଅଧିକ ପାଞ୍ଚଗୋଟି ଶ୍ରେଣୀକକ୍ଷ, ଡେସ୍କ, ବେଞ୍ଚ ଓ ଅନ୍ୟାନ୍ୟ ସରଞ୍ଜାମ ନିମିତ୍ତ ପ୍ରଥମେ ୧୨୦୦୦ ଟଙ୍କାର ଗୃନ୍ଦା ଆଦାୟ କରାଗଲା । ଏଥିରେ ଜାତି, ଧର୍ମ ନିର୍ବିଶେଷରେ ସମସ୍ତ ଶିକ୍ଷାପ୍ରେମୀ ବଦାନ୍ୟ ବ୍ୟକ୍ତିବୃନ୍ଦ ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ କରିଥିଲେ ।

୧୯୪୪ ମସିହାରେ ଏହି ଦୁଇ ବର୍ଷିଆ ଆଇ.ଏ. ଶ୍ରେଣୀବିଶିଷ୍ଟ କଲେଜଟି ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା ମଞ୍ଜୁରିପ୍ରାପ୍ତ ହୋଇଥିଲା । ୧୯୪୬ ମସିହାରେ ବି.ଏ. ଶ୍ରେଣୀ ସଂଯୁକ୍ତ ହେବା ଫଳରେ ଏହା ପୂର୍ଣ୍ଣାଙ୍ଗ ସ୍ନାତକ କଲେଜରେ ପରିଣତ ହେଲା । ସୁଖର ବିଷୟ ଏହି ଶିକ୍ଷାବର୍ଷରେ ଓଡ଼ିଆ ଓ ଇଂରାଜୀ ବିଭାଗରେ ଅନର୍ସ ଶ୍ରେଣୀ ଖୋଲିଗଲା । ୧୯୪୯ ମସିହାରେ ପ୍ରେମର ଅବତାର ପ୍ରଭୁ ଯିଶୁଖ୍ରୀଷ୍ଟଙ୍କ ନାମାନୁସାରେ ଏହି କଲେଜର ନାମକରଣ କରାଯାଇ 'ଖ୍ରୀଷ୍ଟ ମହାବିଦ୍ୟାଳୟ' ନାମ ଦିଆଗଲା । ପ୍ରବୀଣ ଇଂରାଜୀ ଅଧ୍ୟାପକ, ଦେବପ୍ରତିମ ସୁଶାସକ ରେଭେରେଣ୍ଡ ବ୍ରଜାନନ୍ଦ ମହାନ୍ତି ଖ୍ରୀଷ୍ଟ କଲେଜରେ ୧୯୪୪-୧୯୬୨ ମସିହା ପର୍ଯ୍ୟନ୍ତ ଅଧ୍ୟକ୍ଷ ଦାୟିତ୍ୱ ନେଇ ଉଚ୍ଚକୋଟୀର ଶିକ୍ଷାଦାନ ଶୃଙ୍ଖଳାଜ୍ଞାନ ଓ ନୈତିକ ଆଦର୍ଶ ରକ୍ଷା ଫଳରେ ସୁନାମ ଓ ଖ୍ୟାତି ଓଡ଼ିଶାସାରା ବ୍ୟାପ୍ତ ହୋଇ ପଡ଼ିଥିଲା ।

ଖ୍ରୀଷ୍ଟ କଲେଜର ଗଠନ ଅବକାଶରେ ବିଦ୍ୱ ବିଜ୍ଞ, ଦେଶସେବୀ ଓ ଶିକ୍ଷାବିତ୍‌ଙ୍କୁ ନେଇ ଏକ ୧୫ ଜଣିଆ ପରିଚାଳନା ବୋର୍ଡ଼ ଗଠିତ ହୋଇଥିଲା । ପରିଚାଳନା ବୋର୍ଡ଼ର ନିୟମ ଓ ସର୍ତ୍ତ ଅନୁଯାୟୀ କଟକ ଖ୍ରୀଷ୍ଟିୟାନ ବୋର୍ଡ଼ରୁ ପାଞ୍ଚ ଜଣ, ଜଣେ ମହିଳା, ଉଚ୍ଚଶିକ୍ଷା ନିର୍ଦ୍ଦେଶକଙ୍କ ମନୋନୀତ ପ୍ରାର୍ଥୀ ଭାବେ ଜଣେ ମୁସଲମାନ କିମ୍ବା ଅନଗ୍ରସରଶ୍ରେଣୀର ବ୍ୟକ୍ତି ତଥା ନ୍ୟାସନାଲ ଖ୍ରୀଷ୍ଟିୟାନ କାଉନସିଲର ଜନୈକ ପ୍ରତିନିଧି, ପ୍ରେସିଡେଣ୍ଟ, ସେକ୍ରେଟାରୀ ଓ ଅଧ୍ୟକ୍ଷଙ୍କୁ ନେଇ ଏହି ସମିତି ଗଠିତ ହୋଇଥିଲା । ପରିଚାଳନା ବୋର୍ଡ଼ରେ ଅଣ୍ଟାଚରେ କମିଶନର ରାୟବାହାଦୁର ସାମୁଏଲ ଦାସ, ଓଡ଼ିଶା ବିଧାନସଭାର ବାଚସ୍ପତି ଲାଲମୋହନ ପଟ୍ଟନାୟକ, ପ୍ରଫେସର ବାମାଚରଣ ଦାସ, ପ୍ରଫେସର ଡ଼ଃ ଆର୍ତ୍ତବଲ୍ଲଭ ମହାନ୍ତି, ପ୍ରଫେସର ରତ୍ନାକର ପତି, ପ୍ରଫେସର ଗୁରୁଚରଣ ମହାନ୍ତି, ଷ୍ଟୁଆର୍ଟ କଲେଜର ପ୍ରିନସପାଲ ଡ଼ି. ଟି. ରବର୍ଟସ, ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଶ୍ୟାମସୁନ୍ଦର ମିଶ୍ର, ରାଧାନାଥ ରଥ, କର୍ଣ୍ଣେଲ ଚନ୍ଦ୍ର ନାରାୟଣ ଭଞ୍ଜଦେଓ, ଇ.ଵି. ସାମୁଏଲ, କର୍ଣ୍ଣେଲ ଏସ. କେ. ରାୟ, ଡ଼ଃ ଆର୍. ଏନ୍. ମିଶ୍ର, ମୌଲନା ଓ୍ୱାଇ. ୟୁସୁଫ, ପ୍ରଫେସର ବାମାଚରଣ ଦାସଙ୍କ ସ୍ତ୍ରୀ ପୁଣ୍ୟପ୍ରଭା ଦେବୀ, ଜଷ୍ଟିସ ବୀରକିଶୋର ରାୟଙ୍କ ସ୍ତ୍ରୀ ଲତିକା ଦେବୀ, ପ୍ରଫେସର ପି. ଏସ. ସୁନ୍ଦରମ୍‌ଙ୍କ ସ୍ତ୍ରୀ ଓ ପ୍ରଫେସର ବିପିନ ବିହାରୀ ରାୟ ପ୍ରମୁଖ ଥିଲେ ।

ସଭ୍ୟ, ସୁସଂସ୍କୃତ, ସୁନାଗରିକ ଭବିଷ୍ୟତ ବଂଶଧରଙ୍କୁ ଗଠନ କରିବା ନିମିତ୍ତ କଲେଜର ଅବଦାନ ଅବିସ୍ମରଣୀୟ ଥିଲା । ଏହି କଲେଜଟି ମୁଖ୍ୟତଃ ସନ୍ଧ୍ୟାକାଳୀନ (ମର୍ଣ୍ଣିଂ କଲେଜ) ହେଉଥିବାରୁ ବହୁ ସରକାରୀ ଓ ବେସରକାରୀ କର୍ମଚାରୀମାନେ ଏହି ଅନୁଷ୍ଠାନରୁ ଶିକ୍ଷାଲାଭ କରିବାର ସୁଯୋଗ ଲାଭ କରିଥିଲେ । ବହୁବର୍ଷ ଲଗାତର ଭାବେ ଏହି କଲେଜଟି ଇଂରେଜୀ ପରୀକ୍ଷା ଦାନ କେନ୍ଦ୍ର ଭାବେ ରହି ଆସିଥିବାରୁ କେବଳ ଓଡ଼ିଶା ନୁହେଁ, ସମଗ୍ର ଭାରତବର୍ଷ, ଏପରିକି ସୁଦୂର ସିଂହଳ, ଇଣ୍ଡୋନେସିଆ ଏବଂ ଆଣ୍ଡାମାନ ନିକୋବର ଦ୍ୱୀପପୁଞ୍ଜର ଛାତ୍ରମାନେ ମଧ୍ୟ କୃତକାର୍ଯ୍ୟ ହେବାର

ସୁଯୋଗ ଲାଭ କରୁଥିଲେ । ଏହି ଦୃଷ୍ଟିରୁ ଆଧୁନିକ ଶିକ୍ଷା ବିସ୍ତାରରେ ଅନୁଷ୍ଠାନର ଅବଦାନକୁ ସମସ୍ତେ ମୁକ୍ତକଣ୍ଠରେ ସ୍ୱୀକାର କରୁଥିବେ ।

ଏହି ଅନୁଷ୍ଠାନରୁ ଉତ୍ତୀର୍ଣ୍ଣ ହୋଇ ଦେଶ ବିଦେଶରେ ପ୍ରଶାସନ, ଶିକ୍ଷା, ସାହିତ୍ୟ କ୍ଷେତ୍ରରେ ସୁନାମ ଅର୍ଜନ କରିଥିବା ପୁରାତନ ଛାତ୍ରମାନଙ୍କୁ ଏହି ଅବସରରେ ସ୍ମରଣ କରିଯାଇପାରେ । ସେମାନେ ହେଲେ ପ୍ରଖ୍ୟାତ କବି ଶ୍ରୀ ରାଧାମୋହନ ଗଡ଼ନାୟକ, ନାଟ୍ୟକାର ଶ୍ରୀ ଭଞ୍ଜକିଶୋର ପଟ୍ଟନାୟକ, ଡଃ ରତ୍ନାକର ଚଇନି, କବି ଓ ପ୍ରଶାସକ ଜଗନ୍ନାଥ ପ୍ରସାଦ ଦାସ, ଚନ୍ଦ୍ରଧର ମିଶ୍ର, (ଡାଇରେକ୍ଟର ବ୍ୟୁରୋ ଅଫ୍ ଷ୍ଟାଟିଷ୍ଟିକ୍ସ) ଔପନ୍ୟାସିକ ଡଃ ବିଭୂତି ପଟ୍ଟନାୟକ, ନରସିଂହ ସାହୁ, ଭାଷାବିତ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ, ଡଃ ବାସୁଦେବ ସାହୁ, କବି ଡଃ ସୌଭାଗ୍ୟକୁମାର ମିଶ୍ର, ଦୀପକ ମିଶ୍ର, ପ୍ରାବନ୍ଧିକ ଓ ସମାଲୋଚକ ଡଃ ଶ୍ରୀନିବାସ ମିଶ୍ର, ଅସିତ୍ କବି, ଡଃ ବୈଷ୍ଣବଚରଣ ସାମଲ, ଗାଳ୍ପିକ ରବିନାରାୟଣ ବରାଳ, ଡଃ ରବି ନାୟକ, ଜଷ୍ଟିସ ଅରିଜିତ ପଶାୟତ, ମନ୍ତ୍ରୀ ତଥା ବିଧାୟକ କାଳନ୍ଦୀ ବେହେରା, ନଳିନୀକାନ୍ତ ମହାନ୍ତି, ଶରତ ରାଉତ, ପଞ୍ଚାନନ କାନୁନ୍‌ଗୋ ମୁସ୍ତାଫିଜ ଅହମ୍ମଦ, ପୋଲିସ ଅଫିସର ଫେଦା ରସୁଲ, ଶୁଭେନ୍ଦୁ ପାନି ପ୍ରମୁଖ ଅନେକ । କେବଳ ଶିକ୍ଷା, ସାହିତ୍ୟ କ୍ଷେତ୍ରରେ ନୁହେଁ ବହୁ ଗଣ୍ୟମାନ୍ୟ, ଖେଳାଳି ଏହି ଅନୁଷ୍ଠାନର ଗୌରବକୁ ଭାରତ ବିଦିତ କରି ସାରିଛନ୍ତି ।

୧୯୪୪-୧୯୫୦ ପର୍ଯ୍ୟନ୍ତ ମିଶନ ସ୍କୁଲରେ ପ୍ରଥମେ କଲେଜଟି ଅବସ୍ଥାପିତ ଥିଲା । ତତ୍ପରେ ୧୯୫୧ ମସିହାରେ ରୋମାନ୍ କାଥଲିକ ଚର୍ଚ୍ଚ ସଂଲଗ୍ନସ୍ଥ ମାଉଣ୍ଟ ହାଉସ ସ୍ଥଳୀକୁ ନବନିର୍ମିତ କୋଠାଘରକୁ ଖ୍ରୀଷ୍ଟ ମହାବିଦ୍ୟାଳୟଟି ସ୍ଥାନାନ୍ତରିତ ହୋଇଅଛି । ୧୯୪୬ ମସିହାରେ ଚର୍ଚ୍ଚ ଅଫ୍ ଗଡ୍ ଆସୋସିଏସନଠାରୁ ଖ୍ରୀଷ୍ଟିୟାନ ଏଜୁକେଶନ ବୋର୍ଡ଼ ପାଞ୍ଚ ଏକର ଭୂମି କ୍ରୟ କରିଥିଲେ । ୧୯୪୮ ମସିହାରେ କଲେଜ ଗୃହ ନିର୍ମାଣ ପାଇଁ ଓଡ଼ିଶା ସରକାର ୨୬୫, ୩୩୩ ଟଙ୍କା ଦେଇଥିଲେ । ବି. ଏମ: ବିର୍ଲା ୨୧୦,୦୦୦ ଟଙ୍କା ଓ ଆଠମଲ୍ଲିକ ରାଜା କଲେଜ ପାଇଁ କାଠ ଯୋଗାଇଦେବା ପାଇଁ ପ୍ରତିଶ୍ରୁତି ଦେଇଥିଲେ ।

ମିଶନ ସ୍କୁଲଠାରେ କଲେଜ ଚାଲୁଥିବାବେଳେ ହାଇସ୍କୁଲ ଦ୍ୱାରା ପରିଚାଳିତ **Old Hidnu Hostel** ବ୍ୟତୀତ ଶେଖବଜାରର ରାୟସାହେବ ନରେନ୍ଦ୍ରନାଥ ସୁରଙ୍କ ଗୃହ ଓ ବକ୍‌ସି ବଜାରର ଏକ ଗୃହ ଭଡ଼ା ନେଇ ଦୂରାଗତ ଛାତ୍ରମାନଙ୍କ ରହିବା ପାଇଁ ସୁବ୍ୟବସ୍ଥା କରି ଯାଇଥିଲା । ତତ୍ପରେ ଅଧ୍ୟାପକ ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ନିଜର ବ୍ୟକ୍ତିଗତ ସହାୟତା ଗୁଣରୁ କେନ୍ଦୁଝର ଷ୍ଟେଟରେ ଦାମିରାଜା ବଳଭଦ୍ର ନାରାୟଣ ଭଞ୍ଜଦେଓଙ୍କଠାରୁ ୧୦,୦୦୦ ଟଙ୍କା ଆଣି ମିଶନ୍‌ସ୍କୁଲ ସାମନାରେ **B N. Hostel** ସ୍ଥାପନ କରିଥିଲେ । ଏହି ହଷ୍ଟେଲ ନିର୍ମାଣରେ ରାଜ୍ୟସରକାରଙ୍କ **Public Utility**

Fund ରୁ ୩୦୦୦ ଟଙ୍କା ମିଳିଥିଲା । ଏହି ହଷ୍ଟେଲରେମାତ୍ର ୫୦ ଜଣ ଛାତ୍ର ରହିବାର ବ୍ୟବସ୍ଥା ଅଛି । ହଷ୍ଟେଲ ତତ୍ତ୍ୱାବଧାରକଙ୍କ ପାଇଁ ମଧ୍ୟ ସ୍ୱତନ୍ତ୍ର ଗୃହ ନାହିଁ । ସେ ହଷ୍ଟେଲର ଦୁଇଟି କକ୍ଷରେ ରହୁଛନ୍ତି । ଏହି ହଷ୍ଟେଲଟି ଗୋଟିଏ ଲମ୍ବା ଆଜ୍‌ବେଷ୍ଟସଚ୍ଛାଦିତ ଗୃହ ଅଟେ ।

ପରବର୍ତ୍ତୀ ସମୟରେ ନବନିର୍ମିତ କଲେଜ ପରିସର ମଧ୍ୟରେ ନ୍ୟୁ ହଷ୍ଟେଲ୍ ନିର୍ମିତ ହୋଇଅଛି । ଏହା ଏକ ପକ୍‌କା ଗୃହ । ଏଥିରେ ମଧ୍ୟ ୫୦ ଜଣ ଛାତ୍ର ରହିବାର ବ୍ୟବସ୍ଥା ରହିଛି । ଏଥିରୁ ପୁଣି ତତ୍ତ୍ୱାବଧାରକ ଓ ଅଧ୍ୟକ୍ଷ ରହିବା ନିମିତ୍ତ କିଛି ଅଂଶ ନିଆଯାଇ କ୍ୱାର୍ଟର ଦୁଇଟି ଗଠନ କରାଯାଇଛି । କଲେଜର ଅଶାନ୍ତ ବାତାବରଣ ହେତୁ ବହୁଦିନରୁ ଅଧ୍ୟକ୍ଷ କେହି କ୍ୱାର୍ଟରରେ ରହୁନାହାନ୍ତି । ପ୍ରାୟ ଶହେଜଣ ଛାତ୍ର ରହିପାରିବା ଭଳି ଦୁଇଟି ହଷ୍ଟେଲ କିଛି ନୁହେଁ । ଅତିକମ୍‌ରେ ଦୁଇଶହ ଛାତ୍ର ଛାତ୍ରୀ ରହିପାରିବା ଭଳି ଦୁଇଟି ହଷ୍ଟେଲ ଗୃହ ନିର୍ମାଣ ନିମିତ୍ତ ସରକାର ତଥା କର୍ତ୍ତୃପକ୍ଷ ଦୃଷ୍ଟି ଦେବା ବାଞ୍ଛନୀୟ । କଲେଜ ପରିସର ମଧ୍ୟରେ ଅଧ୍ୟାପକ ଅଧ୍ୟାପିକାଙ୍କ ରହିବା ନିମିତ୍ତ ବାସଗୃହ ନାହିଁ । ସୀମିତ ପରିସର ମଧ୍ୟରେ କେତେକ କ୍ୱାର୍ଟର୍ସ ନିର୍ମାଣ ହେଲେ ଏହା କଲେଜର ଶାନ୍ତବାତାବରଣ ଆନୟନ ଦିଗରେ ମଧ୍ୟ ସହାୟକ ହୋଇ ପାରନ୍ତା ।

କଲେଜର ଶାନ୍ତବାତାବରଣ ମଧ୍ୟରେ ଶିକ୍ଷାଦାନ ଯେପରି ମୁଖ୍ୟ ଅଙ୍ଗ ତତ୍ସହିତ ସୁସମୃଦ୍ଧ ପାଠାଗାରଟିଏ ଏକ ଅପରିହାର୍ଯ୍ୟ ଅଙ୍ଗ । ଉଭୟ ଗୁରୁଶିଷ୍ୟଙ୍କର ଏହା ଜ୍ଞାନାର୍ଜନର ସହାୟକ ହୋଇଥାଏ । ପାରଳା ଗଜପତି ନଗର ପାଟ ମହାଦେଈ ନଳମୀ ଦେବୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ଦାନ କରିଥିବା ଅର୍ଥରେ ୧୯୪୪ ମସିହା ଏପ୍ରିଲ ମାସରେ ଏହା ମିଶନସ୍କୁଲରେ ପ୍ରଥମେ ଆରମ୍ଭ କରାଯାଇଥିଲା । ପରବର୍ତ୍ତୀ ସମୟରେ ଏହା ନବନିର୍ମିତ କଲେଜ ଗୃହକୁ ଆସିଯାଇ 'ନଳମୀ ଲାଇବ୍ରେରୀ' ନାମରେ ବିଦିତ ହୋଇଅଛି । ଏହା ଏକ ପ୍ରାଚୀନ ପାଠାଗାର ଓ ଅମୂଲ୍ୟ ପୁସ୍ତକର ଭଣ୍ଡାର ହେଲେହେଁ କର୍ତ୍ତୃପକ୍ଷଙ୍କ ଉଦାସୀନତାରୁ ଏହାର ରକ୍ଷଣାବେକ୍ଷଣ ତଥା ଶ୍ରୀବୃଦ୍ଧି ଘଟି ପାରୁନାହିଁ । ଲାଇବ୍ରେରୀକୁ ସଂଯୋଗ କରି ଅଧ୍ୟୟନ କକ୍ଷ ନଥିବାରୁ ଉଭୟ ଗୁରୁ ଶିଷ୍ୟଙ୍କର ଏହା ସହାୟକ ହୋଇ ପାରୁନାହିଁ ।

୧୯୪୭ ମସିହାରେ ମାତ୍ର ୩୦୭ ଜଣ ଛାତ୍ରଙ୍କୁ ନେଇ ଗଢ଼ି ଉଠିଥିବା ଶିଶୁ ଅନୁଷ୍ଠାନଟି ସମ୍ପ୍ରତି ୨୨୦୦ ଛାତ୍ରଛାତ୍ରୀଙ୍କୁ ଶିକ୍ଷାଦେବାର ସୁଯୋଗ ଦେଇ ପାରିଅଛି । ଶ୍ରେଣୀଗୃହ ଅଭାବରୁ ଅଧିକ ଛାତ୍ରଛାତ୍ରୀ ବୃଦ୍ଧି କରାଇବା କିମ୍ବା କମର୍ସ ଶ୍ରେଣୀ ଖୋଲିବାର ଅନ୍ତରାୟ ସୃଷ୍ଟି ହେଉଅଛି । ସ୍ଥାନାଭାବରୁ ଉପଯୁକ୍ତ ଖେଳ ପଡ଼ିଆଟିଏ ନାହିଁ । ତଥାପି ପ୍ରତିକୂଳ ବାତାବରଣ ସତ୍ତ୍ୱେ ଅତୀତରେ ଏହି ଅନୁଷ୍ଠାନରୁ ବହୁ ପ୍ରବୀଣ

ଖେଳାଳି ଦେଶ ବିଦେଶରେ ସୁନାମ ଅର୍ଜନ କରିଥିଲେ । ଏବେ ବି ଏହି ସ୍ଥିତି ବଜାୟ ରହି ପାରିଅଛି । ଏହି ଅନୁଷ୍ଠାନରୁ ଅତୀତରେ ବହୁ ନାଟ୍ୟପ୍ରେମୀ ଜନ୍ମ ଲାଭ କରିଥିଲେ। 'ମାଳାଞ୍ଚଳ'ରେ ନିର୍ମିତ ମୁକ୍ତ ରଙ୍ଗମଞ୍ଚ ଏହି ସୁଯୋଗ ଦାନର ପ୍ରଧାନ ସହାୟକ ହୋଇ ଆସିଥିଲା । ବର୍ତ୍ତମାନ ରକ୍ଷଣାବେକ୍ଷଣ ଅଭାବରୁ ଏହା ଭଗ୍ନପ୍ରାୟ ।

ସ୍ଥାନାଭାବରୁ ଅତୀତର ଗୌରବଶାଳୀ ଖ୍ରୀଷ୍ଟମହାବିଦ୍ୟାଳୟଟି ସ୍ଥାଣୁ ହୋଇ ପଡ଼ିଅଛି । କର୍ତ୍ତୃପକ୍ଷ ତଥା ସରକାରଙ୍କର ଉଦାସୀନତା ଓ ପ୍ରୋତ୍ସାହନ ଅଭାବରୁ କଲେଜର ଚତୁର୍ଦ୍ଦିଗରେ ଲାଗି ଥିବା ସରକାରୀ ଓ ବେସରକାରୀ ସ୍ଥାନ ସବୁ କଲେଜକୁ ହସ୍ତାନ୍ତରିତ ହେବାର ସୁଯୋଗରୁ ବଞ୍ଚିତ ହୋଇଅଛି । ୧୯୭୯ ମସିହାରେ ସୁଦକ୍ଷ ଅଧ୍ୟକ୍ଷ ସ୍ୱର୍ଗତ ଡଃ ଦେବେନ୍ଦ୍ର ମହାନ୍ତିଙ୍କ ପ୍ରଚେଷ୍ଟାରୁ କିଛି ସରକାରୀ ଜମି ଅକ୍ତିଆର କରାଯାଇ ସମ୍ମୁଖଭାଗରେ ପରିସୀମା ଓ ପ୍ରାଚୀର ନିର୍ମିତ ହେବାରୁ ଅନୁଷ୍ଠାନଟିର ଶ୍ରୀବୃଦ୍ଧି ଘଟିଅଛି । ବର୍ତ୍ତମାନ ଭଗ୍ନପ୍ରାୟ ଡ଼ି. ଆଇ ଅଫିସ ଓ ତତ୍‌ସଂଲଗ୍ନ ଜମି କଲେଜ ପରିସରକୁ ସରକାର ହସ୍ତାନ୍ତର କରିଥିବାରୁ କଲେଜର ସୀମାସରହଦ ବୃଦ୍ଧି ହେବା ସହ ଶୋଭନୀୟ ହୋଇ ପାରିଅଛି । କଲେଜ ଗୃହର ଦ୍ୱାରଦେଶରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଅର୍ଥଦାନରେ ଏକ ବିରାଟ ତଥା ସୁଦୃଶ୍ୟ ଆଠଫୁଟ ଉଚ୍ଚତା ବିଶିଷ୍ଟ ଜାତୀୟନେତା ସୁଭାଷଚନ୍ଦ୍ର ବୋଷଙ୍କର ଆବକ୍ଷଶୋଭିତ ବ୍ରୋଞ୍ଜ ପ୍ରତିମୂର୍ତ୍ତିଟି ଅନୁଷ୍ଠାନର ସୁବର୍ଣ୍ଣଜୟନ୍ତୀ ଅବକାଶରେ ଉଦ୍‌ଘାଟିତ ହୋଇଅଛି । ଅତୀତରେ ୧୯୮୦-୮୧ ଶିକ୍ଷାବର୍ଷରେ ଏହି ସ୍ଥାନରେ ମୂର୍ତ୍ତିଟି ସ୍ଥାପିତ ହୋଇଥିଲା ।

ଅତୀତରେ ଏକ ବିଶିଷ୍ଟ ଶିକ୍ଷାଦାନ ଓ ପରୀକ୍ଷାଦାନ କେନ୍ଦ୍ର ଭାବେ ଅନୁଷ୍ଠାନର ଗୌରବ ଆଧୁନିକ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ଏକ ଗୌରବାବହ ପରମ୍ପରା ରକ୍ଷା କରିଥିଲା । ଶିକ୍ଷା, ସାହିତ୍ୟ, ଖେଳ, ନେତୃତ୍ୱ ଦେବାରେ ଏହାର ଯଥେଷ୍ଟ ସୁନାମ ରହିଅଛି । ଅତୀତର କୃତବିଦ୍ୟ ଅଧ୍ୟାପକବୃନ୍ଦଙ୍କର ପ୍ରଚେଷ୍ଟା ଏ କ୍ଷେତ୍ରରେ ଏକାନ୍ତ ସ୍ମରଣୀୟ । ଏହି ଅନୁଷ୍ଠାନରେ ଅତୀତରେ ରେଭେରେଣ୍ଡ, ବ୍ରଜାନନ୍ଦ ମହାନ୍ତି, ଶ୍ରୀଧର ଦାସ, ଶ୍ରୀ ଗୌରୀକୁମାର ବ୍ରହ୍ମା, ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ, ଡଃ ନବୀନ କୁମାର ସାହୁ, ସର୍ବେଶ୍ୱର ଦାସ, ଜାନକୀବଲ୍ଲଭ ମହାନ୍ତି, ଡଃ ଶ୍ରୀନିବାସ ମିଶ୍ର, ଡଃ ଶରତଚନ୍ଦ୍ର ବେହେରା, ମନୋଜ ଦାସ, ସୁବ୍ରତରଞ୍ଜନ ମୁଖାର୍ଜି, ନିତ୍ୟାନନ୍ଦ ଦାର୍ଜି, ଏସ୍. ଆର. ବାନାର୍ଜି, ମନୀନ୍ଦ୍ର ନାଥ ରାୟ, ଭି. ସୁବ୍ରମନିୟମ୍, ପଠାଣି ପଟ୍ଟନାୟକ, ଡଃ ସୁରେଶ ଚନ୍ଦ୍ର ନନ୍ଦ, ରଙ୍ଗାଧର ଷଡ଼ଙ୍ଗୀ, ନରସିଂହ ସାହୁ, ବୈକୁଣ୍ଠବିହାରୀ ଗୁର୍ଜ୍ଜ, ଡଃ ଦେବେନ୍ଦ୍ର ମହାନ୍ତି, ଦୟାନିଧି ସାମନ୍ତରାୟ ପ୍ରମୁଖ ଅଧ୍ୟାପନା କ୍ଷେତ୍ରରେ ସୁଯଶ ରଖି ଯାଇଛନ୍ତି ।

୧୯୪୬ ଶିକ୍ଷାବର୍ଷରେ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଛଅ ଜଣ ଛାତ୍ର ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବାସହ ଶ୍ରୀ ଚକ୍ରଧର ମିଶ୍ର ଦ୍ୱିତୀୟ ସ୍ଥାନ ଲାଭ କରିଥିଲେ ।

୧୯୪୭ ମସିହାରେ ତତ୍କାଳୀନ ଗଭର୍ଣ୍ଣର ହଥର୍ଣ୍ଣ ଲୁଇସ୍ କଲେଜ ପରିଦର୍ଶନ ପୂର୍ବକ ଉଚ୍ଚ ପ୍ରଶଂସା କରି ଯାଇଛନ୍ତି । ୧୯୪୮ ଶିକ୍ଷାବର୍ଷରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ନଅ ଜଣ ପ୍ରଥମ ଶ୍ରେଣୀ ଛାତ୍ରଙ୍କ ମଧ୍ୟରୁ ଖ୍ରୀଷ୍ଟକଲେଜର ଚାରି ଜଣ ପ୍ରଥମ ଶ୍ରେଣୀ ପାଇଥିଲେ । ଶ୍ରୀ ସୁରେଶ ଚନ୍ଦ୍ର ମହାପାତ୍ର ବିଶ୍ୱବିଦ୍ୟାଳୟର ପ୍ରଥମ ସ୍ଥାନ ହାସଲ କରିବାର ଗୌରବ ଲାଭ କରିଥିଲେ । ଖ୍ରୀଷ୍ଟକଲେଜର ଛାତ୍ରବୃନ୍ଦ ଅର୍ଦ୍ଧ ଶତାବ୍ଦୀ ବର୍ଷ କାଳ ଓଡ଼ିଆ ଅନର୍ସ କ୍ଷେତ୍ରରେ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଗୌରବର ଅଧିକାରୀ ହୋଇ ପାରିଥିଲେ । କ୍ରମାଗତ ଭାବେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ସେମାନଙ୍କ ହାତ ପାହାନ୍ତାରେ ଥିଲା ।

ବହୁ କୃତୀଛାତ୍ର ବିଶ୍ୱବିଦ୍ୟାଳୟ ତଥା ସରକାରୀ ଓ ବେସରକାରୀ କଲେଜ ସମୂହରେ ଅବସ୍ଥାପିତ ହୋଇ ସୁନାମ ଅର୍ଜନ କରିଛନ୍ତି । ଅଣ୍ଟରର ଶିକ୍ଷା ଓ ଫଳାଫଳର ଉତ୍କର୍ଷତା ଲକ୍ଷ୍ୟ କରି ବିଶ୍ୱବିଦ୍ୟାଳୟ ତଥା ସରକାର ୧୯୫୪ ମସିହାରେ ସମସ୍ତ ଆଇ.ଏ. ଓ ଆଇ.ଏସ୍.ସି. କ୍ଲାସ ରେଭେନ୍ସାରୁ ଖ୍ରୀଷ୍ଟକଲେଜକୁ ଉଠାଇ ନେବାକୁ ପରିଚାଳନା ସମିତିକୁ ଅନୁରୋଧ କରିଥିଲେ । ଅନୁରୂପ ଭାବେ **Evening College** ସ୍ଥାପନା କରିବାର ସମସ୍ତ ସୁଯୋଗ ମଧ୍ୟ ଏହି ଅନୁଷ୍ଠାନ ହରାଇଅଛି । ନିୟମକାନୁନ୍ର ଅଲଙ୍ଘ୍ୟ ପ୍ରତିବନ୍ଧକ ହେତୁ ଏହା ଏକ ସରକାରୀ ଅନୁଷ୍ଠାନ ହେବାର ସୁଯୋଗକୁ ହାତ ଛଡ଼ା କରିଅଛି ।

୧୯୭୦-୭୧ ଶିକ୍ଷା ବର୍ଷରେ କଳାଶ୍ରେଣୀ ସହ ବିଜ୍ଞାନ ଶ୍ରେଣୀ ସଂଯୁକ୍ତ ହୋଇ ଅଛି । ୧୯୭୫ ମସିହାରେ ଅନୁଷ୍ଠାନଟିରେ ସହଶିକ୍ଷା ପ୍ରଚଳନ କରାଯାଇଛି । ଜାତିସଂଘର ବିଶ୍ୱନାରୀ ଜାଗରଣ ବର୍ଷକୁ ସ୍ମରଣ କରାଯାଇ ସହଶିକ୍ଷା ପ୍ରଚଳନ ହେବାରୁ ପ୍ରଥମେ ବାଳିକାମାନେ ଅଧ୍ୟୟନ କରିବାର ସୁଯୋଗ ଲାଭ କରିଥିଲେ । ବର୍ତ୍ତମାନ କଲେଜରେ ପ୍ରାୟ ଦୁଇଶହ ଛାତ୍ରୀ ଅଧ୍ୟୟନ କରୁଛନ୍ତି । ୧୯୭୨ ମସିହାରେ କଲେଜର ରୌପ୍ୟଜୟନ୍ତୀ ପାଳିତ ହୋଇଯାଇଛି । ୧୯୭୮-୭୯ ଶିକ୍ଷା ବର୍ଷରେ ଅଧ୍ୟକ୍ଷ ଚଟାଣି ପଟ୍ଟନାୟକ, ଅଧ୍ୟକ୍ଷ ଦେବବନ୍ଧୁ ମହାନ୍ତିଙ୍କ ସାଧୁ ଉଦ୍ୟମରେ ସରକାରୀ ଭାବେ ଓଡ଼ିଆ ବିଭାଗରେ ସ୍ନାତକୋତ୍ତର ଶ୍ରେଣୀ ଖୋଲା ଯାଇଅଛି । ପ୍ରଥମେ କଷ୍ଟବର୍ଷ ଛାତ୍ରଛାତ୍ରୀଗଣ ବିଶ୍ୱବିଦ୍ୟାଳୟରେ ଉଚ୍ଚସ୍ଥାନ ଲାଭ କରି କଲେଜର ସୁନାମ ରକ୍ଷା କରିଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ ଇତିହାସ, ଇଂରାଜୀ ଓ ରାଜନୀତି ବିଜ୍ଞାନରେ ଉଚ୍ଚମାଧ୍ୟମିକ ଶ୍ରେଣୀ ଖୋଲା ଯାଇଅଛି ।

ଓଡ଼ିଆ ସାହିତ୍ୟ ସମାଜ ଦ୍ୱାରା ପରିଚାଳିତ 'ସୃଷ୍ଟି ଓ ସମୀକ୍ଷା' ସମାଲୋଚନା ଓ ଗବେଷଣାମୂଳକ ସାହିତ୍ୟ ପତ୍ରିକାଟି ଖ୍ରୀଷ୍ଟ ମହାବିଦ୍ୟାଳୟର ଓଡ଼ିଆ ଭାଷା ଓ ସାହିତ୍ୟ ଜଗତକୁ ଏକ ବଳିଷ୍ଠ ଅବଦାନ । ଏହି ସ୍ୱତନ୍ତ୍ର ଧରଣର ସମୀକ୍ଷାମୂଳକ

ପତ୍ରିକାଟିର ଶୁଭାରମ୍ଭ ୧୯୭୧।୭୨ ଶିକ୍ଷା ବର୍ଷରେ ଆରମ୍ଭ କରିଥିଲେ ସମାଲୋଚକ ଓ ପ୍ରାବନ୍ଧିକ ତଥା ବିଭାଗୀୟ ମୁଖ୍ୟ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକ । କେତୁ ବର୍ଷକୁ ବାଦ ଦେଲେ ଏହା ନିୟମିତ ଭାବେ ପ୍ରକାଶିତ ହୋଇ ସୁଧୀ ପାଠକମଣ୍ଡଳୀର ଦୃଷ୍ଟି ଆକର୍ଷଣ କରୁଅଛି ।

ଆଧୁନିକ ଶିକ୍ଷା ଜଗତରେ କଳୁଷିତ ରାଜନୀତିର ଅନୁପ୍ରବେଶ, ଅସାମାଜିକ ବ୍ୟକ୍ତିମାନଙ୍କ ଦୌରାତ୍ମ୍ୟ, ପରିଚାଳନାଗତ ତ୍ରୁଟିବିଚ୍ୟୁତି, ପ୍ରିୟାପ୍ରୀତି ତୋଷଣ ନୀତି, ନିଯୁକ୍ତି କ୍ଷେତ୍ରରେ ପକ୍ଷପାତିତା, ସର୍ବୋପରି ଛାତ୍ର ବିଶୃଙ୍ଖଳା ଯେପରି ସର୍ବତ୍ର ଏକ ସହଜାତ ଗୁଣରେ ପରିଣତ ହୋଇ ପଡ଼ିଛି, ସେଥିରୁ ଖ୍ରୀଷ୍ଟ କଲେଜ ମୁକ୍ତ ନୁହେଁ । ଅତୀତର ବହୁ ସୁନାମଶାଳୀ ଅନୁଷ୍ଠାନଟି ଦୁର୍ନାମର ପିଚ୍ଛିଳ ପଥରେ ଗତିକରି ସଂପ୍ରତି ଆଶା ଓ ଆଲୋକର ବର୍ତ୍ତିକା ଜାଳି ଚାଲିଅଛି ।



